✓ ରାଜକବି ରାଧାମୋହନ ରାଜେନ୍ଦ୍ର ଦେବକୃତ

# ପରମାର୍ଥ ପୟୋଧି

## (ପ୍ରଥମ ଖଣ୍ଡ)

ସମ୍ପାଦନା

ମହୀମୋହନ ତ୍ରିପାଠୀ

ଅସିତ ମହାନ୍ତି

ପାଣ୍ଡୁଲିପି ସଂଗ୍ରାହକ

ସୁନୀଲ ଚୌଧୁରୀ

ମୁଖ୍ୟ ପରିବେଷକ

ବେଦିକ୍ ଏଜୁକେଶନ, ଟାଲେଣ୍ଟ ରିସର୍ଚ୍ଚ ସେଣ୍ଟର,
ୟୁନିଟ୍-୨, ଭୁବନେଶ୍ୱର

| | |
|---|---|
| **ପରମାର୍ଥ ପୟୋଧି** | **PARAMARTHA PAYODHI** |
| **ରାଧାମୋହନ ରାଜେନ୍ଦ୍ରଦେବ** | **By Radhamohan Rajendra Dev** |
| ସମ୍ପାଦନା : | Edited by : |
| **ମହୀମୋହନ ତ୍ରିପାଠୀ** | **Mahimohan Tripathy** |
| **ଅସିତ ମହାନ୍ତି** | **Asit Mohanty** |
| ପ୍ରଥମ ସଂସ୍କରଣ : | 1st edition : |
| ଅକ୍ଟୋବର, ୨୦୧୦ | October, 2010 |
| ମୁଦ୍ରଣ ସଂଖ୍ୟା : ୧୧୦୦ | Copies : 1100 |
| ପ୍ରଚ୍ଛଦ ଶିଳ୍ପୀ : | Cover design : |
| ଶଶିକାନ୍ତ ରାଉତ | Sashikant Rout |
| ମୁଦ୍ରଣ : | Printed at : |
| ଡୁଡୁଲି ପ୍ରୋସେସ୍ ଆଣ୍ଡ ଅଫ୍‌ସେଟ୍ | Duduly Process & Offset |
| ବାପୁଜୀନଗର, ଭୁବନେଶ୍ୱର | Bapujinagar, Bhubaneswar |
| ମୂଲ୍ୟ : ଟ.୯୮/- | Price : Rs.98/- |
| (ଅଠାନବେ ଟଙ୍କା) ମାତ୍ର | (Rupees Ninety Eight) only |

ଭାରତୀୟ ଭାଷା ସଂସ୍ଥାନ (ମାନବ ସମ୍ବଳ ବିକାଶ ମନ୍ତ୍ରଣାଳୟ, ଉଚ୍ଚଶିକ୍ଷା ବିଭାଗ, ଭାରତ ସରକାର) ମାନସ ଗଙ୍ଗୋତ୍ରୀ, ମହୀଶୂର-୫୭୦୦୦୬ଙ୍କର ପତ୍ର ସଂଖ୍ୟା ଏଫ୍ ୫୧-୮ (୫) ୨୦୦୯-୧୦/ ଓଡ଼ିଆ /ଗ୍ରାଣ୍ଟ ତା: ୦୮.୦୩.୨୦୧୦ରେ ସହାୟକ ଅନୁଦାନ ଯୋଜନାରେ ମଞ୍ଜୁର ହୋଇଥିବା ଆର୍ଥିକ ସହାୟତାରେ ପ୍ରକାଶିତ ।

Published with Financial Assistance from the Central Institute of Indian Languages (Ministry of Human Resource Development, Department of Higher Education, Govt. of India), Manasagangotri, Mysore-570006 vide sanction letter No. **F51-8(5)/2009-10/ORY/GRNT** dated **8th March, 2010** under the scheme of Grant-in-Aid.



ରାଜକବି ରାଧାମୋହନ ରାଜେନ୍ଦ୍ର ଦେବ ପ୍ରତିଷ୍ଠିତ 'ରସାଳ ସଂସଦ' (୧୯୨୩)ର ସଦସ୍ୟବୃନ୍ଦ
ବାମରୁ ଚତୁର୍ଥ : ରାଧାମୋହନ ରାଜେନ୍ଦ୍ର ଦେବ

# ବିଷୟ ପରିଚୟ


ମୁଖବନ୍ଧ ୯ - ୩୨

ଅବତରଣିକା ୩୩ - ୪୨

ଐଶୀତତ୍ତ୍ୱ ସୂଚିକା ୪୩ - ୬୭

ପ୍ରଥମ ତରଙ୍ଗ: ୬୯-୧୧୨

## ବେଦ ପ୍ରସଙ୍ଗ

ବେଦୋତ୍ପତ୍ତିର ସମୟ ନିର୍ଦ୍ଧାରଣ - ବୈଦିକ ଦେବତାର ବିଷୟ - ଋଗ୍‌ବେଦ - ଯଜୁର୍ବେଦ - ସାମବେଦ - ଅଥର୍ବବେଦ - ବୈଦିକ ଯୁଗର ସାମାଜିକ ବ୍ୟବସ୍ଥା ଓ ରୀତିନୀତି - ଷଡଙ୍ଗ- ପାଣିନୀୟ ଶିକ୍ଷା - କଳ୍ପ - ଇଷ୍ଟିଯାଗ - ଅଗ୍ନ୍ୟାଧ୍ୟାନ ବିଧି - ବ୍ୟାକରଣ - ଶାସ୍ତ୍ରର ପ୍ରୟୋଜନୀୟତା - ପାଣିନୀୟ ଦର୍ଶନ - ନିରୁକ୍ତ - ଛନ୍ଦଃ - ଜ୍ୟୋତିଷ - ବୈଦିକ ଜ୍ୟୋତିଷ - ଜ୍ୟୋତିଷର କ୍ରମ ପ୍ରସାର - ଗ୍ରହ ନକ୍ଷତ୍ରଗଣଙ୍କ ଆକାର, ଗତି ଓ ଜ୍ୟୋତି - ଆଲୋଚନା

ଦ୍ୱିତୀୟ ତରଙ୍ଗ: ୧୧୩-୧୫୧

## ସୃଷ୍ଟିତତ୍ତ୍ୱ ପ୍ରସଙ୍ଗ

ସୃଷ୍ଟିର ପ୍ରଥମ ଅବସ୍ଥା - ସୃଷ୍ଟିର ଦ୍ୱିତୀୟ ଅବସ୍ଥା - ସୃଷ୍ଟିର ତୃତୀୟ ଅବସ୍ଥା - ଗ୍ରହ - ଚନ୍ଦ୍ର - ମେଷରାଶି ବା ମେଷ ଅନ୍ତର୍ଯୁଗ - ଅଶ୍ୱିନୀ ଗର୍ଭାନ୍ତର୍ଯୁଗ - ଭରଣୀ ଗର୍ଭାନ୍ତର୍ଯୁଗ - କୃତ୍ତିକା ଗର୍ଭାନ୍ତର୍ଯୁଗ - ବୃଷରାଶି ବା ବୃଷ ଅନ୍ତର୍ଯୁଗ - ରୋହିଣୀ ଗର୍ଭାନ୍ତର୍ଯୁଗ - ମୃଗଶିରା ଗର୍ଭାନ୍ତର୍ଯୁଗ - ବୃଷରାଶି - ଆର୍ଦ୍ରା ଗର୍ଭାନ୍ତର୍ଯୁଗ ଏବଂ ମିଥୁନ ରାଶି ବା ମିଥୁନ ଅନ୍ତର୍ଯୁଗ - ପୁନର୍ବସୁ ଗର୍ଭାନ୍ତର୍ଯୁଗ - କର୍କଟ ରାଶି ବା କର୍କଟ ଅନ୍ତର୍ଯୁଗ - ପୁଷ୍ୟା ଗର୍ଭାନ୍ତର୍ଯୁଗ - ଅଶ୍ଳେଷା ଗର୍ଭାନ୍ତର୍ଯୁଗ - ସିଂହରାଶି ବା ସିଂହ ଅନ୍ତର୍ଯୁଗ - ମଘା ଗର୍ଭାନ୍ତର୍ଯୁଗ - ଅଭିବ୍ୟକ୍ତିବାଦ - ପୂର୍ବଫାଲଗୁନୀ ଗର୍ଭାନ୍ତର୍ଯୁଗ - ଉତ୍ତର ଫାଲଗୁନୀ ଗର୍ଭାନ୍ତର୍ଯୁଗ - କନ୍ୟାରାଶି ବା କନ୍ୟା ଗର୍ଭାନ୍ତର୍ଯୁଗ - ପ୍ରଳୟ - ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ - ମର୍ତ୍ତ୍ୟଲୋକ - ପାତାଳ - ନରକର ବିଚାର - ଦେବଯାନ ଓ ପିତୃଯାନ ମାର୍ଗ

ତୃତୀୟ ତରଙ୍ଗ: ୧୫୩-୨୪୯

## ମହାଭୂତ ପ୍ରସଙ୍ଗ

ଆକାଶ - ବାୟୁ - ବାୟୁ ସମ୍ବନ୍ଧେ ଦାର୍ଶନିକ ବିଚାର - ବାୟୁ ବିଜ୍ଞାନ - ବାୟୁମଣ୍ଡଳର ଉଚ୍ଚତା - ବାୟୁର ଗୁରୁତ୍ୱ - ବାୟୁର ବର୍ଣ୍ଣ - ବାୟୁର ରାସାୟନିକ ତତ୍ତ୍ୱ - ବିଶୁଦ୍ଧ ବାୟୁର ଗୁରୁତ୍ୱ - ଶ୍ୱାସ ପ୍ରକ୍ରିୟା - ସ୍ୱାସ୍ଥ୍ୟ ଓ ବାୟୁ - ଜଳୀୟବାଷ୍ପ - ପ୍ରାକୃତିକ ବିଜ୍ଞାନ ଓ ବାୟୁ - ବାୟୁମଣ୍ଡଳର ଧର୍ମ - ବାୟୁମଣ୍ଡଳର ଶୈତୋଷ୍ଣମାନର ବିବରଣ - ବାୟୁର ପ୍ରଚାପ - ବାୟୁ ତରଳୀକରଣ - ବାୟୁର ଧୂଳି - ବାୟୁ ଓ ଶବ୍ଦ ବିଜ୍ଞାନ - ବାୟୁର ଅସ୍ତିତ୍ୱ ଅନୁଭବ ଓ ପ୍ରଭାବ - ବାୟୁର ପ୍ରବାହ - ଘୂର୍ଣ୍ଣାବାୟୁ - ଅଗ୍ନିପ୍ରକରଣ - ଅଗ୍ନିଶିଖା - ଉଷ୍ଣତା ଓ ଶୈତ୍ୟ - ତାପର ଫଳ - ତାପ ସଞ୍ଚାଳନ - ତାପ ପରିବହନ - ତାପ ବିକିରଣ - ତାପର ଉତ୍ପତ୍ତି ସ୍ଥାନ - ରାସାୟନିକ ସଂଯୋଗ - ତଡିତ୍ - ୟୁରୋପ ବିଜ୍ଞାନ - ଜୀବ ଦେହାଗ୍ନି - ଭୂଗର୍ଭାଗ୍ନି - ସୂର୍ଯ୍ୟାଗ୍ନି - ଅନୁମିତି ଗ୍ରାହ୍ୟ ତାପ - ଆପେକ୍ଷିକ ତାପ - ଜଳ - ବଜ୍ର - କୁଜ୍ଝଟିକା - ମେଘ - ମେଘର ନାମକରଣ - ମେଘବିନ୍ଦୁ - ମେଘର କାର୍ଯ୍ୟ - ମେଘ ସମ୍ବନ୍ଧେ ଆଧୁନିକ ସିଦ୍ଧାନ୍ତ - ମେଘର ଫଳ ଗଣନା - ସିରିସ୍ ମେଘ - ସିରୋ କିଉମିଉଲାସ୍ - ବୃଷ୍ଟିର ବିବରଣ - ସଦ୍ୟବୃଷ୍ଟିର ଲକ୍ଷଣ - ବୃଷ୍ଟିର ସାଙ୍କେତିକ ଲକ୍ଷଣ - ବୃଷ୍ଟି - ପୃଥିବୀ - ପୃଥିବୀର ଉତ୍ପତ୍ତି ସମ୍ବନ୍ଧେ ପାଶ୍ଚାତ୍ୟ ମତ- ଭାରତୀୟ ମତେ ପୃଥିବୀ ଓ ଆକାଶର ସ୍ୱଭାବ - ପୃଥିବୀର ଆକର୍ଷଣ ଶକ୍ତି - ପାଶ୍ଚାତ୍ୟ ମତ - ପୃଥିବୀର ଗତି - ପୃଥିବୀର ଘନତ୍ୱ - ପୃଥିବୀର ତାପ - ପୃଥିବୀର ଉତ୍ପତ୍ତିକାଳ - ପୃଥିବୀର ବାୟୁ - ପାଶ୍ଚତ୍ୟ ଜ୍ୟୋତିଃଶାସ୍ତ୍ର ମତ - ପୃଥିବୀର କମ୍ପନ - ପୃଥିବୀର ଗୁଣ ଓ ଲକ୍ଷଣ - ଦୁଷ୍ଟାଭୂମିର ଲକ୍ଷଣ - ମଳିନା ଭୂମିର ଲକ୍ଷଣ - ଭୂବିଦ୍ୟା - ମହାଦେଶ ବିଭାଗ - ସମୁଦ୍ର ବିଭାଗ - ଆଲୋଚନା

ଚତୁର୍ଥ ତରଙ୍ଗ: ୨୫୧-୩୫୬

## ଆର୍ଯ୍ୟଦର୍ଶନ ପ୍ରସଙ୍ଗ

ସାଂଖ୍ୟ ଦର୍ଶନ - ଭାଗବତୋକ୍ତ କପିଳ ମତ - ସାଂଖ୍ୟଶବ୍ଦର ବ୍ୟୁତ୍ପତ୍ତି - ନିରୀଶ୍ୱର ସାଂଖ୍ୟର ଆଲୋଚନା - ଈଶ୍ୱରଙ୍କର ଅସ୍ତିତ୍ୱ ଅଭାବ ସମ୍ବନ୍ଧେ ଅନ୍ୟବିଧ ଯୁକ୍ତି - ସାଂଖ୍ୟଯୋଗ - ବୈଶେଷିକ ଦର୍ଶନ - କଣାଦ ଦର୍ଶନର ମୁଖ୍ୟ ଉଦ୍ଦେଶ୍ୟ - ଗୌତମ ଦର୍ଶନ ବା ନ୍ୟାୟ ଦର୍ଶନ - ଗୌତମ ଦର୍ଶନର ପ୍ରତିପାଦ୍ୟ ବିଷୟ - ପାତଞ୍ଜଳ ଦର୍ଶନ - ଯୋଗର ଲକ୍ଷଣ - ଚିତ୍ତର ଅବସ୍ଥାଭେଦ ଓ ତାହାର ବିଶେଷ ଲକ୍ଷଣ - ଅଭ୍ୟାସପାଦ - ଯୋଗାଙ୍ଗ - ବିଭୂତିପାଦ - କୈବଲ୍ୟପାଦ - ଯୋଗାଙ୍ଗର ବିଚାର - ଆସନ - ପ୍ରାଣାୟାମ - ପ୍ରତ୍ୟାହାର ବିଚାର - ଧାରଣା - ଧ୍ୟାନ - ସମାଧି (ଯୋଗାଙ୍ଗ) - ଧ୍ୟାନର ବିଷୟ - ଶେଷ ଯୋଗାଙ୍ଗ ସମାଧିର ବିଷୟ - ମୀମାଂସା ଦର୍ଶନ - ମୀମାଂସା ଶାସ୍ତ୍ରର ନାମକରଣ - ବେଦ - ସିଦ୍ଧାନ୍ତ - ଶବ୍ଦବାଦ - ସାମର୍ଥ୍ୟ ବା ଅପୂର୍ବ - ପ୍ରମାଣ - ସ୍ଫୋଟବାଦ - ଭାବନାର ଲକ୍ଷଣ - ଅଙ୍ଗ ଓ ପ୍ରଧାନ - ଶରୀର, ଇନ୍ଦ୍ରିୟ ଓ ମନ - ଉପସଂହାର - ଆଲୋଚନା

## ଧର୍ମଶାସ୍ତ୍ର ପ୍ରସଙ୍ଗ

ସ୍ମୃତି ବା ଧର୍ମଶାସ୍ତ୍ର - ଶ୍ରୌତ, ଗୃହ୍ୟସୂତ୍ର ଓ ଧର୍ମସୂତ୍ର - ପୁରାଣଗତ ବିଷୟର ପରସ୍ପର ସାମଞ୍ଜସ୍ୟ - ପୁରାଣର ଉତ୍ପତ୍ତି ନିର୍ଣ୍ଣୟ - ପୁରାଣ ରଚୟିତା କିଏ ? - ପୁରାଣ ବିଭାଗ - ପ୍ରଚଳିତ ପୁରାଣ ସମୂହର ସଂକଳନ କାଳ - ବ୍ରହ୍ମପୁରାଣ - ମୂଳ ବ୍ରହ୍ମପୁରାଣଗତ ଚରିତ - ପଦ୍ମପୁରାଣ - ସୃଷ୍ଟିଖଣ୍ଡଗତ ଚରିତ - ଭୂମିଖଣ୍ଡ - ପାତାଳଖଣ୍ଡ - ଉତ୍ତର ଖଣ୍ଡ - ବିଷ୍ଣୁ ପୁରାଣ - ଶୈବ ବା ବାୟୁ ପୁରାଣ - ବାୟୁ ବା ଶିବପୁରାଣଗତ ଚରିତ - ବାୟବ୍ୟ ସଂହିତା - ଧର୍ମସଂହିତା - ଭାଗବତ - ଦେବୀଭାଗବତ - ନାରଦ ପୁରାଣ - ନାରଦ ପୁରାଣଗତ ଚରିତ - ମାର୍କଣ୍ଡେୟ ପୁରାଣ - ମାର୍କଣ୍ଡେୟ ପୁରାଣଗତ ଚରିତ - ଆଗ୍ନେୟ ପୁରାଣ - ଭବିଷ୍ୟତ୍ ପୁରାଣ - ବ୍ରହ୍ମବୈବର୍ତ୍ତ ପୁରାଣ - ବ୍ରହ୍ମବୈବର୍ତ୍ତ ପୁରାଣଗତ ଚରିତ - ବରାହ ପୁରାଣ - ବରାହପୁରାଣଗତ ଚରିତ - ସ୍କନ୍ଦପୁରାଣ - ଅମ୍ବିକାଖଣ୍ଡ - ବ୍ରହ୍ମଖଣ୍ଡ - ବ୍ରହ୍ମୋତ୍ତର ଖଣ୍ଡ - କାଶୀ ଖଣ୍ଡ - ରେବା ଖଣ୍ଡ - ଅବନ୍ତୀ ଖଣ୍ଡ - ନାଗର ଖଣ୍ଡ - ପ୍ରଭାସ ଖଣ୍ଡ - ସ୍କନ୍ଦ ପୁରାଣଗତ ଚରିତ - କୂର୍ମପୁରାଣ - କୂର୍ମପୁରାଣଗତ ଚରିତ - ମତ୍ସ୍ୟପୁରାଣ - ମତ୍ସ୍ୟପୁରାଣଗତ ଚରିତ - ଗରୁଡ଼ ପୁରାଣ - ଗରୁଡ଼ ପୁରାଣଗତ ଚରିତ - ଉତ୍ତର ଖଣ୍ଡଃ ପ୍ରେତକଳ୍ପ - ବ୍ରହ୍ମାଣ୍ଡପୁରାଣ - ଇତିହାସ - ମହାଭାରତର ଆଧ୍ୟାତ୍ମିକ ତତ୍ତ୍ୱ - ତନ୍ତ୍ରର ପରିଚୟ - ତନ୍ତ୍ରର ପ୍ରତିପାଦ୍ୟ ବିଷୟ - ବେଦାଚାର - ବୈଷ୍ଣବାଚାର - ଶୈବାଚାର - ଦକ୍ଷିଣାଚାର - ବାମାଚାର - ସିଦ୍ଧାନ୍ତାଚାର - କୌଳାଚାର ବିଧି - ତାନ୍ତ୍ରିକ ସାଧନ ଓ ସାଧକର ଲକ୍ଷଣ - ସାଧିକାର ଲକ୍ଷଣ - ତନ୍ତ୍ର ମତରେ ସୃଷ୍ଟିତତ୍ତ୍ୱ - ତାନ୍ତ୍ରିକ ତତ୍ତ୍ୱ - ତନ୍ତ୍ର ମତରେ ତତ୍ତ୍ୱଜ୍ଞାନ - ପୁରାଣଗତ ଆଲୋଚନା ।



# ମୁଖବନ୍ଧ

ଓଡ଼ିଆ ସାହିତ୍ୟକୁ ଚିକିଟୀ ରାଜବଂଶର ଦାନ ଅବିସ୍ମରଣୀୟ । ଚିକିଟୀ ଗଞ୍ଜାମ ଜିଲ୍ଲାର ବ୍ରହ୍ମପୁର ସବ୍‌ଡିଭିଜନ୍ ଅନ୍ତର୍ଗତ ଏକ ଛୋଟ ସହର । ଏହା ଚିକିଟୀ ତହସିଲ ଓ ଚିକିଟୀ ବ୍ଲକ୍‌ର ସଦର ମହକୁମା । ଚିକିଟୀ ଥିଲା ଏକ ପ୍ରାଚୀନ ଜମିଦାରୀ । ଏହାର ଜମିଦାରମାନେ 'ରାଜା' ନାମରେ ପରିଚିତ ହେଉଥିଲେ ।

'ଚିକିଟୀ' ନାମର ଅର୍ଥକୁ ନେଇ ବହୁପ୍ରକାର ବ୍ୟାଖ୍ୟା କରାଯାଇଛି । 'ଚିକି'ର ଅର୍ଥ ଆଶା, ପ୍ରୟୋଜନ, ଆସ୍ୱାଦନ (ଗଞ୍ଜାମର ଦକ୍ଷିଣାଞ୍ଚଳରେ ବ୍ୟବହୃତ) । 'କିଟି'- (କିଟ୍-ଗମନ କରିବା- ଇ, ଶୂକର) [୧] ଚିକିକିଟିରୁ 'ଚିକିଟୀ' ଆସିଥାଇପାରେ କୁହାଯାଇଛି । ଆହୁରି ମଧ୍ୟ କୁହାଯାଇଛି ଯେ, ଚିତ୍+କିଟୀ=ଚିତ୍କିଟୀରୁ ଚିକିଟୀ ହୋଇଛି । ଚିତ୍ ଅର୍ଥ ଜ୍ଞାନୀ, କିଟୀର ଅର୍ଥ ବରାହ । ଚିକିଟୀ ଜ୍ଞାନୀ ବରାହର ମାଟି । [୨] ଚିକିଟୀ ରାଜବଂଶର କେତେକ ରାଜାଙ୍କ ପ୍ରକାଶିତ ପୁସ୍ତକରେ ସେମାନଙ୍କ ନାମ ଆଗରେ 'ଚିତ୍କିଟୀ ଅଧୀଶ୍ୱର' ଉଲ୍ଲେଖ ରହିଛି । ଉଦାହରଣ ସ୍ୱରୂପ ରାଜକବି ରାଧାମୋହନ ରାଜେନ୍ଦ୍ରଦେବ ତାଙ୍କର 'ପ୍ରେମମଞ୍ଜରୀ' କାବ୍ୟର ଭୂମିକାରେ (ତାः ୧-୩-୧୯୧୩) 'ଚିତ୍କିଟୀ ଦୂର୍ଗ' ଲେଖିଛନ୍ତି । [୩] ଚିକିଟୀର ସୁସାହିତ୍ୟିକ ତଥା 'ରୂପାୟନ' ପତ୍ରିକାର ସଂପାଦକ ✓ ନରସିଂହ ଦେଓ କହିଛନ୍ତି ଯେ, 'ଚିତ୍ତକିରୀଟୀ'ରୁ ଅପଭ୍ରଂଶ ହୋଇ ଚିକିଟୀ ହୋଇଛି । ଚିତ୍ତ, ଅର୍ଥାତ୍ ଜ୍ଞାନ, ଜ୍ଞାନରେ ଏହି ଅଞ୍ଚଳ କିରୀଟୀ ଧାରଣ ପାଇଁ ଯୋଗ୍ୟ । କିରୀଟୀ ହେଲା ଶିରୋଭୂଷଣ । [୪] ଲେଖକ ଶ୍ରୀ ଗଣେଶ ପ୍ରସାଦ ପଣ୍ଡା ଲେଖିଛନ୍ତି ଯେ 'ଚେଟକ' ଶବ୍ଦରୁ 'ଚିକିଟୀ' ହୋଇଥାଇ ପାରେ । ଭାଷାତତ୍ତ୍ୱ ଦୃଷ୍ଟିରୁ 'ଚେଟକ' ଶବ୍ଦର ଅର୍ଥ ଉପ-ରାଜଧାନୀ । ଉତ୍କଳ ସାମ୍ରାଜ୍ୟର ଏହି ଦକ୍ଷିଣ ଅଞ୍ଚଳରେ କରଦ ରାଜା ରୂପେ ଅବସ୍ଥାପିତ ହୋଇଥିଲେ କେଶବ ରାଉତରାୟ ଖ୍ରୀଷ୍ଟାବ୍ଦ ୮୮୧ରେ । ତାଙ୍କର ଉପାଧି ଥିଲା କର୍ଦ୍ଦମ ସିଂହ । ଚେଟକ ରାଜ୍ୟ ମହେନ୍ଦ୍ରଗିରିର ଦକ୍ଷିଣ ପ୍ରାନ୍ତରୁ ବଙ୍ଗୋପସାଗର ଉପକୂଳ ଯାଏଁ ପରିବ୍ୟାପ୍ତ ଥିଲା । ଶ୍ରୀ ପଣ୍ଡା ଲେଖିଛନ୍ତି ଯେ, ''କତିପୟ ଐତିହାସିକଙ୍କ ଯୁକ୍ତି ଅନୁକ୍ରମେ ଏହି ଚେଟକ ରାଜ୍ୟର ଅନ୍ୟନାମ ଥିଲା ଶ୍ୱେତକ ।'' [୫]

---

(୧) ଶବ୍ଦତତ୍ତ୍ୱବୋଧ ଅଭିଧାନ (୧୯୧୬)- ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ।

(୨) ଚିକିଟୀ ଇତିହାସ ଓ ଅଧିଷ୍ଠାତ୍ରୀ ମା' ବାଳକୁମାରୀ- ଶ୍ରୀ ଗଣେଶ ପ୍ରସାଦ ପଣ୍ଡା, ପ୍ରଥମ ମୁଦ୍ରଣ, ୧୯୯୯, ସ୍ୱାଧୀନ ପ୍ରେସ୍, ବ୍ରହ୍ମପୁର ।

(୩) ପ୍ରେମ ମଞ୍ଜରୀ- ରାଧାମୋହନ ରାଜେନ୍ଦ୍ର ଦେବ- ଉତ୍କଳ ସାହିତ୍ୟ ପ୍ରେସ୍, କଟକ (୧୯୧୩)

(୪) ଚିକିଟୀ ଇତିହାସ ଓ ଅଧିଷ୍ଠାତ୍ରୀ ମା' ବାଳ କୁମାରୀ- ଶ୍ରୀ ଗଣେଶ ପ୍ରସାଦ ପଣ୍ଡା ।

(୫) ତତ୍ରୈବ

ପ୍ରଖ୍ୟାତ ଗବେଷକ ଡକ୍ଟର ସତ୍ୟନାରାୟଣ ରାଜଗୁରୁ ଲେଖିଛନ୍ତି ଯେ, କଳିଙ୍ଗ ସାମ୍ରାଜ୍ୟ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ଯେତେବେଳେ ଗଙ୍ଗବଂଶୀୟ ରାଜାମାନଙ୍କ ଅଧୀନରେ ଶାସିତ ହେଉଥିଲା, ସେତେବେଳେ ଆଧୁନିକ ଗଞ୍ଜାମ ଜିଲ୍ଲାର ପୂର୍ବଭାଗ ଅର୍ଥାତ୍ ମହେନ୍ଦ୍ରାଚଳଠାରୁ ଚିଲିକା ହ୍ରଦ ପର୍ଯ୍ୟନ୍ତ ସମସ୍ତ ଉପକୂଳ ଅଞ୍ଚଳ ଭୌମକର ବଂଶୀୟ ବୌଦ୍ଧ ଧର୍ମାବଲମ୍ବୀ ରାଜାମାନେ ଅଧିକାର କରିଥିଲେ । ଗଙ୍ଗବଂଶର ଗୋଟିଏ ଶାଖା ଚିକିଟୀ, ବଡ଼ଖିମୁଣ୍ଡି, ସାନଖିମୁଣ୍ଡି ପ୍ରଭୃତି ଭୂତପୂର୍ବ ଜମିଦାରୀ ଅଞ୍ଚଳମାନଙ୍କୁ ମିଶାଇ 'ସ୍ୱେତକ' ନାମକ ଗୋଟିଏ ମଣ୍ଡଳ (ପ୍ରଦେଶ)ରେ ରାଜତ୍ୱ କରୁଥିଲେ । ସେହି ରାଜାମାନେ କେବେ କେବେ ଭୌମକରମାନଙ୍କର ଅଧୀନତା ସ୍ୱୀକାର କରୁଥିଲେ ତ କେବେ କେବେ ସ୍ୱାଧୀନତା ଘୋଷଣା କରୁଥିଲେ । ସେହି ରାଜବଂଶକୁ ଇତିହାସରେ 'ସ୍ୱେତକ-ଗଙ୍ଗ' ବୋଲି ଚିହ୍ନିତ କରାଯାଇଛି । ସ୍ୱେତକ ରାଜବଂଶରେ ଇନ୍ଦ୍ରବର୍ମା ନାମକ ଜଣେ ପ୍ରବଳ ପରାକ୍ରାନ୍ତ ସ୍ୱାଧୀନ ରାଜା ଥିଲେ । ତାଙ୍କ ରାଜତ୍ୱ କାଳରେ ରାଜ୍ୟର ରାଜଧାନୀ ଆଧୁନିକ ଚିକିଟୀରେ ଥିବା ଅନୁମିତ ହୁଏ । ଆନ୍ଧ୍ରର ଜଣେ ପ୍ରସିଦ୍ଧ ଐତିହାସିକ ସୋମଶେଖର ଶର୍ମାଙ୍କ ମତରେ 'ସ୍ୱେତକ' ଶବ୍ଦ ଭାଷାର ପରିବର୍ତ୍ତନ ଫଳରେ 'ଚେତକ' 'ଚିକଟ' ଓ 'ଚିକିଟୀ'ରେ ପରିଣତ ହୋଇଥିବା ସମ୍ଭବ । [୬] ପଣ୍ଡିତ ନୀଳମଣି ମିଶ୍ରଙ୍କ ଆଲୋଚନା ପ୍ରକାରେ ସେ କାଳର 'ସ୍ୱେତକ' ନାମଟି କାଳକ୍ରମେ ଉଚ୍ଚାରଣଗତ ଅଭ୍ୟାସରୁ 'ଚିକିଟୀ' ହେବାରେ ଆଦୌ ଅସମ୍ଭବ ପରି ବୋଧ ହେଉନାହିଁ । କାରଣ 'ଉପାଧ୍ୟାୟ' ଶବ୍ଦରୁ 'ଝା' ଶବ୍ଦ ହୋଇଛି ବୋଲି ଯେତେବେଳେ ଭାଷାବିଜ୍ଞାନ ସମର୍ଥନ କରୁଛି, ସେତେବେଳେ ଦୀର୍ଘ ସହସ୍ରାଧିକ ବର୍ଷପୂର୍ବରୁ ପ୍ରଚଳିତ 'ସ୍ୱେତକ' ଶବ୍ଦରୁ 'ଚିକିଟୀ' ହେବା ଆଦୌ ଆଶ୍ଚର୍ଯ୍ୟକର ବିଷୟ ପରି ବୋଧ ହେଉନାହିଁ । [୭]

## ରାଜବଂଶାବଳୀ :

ଚିକିଟୀ ରାଜବଂଶର ଶ୍ରେଷ୍ଠ ସାହିତ୍ୟିକ- ରାଜା ରାଧାମୋହନ ରାଜେନ୍ଦ୍ର ଦେବ ତାଙ୍କର 'ପ୍ରେମ ମଞ୍ଜରୀ' କାବ୍ୟର ଷଡ଼ବିଂଶ ଛାନ୍ଦରେ ନିଜ ବଂଶର ଉତ୍ପତ୍ତିଠାରୁ ଆରମ୍ଭ କରି ନିଜ ପିତା କିଶୋର ଚନ୍ଦ୍ର ରାଜେନ୍ଦ୍ରଦେବଙ୍କ ପର୍ଯ୍ୟନ୍ତ କିଏ କେତେବର୍ଷ ରାଜତ୍ୱ କରିଥିଲେ ତା'ର ତାଲିକା ଦେଇଛନ୍ତି । ଉକ୍ତ କାବ୍ୟଟି ୧୯୧୩ରେ ପ୍ରଥମେ ମୁଦ୍ରିତ ହୋଇଥିଲା । ଉକ୍ତ କାବ୍ୟରେ ପ୍ରଦତ୍ତ ବଂଶାବଳୀ ପ୍ରକାରେଃ

ପୁରୁଷୋତ୍ତମ ରାଜାଙ୍କ ବଂଶଧର ସରଦାର କେଶବ ୮୦୩ ଶକାବ୍ଦରେ ଚିକିଟୀ ଅଧୀଶ୍ୱର ହୋଇ ବୋଦାଗିରି ଦୁର୍ଗ ସ୍ଥାପନ କରିଥିଲେ ।

(ପନ୍ଦର ପୁରୁଷ ପରେ)

---

(୬) ଶ୍ରୀପୁରୁଷୋତ୍ତମ ଓ ଶ୍ରୀମନ୍ଦିର- ଡକ୍ଟର ସତ୍ୟନାରାୟଣ ରାଜଗୁରୁ, ପ୍ରକାଶନଃ ଓ.ସା.ଏ. ଭୁବନେଶ୍ୱର, ୧୯୯୬, ପୃ.୨୩ ।

(୭) ଓଡ଼ିଆ ସାହିତ୍ୟକୁ ଚିକିଟୀ ରାଜବଂଶର ଦାନ- ପଣ୍ଡିତ ନୀଳମଣି ମିଶ୍ର, 'ଝଙ୍କାର', ଅକ୍ଟୋବର ୧୯୬୦ ଠାରୁ ଫେବୃୟାରୀ ୧୯୬୧ ଯାଏଁ ।

ଯଦୁମଣି ରାଉତରାୟ ('ରାଜେନ୍ଦ୍ର' ପଦବୀ ପ୍ରାପ୍ତ ହେଲେ), ମଧୁସୂଦନ ରଜେନ୍ଦ୍ର- କୁଳମଣି ରାଜେନ୍ଦ୍ର- କୃଷ୍ଣଚନ୍ଦ୍ର ରାଜେନ୍ଦ୍ର- ପୀତାମ୍ବର ରାଜେନ୍ଦ୍ର- ଗୋବିନ୍ଦ ଚନ୍ଦ୍ର ରାଜେନ୍ଦ୍ର- କୁଳମଣି ରାଜେନ୍ଦ୍ର (୨) - ବୃନ୍ଦାବନ ଚନ୍ଦ୍ର ରାଜେନ୍ଦ୍ର- ଜଗନ୍ନାଥ ରାଜେନ୍ଦ୍ର- ବିଶ୍ୱମ୍ଭର ରାଜେନ୍ଦ୍ର- କିଶୋର ଚନ୍ଦ୍ର ରାଜେନ୍ଦ୍ର- ରାଧାମୋହନ ରାଜେନ୍ଦ୍ର ।

ରାଧାମୋହନ ଚିକିଟୀ ରାଜବଂଶର ପ୍ରତିଷ୍ଠାତା ଓ ତାଙ୍କର ସମୟ ଯାହା ଲେଖିଛନ୍ତି ସେଥିରେ ସନ୍ଦେହ ରହୁଛି । ସେ ଲେଖିଛନ୍ତି :

''ଅଷ୍ଟଶତ ତିନି ଶକାବ୍ଦେ ପୁରୁଷୋତ୍ତମ ରାଜାଙ୍କ ବଂଶଧର
ସରଦାର କେଶବ ନାମକ ବୀର
କୋଠାରୀଙ୍କି ସେବି ଲଭି ବର
ଏ ରାଜ୍ୟକୁ ଦେଇ ଚିକ୍ରିଟୀ ନାମ
ବୋଦାଗିରୀ ଦୂର୍ଗେ କଲେ ବିଶ୍ରାମ ।

× × ×

ସେ ବଂଶର ଷୋଡ଼ଶ ପୁରୁଷରେ
ଯଦୁମଣି ରାଉତରାୟ ହେଲେ ।''

ଏହି 'ପୁରୁଷୋତ୍ତମ ରାଜା' କିଏ ଜଣାପଡୁ ନାହିଁ । ଇତିହାସରେ ସେହି ସମୟରେ ଏହି ନାମରେ କିଏ ରାଜା ଥିବା ଜଣାଯାଉ ନାହିଁ । ଶକାବ୍ଦ ୮୦୩ (ଅର୍ଥାତ୍ ଖ୍ରୀଷ୍ଟାବ୍ଦ ୮୮୧)ରେ ରାଜା ପୁରୁଷୋତ୍ତମଙ୍କ ବଂଶଧର ସରଦାର କେଶବ କୋଠାରୀ ଠାକୁରାଣୀ (ଚିକିଟୀ ରାଜବଂଶର ଇଷ୍ଟଦେବୀ)ଙ୍କୁ ସେବାକରି ଚିକିଟୀ ରାଜ୍ୟ ଆରମ୍ଭ ବା ପ୍ରତିଷ୍ଠା କଲେ, ଏବଂ ତାଙ୍କର ଷୋଡ଼ଶ ପୁରୁଷରେ ଯଦୁମଣି ରାଉଚରାୟ ରାଜା ହେଲେ ବୋଲି ରାଧାମୋହନ ଲେଖିଛନ୍ତି । ସେ 'ପ୍ରେମ ମଞ୍ଜରୀ'ରେ ପ୍ରଦାନ କରିଥିବା ରାଜତ୍ୱ କାଳକୁ ହିସାବ କଲେ ପ୍ରଥମ ରାଜା କେଶବଙ୍କଠାରୁ ଷୋଡ଼ଶ ରାଜା ଯଦୁମଣିଙ୍କ ରାଜତ୍ୱ ସମୟ ଅବଧି ହେଉଛି ପ୍ରାୟ ୮୦୦ ବର୍ଷ । ସପ୍ତଦଶ ରାଜା ମଧୁସୂଦନଙ୍କଠାରୁ ୨୯ଶ ରାଜା ସଚ୍ଚିଦାନନ୍ଦ (ରାଧାମୋହନଙ୍କ ନାତି)ଙ୍କ ରାଜତ୍ୱ ଯାଏଁ ହିସାବ କଲେ ପ୍ରାୟ ୩୦୦ ବର୍ଷ ହେଉଛି । ପଣ୍ଡିତ ନୀଳମଣି ମିଶ୍ର ଯଥାର୍ଥରେ ସନ୍ଦେହ ପ୍ରକାଶ କରି ଲେଖିଛନ୍ତି ଯେ, ଯଦୁମଣି ରାଉତରାୟ ରାଜେନ୍ଦ୍ର)ଙ୍କ ରାଜତ୍ୱ ପ୍ରାୟ ଖ୍ରୀ:ଅ: ୧୬୬୨ରେ ଆରମ୍ଭ ହୋଇ ବର୍ତ୍ତମାନ ରାଜା ସଚ୍ଚିଦାନନ୍ଦ ରାଜେନ୍ଦ୍ରଙ୍କ ପର୍ଯ୍ୟନ୍ତ ପ୍ରାୟ ୨୯୯ ବର୍ଷ ଭୋଗ ହେଲା । ଯେତେବେଳେ ୧୩ ପୁରୁଷ ଭୋଗ କରିବାକୁ ମାତ୍ର ୨୯୯ ବର୍ଷ ବିତିଲା, ସେତେବେଳେ ୧୫ ପୁରୁଷ ଭୋଗ କରିବାକୁ ପ୍ରାୟ ୮୦୦ ବର୍ଷ ବିତିବା ଅସମ୍ଭବ ପରି ମନେହୁଏ । ତେଣୁ 'ପ୍ରେମ ମଞ୍ଜରୀ' କାବ୍ୟରେ ପ୍ରଦତ୍ତ ୮୦୩ ଶକାବ୍ଦ ସମ୍ବନ୍ଧରେ ସନ୍ଦେହ ଜାତ ହୁଏ ।

ପଣ୍ଡିତ ମିଶ୍ର ସନ୍ଦେହ ପ୍ରକାଶ କରି ପୁଣି ଲେଖିଛନ୍ତି ଯେ ଅଷ୍ଟମ, ନବମ ଶତାବ୍ଦୀରେ 'ସର୍ଦ୍ଦାର' ଉପାଧି ପ୍ରଚଳିତ ଥିବାର ପ୍ରମାଣ ପ୍ରାୟ ଉପଲବ୍ଧ ହୁଏ ନାହିଁ । ତାହା ପରବର୍ତ୍ତୀ କାଳର ମୋଗଲ ଦରବାରର ଉପାଧି। ତେଣୁ ଚିକିଟୀ ରାଜବଂଶର ପ୍ରତିଷ୍ଠାତା କେଶବଙ୍କ ଉପାଧି 'ସର୍ଦ୍ଦାର' ହୋଇଥିବା ସନ୍ଦେହଜନକ । ପୁଣି ନବମ ଶତାବ୍ଦୀରୁ ଯେଉଁ ରାଜବଂଶର ଅଭ୍ୟୁଦୟ ହେଲାଣି, ସେ ବଂଶର ରାଜାମାନଙ୍କ ପ୍ରଦତ୍ତ ତାମ୍ର ଶାସନାଦି ନିଶ୍ଚୟ ମିଳିବାର କଥା; କିନ୍ତୁ ସେ ଅଞ୍ଚଳରୁ ଅନ୍ୟାନ୍ୟ ପ୍ରାଚୀନ ରାଜବଂଶର ତାମ୍ର ଶାସନ ଉପଲବ୍ଧ ହେଉଥିଲେ ହେଁ ଚିକିଟୀ ରାଜବଂଶର କୌଣସି ରାଜା (୧୬ଶ ଶତାବ୍ଦୀର ପୂର୍ବବର୍ତ୍ତୀ)ଙ୍କ ପ୍ରଦତ୍ତ ତାମ୍ର ଶାସନ ଅଦ୍ୟାପି ଲୋକଲୋଚନକୁ ଆସିନାହିଁ ।

ପଣ୍ଡିତ ମିଶ୍ର କହିଛନ୍ତି ଯେ ଚିକିଟୀ ରାଜବଂଶର ଉତ୍ପତ୍ତି ସମ୍ବନ୍ଧରେ ଯେଉଁ କିମ୍ବଦନ୍ତୀ ଅଛି ଏହା ଯେ ଗୋଟିଏ ପ୍ରାଚୀନ ଜନଶ୍ରୁତି ଏହାର ପ୍ରମାଣ ଟି.ଜେ.ମଲଟ୍‌ବି (T.J.Maltby)ଙ୍କର ଗଞ୍ଜାମ ଜିଲ୍ଲା ମ୍ୟାନୁଏଲ (The Ganjam District Manual)ରୁ ମିଳେ । ସେଥିରେ ଚିକିଟୀ ସମ୍ବନ୍ଧରେ ଉଲ୍ଲେଖ ଅଛି :

The name of the present Zamindar is Sri Viswambhara Rajendra Deo... A king of Cuttack is said to have granted this Zamindari to one Kasano, a Sardar, who conquered the country from the aboriginal wild tribes and built a fort in A.D. 881.

(The Ganjam District Mannual (Page 21)- T.J.Maltby)

ଏ କିମ୍ବଦନ୍ତୀ ମୂଳରେ ନିଶ୍ଚୟ କୌଣସି ସତ୍ୟର ଆଭାସ ରହିଛି, ଅନ୍ୟଥା ଏତେବଡ କଳ୍ପନା କରାଯିବା ସମ୍ଭବ ନୁହେଁ ବୋଲି ପଣ୍ଡିତ ମିଶ୍ର କହିଛନ୍ତି । କଳିଙ୍ଗର ପ୍ରାଚୀନ ଗଙ୍ଗବଂଶ, ଉତ୍ତରାଞ୍ଚଳରେ କ୍ରମେ ପ୍ରତିପତ୍ତିଶାଳୀ ହୋଇଥିବା ଭୌମକର ବଂଶର ଅଗ୍ରଗତିର ରୋଧ ନିମିତ୍ତ କଙ୍ଗୋଦ ଓ କଳିଙ୍ଗର ମଧ୍ୟବର୍ତ୍ତୀ ସ୍ଥାନ 'ଶ୍ୱେତକ'ରେ ଜୟବର୍ମଦେବ ନାମକ ଜଣେ ବ୍ୟକ୍ତିଙ୍କୁ କେତେକ କ୍ଷମତା ଦେଇ ବସାଇଲେ । ଜୟବର୍ମ ଦେବ ପ୍ରାଚୀନ ଗଙ୍ଗବଂଶ ଅଧୀନରେ ନିଜକୁ 'ରାଣକ' (ବା ଅଧୀନସ୍ଥ) ବ୍ୟକ୍ତି ବୋଲି ପରିଚିତ କରାଇ ଶ୍ୱେତକରେ ରାଜତ୍ୱ କଲେ । ପରେ ନାନା କାରଣବଶତଃ ଗଙ୍ଗମାନଙ୍କ ସହିତ ତାଙ୍କର ଶତ୍ରୁତା ଜାତ ହେଲା । ଜୟବର୍ମଦେବ ଭୌମକର ବଂଶୀୟ ରାଜାଙ୍କ ସହିତ ବନ୍ଧୁତା ସ୍ଥାପନ କରି, ତାଙ୍କର ସହାୟତାରେ ଶ୍ୱେତକକୁ ସ୍ୱାଧୀନ ରାଜ୍ୟରେ ପରିଣତ କରାଇଲେ ଓ 'ରାଣକ' ବଦଳରେ ନିଜେ 'ମହାରାଜା' ଉପାଧି ବହନ କରିଥିଲେ ବୋଲି ଗବେଷକ ସତ୍ୟନାରାୟଣ ରାଜଗୁରୁ ଅନୁମାନ କରନ୍ତି (Inscriptions of Orissa, Vol.II, Page 365) ।[୮] ଡକ୍ଟର ଦଣ୍ଡପାଣି ବେହେରାଙ୍କ 'ଓଡ଼ିଶା ଇତିହାସ'ରେ ଉଲ୍ଲେଖ ଅଛି ଯେ, ମଧ୍ୟଯୁଗୀୟ ଓଡ଼ିଶାରେ ବହୁ ସାମନ୍ତ କରଦ ରାଜ୍ୟ ଜନ୍ମଲାଭ କରିଥିଲା । ସେ ସବୁ ମଣ୍ଡଳ ରାଜ୍ୟବର୍ଗ ଭାବେ ବିଦିତ ଥିଲେ । ସେମାନଙ୍କ ମଧ୍ୟରେ ଶ୍ୱେତକ ମଣ୍ଡଳ ଅନ୍ୟତମ । "ଅଧୁନା ଗଜପତି ଜିଲ୍ଲାର ମହେନ୍ଦ୍ରଗିରିର ଉତ୍ତର ପୂର୍ବ

(୮) ତତ୍ରୈବ

ଭାଗରେ 'ଶ୍ୱେତକାଧିରାଜ୍ୟ' ବା 'ଶ୍ୱେତକ ମଣ୍ଡଳ' ରାଜ୍ୟ ଅବସ୍ଥିତ ଥିଲା। ଶ୍ୱେତକ ଗଙ୍ଗ ନାମକ ଏକ କଳିଙ୍ଗ ଗଙ୍ଗ ରାଜବଂଶର ଏକ ଶାଖା ରାଜବଂଶ ସେଠାରେ ଶାସନ କରୁଥିଲେ। ସେମାନେ ତୋଷାଳୀ ରାଜ୍ୟର ଭୌମକର ଶାସକମାନଙ୍କର ଅଧୀନରେ ସାମନ୍ତ ରାଜା ଭାବେ ଶାସନ କରୁଥିଲେ। ଏହି ରାଜ୍ୟର ରାଜଧାନୀ ଶ୍ୱେତକ ନଗର ଅବା ଅଧୁନା ଚିକିଟୀ ସହର''।[୯] ସୁତରାଂ ଜୟବର୍ମ ଦେବ ଶ୍ୱେତକକୁ ସ୍ୱାଧୀନ କରାଇଥିଲେ କି ଭୌମକର ରାଜାଙ୍କ ଅଧୀନରେ ସାମନ୍ତ ରାଜା ଥିଲେ, ତାହା ଗବେଷଣାସାପେକ୍ଷ।

ବିଶିଷ୍ଟ ଐତିହାସିକ ଡକ୍ଟର ନବୀନ କୁମାର ସାହୁ, ଡକ୍ଟର ପି.କେ.ମିଶ୍ର ଓ ଡକ୍ଟର ଜେ.କେ.ସାହୁଙ୍କ ଓଡ଼ିଶା ଇତିହାସ (History of Orissa) ପୁସ୍ତକରେ 'ଶ୍ୱେତକ-ମଣ୍ଡଳ' ବିଷୟରେ କୁହାଯାଇଛି :

In A.D.8th century, a branch of the Eastern Gangas established itself in the north east of Mahendragiri and named the territory Svetakadhirajya which may be classed with the other mandal states of the period... Its capital was Svetaka or Vijaya-Svetakapura which is identified with modern Chikiti... the Svetaka Gangas are apparently the feudatories of the Bhaumakaras and many of them used in their official records the era founded by the Bhaumas. The earliest known Ganga king of Svetaka is Jayavarmandeva..."[୧୦]

ଉଲ୍ଲିଖିତ ଐତିହାସିକମାନଙ୍କର ବିବରଣୀରୁ ପ୍ରତୀୟମାନ ହୁଏ ଯେ ଶ୍ୱେତକ (ଚିକିଟୀର) ପ୍ରଥମ ରାଜା ଥିଲେ ଜୟବର୍ମ ଦେବ। ଶ୍ୱେତକ ଗଙ୍ଗର ରାଜାମାନେ ଭୌମକର ରାଜାମାନଙ୍କ ଅଧୀନରେ ସାମନ୍ତ ରାଜା ଥିଲେ।

ଆଉ ଜଣେ ଐତିହାସିକ ଆର. ସୁବ୍ରମନ୍ୟମ୍ ଲେଖିଛନ୍ତି ଯେ, [୧୧] କିମିଡି (ଖେମଣ୍ଡି)ର ଦକ୍ଷିଣ ପୂର୍ବରେ ଚିକିଟୀ ଜମିଦାରୀ ଅବସ୍ଥିତ। ଏହାର ପ୍ରତିଷ୍ଠାତା ଥିଲେ ଖଣ୍ଡାଏତ ବଂଶୀୟ। ଗଙ୍ଗରାଜବଂଶର ଶେଷ ରାଜା ଭାନୁଦେବ (ଭାନୁଦେବ-୪ର୍ଥ, ଖ୍ରୀ: ୧୪୧୪-୧୪୩୫)ଙ୍କର ରାଜତ୍ୱ ସମୟରେ ଏହି ଖଣ୍ଡାଏତ ବଂଶର ଜନୈକ ରାଜା (ଚିକିଟୀର) ରାମଚନ୍ଦ୍ର ରାଉତରାୟ ଓ୍ୱାଡା ପଦ୍ରା (ପୋଡ଼ା ପଦର ?) ଠାରେ ଏକ ଦୁର୍ଗ ନିର୍ମାଣ କରିଥିଲେ। ସେ ୪୨ବର୍ଷ ଶାସନ କରିଥିଲେ। ରାମଚନ୍ଦ୍ର ରାଉତରାୟଙ୍କର ପୂର୍ବରୁ ଖଣ୍ଡାଏତ କେଶବ ଓ ରାମଚନ୍ଦ୍ରଙ୍କ ପରେ

(୯) ଓଡ଼ିଶା ଇତିହାସ- ଡକ୍ଟର ଦଣ୍ଡପାଣି ବେହେରା, ପ୍ରତୀଚି ପ୍ରକାଶନ, ବ୍ରହ୍ମପୁର, ପ୍ରଥମ ମୁଦ୍ରଣ, ୨୦୦୨
(୧୦) History of Orissa- Dr. N.K.Sahu, Dr. P.K.Mishra and Dr. J.K.Sahu, 7th edition, 2001, Nalanda, Cuttack.
(୧୧) Suryavansi Gajapathis of Orissa- R.Subramanyam; Pub., Andhra University, 1957.

ନାରାୟଣ ରାଉତରାୟ, ନରସିଂହ ରାଉତରାୟ ଓ ଲୋକନାଥ ରାଉତରାୟ ରାଜତ୍ୱ କରିଥିଲେ। ନାରାୟଣ ରାଉତରାୟ ଗଜପତି ପୁରୁଷୋତ୍ତମ ଦେବ (ଖ୍ରୀଃ ୧୪୬୮-୧୪୯୭)ଙ୍କର ଅତ୍ୟନ୍ତ ବିଶ୍ୱସ୍ତ ସାମନ୍ତ ରାଜା ଥିଲେ। ସେ ପୁରୁଷୋତ୍ତମ ଦେବଙ୍କ ସହିତ ତାଙ୍କର ଅଭିଯାନରେ ଯୋଗଦେଇ ଅନେକ ଯୁଦ୍ଧରେ ଭାଗ ନେଇଥିଲେ। ତାଙ୍କର ବୀରତ୍ୱ, ବୁଦ୍ଧିମତ୍ତା ଓ ବିଶ୍ୱସ୍ତତାରେ ସନ୍ତୁଷ୍ଟ ହୋଇ ପୁରୁଷୋତ୍ତମ ଦେବ ତାଙ୍କୁ 'ବେହେରା ଖଣ୍ଡାଏତ' (Chief of The Khandayats) ପଦବୀ ଦେଇଥିଲେ।

ଏଠାରେ ସନ୍ଦେହ ଜାତ ହୁଏ ଯେ, ଉଲ୍ଲିଖିତ କେଶବ ଖଣ୍ଡାଏତ ବା ଖଣ୍ଡାଏତ କେଶବ, ରାଧାମୋହନ ରାଜେନ୍ଦ୍ର ଦେବ ପ୍ରଦାନ କରିଥିବା ତାଙ୍କ ବଂଶାବଳୀର ପ୍ରଥମ ରାଜା ସରଦାର କେଶବ, ଯେ କି ବୋଦାଗିରିଠାରେ ଏକ ଦୁର୍ଗ ସ୍ଥାପନ କରିଥିଲେ ସେ ନୁହଁନ୍ତି ତ ? କିନ୍ତୁ ସେ ତ ୮୦୩ ଶକାବ୍ଦ ବା ୮୮୧ରେ ଚିକିଟୀ ଅଧୀଶ୍ୱର ହୋଇ ନାହାନ୍ତି। ସେ ହୋଇଥିଲେ ରାମଚନ୍ଦ୍ର ରାଉତରାୟଙ୍କ ଠିକ୍ ପୂର୍ବରୁ, ଅର୍ଥାତ୍ ଆନୁମାନିକ ଚତୁର୍ଦ୍ଦଶ ଶତାବ୍ଦୀରେ।

ଚିକିଟୀ ରାଜ୍ୟର ପ୍ରତିଷ୍ଠା ସମୟ, ଏହି ରାଜ୍ୟର ଆଦ୍ୟ ରାଜାମାନଙ୍କର ରାଜତ୍ୱକାଳ ସମ୍ପର୍କରେ ପ୍ରକୃତ ତଥ୍ୟ ଉପଲବ୍ଧ ହେଉନାହିଁ। ଏ ବାବଦରେ ଅଧିକ ଅନୁଧ୍ୟାନ, ବିସ୍ତୃତ ଗବେଷଣା ଆବଶ୍ୟକ।

ସେ ଯାହାହେଉନା କାହିଁକି, ଏହି 'ମୁଖବନ୍ଧ'ର ଲେଖକ ୧୯୮୨ ମସିହାରେ ବ୍ରହ୍ମପୁରର ବିଶିଷ୍ଟ ସାମ୍ବାଦିକ ତଥା ଗବେଷକ ଏନ୍.ଏସ୍.ଆୟାଙ୍ଗାର (ଏବେ ସ୍ୱର୍ଗବାସୀ)ଙ୍କୁ ଭେଟି ତାଙ୍କଠାରୁ ଚିକିଟୀ ରାଜବଂଶର ବିବରଣ ସଂଗ୍ରହ କରିଥିଲା। ତାଙ୍କଠାରୁ ପ୍ରାପ୍ତ ତଥ୍ୟ, ଏବଂ ଅନ୍ୟାନ୍ୟ ଉତ୍ସରୁ ସଂଗୃହୀତ ତଥ୍ୟ ଭିତ୍ତିରେ ନିମ୍ନମତେ ଚିକିଟୀ ରାଜବଂଶ ବିବରଣୀ ପ୍ରଦାନ କରାଗଲା। ଅବଶ୍ୟ ଏହି ବିବରଣ ଯେ ସମ୍ପୂର୍ଣ୍ଣ ଠିକ୍ ତାହା କୁହାଯାଇ ପାରିବ ନାହିଁ।

| ରାଜାଙ୍କ ନାମ | ରାଜତ୍ୱ କାଳ(ଖ୍ରୀଷ୍ଟ ପର) |
|---|---|
| କେଶବ ରାଉତରାୟ (ଓରଫ୍ କର୍ଦ୍ଦମ ସିଂହ ରାଉତରାୟ) - | ୮୮୧-୯୪୦ |
| ବଳଭଦ୍ର ରାଉତରାୟ | ୯୪୧-୯୯୭ |
| ମାଧବ ରାଉତରାୟ | ୯୯୮-୧୦୫୯ |
| ଲଙ୍ଗୁଳି ରାଉତରାୟ | ୧୦୬୦-୧୦୯୪ |
| ମୋହନ ରାଉତରାୟ | ୧୦୯୫-୧୧୪୩ |
| ବଳରାମ ରାଉତରାୟ | ୧୧୪୪-୧୧୯୭ |
| ବିଶ୍ୱନାଥ ରାଉତରାୟ | ୧୧୯୮-୧୨୪୯ |
| ହରିଶରଣ ରାଉତରାୟ | ୧୨୫୦-୧୨୭୨ |
| ରଘୁନାଥ ରାଉତରାୟ - | ୧୨୭୩-୧୩୧୩ |

| | |
|---|---|
| ଦୀନବନ୍ଧୁ ରାଉତରାୟ | ୧୩୧୪-୧୩୬୪ |
| ଗୋପୀନାଥ ରାଉତରାୟ | ୧୩୬୫-୧୪୧୭ |
| ରାମଚନ୍ଦ୍ର ରାଉତରାୟ | ୧୪୧୮-୧୪୬୪ |
| ନାରାୟଣ ରାଉତରାୟ | ୧୪୬୫-୧୫୩୭ |
| ନରସିଂହ ରାଉତରାୟ | ୧୫୩୮-୧୫୮୩ |
| ଲୋକନାଥ ରାଉତରାୟ | ୧୫୮୪-୧୬୩୩ |
| ଯଦୁମଣି ରାଉତରାୟ | ୧୬୩୪-୧୬୯୧ (ପରେ 'ରାଜେନ୍ଦ୍ର') |
| ମଧୁସୂଦନ ରାଜେନ୍ଦ୍ର ଦେବ | ୧୬୯୨-୧୭୩୬ |
| କୁଳମଣି ରାଜେନ୍ଦ୍ର ଦେବ | ୧୭୩୭-୧୭୬୯ |
| କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବ | ୧୭୭୦-୧୭୯୦ |
| ପୀତାମ୍ବର ରାଜେନ୍ଦ୍ର ଦେବ | ୧୭୯୧-୧୮୧୯ |
| ଗୋବିନ୍ଦ୍ର ଚନ୍ଦ୍ର ରାଜେନ୍ଦ୍ର ଦେବ | ୧୮୨୦-୧୮୩୧ |
| କୁଳମଣି ରାଜେନ୍ଦ୍ର (୨ୟ) ଦେବ | ୧୮୩୨-୧୮୩୪ |
| ବୃନ୍ଦାବନ ରାଜେନ୍ଦ୍ର ଦେବ | ୧୮୩୫-୧୮୪୬ (କୁଳମଣି ୨ୟଙ୍କ ପିତୃବ୍ୟ) |
| ଜଗନ୍ନାଥ ରଜେନ୍ଦ୍ର ଦେବ | ୧୮୪୭-୧୮୫୫ |
| ବିଶ୍ୱମ୍ବର ରାଜେନ୍ଦ୍ର ଦେବ | ୧୮୫୬-୧୮୮୫ (ଜଗନ୍ନାଥଙ୍କ ଭ୍ରାତା) |
| କିଶୋରଚନ୍ଦ୍ର ରାଜେନ୍ଦ୍ର ଦେବ | ୧୮୮୬-୧୯୦୩ |
| ରାଧାମୋହନ ରାଜେନ୍ଦ୍ର ଦେବ | ୧୯୦୩-୧୯୨୩ |
| ଗୌରଚନ୍ଦ୍ର ରାଜେନ୍ଦ୍ର ଦେବ | ୧୯୨୩-୧୯୩୪ |
| ସଚ୍ଚିଦାନନ୍ଦ ରାଜେନ୍ଦ୍ର ଦେବ | ୧୯୪୫ |

ପଣ୍ଡିତ ନୀଳମଣି ମିଶ୍ର ଲେଖିଛନ୍ତି- ଗୌରଚନ୍ଦ୍ର ରାଜେନ୍ଦ୍ରଙ୍କୁ ଖ୍ରୀ: ୧୯୨୩ରେ ରାଜ୍ୟଭାର ଅର୍ପଣ କରି ରାଧାମୋହନ ବାନପ୍ରସ୍ଥ ଗ୍ରହଣ କରିଥିଲେ; ମାତ୍ର ୧୯୩୪ରେ ଗୌରଚନ୍ଦ୍ରଙ୍କ ଅକାଳ ବିୟୋଗ ହେବାରୁ ସେ ପୁଣି ଫେରିଆସି ରାଜକାର୍ଯ୍ୟ ଚଳାନ୍ତେ ତାହା ବିଧିସମ୍ମତ ନୁହେଁ ବୋଲି ଆପତ୍ତି ହୋଇ ଚିକିଟୀ ରାଜ୍ୟର ପରିଚାଳନା ୧୯୩୭ରୁ ୧୯୪୫ ସାଲ ଜୁନ୍ ମାସ ୩୦ ତାରିଖ ସୁଦ୍ଧା ସରକାରଙ୍କ ହାତରେ ଥିଲା । [୧୨]

ଉପରେ ପ୍ରଦତ୍ତ ରାଜବଂଶାବଳୀର କେତେଜଣ ରାଜାଙ୍କ କ୍ଷେତ୍ରରେ ସେମାନଙ୍କ ରାଜତ୍ୱକାଳ ସମ୍ପର୍କରେ ମତାନ୍ତର ପରିଲକ୍ଷିତ ହୁଏ । ଶ୍ରୀ ଗଣେଶ ପ୍ରସାଦ ପଣ୍ଡା ଲେଖିଛନ୍ତି:

---

(୧୨) ଓଡ଼ିଆ ସାହିତ୍ୟକୁ ଚିକିଟୀ ରାଜବଂଶର ଦାନ- ପଣ୍ଡିତ ନୀଳମଣି ମିଶ୍ର, 'ଝଙ୍କାର' ଅକ୍ଟୋବର ୧୯୬୦ ଠାରୁ ଫେବୃୟାରୀ ୧୯୬୧ ଯାଏଁ ।

''ଶ୍ରୀ ବିଶ୍ୱନାଥ ରାଉତରାୟଙ୍କ ପରବର୍ତ୍ତୀ ପିଢ଼ି ଅର୍ଥାତ୍ ଅଷ୍ଟମ କରଦ ରାଜାଙ୍କ ସମ୍ପର୍କରେ ଏ ଯାବତ୍ କୌଣସି ତଥ୍ୟ ମିଳେ ନାହିଁ । ସଠିକ୍ ପ୍ରମାଣ ପ୍ରାପ୍ତିପରେ ଦ୍ୱିତୀୟ ସଂସ୍କରଣରେ ଏ ସମ୍ପର୍କରେ ବର୍ଣ୍ଣନା କରାଯିବ । (୧୩)

## ସାହିତ୍ୟିକ ରାଜାଗଣ ଓ ସେମାନଙ୍କ ସାହିତ୍ୟ କୃତି

ଡଃ ବେଣୀମାଧବ ପାଢ଼ୀ କହିଛନ୍ତିः ''ଦିନ ଥିଲା, ଯେତେବେଳେ ଓଡ଼ିଆ ସାହିତ୍ୟ ଉତ୍କଳର ବିଭିନ୍ନ ପ୍ରାନ୍ତୀୟ ରାଜା ମହାରାଜାମାନଙ୍କ ପୃଷ୍ଠପୋଷକତାରେ କେବଳ ବଞ୍ଚି ରହିଥିଲା, ତାହା ନୁହେଁ, ପୁଷ୍ପିତ ଓ ଫଳିତ ହୋଇ ସର୍ବଭାରତୀୟ ସ୍ତରରେ ଏକ ସମ୍ମାନିତ ଆସନ ଲାଭ କରିଥିଲା । ରାଜା ମହାରାଜା ଓଡ଼ିଆ ସାହିତ୍ୟର କେବଳ ପୃଷ୍ଠପୋଷକ ନଥିଲେ, ସେମାନଙ୍କ ମଧ୍ୟରୁ ବହୁ ସଂଖ୍ୟାରେ ଉତ୍ତମ ସାହିତ୍ୟର ସ୍ରଷ୍ଟା ବି ଥିଲେ । ... ଗଞ୍ଜାମ ଜିଲ୍ଲା ଚିକିଟୀ ରାଜେନ୍ଦ୍ର ପରିବାରରେ ବହୁ ରାଜା ଜନ୍ମ ଗ୍ରହଣ କରିଥିଲେ ଯେଉଁମାନଙ୍କ କୃତି ଓଡ଼ିଆ ସାହିତ୍ୟର ଏକାନେକ ବିଭାବର ପରିପୁଷ୍ଟି ସାଧନ କରି ଆସିଥିଲା ।'' (୧୪) ପଣ୍ଡିତ ନୀଳମଣି ମିଶ୍ରଙ୍କ ଭାଷାରେ ''ଦକ୍ଷିଣ ଓଡ଼ିଶାର ରାଜବଂଶମାନଙ୍କ ମଧ୍ୟରୁ ପାରଳାଖେମଣ୍ଡି, ବଡ଼ଖେମଣ୍ଡି, ଧରାକୋଟ, ଘୁମୁଷର, ଖଲ୍ଲିକୋଟ, ଚିକିଟୀ ଆଦି ରାଜବଂଶର ଓଡ଼ିଆ ସାହିତ୍ୟକୁ ଦାନ ଅତୁଳନୀୟ ବୋଲି କହିଲେ ଆଦୌ ଅତ୍ୟୁକ୍ତି ହେବ ନାହିଁ ।'' ପ୍ରାଚୀନ ରାଜବଂଶ ମଧ୍ୟରେ ଦକ୍ଷିଣ ଓଡ଼ିଶାର ସାମନ୍ତ ରାଜାମାନେ ରାଜ ଦରବାରରେ ବହୁ ପଣ୍ଡିତମାନଙ୍କୁ ସ୍ଥାନ ଦେଇ ସଂସ୍କୃତ ଓ ଓଡ଼ିଆ ଭାଷା ଓ ସାହିତ୍ୟର ଚର୍ଚ୍ଚା କରାଇବା ସଙ୍ଗେ ସଙ୍ଗେ ପଣ୍ଡିତମାନଙ୍କଦ୍ୱାରା ଓ ନିଜ ସାଧନାରେ ମଧ୍ୟ ବହୁ ଗ୍ରନ୍ଥ ପ୍ରଣୟନ କରିଥିଲେ । ଚିକିଟୀ ରାଜବଂଶ ଓଡ଼ିଶାର ଏକ ପ୍ରାଚୀନ ରାଜବଂଶ ବୋଲି କୁହାଯାଏ । ଏହି ରାଜବଂଶର ରାଜାମାନେ ଆତ୍ରେୟ ଗୋତ୍ରଜ । ପଣ୍ଡିତ ମିଶ୍ର କହିଛନ୍ତି, ଏହି ରାଜାମାନଙ୍କର ସୁଦକ୍ଷ ଶାସକ ଭାବରେ ଯାହା ସୁନାମ ଥାଉନା କାହିଁକି, କେତେଖଣ୍ଡି ଅମୂଲ୍ୟ ଓଡ଼ିଆ ଗ୍ରନ୍ଥ ପ୍ରଣେତା ରୂପେ ବିଶେଷ ସୁଖ୍ୟାତି ଥିଲା ।

ଏହି ରାଜବଂଶର ସାହିତ୍ୟକୃତି ସମ୍ପର୍କରେ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦାନ କରାଗଲା ।

## ଲୋକନାଥ ରାଉତରାୟ

ପଞ୍ଚଦଶ ରାଜା । ଏହି ରାଜବଂଶର ସେ ପ୍ରଥମ କବି ବା ଲେଖକ । ଅଦ୍ୟାବଧି ତାଙ୍କର ଗୋଟିଏ କାବ୍ୟ 'ଲାବଣ୍ୟ ତରଙ୍ଗିଣୀ' ଆବିଷ୍କୃତ ହୋଇଛି ।

---

(୧୩) ଚିକିଟୀ ଇତିହାସ ଓ ଅଧିଷ୍ଠାତ୍ରୀ ମା' ବାଳକୁମାରୀ- ଶ୍ରୀ ଗଣେଶ ପ୍ରସାଦ ପଣ୍ଡା, ପ୍ରଥମ ମୁଦ୍ରଣ, ଅକ୍ଟୋବର, ୧୯୯୯ ।

(୧୪) ରାଜକବି ରାଧାମୋହନ (ପ୍ରବନ୍ଧ)- ଡକ୍ଟର ବେଣୀମାଧବ ପାଢ଼ୀ, 'ରୂପାୟନ', ମେ-ଜୁନ୍, ୧୯୮୧

## ଯଦୁମଣି ରାଉତରାୟ

ସେ ଏହି ରାଜବଂଶର ଷୋଡ଼ଶ ରାଜା, ଯେ କି ସଂସ୍କୃତ ଓ ଓଡ଼ିଆରେ ସୁପଣ୍ଡିତ ଥିଲେ। ସେ ଓଡ଼ିଆ ଓ ସଂସ୍କୃତ ଭାଷାରେ କବି କଳ୍ପଦ୍ରୁମ ନାମକ ଏକ ଅଭିନବ ଅଳଙ୍କାର ଗ୍ରନ୍ଥ ରଚନା କରିଛନ୍ତି। ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ତରଫରୁ ଏହା ୧୯୭୨ ମସିହାରେ ପ୍ରକାଶିତ ହୋଇଛି। ଗ୍ରନ୍ଥଟି ଆଠଟି ପ୍ରକାଣ୍ଡ ବା ଭାଗରେ ବିଭକ୍ତ। ପ୍ରଥମ ଛଅଟି ପ୍ରକାଣ୍ଡ ଓଡ଼ିଆ ଭାଷାରେ କେତୋଟି ଭାଗରେ ରଚିତ ଏବଂ ସପ୍ତମ ଓ ଅଷ୍ଟମକାଣ୍ଡ ବିଭିନ୍ନ ସଂସ୍କୃତ ଛାନ୍ଦରେ ରଚିତ। କବି କଳ୍ପଦ୍ରୁମ ରାଜକବି ଯଦୁମଣିଙ୍କ ଏକ ଅନବଦ୍ୟ କୃତି। ଏଥିରେ ଲକ୍ଷଣଗୁଡ଼ିକର ଉଦାହରଣ ରହିଥିଲେ ଏହା ଏକ ପୂର୍ଣ୍ଣାଙ୍ଗ ଓଡ଼ିଆ ଅଳଙ୍କାର ଗ୍ରନ୍ଥ ରୂପେ ବିବେଚିତ ହୋଇଥାନ୍ତା। ପୂର୍ଣ୍ଣାଙ୍ଗ ନହେଲେ ମଧ୍ୟ ଏହା ଓଡ଼ିଆ ଭାଷାରେ ରଚିତ ସର୍ବପ୍ରଥମ ଅଳଙ୍କାର ଗ୍ରନ୍ଥ ରୂପେ ବର୍ତ୍ତମାନ ଗ୍ରହଣୀୟ ବୋଲି ଐତିହାସିକ କେଦାରନାଥ ମହାପାତ୍ର କହିଛନ୍ତି।[୧୫]

ଯଦୁମଣିଙ୍କୁ ତତ୍‌କାଳୀନ ଉତ୍କଳର ଗଜପତି ମହାରାଜା ଦିବ୍ୟସିଂହ ଦେବ (୧ମ) (ଖ୍ରୀ.ଅ. ୧୬୮୯-୧୭୧୬) 'ରାଜେନ୍ଦ୍ର ଦେବ' ପଦବୀରେ ମଣ୍ଡିତ କରିଥିଲେ। ସେ ଓ ତାଙ୍କର ପରବର୍ତ୍ତୀ ରାଜାମାନେ 'ରାଉତରାୟ' ପରିବର୍ତ୍ତେ 'ରାଜେନ୍ଦ୍ର ଦେବ' ସଂଜ୍ଞାରେ ପରିଚିତ ହେଲେ।

## କୁଳମଣି ରାଜେନ୍ଦ୍ର ଦେବ

ସେ ଥିଲେ ଯଦୁମଣି ରାଉତରାୟ (ରାଜେନ୍ଦ୍ର ଦେବ)ଙ୍କ ନାତି। ସେ ଜଣେ 'ସାହିତ୍ୟ ରସ ପଣ୍ଡିତ' ରୂପେ ଖ୍ୟାତି ଲାଭ କରିଥିଲେ ମଧ୍ୟ ତାଙ୍କର କେତେକ ଚଉପଦୀ ବ୍ୟତୀତ ଅନ୍ୟ କୌଣସି ଗ୍ରନ୍ଥ ଅଦ୍ୟାବଧି ମିଳିନାହିଁ।

## କୃଷ୍ଣଚନ୍ଦ୍ର ରାଜେନ୍ଦ୍ର ଦେବ

କୁଳମଣିଙ୍କ ପରେ କୃଷ୍ଣଚନ୍ଦ୍ର ରାଜା ହେଲେ। ତାଙ୍କର ସଂସ୍କୃତ ଓ ଓଡ଼ିଆରେ ଯଥେଷ୍ଟ ଜ୍ଞାନ ଥିଲା। ସେ ଆର୍ଷ ରାମାୟଣ ଓ ରାମଲୀଳା ରଚନା କରିଥିଲେ। ପ୍ରଥମଟି ବାଲ୍ମୀକି ରାମାୟଣର ଅବିକଳ ଓଡ଼ିଆ ଅନୁବାଦ କରିଥିଲେ। ଅନୁବାଦରେ ତାଙ୍କୁ ବିଭିନ୍ନ ପଣ୍ଡିତ ସାହାଯ୍ୟ କରିଥିଲେ।

ଅନ୍ୟ ଗ୍ରନ୍ଥଟି ଏକ ରାମ କାବ୍ୟ।

## ପୀତାମ୍ବର ରାଜେନ୍ଦ୍ର ଦେବ

କୃଷ୍ଣଚନ୍ଦ୍ରଙ୍କ ଜ୍ୟେଷ୍ଠପୁତ୍ର ପୀତାମ୍ବର 'ଖଣ୍ଡ ରାମାୟଣ' ଓ 'ରାମଲୀଳା' ରଚନା କରିଥିଲେ।

(୧୫) ଖୁର୍ଦ୍ଧା ଇତିହାସ- କେଦାର ନାଥ ମହାପାତ୍ର, ଦ୍ୱିତୀୟ ସଂସ୍କରଣ ଗ୍ରନ୍ଥ ମନ୍ଦିର, କଟକ।

ତାଙ୍କର ଏହି 'ରାମଲୀଳା' ଗଞ୍ଜାମ, ଜୟପୁର ଓ କଳାହାଣ୍ଡି ଅଞ୍ଚଳରେ ଅତ୍ୟନ୍ତ ଲୋକପ୍ରିୟ ଥିଲା । ଲୋକ ମୁଖରେ ଏହା 'ଚିକିଟୀ ରାମଲୀଳା' ନାମରେ ଖ୍ୟାତ ହୋଇଥିଲା । ଗଞ୍ଜାମର ଘୁମୁସର, ଧରାକୋଟ ଓ ଚିକିଟୀ ରାଜ୍ୟର ଓଡ଼ିଶାର ରାମ ସାହିତ୍ୟକୁ ଦାନ ଅତୁଳନୀୟ । ଗଞ୍ଜାମ ଅଞ୍ଚଳରେ ରାମଭକ୍ତିର ସ୍ରୋତ ଏପରି ନିରବଚ୍ଛିନ୍ନ ଭାବରେ କାହିଁକି ପ୍ରବାହିତ ହୋଇଥିଲା ତାହା ନିଷ୍କୟ କରିବା ଅଧିକ ଗବେଷଣା ସାପେକ୍ଷ ବୋଲି ଗବେଷକ କେଦାରନାଥ ମତ ଦେଇଛନ୍ତି ।[୧୬]

ପୀତାମ୍ବରଙ୍କ ଅନୁଜ ବଳଭଦ୍ର ଦେବ 'ସୀତା ପ୍ରେମ ତରଙ୍ଗିଣୀ' ଓ 'ଚନ୍ଦ୍ରପ୍ରଭା' କାବ୍ୟ ରଚନା କରିଥିଲେ ।

## ବିଶ୍ୱମ୍ବର ରାଜେନ୍ଦ୍ର ଦେବ

ଏ ଚିକିଟୀର ପଞ୍ଚବିଂଶ ରାଜା । ତାଙ୍କଦ୍ୱାରା ରଚିତ ଓ ତାଙ୍କ ନାମରେ ଭଣିତ ଅନେକ ଗ୍ରନ୍ଥ ରହିଛି । ଉପଲବ୍ଧ ଗ୍ରନ୍ଥମାନ ହେଲା:

**(କ) ବୀର ରାମଚନ୍ଦ୍ର ବିଳାସ :** ଏହାର ଏକ ନକଲ ଓଡ଼ିଶା ମ୍ୟୁଜିଅମ୍‌ରେ ସଂରକ୍ଷିତ ଅଛି । ଏଥିରେ ରାମାୟଣର ଆଦ୍ୟକାଣ୍ଡରୁ ଲଙ୍କାକାଣ୍ଡ ଶେଷ ସୁଦ୍ଧା ବିଷୟବସ୍ତୁ ସନ୍ନିବେଶିତ ହୋଇଛି । ଏହି ବିରାଟ ଗ୍ରନ୍ଥଟି ଭଞ୍ଜୀୟ ଶୈଳୀ ଅନୁକରଣରେ 'ବ' ଆଦ୍ୟାନୁପ୍ରାସ ଓ ଭାଗବତ ବାଣୀରେ ଲିଖିତ । ଗ୍ରନ୍ଥ ଶେଷରେ ତାହାର ରଚନା ସମୟ ଉଲ୍ଲେଖ ଅଛି । ତାହା ହେଲା ୧୨୮୮ ଫସଲି ବା ଖ୍ରୀ: ୧୮୮୧ । ଏହି ଗ୍ରନ୍ଥ ରଚନାରେ ଲୋକନାଥ ପଟ୍ଟନାୟକ (ରତ୍ନ ପଟ୍ଟନାୟକ) ରାଜାଙ୍କୁ ସାହାଯ୍ୟ କରିଥିଲେ ।[୧୭]

**(ଖ) ରଘୁନାଥ ବିଳାସ :** ଗ୍ରନ୍ଥରେ ପ୍ରାଚୀନ ରାଗ ରାଗିଣୀ ସମନ୍ୱିତ ହୋଇଛି ଏବଂ ଅନେକ ସ୍ଥଳରେ ପ୍ରାଚୀନ କବିମାନଙ୍କ ରଚନାକୁ ବୃତ୍ତ ବା ବାଣୀ ରୂପେ ବ୍ୟବହାର କରାଯାଇଛି । ଗ୍ରନ୍ଥଟି ଆଦୌ ଅଧ୍ୟାୟ କିମ୍ବା ପରିଚ୍ଛେଦରେ ବିଭକ୍ତ କରାଯାଇ ନାହିଁ; କେବଳ ଛୋଟ ଛୋଟ ଗୀତଦ୍ୱାରା ସମୁଦାୟ ରାମାୟଣର ବିଷୟବସ୍ତୁ ରଚିତ ହୋଇଛି । କବିଙ୍କ ସମୟରେ ଓଡ଼ିଶାର ରଙ୍ଗମଞ୍ଚରେ ଏହି ଧରଣର 'ଲୀଳା' ଅଭିନୀତ ହେଉଥିଲା । ଗ୍ରନ୍ଥ ଶେଷରେ ବିଶ୍ୱମ୍ବର ସୂଚନା ଦେଇଛନ୍ତି ଯେ, ଏହି ଗ୍ରନ୍ଥ[୧୮] ରଚନାରେ ତାଙ୍କର ଦୁଇ ପଣ୍ଡିତ ଗୁରୁ, କବିରାୟ ରାୟଗୁରୁ ଓ ନରେନ୍ଦ୍ର ରାୟ ବିଶେଷ ସାହାଯ୍ୟ କରିଥିଲେ ।

**(ଗ) ଉଷା ବିଳାସ :** ବାଣାସୁର କନ୍ୟା ଉଷା ଓ ଶ୍ରୀକୃଷ୍ଣଙ୍କ ପୌତ୍ର ଅନିରୁଦ୍ଧର ବିବାହ

(୧୬) ଓଡ଼ିଶାର ଶିଳ୍ପ ଓ ସାହିତ୍ୟରେ ରାମାୟଣର ପ୍ରଭାବ (ପ୍ରବନ୍ଧ)- କେଦାର ନାଥ ମହାପାତ୍ର, 'ଝଙ୍କାର', ଫେବୃଆରୀ ୧୯୫୮ ।

(୧୭) ଓଡ଼ିଆ ରାମ ସାହିତ୍ୟ- ପ. ନୀଳମଣି ମିଶ୍ର ।

(୧୮) ଓଡ଼ିଆ ସାହିତ୍ୟକୁ ଚିକିଟୀ ରାଜବଂଶର ଦାନ (ପ୍ରବନ୍ଧ)- ପ. ନୀଳମଣି ମିଶ୍ର ।

ପ୍ରସଙ୍ଗକୁ ନେଇ ଏହି ଦୃଶ୍ୟକାବ୍ୟ ରଚିତ । ଏହାକୁ ରଙ୍ଗମଞ୍ଚ ଉପଯୋଗୀ କରିବା ପାଇଁ ଏଥିରେ ସର୍ବଜନ ବୋଧଗମ୍ୟ ଭାଷା ପ୍ରୟୋଗ ହୋଇଛି । ଗ୍ରନ୍ଥଟି ଅଧ୍ୟାୟ ବା ପରିଚ୍ଛେଦରେ ବିଭକ୍ତ ନହୋଇ ୧୯୨ଟି ଗୀତରେ ସମାପ୍ତ ହୋଇଛି ।

**(ଘ) ଚୌପଦୀ ଚିନ୍ତାମଣି :** ଏଥିରେ ପ୍ରାୟ ଏକଷ୍ଠରୀଟି ରାଗରାଗିଣୀ ରହିଛି । ରାଗରାଗିଣୀ ଅବଲମ୍ବନରେ ଗୀତ ରଚନାରେ ଗ୍ରନ୍ଥଟି ପୂର୍ଣ୍ଣ ହୋଇଛି । ଅଧିକାଂଶ ଗୀତ ରାଧାକୃଷ୍ଣ ସମ୍ବନ୍ଧୀୟ । ଅଳ୍ପ କେତୋଟି ଗୀତରେ ସାଧାରଣ ନାୟକ-ନାୟିକା ବର୍ଣ୍ଣନା କରାଯାଇଛି । ଗ୍ରନ୍ଥଟିରେ ଯମକ, ଅନୁପ୍ରାସ ଆଦି ଅଳଙ୍କାର ପ୍ରୟୋଗ ହୋଇଛି । ଗ୍ରନ୍ଥର ପ୍ରଣେତା ବିଶ୍ୱମ୍ଭର କେତୋଟି ଚୌପଦୀ ନିଜ ପିତା ବୃନ୍ଦାବନ ଚନ୍ଦ୍ର ଓ ଜ୍ୟେଷ୍ଠ ଭ୍ରାତା ଜଗନ୍ନାଥଙ୍କ ନାମରେ ଭଣିତା କରିଛନ୍ତି ।

**(ଙ) ରାଧାମୋହନ ଗୀତା :** କାଳ୍ପନିକ ବିଷୟବସ୍ତୁ ଅବଲମ୍ବନରେ ରାଧାକୃଷ୍ଣଙ୍କ ଲୀଳା ଏଥିରେ ବର୍ଣ୍ଣିତ ।

**(ଚ) ରାହାସ ଲୀଳା / ଶରଦ ରାହାସ :** ରାଧା ଓ କୃଷ୍ଣଙ୍କ ପ୍ରେମ ଏବଂ ରାସଲୀଳା ଗ୍ରନ୍ଥର ବିଷୟବସ୍ତୁ । ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀ, ଭୁବନେଶ୍ୱର ୧୯୫୮ ମସିହାରେ 'ଶରଦ ରାହାସ' ପ୍ରକାଶ କରିଛନ୍ତି । ଏଥିର ଭାଷା ସରଳ । ସ୍ଥାନେ ସ୍ଥାନେ ଦେଶୀୟ ପଦ ବ୍ୟବହୃତ । ବିଭିନ୍ନ ରାଗରେ ରହିଛି କେଦାର, ଶଙ୍କରାଭରଣ, ପୁନ୍ନାଗ ଓ ବଙ୍ଗଳାଶ୍ରୀ ।

**(ଛ) ଓ (ଜ) : ବ୍ରଜ ବିହାର ଓ ଅଠଚାଳିଶି ପାଲା** ତାଙ୍କର ଅନ୍ୟାନ୍ୟ ରଚନା ବୋଲି ଜଣାଯାଏ । ଏତଦ୍ ବ୍ୟତୀତ ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ନାମରେ ଭଣିତ ଅନେକ ଖଣ୍ଡ କବିତା ଉପଲବ୍ଧ ହୁଏ ।

## କିଶୋର ଚନ୍ଦ୍ର ରାଜେନ୍ଦ୍ର ଦେବ

ବିଶ୍ୱମ୍ଭର ରାଜେନ୍ଦ୍ର ଦେବଙ୍କ ଜ୍ୟେଷ୍ଠ ପୁତ୍ର କିଶୋରଚନ୍ଦ୍ର ମଧ୍ୟ ଜଣେ ସୁଲେଖକ ଥିଲେ । ସେ ରୂପ ଗୋସ୍ୱାମୀଙ୍କ ରଚିତ ସଂସ୍କୃତ ଗ୍ରନ୍ଥ 'ବିଦ୍‌ଗଧ ମାଧବ'ର ଅବଲମ୍ବନରେ ଗୀତିନାଟ୍ୟ ରୂପରେ ଏହାକୁ ଅନୁବାଦ କରିଥିଲେ । ଏହା ୧୯୧୦ ମସିହାରେ ପ୍ରକାଶ ପାଇଥିଲା ।

**ବିଦ୍‌ଗଧ ମାଧବ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ରଚନା ହେଲା :**

**(ଖ) ବସନ୍ତ ରାହାସ (ଲୀଳା):** ଏହାକୁ ସଂଶୋଧନ କରିଥିଲେ କିଶୋରଙ୍କ ପୁତ୍ର ରାଧାମୋହନ ରାଜେନ୍ଦ୍ର ଦେବ । ଓଡ଼ିଶା ସଙ୍ଗୀତ ନାଟକ ଏକାଡ଼େମୀଦ୍ୱାରା ଏହି ଗ୍ରନ୍ଥର ପ୍ରଥମ ମୁଦ୍ରଣ ୧୯୫୮ ମସିହାରେ ହୋଇଥିଲା । ଏଥିରେ ତେଲୁଗୁ, ବଙ୍ଗଳା, ହିନ୍ଦୁସ୍ଥାନୀ ଗୀତର ରାଗରାଗିଣୀ ଅବଲମ୍ବନରେ ଓ ବିଭିନ୍ନ 'ତାଳ' ଏବଂ ବିଭିନ୍ନ ଭାଷାର 'ପ୍ରତି'ରେ ନାଟକ ଆକାରରେ ଲେଖାଯାଇଛି । ଏଥିରେ ଗୋଟିଏ ଇଂରାଜୀ ଗୀତର 'ପ୍ରତି' ରହିଛି । ରାଧାକୃଷ୍ଣଙ୍କ ରାସଲୀଳା ଏହାର ବିଷୟବସ୍ତୁ ।

**(ଗ) ଝୁଲଣ ଚମ୍ପୂ :** ରାଧା ଓ ଗୋପୀମାନେ ଶ୍ରୀକୃଷ୍ଣଙ୍କୁ ବନ ଫୁଲରେ ମଣ୍ଡନ କରି ଦୋଳିରେ ବସାଇ ତାଙ୍କୁ ଝୁଲାଇବା ହେଉଛି ଏହି କ୍ଷୁଦ୍ର ଗ୍ରନ୍ଥର ବିଷୟବସ୍ତୁ । ଏଥିରେ ଗଦ୍ୟ ଓ ପଦ୍ୟ କବିତା ବ୍ୟବହାର ହୋଇଅଛି ।

**(ଘ) ଚନ୍ଦନ ଯାତ ପାଲା :** ଗ୍ରୀଷ୍ମକାଳରେ ଶ୍ରୀକୃଷ୍ଣ, ରାଧା ଓ ଗୋପୀମାନେ ଚନ୍ଦନ ଯାତରେ ଯାଇ ରାସରସରେ ମାତି ରହିବା ହିଁ ଏହି ଗ୍ରନ୍ଥର ବିଷୟବସ୍ତୁ ।

**(ଙ) କିଶୋର ଚନ୍ଦ୍ର ପାଲା :** ଚନ୍ଦ୍ରାବଳୀକୁ ପାଇବା ପାଇଁ ଶ୍ରୀକୃଷ୍ଣଙ୍କ ବିରହ ଓ ପରେ ମିଳନ ଏହି ପାଲାର ବିଷୟବସ୍ତୁ । ପାଲାଟି ନାଟକ ଢଙ୍ଗରେ ଲିଖିତ । ଏହାର ଏକ ବିଶେଷତ୍ୱ ହେଲା ଏଥିରେ କେବଳ ଓଡ଼ିଶୀ ରାଗ ରାଗିଣୀ ରହିଛି ।

**(ଚ) ରାଧା ପ୍ରେମ ଲୀଳା :** ରାଜା କିଶୋର ଚନ୍ଦ୍ରଙ୍କ ଏହା ଏକ ଲୋକପ୍ରିୟ ରଚନା । ଏହା ଏକ ନାଟକ ଭାବରେ ଗଞ୍ଜାମର ପୁରପଲ୍ଲୀରେ ଅଭିନୀତ ହେଉଥିଲା । ଏହି ଲୀଳାରେ ରହିଛି ୧୮୦ଟି ଛାନ୍ଦ । ଅଧିକାଂଶ ଛାନ୍ଦରେ ଗ୍ରାମ୍ୟ, ନିତାନ୍ତ ଦେଶୀୟ ପଦ ବ୍ୟବହୃତ ହୋଇଛି ।

ଏହି ଗ୍ରନ୍ଥଟି ପ୍ରକୃତରେ ବିଶ୍ୱମ୍ଭର ରାଜେନ୍ଦ୍ର ଦେବ ରଚନା କରି ପୁତ୍ର କିଶୋରଚନ୍ଦ୍ରଙ୍କ ନାମରେ ଭଣିତା କରିଥିଲେ ବୋଲି ସମାଲୋଚକ ଭୀମସେନ ପାଣିଗ୍ରାହୀ ଓ କୁଞ୍ଜବିହାରୀ ନାୟକ ଲେଖିଛନ୍ତି । କିଶୋରଚନ୍ଦ୍ରଙ୍କ ସୁପୁତ୍ର ରାଧାମୋହନ ଗ୍ରନ୍ଥଟିକୁ ୧୯୧୧ ମସିହାରେ ଛପାଇ ଥିଲେ ।

କିଶୋର ଚନ୍ଦ୍ରଙ୍କ ସହୋଦର ପୀତାମ୍ବର ଭ୍ରମରବର ଦେବ ଜାନକୀ ବିଳାପ ନାମକ ଏକ ଖଣ୍ଡ କାବ୍ୟ ରଚନା କରିଥିଲେ । ଏହା ୧୯୧୧ ମସିହାରେ ପ୍ରକାଶ ପାଇଥିଲା ।

## ରାଧାମୋହନ ରାଜେନ୍ଦ୍ର ଦେବ

ସେ ଚିକିଟୀ ରାଜବଂଶର ସର୍ବଶ୍ରେଷ୍ଠ ସାହିତ୍ୟ ସାଧକ । ତାଙ୍କର ଜୀବନ ଅବଧି ଥିଲା ମୋଟେ ୬୩ବର୍ଷ (୧୮୮୧ ଜୁଲାଇ ୧୮ରୁ ୧୯୪୪ ଜୁଲାଇ ୧୭) । ତାଙ୍କର ରାଜତ୍ୱକାଳ ଥିଲା ୬-୭-୧୯୦୩ ରୁ ୩୦-୬-୧୯୨୩ ଯାଏଁ ।

"ପ୍ରକାଶନ ଭଙ୍ଗୀ ଓ ରଚନା ପାଟବ ଅନୁଧ୍ୟାନ କଲେ ରାଧାମୋହନ ଜଣେ ପ୍ରକାଣ୍ଡ ପଣ୍ଡିତ ଥିଲେ ଓ ସଂସ୍କୃତ ତୈଲଙ୍ଗ, ହିନ୍ଦୀ ଓ ବଙ୍ଗୀଳୀ ପ୍ରଭୃତି ଭାଷାରେ ଧୂରୀଣ ଥିଲେ ।"[୧୯] ବାଲ୍ୟକାଳରୁ ସେ ସଂସ୍କୃତ ଶିକ୍ଷା ଲାଭ କରିଥିଲେ । ପଣ୍ଡିତ ରଘୁନାଥ ବିଶ୍ୱାସରାୟ ଥିଲେ ତାଙ୍କର ଅନ୍ୟତମ ପ୍ରଥମ ଗୁରୁ । ରାଧାମୋହନ ଅଳ୍ପ ବୟସରୁ ବିଭିନ୍ନ ଭାଷାରେ ଦକ୍ଷତା ହାସଲ କରି ଜଣେ ଭାଷାବିତ୍ ଭାବେ ପରିଚିତ ହେଲେ ।

---

(୧୯) ରାଜକବି ରାଧାମୋହନ- ଡ. ବେଣୀମାଧବ ପାଢ଼ୀ, 'ରୂପାୟନ' (ରାଜକବି ରାଧାମୋହନ ଜନ୍ମ ଶତବାର୍ଷିକୀ ବିଶେଷାଙ୍କ) ମେ-ଜୁନ୍, ୧୯୮୧ ।

ରାଜକବି ରାଧାମୋହନ ବାଲ୍ୟକାଳରୁ ପଦ୍ୟ ରଚନା ପାଇଁ ପ୍ରେରଣା ପାଇଥିଲେ ନିଜର ପିତୃବ୍ୟ କବି ପୀତାମ୍ବର ଭ୍ରମରବର ଦେବଙ୍କଠାରୁ। ସାହିତ୍ୟ ସାଧନା ଦିଗରେ ପିତୃବ୍ୟ ପୀତାମ୍ବର ହିଁ ଥିଲେ ତାଙ୍କର 'ପ୍ରଥମ ଗୁରୁ' ବୋଲି ରାଧାମୋହନ 'ପ୍ରେମ ମଞ୍ଜରୀ' କାବ୍ୟରେ ଉଲ୍ଲେଖ କରିଛନ୍ତି। ପୀତାମ୍ବର ଥିଲେ 'ସଙ୍ଗୀତ ସାହିତ୍ୟ ନିପୁଣ' ଓ 'କଳା ବିଚକ୍ଷଣ'। ରାଧାମୋହନ ଯାହାକିଛି ଜାଣିଛନ୍ତି କେବଳ ତାଙ୍କର ପିତୃବ୍ୟଙ୍କ ପ୍ରସାଦରୁ :

ସଙ୍ଗୀତ ସାହିତ୍ୟ ନିପୁଣ ଇଙ୍ଗିତ ଭଙ୍ଗୀ ବିଶାରଦ ମଧ୍ୟ ସେହି
କଳା ବିଚକ୍ଷଣ ବିଭିନ୍ନ ବିଭାଗେ ବିଜ୍ଞାନ ସମ୍ପାଦି ଥିଲେ ଯେହି
ସେ ଅଟନ୍ତି,
ମୋର ପ୍ରଥମ ଗୁରୁ, ଯାହା କିଛି ଜାଣେ ସେ ପ୍ରସାଦରୁ।
(ଶେଷ ଛାନ୍ଦ, ୩୯ ପଦ)

ରାଜକବି ରାଧାମୋହନ 'ପ୍ରେମ ମଞ୍ଜରୀ' କାବ୍ୟରେ ରଘୁନାଥ ବିଶ୍ୱାସରାୟ, ଗଦାଧର ବିଦ୍ୟାଭୂଷଣ ଓ ରାଧାମୋହନ ଶର୍ମା- ''ଏମାନଙ୍କ ସାହାଯ୍ୟରୁ ଉତ୍କଳ ସାହିତ୍ୟ ସେବାରେ ହେଲି ତତ୍ପର'', ଲେଖିଛନ୍ତି (୪୫,୪୬ ପଦ, ଶେଷ ଛାନ୍ଦ)।

ରାଧାମୋହନଙ୍କ ଅନୁଜ ପ୍ରତିମ ଘନିଷ୍ଠ ବନ୍ଧୁ ଗୌରଚନ୍ଦ୍ର ରାଉତ ନିଜ ଅନୁଭୂତିରେ କହିଛନ୍ତି- ''ରାଜେନ୍ଦ୍ର ଥିଲେ ଉଦାରଚେତା ବିବେକବନ୍ତ ଗୁଣଗ୍ରାହୀ ତଥା ଅଲୌକିକ ପ୍ରତିଭାସଂପନ୍ନ ବ୍ୟକ୍ତି। ଥରେ ମୁଁ ପଚାରିଲି ତାଙ୍କ ସାହିତ୍ୟ ସାଧନାର ଅୟମାରମ୍ଭ ହେଲା କିପରି ? ସେ ଅତି ସରଳ ଭାବରେ କହିଗଲେ 'ଚିକିଟୀର ରାଜବଂଶର କବି ପ୍ରତିଭା ଅବିସମ୍ବାଦିତା ଚିକିଟୀର ଘରେ ଘରେ ସ୍ତ୍ରୀମାନେ ମଧ୍ୟ ଭଞ୍ଜ ସାହିତ୍ୟ ଚର୍ଚ୍ଚା କରନ୍ତି। କିନ୍ତୁ ମୁଁ ଗଣ୍ଡ ମୂର୍ଖ। ବିଳାସବ୍ୟସନରେ ଚାଲିଥିଲା ମୋ ଜୀବନ ଯାତ୍ରା। ବିବାହ କଲି ଆଳୀ ରାଜଜେମା ଲାବଣ୍ୟଙ୍କୁ। ସେ ଥିଲେ ବିଦୂଷୀ କବୟତ୍ରୀ। ଆଜି ଓ ଚିକିଟୀ ରାଜପ୍ରସାଦରେ ରାଣୀ ଲାବଣ୍ୟ ଦେବୀଙ୍କର ରଚିତ କବିତା ଅଛି। ... ସେହିଦିନୁ ସାହିତ୍ୟ ସାଧନାରେ ବ୍ରତୀ ହେଲି। ମୋର ପ୍ରକ୍ରମ ପଦ୍ୟାବଳୀର ଗୋଟିଏ କବିତାରେ ମୁଁ ତାହା ସୂଚାଇ ଦେଇଅଛି।'' [୨୦]

ଚିକିଟୀଗଡ଼ର ସୁଲେଖକ ଓ 'ରୂପାୟନ' ପତ୍ରିକାର ସମ୍ପାଦକ (ସ୍ୱର୍ଗତ) ନରସିଂହ ଦେଓ ଲେଖିଛନ୍ତି- ''ସ୍ୱୀୟ ପିତୃବ୍ୟ ପୀତାମ୍ବର ଭ୍ରମରବର ଦେଓ ଜଣେ ଅଭିଜ୍ଞ ସାହିତ୍ୟିକ ଓ ସଙ୍ଗୀତଜ୍ଞ ଥିଲେ। ତାହାଙ୍କର ପ୍ରେରଣା ଓ ପୂର୍ବ ବଂଶଧରଙ୍କର ଅପୂର୍ବ ସାହିତ୍ୟିକ ପ୍ରଭାବରେ ପ୍ରଭାବିତ ହୋଇ ରାଧାମୋହନ ପ୍ରଥମେ ବିବିଧ ସଙ୍ଗୀତ ଯୁକ୍ତ କବିତା ରଚନା କରିବା ଆରମ୍ଭ କଲେ ଓ ଲୀଳା ପାଲା ପ୍ରଭୃତି ଲୋକନୃତ୍ୟର ବହୁ ଅନୁଷ୍ଠାନ ଗଢ଼ିଲେ। ତା'ପରେ ନିଜର କନିଷ୍ଠ ଭ୍ରାତା ଛବିମୋହନ ଥାଟରାଜ ନାଟକ ଅଭିନୟରେ ଅନୁପ୍ରାଣିତ ହୋଇ ଏକ ନାଟ୍ୟମଞ୍ଚ ପ୍ରତିଷ୍ଠା କରିବା

(୨୦) ରାଜେନ୍ଦ୍ର ସ୍ମୃତି - ଗୌରଚନ୍ଦ୍ର ରାଉତ। 'ରୂପାୟନ' ମେ-ଜୁନ୍, ୧୯୮୧।

ପାଇଁ ଅଗ୍ରଜ ରାଧାମୋହନଙ୍କୁ ପ୍ରବର୍ତ୍ତାଇଲେ । ସେହି ଦିନାବଧି ରାଧାମୋହନ ନାଟକ ରଚନା ଆରମ୍ଭ କଲେ ଓ ସ୍ୱୀୟ ନାଟକାବଳୀ ସେହି ନାଟ୍ୟମଞ୍ଚରେ ଅଭିନୀତ କରାଇଲେ । ଛବିମୋହନ ଥାଟରାଜ ସେ ସବୁ ନାଟକର ଷ୍ଟେଜ୍ ମ୍ୟାନେଜର ଥିଲେ ।[୨୧] ପାରଳାଖେମୁଣ୍ଡିର 'ପଦ୍ମନାଭ ରଙ୍ଗାଳୟ' ଭଳି ଚିକିଟୀଠାରେ ଏକ ମଞ୍ଚ ନିର୍ମାଣ କରି ରାଧାମୋହନ ସ୍ୱରଚିତ ନାଟକ ସବୁ ମଞ୍ଚସ୍ଥ କରିଥିଲେ । ଏହି ରଙ୍ଗମଞ୍ଚର ନାମ ଥିଲା 'ରାଜେନ୍ଦ୍ର ରଙ୍ଗାଳୟ' ।[୨୨] ରାଜା ରାଧାମୋହନ ନଭେମ୍ବର ୧୯୧୭ରେ ବ୍ରହ୍ମପୁର ସହରର ଏକ ରଙ୍ଗମଞ୍ଚରେ ସ୍ୱରଚିତ ନାଟକମାନ ଅଭିନୟ କରାଇ ୧ମ ବିଶ୍ୱଯୁଦ୍ଧ ସମୟରେ ବ୍ରିଟିଶ୍ ସରକାରଙ୍କୁ ନାଟ୍ୟଲବ୍ଧ ପଚିଶ ହଜାର ଟଙ୍କା ଦାନ କରିଥିବା ଜଣାଯାଏ ।

ରାଜା ରାଧାମୋହନ ଏକାଧାରରେ ଥିଲେ କବି, ନାଟ୍ୟକାର ଓ ପ୍ରାବନ୍ଧିକ । ତାଙ୍କର ଗୋଟିଏ କାବ୍ୟ, ଦୁଇଟି ପଦ୍ୟାବଳୀ, ସାତଟି ନାଟକ, ଦୁଇଟି ଅନୁବାଦ ଗ୍ରନ୍ଥ ଓ ଗୋଟିଏ ଧର୍ମତତ୍ତ୍ୱ ଗ୍ରନ୍ଥ ଉପଲବ୍ଧ ହୁଏ । ହୁଏତ ତାଙ୍କର ଅନ୍ୟାନ୍ୟ ରଚନା ଭବିଷ୍ୟତରେ ଆବିଷ୍କୃତ ହେବ । ତାଙ୍କର ରଚନାବଳୀ ସମ୍ପର୍କରେ ସଂକ୍ଷିପ୍ତ ସୂଚନା ନିମ୍ନରେ ପ୍ରଦାନ କରାଗଲା ।

**୧. ପ୍ରେମ ମଞ୍ଜରୀ (କାବ୍ୟ)** : ଏହି ପୁସ୍ତକ ପ୍ରଥମେ କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ୧୯୧୩ ମସିହାରେ ମୁଦ୍ରିତ ହୋଇଥିଲା । ଏଥିରେ ଅଛି ବିଭିନ୍ନ ରାଗରେ ୨୬ଟି ଛାନ୍ଦ । ପ୍ରୟୋଗ କରାଯାଇଛି ଗୋମୂତ୍ର, ଚକ୍ର ଆଦି ବନ୍ଧ , ବିଭିନ୍ନ ଅଳଙ୍କାର । ଏହା ଭଞ୍ଜୀୟ ରୀତି ସାହିତ୍ୟର ଏକ ପ୍ରତିଛବି ।

ବିଦର୍ଭ ଦେଶର ରତ୍ନପୁରର ରାଜା ରାଜଶେଖରଙ୍କ ପୁତ୍ର ଶୂରସେନଙ୍କ ସହିତ କାଶ୍ମୀର ରାଜା ବୀରସେନଙ୍କ କନ୍ୟା ପ୍ରେମ ମଞ୍ଜରୀଙ୍କ ପ୍ରେମ ଓ ମିଳନ ହିଁ କାବ୍ୟର ବିଷୟବସ୍ତୁ ।

**୨. ପ୍ରକୃତି ବର୍ଣ୍ଣନ (ପଦ୍ୟ)** : ଏହାର ପ୍ରଥମ ମୁଦ୍ରଣ କଟକର ଉତ୍କଳ ସାହିତ୍ୟ ପ୍ରେସ୍‌ରେ ୧୯୨୧ ମସିହାରେ ହୋଇଥିଲା । ଗ୍ରନ୍ଥଟିରେ ହେମନ୍ତ ଋତୁଠାରୁ ଆରମ୍ଭ କରି ଶରତ ଋତୁ ଯାଏଁ ଛଅ ଋତୁର ବର୍ଣ୍ଣନା ଅତି ମନୋହର ହୋଇଛି । ବିଭିନ୍ନ ରାଗରେ ଏହା ରଚିତ ।

**୩. ପ୍ରକ୍ରମ ପଦ୍ୟାବଳୀ** : ଏଥିରେ ରହିଛି ବିଭିନ୍ନ ଧରଣର ପଦ୍ୟ- ସ୍ତବ, ଜାତୀୟ ସଙ୍ଗୀତ, ଆଦି ରସାତ୍ମକ ଇତ୍ୟାଦି । ଗୀତଗୁଡ଼ିକ ବିଭିନ୍ନ ରାଗରେ ରଚିତ । ଏହି ଗ୍ରନ୍ଥ ଦୁଇଟି ଭାଗରେ ପ୍ରକାଶିତ ହୋଇଥିଲା ଓ ଏଥିରେ ସମୁଦାୟ ପ୍ରାୟ ଦୁଇଶହ ଗୀତ ରହିଥିଲା । ଏହି ଗ୍ରନ୍ଥ ଆଲୋଚନା କରି ଡକ୍ଟର ବେଣୀମାଧବ ପାଢ଼ୀ ମତ ଦେଇଛନ୍ତି: "ସେ (କବି) କେବେ ସଂକୀର୍ଣ୍ଣ ଜାତି ବା ସଂପ୍ରଦାୟ ସର୍ବସ୍ୱ ନଥିଲେ । ଯଦିଚ ଜନ୍ମଭୂମି ଓ ଗ୍ରାମ ଗୋଷ୍ଠୀ ଭାବନା ତାଙ୍କ ମନରେ ପ୍ରବଳ ପ୍ରତିଷ୍ଠା ଅର୍ଜନ କରିଥିଲା, ତଥାପି ପଡ଼ୋଶୀ ତଥା ଭାରତର ଅନ୍ୟାନ୍ୟ ଭାଷାଭାଷୀ ଗୋଷ୍ଠୀ

(୨୧) ରାଜକବି ରାଧାମୋହନ ରାଜେନ୍ଦ୍ର- ନରସିଂହ ଦେଓ । 'ଦୈନିକ ଆଶା', ତା: ୧୯-୭-୧୯୮୨ ।
(୨୨) ଚିକିଟୀ ଇତିହାସ ଓ ଅଧିଷ୍ଠାତ୍ରୀ ମା' ବାଳକୁମାରୀ - ଗଣେଶ ପ୍ରସାଦ ପଣ୍ଡା ।

ମଧ୍ୟରୁ ଯାବତୀୟ କଲ୍ୟାଣକର ବିଷୟାବଳୀ ଆହରଣ ପୂର୍ବକ ସ୍ୱଜାତି ଓ ସ୍ୱଭାଷାକୁ ଉନ୍ନତତର କରିବାକୁ ସତତ ସଚେଷ୍ଟ ଥିଲେ । ଏହା ତାଙ୍କ ରଚିତ ପ୍ରକ୍ରମ-ପଦ୍ୟାବଳୀ ଗୀତଗୁଡ଼ିକର ହିନ୍ଦୁସ୍ଥାନୀ, ବଙ୍ଗୀଳୀ, ତେଲିଙ୍ଗୀ ପ୍ରଭୃତି ଭାଷା ରଚିତ ଗୀତ ପଦ୍ଧତିର ଅନୁକରଣ ପ୍ରକ୍ରିୟାରୁ ସମ୍ୟକ ଅନୁମେୟ । ...ପ୍ରକ୍ରମ ପଦ୍ୟାବଳୀ ଦ୍ୱିତୀୟଭାଗ ୩୮, ୨୭ ପ୍ରଭୃତି ଗୀତରେ ହିନ୍ଦୀ ବୋଲି; ୧୦, ୨୯, ୩୩, ୬୬ ପ୍ରଭୃତି ଗୀତରେ ତେଲିଙ୍ଗୀ; ୧୫ ଗୀତରେ ସଂସ୍କୃତ ରାଗିଣୀଗୁଡ଼ିକର ଯେଉଁ ସୁଷମ ସମାବେଶ ଘଟିଛି ତାହା ଦେଖିଲେ କବି ହୃଦୟର ମହନୀୟତା ସ୍ୱତଃ ଫୁଟି ଉଠେ ।''[୨୩]

**୪. ପ୍ରେମ ତରଙ୍ଗ :** ରାଧାମୋହନଙ୍କ ପ୍ରଥମ ନାଟକ; ୧୯୧୦ରେ ପ୍ରକାଶିତ । ବାଣଭଟ୍ଟଙ୍କ 'କାଦମ୍ବରୀ'ର କଥାବସ୍ତୁ ଅବଲମ୍ବନରେ ଏହି ସାତଅଙ୍କ ବିଶିଷ୍ଟ ନାଟକ ରଚିତ । ''ସରଳ ଭାବଗର୍ଭିତ, ଶୃଙ୍ଗାର ରସବ୍ୟଞ୍ଜକ କୋମଳ ପଦାବଳୀ ସମନ୍ୱିତ 'ପ୍ରେମ ତରଙ୍ଗ' ନାଟକ ହିଁ ରାଜକବିଙ୍କର ପ୍ରଥମ ଅବଦାନ'' ।[୨୪]

**୫. ପରିମଳା ସହଗମନ :** ୧୯୧୨ରେ ପ୍ରକାଶିତ । ଚାରିଅଙ୍କ ବିଶିଷ୍ଟ ପୌରାଣିକ ନାଟକ । ଲକ୍ଷ୍ମଣଙ୍କଦ୍ୱାରା ମେଘନାଦ ବଧ ଓ ମେଘନାଦର ସ୍ତ୍ରୀ ପରିମଳା ସ୍ୱାମୀଙ୍କ ମୃତ୍ୟୁରେ ମ୍ରିୟମାଣ ହୋଇ ଅଗ୍ନିରେ ଜୀବନ ଉତ୍ସର୍ଗ, ନାଟକର କଥାବସ୍ତୁ ।

'ପରିମଳା ସହଗମନ' ପ୍ରକାଶନ ସମୟାନୁଯାୟୀ ଦ୍ୱିତୀୟ ନାଟକ ହେଲେ ହେଁ ଏହା ପ୍ରକୃତରେ ଦ୍ୱିତୀୟ ନାଟକ ନୁହେଁ । ଏହି ନାଟକ ରଚନାର ବହୁ ଆଗରୁ 'ପ୍ରକୃତ ପ୍ରଣୟ' ନାଟକ ରଚିତ ହୋଇଥିଲା । ଏଣୁ 'ପ୍ରକୃତ ପ୍ରଣୟ' ହିଁ ରାଧାମୋହନଙ୍କ ଦ୍ୱିତୀୟ ନାଟକ ।[୨୫]

**୬. ପ୍ରକୃତି ରହସ୍ୟ :** ୧୯୧୨ରେ ପ୍ରକାଶିତ ଦଶଅଙ୍କ ବିଶିଷ୍ଟ ସମାଜ ସଂସ୍କାରମୂଳକ କାଳ୍ପନିକ ନାଟକ । ଏକ ଇଂରାଜୀ ପୁସ୍ତକ Mysteries of the court of Londonରୁ ଏହାର କଥାବସ୍ତୁ ଗୃହୀତ ବୋଲି କୁହାଯାଇଛି । 'ପ୍ରକୃତି ରହସ୍ୟ'ରେ ୫୧ଟି ଗୀତ ସଂଯୋଜିତ ।

**୭. ପ୍ରକୃତ ପ୍ରଣୟ :** ୧୯୧୫ରେ ପ୍ରକାଶିତ ଛଅଟି ଅଙ୍କ ଥିବା ସାମାଜିକ ନାଟକ । ନାଟକ ସମ୍ପର୍କରେ ନାଟ୍ୟକାର ନାଟକର ସୂତ୍ରଧର ମୁଖରେ ଶୁଣାଇଛନ୍ତି, ''ଏହା ଏକ ସାଧୁ ନୀତିଗର୍ଭକ, ଉପଯୁକ୍ତ ରୀତି ପ୍ରକାଶକ, ସମୟୋଚିତ ସଂସ୍କାର ପ୍ରଦର୍ଶକ, ବିବିଧ ରସାତ୍ମକ, ସତ୍ୟପ୍ରେମ ଦ୍ୟୋତକ ରୂପକ ।'' ସେ ଯାହା ହେଉନା କାହିଁକି ଏହାର କଥାବସ୍ତୁ ସମ୍ପୂର୍ଣ୍ଣ ରୂପେ ନାଟ୍ୟକାରଙ୍କ ମୌଳିକ ଓ କାଳ୍ପନିକ । ଜୀବନ ଓ ସମାଜରୁ କଥାବସ୍ତୁ ଓ ଚରିତ୍ର ସନ୍ଧାନ କରି ସ୍ୱାତନ୍ତ୍ର୍ୟତା ବଜାୟ ରଖି ପାରିଛନ୍ତି ବୋଲି ଅଧ୍ୟାପକ ସୁରେଶ ପାଣିଗ୍ରାହୀ ମତ ଦେଇଛନ୍ତି ।

(୨୩) ରାଜକବି ରାଧାମୋହନ (ପ୍ରବନ୍ଧ) - ଡ. ବେଣୀମାଧବ ପାଢ଼ୀ, 'ରୂପାୟନ', ମେ-ଜୁନ୍, ୧୯୮୧ ।
(୨୪) ଓଡ଼ିଆ ସାହିତ୍ୟର ଇତିହାସ- ଡ. ନଟବର ସାମନ୍ତରାୟ ।
(୨୫) ନାଟ୍ୟକାର ରାଧାମୋହନ ରାଜେନ୍ଦ୍ର ଦେବ : ଏକ ଦୃଷ୍ଟିପାତ- ଅଧ୍ୟାପକ ସୁରେଶ ପାଣିଗ୍ରାହୀ, 'ରୂପାୟନ', ମେ-ଜୁନ୍, ୧୯୮୧ ।

ନାଟକରେ ୪୩ ଜଣ ପୁରୁଷ ଓ ୧୪ଜଣ ନାରୀ ଚରିତ୍ର ରଖାଯାଇଛି। କାହାଣୀରେ ରହିଛି ଉତ୍କଳ ରାଜପୁତ୍ରଙ୍କ ବିଲାତ ଭ୍ରମଣ, ଓ ସେହି ପରିପ୍ରେକ୍ଷୀରେ କେତୋଟି ବିଦେଶୀ ଚରିତ୍ରର ଅବତାରଣା କରାଯାଇଛି।

୧୯୧୩ ମସିହା ଅକ୍ଟୋବର ମାସରେ ରାଜକବି ରାଧାମୋହନଙ୍କର ଆମନ୍ତ୍ରଣ ପାଇଁ ଶଶିଭୂଷଣ ରାୟ ଶାରଦୀୟ ମହୋତ୍ସବରେ ଯୋଗ ଦେବାପାଇଁ ଚିକିଟୀ ଯାଇଥିଲେ। ସେଠାରେ ସେ ରାଜାଙ୍କର ଅତିଥି ହୋଇ ଚାରିଦିନ ରହିଥିଲେ। ଶଶିଭୂଷଣ ରାୟ (୧୮୭୪-୧୯୫୪) ହେଉଛନ୍ତି କବିବର ରାଧାନାଥ ରାୟଙ୍କ ସୁଯୋଗ୍ୟ ସନ୍ତାନ। ସେ ନିଜେ ମଧ୍ୟ ଥିଲେ ସୁସାହିତ୍ୟିକ। ସେ 'ଚିକିଟୀରେ ଚାରିଦିନ' ଶୀର୍ଷକ ତାଙ୍କର ଅନୁଭୂତି ପ୍ରକାଶ କରିଛନ୍ତି। [୨୬] ଚିକିଟୀରେ 'ପ୍ରକୃତ ପ୍ରଣୟ' ନାଟକର ଅଭିନୟ ଦେଖି ସେ ତାହାର ଭୂୟସୀ ପ୍ରଶଂସା କରିଛନ୍ତି। ସେ ଲେଖିଛନ୍ତି :

''ପ୍ରକୃତ ପ୍ରଣୟ'' ୨୨୫ ପୃଷ୍ଠା ବ୍ୟାପୀ ପ୍ରକାଣ୍ଡ ନାଟକ ହେଲେ ହେଁ ରାଜା ମହୋଦୟଙ୍କ ଅପୂର୍ବ ବ୍ୟବସ୍ଥାରୁ ପ୍ରାୟ ୫ ଘଣ୍ଟା ମଧ୍ୟରେ ଅଭିନୟ କାର୍ଯ୍ୟ ଶେଷ ହୁଏ। କିନ୍ତୁ ଏକାବେଳକେ ଦର୍ଶକଙ୍କୁ ୫ଘଣ୍ଟା ବସାଇ କଷ୍ଟଦେବା ଅସଙ୍ଗତ ମନେକରି ପୂର୍ବାର୍ଦ୍ଧ ଓ ପରାର୍ଦ୍ଧ ରୂପେ ଏହାର ଅଭିନୟ ଦୁଇଦିନରେ ସମାପ୍ତିର ଆୟୋଜନ ହୋଇଥିଲା। ପ୍ରଥମ ଦିବସରେ ତିନିଅଙ୍କ ଏବଂ ପର ଦିବସ ତିନିଅଙ୍କର ଅଭିନୟ ହୋଇଥିଲା। ... ପ୍ରକୃତ ପ୍ରଣୟରେ ଅଭିନୟ କଳାର ଚରମ ବିକାଶ, ଦର୍ଶକର ଚିତ୍ତ ବିନୋଦନ ସକାଶେ ରାଜା ରାଧାମୋହନଙ୍କ ପ୍ରତିଭା କେଉଁଠାରେ ସଙ୍କୁଚିତ ହୋଇନାହିଁ। କଷ୍ଟ କଳ୍ପନାର ଆଶ୍ରୟ ନେବାକୁ ଅତିରଞ୍ଜନ ଅସମ୍ଭବକୁ ପ୍ରଶ୍ରୟ ଦେବାକୁ ବାଧ୍ୟ ହୋଇନାହିଁ। ରାଧାମୋହନଙ୍କ ପ୍ରତିଭା ନୂତନତ୍ୱର ବିଚିତ୍ର ପ୍ରସ୍ରବଣ। ... 'ପ୍ରକୃତ ପ୍ରଣୟ' ରାଜା ଶ୍ରୀ ରାଧାମୋହନ ରାଜେନ୍ଦ୍ର ଦେବଙ୍କ ସର୍ବଶ୍ରେଷ୍ଠ ଦାନ। ...'ପ୍ରକୃତ ପ୍ରଣୟ' ଅପୂର୍ବ ସୌନ୍ଦର୍ଯ୍ୟ ବିମଣ୍ଡିତ ନାଟ୍ୟକାବ୍ୟ।'' ନାଟକର ଗୀତ ସମ୍ପର୍କରେ ମତ ଦେଇ ଶଶିଭୂଷଣ ଲେଖିଛନ୍ତି- ''ଗୀତ ଗୁଡ଼ିକର ରାଗିଣୀ ଏବଂ ଗାୟନ ଭଙ୍ଗୀ ଅତିଶୟ ଚିତ୍ତାକର୍ଷକ। ... ଗୀତର ରାଗରାଗିଣୀ ନିର୍ବାଚନରେ ରାଜା ମହୋଦୟ ସୁନିପୁଣ। ଲାହୋରଠାରୁ କୁମାରିକା ଏବଂ ଦ୍ୱାରକାଠାରୁ ଆସାମ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ଥାନର ନାନାପ୍ରକାର ଗୀତର ଆଲୋଚନା କରି ସେ ସଙ୍ଗୀତ କଳାରେ ଧୁରନ୍ଧର ହୋଇଅଛନ୍ତି। ... କେତେ କହିବି ? ଧନ୍ୟ ରାଜକବିଙ୍କର ଉତ୍କଳ ସାହିତ୍ୟ ଶ୍ରଦ୍ଧା, ଧନ୍ୟ ଗ୍ରାହକତା ଓ ରସିକତା।''

୮. **ପ୍ରତାପ** : ୧୯୧୬ରେ ପ୍ରକାଶିତ ଏହି ନାଟକ ରାଧାମୋହନଙ୍କ ଏକମାତ୍ର ଐତିହାସିକ ନାଟକ। ବଙ୍ଗଳାର ପ୍ରସିଦ୍ଧ ନାଟ୍ୟକାର ଦ୍ୱିଜେନ୍ଦ୍ରଲାଲ ରାୟଙ୍କ 'ରାଣା ପ୍ରତାପ ସିଂହ' ନାଟକର ଅବଲମ୍ବନରେ ସେ ଏହି ନାଟକକୁ ରଚନା କରିଥିବାର ସୂଚନା ଗ୍ରନ୍ଥର ମୁଖବନ୍ଧରେ ଦେଇଛନ୍ତି। ଏହି ନାଟକଟି ପାଞ୍ଚଅଙ୍କ ବିଶିଷ୍ଟ।

---

(୨୬) ଚିକିଟୀରେ ଚାରିଦିନ - ଶଶିଭୂଷଣ ରାୟ। 'ଉତ୍କଳ ସାହିତ୍ୟ', ୨୧ଶ ଭାଗ, ୭ମ ସଂଖ୍ୟା, କାର୍ତ୍ତିକ, ୧୩୨୫।

**୯. ପାଞ୍ଚାଳି ପଟ୍ଟାପହରଣ :** ୧୯୧୬ରେ ପ୍ରକାଶିତ ପୌରାଣିକ ନାଟକ । ଏଥିରେ ଦ୍ରୌପଦୀ ସ୍ୱୟମ୍ବରଠାରୁ ବସ୍ତ୍ରହରଣ ଯାଏଁ ବୃତ୍ତାନ୍ତର ମଞ୍ଚରୂପ ପ୍ରଦାନ କରାଯାଇଛି । ନାଟକର ପୃଷ୍ଠା ସଂଖ୍ୟା ୧୫୦ ଏବଂ ଏଥିରେ ନାରୀ ଚରିତ୍ର ୪ ଓ ପୁରୁଷ ଚରିତ୍ର ୩୦ ଅଛି ।

**୧୦. ପାଣ୍ଡବ ବନବାସ :** ୧୯୨୧ରେ ପ୍ରକାଶିତ ପୌରାଣିକ ନାଟକ । ଏହାର କଥାବସ୍ତୁ ପାଣ୍ଡବ ବନବାସ ସଂକ୍ରାନ୍ତୀୟ ଏବଂ ଚିତ୍ରସେନ ଗନ୍ଧର୍ବ କବଳରୁ ଦୁର୍ଯ୍ୟୋଧନର ମୁକ୍ତି, କୀଚକ ବଧ ଇତ୍ୟାଦି ବୃତ୍ତାନ୍ତ ସମ୍ବଳିତ । ନାଟକର ପୃଷ୍ଠା ସଂଖ୍ୟା ୧୨୯ । ଏଥିରେ ଅଛି ନାରୀ ଚରିତ୍ର ୮ ଓ ପୁରୁଷ ଚରିତ୍ର ୪୪ଟି । ଏହା ପାଞ୍ଚ ଅଙ୍କ ବିଶିଷ୍ଟ ।

**୧୧. ପରମାର୍ଥ ପୟୋଧି :** ଏହି ଗ୍ରନ୍ଥ ସମ୍ପର୍କରେ ସ୍ୱତନ୍ତ୍ର ଆଲୋଚନା ପରେ କରାଯାଇଛି ।

**୧୨. ଭର୍ତ୍ତୃହରି ଶତକତ୍ରୟ :** ୧୯୨୭ ମସିହାରେ ରାଜା ରାଧାମୋହନ ଭର୍ତ୍ତୃହରିଙ୍କ ଶତକ ତ୍ରୟର ଅନୁବାଦ କରିଥିଲେ । ମୂଳ ଶ୍ଳୋକ ସହିତ ଏହା ପ୍ରକାଶ ପାଇଥିଲା ।

**୧୩. ଯୋଗ ବାଶିଷ୍ଠ ରାମାୟଣ :** ମୂଳ ସଂସ୍କୃତରୁ ଅନୂଦିତ, ଏବଂ ଏଯାଏଁ ଅପ୍ରକାଶିତ ଥିବା ଜଣାଯାଏ ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, 'ପରିମଳା ସହଗମନ' ନାଟକର ଏକ ପରିମାର୍ଜିତ ସଂସ୍କରଣ (୨ୟ ସଂସ୍କରଣ) ୧୯୨୬ରେ ନାଟ୍ୟକାରଙ୍କ ଜ୍ୟେଷ୍ଠପୁତ୍ର ଗୌରଚନ୍ଦ୍ରଙ୍କ ପ୍ରଚେଷ୍ଟାରେ ପ୍ରକାଶିତ ହୋଇଥିଲା । ରାଜା ରାଧାମୋହନ ନାଟକଟିଏ ଲେଖିସାରି, ନିଜର ରଙ୍ଗମଞ୍ଚରେ ଅଭିନୟ କରାଇ ମୁଦ୍ରଣ ପୂର୍ବରୁ ଆବଶ୍ୟକ ସଂଶୋଧନ ପରିବର୍ତ୍ତନ କରୁଥିଲେ ।

ରାଜା ରାଧାମୋହନ ତାଙ୍କର ସମସ୍ତ ଗ୍ରନ୍ଥର (ଦୁଇଟି ଅନୁବାଦ ବ୍ୟତୀତ) ନାମର ପ୍ରଥମ ଅକ୍ଷର 'ପ' ରଖିଥିଲେ । ଏହାର କିଛି କାରଣ ଥାଇପାରେ । ସେ ନିଜେ କେବଳ ସାହିତ୍ୟିକ ନଥିଲେ ଅନ୍ୟମାନଙ୍କୁ ସାହିତ୍ୟିକ କରାଇବା ପାଇଁ ଚେଷ୍ଟିତ ବି ଥିଲେ । ସେ ଗଠନ କରିଥିଲେ 'ରସାଳ ସାହିତ୍ୟ ସଂସଦ' ନାମକ ଏକ ସାହିତ୍ୟ ସଭା । ଏହାର ପ୍ରତ୍ୟେକ ସଭ୍ୟ ଗୋଟିଏ ଲେଖାଏଁ ରୌପ୍ୟ ରସାଳ ଫଳ (ଆମ୍ବ) ପଦକ ନିଜ ନିଜର ପୋଷାକରେ ଧାରଣ କରୁଥିଲେ । "ରାଜକବି ରାଧାମୋହନଙ୍କଠାରେ କାବ୍ୟକୃତି, ସାହିତ୍ୟ ସେବା, ପୁଣି ସାହିତ୍ୟିକ ଓ କବି କୋବିଦଙ୍କୁ ଆଦର ଅଭ୍ୟର୍ଥନା ଓ ଗୁଣର ଆଦର କରିବା ଯେଉଁ ମହତ ଚରିତ୍ରବତ୍ତା ଦେଖିବାକୁ ମିଳିଥିଲା ।"[୨୭] ତାଙ୍କର ରାଜସଭାରେ ଅଧିକାଂଶ ବ୍ୟକ୍ତି ଥିଲେ ସଂସ୍କୃତ ଶାସ୍ତ୍ରରେ ସୁପଣ୍ଡିତ । ଚିକିଟୀ ରାଜନ୍ୟବୃନ୍ଦଙ୍କଦ୍ୱାରା ପ୍ରତିଷ୍ଠିତ ଷୋଳଗୋଟି ବ୍ରାହ୍ମଣ ଶାସନରେ ଖ୍ୟାତନାମା ପଣ୍ଡିତମାନେ ଥିଲେ ଓ ସେମାନେ ରାଜାଙ୍କର ସହାୟକ ଥିଲେ । ପ୍ରଜାମାନେ ପରମ ସନ୍ତୋଷରେ ଥିଲେ ।

(୨୭) କାହାନ୍ତି ସେ ? - 'ବିପ୍ଳବୀ' ରୂପାୟନ, ମେ-ଜୁନ୍, ୧୯୮୧ ।
(୨୮) ରାଜକବିଙ୍କ କବିତ୍ୱରେ ବିଭିନ୍ନ ପ୍ରଭାବ- ପଣ୍ଡିତ କୁରାମଣି ପାଠୀ ଶର୍ମା, ରୂପାୟନ, ମେ-ଜୁନ୍, ୧୯୮୧ ।

ସେତେବେଳେ ସଙ୍ଗୀତର ପ୍ରାବଲ୍ୟରେ ସାରା ଚିକିଟୀ ଏକ ରଙ୍ଗାଳୟରେ ପରିଣତ ହୋଇଥିଲା ।[୨୮] ଯେଉଁ ବିଖ୍ୟାତ ପଣ୍ଡିତଗଣ ତାଙ୍କର ରାଜସଭା ମଣ୍ଡନ କରିଥିଲେ ସେମାନେ ହେଲେ ସଦାଶିବ ବିଦ୍ୟାଭୂଷଣ, ମହାମହୋପାଧ୍ୟାୟ ଗଦାଧର ବିଦ୍ୟାଭୂଷଣ, ବନମାଳୀ ସାହିତ୍ୟ ଭୂଷଣ, ରାଧାମୋହନ ବକ୍ସି ଇତ୍ୟାଦି । ବେଳେ ବେଳେ ମାନ୍ଦ୍ରାଜ, କାଶୀ, ଅଯୋଧ୍ୟାରୁ ବହୁ ପଣ୍ଡିତ ରାଧାମୋହନଙ୍କ ରାଜସଭାରେ ଉପସ୍ଥିତ ହେଉଥିଲେ ଓ ଶାସ୍ତ୍ର ଆଲୋଚନା କରୁଥିଲେ । ରାଜା ସେମାନଙ୍କୁ ମୂଲ୍ୟବାନ ଉପଢ଼ୌକନ ଦେଇ ସମ୍ମାନିତ କରୁଥିଲେ ।

ରାଜା ରାଧାମୋହନଙ୍କ ଗୁରୁ (ମନ୍ତ୍ର ଦାତା) ଥିଲେ ବାଳକୃଷ୍ଣାଚାରୀ । ଚିକିଟୀ ରାଜବଂଶର ପ୍ରଥମ ଗୁରୁଙ୍କ ନାମ ମଧ୍ୟ ସେୟା ଥିଲା; ଯେ କି ଦ୍ୱାଦଶ ଶତାବ୍ଦୀରେ ରାମାନୁଜାଚାର୍ଯ୍ୟଙ୍କ ସହିତ ଦାକ୍ଷିଣାତ୍ୟରୁ ଓଡ଼ିଶା ଆସିଥିଲେ ।[୨୯]

ନରସିଂହ ଦେଓ ଲେଖିଛନ୍ତି, "୧୯୨୦ ସାଲ ବେଳକୁ ସେ ଗୋପବନ୍ଧୁଙ୍କ ନିମନ୍ତ୍ରଣ କ୍ରମେ ସତ୍ୟବାଦୀ ବକୁଳବନସ୍ଥ ବନବିଦ୍ୟାଳୟକୁ ଯାଇଥିଲେ । ତତ୍କାଳୀନ ଓଡ଼ିଶାର ଜନନାୟକ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ, ପଣ୍ଡିତ ଗୋଦାବରୀଶଙ୍କ ସହ ରାଧାମୋହନଙ୍କ ସ୍ନେହ ସମ୍ବନ୍ଧ ସ୍ଥାପିତ ହୋଇଥିଲା ଓ ସେମାନେ ରାଧାମୋହନଙ୍କ ରଚିତ ନାଟକାବଳୀର ଅଭିନୟ ବେଳେ ନିମନ୍ତ୍ରଣ ପାଇ ଉପସ୍ଥିତ ହେଉଥିଲେ" ।[୩୦]

ମାର୍ଚ୍ଚମାସ ୧୯୧୩ ମସିହାରେ ଯୁବରାଜ ଗୌରଚନ୍ଦ୍ରଙ୍କ ବ୍ରତୋତ୍ସବ ମହା ଆଡ଼ମ୍ବରରେ ଚିକିଟୀରେ ଅନୁଷ୍ଠିତ ହୋଇଥିଲା । ରାଜା ରାଧାମୋହନଙ୍କ ନିମନ୍ତ୍ରଣ ପାଇ ମଞ୍ଜୁଷା, ଧରାକୋଟ, ବୋଡ଼ରସିଂହ, କନିକା ପ୍ରଭୃତିର ରାଜାମାନେ, ବ୍ରଜସୁନ୍ଦର ଦାସ, ବିଶ୍ୱନାଥ କର, ରାମଶଙ୍କର ରାୟ, ଓଡ଼ିଶାର ପ୍ରଥମ ବାରିଷ୍ଟର ବିଶ୍ୱନାଥ ମିଶ୍ର ପ୍ରମୁଖ ବହୁ ବିଶିଷ୍ଟ ଅତିଥି ଉତ୍ସବରେ ଯୋଗ ଦେଇଥିଲେ । କଟକରୁ କାରିଗରମାନେ ଯାଇ ସାଜସଜ୍ଜା କରିଥିଲେ । ସାଂସ୍କୃତିକ କାର୍ଯ୍ୟକ୍ରମ ଭିତରେ ଥିଲା ସଙ୍ଗୀତ ଆସର, ବାଇସ୍କୋପ୍ ଓ ରାଜାଙ୍କ ରଚିତ ନାଟକ ପ୍ରଦର୍ଶନ ।[୩୧]

ରାଜା ରାଧାମୋହନଙ୍କଠାରେ ରାଜସୁଲଭ ଆତ୍ମାଭିମାନ କିମ୍ବା ବିଶିଷ୍ଟ ସାହିତ୍ୟିକ ବୋଲି ଲେଶମାତ୍ର ଅହମିକା ନଥିଲା । କାବ୍ୟ ରଚନା ସ୍ପୃହା ତାଙ୍କର କିପରି ଜାତ ହେଲା ତାହା ସେ ଲେଖିଛନ୍ତି :

---

(୨୯) ବ୍ରହ୍ମପୁରର ବିଶିଷ୍ଟ ସାମ୍ବାଦିକ ଓ ଗବେଷକ ✓ ଏନ୍.ଏସ୍. ଆୟାଙ୍ଗାର ଏହି 'ମୁଖବନ୍ଧ'ର ଲେଖକଙ୍କୁ ଏ ତଥ୍ୟ ଦେଇଥିଲେ ।

(୩୦) ରାଜକବି ରାଧାମୋହନ ରାଜେନ୍ଦ୍ର (ପ୍ରବନ୍ଧ)- ନରସିଂହ ଦେଓ । 'ଦୈନିକ ଆଶା', ତା. ୧୯-୭-୧୯୮୨ ।

(୩୧) ଉତ୍କଳ ଦୀପିକା, ୧୫ ମାର୍ଚ୍ଚ ୧୯୧୩ ମସିହା ।

ମାତୃଭାଷା ପୂଜା ପ୍ରବୀଣ ସାହିତ୍ୟରଥିଙ୍କ ପ୍ରସିଦ୍ଧ ସୁଲେଖନୀ-
ବିନିସୃତ ସାରସ୍ୱତ ସୁଧାଝରୀ ସ୍ପର୍ଶ କରିବାରୁ କର୍ଣ୍ଣବେନି,
ବେଳେବେଳେ
ସେହି ରସସ୍ୱାଦନ, କରଣେ ତତ୍ପର ହେଲା ମୋର ମନ ।

(ପ୍ରେମ ମଞ୍ଜରୀ, ଶେଷଛାନ୍ଦ, ୪୨ପଦ)

'ପ୍ରେମ ମଞ୍ଜରୀ' କାବ୍ୟ ରଚନା ପଛରେ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ସେ କହିଛନ୍ତି :
ବାଗ୍ଦେବୀ ଭଣ୍ଡାର ଅଭାବ ପୂରଣେ କରିନାହିଁ ଏହା, କବି ହେବି
ବୋଲି ଅଭିମାନ ଲେଶ ନାହିଁ, ଖ୍ୟାତନାମା ହେବାକୁ ମୁଁ ନାହିଁ ଭାବି,
ଏ ସାମାନ୍ୟ
ଗ୍ରନ୍ଥୁଁ, ସଦୁପଦେଶ ଲଭିବେ କେ ବୋଲି ନୁହେଁ ଉଦ୍ଦେଶ । (୪୩ ପଦ)
ସ୍ୱରୁଚି ବାସନା ଭେଦବଳେ ସିନା ଏ ପ୍ରପଞ୍ଚେ ସର୍ବେ ଦୋଳାୟିତ,
ତହୁଁ ଅବ୍ୟାହତି ନଲଭି ସାହିତ୍ୟ ପରାନନ୍ଦେ ହେଲି ଲାଳାୟିତ,
ବାଞ୍ଛିଅଛି,
ଏ ରୀତିରେ ଜୀବନ, ସର୍ବ ସମୟ କରିବି ହରଣ । (୪୪ ପଦ)

ଉପର ଦୁଇଟି ପଦରେ ତାଙ୍କର କହିବା କଥା ହେଲା - ସେ ସାହିତ୍ୟ ଭଣ୍ଡାରର କୌଣସି ଅଭାବ ପୂରଣ ପାଇଁ ଲେଖନୀ ଚାଳନା କରିନାହାନ୍ତି; କବି ହେବାର ଲାଳସା, କିମ୍ବା ଖ୍ୟାତନାମା ହେବା ବାସନା ନାହିଁ । କିମ୍ବା ରଚନା ମାଧ୍ୟମରେ ନୀତି ଉପଦେଶ ବୟାନ କରିବା ଅଭିଳାଷ ନାହିଁ । କବିଙ୍କ ଗ୍ରନ୍ଥ ରଚନା କରିବା ଉଦ୍ଦେଶ୍ୟ ହେଉଛି 'ସ୍ୱରୁଚି' । ଏହା ହେଉଛି ତାଙ୍କର ଖୋଇ, ଅର୍ଥାତ୍ ରଚନା କରିବାକୁ ତାଙ୍କୁ ଭଲ ଲାଗେ ! ସାରା ଜୀବନ ସାହିତ୍ୟ-ସାଧନାରେ କଟାଇବାକୁ ସେ ଇଚ୍ଛା କରିଛନ୍ତି ।

ବାସ୍ତବିକ ସେ ସାରାଜୀବନ ଓଡ଼ିଆ ସାହିତ୍ୟର ସେବାରେ ଅତିବାହିତ କରିଛନ୍ତି । ରାଜ୍ୟ ଶାସନର ଗୁରୁଭାର, ବ୍ୟକ୍ତିଗତ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସେ ସାହିତ୍ୟ ସାଧନାରୁ ବିଚ୍ୟୁତ ହୋଇପାରି ନାହାନ୍ତି । ସାହିତ୍ୟ ସାଧନାରେ ଯେଉଁମାନେ ତାଙ୍କୁ ସାହାଯ୍ୟ କରିଛନ୍ତି ସେମାନଙ୍କୁ ସେ ଅକୃତ୍ରିମ ଭାବେ କୃତଜ୍ଞତା ଜ୍ଞାପନ କରିଛନ୍ତି ।

ଚିକିଟୀ ରାଜବଂଶର ସମଗ୍ର ସାହିତ୍ୟକୃତିକୁ ସୁଲେଖକ ଓ ସମାଲୋଚକ ✓ କୁଞ୍ଜବିହାରୀ ନାୟକ 'ରାଜେନ୍ଦ୍ର ସାହିତ୍ୟ' ନାମରେ ଅଭିହିତ କରିଛନ୍ତି । ସେ ଲେଖିଛନ୍ତି- ''ଏହି ରାଜେନ୍ଦ୍ର ପୀଠରେ ବଂଶାନୁକ୍ରମରେ ପ୍ରାୟ ପ୍ରତ୍ୟେକ ରାଜା ଯେପରି ସ୍ତରୀଭୂତ ଭାବେ ସାହିତ୍ୟର ଉତ୍ତରୋତ୍ତର ସାଧନା କରିଯାଇଛନ୍ତି, ତାହା ଉତ୍କଳ ତଥା ଭାରତର କୌଣସି ସ୍ଥାନରେ ପାଇବାକୁ ମିଳେ ନାହିଁ ।''

ଚିକିଟୀ ରାଜବଂଶର ସର୍ବଶ୍ରେଷ୍ଠ ଓ ସର୍ବଶେଷ ରାଜା ଥିଲେ ରାଧାମୋହନ ରାଜେନ୍ଦ୍ର ଦେବ । ଏହା କହିଲେ ଅତ୍ୟୁକ୍ତି ହେବନାହିଁ । କୁଞ୍ଜବିହାରୀଙ୍କ ଭାଷାରେ- ''ସେ ଚିକିଟୀ ରାଜ୍ୟର ଶାସନଭାର ବହନ କରିଥିବା ସତ୍ତ୍ୱେ ସାହିତ୍ୟକୁ ନିଜର ଆସନରେ ରାମଚନ୍ଦ୍ରଙ୍କର ପାଦୁକା ରୂପେ ସ୍ଥାପନ କରିଥିଲେ ।''[୩୨]

## ପରମାର୍ଥ ପୟୋଧି

ରାଜା ରାଧାମୋହନ ୧୯୨୩ ମସିହାରେ ଜ୍ୟେଷ୍ଠପୁତ୍ର ଗୌରଚନ୍ଦ୍ରଙ୍କୁ ରାଜ୍ୟଭାର ଅର୍ପଣ କରିଦେଇ ହରିଦ୍ୱାରରେ ଏକପ୍ରକାର ବାନପ୍ରସ୍ଥ ଜୀବନ ବିତାଇ ଥିଲେ । ପ୍ରାୟ ଛଅବର୍ଷ ପରେ ଫେରି ଆସିଥିଲେ ନିଜ ରାଜ୍ୟକୁ । ଚିକିଟୀ ନିକଟବର୍ତ୍ତୀ ଗିଲିସୋଲା ଗ୍ରାମରେ ନିଜର ଏକ ଭବନରେ ଶେଷନିଃଶ୍ୱାସ ତ୍ୟାଗ ଯାଏଁ ଅବସ୍ଥାନ କରିଥିଲେ ।

ପୁତ୍ର ରାଜା ଗୌରଚନ୍ଦ୍ରଙ୍କ ସାହିତ୍ୟକୃତି ସମ୍ପର୍କରେ କିଛି ତଥ୍ୟ ମିଳୁନାହିଁ । କିନ୍ତୁ ତାଙ୍କର ଓଡ଼ିଆ ଭାଷା ଓ ସାହିତ୍ୟ ପ୍ରତି ଅନୁରାଗ ଥିବା ଜଣାଯାଏ । ତାଙ୍କର ଉଦ୍ୟମରେ ଇଷ୍ଟେଟ୍‌ର ସମସ୍ତ କାଗଜାତ୍, ରସିଦ, ରେକର୍ଡ ପତ୍ର ଓଡ଼ିଆରେ ଲେଖାଗଲା । ନିଜ ଇଷ୍ଟେଟ୍‌ରେ ଶିକ୍ଷାର ବିସ୍ତାର ପାଇଁ କାର୍ଯ୍ୟ କରିଥିଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଅନ୍ୟ ନେତାମାନଙ୍କ ସହିତ ସକ୍ରିୟ ଉଦ୍ୟମ କରିଥିଲେ । ଦୁଃଖର ବିଷୟ, ୧୯୩୪ ମସିହାରେ ଗୁରୁତର ବ୍ୟାଧିରେ ପଡ଼ି ସେ ପରଲୋକ ଗମନ କଲେ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦେଖିବାକୁ ସେ ବଞ୍ଚିରହି ପାରିଲେ ନାହିଁ ।

ପୁତ୍ରର ଅକାଳ ବିୟୋଗ ରାଧାମୋହନଙ୍କ ପାଇଁ ଥିଲା ଏକ ଦାରୁଣ ଧକ୍‌କା । ଯୌବନରେ ପ୍ରିୟତମା ପତ୍ନୀଙ୍କ ବିୟୋଗ, ପୌଢ଼କାଳରେ ପ୍ରଥମ ପୁତ୍ରର ବିୟୋଗ, ଏହିଭଳି ବହୁ ଘାତ ପ୍ରତିଘାତ ସତ୍ତ୍ୱେ ସେ ଜୀବନର ଶେଷ ସମୟ ଯାଏଁ ସାହିତ୍ୟ ରଚନାରୁ ବିରତ ହୋଇ ନାହାନ୍ତି । ତାଙ୍କର ଶେଷ କାଳର ଦୁଇଟି ମହାର୍ଘ ରଚନା ହେଲା - 'ପରମାର୍ଥ ପୟୋଧି' ଓ 'ଯୋଗ ବାଶିଷ୍ଟ ରାମାୟଣ' । ଦ୍ୱିତୀୟ ଗ୍ରନ୍ଥଟି ସଂସ୍କୃତରୁ ଅନୂଦିତ, ଓ ଏ ଯାଏଁ ଅପ୍ରକାଶିତ ରହିଥିବା ଜଣାଯାଏ । ପ୍ରଥମଟି ବ୍ରହ୍ମପୁରର ତତ୍‌କାଳୀନ ଶାରଦା ପ୍ରେସ୍‌ରେ ମୁଦ୍ରିତ ହୋଇଥିଲେ ମଧ୍ୟ ପ୍ରେସ୍‌ରୁ ପଦାକୁ ଆସିପାରିଲା ନାହିଁ ; ପ୍ରେସ୍‌ରେ ଅଗ୍ନିକାଣ୍ଡ ଯୋଗୁଁ ସମସ୍ତ କପି ନଷ୍ଟ ହୋଇଗଲା ବୋଲି କୁହାଯାଇଛି । ଯଥା ସମୟରେ ପ୍ରେସ୍‌ର ମୁଦ୍ରଣ ଖର୍ଚ୍ଚ ଦେବାରେ ରାଜା ବିଳମ୍ବ କରିଥିଲେ । ଇତି ମଧ୍ୟରେ ପ୍ରେସ୍‌ରେ ଅଗ୍ନିକାଣ୍ଡ ଘଟି, ଅନେକ ଆସବାବ ପତ୍ର ସହିତ 'ପରମାର୍ଥ ପୟୋଧି'ର ସମସ୍ତ କପି କୁଆଡ଼େ ଦଗ୍‌ଧ ହୋଇଗଲା ବୋଲି ଶୁଣିବାକୁ ମିଳେ ।

---

(୩୨) ଉତ୍କଳ ସାହିତ୍ୟରେ ରାଜେନ୍ଦ୍ର ସାହିତ୍ୟର ମୌଳିକତା- କୁଞ୍ଜବିହାରୀ ନାୟକ (ବହିଟି ଅପ୍ରକାଶିତ, ରଚନା, ଏପ୍ରିଲ ୧୯୪୫ ମସିହା) ।

ଗୌରଚନ୍ଦ୍ର ରାଉତ କହିଛନ୍ତି, 'ପରମାର୍ଥ ପୟୋଧି' ବିଶ୍ୱଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ । ''ଗ୍ରନ୍ଥଟି ମୁଦ୍ରିତ ହୋଇଥିଲା, କିନ୍ତୁ ଲୋକ ଲୋଚନ ଗୋଚରକୁ ଆସିନାହିଁ । ମୁଦ୍ରଣ ବ୍ୟୟ ନପାଇ ପ୍ରେସ୍‌ରେ ପରମାର୍ଥ ପୟୋଧିର ସମାଧି ହୋଇଯାଇଛି ।'' (ରୂପାୟନ ମେ-ଜୁନ୍, ୧୯୮୨) । ଚିକିଟୀଗଡ଼ର ସୁଲେଖକ ଓ ରୂପାୟନ ପତ୍ରିକାର ସଂପାଦକ ✓ ନରସିଂହ ଦେଓ ଲେଖିଛନ୍ତି, ''ଶେଷ କାଳର ରଚନା 'ପରମାର୍ଥ ପୟୋଧି' (କ୍ରାଉନ୍ ୫୦୦ ପୃଷ୍ଠା) ତତ୍‌କାଳୀନ ଶାରଦା ପ୍ରେସ୍‌ରେ ମୁଦ୍ରଣ ଅବସ୍ଥାରେ ହିଁ ନଷ୍ଟ ହୋଇଗଲା... ।'' (ଦୈନିକ ଆଶା, ତାଃ ୧୯-୭-୧୯୮୨) । ଶ୍ରୀ ଗଣେଶ ପ୍ରସାଦ ପଣ୍ଡା ଲେଖିଛନ୍ତି- ''ପରମାର୍ଥ ପୟୋଧି ଏବେ ମଧ୍ୟ ଅଦୃଶ୍ୟ'' (ଚିକିଟୀର ଇତିହାସ..., ପ୍ରଥମ ମୁଦ୍ରଣ, ୧୯୯୯) ।

ଏହି 'ମୁଖବନ୍ଧ'ର ଲେଖକ ଓଡ଼ିଶା ମ୍ୟୁଜିୟମ୍‌ର ତତ୍‌କାଳୀନ କ୍ୟୁରେଟର ପଣ୍ଡିତ ନୀଳମଣି ମିଶ୍ରଙ୍କୁ ସେଠାକାର କାର୍ଯ୍ୟାଳୟରେ ତାଃ ୧୪-୩-୧୯୮୨ରେ ସାକ୍ଷାତ୍ କରିଥିଲା । 'ଓଡ଼ିଆ ସାହିତ୍ୟକୁ ଚିକିଟୀ ରାଜବଂଶ'ର ଦାନ ଶୀର୍ଷକ ଏକ ଦୀର୍ଘ ପ୍ରବନ୍ଧର ଲେଖକ ପଣ୍ଡିତ ମିଶ୍ର 'ପରମାର୍ଥ ପୟୋଧି' ପ୍ରେସ୍‌ରେ ନଷ୍ଟ ହୋଇଯିବା ହେତୁ ଓଡ଼ିଆ ସାହିତ୍ୟର ପ୍ରଭୂତ କ୍ଷତି ହୋଇଗଲା କହି ଦୁଃଖ ପ୍ରକାଶ କରିଥିଲେ ।

ମୁଁ ଅନୁସନ୍ଧାନ ଜାରି ରଖିଲି । ବ୍ରହ୍ମପୁରର ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍‌ରେ ସେତେବେଳେ ଶାରଦା ପ୍ରେସ୍ କାର୍ଯ୍ୟ କରୁଥାଏ । ପ୍ରେସ୍‌ର ମାଲିକ ରଜନୀକାନ୍ତ ପାଢ଼ୀ ମୋତେ ବହୁ ଆଗରୁ ଜାଣିଥିଲେ । ସେ କହିଲେ ଯେ ତାଙ୍କର ସ୍ୱର୍ଗତ ପିତା ଶ୍ୟାମସୁନ୍ଦର ପାଢ଼ୀଙ୍କ ଅମଳରେ ଶାରଦା ପ୍ରେସ୍‌ରେ ପରମାର୍ଥ ପୟୋଧି ମୁଦ୍ରିତ ହୋଇଥିଲା । ବହିଟି ମୁଦ୍ରିତ ହୋଇ ପ୍ରେସ୍‌ରୁ ବାହାରିବା ପୂର୍ବରୁ ପ୍ରେସ୍‌ରେ ନିଆଁ ଲାଗି ତାହା ନଷ୍ଟ ହୋଇ ଯାଇଥିଲା । ତେବେ ଅଧିକ ଅନୁସନ୍ଧାନ ପାଇଁ ତାଙ୍କ ପିତାଙ୍କ ସମୟରେ କାର୍ଯ୍ୟ କରିଥିବା ପ୍ରେସ୍‌ର ଜନୈକ ବୟୋବୃଦ୍ଧ କର୍ମଚାରୀ ସତ୍ୟବାଦୀ ନନ୍ଦଙ୍କୁ ପଚାରିବା ପାଇଁ ରଜନୀବାବୁ ମୋତେ କହିଥିଲେ । ମୁଁ ସତ୍ୟବାଦୀ ନନ୍ଦଙ୍କୁ ବ୍ରହ୍ମପୁରର ବାଲାଜୀ ପେଣ୍ଠ ସାହିରେ ଥିବା ତାଙ୍କର ଘରେ ଭେଟିଥିଲି । ନନ୍ଦ ମହାଶୟ ଅଗ୍ନି ଦଗ୍ଧ ଅବସ୍ଥାରୁ ଉଦ୍ଧାର କରି ପରମାର୍ଥ ପୟୋଧିର କିଛି ଅଂଶ ପାଖରେ ରଖିଛନ୍ତି କହିଲେ ଓ ତାହା ଆଣି ମୋତେ ଦେଖାଇଲେ ।

ଯାହା ଦେଖିଲି ତାହା ଥିଲା ଗ୍ରନ୍ଥଟିର ପ୍ରାୟ ଅର୍ଦ୍ଧାଂଶ । ମୋଟ ପୃଷ୍ଠା ୩୮୨ ମାତ୍ର । 'ପରମାର୍ଥ ପୟୋଧି'ର ସର୍ବମୋଟ ଦଶଗୋଟି 'ତରଙ୍ଗ' ବା ଭାଗରୁ ଏ ଅଂଶରେ ଥିଲା ପାଞ୍ଚଗୋଟି ତରଙ୍ଗ । ତାହା ହେଲା- ବେଦ ତରଙ୍ଗ, ସୃଷ୍ଟି ତତ୍ତ୍ୱ ତରଙ୍ଗ, ମହାଭୂତ ତରଙ୍ଗ, ଆର୍ଯ୍ୟଦର୍ଶନ ତରଙ୍ଗ ଓ ଧର୍ମଶାସ୍ତ୍ର ତରଙ୍ଗ । ସତ୍ୟବାଦୀ ଯେଉଁ ଅଂଶ ଦେଖାଇଥିଲେ ସେଥିରୁ ମୁଦ୍ରଣ ସମୟ ଜାଣି ହେଲା ନାହିଁ । ସେ ଅନୁମାନ କରି କହିଲେ ଯେ, ଗ୍ରନ୍ଥଟି ମୁଦ୍ରିତ ହୋଇଥିଲା ୧୯୨୮ରୁ ୧୯୩୫ ମସିହା ମଧ୍ୟରେ ।

ସେତେବେଳେ ଫଟୋକପି କରିବା ବା ଜେରକ୍ସ ସୁବିଧା ନଥିଲା । ଏତେଗୁଡିଏ ପୃଷ୍ଠା ହାତରେ ନକଲ କରିବା ସମୟ ସାପେକ୍ଷ ଥିଲା । ସେ ମୋତେ ସେଗୁଡିକ ହସ୍ତାନ୍ତର କରିବାକୁ କୁଣ୍ଠିତ ଥିଲେ । ତାଙ୍କୁ ପରେ ଦେଖା କରିବି କହି ମୁଁ ଫେରି ଆସିଥିଲି । ବ୍ରହ୍ମପୁରରୁ ସ୍ଥାନାନ୍ତର ଓ ସରକାରୀ ବୃତ୍ତିଗତ ଜଞ୍ଜାଳରେ ରହି ମୁଁ ସତ୍ୟବାଦୀଙ୍କୁ ପୁନର୍ବାର ସାକ୍ଷାତ୍ କରିପାରିଲି ନାହିଁ । ଚାକିରୀରୁ ଅବସର ପରେ ପ୍ରାୟ ପାଞ୍ଚବର୍ଷ ତଳେ ବ୍ରହ୍ମପୁରରେ ଯୋଗାଯୋଗ କରିବାରୁ ଜାଣିଲି ଯେ ତାଙ୍କର ଇତି ମଧ୍ୟରେ ଦେହାନ୍ତ ହୋଇଯାଇଛି । ତାଙ୍କର ପୁତ୍ର କହିଲେ ତାଙ୍କର ପିତାଙ୍କ ପାଖରେ ରହିଥିବା ସମସ୍ତ ବହି ଏକ କାଠ ଆଲମାରୀରେ ଥିଲା, ଉଇ ଲାଗି ସେ ସବୁ ନଷ୍ଟ ହୋଇଗଲା । ଏହା ଶୁଣି ମୋତେ କଷ୍ଟ ଲାଗିଲା । ଭାବିଲି, କି ଦୁର୍ଯୋଗରେ ରାଜା ରାଧାମୋହନ ବହିଟି ଲେଖିଥିଲେ ଯାହାକି ମୁଦ୍ରିତ ହୋଇଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ ଜଗତକୁ ପ୍ରବେଶ କରିପାରିଲା ନାହିଁ ।

ପ୍ରାୟ ଏକବର୍ଷ ତଳେ ମୁଁ ଏକଥା ମୋର ଅନୁଜ ପ୍ରତିମ ସହୃଦୟ ବନ୍ଧୁ ଶ୍ରୀ ସୁନୀଲ ଚୌଧୁରୀଙ୍କୁ କହିଥିଲି । ସେ ବ୍ରହ୍ମପୁର ସହରର ଏକ ସମ୍ଭ୍ରାନ୍ତ ପରିବାରର ସୁସନ୍ତାନ । ସଂପ୍ରତି 'ନାଲ୍‌କୋ'ର ଭୁବନେଶ୍ୱର ମୁଖ୍ୟ କାର୍ଯ୍ୟାଳୟରେ ଚିଫ୍ ମ୍ୟାନେଜର ଅଛନ୍ତି । ଶ୍ରୀ ଚୌଧୁରୀ ବହୁଶ୍ରମ କରି କୌଣସି ସୂତ୍ରରୁ ପରମାର୍ଥ ପୟୋଧିର ଗୋଟିଏ ଜରାଜୀର୍ଣ୍ଣ ସେଟ୍ ଉଦ୍ଧାର କରି ଆଣି ମୋତେ ଦେଲେ । ପୁରାତନ ମୁଦ୍ରଣ ହେତୁ ଏହାର ପୃଷ୍ଠାମାନ ଦୁର୍ବଳ ହୋଇଯିବାରୁ ଅଳ୍ପ କେତୋଟି ପୃଷ୍ଠା ନଷ୍ଟ ହୋଇଯାଇଛି । ଗ୍ରନ୍ଥର ମଲାଟ ନାହିଁ, ହୁଏତ ଛପା ହୋଇନଥିଲା । ଆଜି ଏ ଗ୍ରନ୍ଥର ପୁନଃ ପ୍ରକାଶ (ପୁନର୍ଜନ୍ମ !) ଅବସରରେ ମୁଁ ଶ୍ରୀ ଚୌଧୁରୀ ଓ ଶ୍ରୀମତୀ ଚୌଧୁରୀଙ୍କୁ ମୋର ଅନ୍ତରଭରା କୃତଜ୍ଞତା ଓ ଆଶୀଷ ଜଣାଉଛି ।

ଏହି 'ପରମାର୍ଥ ପୟୋଧି'ରେ ରହିଛି ଦଶଟି ଭାଗ, ଯାହାକୁ 'ତରଙ୍ଗ' ନାମକରଣ କରାଯାଇଛି । ପରମାର୍ଥ ଅର୍ଥ ଆଧ୍ୟାତ୍ମିକ ଜ୍ଞାନ, ଧର୍ମ, ମୋକ୍ଷ । ପୟୋଧି ଅର୍ଥ ସମୁଦ୍ର । ସୁତରାଂ ତରଙ୍ଗ ନାମ ଦେବା ଯଥାର୍ଥ ହୋଇଛି । ଦଶଟି ତରଙ୍ଗର ନାମ, ପ୍ରତ୍ୟେକ ତରଙ୍ଗର ପ୍ରଥମ ମୁଦ୍ରିତ ପୃଷ୍ଠା ସଂଖ୍ୟା, ନଷ୍ଟ ହୋଇଯାଇଥିବା ପୃଷ୍ଠା ସଂଖ୍ୟା ସମ୍ପର୍କରେ ନିମ୍ନମତେ ସୂଚନା ପ୍ରଦାନ କରାଗଲା :

୧. ବେଦ ତରଙ୍ଗ (ମୋଟ ୪୮ ପୃଷ୍ଠା; ପୃଷ୍ଠା ୩ ଓ ୪ ନାହିଁ), ୨. ସୃଷ୍ଟି ତତ୍ତ୍ୱ ତରଙ୍ଗ (୩୯ ପୃଷ୍ଠା), ୩. ମହାଭୂତ ତରଙ୍ଗ (୧୦୩ ପୃଷ୍ଠା), ୪. ଆର୍ଯ୍ୟଦର୍ଶନ ତରଙ୍ଗ (୧୧୦ ପୃଷ୍ଠା), ୫. ଧର୍ମଶାସ୍ତ୍ର ତରଙ୍ଗ (୮୨ ପୃଷ୍ଠା), ୬. ପ୍ରସ୍ଥାନ ତ୍ରୟ ତରଙ୍ଗ (୧୦୬ପୃଷ୍ଠା); ପୃଷ୍ଠା ସଂଖ୍ୟା ୪୭ ଓ ୪୮ ନଷ୍ଟ), ୭. ସାଂପ୍ରଦାୟିକ ଦର୍ଶନ ତରଙ୍ଗ (୪୩ ପୃଷ୍ଠା; ଶେଷ ୫ପୃଷ୍ଠା ନାହିଁ), ୮. ପାଶ୍ଚାତ୍ୟ ଦର୍ଶନ ତରଙ୍ଗ (୧୩୮ ପୃଷ୍ଠା; ପୃଷ୍ଠା ସଂଖ୍ୟା ୨୨୧ରୁ ୨୨୪ ଓ ପୃ.ସଂ. ୨୧୫ ଓ ୨୧୬ ନାହିଁ, ୯. ସିଦ୍ଧାନ୍ତ ତରଙ୍ଗ (୬୫ ପୃଷ୍ଠା), ୧୦. ନିରୂପଣ ପ୍ରସଙ୍ଗ ତରଙ୍ଗ (୩୭ ପୃଷ୍ଠା; ଶେଷ କେତୋଟି ପୃଷ୍ଠା ନାହିଁ) ।

ଏତଦ୍ ବ୍ୟତୀତ, 'ଅବତରଣିକା'ରେ ରହିଛି ୧୦ ପୃଷ୍ଠା, 'ଐଶୀତତ୍ତ୍ୱ ସୂଚିକା'ରେ ୨୬ ପୃଷ୍ଠା ଏବଂ 'ଗ୍ରନ୍ଥ ଗତ ବିଷୟର ସାର ସଂକ୍ଷିପ୍ତ ପରିଚୟ'ରେ ରହିଛି ୪ପୃଷ୍ଠା (ଏହା ଅସମ୍ପୂର୍ଣ୍ଣ ରହିଛି) ।

ଉପଲବ୍ଧ ହୋଇଥିବା ଗ୍ରନ୍ଥଟିରେ ଆନୁମାନିକ ୨୬ପୃଷ୍ଠା ନାହିଁ, ଏବଂ ରହିଛି ସର୍ବମୋଟ ୮୦୧ପୃଷ୍ଠା । ଏହାର ମଲାଟ ନାହିଁ, ହୁଏତ ମୁଦ୍ରିତ ହୋଇନଥିଲା । ମୁଦ୍ରଣ ସମୟ କେଉଁଠି ଉଲ୍ଲେଖ ନାହିଁ । କେବଳ ଲେଖାଅଛି- ''ବ୍ରହ୍ମପୁର ଶାରଦାପ୍ରେସ୍‌ରେ ଶ୍ରୀ ଶ୍ୟାମସୁନ୍ଦର ପାଢ଼ୀଙ୍କ ଦ୍ୱାରା ମୁଦ୍ରିତ ।'' ଆମ୍ଭର ଅନୁମାନ ଏହା ୧୯୩୫ ମସିହା ପରେ ମୁଦ୍ରିତ ହୋଇଥିବ । ଶାରଦା ପ୍ରେସର ମାଲିକ ଶ୍ୟାମସୁନ୍ଦର ପାଢ଼ୀ ଥିଲେ । କିନ୍ତୁ ପ୍ରେସ୍‌ର ପରିଚାଳକ (ମ୍ୟାନେଜର) ଥିଲେ ଗୌରଚନ୍ଦ୍ର ରାଉତ । ସ୍ମୃତିଚାରଣ କରି ସେ କହିଛନ୍ତି- ''ମୁଁ ସେତେବେଳେ ଶାରଦା ପ୍ରେସ୍‌ର ପରିଚାଳକ । ରାଜା ସଂକଳନ କଲେ 'ପରମାର୍ଥ ପୟୋଧି' । ବିଶ୍ୱଧର୍ମ ସମ୍ବନ୍ଧୀୟ ଗ୍ରନ୍ଥ । ଯୋଜନା ହୋଇଥିଲା ୨୫ଟି ତରଙ୍ଗରେ ୨୫ଶହ ପୃଷ୍ଠାରେ ୫ଖଣ୍ଡରେ ପରମାର୍ଥ ପୟୋଧି । ହଜାରେ ପୃଷ୍ଠାରେ ଦୁଇଖଣ୍ଡ ପୁସ୍ତକ ମୁଁ ସଂଶୋଧନ ଓ ମୁଦ୍ରଣୋପଯୋଗୀ କରିଥିଲି । ମୁଦ୍ରିତ ହୋଇଥିଲା । କିନ୍ତୁ ଲୋକଲୋଚନ ଗୋଚରକୁ ଆସିନାହିଁ । ଶୁଣିଲି ମୁଦ୍ରଣ ବ୍ୟୟ ନପାଇ ପ୍ରେସ୍‌ରେ ପରମାର୍ଥ ପୟୋଧିର ସମାଧି ହୋଇଯାଇଛି । ରାଜେନ୍ଦ୍ର ଇହଧାମ ତ୍ୟାଗ କରିଛନ୍ତି,'' (ରାଜେନ୍ଦ୍ର ସ୍ମୃତି, ରୂପାୟନ, ମେ-ଜୁନ୍ ୧୯୮୧) । ଏଥିରୁ ଜଣାଯାଏ, 'ପରମାର୍ଥ ପୟୋଧି' ୨୫ଟି 'ତରଙ୍ଗ'ରେ ଲେଖାଯିବା ପାଇଁ ପରିକଳ୍ପନା କରାଯାଇଥିଲେ ହେଁ, ମାତ୍ର ୧୦ଟି 'ତରଙ୍ଗ' ଲେଖାଯାଇ ମୁଦ୍ରିତ ହୋଇଥିଲା ।

'ପରମାର୍ଥ ପୟୋଧି' କେଉଁ ବିଷୟବସ୍ତୁ ଉପରେ ଆଧାରିତ ଏବଂ ଏହାକୁ ରଚନା କରିବା ପଛରେ ତାଙ୍କର କ'ଣ ଉଦ୍ଦେଶ୍ୟ ଥିଲା, ତାହାର ନମ୍ର ସୂଚନା ରାଜା ରାଧାମୋହନ ଦେଇଛନ୍ତି, 'ଅବତରଣିକା'ରେ ।

''ଅତଏବ ଆବଶ୍ୟକତା ଦୃଷ୍ଟିରେ ଏହି ବିପ୍ଳବମୟ ଯୁଗରେ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଯେଉଁ ବିଷୟ ସକଳର ମୌଳିକତା ସନ୍ନିବେଶିତ, ପୃଥିବୀ ବ୍ୟାପୀ ଯାବତୀୟ ଧର୍ମାଚାର୍ଯ୍ୟଗଣ ସମୟ ଭେଦରେ ଜନ୍ମି ଯେଉଁ ଗ୍ରନ୍ଥମାନ ପ୍ରଣୟନ କରିଅଛନ୍ତି, ସେମାନଙ୍କ ତାତ୍ପର୍ଯ୍ୟ ସରଳ ଉତ୍କଳ ଭାଷାରେ ଏକତ୍ର ଆଲୋଚନା କରି ପାଠକ ପାଠିକାମାନଙ୍କୁ ଉପହାର ଦେବାରେ ଗୋଟିଏ ଦୁଃସାହସ କରିଅଛି, ଏ ବିଷୟରେ କୃତକାର୍ଯ୍ୟ ହେବା ସହଜ ବ୍ୟାପାର ନୁହେଁ ।'' ପୁନଶ୍ଚ 'ଐଶୀତତ୍ତ୍ୱ ସୂଚିକା'ରେ ସେ କହିଛନ୍ତି ''ଦୁର୍ବଳ ହୃଦୟ, ଏବଂ ବର୍ବର ଅନୁର୍ବର ମସ୍ତିଷ୍କର ଖିଆଲ ଯୋଗୁଁ ବ୍ୟଗ୍ରତର ହୋଇ ଗୋଷ୍ପଦୀଭୂତ ମତ୍ସଙ୍କଳିତ ଗ୍ରନ୍ଥଟିକୁ 'ପରମାର୍ଥ ପୟୋଧି' ନାମରେ ଆଖ୍ୟାୟିତ କରି ଏକାଦ୍ରିକ୍ରମେ ତରଙ୍ଗ ଭେଦରେ ଆର୍ଯ୍ୟଜାତିର ପ୍ରାୟ ସକଳ ଧର୍ମଶାସ୍ତ୍ର, ସକଳ ସମ୍ପ୍ରଦାୟ ବିଷୟର ସାର ସୂଚନା ଦେଇ ସ୍ୱଜାତି ସମକ୍ଷ୍ୟରେ ଉପସ୍ଥାପିତ କରିବା ସଂକଳ୍ପ କରିଅଛି । ପରେ ଈଶ୍ୱରେଚ୍ଛା ।''

'ପରମାର୍ଥ ପୟୋଧି'ର ମୁଦ୍ରଣ ହୋଇସାରିଥିଲା, କିନ୍ତୁ ଦୁର୍ଭାଗ୍ୟ ବଶତଃ ପ୍ରେସ୍‌ରେ ଅଗ୍ନିକାଣ୍ଡ ଜନିତ ଦୁର୍ଘଟଣାରୁ ଏହାର ସମସ୍ତ କପି ନଷ୍ଟ ହୋଇଯାଇଥିଲା ବୋଲି କୁହାଯାଇଛି। ଭାଗ୍ୟବଶତଃ ଦୁର୍ଘଟଣାରୁ ଉଦ୍ଧାର କରାଯାଇଥିବା ଖଣ୍ଡିଏ କପି ଏବେ ଆମ୍ଭର ହସ୍ତଗତ ହୋଇପାରିଛି, ଯଦିଓ ଅଳ୍ପ କେତୋଟି ପୃଷ୍ଠା ନାହିଁ। ବହିଟି ମୁଦ୍ରିତ ହୋଇଥିଲେ ମଧ୍ୟ ପ୍ରକାଶିତ ହୋଇଥିଲା ବୋଲି କୁହାଯାଇପାରିବ ନାହିଁ। ଏହାକୁ ସଂପାଦନା କରି ପ୍ରକାଶ କରାଯାଉଛି। ବସ୍ତୁତଃ ଏହାହିଁ ହେଉଛି ବହିଟିର ପ୍ରଥମ ସଂସ୍କରଣ। ଏହାକୁ ଦୁଇଟି ଭାଗରେ ପ୍ରକାଶ କରାଯାଉଛି। ପ୍ରଥମ ଭାଗରେ ପ୍ରଥମ ପାଞ୍ଚଗୋଟି 'ତରଙ୍ଗ', 'ଅବତରଣିକା', 'ଐଶୀତତ୍ତ୍ୱ ସୂଚିକା' ଇତ୍ୟାଦି ସହିତ ମୁଖବନ୍ଧ ପ୍ରକାଶ ପାଉଅଛି। ଦ୍ୱିତୀୟ ଭାଗରେ ଅବଶିଷ୍ଟ ପାଞ୍ଚଟି 'ତରଙ୍ଗ' ସ୍ଥାନ ପାଇବ।

ଆଶା କରାଯାଏ ଏହି ପୁସ୍ତକଟି ଓଡ଼ିଆ ସାହିତ୍ୟକୁ ଏକ ଅମୂଲ୍ୟ ଅବଦାନ ବିବେଚିତ ହେବ।

**- ମହୀମୋହନ ତ୍ରିପାଠୀ**

# ଅବତରଣିକା

ଯଦାଦେଶା ନିତ୍ୟଂ ଦିବି ପରିଚରନ୍ତୋ ଗ୍ରହଗଣା
ଅଶେଷଂ କଲ୍ୟାଣଂ ସକଳ ଭୁବନାନାଂ ବିଦଧତେ ।
ଯଦିଚ୍ଛାତୋ ଜାତାବଖିଳ ଜଗତାଂ ସୃଷ୍ଟି-ବିଲୟା
ବନାଦ୍ୟନ୍ତଂ ବନ୍ଦେ ବିଭୁତଦମଳଂ ବ୍ରହ୍ମପରମଂ ।

ସର୍ବାଦୌ ଅଭୀପ୍ସିତ ବିଷୟର ନିର୍ବିଘ୍ନ ପରିସମାପ୍ତି ନିମନ୍ତେ ବିଭିନ୍ନ ଦେଶୀୟ, ବିଭିନ୍ନ ଜାତୀୟ ଓ ବିଭିନ୍ନ ମତାବଲମ୍ବୀ ଯେଉଁ ସକଳ ମହାତ୍‌ପୁରୁଷଙ୍କ ଜୀବନୀ ଓ ଅମୂଲ୍ୟ ଶିକ୍ଷା ଆମ୍ଭେ ଉତ୍ତରାଧିକାରୀ ସୂତ୍ରେ ପାଇଅଛୁଁ, ଯେଉଁ ସକଳ ଦେବୋପମ ନରନାରୀଙ୍କର ଅଟଳ ସାଧନା ଓ ପୂତତମ ତ୍ୟାଗାନୁପ୍ରାଣିତ ମହାପ୍ରାଣ ବିରାଟ ମାନବଜାତିର ଅନନ୍ତ କଲ୍ୟାଣ ଲାଗି ଆଜୀବନ ସମୁତ୍ସୃଷ୍ଟ, ଯେଉଁମାନେ ସୁପ୍ରତ୍ୟକ୍ଷ ଈଶ୍ୱରସ୍ୱରୂପ ଆମ୍ଭର ଭବିଷ୍ୟତ ବଂଶଧରଙ୍କ ଚୈତନ୍ୟୋଦୟ ହେବାପାଇଁ ଅଗ୍ରଦୂତ ପରି ବରାଭୟ ହସ୍ତରେ ଧରାଧାମରେ ଅବତୀର୍ଣ୍ଣ ହେବେ, ତଦୀୟ ପଦପଙ୍କଜ ଉଦ୍ଦେଶ୍ୟରେ ଅକପଟ ପ୍ରୀତି ପୁଷ୍ପାଞ୍ଜଳି ଭକ୍ତିପ୍ରବଣ ମାନସରେ ଅର୍ପଣ କରି କାୟମନୋବାକ୍ୟରେ କୋଟି ପ୍ରଣାମ କରୁଅଛୁ ।

ସମ୍ଭବତଃ ଜଗତରେ ଯେଉଁ କର୍ମୀପୁରୁଷଗଣ ମହତ୍‌କର୍ମ ସାଧନ କରିଯାଇଅଛନ୍ତି, ତଦୀୟ ଭୂୟୋଦର୍ଶିତାର ଫଳହିଁ ସମାଜର ହିତସାଧନ କରିଆସୁଅଛି । ମହାଜନମାନେ ଅସାଧାରଣ ଅଭିଜ୍ଞତା ବଳରେ ଅଖଣ୍ଡ ସତ୍ୟ ନିଜ ଜୀବନରେ ଅନୁଭବ କରି ଯେଉଁ ସୁବ୍ୟବସ୍ଥା ପ୍ରଣୟନ କରିଅଛନ୍ତି ତାହାରି ସାହାଯ୍ୟରେ ମାନବ ସମାଜ ପରିଚାଳିତ ହୋଇଥାଏ, ଅତଏବ ସେ ସତ୍‌ପୁରୁଷମାନେ ହିଁ ଲକ୍ଷ୍ୟଭ୍ରଷ୍ଟ ସମାଜର ପ୍ରକୃତ ପଥପ୍ରଦର୍ଶକ ।

ଆମ୍ଭମାନଙ୍କ ପ୍ରାଚୀନତମ ପ୍ରାତଃସ୍ମରଣୀୟ ପର୍ଣ୍ଣପବନାଶନ ଆଧ୍ୟାତ୍ମିକ ନିଷ୍ଠାପର ପ୍ରାଚେତସ, ବ୍ୟାସ ପ୍ରଭୃତି ମହର୍ଷିବଂଶ ଏବଂ ଶୌଦ୍ଧୋଦନି, ଖ୍ରୀଷ୍ଟ, ମହମ୍ମଦ, ମୂଷା ପ୍ରମୁଖଙ୍କଠାରୁ ଶଙ୍କର, ରାମାନୁଜ, ଚୈତନ୍ୟ, ନାନକ ଓ ରାମକୃଷ୍ଣ ପରମହଂସଙ୍କ ପର୍ଯ୍ୟନ୍ତ ଧାର୍ମିକ ପୁରୁଷମାନେ ହିଁ ଏହାର ପ୍ରକୃତ ଦୃଷ୍ଟାନ୍ତର ସ୍ଥଳ । ଧର୍ମବୀରଙ୍କୁ ଛାଡ଼ିଦେଲେ କର୍ମବୀରମାନଙ୍କର ଅନୁଷ୍ଠିତ ନିଷ୍କଳୁଷ କ୍ରିୟାକଳାପ ସୁଦ୍ଧା ବିବିଧ ପ୍ରକାର ଜାତୀୟ ଚରିତ୍ର ଗଠନରେ ପର୍ଯ୍ୟାପ୍ତ ସହାୟକ ହୋଇଥାଏ ।

ଏହି ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଆମ୍ଭମାନଙ୍କର ଚିରାଧ୍ୟୁଷିତ ସ୍ୱର୍ଗାଦପି ଗରୀୟସୀ ଜନନୀ ଜନ୍ମଭୂମି ଭାରତବର୍ଷ ପାଶ୍ଚାତ୍ୟ ଶିକ୍ଷାନୁପ୍ରାଣିତ ଏବଂ ପ୍ରାଚ୍ୟର ପ୍ରାଚୀନ ଜ୍ଞାନ, ବିଜ୍ଞାନ, ସାହିତ୍ୟ ଓ

ଦର୍ଶନର ବାହ୍ୟାଡ଼ମ୍ବରପୂର୍ଣ୍ଣ ନବୋନ୍ମେଷିତ ସୁପ୍ରଭାତର ଆଲୋକରେ ଉଦ୍ଭାସିତ ହେଲେ ସୁଦ୍ଧା ଅପର ଦିଗରେ ସାମାଜିକ ବା ସାମ୍ପ୍ରଦାୟିକ ଅନୈକ୍ୟ, ଅସାମଞ୍ଜସ୍ୟ, ଭ୍ରାତୃବୈର, ପ୍ରଚଳିତ କୁରୀତିଦ୍ୟୋତକ ଆବର୍ଜନାମୟ କୁସଂସ୍କାର ଓ ଗତାନୁଗତିକ ଅନ୍ଧବିଶ୍ୱାସ ପୁଞ୍ଜୀଭୂତ ହୋଇ ମାରାତ୍ମକ ବେଦନାଦ୍ୱାରା ସେହି ଆର୍ଯ୍ୟାବର୍ତ୍ତକୁ ଅନ୍ତଃସାରଶୂନ୍ୟ ଓ ଅକର୍ମଣ୍ୟ କରିଦେଇଅଛି ।

ଆଜି ପୃଥିବୀବ୍ୟାପୀ ହୃଦୟଭେଦୀ ହାହାକାର, ଅଶାନ୍ତି ଓ ଅସ୍ଥିରତା ମଧ୍ୟରେ ପରାଧୀନ ଭାରତ ନିଜର ପୁରାଣ ସମ୍ପତ୍ତି ଆଧ୍ୟାତ୍ମିକ ଗୌରବ ଭୁଲିଯାଇ କିଂକର୍ତ୍ତବ୍ୟବିମୂଢ଼! ଆଉ ଅନ୍ୟ କର୍ତ୍ତୃକ କୁଟିଳ ଓ ଜଟିଳ ଭେଦନୀତି, ଗୁରୁ ଶିଷ୍ୟ, ପିତା ପୁତ୍ର, ପତି ପତ୍ନୀ, ରାଜା ପ୍ରଜା ଓ ସହଜାତ ଭାଇ ଭାଇ ମଧ୍ୟରେ ସୁଦ୍ଧା ଯେଉଁ ଅବୈଧ ଭେଦମାତ୍ରା କ୍ରମବୃଦ୍ଧି ପାଉଅଛି ତାହାର ପର୍ଯ୍ୟବସାନ କେଉଁ ରୌରବରେ, ତାହା ଚିନ୍ତାଶୀଳ ଦୂରଦର୍ଶୀ ଜନର ସୁଦ୍ଧା ଅଗୋଚର ।

ଆଜିକାଲି ସର୍ବତ୍ର ସମସ୍ୟାର ଯୁଗ କହିଲେ ଚଳେ । ଅନ୍ନବସ୍ତ୍ରର ସମସ୍ୟା, ରାଜନୈତିକ ସମସ୍ୟା, ଧର୍ମ ସମସ୍ୟା, ସାମାଜିକ ସମସ୍ୟା, ଶିକ୍ଷା ସମସ୍ୟା ପ୍ରଭୃତି ବିଶ୍ଳେଷଣ କରୁକରୁ ମାନବ ଶ୍ରାନ୍ତ, କ୍ଳାନ୍ତ; ତାହାର ଆୟୁଃ କ୍ଷୀଣ ଓ ବୁଦ୍ଧିବୃତ୍ତି ଶିଥିଳ । ସୁତରାଂ ଉକ୍ତ ସମସ୍ୟାଗୁଡ଼ିକର ସୁମୀମାଂସା ହେବା ଦୂରେ ଥାଉ, ସେଗୁଡ଼ିକ ଅହରହଃ ପରିବର୍ଦ୍ଧିତ । ତେବେ ଆଜି ଭାରତର ବହୁ ଦୁଃଖ ବେଦନାର ଅନ୍ତରାଳରେ ଭବିଷ୍ୟତ୍ ସୁଖ, ସୌଭାଗ୍ୟର ଅରୁଣାଲୋକ ଦେଖିବାକୁ ପାଇବୁ ନାହିଁ ? ଅତୀତକାଳୀନ ଭାରତର ତପୋବନରେ ଋଷ୍ୟାଶ୍ରମ ପ୍ରଧ୍ୱନିତ "ଶୃଣ୍ୱନ୍ତୁ ବିଶ୍ୱେ ଅମୃତସ୍ୟ ପୁତ୍ରାଃ", "ବିଶ୍ୱମାନବ ! ତୁମ୍ଭେ ଅମୃତର ସନ୍ତାନ" ଇତ୍ୟାଦି ମୃଦୁ ଗମ୍ଭୀର ପୁଣ୍ୟ ପାଞ୍ଚଜନ୍ୟ ଧ୍ୱନି ଆମ୍ଭର ବଧିର ଓ କଳୁଷିତ କର୍ଣ୍ଣକୁହରରେ ଶୁଣିପାରିବା ନାହିଁ ? ଅଭିନିବେଶପୂର୍ବକ ବୁଝିବାକୁ ଗଲେ ଗୋଟିଏ ଆପ୍ତ ବନ୍ଧୁର, ସ୍ୱଭାବ ବନ୍ଧୁର ଚିତ୍ତବୃତ୍ତି ସୁଲଭରେ ବୋଧ ନହେବା ସ୍ଥଳେ ଶତଶତ ବର୍ଷବ୍ୟାପୀ ଅପର ଧର୍ମ ଓ କର୍ମାନୁପ୍ରାଣିତ ଗୋଟିଏ ବିରାଟ ଜାତିର ନାଡ଼ୀ ନକ୍ଷତ୍ର ସମ୍ୟକ୍ ବୋଧ ହେବା କି ସହଜ ବ୍ୟାପାର? ଏବଂ ନୂତନତାର ସହିତ ଘାତ ପ୍ରତିଘାତରେ ପ୍ରାଚୀନତାର ପରାଜୟ ଓ ଆଂଶିକ ଧ୍ୱଂସ ଅନିବାର୍ଯ୍ୟ ନୁହେଁ କି ? ତଥାପି ସାମୟିକ ସୁଖସ୍ରୋତରେ ଭାସମାନ ହୋଇ ପ୍ରାଚୀନ ସଭ୍ୟତାର ମସ୍ତକ ଚର୍ବଣ କରି ନିଜର ଗୌରବ ହରାଉଅଛୁଁ ସତ୍ୟ; କିନ୍ତୁ ମାନବ ଜାତିର ମାନବତ୍ୱ ଯେପରି ଧ୍ୱଂସପ୍ରାପ୍ତ ନହୁଏ ସେହିପରି ଜାତିର ନୈସର୍ଗିକ ସଭ୍ୟତାର ସମ୍ୟକ୍ ବିନାଶ ସୁଦ୍ଧା ଅସମ୍ଭବ । ପରିବର୍ତ୍ତନଶୀଳ ସଂସାରରେ ଉତ୍ଥାନପତନ ଅନିବାର୍ଯ୍ୟ ।

ସମ୍ମୁଖରେ ଆମ୍ଭେମାନେ ଦେଖିବାକୁ ପାଉ କି କ୍ରମାନ୍ୱୟରେ ସୁବିଶାଳ ସାଗରବକ୍ଷରୁ ଫେନିଳ ଉତ୍ତାଳ ଉର୍ମିମାଳା ଉଠି ଲୀନ ହୋଇ, ଉତ୍ତର କ୍ଷଣରେ ବୀରାବେଶରେ ବିପୁଳାକାରରେ ଧାଇଁଥିଲା ପରି ସଂସାରର ଘଟଣା ପ୍ରବାହରେ ସୁଦ୍ଧା ଆମ୍ଭେ ଏତାଦୃଶ ଉତ୍ଥାନପତନ ନିତ୍ୟ ପ୍ରତ୍ୟକ୍ଷ କରିଥାଉଁ । ସାଧାରଣତଃ ଆମ୍ଭମାନଙ୍କର ଦୃଷ୍ଟି ଉତ୍ଥାନ ଦିଗରେ ଆକୃଷ୍ଟ ହେଲାପରି ପତନ ଦିଗରେ ତାଦୃଶ ହୁଏ ନାହିଁ । ସୁତରାଂ ସଂସାରରେ ଉଭୟର ସାର୍ଥକତା ବିଦ୍ୟମାନ, ଏହି ତ ଜାଗତିକ ରୀତି ! ଏଥିର ସୂକ୍ଷ୍ମତତ୍ତ୍ୱାନୁସନ୍ଧାନ କରିବାକୁ

ହେଲେ ପୂର୍ବୋକ୍ତ ଲୁକ୍କାୟିତ ତରଙ୍ଗ ଶକ୍ତିଟା ପୂର୍ବାପେକ୍ଷା ପ୍ରବଳ ବେଗରେ ଉଠିବା ନିମନ୍ତେ ନବବଳ ସଞ୍ଚୟ କରିବା ବ୍ୟତିରେକେ ବିଲୁପ୍ତ ହେବାକୁ ଅନ୍ୟ କାରଣାନ୍ତର ଅପେକ୍ଷା ନକଲା ପରି ଅନାଦୃତ ଜାତୀୟ ସଭ୍ୟତାର ଉନ୍ନତି ଅବଶ୍ୟମ୍ଭାବୀ ବୁଝିବାକୁ ହେବ । ଭାରତର ସୌଭାଗ୍ୟରବି ତ କୌଣସି କୌତୁକୀର କରକ୍ରୀଡ଼ାକନ୍ଦୁକ ନୁହେଁ ଯେ ତାହା ଚିରଦିନ ଲାଗି ଜୀର୍ଣ୍ଣଶୀର୍ଣ୍ଣ ହୋଇ ରହିଥିବ ! ଅବଶ୍ୟ ସମୟରେ ତାହାର ନବୀନୋଜ୍ଜ୍ୱଳ ବେଶ ପ୍ରାଚୀ ଗଗନକୁ ଲୋହିତ ରାଗରଞ୍ଜିତ ନକରି ରହିପାରିବ ନାହିଁ ।

ମାନବ ସଭ୍ୟତାର କ୍ରମବିକାଶ ସଙ୍ଗେସଙ୍ଗେ ବିପୁଳତର ପୃଥିବୀର ପ୍ରତ୍ୟେକ ପ୍ରାନ୍ତରେ ଲୋକରକ୍ଷା ଲାଗି ଯେଉଁ ପ୍ରାତଃସ୍ମରଣୀୟ ବିଶ୍ୱବରେଣ୍ୟ ଧର୍ମବୀରଗଣ ଅବସର କ୍ରମେ ଅବତୀର୍ଣ୍ଣ ହୋଇ ତ୍ୟାଗର କଠୋର ସାଧନା ବଳରେ ଆତ୍ମାକୁ ନିୟନ୍ତ୍ରିତ କରି ନିଗୂଢ଼ ଆଧ୍ୟାତ୍ମିକତତ୍ତ୍ୱ ପରିଚୟର ଯେଉଁ ପରାକାଷ୍ଠା ଦର୍ଶାଇ ଅଛନ୍ତି ତାହା ସୌଭାଗ୍ୟପ୍ରଦ ଆଶୀର୍ବାଦ ତୁଲ୍ୟ ଅମରାକ୍ଷରରେ ସଞ୍ଚିତ ନଥିଲେ ଆଜି ପ୍ରକାଣ୍ଡ ବ୍ରହ୍ମାଣ୍ଡ ଅଜ୍ଞତା ଓ ବର୍ବରତା ଅନ୍ଧକାରର କେଉଁ ଗଭୀର ଗହ୍ୱରରେ ନିକ୍ଷିପ୍ତ ରହିଥା'ନ୍ତା ତାହା କହିବା ବାହୁଲ୍ୟ ମାତ୍ର ।

ଆହା, ପୂଜ୍ୟପାଦ ସେହି ମନୀଷିପୁଙ୍ଗବଙ୍କର କି ଦୂରଦୃଷ୍ଟି ନିବେଶିତ ସତ୍ୟାନୁସନ୍ଧାନ ! କି ଅଦମ୍ୟ ଜ୍ଞାନ ପିପାସା ! କି ଅବାରିତ ଅସଂଶୟିତ ବିଶ୍ୱହିତୈଷିଣୀ ! କି ସରଳ ଅକୃତ୍ରିମ ଉଦାର ମାନବପ୍ରୀତି ! ସର୍ବୋପରି ସ୍ୱୀୟ ସର୍ବତୋମୁଖୀନ ନୈସର୍ଗିକୀ ପ୍ରତିଭା ବଳରେ ଆପାତ ମନୋରମ ପାର୍ଥିବ ସୁଖସମ୍ପଦକୁ ପଦଦଳିତ କରି ଧ୍ୟାନସ୍ତିମିତ ନେତ୍ରରେ ବସି ଅମୃତ କଣ୍ଠରେ ଯେଉଁ ଅମୃତାୟମାନ "ସତ୍ୟଂ ଶିବଂ ସୁନ୍ଦରଂ" ବୋଲି ଗାଇଅଛନ୍ତି, ପ୍ରକୃତରେ ତାହାର ପ୍ରତ୍ୟକ୍ଷରେ କି ମହାମହିମାନ୍ୱିତ !

ସମ୍ପ୍ରତି ଧର୍ମରେ, କର୍ମରେ, ପ୍ରଜ୍ଞାରେ, ସାହସରେ, ତ୍ୟାଗରେ ଓ ପାଣ୍ଡିତ୍ୟରେ ଆଧୁନିକ ସଭ୍ୟଦେଶର ଆଦର୍ଶବ୍ୟକ୍ତିଙ୍କ ସହିତ ତୁଳନାରେ ଅସ୍ମଦ୍ଦେଶ ନ୍ୟୂନ ନୁହେଁ ସତ୍ୟ; କିନ୍ତୁ ସମସ୍ତ ବିଷୟରେ ପରମୁଖାପେକ୍ଷୀ । ଅମୂଲ୍ୟ ପ୍ରାଚୀନ ଆତ୍ମଗୌରବର ମୌଳିକତା ହରାଇ କିମ୍ଭୂତକିମାକାର ବିଶିଷ୍ଟ ଅଭିଶପ୍ତ ନବ୍ୟଭାରତ ସ୍ୱାର୍ଥ ଘଟିତ ଦଳଗତ ଭେଦର ସଂଘର୍ଷଜନିତ ମାରାତ୍ମକ ବୁଦ୍ଧିଦ୍ୱାରା ଐକ୍ୟ ମହାମନ୍ତ୍ରର ଗୂଢ଼ତତ୍ତ୍ୱ ଭୁଲିଯାଇ ବିରାଟ ବିଶ୍ୱ ଦରବାରରେ କାପୁରୁଷତାର ପରିଚୟ ଦେଇ ଅଧମାଧମ ବୋଲାଉଅଛନ୍ତି ।

ମୁକ୍ତକଣ୍ଠରେ କହିବାକୁ ଗଲେ ନବ୍ୟଭାରତରେ ପାଶ୍ଚାତ୍ୟ ଶିକ୍ଷିତଙ୍କର ଅଗାଧ ପାଣ୍ଡିତ୍ୟ ଧର୍ମବର୍ଜିତ, କଳ୍ପନାପ୍ରବଣଚିତ୍ତ ସ୍ୱାର୍ଥଜର୍ଜରିତ, ଜାତୀୟପ୍ରୀତି ଛଳନାବିଷଦୂଷିତ, ବୀର୍ଯ୍ୟ ପରପଦାନତ, ଶାସ୍ତ୍ର ଜଟିଳ ବ୍ୟାଖ୍ୟାଦୋଷମୂର୍ଚ୍ଛିତ, ଶାସ୍ତ୍ର ବ୍ୟବହାରଶୂନ୍ୟ ଓ କଳଙ୍କିତ, ପବିତ୍ର ରସନା ଅହଙ୍କାର-ରଚନା-ଶାଣିତ ଏବଂ ଯଜ୍ଞୋପବୀତ ଧାରଣ ଗର୍ବିତ ବ୍ରାହ୍ମଣଙ୍କର ବ୍ରାହ୍ମଣ୍ୟ ଅନ୍ନଭାଣ୍ଡଗତ ମାତ୍ର ।

ପୁଣି ଧର୍ମଜଗତରେ ସୁଦ୍ଧା କି ଅନୈକ୍ୟ ଘୋର ବିସମ୍ବାଦ ! ନାନା ମନୀଷୀଙ୍କର ନାନା ମତ, ନାନା ଶାସ୍ତ୍ରର ନାନା ବ୍ୟାଖ୍ୟା, ନାନା ଧର୍ମାଚାର୍ଯ୍ୟଙ୍କର ନାନା ବ୍ୟବସ୍ଥା; ଏମାନଙ୍କ ମଧ୍ୟରୁ କେଉଁଟି ନିର୍ଦ୍ଦୋଷ ବା କେଉଁଟି ଅବଲମ୍ବନୀୟ ବୁଝିବାକୁ ଗଲେ ମାନବର ଚିତ୍ତବୃତ୍ତି ଅବସନ୍ନ ହୋଇଯାଏ । କେବଳ ଭାରତରେ କାହିଁକି, ସକଳ ଦେଶରେ, ସକଳ କ୍ଷେତ୍ରରେ, ସକଳ ବ୍ୟାପାରରେ ଅହମହମିକା ପୂର୍ଣ୍ଣମାତ୍ରାରେ ଆଧିପତ୍ୟ ବିସ୍ତାର କରିଅଛି । ଯେହେତୁ ହିନ୍ଦୁ କହେ ହିନ୍ଦୁଧର୍ମ ଅତି ଉଦାର, ଏହା ସର୍ବପ୍ରାଚୀନ ଓ ସର୍ବଧର୍ମର ଆଶ୍ରୟ ସ୍ୱରୂପ, ପୁଣି ମୁକ୍ତିର ପ୍ରଶସ୍ତମାର୍ଗ । ଏହି ପୁଣ୍ୟଭୂମିସ୍ଥ ହିମାଳୟାଦି ଗିରିମାଳା, ଗଙ୍ଗା ପ୍ରଭୃତି ନଦୀ, ପୁଷ୍କର ପ୍ରଭୃତି ତୀର୍ଥ, ନୈମିଷ ପ୍ରଭୃତି ଅରଣ୍ୟ, ଅଯୋଧ୍ୟା ପ୍ରଭୃତି ନଗରୀ, ବିଶ୍ୱେଶ୍ୱର ପ୍ରଭୃତି ଦେବମୂର୍ତ୍ତି, ବେଦ, ପୁରାଣାଦି ଧର୍ମଗ୍ରନ୍ଥ ଏବଂ ବ୍ରାହ୍ମଣ ଜାତି, ବୈଷ୍ଣବାଦି ସମ୍ପ୍ରଦାୟ ଏକା ପୂଜ୍ୟତମ ଓ ଐଶୀସତ୍ତା ବିମଣ୍ଡିତ, ଏତଦ୍‌ବ୍ୟତୀତ ଅନ୍ୟ ଦେଶର ଆଲପସ୍ ପ୍ରଭୃତି ପର୍ବତ, ଥେମ୍‌ସ ପ୍ରଭୃତି ନଦୀ ଓ ଅନ୍ୟାନ୍ୟ ବିଶିଷ୍ଟ ନଗରୀ ଓ ଅରଣ୍ୟାନୀ ଏବଂ ଶାସ୍ତ୍ର ପ୍ରଭୃତି ଅସାର । ଏତେ କଥା କାହିଁକି, ତଦ୍ଦେଶବାସୀ ସୁଦ୍ଧା ଅପବିତ୍ର ଓ ଧର୍ମ ବିବର୍ଜିତ ।

**ଖ୍ରୀଷ୍ଟିୟାନ କହନ୍ତି,** "ଏକମାତ୍ର ଖୀଷ୍ଟଧର୍ମ ଭିନ୍ନ ପାପୀମାନଙ୍କର ଗତ୍ୟନ୍ତର ନାହିଁ, ବାଇବେଲ ଭିନ୍ନ ଅପର ଧର୍ମଗ୍ରନ୍ଥ କିଛି ନୁହେଁ । ଘୋର ଜାତିଭେଦବ୍ୟାଧିଗ୍ରସ୍ତ ହିନ୍ଦୁ ନାରୀପୀଡ଼କ, ଅସଭ୍ୟ, ବର୍ବର । ପରିତ୍ରାଣ ପାଇବାକୁ ହେଲେ କେବଳ ଖ୍ରୀଷ୍ଟଙ୍କର ଈଶ୍ୱରତ୍ୱରେ ବିଶ୍ୱାସ ହିଁ ମାନବ ଆତ୍ମାର ସଦ୍‌ଗତି" ।

**ମୁସଲମାନ କହନ୍ତି,** "ଇସ୍‌ଲାମ ଧର୍ମରେ ଦୀକ୍ଷିତ ନହେଲେ ସ୍ୱର୍ଗଲାଭ ଅସମ୍ଭବ । ମକ୍କା ମଦିନା ହିଁ ବିଶ୍ୱ ମଧ୍ୟରେ ଧର୍ମକ୍ଷେତ୍ର, ପୌତ୍ତଳିକ ହିନ୍ଦୁର କୋରାନ ପାଠ ବିନା ଚୈତନ୍ୟୋଦୟ ଅସମ୍ଭବ। କାଫେର ହିନ୍ଦୁଗଣ ! ଆମ୍ଭ ଧର୍ମର ଆଶ୍ରୟ ନେଇ ପାପାର୍ଣ୍ଣବରୁ ଉତ୍ତୀର୍ଣ୍ଣ ହୁଅ" ।

**ବୌଦ୍ଧ କହନ୍ତି,** "ବୁଦ୍ଧଂ ଶରଣଂ ଗଚ୍ଛ', "ଧର୍ମଂ ଶରଣଂ ଗଚ୍ଛ", "ସଂଘଂ ଶରଣଂ ଗଚ୍ଛ" । ଏହିପରି ଜୈନ ପ୍ରଭୃତି ପ୍ରତ୍ୟେକ ଜାତି, ପ୍ରତ୍ୟେକ ଧର୍ମ ନିଜର ଅଯଥା ବୈଶିଷ୍ଟ୍ୟ ଆସ୍ଫାଳନରେ ଜିହ୍ୱାକଣ୍ଡୁର ଅପନୋଦନ ନିମନ୍ତେ ଅହରହ ବ୍ୟତିବ୍ୟସ୍ତ । କାହାର ହେଲେ ଉଦ୍ଦାମ ଲାଳସାର ବିରାମ ନାହିଁ ।

ଭ୍ରାନ୍ତ ମାନବ ବୁଝିପାରୁ ନାହିଁ ଯେ ସେହି ପରମେଶ୍ୱରଙ୍କ ସୃଷ୍ଟ ଏକ ସୂର୍ଯ୍ୟହିଁ ୟୁରୋପରେ ଉଦିତ; ଏସିଆରେ ତାଙ୍କରି କିରଣ ପ୍ରସରେ; ପାଲେଷ୍ଟାଇନ୍ ଓ ମଥୁରାରେ ତଦୀୟ ଶକ୍ତିସମ୍ପନ୍ନ ପୁରୁଷ ହିଁ ଅବତରଣ କରିଥିଲେ; ତଦୀୟ ଇଚ୍ଛାବଳରୁ କେବଳ ସଚରାଚର ବିଶ୍ୱର ବନ, ପର୍ବତ, ନଦ, ନଦୀ, ସମୁଦ୍ର, ଉର୍ବୀ, ମନୁଷ୍ୟ ପ୍ରଭୃତି ଜୀବଜାଳ ସୃଷ୍ଟ । ଶତ ପାପକଳୁଷିତ ଶତସ୍ୱାର୍ଥଜଡ଼ିତ ମାନବଠାରୁ ମହୋଚ୍ଚ, ମହୋଦାର ଶ୍ରେଷ୍ଠ ମହାତ୍ମା ପର୍ଯ୍ୟନ୍ତ ସମସ୍ତଙ୍କର ପରମାଶ୍ରୟ ସ୍ୱରୂପ 'ଏକମେବାଦ୍ୱିତୀୟଂ' ବ୍ରହ୍ମସତ୍ତା ହିଁ ସକଳ ଧର୍ମର ମୂଳ ଭିତ୍ତି । ସମଗ୍ର ମାନବସମାଜର ସମ୍ମେଳନରେ ତାହାଙ୍କର ପ୍ରୀତି, ସମଗ୍ର ଧର୍ମର ଚରମ ସିଦ୍ଧାନ୍ତରେ ତାହାଙ୍କର ସ୍ଥିତି, ସମଗ୍ର

ମାନବର ଅକପଟ ସେବାରେ ତାହାଙ୍କର ତୃପ୍ତି । ଭଗବଦ୍ଦୂତ ତୁଲ୍ୟ ଆର୍ଯ୍ୟଗଣ ମୋହାନ୍ଧ ମାନବର ସମସ୍ତ ବାସନା, ସମସ୍ତ ଆକାଂକ୍ଷାରେ ଦୋଷ ଦର୍ଶାଇ ବଜ୍ରଗମ୍ଭୀର ସ୍ୱରରେ ଜଗତକୁ ଉପଦେଶ ଦେଉଅଛନ୍ତି, "ଉତ୍ତିଷ୍ଠତ, ଜାଗ୍ରତ" । ଅତଏବ ଏହି ବିଶାଳ ବିଶ୍ୱବ୍ରହ୍ମାଣ୍ଡ ଯାହାଙ୍କର ଇଚ୍ଛାରେ ସୃଷ୍ଟ,ଏହି ବିଶ୍ୱ ସୌନ୍ଦର୍ଯ୍ୟ ଯାହାଙ୍କର ଅସୀମ ସୌନ୍ଦର୍ଯ୍ୟର କଣାମାତ୍ର, ସେହି ସର୍ବବ୍ୟାପକ, ସର୍ବଶକ୍ତିମାନ୍ ଜଗତ୍‌ପିତା କୌଣସି ସଂକୀର୍ଣ୍ଣ ଧର୍ମ କିମ୍ବା ବାଦବିସମ୍ବାଦରେ ସିଦ୍ଧ ହେବା ଅଯୌକ୍ତିକ ଓ ଅପ୍ରତ୍ୟାଶିତ ।

ଏ ସ୍ଥଳରେ ଏହି ପ୍ରଶ୍ନ ଉଠିପାରେ ଯେ ଏତେ ଉପୋଦ୍‌ଘାତର ଅର୍ଥ କ'ଣ ? ଏହାର ଉତ୍ତରରେ ଏତିକି ମାତ୍ର ମୁଁ ନିବେଦନ କରୁଅଛି କି, ଏହି ଆନ୍ଦୋଳନମୟ ଯୁଗରେ ପୃଥିବୀର ଧର୍ମସମସ୍ୟା ନେଇ ଯେଉଁ ଘୋର ସଂଘର୍ଷ ଚାଲିଅଛି, ସେହି ଧର୍ମ କ'ଣ ? ଧର୍ମଗ୍ରନ୍ଥମାନଙ୍କରେ ଧର୍ମାଚାର୍ଯ୍ୟଗଣ ଧର୍ମର ନିଗୂଢ଼ତତ୍ତ୍ୱ କିପରି ନିରୂପଣ କରିଅଛନ୍ତି, ସେହି ଧର୍ମ ବର୍ତ୍ତମାନ କିପରି ଲୋପପାଇ ଅସଂଖ୍ୟ ଜାତିଭେଦ ସୃଷ୍ଟି କରି ନାନା ଆକାର ଧାରଣ କରି ରହିଛି ଏବଂ ସେହି ଧର୍ମର ମର୍ମ ଛିନ୍ନ ବିଚ୍ଛିନ୍ନ ହୋଇ କାହିଁକି ଗିରିଗୁହାନ୍ତରାଳରେ ଲୁକ୍କାୟିତ ରହିଅଛି; ଏ ସକଳ ପ୍ରକାଶ କରିବା ହିଁ ପ୍ରଧାନ ଉଦ୍ଦେଶ୍ୟ । ଅତଏବ ଗବେଷଣାପୂର୍ବକ ନିର୍ଭୀକ ଭାବରେ ସ୍ପଷ୍ଟ କହିବାକୁ ଗଲେ, ଏହି ପୁଣ୍ୟଭୂମି ଆର୍ଯ୍ୟବର୍ତ୍ତର ପ୍ରାଚୀନ ବିଦ୍ୟାପୀଠମାନଙ୍କରେ ଶିକ୍ଷା ସହିତ ଯେପରି ଧର୍ମଚର୍ଚ୍ଚାର ବ୍ୟବସ୍ଥା ଥିଲା, ବର୍ତ୍ତମାନ ଭାରତର ବିଷୟବିଷଦୂଷିତ ବିଶ୍ୱବିଦ୍ୟାଳୟମାନଙ୍କରେ ଧର୍ମଚର୍ଚ୍ଚା ନିମନ୍ତେ ସେପରି ସୁବ୍ୟବସ୍ଥା ନାହିଁ ।

ପୁରାକାଳର ଅଧ୍ୟାତ୍ମବାଦୀ ସଂସାରନିର୍ଲିପ୍ତ ଉପାଧ୍ୟାୟଗଣ ଗୋମୟଲିପ୍ତଆଶ୍ରମବୀଥିରେ ବସି ଶୁଶ୍ରୂଷାପରାୟଣ ଅଧ୍ୟୟନରତ ଛାତ୍ରମାନଙ୍କୁ ପୁତ୍ରନିର୍ବିଶେଷରେ ଯେଉଁ ପରମାତ୍ମତତ୍ତ୍ୱ ଅଧ୍ୟାପନା କରାଉଥିଲେ ତାହାର ତୁଳନାରେ ମହୋଚ୍ଚ ହର୍ମ୍ୟରେ ସୁଖାସନୋପବିଷ୍ଟ ବେତନଭୋଗୀ ଅଧ୍ୟାପକବୃନ୍ଦ ବେଳାଦ୍ୟୋତକ ଘଟିକାଯନ୍ତ୍ରକୁ ଲକ୍ଷ୍ୟକରି, ଚାକିରୀ ମୋହଗ୍ରସ୍ତ ସର୍ବସ୍ୱାନ୍ତ ଛାତ୍ରମାନଙ୍କୁ ଯେଉଁ ଶିକ୍ଷା ଦେଉଛନ୍ତି ଏହା କି ଅପକୃଷ୍ଟ ! ସ୍ମରଣୀୟ ବୌଦ୍ଧଯୁଗରେ ସୁଦ୍ଧା ପଞ୍ଜାବର ତକ୍ଷଶିଳାଠାରେ ମହାଭୂତକର ଯେଉଁ ଶ୍ଲାଘନୀୟ ନାଳନ୍ଦା ବିଶ୍ୱବିଦ୍ୟାଳୟ ବହୁ ଦୂରଦେଶାଗତ ଜ୍ଞାନପିପାସୁ ଛାତ୍ରମାନଙ୍କୁ ଉଚ୍ଚଶିକ୍ଷା ଦେଉଥିଲା, ସମ୍ପ୍ରତି ଇତିହାସଗର୍ଭରେ ତାହାର ପର୍ଯ୍ୟବସାନ ହେଲେ ସୁଦ୍ଧା ନିର୍ଜନ ସ୍ଥାନଟି ଅତୀତର ମୂକ ସାକ୍ଷୀ ରୂପେ ବିଦ୍ୟମାନ । ତଦବଧି ସେ ଧରଣର ଶିକ୍ଷା ସ୍ୱପ୍ନଦୁର୍ଲଭ ।

ଥାଉ ସେକଥା, ବର୍ତ୍ତମାନ ଆଲୋଚ୍ୟ ବିଷୟ ଏହିକି, ଆର୍ଯ୍ୟର ଯେଉଁ ଅମୂଲ୍ୟ ସମ୍ପଦ- ବେଦ, ଉପନିଷଦ୍, ଦର୍ଶନ, ସ୍ମୃତି ଓ ପୁରାଣ ପ୍ରଭୃତି ଧର୍ମଗ୍ରନ୍ଥ- ସେ ସକଳ ଦୁରୂହ ସଂସ୍କୃତ ଭାଷାରେ ଲିଖିତ । ଅତଏବ ସର୍ବସାଧାରଣଙ୍କ ଅଗୋଚର, ବିଶେଷତଃ ତନ୍ମଧ୍ୟରୁ କେତେକ ସାମ୍ପ୍ରଦାୟିକ ବିଦ୍ୱେଷ-ବିଷଜର୍ଜରିତ ପୁଣି ପରସ୍ପର ବିଜିଗୀଷୁ ଆଚାର୍ଯ୍ୟଗଣଙ୍କର ଭାଷ୍ୟ, ଫକ୍କିକାଦ୍ୱାରା ତତ୍ତ୍ୱ ବିଚାର ସ୍ଥଳରେ ଜଟିଳରୁ ଜଟିଳତର । ଅଗାଧ ପାଣ୍ଡିତ୍ୟ ବିନା ତତ୍ତ୍ୱବୋଧ

ହେବା ଆହୁରି ଦୁରୂହ । ଶିକ୍ଷାର ଅଙ୍ଗ ହେଉଛି ଅଧୀତି, ବୋଧ, ଆଚରଣ ଓ ପ୍ରଚାରଣ । ଏକ ଦିଗରେ ରାଜକୀୟ ଭାଷାବିତ୍ ପଣ୍ଡିତଗଣ ପଲ୍ଲବଗ୍ରାହୀ ପାଣ୍ଡିତ୍ୟରୁ ଶୁକ ପାଠ୍ୟପରି ଧର୍ମଗ୍ରନ୍ଥମାନଙ୍କରୁ ଦୁଇ ଚାରି ପଂକ୍ତି ଆବୃତ୍ତିପୂର୍ବକ ବୋଧାଚରଣର ତ୍ରିସୀମା ସ୍ପର୍ଶ ନକରି ଧର୍ମସଂସ୍କାରକ ନାମ ନେଇ ତୀବ୍ର ପ୍ରଚାରଣଦ୍ୱାରା ଧର୍ମ ଯୁଗରେ ବିପ୍ଳବ ଆନୟନ କରୁଛନ୍ତି । ଅଥଚ ଅନ୍ୟଦିଗରେ ହିନ୍ଦୁସମାଜର ଶୀର୍ଷସ୍ଥାନୀୟ ବ୍ରାହ୍ମଣ ଭିକ୍ଷାରତ ଓ ସୂତ୍ର ସମ୍ବଳ, ବୈଷ୍ଣବ ଜଟାମଣ୍ଡିତ ଓ ଭସ୍ମଲିପ୍ତ, ସନ୍ନ୍ୟାସୀ କାଷାୟ ପରିହିତ ଓ ଦଣ୍ଡକମଣ୍ଡଳୁବାନ୍, ମଠାଧୀପଗଣ ଉଦରମ୍ଭରୀ ଓ ଗଜମୂର୍ଖ ହୋଇ ନିଜକୁ ଈଶ୍ୱରଙ୍କ ବରପୁତ୍ର ଓ ସନାତନୀ ବୋଲି ଅଯଥା ଆସ୍ଫାଳନ କରି ସ୍ୱାର୍ଥହାନି ଆଶଙ୍କାରେ ସର୍ବନାଶ ହେଲା ବୋଲି ଘୋର ଚିତ୍କାର କରୁଅଛନ୍ତି । ଯେଉଁ କେତେକ ତଥାକଥିତ ବ୍ରାହ୍ମଣ ମୁଷ୍ଟିମେୟ କେତେଖଣ୍ଡ ଧର୍ମଗ୍ରନ୍ଥର ପୃଷ୍ଠା ସଙ୍ଗେ ସାକ୍ଷାତ ପରିଚୟ ପାଇଅଛନ୍ତି ସେମାନେ ସୁପବିତ୍ର ଓ ପଣ୍ଡିତ୍ୟମ୍ମନ୍ୟ ହୋଇ ଅଶୁଚି ଆଶଙ୍କାରେ କୋରାନ୍, ବାଇବେଲ୍ ଓ ବୌଦ୍ଧ ସିଦ୍ଧାନ୍ତର ଲଳିତ ବିସ୍ତର ପ୍ରଭୃତି ଆଲୋଚନା କରିବା ଦୂରେ ଥାଉ, ପବିତ୍ର ବୋଲି ବିଶ୍ୱାସ କରି ପୃଥିବୀର ଆଦିମ ଗ୍ରନ୍ଥ ଆର୍ଯ୍ୟଜାତିର ଗୌରବାସ୍ପଦ ବେଦୋପନିଷଦ୍‌କୁ ସୁଦ୍ଧା ଥରେ ସମଗ୍ର ପାଠ କରିଥିବେ କି ନା ସନ୍ଦେହ ।

ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତଂ ଜ୍ୟୋତିଷଂ ତଥା ।
ଛନ୍ଦଶ୍ଚେତି ଷଡ଼ଙ୍ଗାନି ବେଦାନାଂ ବୈଦିକା ବିଦୁଃ ।।
ଛନ୍ଦଃ ପାଦୌତୁ ବେଦସ୍ୟ, ହସ୍ତୌକଳ୍ପୋଽଥପଠ୍ୟତେ ।
ଜ୍ୟୋତିଷାମୟନଂ ଚକ୍ଷୁ ର୍ନିରୁକ୍ତଂ ଶ୍ରୋତ୍ର ମୁଚ୍ୟତେ ।

ଉକ୍ତ ଷଡ଼ଙ୍ଗ ମଧ୍ୟରୁ ବ୍ୟାକରଣ ବେଦର ମୁଖ, ଶିକ୍ଷା ନାସିକା, ଛନ୍ଦ ପାଦ, କଳ୍ପ ହସ୍ତଦ୍ୱୟ, ଜ୍ୟୋତିଷ ଚକ୍ଷୁ, ନିରୁକ୍ତ ଶ୍ରୋତ୍ର ବୋଲି ବର୍ଣ୍ଣିତ ହୋଇଥିଲେ ସୁଦ୍ଧା, କାହିଁ କେତେଜଣ ପଣ୍ଡିତ ଷଡ଼ଙ୍ଗ ଅଧ୍ୟୟନ ସଙ୍ଗେ ଯାସ୍କ ଓ ସାୟନାଚାର୍ଯ୍ୟଙ୍କ ଭାଷ୍ୟ ଆଲୋଚନା କରି ବେଦାଧ୍ୟୟନ ସମ୍ପନ୍ନ ହୋଇଅଛନ୍ତି? ଅସ୍ମଦ୍ଦେଶରେ ଅଶିକ୍ଷିତ ପୁରୋହିତଗଣ ମାତ୍ର ପୌରୋହିତ୍ୟ ଲାଗି କେତୋଟି ମନ୍ତ୍ର କଷ୍ଟେମଷ୍ଟେ ଆବୃତ୍ତି କରନ୍ତି ।

''ଅଙ୍ଗାନି ବେଦାଶ୍ଚତ୍ୱାରୋ ମୀମାଂସା ନ୍ୟାୟ ବିସ୍ତରଃ ।
ଧର୍ମଶାସ୍ତ୍ରଂ ପୁରାଣଂ ଚ ବିଦ୍ୟା ଏତାଶ୍ଚତୁର୍ଦ୍ଦଶ'' ।।
''ଆୟୁର୍ବେଦୋ ଧନୁର୍ବେଦୋ ଗାନ୍ଧର୍ବ ଶ୍ଚେତିତେତ୍ତ୍ରୟଃ ।
ଅର୍ଥ ଶାସ୍ତ୍ରଂ ଚତୁର୍ଥଂ ଚ ବିଦ୍ୟାହ୍ୟଷ୍ଟା ଦଶୈବତାଃ ।।''

ଅର୍ଥାତ୍, ପୂର୍ବୋକ୍ତ ଷଟ୍ ବେଦାଙ୍ଗ ଋକ୍, ଯଜୁଃ, ସାମ, ଅଥର୍ବ ଚାରିବେଦ, ମୀମାଂସା, ନ୍ୟାୟ, ବିସ୍ତର, ଧର୍ମଶାସ୍ତ୍ର, ପୁରାଣ ଏହି ଚତୁର୍ଦ୍ଦଶ ବିଦ୍ୟା, ଆୟୁର୍ବେଦ, ଧନୁର୍ବେଦ, ଗାନ୍ଧର୍ବବେଦ ଓ ଅର୍ଥଶାସ୍ତ୍ର ଏହି ଅଷ୍ଟାଦଶ ଶାସ୍ତ୍ରରେ ତ ଆର୍ଯ୍ୟଗଣର ଅନେକ ଗୁପ୍ତରତ୍ନ ଲୁପ୍ତ ହୋଇଅଛି । ଆଧୁନିକ ବିଦ୍ୱାନ୍ମଣ୍ଡଳୀ ମଧ୍ୟରୁ କେତେଜଣ ଏ ଅଷ୍ଟାଦଶଶାସ୍ତ୍ର ସମନ୍ୱୟ କରି ତତ୍ତ୍ୱରତ୍ନ ଉଦ୍ଧାର

କରିଅଛନ୍ତି? କହିବାକୁ ଗଲେ ଉକ୍ତ ସମସ୍ତ ଶାସ୍ତ୍ର ଦୃଷ୍ଟିଗୋଚର ହେବା ଦୂରେ ଥାଉ, ଏମାନଙ୍କ ନାମଗୁଡ଼ିକ ଶ୍ରୁତିଗୋଚର ହୋଇଥିବ କି ନା ସନ୍ଦେହ ।

ଆଜିକାଲି ବିଶ୍ୱବିଦ୍ୟାଳୟର ପାସ୍ (Pass) ତୁଲ୍ୟ ପାଶରେ ଛନ୍ଦି ହୋଇ ଜୀବନରେ ଉପାଧି ବ୍ୟାଧିଟିଏ ସମ୍ବଳ କରି ଲୋକେ କୃତ୍ୟ କୃତ୍ୟ ହେଉଅଛନ୍ତି । ମୁଁ ଅନେକ ପଣ୍ଡିତଙ୍କ ସେବା କରିଥିବା ଯୋଗୁଁ ପ୍ରାୟତଃ ଏମାନଙ୍କର ସାହଚର୍ଯ୍ୟ ଘଟିଥାଏ । କରଣତ୍ରୟ ଅର୍ଥାତ୍ ବ୍ୟାକରଣ ଅଳଂକରଣ ଓ ପ୍ରକରଣ ଯେଉଁମାନେ ଅଧ୍ୟୟନ କରିଥା'ନ୍ତି ସେମାନେ ଅପରାପର ଗ୍ରନ୍ଥ ପ୍ରତି ଭ୍ରୂକ୍ଷେପ ନକରି ନିଜକୁ ମହାମହୋପାଧ୍ୟାୟର ସମାସନରେ ବସାଇଥା'ନ୍ତି । ଏହା ମୋର ଅନୁଭବ, ଅତିରଞ୍ଜିତ ନୁହେଁ । ମହାସମ୍ମେଳନର ଏହି ମାହେନ୍ଦ୍ର ଶୁଭକ୍ଷଣରେ ହିନ୍ଦୁଦେଶର ପ୍ରତ୍ୟେକ ପ୍ରାନ୍ତସ୍ଥ ବିଦ୍ୱାନ୍ ମଣ୍ଡଳୀ ପରସ୍ପର ତୁଚ୍ଛ ସଂକୀର୍ଣ୍ଣ ସ୍ୱାର୍ଥରେ ଅନୁଲିପ୍ତ ନୋହି, ଗୋଟିଏ ବିରାଟ ଅଧିବେଶନରେ ପ୍ରାଚୀନ ଧର୍ମଗ୍ରନ୍ଥର ମୌଳିକତା ଆଲୋଚନା କରି ଧୀର ସ୍ଥିର ଭାବରେ ଦେଶର ଅବସ୍ଥା ପ୍ରତି ଲକ୍ଷ୍ୟ ରଖି ଆଧୁନିକ ଓ ପାଶ୍ଚାତ୍ୟ ବିଦ୍ୟାବିଭୂଷିତ ସଭ୍ୟଙ୍କ ସହିତ ବିଚାର କରି ନିଜ ଧର୍ମର ରକ୍ଷା ତଥା ମାତୃଭୂମିର ଉଦ୍ଧାର ହେଲାପରି ସୁବ୍ୟବସ୍ଥା ନ ଦେବା ଏବଂ ବୈଦେଶିକ ଭାବାନୁପ୍ରାଣିତ ହୋଇ ବର୍ଣ୍ଣାଶ୍ରମ ଧର୍ମସଂସ୍ଥାପକଙ୍କ ବଂଶଧର, ନିଶ୍ଚେଷ୍ଟିତ ନରନାୟକଙ୍କର ସ୍ୱଧର୍ମରେ ଅନାସ୍ଥା ଓ ଜାତୀୟ ବିଦ୍ୱାନଙ୍କୁ ସାହାଯ୍ୟ ନକରିବା ଯୋଗୁଁ ଆଜି ଆମ୍ଭେମାନେ ବିଶ୍ୱଚକ୍ଷୁରେ ଘୃଣିତ ଓ ଅବହେଳିତ । ଏହାକି ସାମାନ୍ୟ ଲଜ୍ଜାର ବିଷୟ !

ଅସ୍ମଦ୍ଦେଶରୁ ଆଜକୁ ପ୍ରାୟ ଦେଢ଼ଶହ ବର୍ଷ ହେଲା ବୈଦେଶିକଗଣ ଅମୂଲ୍ୟ ଜ୍ଞାନରତ୍ନ ନେଇ ନିଜ ପ୍ରତିଭା ଶାଣରେ ଶାଣିତ ଓ ସମୁଜ୍ଜ୍ୱଳ କରି ଆମ୍ଭମାନଙ୍କୁ ଉପହାସ କରୁଥିଲେ ସୁଦ୍ଧା ନିଦ୍ରିତ ଭାରତର ଚୈତନ୍ୟୋଦୟ ହେଉନାହିଁ ।

ଆମ୍ଭ ଦେଶର ପରିଣାମଦର୍ଶୀ ପଣ୍ଡିତମାନେ ଯଦି ଏକତ୍ର ସମାବେଶ ହୋଇ ପ୍ରାଚୀନ ଶାସ୍ତ୍ରର ପରିଶୀଳନା କରି ସମୟୋଚିତ ବ୍ୟବସ୍ଥା ଦିଅନ୍ତେ ତାହାହେଲେ କାହିଁକି ଆମ୍ଭର ଭାରତୀୟ ଧର୍ମପ୍ରତି ଅନାସ୍ଥା ପ୍ରକାଶ କରି ସହସ୍ର ସହସ୍ର ନରନାରୀ ଅନ୍ୟ ମତାବଲମ୍ବନ କରି ଆଜି ସମାଜକୁ କ୍ଷୀଣ କରନ୍ତେ? କାହିଁକି ଆମ୍ଭର ଜାତି ଓ ଧର୍ମ ଶତଧା ବିଚ୍ଛିନ୍ନ ହୋଇ ସଂଘଶକ୍ତି ହ୍ରାସ ହୁଅନ୍ତା? କାହିଁକି ବୈଦେଶିକ ଦୃଷ୍ଟିରେ ଆମ୍ଭ ଶାସ୍ତ୍ରସକଳ ଅନ୍ତଃସାରଶୂନ୍ୟ ବୋଲି ଆମ୍ଭେ ଅପମାନିତ ହୁଅନ୍ତେ? ଏକ ଦିଗରେ ଲଂଘନଶୀଳଙ୍କର ଘୋର ଉଚ୍ଛୃଙ୍ଖଳତାପୂର୍ଣ୍ଣ ସମାଜ ସଂସ୍କାର, ଅପର ଦିଗରେ ସଂକୀର୍ଣ୍ଣମନା ମର୍କଟବଦ୍ଧମୁଷ୍ଟି ରକ୍ଷଣଶୀଳଙ୍କର ଅଭିଶାପ ଓ ଦୀର୍ଘନିଶ୍ୱାସ ତ୍ୟାଗ ଦେଖି ହାସ୍ୟସମ୍ବରଣ କରିହେଉନାହିଁ । ଧନ୍ୟରେ ସ୍ୱାର୍ଥ ସାଧନର କୁଟିଳ ଚକ୍ରାନ୍ତ ଯୁଗ !

ଅତଏବ ଆବଶ୍ୟକତା ଦୃଷ୍ଟିରେ ଏହି ବିପ୍ଳବମୟ ଯୁଗରେ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଯେଉଁ ବିଷୟ ସକଳର ମୌଳିକତା ସନ୍ନିବେଶିତ, ପୃଥିବୀବ୍ୟାପୀ ଯାବତୀୟ ଧର୍ମାଚାର୍ଯ୍ୟଗଣ

ସମୟ ଭେଦରେ ଜନ୍ମି ଯେଉଁ ସଦ୍ ଗ୍ରନ୍ଥମାନ ପ୍ରଣୟନ କରିଅଛନ୍ତି ସେମାନଙ୍କ ତାତ୍ପର୍ଯ୍ୟ ସରଳ ଉତ୍କଳ ଭାଷାରେ ଏକତ୍ର ଆଲୋଚନା କରି ପ୍ରିୟ ପାଠକପାଠିକାମାନଙ୍କୁ ଉପହାର ଦେବାର ଗୋଟିଏ ଦୁଃସାହସ କରିଅଛି । ଏ ବିଷୟରେ କୃତକାର୍ଯ୍ୟ ହେବା ସହଜ ବ୍ୟାପାର ନୁହେଁ । ଯେହେତୁ ଏଥିଲାଗି ଅସୀମ ଧୀଶକ୍ତିସମ୍ପନ୍ନ ମହର୍ଷିବୃନ୍ଦଙ୍କ ମସ୍ତିଷ୍କପ୍ରସୂତ ସମଗ୍ର ସୁଚିନ୍ତିତ ନିଗୂଢ଼ ଗ୍ରନ୍ଥ ଆଲୋଡ଼ନ କରିବାକୁ ହେବ । ମୁଁ ତାଦୃଶ ଶକ୍ତିମାନ୍ ସୁଦ୍ଧା ନୁହେଁ । ମୁଦ୍ରାଯନ୍ତ୍ର ପ୍ରସାଦରୁ ଅନେକ ଭାଷାନ୍ତରିତ ଗ୍ରନ୍ଥ ଓ ଶାସ୍ତ୍ର ସକଳ ସୁଲଭପ୍ରାପ୍ୟ ହେବା ଯୋଗୁଁ ତାହା ଆଧୁନିକ ଯୁଗରେ ଦେଖିବାକୁ ମିଳୁଅଛି ବୋଲି ଏ ଦୁଷ୍କର କାର୍ଯ୍ୟ ସାଧନରେ ମୁଁ ହସ୍ତକ୍ଷେପ କଲି । କିନ୍ତୁ ଏହି ମତ୍ସଙ୍କଳିତ ଗ୍ରନ୍ଥଦ୍ୱାରା ଜନସାଧାରଣଙ୍କର ଯେ ଉପକାର ଲେଶ ସାଧିତ ହେବ ସେ ଦୁରାଶା ସୁଦ୍ଧା ମୁଁ ପୋଷଣ କରିନାହିଁ । ସୁତରାଂ ଶ୍ରଦ୍ଧାସମ୍ବଳିତ ଦୃଷ୍ଟିରେ ଥରେମାତ୍ର ପାଠକଲେ ବିଷୟାବିଳଚିତ୍ତ ଲେଖକର ଶ୍ରମ ସାର୍ଥକ ହେବ । ଏତିକିମାତ୍ର ପ୍ରାର୍ଥନା, ଏଥିରେ କବିତ୍ୱ ଦର୍ପ ବା ମୋର ନୂତନ କୃତିତ୍ୱ ଲେଶମାତ୍ର ନାହିଁ । ଏ ସକଳ ପ୍ରବୀଣ ଗ୍ରନ୍ଥକର୍ତ୍ତାଙ୍କ ଆଶୟାନୁସରଣ ମାତ୍ର ।

ସତ୍ୟ କହିବାକୁ ହେଲେ ପ୍ରାରମ୍ଭିକ ଭାଷଣରେ ହିଁ କେତେଗୁଡ଼ିଏ ଅପ୍ରିୟ କଥା ପ୍ରକାଶ କରିବା ବିନା ଅନ୍ୟ ପନ୍ଥା ନାହିଁ, ଯେହେତୁ ଭାରତରେ ପ୍ରଚଳିତ ନାନାବିଧ ମତ ଓ ସମ୍ପ୍ରଦାୟ ମଧ୍ୟରେ ଧର୍ମର ଆଖ୍ୟା ନେଇ ଅନେକ କୁରୀତି ଓ କୁନୀତି ଦ୍ୟୋତକ ମତଗ୍ରନ୍ଥ ବିଦ୍ୟମାନ, ତାହା ବ୍ୟକ୍ତ କରିବାକୁ ଲେଖକର ହୃଦୟରେ ସାହସ ହେଉନାହିଁ ଏବଂ ନିଜ ନିଜ ମତ ସଂସ୍ଥାପନ କରିବା ନିମନ୍ତେ ଯେତେଗୁଡ଼ିଏ ଅଯଥା ବୈଲକ୍ଷଣ ଦେଖାଯାଏ, ସେ ସକଳ ବିଜିଗୀଷୁ ଧର୍ମାଚାର୍ଯ୍ୟଙ୍କର ଜଟିଳତର ଶାସ୍ତ୍ରବ୍ୟାଖ୍ୟା ଓ କପୋଳକଳ୍ପିତ ସଂସ୍କରଣ ମାତ୍ର, କିନ୍ତୁ ତନ୍ମଧ୍ୟରୁ ଅନେକ ମହାତ୍ମା ଗଭୀର ଚିନ୍ତାପୂର୍ବକ ଜଗତର କଲ୍ୟାଣ ଲାଗି ଜୀବନବ୍ୟାପୀ ସତ୍ୟାନୁସନ୍ଧାନର ଫଳ ଲିପିବଦ୍ଧ କରି ଅମରକୀର୍ତ୍ତି ସଞ୍ଚୟ କରି ଯାଇଛନ୍ତି ।

ଯାବତୀୟ ଧର୍ମଗ୍ରନ୍ଥର ମୌଳିକ ଲକ୍ଷ୍ୟ ହେଉଛି ପାପତାପକ୍ଲିଷ୍ଟ ବଦ୍ଧଜୀବର ମୁକ୍ତି ଲାଗି ଉପାୟ ନିର୍ଦ୍ଧାରଣ ଓ ଅଜ୍ଞେୟ ବ୍ରହ୍ମତତ୍ତ୍ୱର ପରିପୂର୍ଣ୍ଣ ଗବେଷଣା । ମୌଳିକତାରେ ସମସ୍ତ ଗ୍ରନ୍ଥ ଭିନ୍ନ ନହେଲେ ସୁଦ୍ଧା ଧର୍ମର ସ୍ୱରୂପ ଓ ସାଧନୋପାୟ ନିମନ୍ତେ ମାତ୍ର ଭୟଙ୍କର ଅନୈକ୍ୟ ପରିଲକ୍ଷିତ ହୁଏ ।

ଏ କ୍ଷେତ୍ରରେ ବର୍ଣ୍ଣାଶ୍ରମ ଧର୍ମ ବ୍ୟତିବ୍ୟସ୍ତ ହିନ୍ଦୁଙ୍କ ପ୍ରତି, ପୃଥିବୀବ୍ୟାପୀ ତିନିଗୋଟି ପ୍ରବଳ ଧର୍ମସମ୍ପ୍ରଦାୟଙ୍କ ସଙ୍ଗେ ଅପରାପର ଇହୁଦୀ, ପାର୍ସୀ, ଜୈନ ପ୍ରଭୃତି ସମ୍ପ୍ରଦାୟଗଣ ସମସ୍ୱରରେ ପ୍ରବଳ ଆକ୍ଷେପବାଣ ବର୍ଷଣ କରୁଅଛନ୍ତି । ଜାତିଭେଦ ପ୍ରଥା ଅରୁଚି ହେବା ଯୋଗୁଁ ଆପଣାର ଜାତିଭାଇ ଗୁରୁନାନକ, ରାଜା ରାମମୋହନ, ବ୍ରହ୍ମାନନ୍ଦ କେଶବ ଓ ଦୟାନନ୍ଦ ପ୍ରଭୃତି ସୁଦ୍ଧା "ଅପନ୍ଥାନଂ ତୁ ଗଚ୍ଛନ୍ତଂ ସୋଦରୋଽପି ବିମୁଞ୍ଚତି", ନୀତିକୁ ନେଇ ଗୋଟିଏ ଗୋଟିଏ ଧର୍ମାନ୍ତର ସୃଷ୍ଟି କରିଦେଲେ ।

ଅନ୍ୟ କେତେ କୋଟି ଜାତୀୟବ୍ୟକ୍ତିଙ୍କୁ ସୁଦ୍ଧା ହିନ୍ଦୁପ୍ରବରମାନେ ଉପେକ୍ଷା ପ୍ରଦର୍ଶନ କଲାବେଳେ ଧର୍ମାନ୍ତର ସୃଷ୍ଟି କରିବାକୁ କତିପୟ ହିନ୍ଦୁନେତାଙ୍କ ନେତୃତ୍ୱରେ ବିପୁଳ ଆନ୍ଦୋଳନ ଚଳାଇଲେଣି । ଏହି ଭୟଙ୍କର ସନ୍ଧି ସମୟରେ ପ୍ରାଚୀନ ଗ୍ରନ୍ଥର ତତ୍ତ୍ୱ ସ୍ୱାର୍ଥରହିତ ହୃଦୟରେ ବିବେଚନା କରି ତ୍ୟାଗର ମହତ୍ତ୍ୱ ଦେଖାଇବା ସନାତନ ଧ୍ୱଜଧାରୀଙ୍କ ପକ୍ଷେ ମାହେନ୍ଦ୍ର ସୁଯୋଗ ।

ପ୍ରାୟ ଦୁଇ ସହସ୍ର ବର୍ଷ ପୂର୍ବେ ସ୍ୱଧର୍ମୀ ରାଜାର ଏକଚ୍ଛତ୍ରାଧିପତ୍ୟକାଳୀନ ଦେଶକାଳୋଚିତ ବ୍ୟବସ୍ଥାକୁ ଧରିବସି ବିଜାତୀୟ ଶକ୍ତିର ଘନ ଘନ ଘାତ ପ୍ରତିଘାତଦ୍ୱାରା ଶଲ୍ୟାବିଷ୍ଟ ବିଭିନ୍ନ ଦେଶାଚାରାନୁପ୍ରାଣିତ ମହାପରିବର୍ତ୍ତନ ସ୍ରୋତାଭିମୁଖୀନ ଭାରତ ଜାତି ସଂଗ୍ରାମ ଲାଗି ସମଗ୍ର ଜଗତ୍ ସଙ୍ଗେ ଯୁଦ୍ଧକୁ ଅଗ୍ରସର ହେବା କେତେଦୂର ସମର୍ଥ ତାହା ଚିନ୍ତାଶୀଳର ଚିନ୍ତନୀୟ ବିଷୟ ।

ଆଉ ଗୋଟିଏ କଥା, ଈଶ୍ୱରଙ୍କର ଅସ୍ତିତ୍ୱ ଓ ଜଗତ୍ କର୍ତ୍ତୃତ୍ୱ ସମ୍ବନ୍ଧରେ ଲବ୍ଧପ୍ରତିଷ୍ଠ ଆଚାର୍ଯ୍ୟମାନଙ୍କ ସିଦ୍ଧାନ୍ତକୋଟି ବିଭିନ୍ନ ପ୍ରକାର ଥିଲେ ସୁଦ୍ଧା ସେଥିଲାଗି ମସ୍ତିଷ୍କ ଘୂର୍ଣ୍ଣନ କରିବା ମୋର କ୍ଷୁଦ୍ର ମତରେ ଅନାବଶ୍ୟକ । ଯେହେତୁ, ସମକ୍ଷରେ ଫେନମୁକୁଟଶୋଭୀ ଉତ୍ତାଳ ତରଙ୍ଗସଙ୍କୁଳ ଗର୍ଜନଶୀଳ ସାଗରର ବିରାଟ ଗାମ୍ଭୀର୍ଯ୍ୟ, ଦର୍ଶ ନିଶୀଥିନୀର ତିମିରାବଗୁଣ୍ଠନ ନିଶୀଥରେ ସମୁଜ୍ଜ୍ୱଳ ତାରକାଖଚିତ ବିୟଦ୍‌ବିତାନର ଅନନ୍ତନୀଳିମା, ପ୍ରଭାଦ୍ୟୋତକ ପ୍ରଭାକର ବିମ୍ବର ନିରାଲମ୍ବ ପଥରେ ଅଖଣ୍ଡୈକ ଗତି, ପ୍ରାଚୀ ପ୍ରତୀଚୀ ଦିଗ୍‌ଭାଗରେ ବିଶ୍ୱାହ୍ଲାଦକର ସୁଧାଂଶୁ ମଣ୍ଡଳର ବିସ୍ମୟୋତ୍ପାଦକ ପାକ୍ଷିକ ପରିବର୍ତ୍ତନ ଛଟା, ସ୍ତର ବିନ୍ୟସ୍ତ ଅଭ୍ରଂଲିହ ପାର୍ବତ୍ୟ ପ୍ରକୃତିର ବନ୍ଧୁର ଶୃଙ୍ଗମାଳା, ବିଦ୍ଧସ୍ତର୍ଭ ବାରିଦ ବିକ୍ଷୁବ୍ଧକାରୀ ବାତ୍ୟାର ଭୀଷଣ ଆସ୍ଫାଳନ ପ୍ରଭୃତି ନିର୍ନିମେଷ ନେତ୍ରରେ ପରିଦର୍ଶନ କଲାବେଳେ ପାଷଣ୍ଡ ହୃଦୟରେ ସୁଦ୍ଧା କ୍ଷଣକ ଲାଗି ଐଶୀସତ୍ତା କି ଉପଲବ୍ଧି ହୁଏ ନାହିଁ? ଜଗତରେ ଏପରି ଅଜ୍ଞ କିଏ ଅଛି ଯେ, ବିହଗକୁଳର କଳକାକଳି, ବହ୍ନିର ତୈକ୍ଷ୍ଣ୍ୟ, ସଲିଳର ଶୈତ୍ୟ ପ୍ରଭୃତିରେ ଅଜ୍ଞେୟ ମଙ୍ଗଳମୟଙ୍କର ଅପରିବର୍ତ୍ତନୀୟ କୋମଳ କରସ୍ପର୍ଶ ନାହିଁ ବୋଲି କହିପାରିବ ?

ଏତେ କଥା କାହିଁକି, ଆଜିକାଲି କଳିଭୀମ ଆଖ୍ୟାଧାରୀ ଅନେକ ମଲ୍ଲ ମୋଟର ପ୍ରଭୃତିର ବେଗ ମନ୍ଦୀଭୂତ କରି ମହାବିକ୍ରମର ପ୍ରଚୁର ପରିଚୟ ଦେବା ଦେଖାଯାଏ । କିନ୍ତୁ ଗୋଟିଏ ଅପରିପକ୍ୱ କୋମଳତର ଗୋଲାପକଳିକାର ଦଳଗୁଡ଼ିକ ଫିଟାଇବାପାଇଁ ସେହି କେନ୍ଦ୍ରୀଭୂତ ଶକ୍ତି ପ୍ରୟୋଗ କରି ଶତ ବର୍ଷରେ ସୁଦ୍ଧା ଜୟୀ ହୋଇପାରିବେ କି? ସେ ପ୍ରାକୃତିକ ଶକ୍ତି ସେହି ଏକମାତ୍ର ସୃଷ୍ଟିକର୍ତ୍ତାଙ୍କ ହସ୍ତରେ ନ୍ୟସ୍ତ, ଅତଏବ ଏହି ବୈଚିତ୍ର୍ୟପୂର୍ଣ୍ଣ ଜଗତରେ ଏହିପରି ଅନନ୍ତ ନିଦର୍ଶନ ଚାକ୍ଷୁଷ କଲାଠାରେ ଯେଉଁମାନଙ୍କର ହୃଦୟରେ ଐଶୀସତ୍ତା ଉପଲବ୍ଧି ହେବନାହିଁ ତାହାକୁ ଶାସ୍ତ୍ରପାଠ, ଗୁରୂପଦେଶ ଓ ବିଦ୍ୱଦ୍ଗୋଷ୍ଠୀର ସମାଲୋଚନା ନିରର୍ଥକ ନୁହେଁ କି ?

ଉପସଂହାରରେ ପ୍ରାର୍ଥନା ଏହିକି, ଜରାମରଣବ୍ୟାଧି ରୂପ ଶତ ପାପତାପରେ ଭ୍ରାମ୍ୟମାଣ, ଅନନ୍ତକୋଟି ଜୀବ-ପରମ୍ପରା ମଧ୍ୟେ ଅଗ୍ରଗତିଶୀଳ, କାମ ଓ କ୍ରୋଧ ଯାହାର ନିତ୍ୟ ସହଚର, ଲୋଭ ଯାହାର ମହୋପଦେଷ୍ଟା, ବିଳାସ ଯାହାର ସହୋଦର ଭ୍ରାତା, ମାତ୍ସର୍ଯ୍ୟ ଯାହାର ନର୍ମ ସଚିବ, ଗର୍ବ ଯାହାର ପୁରାଣ ପୁରୋଧା ଓ ଲାଳସାଦେବୀ ସହଧର୍ମିଣୀର ଆଜୀବନ ସଙ୍ଗୀ ହୋଇ ଏହି ଅବିଦ୍ୟାଚ୍ଛନ୍ନ ସଂସାର ବିଷୟାସକ୍ତ ମାଦୃଶ କ୍ଷୀଣଶକ୍ତିସମ୍ପନ୍ନ ଜନର ଏ ଦୁରୂହ ଶାସ୍ତ୍ରୀୟ ତତ୍ତ୍ୱବ୍ୟାଖ୍ୟାନ ବ୍ୟାପାରରେ ହସ୍ତକ୍ଷେପ ପ୍ରବଳ ଝଞ୍ଜାନିଳର ଗତିରୋଧ କରିବା ତୁଲ୍ୟ ନୁହେଁ କି ?

ଦୁର୍ବାର ବାସନାର ଲୋଭ ସମ୍ବରଣ କରି ନପାରି ଯେଉଁ କୁ ବା ସୁ ଉଦ୍ୟମ କରୁଅଛି, ସେଥିନିମନ୍ତେ ସେହି ନିତ୍ୟ ତତ୍ତ୍ୱ ସଚ୍ଚିଦାନନ୍ଦ ମୋ ଦୁର୍ବଳ ହୃଦୟକୁ ସବଳ, ସ୍ତିମିତ ପ୍ରଜ୍ଞାକୁ ପ୍ରସାର, ଅସଂଯତ ଚିତ୍ତବୃତ୍ତିକୁ ସୁସଂଯତ କରି, ଅଙ୍ଗୁଳି ଇଙ୍ଗିତଦ୍ୱାରା ଅନୁକୂଳ ପଥରେ ଗନ୍ତବ୍ୟ ସ୍ଥାନରେ ମୋତେ ପହଞ୍ଚାଇ ମୋର ସର୍ବବିଘ୍ନ ବାରଣ କରନ୍ତୁ ।

ମୂକଂ କରୋତି ବାଚାଳଂ ପଙ୍ଗୁ ଲଂଘୟତେ ଗିରିଂ ।
ଯତ୍ କୃପା ତମହଂ ବନ୍ଦେ ପରମାନନ୍ଦରୂପିଣେ ।।



# ଈଶୀତତ୍ତ୍ୱ ସୂଚିକା

ଯଲ୍ଲାଭାନ୍ନାପରୋଲାଭଃ ଯତ୍ ସୁଖାନ୍ନାପରଂ ସୁଖଂ ।
ଯତ୍ ଜ୍ଞାନାନ୍ନାପରଂ ଜ୍ଞାନଂ ତଦ୍‌ବ୍ରହ୍ମେତ୍ୟବଧାରୟ ।।

ପ୍ରିୟ ପାଠକ/ପାଠିକାଗଣ!

ଦୁରୂହ ଆର୍ଯ୍ୟଶାସ୍ତ୍ର ଜାଳର ଜଟିଳତର ରହସ୍ୟୋଦ୍ଭେଦ କରିବା କଠିନତର ବ୍ୟାପାର । ପ୍ରଗାଢ଼ ଅନୁରାଗ ବ୍ୟତୀତ ସେ ପିପାସା ଦୂରହେବା ଅସମ୍ଭବ ।

ବରେଣ୍ୟ ଆର୍ଯ୍ୟଋଷିଗଣଙ୍କ ପ୍ରଚାରିତ ଶାସ୍ତ୍ରରେ ଅଖଣ୍ଡ ଭକ୍ତି ଓ ସୁଦୃଢ଼ ବିଶ୍ୱାସ ରଖି ବିନମ୍ର ବଦନରେ ସରଳ ହୃଦୟରେ ବିଶୁଦ୍ଧ ସତ୍ୟ ଉପଲବ୍ଧି କରିବା ଯୁଗ ବହୁ ଯୋଜନ ଅନ୍ତର ହେଲାଣି । ଆଜି ପ୍ରାଚ୍ୟ ପାଶ୍ଚାତ୍ୟର ନିରର୍ଗଳ ସମ୍ମିଶ୍ରଣ ଫଳରେ ଧର୍ମରାଜ୍ୟରେ ସୁଦ୍ଧା ଅବିରାମ ତୁମୁଳ ତର୍କ ଚାଲିଅଛି । ଏହି ଭୀଷଣ ସନ୍ଧି ସମୟରେ ମହାମନୀଷୀଗଣ ସର୍ବଧର୍ମ ସମନ୍ୱୟପୂର୍ବକ ଗୋଟିଏ ଅଭ୍ରାନ୍ତ ସତ୍ୟ ଆବିଷ୍କାର କରଣେ ସର୍ବଦା ଉଦ୍‌ଗ୍ରୀବ ଓ ବ୍ୟାକୁଳ ।

ଏହି ଧର୍ମ-ବିପ୍ଳବ ଯୁଗରେ ଅଦ୍ୟାପି ଆର୍ଯ୍ୟଶାସ୍ତ୍ରରେ ଭକ୍ତି ଓ ଆର୍ଯ୍ୟଧର୍ମରେ ଅଗାଧ ଆସ୍ଥା ଅନେକଙ୍କ ହୃଦୟରୁ ଯାହା ବିଦୂରିତ ହୋଇନାହିଁ ତାହା ସୌଭାଗ୍ୟପ୍ରଦ ଓ ଆଶ୍ଚର୍ଯ୍ୟବର୍ଦ୍ଧକ । ଯେହେତୁ ସେହି ଆର୍ଯ୍ୟଧର୍ମ ମହାମହୀରୁହର ବିଶାଳ କଳେବରରେ ଅନେକ ବୀଭତ୍ସଧର୍ମର ମଦାଙ୍ଗ ଅଙ୍କୁରିତ ଓ ପଲ୍ଲବିତ ହୋଇ ତଦୀୟ ନୈସର୍ଗିକ ସୌନ୍ଦର୍ଯ୍ୟକୁ ବିନଷ୍ଟ କରିଦେଲାଣି ।

ମୁଁ ଅବତରଣିକାରେ ହିଁ ନିବେଦନ କରିଅଛି କି ଆର୍ଯ୍ୟଦର୍ଶନ ମଧ୍ୟରୁ ମହାନ୍ ଧର୍ମର ମର୍ମ ବିଶ୍ଳେଷଣ କରିବା ମାଦୃଶ କ୍ଷୁଦ୍ରତମ ଅନକ୍ଷର ବ୍ୟକ୍ତିର ସାମର୍ଥ୍ୟ ବହିର୍ଭୂତ ।

ଇଷ୍ଟ ଆଶା ଏବଂ ଶିଷ୍ଟାନୁମୋଦିନୀ ଚେଷ୍ଟା ସଫଳ ହେବା ବିଶ୍ୱସ୍ରଷ୍ଟାଙ୍କ ଦୁର୍ଲଭ ମହଦନୁଗ୍ରହ ଉପରେ ସର୍ବଥା ନିର୍ଭର କରେ ।

ପ୍ରତିପାଦ୍ୟ ବିଷୟ ଏହିକି ସାମାନ୍ୟ ଶ୍ରେଣୀର ଆଚରିତ ଧର୍ମଠାରୁ ନିସ୍ତ୍ରୈଗୁଣ୍ୟ ପଥଚାରୀ ସାଧକର ନିରାକାର ବ୍ରହ୍ମୋପାସନା ପର୍ଯ୍ୟନ୍ତ ସମସ୍ତ ଧର୍ମ ଏହି ଆର୍ଯ୍ୟଧର୍ମାନୁମୋଦିତ । ଏହିପରି ସାର୍ବଭୌମିକ ଓ ବିଶ୍ୱବ୍ୟାପକ ଧର୍ମ ଭୁବନ ଦୁର୍ଲଭ କହିଲେ ଅତ୍ୟୁକ୍ତି ହେବନାହିଁ । ଆଧୁନିକ ବିଦ୍ରୂପକାରୀ ଏକଦେଶଦର୍ଶୀ ଅର୍ଦ୍ଧଶିକ୍ଷିତ ନାସ୍ତିକମାନଙ୍କ କଥା ଧର୍ତ୍ତବ୍ୟ ନୁହେଁ; ଯେହେତୁ

ସେମାନେ ଦୁରବଗାହ ଓ ଅଗାଧ ଶାସ୍ତ୍ର ସାଗରରେ ବିନ୍ଦୁଟିକର ମହତ୍ତ୍ୱ ସୁଦ୍ଧା ଉପଲବ୍ଧି କରିନାହାନ୍ତି ବୋଲି କହିଲେ ମଧ୍ୟ ଚଳେ ।

ପ୍ରିୟ ପାଠକପାଠିକାଙ୍କ ସମୀପରେ ମୋହର ବିନୀତ ଓ ସନିର୍ବନ୍ଧ ଅନୁରୋଧ ଏହି କି ପ୍ରତ୍ୟେକ ଧର୍ମଗ୍ରନ୍ଥର ସମନ୍ୱୟିତ ସୂକ୍ଷ୍ମ ତତ୍ତ୍ୱ ହୃଦୟଙ୍ଗମ ନହେବା ପର୍ଯ୍ୟନ୍ତ ଅପର ଧର୍ମକର୍ମ ପ୍ରତି ଆକ୍ଷେପ କରିବା ଉଚିତ ନୁହେଁ; ଅନ୍ୟ ଧର୍ମ ପ୍ରତି କଟୁ କଟାକ୍ଷ ନିକ୍ଷେପ କରିବା ମହାପାପ ।

ଧର୍ମର ଗ୍ଳାନି ଓ ଅଭ୍ୟୁତ୍‌ଥାନବେଳେ ଭଗବାନ କେବଳ ଭାରତରେ ହିଁ ଜନ୍ମଗ୍ରହଣ କରି ନାହାନ୍ତି, ତଦୀୟ କରୁଣା କାଦମ୍ବିନୀ ଅନନ୍ତ ବ୍ରହ୍ମାଣ୍ଡରେ ଆଧ୍ୟାତ୍ମିକ ଶୀତଳ ଜଳ ଅଭିସେଚନ କରେ । ସମ୍ପ୍ରତି ମଦୀୟ ସଂକଳିତ ଗ୍ରନ୍ଥରେ ବିଷୟବୋଧିକା ଶକ୍ତି ଜନ୍ମାଇବା ଲାଗି ସଂକ୍ଷିପ୍ତତୟା ବୈଦିକ ଯୁଗାବଧି ଗୋଟିଏ ଧାରାବାହିକ ଐଶୀତତ୍ତ୍ୱର କ୍ରମୋପଲବ୍ଧି ଏବଂ ଆଚାର୍ଯ୍ୟମାନଙ୍କର ପୁରାବୃତ୍ତ ମାତ୍ର ପ୍ରଦତ୍ତ କରୁଅଛି ।

## ବୈଦିକ ଯୁଗରେ ଭଗବତ୍ ତତ୍ତ୍ୱର କ୍ରମ ବିକାଶ

ସୃଷ୍ଟିର ଆଦିମ ଅବସ୍ଥାରେ ପ୍ରକୃତିର ମହନୀୟ ସୌନ୍ଦର୍ଯ୍ୟର କ୍ରୋଡ଼ରେ ଲାଳିତ ପାଳିତ ମାନବ ସୁବିଶାଳ ନୀଳ ଆକାଶ, ଅରଣ୍ୟ, ତାରକା ଓ ରବିଚନ୍ଦ୍ରାଦି ଅସଂଖ୍ୟ ଗ୍ରହୋପଗ୍ରହ ତଳେ କୋଟି-କୁସୁମପଲ୍ଲବ ବନନିର୍ଝର-ଶୋଭିତା ବିଶାଳ ଶସ୍ୟଶ୍ୟାମଳା ପୃଥିବୀ ପ୍ରତ୍ୟକ୍ଷ କରି ସୌନ୍ଦର୍ଯ୍ୟର ଉପାସନାରେ ବିମୁଗ୍ଧ ହୋଇ ତାହାର ଅନ୍ତରାଳରେ ଗୋଟିଏ ଅଲକ୍ଷ୍ୟ ଅସୀମ ମହତ୍ତ୍ୱ ଉପଲବ୍ଧିପୂର୍ବକ ମାନବର ମନ କ୍ରମେ କ୍ରମେ ଏକ ଅଜ୍ଞାତ ପୁରୁଷର ଅସ୍ତିତ୍ୱ ସ୍ୱୀକାର କରିବାକୁ ବାଧ୍ୟହେଲା ଏବଂ ସେହି ପୁରୁଷଙ୍କୁ ଉତ୍ତମରୂପେ ଜାଣିବାକୁ ସୁଦ୍ଧା ଅଭିନିବେଶପୂର୍ବକ ଚେଷ୍ଟାକଲା । ଏହି ମହତ୍ ଉଦ୍ୟମ ହିଁ ଈଶ୍ୱରତ୍ୱ ନିରୂପଣର ପ୍ରଥମ ସୋପାନ ।

ଭାରତର ଧାରାବାହିକ ଧର୍ମ ଇତିହାସ ସୁସ୍ପଷ୍ଟ ନଥିଲେ ସୁଦ୍ଧା ସକଳ ଦର୍ଶନ ଓ ଧର୍ମଶାସ୍ତ୍ର ଶ୍ରୁତିମୂଳକ ପ୍ରମାଣ ନେଇ ନିଜ ନିଜ ସିଦ୍ଧାନ୍ତକୋଟି ଦୃଢ଼ୀଭୂତ କରୁଥିବା ଦେଖି ସ୍ପଷ୍ଟରୂପେ ଜଣାଯାଏ ଯେ, ଅସାମାନ୍ୟ ଧୀଶକ୍ତିସମ୍ପନ୍ନ ଆର୍ଯ୍ୟଗଣଙ୍କର ମାନସାକାଶରେ ଯେଉଁ ଚିନ୍ତାଜ୍ୟୋତି ପ୍ରକାଶିତ ହେଲା ତାହାହିଁ ଶ୍ରୁତି ନାମରେ ଖ୍ୟାତ ଓ ଆଦିମ ପ୍ରାମାଣିକ ଗ୍ରନ୍ଥ ।

ଏହି ସୁପ୍ରତ୍ୟୟ ମାନବ ମନରେ ଦୃଢ଼ରୁ ଦୃଢ଼ତର ହେବାଲାଗି ବେଦ ଅପୌରୁଷେୟ ବୋଲି ନିଗଦିତ । ଅତଃପର ସେହି ବେଦରେ ଈଶ୍ୱରତ୍ୱର କ୍ରମବିକାଶ ଆଲୋଚନା କରାଯାଉ ।

ଚିରାରାଧ୍ୟ ବେଦସଂହିତାରେ ସେହି ଈଶ୍ୱରତ୍ୱ ମହତତ୍ତ୍ୱର ଆଭାସ ଦେଖିବାକୁ ମିଳେ । ଅର୍ଥାତ୍ ପ୍ରଥମେ ଆର୍ଯ୍ୟଗଣ ଇନ୍ଦ୍ର, ଅଗ୍ନି, ମିତ୍ର, ବରୁଣ, ସୂର୍ଯ୍ୟ, ସୋମ, ବନସ୍ପତି ପ୍ରଭୃତି କଳ୍ପନା କରି ଆରାଧନା କରୁଥିଲାବେଳେ ମନରେ ଈଶ୍ୱରଚିନ୍ତା ତରଙ୍ଗିତ ହୋଇଉଠିଲା, ତା'ପରେ

ନାନାବିଧ ତର୍କବିତର୍କର ପରିଶୀଳନପୂର୍ବକ, ସେହି ଅସୀମ ଅନନ୍ତ ଦ୍ୟୌସ୍ପିତାଙ୍କଠାରୁ ସମସ୍ତ ସୃଷ୍ଟିର ଆବିର୍ଭାବ ହୋଇଅଛି ବୋଲି ସେମାନେ ସ୍ଥିର କରି ଗାନ କଲେ କି :

ଅଦିତି ଦ୍ୟୌରଦିତି ରନ୍ତରୀକ୍ଷ ଅଦିତିର୍ମାତା ସପିତା ସପୁତ୍ରଃ
ବିଶ୍ୱେଦେବାଃ ଅଦିତିଃ ପଞ୍ଚଜନାଃ ଅଦିତିଃ ଅଦିତିର୍ଜ୍ଜନିତ୍ୱଂ । (ଋକ୍)

ଅର୍ଥାତ୍, ଅଦିତିହିଁ ଆକାଶ, ଅନ୍ତରୀକ୍ଷ, ମାତା, ପିତା, ପୁତ୍ର, ଅଦିତିହିଁ ସକଳ ଦେବ, ପୁରୁଷ ଓ ଜନ୍ମର କାରଣ ଇତ୍ୟାଦି ମନେ ରଖିବାକୁ ହେବ । ଏହି ବୈଦିକ ଅଦିତି ଶବ୍ଦର ମନ୍ତ୍ରାର୍ଥକୁ ନେଇ ରୂପକ ଛଳରେ ଅଦିତି ଦେବତାଗଣଙ୍କ ମାତା ବୋଲି ପୁରାଣରେ ବର୍ଣ୍ଣିତ ।

ଏହିପରି ବୈଦିକ ଋଷିବୃନ୍ଦ ବେଦର ସଂହିତା ଭାଗରେ ଈଶ୍ୱରଙ୍କର ଅସ୍ତିତ୍ୱର ଆଭାସ ମାତ୍ର ଦେଖାଇଲେ । ସଂହିତାରେ ଯେଉଁ ବୀଜ ଅଙ୍କୁରିତ ହୋଇଥିଲା ତାହାହିଁ କ୍ରମେ କ୍ରମେ ବେଦର ବ୍ରାହ୍ମଣ ଓ ଆରଣ୍ୟକ ଅଂଶରେ ମୁକୁଳିତ ହେଲା । ସେହି ସମୟରେ ବୈଦିକ ଋଷିମାନେ କର୍ମକାଣ୍ଡଦ୍ୱାରା ଈଶ୍ୱରଙ୍କୁ ପୂଜା କରୁଥିଲେ ମଧ୍ୟ ତାହା ଅନିତ୍ୟ ଓ ଐହିକ ସୁଖପ୍ରଦ ମାତ୍ର ବୋଲି ଦୃଢ଼ ସିଦ୍ଧାନ୍ତ କଲେ, ଯଥା :-

"ତମେବଂ ବିଦ୍ୱାନମୃତ ଇହଭବତି ନାନ୍ୟଃ ପନ୍ଥା ବିଦ୍ୟତେଽୟନାୟ" ।

ଅର୍ଥାତ୍ - ପରମାତ୍ମାଙ୍କୁ ଜାଣିବା ବ୍ୟକ୍ତି ଅମୃତ ହୁଏ, ମୋକ୍ଷ ଲାଗି ଭିନ୍ନ ପନ୍ଥା ନାହିଁ ।

ଭିଦ୍ୟତେ ହୃଦୟ ଗ୍ରନ୍ଥି ଛିଦ୍ୟନ୍ତେ ସର୍ବ ସଂଶୟାଃ ।
କ୍ଷୀୟନ୍ତେ ଚାସ୍ୟକର୍ମାଣି ତସ୍ମିନ୍ ଦୃଷ୍ଟେ ପରାତ୍ପରେ ।।

ସେହି ବ୍ରହ୍ମଦର୍ଶନ ହେଲେ ହୃଦୟଗ୍ରନ୍ଥି ଭିନ୍ନ, ସଂଶୟ ଛିନ୍ନ ଓ କର୍ମ କ୍ଷୟ ହୁଏ । ତତ୍ପରେ ଜ୍ଞାନଯୋଗଦ୍ୱାରା ମାନବ ଭୂମାନନ୍ଦ ଲଭି ପରଂବ୍ରହ୍ମରେ ଲୀନ ହେବା ମାର୍ଗ ଅନୁସନ୍ଧାନ କରେ । ଏହି ପରମାତ୍ମା ତତ୍ତ୍ୱଟିକୁ ଉପନିଷଦ ସମସ୍ତଙ୍କୁ ଏପରି ବୁଝାଏ -

ମହତଃ ପରମବ୍ୟକ୍ତ ମବ୍ୟକ୍ତାତ୍ପୁରୁଷଃ ପରଃ ।
ପୁରୁଷାନ୍ନପରଂ କିଂଚିତ୍ ସାକାଷ୍ଠା ସା ପରାଗତିଃ ।। (କଠବଲ୍ଲି)

ମହତ୍ ତତ୍ତ୍ୱରୁ ପୃଥିବୀର ଆଦିବୀଜ ସୂକ୍ଷ୍ମ, ତଦପେକ୍ଷା ପରମାତ୍ମା ସୂକ୍ଷ୍ମତର, ତଦପେକ୍ଷା ସୂକ୍ଷ୍ମ ଅନ୍ୟ କେହି ନାହିଁ, ସେ ଏକା ଉତ୍କୃଷ୍ଟ ଗତି :

ନଜାୟତେ ମ୍ରିୟତେ ବା କଦାଚିତ୍, ନାୟଂ କୁତିଶ୍ଚିନ୍ନ ବଭୂବ କଶ୍ଚିତ୍ ।
ଅଜୋ ନିତ୍ୟଃ ଶାଶ୍ୱତୋଽୟଂ ପୁରାଣୋ ନ ହନ୍ୟତେ ହନ୍ୟମାନେ ଶରୀରେ ।।

ସେ ଜନ୍ମ ମୃତ୍ୟୁରହିତ ଜ୍ଞାନ ସ୍ୱରୂପ, କୌଣସି କାରଣଦ୍ୱାରା ତାହାଙ୍କର ଉତ୍ପତ୍ତି ହୋଇନାହିଁ, ସେ ନିଜର ମଧ୍ୟ କାରଣ ନୁହନ୍ତି, ସେ ଅଜ, ନିତ୍ୟ, ଶାଶ୍ୱତ, ପୁରାଣ, ଶରୀର ନଷ୍ଟରେସେ ନଷ୍ଟ ନୁହନ୍ତି ।

ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ ।
ଖଂ ବାୟୁ ର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ ।। (ମୁଣ୍ଡକୋପନିଷତ୍)

ତାହାଙ୍କଠାରୁ ପ୍ରାଣ, ମନ, ଆକାଶ, ବାୟୁ, ଜ୍ୟୋତି, ଜଳ ଓ ବିଶ୍ୱଧାରଣକର୍ତ୍ତ୍ରୀ ପୃଥିବୀ ଜନ୍ମିଅଛି ।

ଅଗ୍ନି, ମୂର୍ଦ୍ଧା ଚକ୍ଷୁଷୀ ଚନ୍ଦ୍ରସୂର୍ଯ୍ୟୌ ଦିଶଃ ଶ୍ରୋତ୍ରେ ବାଗବିବୃତାଶ୍ଚବେଦାଃ
ବାୟୁଃପ୍ରାଣୋ ହୃଦୟଂ ବିଶ୍ୱମସ୍ୟପଦ୍ଭ୍ୟାଂ ପୃଥିବୀ ହ୍ୟେଷ ସର୍ବଭୂତାନ୍ତରାତ୍ମା ।
(ଐତରୀୟ)

ତାହାଙ୍କର ଅଗ୍ନି ମସ୍ତକ, ଚନ୍ଦ୍ର, ସୂର୍ଯ୍ୟ ଚକ୍ଷୁଦ୍ୱୟ, ଦିଗ ସକଳ କର୍ଣ୍ଣ, ବାକ୍ୟ ବେଦ, ବାୟୁ ପ୍ରାଣ, ବିଶ୍ୱ ହୃଦୟ, ପୃଥିବୀ ପଦ, ସେହିଁ ସର୍ବଭୂତ (ପ୍ରାଣୀ)ମାନଙ୍କର ଅନ୍ତରାତ୍ମା ।

ଏହିପରି ଜ୍ଞାନତତ୍ତ୍ୱଦ୍ୱାରା ଈଶ୍ୱରଙ୍କୁ ନିରୂପଣ କରାଗଲା । ତା'ପରେ ଋଷିମାନଙ୍କ ମଧ୍ୟରେ ତର୍କ ଚାଲିଲା ସେହି ସର୍ବବ୍ୟାପକ, ସର୍ବଶକ୍ତିମାନ ଈଶ୍ୱରଙ୍କୁ କିଏ ଦେଖିବ? ଦେଖି ପାରିବ କି ନାହିଁ? ଇତ୍ୟାଦି ତର୍କ ପରେ ସ୍ଥିରହେଲା ଯେ :

''ଏଷଃ ସର୍ବେଷୁ ଭୂତେଷୁ ଗୂଢ଼ାତ୍ମା ନପ୍ରକାଶତେ
ଦୃଶ୍ୟତେ ତ୍ୱଗ୍ରୟା ବୁଦ୍ଧ୍ୟା ସୂକ୍ଷ୍ମୟା ସୂକ୍ଷ୍ମଦର୍ଶିଭିଃ ।'' (କଠ)

ଆତ୍ମା ସର୍ବବ୍ୟାପୀ ହେଲେ ମଧ୍ୟ ଅବିଦ୍ୟା ମାୟାଚ୍ଛନ୍ନ ଅଜ୍ଞାନୀ ହୃଦୟରେ ସେ ପ୍ରକାଶିତ ହୁଅନ୍ତି ନାହିଁ । ସୂକ୍ଷ୍ମଦର୍ଶୀର ସୂକ୍ଷ୍ମ ବୁଦ୍ଧିରେ ହିଁ ସେ ପ୍ରତିଫଳିତ ହୁଅନ୍ତି । ଅତଏବ :

ଯସ୍ତୁ ବିଜ୍ଞାନବାନ୍ ଭବତି ସମନସ୍କଃ ସଦାଶୁଚିଃ,
ସତୁ ତତ୍ପଦମାପ୍ନୋତି ଯସ୍ମାଦ୍ଭୂୟୋ ନଜାୟତେ ।। (କଠ)

ଯାହାର ବୁଦ୍ଧିରୂପ ସାରଥି ନିପୁଣ, ଯାହାର ମନରୂପ ରଜ୍ଜୁ ସ୍ୱାଧୀନ, ଯେ ସର୍ବଦା ସତ୍କର୍ମାନ୍ୱିତ ସେହି ପୁରୁଷ ହିଁ ପରମପଦ ପ୍ରାପ୍ତ ହୁଏ । ସେହି ପଦରୁ ଆଉ ପୁନରାବୃତ୍ତି ନାହିଁ; ଅର୍ଥାତ୍ ସେ ହିଁ ପରମାତ୍ମାଙ୍କୁ ଦେଖି ମୁକ୍ତି ଲଭେ ।

ଇତ୍ୟବସରରେ ସେହି ଆର୍ଯ୍ୟଋଷିମାନେ ଜ୍ଞାନ ସ୍ରୋତରେ ଭାସମାନ ହୋଇ କଳ୍ପନା କ୍ଷେତ୍ରରେ ନାନା ପ୍ରକାର ପଦ୍ଧତି ନିବନ୍ଧନ କଲେ । ତଦବଧି ସେହି ଚିନ୍ତା ସ୍ରୋତଟା ବିଭିନ୍ନ ଶାଖୋପଶାଖା ହୋଇ ଭେଦମାତ୍ରାର ସୂତ୍ରପାତ କଲା ।

କୌଣସି ଋଷି ଶ୍ରୌତ ସୂତ୍ର ରଚନା କରି ଯାଗାଦି କର୍ମକାଣ୍ଡ ଶିକ୍ଷା ଦେଲେ; କୌଣସି ଋଷି ଗୃହ୍ୟସୂତ୍ର ପ୍ରଚାରଦ୍ୱାରା ଗୃହସ୍ଥମାନଙ୍କୁ ଗୃହ ବ୍ୟାପାର ରୀତିନୀତି ଶିକ୍ଷାଦେଲେ; ଅନ୍ୟ କେହି ଦର୍ଶନ ସୂତ୍ର ପ୍ରଣୟନ କରି ତତ୍ତ୍ୱ ବିଚାର ଓ ଜ୍ଞାନ ବିନା ନିଃଶ୍ରେୟସ ଲାଭ ଅସମ୍ଭବ ଭାବି ସୂକ୍ଷ୍ମ ଐଶୀତତ୍ତ୍ୱାନୁସନ୍ଧାନରେ ପ୍ରବୃତ୍ତ ହେଲେ । ଏ ସକଳ ଶାସ୍ତ୍ରୀୟ ଆଲୋଚନା ବିସ୍ତୀର୍ଣ୍ଣ ଭାବେ

ଅନ୍ୟତ୍ର ବର୍ଣ୍ଣିତ ହୋଇଅଛି; କିନ୍ତୁ ଯେଉଁ ଈଶ୍ୱରଙ୍କ ପ୍ରାପ୍ତି ନିମନ୍ତେ ଶ୍ରୁତି, ସ୍ମୃତି, ଦର୍ଶନ, ସମ୍ପ୍ରଦାୟ ପ୍ରଭୃତିର ସୃଷ୍ଟି ହୋଇଅଛି ସେହି ଗ୍ରନ୍ଥଗୁଡ଼ିକ ପରିଶୀଳନ କରିବା ପୂର୍ବରୁ ପୁରାଣପୁରୁଷ ପରମାତ୍ମାଙ୍କ ବିଷୟରେ ଯତ୍କିଞ୍ଚିତ୍ ଆଲୋଚନା ନକଲେ ପ୍ରବନ୍ଧଟି ଅପୂର୍ଣ୍ଣ ରହିବ । ଆଶଙ୍କାରେ ଏ ସ୍ଥଳରେ ଦର୍ଶନ ନିର୍ଣ୍ଣିତ ଈଶ୍ୱରବସ୍ତୁ ବିଚାରର ଦିକ୍‌ଦର୍ଶନ ମାତ୍ର କଲୁ ।

ଆମ୍ଭମାନଙ୍କର ଯେତେଗୁଡ଼ିଏ ଦର୍ଶନ ବା ସାମ୍ପ୍ରଦାୟିକ ଗ୍ରନ୍ଥର ସୃଷ୍ଟି ହୋଇଅଛି ସେ ସମସ୍ତ ଶ୍ରୁତି ବାକ୍ୟରୁ ପଦେ ଅଧେ ଓଟାରିଆଣି ପ୍ରଣେତାମାନେ ସ୍ୱୀୟ ପ୍ରତିଭାର ଉତ୍କର୍ଷ ଦେଖାଇ ଗୋଟିଏ ଗୋଟିଏ ସିଦ୍ଧାନ୍ତର ପନ୍ଥା ଆବିଷ୍କାର କରିଯାଇଅଛନ୍ତି । ତାହାହିଁ ଆର୍ଯ୍ୟମାନଙ୍କର ପ୍ରାମାଣିକ ଗ୍ରନ୍ଥ ।

## (୧) ସାଂଖ୍ୟ ଦର୍ଶନ

ସାଂଖ୍ୟ ସୂତ୍ରରେ କପିଳ ମୁନି ସ୍ଥିର କରିଅଛନ୍ତି, 'ପ୍ରମାଣାଭାବାନ୍ନତତ୍ସିଦ୍ଧିଃ' । ପ୍ରମାଣ ଅଭାବରୁ ଈଶ୍ୱର ଥିବାର ସିଦ୍ଧାନ୍ତ କରାଯିବ ନାହିଁ ।

''ପ୍ରକୃତେର୍ମହାନ୍ ତତୋଽହଂକାରଃ ତସ୍ମାତ୍ ଗଣଶ୍ଚ ଷୋଡ଼ଶକଃ
ତସ୍ମାଦପି ଷୋଡ଼ଶକାତ୍ ପଞ୍ଚଭ୍ୟ ପଞ୍ଚଭୂତାନି'' ।

ଅର୍ଥାତ୍, ପ୍ରକୃତିରୁ ମହାନ୍, ମହତରୁ ଅହଂକାର, ଅହଂକାରରୁ ଏକାଦଶ ଇନ୍ଦ୍ରିୟ ଓ ପଞ୍ଚତନ୍ମାତ୍ର, ତନ୍ମାତ୍ରରୁ ପଞ୍ଚଭୂତ ଅନ୍ୟ ପୁରୁଷ ମିଶି ପଞ୍ଚବିଂଶତି ତତ୍ତ୍ୱ । ଏତଦ୍ୱାରା ପ୍ରକୃତିର ଜଗତ୍ କର୍ତ୍ତୃତ୍ୱ ସିଦ୍ଧ ହେଲା ।

'ଅସଙ୍ଗୋଽୟଂ ପୁରୁଷଃ' ଏହି ଶ୍ରୁତି ପ୍ରମାଣରୁ ପୁରୁଷ ମଧ୍ୟ ଗୋଟିଏ ଅଛି । ତାଦୃଶ ପ୍ରକୃତି, ପୁରୁଷ ସଂଯୋଗରୁ ମହଦାଦି ସମୁତ୍ପନ୍ନ ।

''ପ୍ରକୃତିଃ କର୍ତ୍ତ୍ରୀ, ପୁରୁଷଃ ପୁଷ୍କର ପଲାଶବତ୍‌ନିର୍ଲେପଃ ପ୍ରକୃତି ପୁରୁଷୟୋରନ୍ୟତ୍ ସର୍ବମନିତ୍ୟଂ'' ।

ପ୍ରକୃତି ପୁରୁଷ ବିନା ସମସ୍ତ ଅନିତ୍ୟ । ଧ୍ୟାନ ଧାରଣାଦି ବିହିତ କର୍ମାନୁଷ୍ଠାନ ଓ ବୈରାଗ୍ୟଦ୍ୱାରା ହିଁ ମୋକ୍ଷ ମିଳେ । ଏହି ସାଂଖ୍ୟମତଟି କପିଳଦେବହୂତି ଓ ଶ୍ରୀକୃଷ୍ଣାର୍ଜୁନ ସମ୍ବାଦବେଳେ ଭିନ୍ନରଙ୍ଗରେ ରଞ୍ଜିତ ।

## (୨) ଯୋଗ ସୂତ୍ରରେ ପାତଞ୍ଜଳ ମତ

''କ୍ଲେଶକର୍ମ ବିପାକାଶୟୈଃ ରପରାମୃଷ୍ଟଃ ପୁରୁଷ ବିଶେଷ ଈଶ୍ୱରଃ'' ।

କ୍ଲେଶ, କର୍ମ, ବିପାକ ଓ ଆଶୟ ଯାହାକୁ ସ୍ପର୍ଶ କରିପାରେ ନାହିଁ, ଯେ କାଳତ୍ରୟରୁ ପୃଥକ୍ ଓ ଆତ୍ମାର ସ୍ୱତନ୍ତ୍ର, ସେ ଈଶ୍ୱର ।

''ତତ୍ର ନିରତିଶୟଂ ସର୍ବଜ୍ଞତ୍ୱ ବୀଜମ୍''
ତାହାଙ୍କଠାରେ ନିରତିଶୟ ଜ୍ଞାନ ଥିବାରୁ ସେ ସର୍ବଜ୍ଞ ।
''ସ ପୂର୍ବେଷାମପିଗୁରୁଃ କାଳେ ନାନବଚ୍ଛେଦାତ୍,
ତସ୍ୟ ବାଚକଃ ପ୍ରଣବଃ, ତଜ୍ଜପଃ ତଦର୍ଥ ଭାବନଂ
ତତଃ ପ୍ରତ୍ୟକ୍ ଚେତନାଧିଗମୋଽପ୍ୟନ୍ତରାଭାବାଚ୍ଚ'' ।

ସେ ପୁରାତନ ସୃଷ୍ଟିକର୍ତ୍ତାମାନଙ୍କର ଗୁରୁ, କୌଣସି କାଳଦ୍ୱାରା ସେ ଅବିଚ୍ଛିନ୍ନ ନୁହନ୍ତି; ପ୍ରଣବ ତାହାଙ୍କର ବୋଧକ, ସେହି ପ୍ରଣବର ଜପ ଏବଂ ତାହାର ଅର୍ଥ ଧ୍ୟାନ କରିବା ହିଁ ଉପାସନା । ପୂର୍ବୋକ୍ତ ଉପାୟଦ୍ୱାରା ଚିତ୍ତ ଯେତେବେଳେ ନିର୍ମଳ ହୁଏ, ତେବେ ଶରୀରାନ୍ତର୍ଗତ ଆତ୍ମସମ୍ବନ୍ଧୀୟ ଜ୍ଞାନ ଜନ୍ମେ ଏବଂ ନିର୍ବିଘ୍ନରେ ନିର୍ବିକଳ୍ପ ସମାଧି ଲାଭହୁଏ ।

## (୩) କଣାଦଙ୍କ ବୈଶେଷିକ ଦର୍ଶନ

କଣାଦ, ବୈଶେଷିକ ଦର୍ଶନରେ ଈଶ୍ୱର ବା ପୁରୁଷ କାହାର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ ସତ୍ୟ; କିନ୍ତୁ ଗୌଣ ରୂପେ ଈଶ୍ୱର ସ୍ୱୀକାର କରିଥିବା ପ୍ରମାଣ ମିଳେ । ଯଥାଃ

''ବୃକ୍ଷାଭି ସର୍ପଣମିତ୍ୟ ଦୃଷ୍ଟିକାରିତ୍ୱଂ''

ଅର୍ଥାତ୍, ବୃକ୍ଷରେ ଯେ ରସ ସଞ୍ଚାର ହୁଏ, ଅଦୃଷ୍ଟ ହିଁ ତାହାର କାରଣ । କଣାଦ କଥିତ ଅଦୃଷ୍ଟ ହିଁ ଅର୍ଥାତ୍ ଯାହାର କାର୍ଯ୍ୟ କାରଣ ଦୃଷ୍ଟିଗୋଚର ହୁଏ ନାହିଁ, ତାହାହିଁ ଈଶ୍ୱର । କଣାଦଙ୍କ ମତରେ ଅଦୃଷ୍ଟ କାରଣ ବିଶେଷଦ୍ୱାରା ପରମାଣୁ ସମୁଦାୟ ସଂଯୋଗ ହୋଇ ଏହି ବିଶ୍ୱ ବ୍ରହ୍ମାଣ୍ଡ ସମୁତ୍ପନ୍ନ ହୋଇଅଛି । କଣାଦ ନିଜ ସୂତ୍ରରେ ଯେଉଁ ପରମାଣୁ ବା ଜଡ଼ତତ୍ତ୍ୱ ପ୍ରଚାର କରିଅଛନ୍ତି ତାହା ଖ୍ରୀଷ୍ଟ ଜନ୍ମର ୪୪୦ ବର୍ଷ ପୂର୍ବେ ଗ୍ରୀକ୍ ଦେଶରେ ''ଡେମେକ୍ରିଟିସ୍'' ସେହି ପରମାଣୁବାଦ ପ୍ରଚାର କଲେ; ତା'ପରେ ''ଏପିକ୍ୟୁରସ୍'' ମଧ୍ୟ ଏହି ମତ ସବିଶେଷରେ ଆଲୋଚନା କରିଛନ୍ତି । ଏହା ଠିକ୍ କଣାଦଙ୍କ ମତ । ତତ୍‌ପରେ ଲୁକ୍ରେସିୟା ଦର୍ଶନ ଦ୍ୱିତୀୟ ଅଧ୍ୟାୟରେ ପରମାଣୁରୁ ଜଗଦୁତ୍ପତ୍ତି ହେବା କଥା କଣାଦଙ୍କ ମତ ସଙ୍ଗେ ଅନେକ ସ୍ଥାନରେ ମିଳୁଅଛି । ତେବେ ସର୍ବାଦୌ ପରମାଣୁବାଦଟି ପ୍ରଚାର କଲା କିଏ ? କଣାଦ ବା ଡେମେକ୍ରିଟିସ୍ ? ଭଗବଦ୍‌ଗୀତାରେ ବୈଶେଷିକ ମତ ଗୃହୀତ ହୋଇଥିବାରୁ ଗୀତା ରଚନା ପୂର୍ବେ କଣାଦ ଅବଶ୍ୟ ଥିଲେ । କଣାଦ ଯେ ଅଙ୍କୁରାରୋପଣ କରିଥିଲେ ତାହା ଭାରତରେ ଫଳପ୍ରଦ ନହୋଇ ୟୁରୋପରେ ହେଲା । ଡେମେକ୍ରିଟିସ୍‌ଙ୍କର ଜୀବନୀ ପାଠରୁ ଜଣାଯାଏ ଯେ, ସେ ସନ୍ନ୍ୟାସୀମାନଙ୍କ ସଙ୍ଗେ ଭାରତକୁ ଆସିଥିଲେ । ବୋଧହୁଏ ଭାରତରେ କଣାଦଙ୍କ ମତ ବୁଝିପାରି ତାହା ସ୍ୱଦେଶରେ ପ୍ରଚାର କଲେ । ତଥାପି ବୈଶେଷିକ ସୂତ୍ର ଯେ ଅତି ପ୍ରାଚୀନ ଏହା ନିଃସନ୍ଦେହ ।

## (୪) ମହର୍ଷି ଗୌତମଙ୍କ ମତରେ

ଈଶ୍ୱରଃ କାରଣଂ ପୁରୁଷ କର୍ମାଫଲ୍ୟ ଦର୍ଶନାତ୍ (ନ୍ୟାୟସୂତ୍ର)

ଈଶ୍ୱର ହିଁ କାରଣ, ଯେହେତୁ ମନୁଷ୍ୟର କୃତକର୍ମ ସର୍ବଦା ସଫଳ ହୁଏ ନାହିଁ । ଏହାଙ୍କ ମତରେ ପରମେଶ୍ୱରଙ୍କର ନିତ୍ୟଜ୍ଞାନ ଇଚ୍ଛା ଓ ଯତ୍ନାଦି କେତେକ ଗୁଣ ଅଛି । ସେ ଜଗତର ନିମିତ୍ତ କାରଣ, ଉପାଦାନ କାରଣ ନୁହନ୍ତି । ଏହାଙ୍କ ଅଭିପ୍ରାୟ, ପଦାର୍ଥ ତତ୍ତ୍ୱଜ୍ଞାନରୁ ନିଃଶ୍ରେୟସ ଲାଭ ହୁଏ ।

## (୫) ଜୈମିନୀଙ୍କ ମତରେ

ବୈଦିକ କର୍ମାନୁଷ୍ଠାନଦ୍ୱାରା ପୁରୁଷାର୍ଥ ଲାଭ ହୋଇପାରେ । ସେ କହନ୍ତି, 'ବ୍ରହ୍ମାପୀତିଚେତ୍' ଯଦି ବ୍ରହ୍ମ ଥାଆନ୍ତି, ଏହି ସୂତ୍ରଦ୍ୱାରା ସେ ଈଶ୍ୱରଙ୍କ ଅସ୍ତିତ୍ୱ ସ୍ୱୀକାର କରିବା ଜଣାଯାଏ ।

## (୬) ମହର୍ଷି ବାଦରାୟଣଙ୍କ ମତ (ବେଦାନ୍ତ ମତ)

ବାଦରାୟଣ ମାତ୍ର ସମଗ୍ର ଉପନିଷଦର ସାର ସଂଗ୍ରହ କରି ବ୍ରହ୍ମସୂତ୍ରରେ ଈଶ୍ୱର ତତ୍ତ୍ୱର ବିସ୍ତୀର୍ଣ୍ଣ ଆଲୋଚନା କରିଅଛନ୍ତି "ଜନ୍ମାଦ୍ୟସ୍ୟଯତଃ" ଯାହାଙ୍କଠାରୁ ଏ ଜଗତର ଜନ୍ମାଦି ଅର୍ଥାତ୍ ଉତ୍ପତ୍ତି, ସ୍ଥିତି, ଲୟ ହୁଏ ସେ ହିଁ ଈଶ୍ୱର ବା ବ୍ରହ୍ମ । "ଯତୋବା ଇମାନି ଭୂତାନି ଜାୟନ୍ତେ" ଇତ୍ୟାଦି ଶ୍ରୁତିବାକ୍ୟକୁ ନେଇ ଯଥେଷ୍ଟ ବିଚାର କରିଅଛନ୍ତି । ଜଗତ୍ କର୍ତ୍ତୃତ୍ୱ ମତ ବ୍ୟତୀତ ବେଦାନ୍ତର ଅପରାପର ମତର ଅନେକ ଅଂଶରେ ସାଂଖ୍ୟ ସହିତ ଐକ୍ୟ ଥାଏ । ଏହି ଦର୍ଶନକୁ ନେଇ ଆର୍ଯ୍ୟ ଜଗତରେ ସାମ୍ପ୍ରଦାୟିକ ମତଗୁଡ଼ିକରେ ବିଷମ ବିଭ୍ରାଟ ଘଟୁଅଛି । ଏହି ବ୍ରହ୍ମସୂତ୍ର ଉପରେ ହିଁ ଅଦ୍ୱୈତବାଦୀ ବା ମାୟାବାଦୀ ଶଙ୍କରଙ୍କ ଶାରୀରିକ ଭାଷ୍ୟ, ବିଶିଷ୍ଟାଦ୍ୱୈତବାଦୀ ରାମାନୁଜଙ୍କର ଶ୍ରୀଭାଷ୍ୟ,ପୂର୍ଣ୍ଣପ୍ରଜ୍ଞ ଦର୍ଶନ ପ୍ରଣେତା ଦ୍ୱୈତବାଦୀ ମାଧ୍ୱାଚାର୍ଯ୍ୟଙ୍କର ଦ୍ୱୈତଭାଷ୍ୟ; ଶ୍ରୀକଣ୍ଠାଚାର୍ଯ୍ୟ ପ୍ରଣୀତ ଶ୍ରୀକଣ୍ଠଭାଷ୍ୟ, ଭେଦାଭେଦବାଦୀ ନିମ୍ବାର୍କ ପ୍ରଣୀତ ନିମ୍ବାର୍କ ସାମ୍ପ୍ରଦାୟିକ ଭାଷ୍ୟ,ତଦୀୟ ଶିଷ୍ୟ ଶ୍ରୀନିବାସାଚାର୍ଯ୍ୟକୃତ ବେଦାନ୍ତ କୌସ୍ତୁଭ ଭାଷ୍ୟ, ବିଶୁଦ୍ଧ ଦ୍ୱୈତ ସିଦ୍ଧାନ୍ତୀ ବଲ୍ଲଭାଚାର୍ଯ୍ୟକୃତ ଅଣୁଭାଷ୍ୟ, ଅଚିନ୍ତ୍ୟ ଭେଦାଭେଦ ପ୍ରବର୍ତ୍ତକ ଚୈତନ୍ୟକ ସିଦ୍ଧାନ୍ତ ଅନୁଯାୟୀ ବଳଦେବ ବିଦ୍ୟାଭୂଷଣ କୃତ ଗୋବିନ୍ଦ ଭାଷ୍ୟ ଏବଂ ସାଂଖ୍ୟ ପ୍ରବଚନ ଲେଖକ ବିଜ୍ଞାନଭିକ୍ଷୁ ପ୍ରଣୀତ ବିଜ୍ଞାନାମୃତ ଭାଷ୍ୟ ପ୍ରଭୃତି ତୁମୁଳ ତର୍କଜାଳ ସୃଷ୍ଟି କରି ନିଜନିଜ ମତ ସ୍ଥାପନ ପୂର୍ବକ ବେଦାନ୍ତ ଗ୍ରନ୍ଥର କଳେବରକୁ ଅପେକ୍ଷାକୃତ ବୃଦ୍ଧି କରିଯାଇଅଛନ୍ତି । ଏ ସମସ୍ତ ଆଲୋଚନା କରିବାକୁ ହେଲେ ମାନବର ବୁଦ୍ଧିବୃତ୍ତି ବିମୂଢ଼ ହୋଇଯିବ ।

ଏହିପରି ବ୍ରହ୍ମତତ୍ତ୍ୱକୁ ନେଇ ଦର୍ଶନମାନଙ୍କ ମଧ୍ୟରେ ଅବିରାମ ଯୁକ୍ତି ସଂଗ୍ରାମ ଚାଲିଥିଲେ ମଧ୍ୟ ପରମ ଦାର୍ଶନିକ ଶ୍ରୀକୃଷ୍ଣ ଭଗବାନ୍ ସର୍ବଶାସ୍ତ୍ର ସମ୍ମତ ଗୋଟିଏ ଅଭିନବ ଈଶ୍ୱରତତ୍ତ୍ୱ

ସେନା ସମ୍ମୁଖରେ ଶିଷ୍ୟ ଓ ସଖା ଅର୍ଜୁନଙ୍କୁ ବୁଝାଇ ଅଛନ୍ତି;ସେହି ଶୁଭ ମୁହୂର୍ତ୍ତରେ ହିଁ ବେଦ, ଉପନିଷଦ ଓ ଦର୍ଶନ ଶାସ୍ତ୍ରର ଏକତ୍ର ମିଳନ ହେଲା ।

ଶ୍ରୀମଦ୍ ଭଗବତ୍‌ଗୀତା ସର୍ବ ଦର୍ଶନ ସମନ୍ୱୟର ପୁଣ୍ୟ ସ୍ମୃତିସ୍ତୂପମାତ୍ର; ଗୀତା ସର୍ବବାଦୀ-ସମ୍ମତ । ସେହି ସାର୍ବଜନିକ ଦର୍ଶନରେ ମଧୁର ଉପଦେଶ ଛଳରେ ଶ୍ରୀକୃଷ୍ଣ ଭଗବାନ ସାଂଖ୍ୟର ପ୍ରଧାନ ଯୋଗଶାସ୍ତ୍ରର ଈଶ୍ୱର, ବୈଶେଷିକର ପରମାଣୁ, ନ୍ୟାୟର କାରଣ, ମୀମାଂସାର ବ୍ରହ୍ମକୁ ଈଶ୍ୱର ବୋଲି ଗ୍ରହଣ କରିଅଛନ୍ତି । ଜ୍ଞାନ ଓ କର୍ମ ଏ ଦୁଇଟିଯାକ ମୋକ୍ଷ ହେତୁ ବୋଲି ଏହାଙ୍କ ମତ । ଯଥା :

ତ୍ୟକ୍ତ୍ୱା କର୍ମଫଳାସଙ୍ଗଂ ନିତ୍ୟତୃପ୍ତୋ ନିରାଶ୍ରୟଃ
କର୍ମଣ୍ୟଭି ପ୍ରବୃତ୍ତୋଽପି ନୈବକିଂଚିତ୍ କରୋତି ସଃ ।।
ନିରାଶୀର୍ଯତ ଚିତ୍ତାତ୍ମା ତ୍ୟକ୍ତ ସର୍ବପରିଗ୍ରହଃ
ଶରୀରଂ କେବଳଂ କର୍ମ କୁର୍ବନ୍ନାପ୍ନୋତି କିଲ୍‌ବିଷଂ ।।
ଯଦୃଚ୍ଛା ଲାଭ ସଂତୁଷ୍ଟୋ ଦ୍ୱନ୍ଦ୍ୱାତୀତୋ ବିମତ୍ସରଃ
ସମଃସିଦ୍ଧାବସିଦ୍ଧୌଚ କୃତ୍ୱାପିନ ନିବଧ୍ୟତେ ।।
ଗତ ସଙ୍ଗସ୍ୟ ମୁକ୍ତସ୍ୟ ଜ୍ଞାନାବସ୍ଥିତ ଚେତସଃ
ଯଜ୍ଞାୟା ଚରତଃ କର୍ମ ସମଗ୍ରଂ ପ୍ରବିଲୀୟତେ ।।
ବ୍ରହ୍ମାର୍ପଣଂ ବ୍ରହ୍ମହବିଃ ବ୍ରହ୍ମାଗ୍ନୌ ବ୍ରହ୍ମଣାହୁତଂ
ବ୍ରହ୍ମୈବ ତେନ ଗନ୍ତବ୍ୟଂ ବ୍ରହ୍ମକର୍ମ ସମାଧିନା ।।

ଅର୍ଥାତ୍, ଯେ କର୍ମଫଳର ଆସକ୍ତି ପରିତ୍ୟାଗ କରି ଚିରତୃପ୍ତ ହୋଇ ରହେ, ଯେ କାହାର ଆଶ୍ରୟ ଗ୍ରହଣ କରେ ନାହିଁ, ସେ କର୍ମରେ ପ୍ରବୃତ୍ତ ହେଲେ ମଧ୍ୟ କିଛି କର୍ମ କରି ନାହିଁ କହିବାକୁ ହେବ । ଯେ କାମନା ଓ ପରିଗ୍ରହ ସକଳ ପରତ୍ୟାଗ କରେ; ଯାହାର ମନ ଓ ଆତ୍ମା ବିଶୁଦ୍ଧ, ସେ ଶାରୀରିକ କର୍ମାନୁଷ୍ଠାନ କଲେ ସୁଦ୍ଧା ପାପଭାଗୀ ନୁହେଁ । ଯେ ଯଦୃଚ୍ଛା ଲାଭ ସନ୍ତୁଷ୍ଟ, ସୀତୋଷ୍ଣ, ସୁଖଦୁଃଖାଦି ଦ୍ୱନ୍ଦ୍ୱସହିଷ୍ଣୁ, ଶତ୍ରୁବିହୀନ, ସିଦ୍ଧି ଅସିଦ୍ଧିକୁ ଯେ ସମଜ୍ଞାନ କରେ ସେ ସକର୍ମ ହେଲେ ମଧ୍ୟ କର୍ମ ବନ୍ଧନରେ ବିଜଡ଼ିତ ନୁହେଁ ।

ଯେ କାମନା ତ୍ୟାଗ କରି ରାଗାଦିରୁ ମୁକ୍ତ, ଯାହାର ଚିତ୍ତ ଜ୍ଞାନରେ ଅବସ୍ଥିତ, ସେ ଯଜ୍ଞାର୍ଥ କର୍ମାନୁଷ୍ଠାନ କଲେ କର୍ମ ସକଳ ବିଲୁପ୍ତ ହୋଇଯାଏ; ଯେହେତୁ ଯଜ୍ଞୀୟ ପାତ୍ରସକଳ ବ୍ରହ୍ମ, ହବନୀୟ ଘୃତାଦି ବ୍ରହ୍ମ, ଅଗ୍ନି ବ୍ରହ୍ମ, ହୋତା ବ୍ରହ୍ମ, ଏହିପରି କର୍ମସ୍ୱରୂପ ବ୍ରହ୍ମରେ ଯାହାର ସମାଧି ହୋଇଅଛି ସେ ବ୍ରହ୍ମକୁ ପ୍ରାପ୍ତ ହୁଏ ।

ଆରୁରୁକ୍ଷୋର୍ମୁନେର୍ଯୋଗଂ କର୍ମକାରଣମୁଚ୍ୟତେ
ଯୋଗାରୂଢ଼ସ୍ୟ ତସ୍ୟୈବ ଶମଃ କାରଣମୁଚ୍ୟତେ

ଯେଉଁ ମୁନି ଜ୍ଞାନଯୋଗ କରିବାକୁ ଇଚ୍ଛା କରେ କର୍ମ ହିଁ ତାହାର ସହାୟ । ଯୋଗାରୂଢ଼ର କର୍ମଫଳ ତ୍ୟାଗ ହିଁ ସହାୟ ।

**ଶ୍ରୀକୃଷ୍ଣଙ୍କ ମତରେ**

ଯେ ଅଜ, ଅକ୍ଷର, ଜଗତର ମୂଳ କାରଣ ସେ ହିଁ ବ୍ରହ୍ମ । ସେ ଈଶ୍ୱର ହେଲେ ମଧ୍ୟ ମାୟାରେ ଅଧିଷ୍ଠିତ ହୋଇ ସକଳ ଭୂତଙ୍କୁ ସୃଷ୍ଟି କରିଅଛନ୍ତି, କିନ୍ତୁ ସେ ସୃଷ୍ଟିର ଆୟତ୍ତ ନୁହନ୍ତି । ସେ ସୂକ୍ଷ୍ମାଦପିସୂକ୍ଷ୍ମ, ସେ ସ୍ୱୀୟ ପ୍ରକୃତିକୁ ଆଶ୍ରୟ କରି ସମୟେ ସମୟେ ଜନ୍ମଗ୍ରହଣ କରନ୍ତି । ଯଥା-

ଅଜୋଽପିସନ୍ନବ୍ୟୟାତ୍ମା ଭୂତାନାମୀଶ୍ୱରୋଽପିସନ୍
ପ୍ରକୃତିଂ ସ୍ୱାମଧିଷ୍ଠାୟ ସମ୍ଭବାମ୍ୟାତ୍ମମାୟୟା ।

ଏହିପରି ଗୀତାରେ ସର୍ବବାଦୀସମ୍ମତ ଈଶ୍ୱର ସ୍ଥିରୀକୃତ ହୋଇଅଛି; ଏବଂ ଗୀତା ଉପରେ ପୂର୍ବୋକ୍ତ ଭାଷ୍ୟକାରଗଣ ମଧ୍ୟ ଭାଷ୍ୟ ରଚନା କରି ସ୍ୱ ସାମ୍ପ୍ରଦାୟିକ ମତାନୁକୂଳ ଅର୍ଥ ବାହାର କରିଅଛନ୍ତି । ଗୀତାର ସମାଦର ପୃଥିବୀବ୍ୟାପୀ ଯେହେତୁ ଯେ ଯେଉଁ ଭାବରେ ପ୍ରାର୍ଥୀହେଲା ଗୀତା ତାହାକୁ ସେହି ଅର୍ଥ ପ୍ରଦାନ କଲା । ଗୀତାର ତୁଳନାରେ ଅନ୍ୟ ଧର୍ମଗ୍ରନ୍ଥ ନାହିଁ କହିଲେ ଚଳେ ।

ଅତଃପର ପୌରାଣିକ ଯୁଗରେ ଐଶ୍ୱରିକ ପ୍ରଭାବର କିଛି ଆଲୋଚନା କରାଯାଉ । ପୁରାଣରେ ସ୍ଥଳ ବିଶେଷରେ ବ୍ରହ୍ମଙ୍କର ଆଭାସ ଥିଲେ ମଧ୍ୟ, ବେଦର ଆରଣ୍ୟକ ଏବଂ ବ୍ରାହ୍ମଣ ଭାଗରେ ଆରୋପିତ ଈଶ୍ୱରସତ୍ତା ବୀଜଟି ପୁରାଣ ରଚନାବେଳେ ପଲ୍ଲବିତ ଓ କୁସୁମିତ ହେବାକୁ ଲାଗିଲା । "ଏକୋ ମୂର୍ତ୍ତିସ୍ତ୍ରୟୋଭାଗଃ ବ୍ରହ୍ମା ବିଷ୍ଣୁ ମହେଶ୍ୱରାଃ" । ଗୋଟିଏ ମୂର୍ତ୍ତି ତିନିଭାଗ ହୋଇ, ପରମେଶ୍ୱର ରୂପେ ପୂଜିତ ହେଲେ । ସେମାନଙ୍କର ନିବାସ ଲାଗି ଗୋଟିଏ ଗୋଟିଏ ଅବସ୍ଥାନୁକ୍ରମେ ମନ୍ଦିର ନିର୍ମାଣ କରାଗଲା । ସେମାନେ ମାନବ ପରି ସୁଖ ସ୍ୱଚ୍ଛନ୍ଦରେ ରହିବାକୁ ସେମାନଙ୍କର ପତ୍ନୀ ପରିବାରର କଳ୍ପନା କରାଗଲା । ସେମାନେ ମଧ୍ୟ ଗୃହୀ ପରି ସନ୍ତାନ, ଯାନ, ବାହନ, ଆସ୍ତି, ବାଡ଼ି, ଆୟ, ଅଳଙ୍କାର, ସମ୍ପାଦନ କଲେ; ଅବସ୍ଥାନୁକ୍ରମେ ସେମାନଙ୍କର ଯାତ, ପର୍ବ, ଉତ୍ସବାଦିର ଆୟୋଜନ ମଧ୍ୟ କରାଗଲା । ପରିଶେଷରେ 'ଯଥା ଦେହେ ତଥା ଦେବେ', ଇତ୍ୟାଦି ବାକ୍ୟ ଅନୁସାରେ ପ୍ରାତଃ କୃତ୍ୟଠାରୁ ରାତ୍ର ଶଯ୍ୟାରେ ପହଡ଼ ବିଧିର ବିଧାନ କରାଗଲା । ସେଥିଲାଗି ବ୍ରାହ୍ମଣ ଓ ଅନ୍ୟାନ୍ୟ ସେବକାଦି ନିଯୁକ୍ତ ରହିଲେ । ଆଜିକାଲି ରାଜା ମହାରାଜାମାନଙ୍କର ତ ସହସ୍ର ସହସ୍ର ଦାସ ଦାସୀ ଅଛନ୍ତି, ଆଉ ବ୍ରହ୍ମାଣ୍ଡନାୟକଙ୍କର ଅବା ନଥିବେ କାହିଁକି? କିନ୍ତୁ ଏଥିରେ ସମସ୍ତ ବିଷୟରେ ପ୍ରଧାନ ସଚିବ ବା ନର୍ମ ସଚିବ କିମ୍ବା ପ୍ରିୟପାତ୍ର ହେଲେ ଏକମାତ୍ର ବ୍ରାହ୍ମଣ ଜାତି । ପ୍ରଭୁଙ୍କର ସମସ୍ତ ରହସ୍ୟ ସମସ୍ତ ଅଧିକାର ରହିଲା ତାଙ୍କରି ହାତରେ ।

ପୁରାଣକର୍ତ୍ତା ଈଶ୍ୱରଙ୍କ ସାକାର ଉପାସନାକୁ ଗ୍ରନ୍ଥରେ ସ୍ଥାନ ଦେବା ଦେଖି, ଅନେକ ବୈଦେଶିକ ମନୀଷୀମାନେ ଆଶ୍ଚର୍ଯ୍ୟାନ୍ୱିତ ହୋଇ ଆକ୍ଷେପ କରନ୍ତି କି, ଯେଉଁ ଦେଶରେ ଜ୍ଞାନପ୍ରଧାନ ଉପନିଷଦ୍ ଓ ଦର୍ଶନଦ୍ୱାରା ଈଶ୍ୱରଙ୍କର ନିରାକାର ଉପାସନା ପ୍ରତିପାଦିତ, ଯେଉଁ ଦେଶରେ ଈଶ୍ୱର ସର୍ବବ୍ୟାପୀ ଓ ସର୍ବନିୟନ୍ତା ରୂପେ ଉଦ୍‌ଘୋଷିତ, ଯେଉଁ ଦେଶ ଆଧ୍ୟାତ୍ମିକ ବିଚାରର ପୁଣ୍ୟପୀଠ, ଯେଉଁ ଦେଶର ଜ୍ଞାନବାନ୍ ତତ୍ତ୍ୱବିତ୍‌ଗଣଙ୍କର ଅଦ୍ଭୁତ ପାଣ୍ଡିତ୍ୟପ୍ରସୂତ ଭଗବତ୍‌ନିରୂପଣ ସିଦ୍ଧାନ୍ତ ଆଜି ପାଶ୍ଚାତ୍ୟ ଜଗତକୁ ଚମତ୍କୃତ କରୁଅଛି, ସେହି ଦେଶରେ ଈଶ୍ୱର ରୂପ କଳ୍ପନା କିପରି ଅବଧାରିତ ହେଲା ? ନିରାକାରରେ ସାକାର କଳ୍ପନାର ଆବଶ୍ୟକତା କ'ଣ? ଇତ୍ୟାଦି ।

ଏହାର ଉତ୍ତରରେ ଏତିକିମାତ୍ର କୁହାଯାଇପାରେ ଯେ, ବ୍ୟାସଦେବ ଦେଶ ବା ସମାଜର ତତ୍କାଳୀନ ଅବସ୍ଥା ଅନୁସାରେ ନିର୍ଗୁଣୋପାସନା ବହୁ କଷ୍ଟସାଧ୍ୟ ଭାବି ସର୍ବସାଧାରଣଙ୍କ ହୃଦୟରେ ଐଶୀ ଭାବ ଆବେଶ ହେବା ଲାଗି ସହଜ ଓ ସରଳ ଭାଷାରେ ଚିତ୍ତାକର୍ଷକ ଆଖ୍ୟାନ ବିଶିଷ୍ଟ ପୁରାଣ ସକଳ ରଚନା କଲେ । ସେହି କଳ୍ପନା ବଳରେ ସାକାରୋପାସନା ମସ୍ତକୋତ୍ତୋଳନ କଲା । ବାଦରାୟଣ ମୂର୍ତ୍ତିକଳ୍ପନା କଥା ଲେଖିବାବେଳେ ଏହା ସୁଦ୍ଧା ବୁଝାଇଅଛନ୍ତି । ଈଶ୍ୱରଙ୍କ ରୂପ ଯଥାର୍ଥ ନୁହେଁ,କେବଳ କଳ୍ପନା ମାତ୍ର । ବ୍ୟାସ ବ୍ରହ୍ମସୂତ୍ରରେ ଲେଖିଅଛନ୍ତି କି -

"ଆନୁମାନିକମପ୍ୟେକେଷାମିତିଚେନ୍ନ
ଶରୀର ରୂପ ବିନ୍ୟସ୍ତ ଗୃହୀତେ ଦର୍ଶୟତି ଚ" ।

ଅର୍ଥାତ୍, ଈଶ୍ୱରାବତାରରେ ଯେଉଁ ସକଳ ଲୀଳା ଉପବର୍ଣ୍ଣିତ ତାହା ପ୍ରକୃତ ସତ୍ୟ ଘଟଣା ନୁହେଁ, ସେ ସମସ୍ତ ରୂପକ ମାତ୍ର । ତହିଁରୁ ଗୋଟିଏ ନିଦର୍ଶନ ଦେଖାଇ କ୍ଷାନ୍ତ ହେବୁଁ ।

କୂର୍ମାବତାରରେ ସମୁଦ୍ର ମଥନ ଉପାଖ୍ୟାନଟିର ମୌଳିକତା ବିଚାର କରାଯାଉ । ଦେହୀ ମାତ୍ରେ ଇନ୍ଦ୍ରିୟଦାନବଗଣ କର୍ତ୍ତୃକ ପ୍ରପୀଡ଼ିତ । ତାହାର କର୍ତ୍ତବ୍ୟ ବିବେକାଦି ଦେବତା ସାହାଯ୍ୟରେ ଇନ୍ଦ୍ରିୟଦାନବଙ୍କୁ ବଶୀଭୂତ କରି କୈବଲ୍ୟାମୃତ ଉତ୍ପାଦନ କରିବା । କିନ୍ତୁ ଦୁର୍ଦମନୀୟ ଇନ୍ଦ୍ରିୟରୂପୀ ଦାନବକୁଳ ତ ବଶୀଭୂତ ହେବା ସହଜ ବ୍ୟାପାର ନୁହେଁ, ଅତଏବ ଭଗବାନଙ୍କ ମଧ୍ୟସ୍ଥତାରେ ଉଭୟ କୁଳର ମିଳନ ହେଲା । ଇନ୍ଦ୍ରିୟାଦିର ଅଧିପତି ମୋହ ଅର୍ଥାତ୍ ଦେହାତ୍ମବୋଧ ସଙ୍ଗେ ବିବେକାଦି ସନ୍ଧି କରି ଉଭୟ ଦଳ ବୁଦ୍ଧି ମଥନଦଣ୍ଡରେ ଆଶାକୁ ରଜ୍ଜୁ କରି ଶ୍ରୁତି ସମୁଦ୍ର ମଥନରେ ପ୍ରବୃତ୍ତ ହେଲେ । କୂଟସ୍ଥ କୂର୍ମ ଉପାଧି ବିଶିଷ୍ଟ ଆତ୍ମା ମନ୍ଦର ନାମକ ଦେହ କୂଟରେ ଅବସ୍ଥିତ ରହନ୍ତେ ମଥନ ପ୍ରାରମ୍ଭରେ ଉପସର୍ଗ ରୂପ କାଳକୂଟର ଉତ୍ପତ୍ତି ହେଲା । ମହାଦେବ ରୂପୀ ତମୋଲୟକାରୀ ଗୁରୁ ତାହା ପାନ କରି ଶିଷ୍ୟର ବ୍ୟାଘାତ, ଅର୍ଥାତ୍ ଶିଷ୍ୟର ଜ୍ଞାନୋଦୟ ପର୍ଯ୍ୟନ୍ତ ଗୁରୁଙ୍କୁ ଅତ୍ୟନ୍ତ କଷ୍ଟ ସହିବାକୁ ହେଲା । କ୍ରମେ ଯଜ୍ଞରୂପିଣୀ ସୁରଭି, ଐଶ୍ୱର୍ଯ୍ୟ ରୂପ ଉଚ୍ଚୈଃଶ୍ରବା, ସାଂଖ୍ୟଯୋଗ ରୂପ ଐରାବତ, ଅଷ୍ଟାଙ୍ଗଯୋଗରୂପ ଅଷ୍ଟ ଦିଗ୍‌ଗଜ,

ଅଷ୍ଟସିଦ୍ଧି ରୂପା ଦିଙ୍କରିଣୀ, ଜୀବୋପାଧିକ କୌସ୍ତୁଭ, ଆତ୍ମ ଉପାଧିକ ପଦ୍ମରାଗ, ଆନନ୍ଦମୟ ପାରିଜାତ, ଶାନ୍ତି କରୁଣା ଶ୍ରଦ୍ଧାଦି ଅପ୍ସରୀଗଣ, ଚିତ୍ ଶକ୍ତି ରୂପା ଲକ୍ଷ୍ମୀ, ଅବିଦ୍ୟା ରୂପିଣୀ ବାରୁଣୀ ଉତ୍ପନ୍ନ ହେଲେ । ପରିଶେଷରେ କୈବଲ୍ୟାମୃତ ହସ୍ତରେ ଜ୍ଞାନ ରୂପ ଧନ୍ୱନ୍ତରୀ ଆବିର୍ଭୂତ ହେଲେ । ଇନ୍ଦ୍ରିୟାଦି ଅସୁରଗଣ କୈବଲ୍ୟାମୃତ ପାନର ଅଯୋଗ୍ୟ ହେତୁ ଭଗବାନ ବିଦ୍ୟାରୂପୀ ମୋହିନୀ ବେଶରେ ସେମାନଙ୍କୁ ମୋହିତ କରି ବିବେକାଦି ଦେବତାଗଣଙ୍କୁ କୈବଲ୍ୟାମୃତ ପରିବେଷଣ କଲାବେଳେ ତମୋରାହୁ ଗୁପ୍ତ ଭାବରେ ଅମୃତ ପାନ କରୁ କରୁ ରଜଃ ସତ୍ତ୍ୱ ରୂପ ଚନ୍ଦ୍ର ସୂର୍ଯ୍ୟ ତାହାର ପରିଚୟ ଦିଅନ୍ତେ ଅନ୍ତର୍ଯ୍ୟାମୀ ଜ୍ଞାନ ତତ୍ତ୍ୱ ରୂପ ଚକ୍ରଦ୍ୱାରା ତମର ଶିର ଛେଦନ କଲେ ।

ଭାଗବତର ପୁରଞ୍ଜନ ଉପାଖ୍ୟାନ ପ୍ରଭୃତି ଏହି ଧରଣର ନାନାବିଧ ରୂପକମୟ ଗଳ୍ପ ପୁରାଣରେ ବିଦ୍ୟମାନ । ଈଶ୍ୱରଙ୍କର ରୂପ କଳ୍ପନା ସାଧକର ସୁବିଧା ନିମନ୍ତେ କେବଳ ।

"ସାଧକାନାଂ ହିତାର୍ଥାୟ ବ୍ରହ୍ମଣୋ ରୂପକଳ୍ପନା"

ବସ୍ତୁତଃ ଏହିପରି ନାନା ପ୍ରକାର କଳ୍ପନା ରୂପକ ମାତ୍ର । ମତ୍ସ, କଚ୍ଛପାଦି ଦେହ ଧାରଣ ଯାବତୀୟ ଜୀବ କ୍ରମିକ ସୃଷ୍ଟିର ଆଭାସ ମାତ୍ର, ଏଥିରେ ନାନାବିଧ ଗୂଢ଼ କାରଣ ଓ ଉପଦେଶ ଅନ୍ତର୍ନିହିତ ଅଛି ।

ଆଉ ଗୋଟିଏ କଥା, ସଂହିତା ଓ ପୁରାଣ ପ୍ରଚାରର ସନ୍ଧି ସମୟରେ ଆର୍ଯ୍ୟମାନଙ୍କର ମନୋଭାବ ଭାରତରେ ବର୍ଣ୍ଣାଶ୍ରମ ବ୍ୟବସ୍ଥାର ଦୃଢ଼ ସଂସ୍ଥାପନ ଲାଗି ନିତାନ୍ତ ବ୍ୟାକୁଳିତ ହେବା ପ୍ରମାଣ ମିଳେ ଏବଂ ତାତ୍କାଳୀନ ଭାରତର ଅଖଣ୍ଡ ଆଧିପତ୍ୟ ବିକ୍ରମଶାଳୀ କ୍ଷତ୍ରିୟଙ୍କ ହସ୍ତରେ ନ୍ୟସ୍ତ କରି ଅନ୍ୟମାନଙ୍କୁ ପରାସ୍ତ କରିବା ଲାଗି ବଳାଢ଼୍ୟଙ୍କ ପୃଷ୍ଠପୋଷକତାରେ ସାମାଜିକ ଅନୁଶାସନର ବ୍ୟବସ୍ଥା ସକଳ ପ୍ରଣୟନ କରି ଦେଶରେ ପୁତ୍ର ପୌତ୍ର ପାରମ୍ପର୍ଯ୍ୟ କ୍ରମେ ଅଗ୍ରପୂଜ୍ୟ ହେବା ନିମନ୍ତେ ବ୍ରାହ୍ମଣମାନେ ନାନା ପ୍ରକାର ଉପାୟ ଉଦ୍ଭାବନ କଲେ ।

ବ୍ରାହ୍ମଣ୍ୟ ପ୍ରତିଷ୍ଠାର ସେ ଗୋଟିଏ ସ୍ୱର୍ଣ୍ଣମୟ ଯୁଗ କହିଲେ ଚଳେ । ଶିକ୍ଷା ଓ ଦୀକ୍ଷାର ପ୍ରଭାବରୁ ସେମାନଙ୍କର ପ୍ରଜ୍ଞାବଳ ମଧ୍ୟ ଅସାଧାରଣ ଥିବା ପ୍ରମାଣିତ ହୁଏ ।

ମନ୍ୱାଦି ଧର୍ମଶାସ୍ତ୍ର ପ୍ରଣେତାଗଣ ଚାତୁର୍ବର୍ଣ୍ଣ୍ୟ ଲାଗି ସ୍ୱତନ୍ତ୍ର ଆଇନ ପ୍ରଣୟନ କଲେ । ବ୍ରାହ୍ମଣଙ୍କ ପ୍ରତି ଅଯଥା ଦୟା, ଶୂଦ୍ରଙ୍କ ପ୍ରତି ଅପେକ୍ଷାକୃତ କଠୋରତା ପ୍ରଦର୍ଶିତ ହେଲା । ଏପରିକି ହତ୍ୟା ସ୍ଥଳରେ ମଧ୍ୟ ଲଘୁଗୁରୁ ଦଣ୍ଡର ବ୍ୟବସ୍ଥା ଦେଖାଯାଏ, ଏବଂ ମାନବ ଜନ୍ମ ଲଭିଲା ପରେ ଶୂଦ୍ରମାନେ ଧର୍ମକାର୍ଯ୍ୟ ସଦାନୁଷ୍ଠାନ କରିବା ଲାଗି ନିଷେଧ ଆଜ୍ଞା ପ୍ରଚାରିତ ହେଲା । ଏହାକି ସାମାନ୍ୟ ସ୍ୱାର୍ଥପରତା?

ବେଦ, ଉପନିଷଦ୍‌ରେ ଥିବା ସେହି ଉଦାର ପବିତ୍ର ଧର୍ମ କାଳକ୍ରମରେ ନିର୍ଜୀବ ଅନୁଷ୍ଠାନ, ଅର୍ଥ ଓ ଉଦ୍ଦେଶ୍ୟହୀନ କ୍ରିୟା କଳାପ, ବାହ୍ୟାଡ଼ମ୍ବରରେ ପରିଣତ ହେଲା ।

ବେଦ ଶାସ୍ତ୍ରର ସାରମର୍ମ ଭୁଲିଯାଇ, ଧର୍ମର ଦୋହାଇ ଦେଇ, ହୃଦୟରୁ ଦୟା ଦାକ୍ଷିଣ୍ୟ ବିସର୍ଜନ କରି, ସ୍ୱାର୍ଥ ସିଦ୍ଧି ନିମନ୍ତେ ଲୋକଙ୍କୁ ଦେଖାଇବା ଲାଗି ବ୍ରାହ୍ମଣମାନେ କଦାକାର ଅନୁଷ୍ଠାନମାନ ସୃଷ୍ଟି କଲେ । କ୍ରମଶଃ ଦେବପୀଠରେ ବଳିଦାନ, ଯଜ୍ଞରେ ପଶୁହତ୍ୟା, ବୀରାବଧୂତ, ଶାକ୍ତ ଇତ୍ୟାଦି କହି ମଦ୍ୟପାନ ଆଦି କୁତ୍ସିତ କର୍ମାଚରଣ କରି କର୍ମକାଣ୍ଡ ପ୍ରଣେତା ଋଷିଗଣ ପୁରୁଷାର୍ଥର ଅନେକ ଦୂରରେ ରହିବାକୁ ଲାଗିଲେ ।

ଇତ୍ୟବସରରେ ମହାତ୍ମା ବୁଦ୍ଧ ଦେବଙ୍କର ଆବିର୍ଭାବ । ତତ୍କାଳୀନ ଆର୍ଯ୍ୟ ସମାଜର ପଶୁହତ୍ୟା ଓ ଜାତି ବିଭାଗ, ନିମ୍ନ ଜାତି ପ୍ରତି ପ୍ରବର୍ତ୍ତିତ ନିର୍ଯାତନା, ବୁଦ୍ଧଦେବଙ୍କ ପ୍ରାଣରେ ଦାରୁଣ ଆଘାତ ଆଣିଲା । ତଦୀୟ କୋମଳାନ୍ତଃକରଣ ଧର୍ମ ନାମରେ ନିରୀହ ଜୀବଗଣଙ୍କର ରକ୍ତପାତ ଆଉ ସହ୍ୟ କରିପାରିଲା ନାହିଁ ।

ତାଙ୍କର ଉଦାର ଆତ୍ମା ପରପୀଡ଼ିତ ଜାତିଙ୍କ ସପକ୍ଷରେ ସହାୟ ଉଦ୍ୟତ ହୋଇ ଯୁଦ୍ଧ ଘୋଷଣା କରିବାକୁ ଲାଗିଲା । ବ୍ରାହ୍ମଣ ନିପୀଡ଼ିତ ଏବଂ ଅବହେଳିତ ଶୂଦ୍ର ଜାତି ନିଜର ଦାସତ୍ୱ ଛିନ୍ନ କରିବା ସୁଯୋଗ ପାଇ ମହାତ୍ମା ବୁଦ୍ଧଙ୍କର ପୃଷ୍ଠପୋଷକତାରେ ପ୍ରଚଳିତ ଧର୍ମ ରାଜ୍ୟରେ ଘୋର ବିପ୍ଳବ ସୃଷ୍ଟି କଲେ; ଏବଂ ଅନେକ ବୈଶ୍ୟ ମଧ୍ୟ ସେହି ମହାତ୍ମାଙ୍କର ସାମ୍ପ୍ରଦାୟିକ ଗନ୍ଧଶୂନ୍ୟ ବିଶୁଦ୍ଧ ଉପଦେଶରେ ଉଦ୍‌ବୁଦ୍ଧ ହେଲେ ।

ସେହି ମାହେନ୍ଦ୍ର ଶୁଭ କ୍ଷଣରେ ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ଯାଏ ପ୍ରାୟ ସମଗ୍ର ଭୂଖଣ୍ଡ ବୌଦ୍ଧ ଧର୍ମର ସାମ୍ୟ ଢକ୍କା ନିନାଦରେ ଶବ୍ଦାୟମାନ ହୋଇଉଠିଲା ।

ସେ ମହାତ୍ମା ଜାତିବିଭାଗ ପ୍ରଥାର ଘୋର ବିରୋଧୀ ହୋଇ ବୁଝିଲେ କି ଏହି ନିମ୍ନୋଚ୍ଚ ଜାତିବିଭାଗ ହିଁ ସମାଜର ଘୋର ଅନିଷ୍ଟକର; ଏବଂ ପ୍ରାଚୀନତମ ବ୍ରାହ୍ମଣ୍ୟ ଧର୍ମର ବିକୃତି ମାତ୍ର । ସେ ଧୈର୍ଯ୍ୟର ସହିତ ଯାଗଯଜ୍ଞାଦି କ୍ରିୟା କଳାପର ନିରର୍ଥକତା ପ୍ରଚାର କରିଥିଲେ । ତାହାଙ୍କର ସାର୍ବଜନୀନ ପ୍ରେମ ବସୁଧୈବ କୁଟୁମ୍ବକଂ ବ୍ୟବହାର ଦେଖି ଅନେକ ରାଜା ମହାରାଜାମାନେ ସେହି ମତରେ ଦୀକ୍ଷିତ ହେଲେ ।

ସେହି ବୌଦ୍ଧ ଧର୍ମ ପ୍ରଭାବରେ ପ୍ରଭାବାନ୍ୱିତ ହୋଇ ଦୋର୍ଦ୍ଦଣ୍ଡ ପ୍ରତାପୀ ମୌର୍ଯ୍ୟବଂଶୀ ଚନ୍ଦ୍ରଗୁପ୍ତ, ବିନ୍ଦୁସାର, ଚଣ୍ଡାଶୋକ ବା ଧର୍ମାଶୋକ ପ୍ରଭୃତି ମଗଧ ସିଂହାସନରେ ବସି ଶତ ଶତ ବର୍ଷ ପର୍ଯ୍ୟନ୍ତ ଭାରତର ଚକ୍ରବର୍ତ୍ତୀ ହୋଇ ବୁଦ୍ଧସମ୍ପ୍ରଦାୟକୁ ସତେଜ ଓ ପରିପୁଷ୍ଟ କରିବାକୁ ଲାଗିଲେ ।

ବୌଦ୍ଧ ଶ୍ରମଣମାନଙ୍କର ପ୍ରଚାର ଫଳରେ ଭାରତ ବାହାରେ, ବର୍ମା, ସିଂହଳ, ତିବ୍ବତ, ଚୀନ୍, ସୁଦୂର ମାଞ୍ଚୁରିଆ ପର୍ଯ୍ୟନ୍ତ ଉକ୍ତ ମତ ବ୍ୟାପ୍ତ ହେଲା ।

ବୌଦ୍ଧଙ୍କର ଆବିର୍ଭାବ ପୂର୍ବରୁ ଜୈନ ସମ୍ପ୍ରଦାୟ ସୃଷ୍ଟି ହୋଇ ଭାରତରେ ବିପୁଳ ଆନ୍ଦୋଳନର ସୂତ୍ରପାତ କରିଥିଲା । ସେହି ସାମ୍ପ୍ରଦାୟିକ ସଂମର୍ଦ୍ଦମୀୟ ଯୁଗରେ ଅପରାପର

ମତବାଦୀମାନଙ୍କର ସଂଖ୍ୟା ସୁଦ୍ଧା ନ୍ୟୁନ ନଥିଲା । ଏ ସ୍ଥାନରେ ତନ୍ମଧ୍ୟରୁ କେତୋଟି ମତର ବିବରଣୀ ଦେଲେ ତାତ୍କାଳିକ ଭାରତର ଧର୍ମ ସମସ୍ୟା କିପରି ଥିଲା ତାହା ସହଜରେ ବୋଧ ହେବ ।

ଲୋକାୟତ ବୋଲି ଗୋଟିଏ ମତ ବାହାରି ତୈତ୍ତରୀୟ ଶ୍ରୁତି ଅନ୍ତର୍ଗତ "ସଏଷଃ ପୁରୁଷୋଽନ୍ନର ସମୟଃ" ବାକ୍ୟ ପ୍ରମାଣ ଦେଖାଇ କୂଟସ୍ଥ ଆଦି ଶରୀରାନ୍ତ ସଂଘାତ ଅର୍ଥାତ୍ ଅନ୍ନମୟକୋଷ କେବଳ ଆତ୍ମା ବୋଲି ପ୍ରତିବାଦ ଆରମ୍ଭ କଲେ ।

## ଦେହାତିରିକ୍ତ ଆତ୍ମବାଦୀ ମତ

ଜୀବ ନିର୍ଗମନ ପରେ ଶରୀରର ଦର୍ଶନାଭାବରୁ ଦେହାତିରିକ୍ତ ଆତ୍ମା ଥିବାର ପ୍ରତିପାଦନ କଲେ ।

## ଇନ୍ଦ୍ରିୟାତ୍ମବାଦୀ ମତ

ମୁଁ ଦେଖୁଅଛି, ମୁଁ ଶୁଣୁଅଛି ଇତ୍ୟାଦି ଜ୍ଞାନ ଇନ୍ଦ୍ରିୟମୂଳକ; ଅତଏବ ଇନ୍ଦ୍ରିୟମାନେ ହିଁ ଦେହାତିରିକ୍ତ ଆତ୍ମା । ଶ୍ରୁତିରେ ଇନ୍ଦ୍ରିୟମାନଙ୍କର କଳହ କୁହାଯାଇଅଛି । ଚୈତନ୍ୟ ବିନା କଳହ ଅସମ୍ଭବ । ଏଣୁ ତାଦୃଶ ଚୈତନ୍ୟ ବିଶିଷ୍ଟ ଇନ୍ଦ୍ରିୟ ହିଁ ଆତ୍ମା ।

## ହିରଣ୍ୟଗର୍ଭ ମତ

"ପ୍ରାଣୋ ବ୍ରହ୍ମେତି ବ୍ୟଜାନାତ୍" ଇତ୍ୟାଦି ଶ୍ରୁତି ପ୍ରମାଣକୁ ନେଇ ପ୍ରାଣକୁ କେବଳ ଆତ୍ମା ବୋଲି କହନ୍ତି । ଯେହେତୁ ଚକ୍ଷୁ ଆଦି ଇନ୍ଦ୍ରିୟ ବିଧ୍ୱଂସରେ ସୁଦ୍ଧା ପୁରୁଷ ପ୍ରାଣ ଧାରଣ କରିଥିବା ଦେଖାଯାଏ ।

## ଉପାସକ ମତ

"ତସ୍ମାତ୍ ବା ଏତସ୍ମାତ୍ ପ୍ରାଣ-ମୟାତ୍ ଅନ୍ୟୋଽନ୍ତରାତ୍ମା ମନୋମୟଃ" ଇତ୍ୟାଦି ଶ୍ରୁତି ପ୍ରମାଣ ବଶରୁ ମନ କେବଳ ଆତ୍ମା ବୋଲି ଏମାନଙ୍କ ସିଦ୍ଧାନ୍ତ ।

## କ୍ଷଣିକବିଜ୍ଞାନବାଦୀ ମତ

"ତସ୍ମାତ୍ ବା ଏତସ୍ମାତ୍ ମନୋମୟାତ୍ ଅନ୍ୟୋଽନ୍ତରାତ୍ମା ବିଜ୍ଞାନମୟଃ" । ଇତ୍ୟାଦି ଶ୍ରୁତି ପ୍ରମାଣ କରି ବିଜ୍ଞାନ କେବଳ ଆତ୍ମା ବୋଲି ବିବାଦ ପ୍ରାରମ୍ଭ କଲେ ।

## ମାଧ୍ୟମିକ ସିଦ୍ଧାନ୍ତି ମତ

ପୂର୍ବୋକ୍ତ ବିଜ୍ଞାନ କ୍ଷଣେ କ୍ଷଣେ ବିଦ୍ୟୁଦୁନ୍ମେଷବତ୍ ପ୍ରଣଷ୍ଟ ହେବା ଯୋଗୁଁ ବିଜ୍ଞାନ ଆତ୍ମା ନୁହେଁ, ଏବଂ ବିଜ୍ଞାନାପେକ୍ଷା ଅତିରିକ୍ତ ଆତ୍ମା ଉପଲବ୍ଧି ନହେବାରୁ "ଅସଦେବ

ଇଦମଗ୍ରମାସୀତ୍'' । ଶୂନ୍ୟ କେବଳ ଆତ୍ମା, ଜ୍ଞାନ ଜ୍ଞେୟ ରୂପ, ଜଗତ ଭ୍ରାନ୍ତି କଳ୍ପିତ ବୋଲି ଘୋର ବିବାଦର ସୃଷ୍ଟି କଲେ ।

## ଦିଗମ୍ବର ମତ

ଆତ୍ମାର ମଧ୍ୟମ ପରିମାଣ ଅର୍ଥାତ୍ ଯାବତ୍ ଶରୀର ତାବତ୍ ପର୍ଯ୍ୟନ୍ତ ପରିମାଣ, "ସ ଏଷ ଇହପ୍ରବିଷ୍ଟଃ ଆନଖାଗ୍ରେଭ୍ୟଃ'' । ଶ୍ରୁତି ପ୍ରମାଣରୁ ଶରୀରରେ ସର୍ବତ୍ର ଚୈତନ୍ୟ ଉପଲବ୍ଧି ହେବା ଯୋଗୁଁ ଆତ୍ମାର ମଧ୍ୟମ ପରିମାଣତାର ସୂକ୍ଷ୍ମ ନାଡ଼ୀ ପ୍ରବେଶ ଅସିଦ୍ଧ ଶଙ୍କା ନିରାକରଣ କରି କହନ୍ତି- କଞ୍ଚୁକରେ ଶିରଃ, ପାଣି ପ୍ରଭୃତି ଅବୟବର ପ୍ରବେଶ ପରି ସୂକ୍ଷ୍ମ ନାଡ଼ୀରେ ଆତ୍ମାର ପ୍ରବେଶ ହୁଏ ।

ସେତେବେଳେ ଯଦ୍ୟପି ଧର୍ମାନ୍ଧ ଓ ଅପରିଣାମଦର୍ଶୀ ଆଚାର୍ଯ୍ୟଗଣ ଅନ୍ୟୋନ୍ୟରେ ସାମ୍ପ୍ରଦାୟିକ ସଂକୀର୍ଣ୍ଣ ଧର୍ମକୁ ନେଇ ଆତ୍ମକଳହରେ ଅନୁଲିପ୍ତ ନୋହିଥା'ନ୍ତେ,ଅଥବା ଶକ୍ତି କ୍ଷୟ ନକରି ଉଦାର ହୃଦୟରେ ଦେଶର ଅବସ୍ଥା ଦୃଷ୍ଟିରେ ବ୍ୟବସ୍ଥା ପ୍ରଣୟନ କରି ସମାଜକୁ ସମ୍ଭାଳି ରଖିଥା'ନ୍ତେ, ତେବେ ପ୍ରକୃତ ଆର୍ଯ୍ୟଧର୍ମ କାହିଁକି ନିଷ୍ପ୍ରଭ ହୁଅନ୍ତା ? କାହିଁକି ସମାଜ କ୍ଷୀଣ ହୁଅନ୍ତା ? କାହିଁକି ଆଜି ଜଗତ ସମକ୍ଷରେ ସର୍ବଧର୍ମର ଶୀର୍ଷସ୍ଥାନୀୟ ଆର୍ଯ୍ୟଧର୍ମ ଶକ୍ତିବିରହିତ ହୋଇ ଜଡ଼ବତ୍ ମୃତବତ୍ ପଡ଼ିରହି ପରର ଆକ୍ଷେପ ସହନ୍ତା ?

ଥାଉ ନିମ୍ନ ବର୍ଣ୍ଣଙ୍କ କଥା ଯେ ଉଚ୍ଚ ଶ୍ରେଣୀରେ ସୁଦ୍ଧା ପାଶ୍ଚାତ୍ୟ ଶିକ୍ଷା ବ୍ୟାକୁଳ ଦେଶ ହିତୈଷୀ ଶିକ୍ଷିତ ସମାଜରେ ସମୁଦ୍ରଯାତ୍ରାଦି ବିଷୟକୁ ନେଇ ଘୋର ଚାଞ୍ଚଲ୍ୟ ସୃଷ୍ଟି ହୋଇଥିଲା ।

ବଙ୍ଗସମାଜର ପ୍ରଧାନତର ଅଗ୍ରଣୀ ରାଜା ରାମମୋହନ ରାୟ, ମହର୍ଷି ଦେବେନ୍ଦ୍ରନାଥ ଠାକୁର ପ୍ରଭୃତି ଦୂରଦର୍ଶୀ କୃତୀସନ୍ତାନମାନେ ମଧ୍ୟ ପ୍ରକୃତ ଧର୍ମ ପ୍ରଚାରକ ରକ୍ଷଣଶୀଳ ଦଳର ଲାଞ୍ଛନା ଓ କଟୁକଟାକ୍ଷ ନିକ୍ଷେପରୁ ଅବ୍ୟାହତି ପାଇ ନଥିଲେ । ସେଥିଲାଗି ସେମାନେ ପ୍ରାଚୀନତମ ବୈଦିକାନୁଷ୍ଠାନର ଅନୁକରଣରେ ବ୍ରାହ୍ମଧର୍ମ ନାମକ ଅନ୍ୟ ଗୋଟିଏ ନୂତନ ଧର୍ମ ସୃଷ୍ଟି କଲେ । ଶିକ୍ଷିତାଗ୍ରଗଣ୍ୟ ବାଗ୍ମୀପ୍ରବର କେଶବଚନ୍ଦ୍ର ସେନଙ୍କ ନେତୃତ୍ୱରେ ସେହି ନବମନ୍ତ୍ରରେ ଅନେକ ଆର୍ଯ୍ୟମତାବଲମ୍ବୀ ଶିକ୍ଷିତ ଯୁବକମାନେ ଆଦରର ସହିତ ଦୀକ୍ଷିତ ହେଲେ; ଏବଂ ଭଗବତ୍ ତତ୍ତ୍ୱ ସମ୍ବନ୍ଧେ ସେହି ବକ୍ତାଗ୍ରଣୀ କେଶବଚନ୍ଦ୍ର ସେନ ପ୍ରଚାର କଲେ :

ବେଦର ଈଶ୍ୱର ନିଶ୍ଚେଷ୍ଟଏ, ପୁରାଣର ଈଶ୍ୱର କର୍ମଶୀଳ; ନିଶ୍ଚେଷ୍ଟ, ଓ କର୍ମଠ, ଏ ଦୁହିଁଙ୍କର ସମନ୍ୱୟ ଆଶ୍ଚର୍ଯ୍ୟକର । ସେ ମନୁଷ୍ୟ ପରି ଏଣେତେଣେ ବୁଲନ୍ତି ନାହିଁ, ଅଥଚ ସେ ସଂଚରଣଶୀଳ, ସେ ତୁମ୍ଭ ଆମ୍ଭ ମୁଖରେ ପ୍ରକାଶ୍ୟ ରୂପେ ଅନ୍ନ ଭରି ଦିଅନ୍ତି ନାହିଁ, ଅଥଚ ସମସ୍ତ ଜାଗତିକ ଶକ୍ତି ଭିତରେ ସମସ୍ତଙ୍କୁ ଅନ୍ନ ଯୋଗାଇ ଦିଅନ୍ତି । ବ୍ରହ୍ମ ନିଷ୍କ୍ରିୟ, ଅଥଚ ସେ ନିଗୂଢ଼ ନିୟମରେ ଆମ୍ଭର ସମସ୍ତ ଅଭାବ ପୂର୍ଣ୍ଣ କରନ୍ତି । ଏଣୁ ସର୍ବେ, ସର୍ବତ୍ର, ସର୍ବାଗ୍ରେ

ତାହାଙ୍କୁ ପୂଜା କରିବା ବିଧେୟ । ଈଶ୍ୱର ଭକ୍ତଙ୍କୁ ସୁଖୀ କରନ୍ତି, ସତ୍ୟବାଦୀଙ୍କୁ ଜୟୀ କରନ୍ତି; (ବିଶେଷ ବିବରଣ ନବ୍ୟସମ୍ପ୍ରଦାୟ ତରଙ୍ଗେ ଦ୍ରଷ୍ଟବ୍ୟ) ।

## ପରମ ସାଧକ ରାମପ୍ରସାଦଙ୍କ ମତ

ସାଧକ ରାମପ୍ରସାଦ ପ୍ରଚାର କଲେ, ମା' ଶକ୍ତି ହିଁ ମୂଳାଧାର ସ୍ୱରୂପିଣୀ; ତଦୀୟ ଇଚ୍ଛାବଳରେ ସମସ୍ତ ନିର୍ବାହିତ । ତାହାଙ୍କର ରୂପ କଳ୍ପନା କରାଯାଇ ନପାରେ । ମନ ତାହାଙ୍କୁ ବୁଝେ, ପ୍ରକୃତ ମନରେ ତାହାଙ୍କ ଦର୍ଶନ ଘଟେ । ପ୍ରକୃତି ପୁରୁଷ ହିଁ ବିଶ୍ୱର ସ୍ରଷ୍ଟା ଇତ୍ୟାଦି କହି ନିଜର ମତ ବୁଝାଇବାକୁ ଲାଗିଲେ ।

ସେହି ସମୟଟା ଭାରତ ଇତିହାସର ଅଧଃପତନରୂପ ଗୋଟିଏ ଭୀଷଣ ଯୁଗ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୋଗଲ ଖଡ୍‌ଗ ଛିନ୍ନ ଅନେକ ନିରୀହ ଧର୍ମପ୍ରାଣ ହିନ୍ଦୁଙ୍କର କଣ୍ଠରୁଧିରରେ ଦିନେ ମଥୁରାଦାଣ୍ଡ ପିଚ୍ଛିଳ ଓ ଯମୁନାର ସୁନୀଳ ଜଳରାଶି ଲୋହିତରାଗ ରଞ୍ଜିତ ହୋଇଗଲା । ଭାରତର ପବିତ୍ର ତୀର୍ଥକ୍ଷେତ୍ର ଜନଶୂନ୍ୟ ହୋଇଗଲା । ଭଗବାନଙ୍କ ବିଚିତ୍ର ଲୀଳା ପ୍ରାଣୀଜ୍ଞାନାଗମ୍ୟ; ସେହି ସମୟରେ ଆମ୍ଭ ଉତ୍କଳର ନୀଳାଚଳ ପ୍ରତିଷ୍ଠିତ ଶ୍ରୀଜଗନ୍ନାଥ ମୂର୍ତ୍ତି ମଧ୍ୟ ମୁସଲମାନ ପ୍ରଦତ୍ତ ଲାଞ୍ଛନାରୁ ଅବ୍ୟାହତି ପାଇପାରି ନଥିଲେ ।

ଆଶ୍ଚର୍ଯ୍ୟର ବିଷୟ, ଧର୍ମର ନାମ ନେଇ ପୃଥିବୀର ପ୍ରତ୍ୟେକ ସ୍ଥାନରେ ଯେଉଁ ରକ୍ତବନ୍ୟା ବହି ଯାଇଅଛି; ପାଲେଷ୍ଟାଇନ୍‌ରେ ଜେରୁସେଲମ୍‌ଠାରେ ଯେଉଁ ଅମାନୁଷୀ ଭୀଷଣ ହତ୍ୟାର ସୃଷ୍ଟି ହୋଇଥିଲା ତାହା ସ୍ମରଣରେ ଅଦ୍ୟାପି ଆମ୍ଭମାନଙ୍କ ପ୍ରାଣରେ ବିଷାଦ ଜନ୍ମେ । ଧର୍ମର ଦୋହାଇ ଦେଇ ଏହିପରି ମାରାତ୍ମକ ଲୀଳା କଳଙ୍କର ସ୍ଥାନ ନୁହେଁ କି ? ଏହି ଲୋମହର୍ଷଣ କାଣ୍ଡ ଶ୍ରବଣ ମାତ୍ରେ ଲଜ୍ଜାରେ ମୁଖ ଅବନତ ହୋଇଯାଏ ।

ଏହି ଧର୍ମ ସମସ୍ୟାର ଘୋର ସନ୍ଧିକ୍ଷଣରେ ନବଦ୍ୱୀପରେ ମହାତ୍ମା ଚୈତନ୍ୟ ଜନ୍ମ ଲଭି ଭଗବାନଙ୍କ ନାମ କୀର୍ତ୍ତନରେ ଭକ୍ତିଯୋଗ ପ୍ରଚାର କରି ବଙ୍ଗ, ବିହାର, ଓଡ଼ିଶାର ପ୍ରତ୍ୟେକ ପୁରପଲ୍ଲୀରେ ଶ୍ରୀକୃଷ୍ଣ ପ୍ରେମରସର ପ୍ରସ୍ରବଣ ବୁହାଇଦେଲେ । ଅଦ୍ୟାପି ଅସ୍ମଦ୍ଦେଶରେ ଶିକ୍ଷିତାଭିମାନୀ ମାତ୍ରେ ସେହି ମାଧୁର୍ଯ୍ୟ ରସୋଲ୍ଲାସର ପ୍ରଭାବ ଅନୁଭବ କରୁଥିବେ । ଏ ସମ୍ପ୍ରଦାୟର ଗୋସ୍ୱାମୀମାନେ ପର୍ଯ୍ୟାପ୍ତ ଉପାଦେୟ ଓ ଉତ୍କୃଷ୍ଟତର ଗ୍ରନ୍ଥ ପ୍ରଣୟନ କରି ଯାଇଅଛନ୍ତି । ଏମାନଙ୍କ କବିତାଶକ୍ତି ଅସାଧାରଣୀ, ଜୀବଗୋଷ୍ଠୀଙ୍କର ଷଟ୍‌ସନ୍ଦର୍ଭ ବିଚାରପୂର୍ଣ୍ଣ ।

ଇତ୍ୟବସରରେ ଏକ ଦିଗରେ ଜାତି ଓ ଧର୍ମ ନେଇ, ସାମ୍ପ୍ରଦାୟିକ ଉତ୍କୃଷ୍ଟତା ଓ ନିକୃଷ୍ଟତାକୁ ନେଇ, ସ୍ପର୍ଶାସ୍ପର୍ଶ୍ୟ ବିଚାରକୁ ନେଇ, ଗୃହ କଳହ ବ୍ୟସ୍ତ ଆର୍ଯ୍ୟମାନଙ୍କର ଅନୈକ୍ୟ ଓ ଉଚ୍ଛୃଙ୍ଖଳତା, ଅନ୍ୟ ଦିଗରେ ଆତ୍ମଗର୍ବାଭିମାନୀ ମୋଗଲମାନଙ୍କର ବିଳାସ ସ୍ରୋତ ପ୍ରାବଲ୍ୟରୁ ସ୍ୱରାଜ୍ୟର ଅଧଃପତନ ହେବାବେଳେ, ସୁଦୂର ପଶ୍ଚିମପ୍ରାନ୍ତରୁ ଧୀର ପଦବିକ୍ଷେପରେ, ଅମ୍ଳାନ

ବଦନରେ ଖ୍ରୀଷ୍ଟଧର୍ମ ପ୍ରବେଶ କରି, ତଦୀୟ ସୂକ୍ଷ୍ମବୁଦ୍ଧି ଓ ଦକ୍ଷତା ବ୍ୟବହାରଦ୍ୱାରା ଅତି କୌଶଳରେ ଭାରତରେ ଏକଛତ୍ରାଧିପତ୍ୟ ବିସ୍ତାର କଲା ।

ସହଜେ ମୁସଲମାନ ପ୍ରଭୁତ୍ୱର କ୍ରୂରତାରୁ ଅପହୃତ ଆତ୍ମସମ୍ମାନ, ହିନ୍ଦୁ ବିଷଣ୍ଣ ଓ ଶକ୍ତିଶୂନ୍ୟ ଥିଲା, ତା'ପରେ ଉଦାର ଖ୍ରୀଷ୍ଟଧର୍ମର ଆପାତ ମଧୁର ପ୍ରଲୋଭନପୂର୍ଣ୍ଣ ସାଦରାହ୍ୱାନ, ଅନ୍ୟ ଦିଗରେ ବ୍ରାହ୍ମଣ୍ୟାଭିମାନୀ ଜାତୀଶ୍ୱର ହିନ୍ଦୁ ସମାଜ ନେତାମାନଙ୍କର ଅବହେଳନା ଓ ଉତ୍ପୀଡ଼ନା । ଏହି ଭୀମ ଆବର୍ତ୍ତରେ ଭ୍ରାମ୍ୟମାଣ, ପ୍ରପୀଡ଼ିତ କେତେକ ହିନ୍ଦୁ ପ୍ରକୃତ ଧର୍ମପଥ ହରାଇ, କ୍ରମେ କ୍ରମେ ଖ୍ରୀଷ୍ଟ ଧର୍ମାଭିମୁଖୀନ ହୋଇ ଆର୍ଯ୍ୟଜାତିର ରୀତିନୀତି, ବ୍ୟବହାର, ପ୍ରକୃତ ଧର୍ମ ପାସୋରି ସ୍ୱଧର୍ମର ମମତାରେ ଜଳାଞ୍ଜଳି ପ୍ରଦାନ କଲେ ।

## ବିରାଟ ପୁରୁଷ ଆଶଙ୍କାବାଦୀ ମତ

'ପ୍ରଜାପତିର କାମୟତ', ଶ୍ରୁତି ପ୍ରମାଣରୁ ଚତୁର୍ମୁଖ ହିଁ ଈଶ୍ୱର ବୋଲି ଏମାନେ କହନ୍ତି; ଏବଂ ଈଶ୍ୱରଙ୍କ ବିରାଟ ରୂପତ୍ୱ ସିଦ୍ଧ ହେଲେ ପରିଦୃଶ୍ୟମାନ କୁମ୍ଭାଦିର ମଧ୍ୟ ଈଶ୍ୱରତ୍ୱ ସିଦ୍ଧ ହେବ ବୋଲି ଏହାଙ୍କ ମତ ।

## ସାରସ୍ୱତବାଦୀ ମତ

''ନାବେଦ ବିନ୍ମନୁତେତଂ ବୃହନ୍ତଂ'' ଅର୍ଥାତ୍ ବେଦାଧ୍ୟୟନଶୂନ୍ୟ ପୁରୁଷ ସେହି ବୃହତ୍ ସ୍ୱରୂପକୁ ଜାଣନ୍ତି ନାହିଁ । ଅତଏବ ବାଗ୍‌ଦେବତା କେବଳ ଜଗତ୍‌କର୍ତ୍ତ୍ରୀ ହେତୁ ଉପାସ୍ୟା । ''ଜଗତକର୍ତ୍ତ୍ରୀତି ନିତ୍ୟା ବାଗିତି'' ଶ୍ରୁତି ବାକ୍ୟତଃ ଏବଂ ''ସୈବାତ୍ମବ୍ରହ୍ମ ବିଷ୍ଣ୍ୱାଦି ଶବ୍ଦ ଜାଳୈରୁଦାହୃତା । ଗୁଣାତୀତ ସ୍ୱରୂପାଚ ସେବ୍ୟା ସର୍ବୈର୍ମୁମୁକ୍ଷୁଭିଃ'' । ନିତ୍ୟା ବାକ୍ ଦେବୀ କେବଳ ଜଗତ୍ କର୍ତ୍ତ୍ରୀ; ବ୍ରହ୍ମା, ବିଷ୍ଣୁ ଆଦି ଶବ୍ଦ ତାହାଙ୍କଠାରେ ପ୍ରଯୁଜ୍ୟ; ସେହି ଗୁଣାତୀତ ସ୍ୱରୂପାଙ୍କୁ ହିଁ ମୁମୁକ୍ଷୁଗଣ ସେବା କରିବା ଉଚିତ ।

ଏହିପରି ଈଶ୍ୱରତ୍ୱକୁ ନେଇ ଘୋରତର ମତବାଦର ସୃଷ୍ଟି ହେଲା । ସେତେବେଳେ ଚାର୍ବାକମାନେ ମଧ୍ୟ 'ଈଶ୍ୱର ନାହାନ୍ତି, ଚୈତନ୍ୟ ବିଶିଷ୍ଟ ଦେହ ହିଁ ଆତ୍ମା; ଏତତ୍ ବ୍ୟତିରିକ୍ତ ସ୍ୱତନ୍ତ୍ର ଆତ୍ମା ନାହିଁ । ଲୋକସିଦ୍ଧ ରାଜା ହିଁ ପରମେଶ୍ୱର,ଦେହର ଉଚ୍ଛେଦ ହିଁ ମୋକ୍ଷ' ଇତ୍ୟାଦି ଯୁକ୍ତିଜାଳରେ ସମସ୍ତଙ୍କୁ ବ୍ୟତିବ୍ୟସ୍ତ କଲେ ।

ସେହି ସମୟରେ ନିଷ୍ପ୍ରଭମାଣ ଜୈନସମ୍ପ୍ରଦାୟ ଧର୍ମ ସମସ୍ୟାର ସନ୍ଧିସମୟ ଦେଖି ନିଜର ଦଳ ପୁଷ୍ଟ କରିବାକୁ ପ୍ରଚାର କଲେକି, ''ଈଶ୍ୱର ନାହାନ୍ତି, ଜିନଦେବହିଁ ସର୍ବଜ୍ଞ ମୁକ୍ତିଦାତା, ସେ ସକଳ ପ୍ରାଣୀର ହୃତ୍ ପଦ୍ମରେ ଜୀବରୂପରେ ଅବସ୍ଥାନ କରନ୍ତି; ଆତ୍ମା ଏକ ନୁହେଁ, ଯେବେ ଗୋଟିଏ ଆତ୍ମା ସମସ୍ତଙ୍କ ଦେହରେ ଥିବା ସତ୍ୟ ହୁଏ ତେବେ ଜଣେ ସୁଖୀ ହେଲେ ସର୍ବେ ସୁଖୀ ହେବା ଦେଖାଯାଉ ନାହିଁ କାହିଁକି''?

ଜୀବଲୋକ ସିଦ୍ଧ । ସିଦ୍ଧି ତତ୍ତ୍ୱ ଜାଣିଲେ ଲୋକ ଧର୍ମପ୍ରାପ୍ତ ପ୍ରାପ୍ତ ହୁଏ; ଏଥିରୁ ଆଉ ଗୋଟିଏ ନବ୍ୟ ଜୈନ ଦଳ ସୃଷ୍ଟିହୋଇ ଚାର୍ବାକଙ୍କ ପରି ଘୋର ନାସ୍ତିକବାଦ ଆରମ୍ଭ କଲେ ।

ଏହି ସମୟରେ ଶାକ୍ତ, ଶୈବ, ବୈଷ୍ଣବ, ସୌର, ଗାଣପତ୍ୟ ପ୍ରଭୃତି ଆସ୍ତିକବାଦୀମାନେ ମଧ୍ୟ ପ୍ରବଳ ଭାବେ ବାଦାନୁବାଦ କଲେ । ଘୋର ମତାନ୍ତର ଜନ୍ମିଲା । ସ୍ୱମତ ସ୍ଥିର କରିବା ଲାଗି -

### ଶାକ୍ତ ସ୍ତୁତି କଲେ

''ମାୟାଂତୁ ପ୍ରକୃତିଂ ବିଦ୍ୟାତ୍'' ଏହି ଶ୍ରୁତି ପ୍ରମାଣ କରି କହିଲେ କି,
ନମୋଦେବ୍ୟୈ ମହାଦେବ୍ୟୈ ଶିବାୟୈସତତଂ ନମଃ ।
ନମଃ ପ୍ରକୃତ୍ୟୈ ଭଦ୍ରାୟୈନିୟତାଃ ପ୍ରଣତାଃ ସ୍ମତାଃ ।।
ଯା ଦେବୀ ସର୍ବଭୂତେଷୁ ଚେତନେତ୍ୟ ଭିଧୀୟତେ,
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।।
ନମୋ ଦେବି ମହାମାୟେ ସୃଷ୍ଟି ସଂହାର କାରିଣି ।
ଅନାଦି ନିଧନେ ଚଣ୍ଡି ଭକ୍ତିମୁକ୍ତି ପ୍ରଦେଶିବେ ।।

### ଶୈବ ସ୍ତୁତିକଲେ

ତଂପ୍ରପଦ୍ୟେ ମହାଦେବଂ ସର୍ବଜ୍ଞମପରାଜିତଂ ।
ବିଭୂତି ସକଳଂ ଯସ୍ୟ ଚରାଚରମିଦଂ ଜଗତ୍ (ବାୟୁସଂହିତା)

### ବୈଷ୍ଣବ ସ୍ତବ କଲେ

ଅବିକାରାୟ ଶୁଦ୍ଧାୟ ନିତ୍ୟାୟ ପରମାତ୍ମନେ ସଦୈକରୂପରୂପାୟ ବିଷ୍ଣବେସର୍ବବିଷ୍ଣବେ ।

ନମୋ ହିରଣ୍ୟଗର୍ଭାୟ ହରୟେ ଶଙ୍କରାୟଚ
ବାସୁଦେବାୟତାରାୟ ସର୍ଗସ୍ଥିତ୍ୟନ୍ତକାରିଣେ ।। (ବି.ପୁ.)

### ସୌର ଡାକିଲେ

ନମଃ ସବିତ୍ରେ ଜଗଦେକଚକ୍ଷୁଷେ ଜଗତ୍‌ପ୍ରସୂତି ସ୍ଥିତିନାଶହେତବେ ।
ତ୍ରୟୀମୟାୟତ୍ରିଗୁଣାତ୍ମ ଧାରିଣେ ବିରଞ୍ଚିନାରାୟଣ ଶଙ୍କରାତ୍ମନେ ।।

### ଗାଣପତ୍ୟ କହିଲେ

''ଆସୀତ୍‌ଗଣପତିସ୍ତ୍ୱେକଃ'' ଶ୍ରୁତି, ଗଣାନାଂ ତ୍ୱା ଗଣପତି ଗ୍ଁ,
ହବାମହେ କବିଃକବୀନାଂ ଉପମସ୍ରବସ୍ତବଂ ।

ଜ୍ୟୋଷ୍ଟରାଜଂ ବ୍ରହ୍ମଣାଂ ବ୍ରହ୍ମଣଃ ସୂତ ଆନ୍ନଃଶ୍ରୁତ୍ୱାନୁତିଭିଃ ଶୀଦସାଦନଂ ।।ଇତି।।

ଏହି ସମୟରେ ହିଁ ତନ୍ତ୍ର ଶାସ୍ତ୍ରର ଆବିର୍ଭାବ । କେତେଜଣ ମନୀଷୀ ସାଧକ କୁଳାର୍ଣ୍ଣବ ତନ୍ତ୍ର ରଚନା କରି ଘୋଷଣା କଲେ :

ଚିନ୍ମୟସ୍ୟା ପ୍ରମେୟସ୍ୟ ନିଷ୍କଳସ୍ୟା ଶରୀରିଣଃ ।
ସାଧକାନାଂ ହିତାର୍ଥାୟ ବ୍ରହ୍ମଣୋରୂପ କଳ୍ପନା ।।

ଇତ୍ୟବସରରେ ସାକାର ଉପାସନା ପ୍ରବଳ ଭାବେ ମସ୍ତକୋତ୍ତୋଳନ କଲା । ସାଧକର ହିତ ଲାଗି ଆର୍ଯ୍ୟମାନେ ଏହି ବ୍ୟବସ୍ଥା କଲେ । ଏହାର କାରଣ ଏହିକି, ସର୍ବସାଧାରଣଙ୍କର ମନ ଅଦୃଶ୍ୟ ବସ୍ତୁର ଅବଧାରଣା କରିପାରେ ନାହିଁ, ବିଶେଷତଃ ନିର୍ଗୁଣ, ନିରଞ୍ଜନ, ଅକ୍ଷୟ, ଅବ୍ୟୟ ଇତ୍ୟାଦି ବିଶେଷଣଦ୍ୱାରା ତାଙ୍କର ମହିମା ବୁଝା ନ ଯିବାରୁ ତାହାଙ୍କଠାରେ ମନ ସଂଲଗ୍ନ ହେବା କଷ୍ଟତର ବ୍ୟାପାର ହୋଇପଡ଼ିଲା । ସାମାନ୍ୟର ମନରେ ଦେଖିବା ପଦାର୍ଥ ଯେପରି ଲାଗିବ ନ ଦେଖିବା ପଦାର୍ଥ ସେପରି ଲାଗିବ ନାହିଁ । ଅତଏବ, ସେମାନଙ୍କ ବୋଧଗମ୍ୟ ହେବାଭଳି ଈଶ୍ୱରଙ୍କ ଚରିତ ସେମାନଙ୍କୁ ବୁଝାଇ ଦେଖାଇ କହିଲେ କ୍ରମଶଃ ଭକ୍ତି ଉଦୟ ହେବ ଭାବି, ସାକାର କଳ୍ପନା କରି ତାହାଙ୍କୁ ଧ୍ୟାନ, ମନନ, ଚିନ୍ତନ କରିବା, ତାହାଙ୍କ ପୂଜା ଆରାଧନାଦିରେ ସେମାନଙ୍କ ଚିତ୍ତାକୃଷ୍ଟ କରିବା ହିଁ ପ୍ରଧାନ ଉଦ୍ଦେଶ୍ୟ ହେଲା । ମନ ସତତ ପରିବର୍ତ୍ତନଶୀଳ ଓ ଚଞ୍ଚଳ, ସେ ନବନବ ଭାବ ଗ୍ରହଣ ପ୍ରୟାସୀ, ଅତଏବ ନିଜ ନିଜ ଭାବାନୁରୂପ ନାନାପ୍ରକାର ମୂର୍ତ୍ତି କଳ୍ପନା କରି ଉପାସକମାନେ ସ୍ୱମତାନୁସାରେ ପୂଜା କରିବାକୁ ଲାଗିଲେ ।

ଏହି ମୂର୍ତ୍ତି ପୂଜା ସମ୍ବନ୍ଧେ ମୁଣ୍ଡମାଳା ତନ୍ତ୍ରରେ କହିଅଛନ୍ତି:

ନିର୍ଗୁଣା ପ୍ରକୃତିଃସତ୍ୟ ମହମେବଚ ନିର୍ଗୁଣଃ
ଯଦୈବ ସଗୁଣାତ୍ୱଂ ହି ସଗୁଣୋଽହଂ ସଦାଶିବଃ ।।
ସତ୍ୟଂ ହି ସଗୁଣା ଦେବୀ ସତ୍ୟଂ ହି ନିର୍ଗୁଣଃ ଶିବଃ ।
ଉପାସକାନାଂ ସିଦ୍ଧ୍ୟର୍ଥଂ ସଗୁଣା ସଗୁଣୋ ମତଃ ।।

ଅର୍ଥାତ୍, ପ୍ରକୃତି ନିର୍ଗୁଣା ଏବଂ ମୁଁ ନିର୍ଗୁଣ, ତୁମ୍ଭେ ସଗୁଣା ହେଲେ ମୁଁ ସଗୁଣ କିନ୍ତୁ ଉପାସକମାନଙ୍କର କାର୍ଯ୍ୟସିଦ୍ଧି ନିମନ୍ତେ ଉଭୟେ ସଗୁଣ ରୂପେ କଳ୍ପିତ ।

ବ୍ୟାସଦେବ ଶ୍ରୀମତ୍ ଭାଗବତରେ ଏହି ବିଗ୍ରହ ପୂଜାର ସୂକ୍ଷ୍ମ ତାତ୍ପର୍ଯ୍ୟ ସଂକ୍ଷିପ୍ତରେ ପ୍ରକାଶ କରିଅଛନ୍ତି:

"ଅର୍ଚ୍ଚଦା ବର୍ଚ୍ଚୟେତାବତ୍ ଈଶ୍ୱରଂମାଂସକର୍ମକୃତ୍
ଯାବନ୍ନବେଦସ୍ୱହୃଦି ସର୍ବଭୂତେଷ୍ୱବସ୍ଥିତଂ ।।

ଅର୍ଥାତ୍, ମୁଁ ନିଜର ଓ ସର୍ବ ହୃଦୟରେ ଅଛି ବୋଲି ନ ଜାଣିବା ଯାଏଁ ଉପାସକ ମତେ ସାକାର ରୂପେ ପୂଜା କରିବ । ଦେହୀ ପ୍ରକୃତ ଜ୍ଞାନ ଲାଭ କଲେ ପ୍ରତିମା ପୂଜାର ଆବଶ୍ୟକ ନାହିଁ । ପ୍ରକୃତ ଜ୍ଞାନ, ସୋଽହଂଜ୍ଞାନ, ଏହା ଦୁର୍ଲଭ ।

''ଅଥମାଂ ସର୍ବ ଭୂତେଷୁ ଭୂତାତ୍ମାନଂ କୃତାଳୟଂ ।
ଅର୍ଚ୍ଚୟେଦ୍ଦାନମାନାଭ୍ୟାଂ ମୈତ୍ର୍ୟା ଭିନ୍ନେନଚକ୍ଷୁଷା'' ।

ଅନନ୍ତର ମୁଁ ସର୍ବଭୂତରେ ଅଛି ବୋଲି ଜାଣିପାରିଲେ ସମସ୍ତଙ୍କୁ ଅଭିନ୍ନ ଦୃଷ୍ଟିରେ ଦେଖି ମିତ୍ର ଜ୍ଞାନରେ ଦାନ, ମାନ କରି ଆତ୍ମ ତୁଲ୍ୟ ଭାବିବ, ଏହାହିଁ ମୋର ପ୍ରକୃତ ପୂଜା ।

ଏହିପରି ଧର୍ମ ସଂଘର୍ଷଣଜନିତ ବୈରାଗ୍ନି ଉଜ୍ଜ୍ୱଳିତ ହୋଇ ଭାରତର ଧର୍ମାକାଶ ଧୂମାକୁଳିତ ହେଲାବେଳେ ଦକ୍ଷିଣାକାଶରେ ଜାଜ୍ୱଲ୍ୟମାନ ଅଗସ୍ତ୍ୟ ପରି ଶଙ୍କର ନାମକ ଆଉ ଜଣେ ଶକ୍ତିସମ୍ପନ୍ନ ମହାତ୍ମା କଙ୍କୋଟି ଗ୍ରାମରେ ଜନ୍ମି ନିଜର ଅତୁଳ ପାଣ୍ଡିତ୍ୟଦ୍ୱାରା ସମସ୍ତ ବୌଦ୍ଧ ସମ୍ପ୍ରଦାୟକୁ ଛିନ୍ନଭିନ୍ନ କରି ଆସେତୁ ହିମାଚଳ ପର୍ଯ୍ୟନ୍ତ ବିଜୟ ଦୁନ୍ଦୁଭି ବଜାଇ ଲୁପ୍ତପ୍ରାୟ ଆର୍ଯ୍ୟଧର୍ମର ପୁନରୁଦ୍ଧାର ଓ ବର୍ଣ୍ଣାଶ୍ରମ ଧର୍ମର ଦୃଢ଼ ପ୍ରତିଷ୍ଠା କରି ଅଦ୍ୱୈତ ସିଦ୍ଧାନ୍ତ ପ୍ରଚାର କରିବାକୁ ଲାଗିଲେ ।

ସୂର୍ଯ୍ୟାଲୋକରେ ଖଦ୍ୟୋତଦ୍ୟୁତି ପରି, ତଦୀୟ ପାଣ୍ଡିତ୍ୟ ସମ୍ମୁଖରେ ପ୍ରାଗୁକ୍ତ ସକଳ ଧର୍ମ ନିଷ୍ପ୍ରଭ ହେଲା; ସେହି ସମୟରେ ବୌଦ୍ଧ ଶ୍ରମଣଗଣ ସୁଦ୍ଧା ତନ୍ତ୍ର ମତାନୁରୂପ ନାନା ଦେବଦେବୀଙ୍କର ପ୍ରକ୍ରିୟା ସୃଷ୍ଟି କରି, ମହାପୁରୁଷ ବୁଦ୍ଧଙ୍କ ଅମୂଲ୍ୟ ଉପଦେଶ ଭୁଲିଯାଇ ବିବିଧ ଅନାର୍ଯ୍ୟ କାର୍ଯ୍ୟରେ ପ୍ରବର୍ତ୍ତିଥିଲେ ।

ଶଙ୍କରଙ୍କର ଯୁକ୍ତିବାଣାବଳି ଏମାନଙ୍କ ଉପରେ ହିଁ ସମଧିକ ପ୍ରହାର ହେଲା । ସେ ବଜ୍ର ଗମ୍ଭୀର ସ୍ୱରରେ ଉଦ୍‌ଘୋଷିତ କଲେ :

ଯୋତ୍ପତ୍ତିଃ ବ୍ରହ୍ମଣଃ କାରଣାତ୍ ତତ୍ରୈବସ୍ଥିତିଃ ପ୍ରଳୟଶ୍ଚେତେଗୃହ୍ୟନ୍ତେ ନ ଯଥୋକ୍ତ ବିଶେଷଣସ୍ୟ ଜଗତୋ ଯଥୋକ୍ତ ବିଶେଷଣମୀଶ୍ୱରଂ ମୁକ୍ତ୍ୱାନ୍ୟତଃ ପ୍ରଧାନାତ୍ ଅଚେତନା ଦଣୁଭ୍ୟୋବା ଆଭାବାଦ୍ଧା ସଂସାରିଣୋ ବା ଉତ୍ପତ୍ତ୍ୟାଦି ସମ୍ଭାବୟିତୁଂ ଶକ୍ୟଂ । (ଶାରୀରିକ ଭାଷ୍ୟ) ଅର୍ଥାତ୍ ବ୍ରହ୍ମଙ୍କଠାରୁ ହିଁ ଜଗତ ଉତ୍ପତ୍ତି, ବ୍ରହ୍ମେହିଁ ଏହାର ସ୍ଥିତି ଓ ଲୟ; ଏତଦ୍‌ବ୍ୟତୀତ ଶୂନ୍ୟ ବା ଅଭାବରୁ, ଜଡ଼ ପ୍ରକୃତିରୁ ବା ପରମାଣୁରୁ ଅଥବା ଜନ୍ମ ମୃତ୍ୟୁ ଅଧୀନ ସଂସାରୀ ଜୀବଠାରୁ ଏହି ରୂପ ଜଗତର ଏହି ପ୍ରକାରେ ସୃଷ୍ଟି. ସ୍ଥିତି, ଲୟ ହେବା ଅସମ୍ଭାବିତ, ଇତ୍ୟାଦି ଯୁକ୍ତିରେ ସେ ବିଭିନ୍ନ ମତ ଖଣ୍ଡନ କରି ଗୋଟିଏ ସୁବିଶୁଦ୍ଧ, ବେଦାନ୍ତ ମତ ପ୍ରଚାର କଲେ; ଯଥା :

''ଅସ୍ୟଯସ୍ମଜତେ ବିଶ୍ୱଂ ତଦନ୍ୟଥୟିତୁଂ ପୁମାନ୍ ।
ନକୋଽପିଶକ୍ତସ୍ତେନାୟଂ ସର୍ବେଶ୍ୱର ଇତିଶ୍ରୁତଃ ।।
ଅଶେଷ ପ୍ରାଣି ବୁଦ୍ଧୀନାଂ ବାସନା ସ୍ତତ୍ର ସଂସ୍ଥିତାଃ।

ତାଭିଃ କ୍ରୋଡ଼ୀକୃତଂ ସର୍ବଂ ତେନ ସର୍ବଜ୍ଞ ଈଶ୍ୱରଃ ।।
ବିଜ୍ଞାନମୟ ମୁଖ୍ୟେଷୁ କୋଷେଷ୍ୱନ୍ୟତ୍ର ଚୈବହି ।
ଅନ୍ତସ୍ତିଷ୍ଠନ୍ ଯମଇତି ତେନାନ୍ତର୍ଯାମିତାଂ ବ୍ରଜେତ୍ ।।
ବୁଦ୍ଧୌତିଷ୍ଠନ୍ନାନ୍ତରୋଽସ୍ୟାଧିୟାନୀକ୍ଷଶ୍ଚଧୀବପୁଃ ।
ଚିୟମନ୍ତର୍ଯମୟତୀତ୍ୟେବଂ ବେଦେନ ଘୋଷିତଂ ।।(ପଞ୍ଚଦଶୀ)

ଈଶ୍ୱର ଯାହାକିଛି ସୃଷ୍ଟି କରିଛନ୍ତି ତାହା ଅନ୍ୟଥା କରିବାକୁ କାହାରି ସାମର୍ଥ୍ୟ ନାହିଁ । ଅତଏବ ତାହାଙ୍କୁ ସର୍ବେଶ୍ୱର ବୋଲି ସକଳ ପ୍ରାଣୀର ବୁଦ୍ଧି ବାସନା ସେହି ଈଶ୍ୱରଙ୍କଠାରେ ଅବସ୍ଥିତ, ବୁଦ୍ଧି ଓ ବାସନାରେ ଏହି ବ୍ରହ୍ମାଣ୍ଡ ବ୍ୟାପ୍ତ ଅଛି, ଅତଏବ ବୁଦ୍ଧି, ବାସନା ଈଶ୍ୱରାଧୀନ ସୁତରାଂ ଈଶ୍ୱରଙ୍କୁ ସର୍ବଜ୍ଞ ବୋଲି କୁହାଯାଏ ।

ସେ ବିଜ୍ଞାନମୟ ପ୍ରଭୃତି କୋଷ ଓ ଅନ୍ୟାନ୍ୟ ବସ୍ତୁସମୂହର ଅନ୍ତରରେ ଅବସ୍ଥିତ କରି ସେମାନଙ୍କୁ ଯଥା ନିୟମରେ ନିଯୁକ୍ତ କରନ୍ତି । ଅତଏବ ତାହାଙ୍କୁ ହିଁ ଅନ୍ତର୍ଯ୍ୟାମୀ କୁହାଯାଏ । ଯେ ବୁଦ୍ଧିରେ ଅବସ୍ଥିତ କଲେ ମଧ୍ୟ ବୁଦ୍ଧିରୁ ଅନ୍ତର ହୁଅନ୍ତି, ଧୀମୟ ହେଲେ ମଧ୍ୟ ବୁଦ୍ଧିର ବିଷୟ ନୁହନ୍ତି । ସୁତରାଂ ସେ ବୁଦ୍ଧିର ଅନ୍ତରସ୍ଥ ହୋଇ ବୁଦ୍ଧିକୁ ନିଯୁକ୍ତ କରନ୍ତି ।

''ନାର୍ଥଃପୁରୁଷକାରେଣେ ଦ୍ୱେବ ମାଶଙ୍କ୍ୟତାଂଯତଃ ।
ଈଶଃ ପୁରୁଷକାରସ୍ୟ ରୂପେଣାପି ବିବର୍ତ୍ତତେ'' ।।

ଅର୍ଥାତ୍, ପୁରୁଷର କୃତ ସାଧ୍ୟ କିଛି ନାହିଁ ଏହିପରି ଆଶଙ୍କା କରିବା ବିହିତ ନୁହେଁ, ଯେହେତୁ ଈଶ୍ୱର ହିଁ ପୁରୁଷ ରୂପେ ପରିଣତ ହୁଅନ୍ତି ।

''ରାତ୍ରି ଘସ୍ରୌ ସୁପ୍ତିବୋଧା ବୁନ୍ମୀଳନ ନିମୀଳନେ ।
ତୂଷ୍ଣୀଭାବମନୋରାଜ୍ୟେ ଇବସୃଷ୍ଟି ଲୟାବିମୌ ।।

ଅର୍ଥାତ୍- ଦିବା ଓ ରାତ୍ରି, ଜାଗ୍ରତ ଓ ସୁଷୁପ୍ତି, ଚକ୍ଷୁର ଉନ୍ମୀଳନ ଓ ନିମୀଳନ, ତୂଷ୍ଣୀଭାବ ମନୋରାଜ୍ୟରେ ସୃଷ୍ଟି ଲୟ ଜନ୍ମିଲାପରି ଜଗତର ପ୍ରଳୟ ଓ ଉତ୍ପତ୍ତି ସ୍ୱରୂପ ତିରୋଭାବ ଓ ଆବିର୍ଭାବ ଈଶ୍ୱରଙ୍କଠାରୁ ଜାତ ହୁଏ ।

ମାୟୀ ସୃଜତି ବିଶ୍ୱଂ ସନ୍ନିରୁଦ୍ଧଃ ତତ୍ରମାୟୟା
ଅନ୍ୟଇତ୍ୟପରାବୃତ୍ତେ ଶ୍ରୁତିଃତେନେଶ୍ୱରଃ ସୃଜେତ୍ ।
ଆନନ୍ଦମୟ ଇଶୋଽୟଂ ବହୁସ୍ୟାମିତ୍ୟ ବୈକ୍ଷତ
ହିରଣ୍ୟଗର୍ଭୋ ରୂପୋଽଭୂତ୍ ସୁପ୍ତିଃସ୍ୱପ୍ନୋ ଯଥା ଭବେତ୍ ।।

ମାୟାବୀ ଈଶ୍ୱର ନିଜ ମାୟାରେ ବଦ୍ଧ ହୋଇ ଏହି ସମସ୍ତ ବିଶ୍ୱ ସର୍ଜନା କରିଅଛନ୍ତି । ସେ ପରଂବ୍ରହ୍ମରୁ ଭିନ୍ନ ବୋଲି ଶ୍ରୁତିରେ ଉକ୍ତ ହୋଇଅଛି; ସୁଷୁପ୍ତି ଯେପରି ଅବସ୍ଥା ଭେଦରେ

ସ୍ୱପ୍ନରେ ପରିଣତ ହୁଏ, ସେହିପରି ସେ ହିରଣ୍ୟଗର୍ଭ ରୂପରେ ସମସ୍ତ ଶରୀରରେ ପ୍ରବେଶ କରିଛନ୍ତି ।

"ଅଦ୍ୱିତୀୟ ବ୍ରହ୍ମତତ୍ତ୍ୱେ ସ୍ୱପ୍ନୋଽୟ ମଖିଳଂଜଗତ୍
ଜୀବାଦି ରୂପେଣ ଚେତନା ଚେତନାତ୍ମକଂ
ଆନନ୍ଦମୟ ବିଜ୍ଞାନମୟୌ ଈଶ୍ୱରଜୀବ-କୌ
ମାୟୟା କଳ୍ପିତାବେତୌ ତାଭ୍ୟାଂସର୍ବଂ ପ୍ରକଳ୍ପିତଂ ।"

ଅଦ୍ୱିତୀୟ ବ୍ରହ୍ମତତ୍ତ୍ୱରେ ସ୍ୱପ୍ନପରି ଏହି ଅଖିଳ ଜଗତରେ ଈଶ୍ୱର ଜୀବ ରୂପରେ ବିରାଜିତ । ଚେତନ ଅଚେତନାତ୍ମକ, ଆନନ୍ଦମୟ ଈଶ୍ୱର, ବିଜ୍ଞାନମୟ ଜୀବ ମାୟାଦ୍ୱାରା ଉପକଳ୍ପିତ; ଏହି ଉଭୟରୁ ହିଁ ଏହି ସମୁଦାୟ ଜଗତ ପରିକଳ୍ପିତ ହୋଇଅଛି ।

ଈକ୍ଷଣାଦପ୍ରବେଶାନ୍ତା ସୃଷ୍ଟି ରୀଶେନକଳ୍ପିତା
ଜାଗ୍ରତାଦିବିମୋକ୍ଷାନ୍ତଃ ସଂସାରୀ ଜୀବକଳ୍ପିତଃ ।।

ସୃଷ୍ଟି ବିଷୟକ ସଂକଳ୍ପରୁ ସକଳ ବସ୍ତୁରେ ପ୍ରବେଶ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ଈଶ୍ୱରଙ୍କର ଏବଂ ଜାଗ୍ରତ ଅବସ୍ଥାଦିରୁ ମୋକ୍ଷ ପର୍ଯ୍ୟନ୍ତ ସକଳ ବ୍ୟାପାର ଜୀବକଳ୍ପିତ । ଏହିପରି ଶଙ୍କରାବତାର ଶଙ୍କରାଚାର୍ଯ୍ୟ ଦୁରାରୋହ ହିମାଳୟର ପବିତ୍ର ସୁରମ୍ୟ ଯୋଷୀ ମଠରେ 'ବ୍ରହ୍ମସୂତ୍ରର' ଭାଷ୍ୟ ଲେଖି ନ୍ୟାୟପୂର୍ଣ୍ଣ ଯୁକ୍ତିଦ୍ୱାରା ନାସ୍ତିକଗଣଙ୍କର ସଂକୀର୍ଣ୍ଣ ମତବାଦଗୁଡ଼ିକୁ, ଛିନ୍ନଭିନ୍ନ କରିଥିଲେ ।

ସେ ସ୍ୱଳ୍ପ ବୟଃକ୍ରମରେ ବେଦାନ୍ତ ପ୍ରଭୃତିର ଏତେ ଭାଷ୍ୟ ଲେଖି ଯାଇଛନ୍ତି ଯେ, ତାହା ସମ୍ୟକ୍ ରୂପେ ବୋଧ କରିବା ପାଣ୍ଡିତ୍ୟ ଅଧୁନାତନ ଯୁଗରେ ଦୁର୍ଲଭ କହିଲେ ଚଳେ; ଅଦ୍ୟାପି ଭାରତର ପ୍ରଧାନ ତୀର୍ଥମାନଙ୍କରେ ତଦୀୟ ଭୋଗବର୍ଦ୍ଧନାଦି ପୀଠ ଆଚାର୍ଯ୍ୟଙ୍କର ମହାପ୍ରତିଷ୍ଠାର ଜ୍ୱଳନ୍ତ ସାକ୍ଷ୍ୟ ଦେଉଅଛି ।

ପ୍ରାତଃସ୍ମରଣୀୟ ଶଙ୍କରାଚାର୍ଯ୍ୟଙ୍କର କେତେକାଳ ପରେ ଦ୍ରାବିଡ଼ ଦେଶରେ ପରମଭାଗବତ ଶ୍ରୀରାମାନୁଜ ଆଚାର୍ଯ୍ୟ ଜନ୍ମି ଅଦ୍ୱୈତ ସିଦ୍ଧାନ୍ତ ବିରୋଧରେ ସ୍ୱୀୟ ଅଲୌକିକୀ ପ୍ରତିଭା ପ୍ରକର୍ଷରୁ ବିଶିଷ୍ଟାଦ୍ୱୈତ ସିଦ୍ଧାନ୍ତ ସ୍ୱରୂପ ଶ୍ରୀଭାଷ୍ୟ ରଚନା କରି ଅନେକ ଲୋକଙ୍କୁ ନିଜ ମତରେ ଦୀକ୍ଷିତ କରାଇଲେ; ଅଦ୍ୟାପି ଶ୍ରୀମତର ପ୍ରତିଷ୍ଠା ଅତି ଉଚ୍ଚରେ ବିଦ୍ୟମାନ ।

ଏହାଙ୍କ ପରେ ମାଧ୍ୱାଚାର୍ଯ୍ୟ ନାମକ ଦିଗ୍‌ଗଜ ପଣ୍ଡିତ ପୂର୍ବୋକ୍ତ ସିଦ୍ଧାନ୍ତ ଦ୍ୱୟର ପ୍ରତିଦ୍ୱନ୍ଦ୍ୱୀ ହୋଇ ଦ୍ୱୈତ ଭାଷ୍ୟ ରଚନା କଲେ । କାଳକ୍ରମେ ନୀଳକଣ୍ଠାଚାର୍ଯ୍ୟ ଓ ବଲ୍ଲଭାଚାର୍ଯ୍ୟ ଦ୍ୱୟ ଜନ୍ମଗ୍ରହଣ କରି ସ୍ୱସ୍ୱ ମତ ସ୍ଥାପନ କଲେ ।

ଏହି ସମୟରେ ଭାରତର ଦୁରବସ୍ଥା ଅକଥନୀୟ । ଘୋର ବିପ୍ଳବର ସନ୍ଧିସମୟ, ଭାରତ ସିଂହାସନ ବିଧର୍ମୀ ମୁସଲମାନ ଶକ୍ତ୍ୟାକ୍ରାନ୍ତ; ନିଷ୍ଠୁର ପ୍ରକୃତି ଦୁର୍ବିନୀତ ନୃଶଂସ ମୁସଲମାନ କୋରାନ୍ ଓ ଖଡ୍ଗଦ୍ୱାରା ଭାରତବର୍ଷର ଚତୁର୍ଦ୍ଦିଗରେ ଗୋଟିଏ ବିରାଟ ହାହାକାର ସୃଷ୍ଟି କରିଦେଲା । ଅନେକ ହିନ୍ଦୁ ଇସ୍‌ଲାମ ଧର୍ମରେ ଦୀକ୍ଷିତ ହେଲେ । ଆର୍ଯ୍ୟଦେବାଳୟର ଅଦ୍ଭୁତ ଶିଳ୍ପକଳା ଭୂପାତ୍ ହେଲା । ଉକ୍ତ ଦେବାଳୟସ୍ଥ ଅମୂଲ୍ୟ ରତ୍ନ ସକଳ ଲୁଣ୍ଠିତ ହେଲା; ଶାସ୍ତ୍ର ସକଳ ଦଗ୍ଧ ହେଲା; ଏବଂ ସେହି ଦେବସ୍ଥାନ ପରିବର୍ତ୍ତେ ସେହି ସ୍ଥଳେ, ସେହି ଧନେ ମୁସଲମାନଙ୍କର ମସ୍‌ଜିଦ୍ ମସ୍ତକ ଟେକିଲା ।

ସେହି ସମୟରେ ରାମକୃଷ୍ଣ ପରମହଂସ ନାମକ ଜଣେ ଶାକ୍ତ ଭକ୍ତ ପ୍ରଚାର କଲେ କି :

ସଚ୍ଚିଦାନନ୍ଦ ବ୍ରହ୍ମରୂପୀ । ସେ ଏକ, ସେ ଅନନ୍ତ,ସେ ବିଶ୍ୱବ୍ୟାପୀ । ଯେ ବିଶ୍ୱରୂପୀ ଭଗବାନଙ୍କୁ ଜାଣିନାହିଁ, ଯେ ତାହାଙ୍କୁ ଦେଖି ନାହିଁ, ଯେ ତାହାଙ୍କ କର୍ମ ବୁଝି ନାହିଁ, ସେ ମାତ୍ର ସାକାର ନିରାକାରକୁ ନେଇ ତର୍କ କରେ । ଭକ୍ତଙ୍କ ମତାନୁରୂପ ସେ ସାକାର ସେ ନିରାକାର । ଯାହାକୁ ଯେ ଭାବ, ଯେ ନାମ, ଯେ ରୂପ ଭଲ ବୋଧହେବ ସେ ସେହି ଭାବ, ସେହି ରୂପ, ସେହି ନାମରେ ସ୍ତବ କଲେ ଭକ୍ତବତ୍ସଳ ଭଗବାନ ତାହାର ସଂକଳ୍ପ ପୂର୍ଣ୍ଣ କରିବେ ।

ମହତ୍ତ୍ୱ ଦୂର କଲେ ଈଶ୍ୱରଦର୍ଶନ ମିଳେ । ରାମକୃଷ୍ଣ ପରମହଂସଙ୍କ ପରିଚୟ ଆଉ ଅଧିକ ଦେବା ଅନାବଶ୍ୟକ । ତଦୀୟ ଶିଷ୍ୟ ବିବେକାନନ୍ଦ ଆମେରିକା ଯାଇ ଚିକାଗୋ ଧର୍ମ ସମ୍ମିଳନୀରେ ଆର୍ଯ୍ୟଧର୍ମ ମହାତ୍ମ୍ୟର ଅଦ୍ଭୁତ ଧ୍ୱଜା ଉଡ଼ାଇଥିବା ଅଳ୍ପଦିନର ଘଟଣା । ଅଦ୍ୟାପି ରାମକୃଷ୍ଣ ସମ୍ପ୍ରଦାୟର 'ଲୋକ ସେବା' ଉଲ୍ଲେଖଯୋଗ୍ୟ ଏବଂ ସ୍ୱାମୀ ବିବେକାନନ୍ଦଙ୍କର ଚିକାଗୋ ବକ୍ତୃତା ଅବଶ୍ୟ ଶ୍ରୋତବ୍ୟ ।

ଏହି ବିଭ୍ରାଟ ସମୟରେ ଦୟାନନ୍ଦ ସରସ୍ୱତୀ ନାମକ ଜନୈକ ମନସ୍ୱୀ ସନ୍ନ୍ୟାସୀ ବୈଦିକ ମନ୍ତ୍ରର ବିଲକ୍ଷଣ ଅର୍ଥ ପ୍ରଚାର କରି ସତ୍ୟାର୍ଥ ପ୍ରକାଶିକା ନାମକ ଗୋଟିଏ ଯୁକ୍ତିପୂର୍ଣ୍ଣ ଗ୍ରନ୍ଥ ଲେଖି ଜାତିଭେଦ ଓ ଆର୍ଯ୍ୟ କର୍ମକାଣ୍ଡର ଘୋର ବିରୋଧୀ ହୋଇ ଆର୍ଯ୍ୟ ସମାଜ ନାମରେ ଗୋଟିଏ ବିପୁଳ ସମ୍ପ୍ରଦାୟର ସୃଷ୍ଟି କଲେ । ଏହାର ବିସ୍ତୃତ ବିବରଣ ନବ୍ୟସମ୍ପ୍ରଦାୟ ତରଙ୍ଗରେ ଦ୍ରଷ୍ଟବ୍ୟ । ଏହି ସମ୍ପ୍ରଦାୟର ନିୟମଗୁଡ଼ିକ ପବିତ୍ର ଓ ଶ୍ରେୟସ୍କର। ଏମାନେ ପ୍ରାଚୀନ ବେଦର ପ୍ରକୃତ ଭାବ, ପ୍ରକୃତ ନିୟମ ବିନା ଅନ୍ୟ ପୌରାଣିକାଦି ମାନନ୍ତି ନାହିଁ । ଏମାନଙ୍କର ପ୍ରକାଣ୍ଡ ଆଶ୍ରମ ହରଦ୍ୱାରରେ ବିଦ୍ୟମାନ ।

ପୂର୍ବୋକ୍ତ ଆର୍ଯ୍ୟ ସମାଜ ଓ ବ୍ରାହ୍ମ ସମାଜ ଆଧୁନିକ ଶିକ୍ଷିତ ଶ୍ରେଣୀର ଆଦରର ବସ୍ତୁ । ଏମାନେ କଳ୍ପିତ କୁସଂସ୍କାରରୂପ ଆବର୍ଜନା ସ୍ତୂପକୁ ସମୂଳୋତ୍ପାଟନ କରିବା ଲାଗି ସର୍ବଦା ବଦ୍ଧପରିକର । ପ୍ରକୃତରେ କହିବାକୁ ଗଲେ ଯଦ୍ୟପି ଏହି ଆପାତ ମନୋରମ ପାଶ୍ଚାତ୍ୟ ରୀତି, ନୀତି, ପ୍ରଲୋଭନପୂର୍ଣ୍ଣ ଅନୁକରଣ-ଲୋଲୁପ ଯୁଗରେ ପୂର୍ବ ଶଂସିତ ସମ୍ପ୍ରଦାୟଦ୍ୱୟ

ଭୀମବେଗରେ ପ୍ରବର୍ଦ୍ଧନଶୀଳ ଧର୍ମାନ୍ତର ପ୍ରବାହର ଗତିରୋଧ କରି ନଥା'ନ୍ତେ, ତେବେ ବିଶାଳ ଭାରତଭୂମି ଉତ୍ତୁଙ୍ଗ ଚର୍ଚ୍ଚ ଓ ପ୍ରକାଣ୍ଡ ମସ୍‌ଜିଦ୍‌ରେ ପରିପୂର୍ଣ୍ଣ ହୁଅନ୍ତାଣି ।

ଏହିପରି ଆମ୍ଭ ଉତ୍କଳରେ ମଧ୍ୟ ଅଚ୍ୟୁତ, ଜଗନ୍ନାଥ ପ୍ରଭୃତି ପଞ୍ଚସଖା ଜନ୍ମି ସର୍ବଧର୍ମ ସମନ୍ୱୟ ପୂର୍ବକ ମାତୃଭାଷାରେ ଅନେକ ଅଧ୍ୟାତ୍ମ ରହସ୍ୟପୂର୍ଣ୍ଣ ଅମୂଲ୍ୟ ଗ୍ରନ୍ଥ ଲେଖି ଧର୍ମରାଜ୍ୟରେ ଗୋଟିଏ ଯୁଗାନ୍ତର ଆନୟନ କରିଥିଲେ । ତଦୀୟ ଜୀବନ୍ତ ଅନୁକରଣରେ ମହିମା ଗୋସାଇଁ ଅଲେଖ ସମ୍ପ୍ରଦାୟ ସୃଷ୍ଟି କଲେ । ଆଜି ତାହା କୁମ୍ଭୀପଟିଆ ଆଖ୍ୟାରେ ସମଗ୍ର ଉତ୍କଳରେ ପରିଚିତ ।

ଆଶ୍ଚର୍ଯ୍ୟର ବ୍ୟାପାର, ଭାରତୀୟ ଆଚାର୍ଯ୍ୟମାନଙ୍କ ପ୍ରଭାବ ତେଣେ ଥାଉ, ସୁଦୂର ପଶ୍ଚିମ ପ୍ରାନ୍ତରୁ ପୁରାଣ ଯୁଗର ମହୀୟସୀ ଗାର୍ଗୀ, ଗୌତମୀଙ୍କ ଭୂମିକା ଧାରଣ କରି ଭାରତ ରଙ୍ଗମଞ୍ଚରେ 'ଆନିବେଶାନ୍ତ' ନାମ୍ନୀ ଜନୈକା ଶ୍ୱେତାଙ୍ଗିନୀ ସୁଦ୍ଧା ବେଦାନ୍ତ ରହସ୍ୟ ଅଭିନୟରେ ଅନେକ ଆଧୁନିକ ଶିକ୍ଷିତ ମଣ୍ଡଳିଙ୍କୁ ଚମତ୍କୃତ ଓ ବଶୀଭୂତ କରି ଅଭିନବ 'ଥିୟୋସଫୀ' ସମ୍ପ୍ରଦାୟ ସୂତ୍ରରେ ଗ୍ରଥିତ କରିଦେଇଗଲେ । ଜଗତର ମାନ୍ୟଗଣ୍ୟ ସମାଜରେ ସେ ମହାନୁଭବା ଅତୁଳ ଖ୍ୟାତିସମ୍ପନ୍ନା ଓ ସର୍ବଜନବିଦିତା ।

ଭାରତର ଭିତରେ ଓ ବାହାରେ ଏପରି କେତେ ଯେ ଧର୍ମ ଓ ଉପଧର୍ମ ସୃଷ୍ଟି ହୋଇଅଛି, ତାହାର ଇୟତ୍ତା ନାହିଁ ।

ହିମାଳୟର କୌଣସି ସୀମାହୀନ ଦୁର୍ଲକ୍ଷ୍ୟ ଗଭୀର ଗହ୍ୱରରୁ ଜାହ୍ନବୀଙ୍କର ପୂତତମ ନବୋଦବିନ୍ଦୁଜାଳ ବିନିସୃତ ହୋଇ ବଙ୍ଗୋପସାଗର ସାଙ୍ଗତ୍ୟ ଲଭିଲା ପର୍ଯ୍ୟନ୍ତ ପଥ ମଧ୍ୟେ ଲକ୍ଷ ଲକ୍ଷ ଶାଖାପ୍ରଶାଖା ପ୍ରବାହ ସମ୍ମିଳନରେ ବିରାଟ ଆକାର ଧାରଣ କରି ଅନନ୍ତସାଗର ସଙ୍ଗମରେ ନିଜର ନାମ ରୂପ ହରାଇଲା ପରି ପ୍ରାଚୀନ ଯୁଗର ଅଦ୍ୱିତୀୟ ବୈଦିକ ଧର୍ମ ବୈଷ୍ଣବ, ସୌର, ଶୈବ, ଶାକ୍ତ ଓ ଗାଣପତ୍ୟ ଭେଦରେ ଯତ୍ ସାମାନ୍ୟ ନାମରୂପକୁ ନେଇ ଅନେକ ଶାଖା ପ୍ରଶାଖାର ସୃଷ୍ଟି କରି ପରିଶେଷରେ ସେହି ଏକ ଅଦ୍ୱିତୀୟ ପରବ୍ରହ୍ମରେ ହିଁ ପର୍ଯ୍ୟବସିତ । କେବଳ ବିଜିଗୀଷାକୁ ନେଇ ଏ ସକଳ କାଣ୍ଡ ।

ଏକଦା ସମସ୍ତ ସିଦ୍ଧାନ୍ତର ଚରମ ସମନ୍ୱୟରେ ମହାତ୍ମା ଶ୍ରୀ ଶଙ୍କର ନିଜର 'ବିବେକ ଚୂଡ଼ାମଣି' ନାମକ ଗ୍ରନ୍ଥରେ କହିଛନ୍ତି, ''ଅସ୍ତିଭାତି ପ୍ରିୟଂରୂପଂ ନାମଚେତ୍ୟଂଶ ପଞ୍ଚକଂ ଆଦ୍ୟତ୍ରୟଂ ବ୍ରହ୍ମରୂପଂ ଜଗତ୍ ରୂପଂ ତତୋଦ୍ୱୟଂ'' ବାସ୍ତବ ନାମ ଓ ରୂପକୁ ନେଇ ଜଗତରେ ଏତେ ଦଳାଦଳି କେବଳ ।

ଉଲ୍ଲିଖିତ ଶତ ଶତ ସମ୍ପ୍ରଦାୟ ମଧ୍ୟରେ କିଏ କେଉଁ ମତର ଅନୁକରଣ କରିଯାଇଅଛି ତାହାର ସିଦ୍ଧାନ୍ତ ଏବଂ କେଉଁ ମତଟି ଭ୍ରାନ୍ତ କେଉଁଟି ବା ଅଭ୍ରାନ୍ତଏ ସକଳର ପରୀକ୍ଷା ସହଜ ବ୍ୟାପାର ନୁହେଁ । ତଥାପି ତାହାର ଶେଷ ବିବରଣ ଗ୍ରନ୍ଥ ମଧ୍ୟରେ ସ୍ଥାନ ବିଶେଷରେ ବିଚାର

କରାଯାଇଅଛି; କିନ୍ତୁ ଦୁର୍ବାର ବୈରଭାବପଙ୍କିଳ କୁଟିଳ କୁତର୍କଗୁଡ଼ିକୁ ଛାଡ଼ିଦେଲେ ଲକ୍ଷ୍ୟ ପ୍ରବେଶ ସମ୍ବନ୍ଧେ ସମସ୍ତଙ୍କର ଯେ ଏକ ନିଃସଂଶୟିତ ମତ ତାହା ଆମ୍ଭେ ବାରମ୍ବାର ପ୍ରକାଶ କରିଅଛୁଁ । ସୁତରାଂ ସର୍ବତ୍ର ସାଧନାସରଣୀ ମାତ୍ର ପୃଥକ୍ ପୃଥକ୍ ।

ତିନେ ମହିମ୍ନ ସ୍ତାବକ ଏ ସମସ୍ତ ପର୍ଯ୍ୟାଲୋଚନା କରି ଥରେ ଭକ୍ତି ଗଦ୍‌ଗଦ କଣ୍ଠରେ ଗାଇ ଯାଇଅଛନ୍ତି :

"ତ୍ରୟୀସାଂଖ୍ୟଯୋଗୋ ପଶୁପତିମତଂ ବୈଷ୍ଣବମିତି
ପ୍ରଭିନ୍ନେ ପ୍ରସ୍ଥାନେ ପରମିଦମଦଃ ପଥ୍ୟ ମିତିଚ ।
ରୁଚୀନାଂ ବୈଚିତ୍ର୍ୟାତ୍ ଋଜୁ କୁଟିଳ ନାନା ପଥଜୁଷାଂ
ନଣାମେକୋଗମ୍ୟଃ ତ୍ୱମସିପୟସାମର୍ଣ୍ଣବଇବ ।"

ଅର୍ଥାତ୍, ତ୍ରୟୀ (ବେଦତ୍ରୟ), ସାଂଖ୍ୟ ଯୋଗ ମତାଦି ଭେଦରେ ବିଭିନ୍ନ ମାର୍ଗରେ ଏହାଠାରୁ ଏ ପଥ୍ୟ, ଏ ତଥ୍ୟ ଇତ୍ୟାଦି ଧରି ଯେଉଁ ବିଷମ ସଂଗ୍ରାମ ଚାଲିଅଛି ତାହା ରୁଚି ବୈଚିତ୍ର୍ୟ କେବଳ । ହେ ଭଗବାନ ! ଯେପରି ଋଜୁ, କୁଟିଳ ନାନାପଥଗାମିନୀ ସ୍ରୋତସ୍ୱିନୀଗଣଙ୍କର ଏକ ମହାର୍ଣ୍ଣବ ହିଁ ଗନ୍ତବ୍ୟ ସ୍ଥଳ ଠିକ୍ ସେହିପରି ଆପଣ ହିଁ ବିପଥଗମନ ବ୍ୟାକୁଳିତ ମାନବର ଏକମାତ୍ର ଗମ୍ୟ ।

ଏହାର ତାତ୍ପର୍ଯ୍ୟ ଏହିକି, ଅଜ୍ଞାନ ତିମିରାନ୍ଧୀଭୂତ, ଲାଞ୍ଛିତ, ଅବହେଳିତ, ବର୍ବର ବନୌକା ଭିଲ୍ଲ କୁଳର ପଶୁବଳିଠାରୁ ଗୋମୟ ଲିପ୍ତ ତୁଳସୀମଞ୍ଚ ତଳେ ମୃତ୍ତିକା-ଚିତ୍ରିତ-ଲଲାଟା ଅଶ୍ରୁପ୍ଲାବିତମୁଖୀ ବିଧବାର ବ୍ରତୋପବାସ ପର୍ଯ୍ୟନ୍ତ ନାନାବିଧ କ୍ଷେତ୍ରରେ ଆର୍ଯ୍ୟଜାତିର ଯେତେଗୁଡ଼ିଏ ଆଧୁନିକ ଶିକ୍ଷିତୋପହାସିତ ଅନୁଷ୍ଠାନ ବା ଆରାଧନା ବିଦ୍ୟମାନ ଏବଂ ମସ୍‌ଜିଦ୍‌ରେ ମୁସଲମାନ ମୌଲାବୀମାନଙ୍କର ନମାଜ, ଚର୍ଚ୍ଚରେ ଖ୍ରୀଷ୍ଟ ଭକ୍ତଙ୍କର ଦଳବଦ୍ଧ ପ୍ରାର୍ଥନା, ସୌଦ୍ଧୋଦନି ପ୍ରତିଷ୍ଠିତ ବିଶାଳ ସୌଧରେ ବୌଦ୍ଧ ଶ୍ରମଣଙ୍କର ନିର୍ବାଣ ବିଚାର, ଉପାସନା ମନ୍ଦିରରେ ବ୍ରହ୍ମନିଷ୍ଠ ବ୍ରାହ୍ମମାନଙ୍କର ଏକନିଷ୍ଠ ବ୍ରହ୍ମୋପାସନା ଓ ଚିରପ୍ରତିଷ୍ଠିତ ବିଶ୍ୱନାଥ ମନ୍ଦିରରେ ବ୍ରାହ୍ମଣ ମୁଖନିସୃତ ବେଦଧ୍ୱନି ଏ ସମସ୍ତଙ୍କର ଲକ୍ଷ୍ୟ, ଗମ୍ୟ ବା କାମ୍ୟ ଏକ ।

ଭଗବାନ ଶ୍ରୀକୃଷ୍ଣ ସୁଦ୍ଧା ପ୍ରକାରାନ୍ତରେ କହିଛନ୍ତି, 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ' । ଯେ ମତେ ଯେଉଁ ରୂପେ ଭାବନା କରେ ତାକୁ ମୁଁ ସେହି ରୂପେ ଫଳ ପ୍ରଦାନ କରେ । (ଗୀତା)

ପୂର୍ବାଚାର୍ଯ୍ୟଗଣ ଦକ୍ଷତା ସହକାରେ ଲକ୍ଷ୍ୟ ବସ୍ତୁ ବୁଝାଇବାକୁ ଯାଇ ସ୍ୱପକ୍ଷୋତ୍କର୍ଷ ଓ ପରପକ୍ଷ ନିରାକରଣ ପୂର୍ବକ ନିଜ ନିଜ ଶାସ୍ତ୍ରସମୂହରେ ଯେଉଁ ଲକ୍ଷ ଲକ୍ଷ ଅନୈକ୍ୟ ବ୍ୟାଖ୍ୟାନମାନ ପ୍ରଣୟନ କରି ଯାଇଅଛନ୍ତି ଅସ୍ମଦାଦି କ୍ଷୁଦ୍ର ଜୀବର ବିସ୍ମୟାବହ । ସେ ସକଳ ତାତ୍ପର୍ଯ୍ୟ ବିଶ୍ଳେଷଣ ଭୂୟୋଦର୍ଶୀତାର ପରିଚାୟକ ।

ବକ୍ଷ୍ୟମାଣ ଗ୍ରନ୍ଥରେ ବିଚାର ସମନ୍ୱୟ ସ୍ଥଳେ ତାହା କିପରି ବୁଝାଇ ପାରିବି ଏହି ଆଶଙ୍କା ହିଁ ବାରମ୍ବାର ମୋ ହୃଦୟକୁ ଆଲୋଡ଼ିତ କରିଦେଉଅଛି । ଏହା କିଛି କାବ୍ୟ ବା ନାଟକ ନୁହେଁ ଯେ, ପ୍ରିୟ ପାଠକପାଠିକାଙ୍କୁ ନାୟକ ଓ ନାୟିକାର ମିଳନ ମହୋତ୍ସବର ପୂର୍ବରଙ୍ଗ ବର୍ଣ୍ଣନ କରି ପ୍ରମୁଗ୍ଧ କରିବି କିମ୍ବା ଉପନ୍ୟାସ ଗ୍ରନ୍ଥ ନୁହେଁ ଯେ ଚମତ୍କାର ସନ୍ନିଧାନପୂର୍ଣ୍ଣ ବା ବିଷୟ ଗ୍ରଥନ ମନୋମୁଗ୍ଧକର ପ୍ରାକୃତିକ କଥାସ୍ରୋତରେ ଭସାଇ ପାରିବି କିମ୍ବା ରସାଇ ପାରିବି ! ଦାର୍ଶନିକ ଶୁଷ୍କ କୂଟ ତର୍କସଂକୁଳ ଜଟିଳତର ଆଧ୍ୟାତ୍ମିକ ବିଷୟର ସମନ୍ୱୟ ବ୍ୟାପାରରେ ଲେଖକର କଥା ଛାଡ଼, ପାଠକ ସୁଦ୍ଧା ପ୍ରତ୍ୟେକ ପଦ ବିକ୍ଷେପରେ ପ୍ରଣିଧାନପୂର୍ବକ ଅନୁଗମନ ବା ଅନୁଶୀଳନ କରିବାକୁ ହେବ ।

ଉପସଂହାର ସ୍ଥଳେ ମୋର ବକ୍ତବ୍ୟ ଏହିକି, ଦୁର୍ବଳ ହୃଦୟ, ଏବଂ ବର୍ବର ଅନୁର୍ବର ମସ୍ତିଷ୍କର ଖିଆଲ ଯୋଗୁଁ ବ୍ୟଗ୍ରତର ହୋଇ ଗୋଷ୍ପଦୀଭୂତ ମତ୍ସଙ୍କଳିତ ଗ୍ରନ୍ଥଟିକୁ 'ପରମାର୍ଥ ପୟୋଧି' ନାମରେ ଆଖ୍ୟାୟିତ କରିଏକାଦିକ୍ରମେ ତନ୍ତ୍ରଙ୍କ ଭେଦରେ ଆର୍ଯ୍ୟ ଜାତିର ପ୍ରାୟ ସକଳ ଧର୍ମଶାସ୍ତ୍ର, ସକଳ ସମ୍ପ୍ରଦାୟ ବିଷୟର ସାର ସୂଚନା ଦେଇ ସ୍ୱଜାତି ସମକ୍ଷରେ ଉପସ୍ଥାପିତ କରିବା ସଂକଳ୍ପ କରିଅଛି । ପରେ ଈଶ୍ୱରେଚ୍ଛା । ଇତି ।

ତ୍ୱୟା ହୃଷୀକେଶ ହୃଦିସ୍ଥିତେନ ଯଥା ନିଯୁକ୍ତୋଽସ୍ମି ତଥା କରୋମି ।



ଯୋଽସା ବାଦିତ୍ୟପୁରୁଷଃ ସୋଽସାବହମଖଣ୍ଡ ଓଁ
ଇତି ଧ୍ୟାୟନ୍ ବିମୁଚ୍ୟେତ ବ୍ରହ୍ମଣୋ ଭବବନ୍ଧନାତ୍ ।

ବକ୍ଷ୍ୟମାଣ ଗ୍ରନ୍ଥାରମ୍ଭର ଲେଖନୀପଥରେ ଗୋଟିଏ ଦୁରାରୋହ ଉତ୍ତୁଙ୍ଗ-ବନ୍ଧୁର-ତୁଷାରଶୃଙ୍ଗତୁଲ୍ୟ ବେଦାଖ୍ୟ ପ୍ରବନ୍ଧ ଦଣ୍ଡାୟମାନ ।

ଯାହାକି ଅକୃତ୍ରିମ, ଉଦାରଭାବାପନ୍ନ, ଆଶ୍ଚର୍ଯ୍ୟ ଶକ୍ତିମାନ୍ ତ୍ୟାଗଶୀଳ ଆର୍ଯ୍ୟଜାତିର କଲ୍ୟାଣ ପରମ୍ପରା ସୁଦୃଢ଼ ଓ ଗୁପ୍ତକୋଷ ସହିତ ଅମୂଲ୍ୟ ପୁରାଣ ଆଧ୍ୟାତ୍ମିକ ସମ୍ପତ୍ତି-କରାଳ କାଳର ନିର୍ମମ ଦଂଶନରେ ସୁଦ୍ଧା ଅକ୍ଷୁଣ୍ଣ ଭାବେ ସୁସଜ୍ଜିତ ଅଖଣ୍ଡ ପ୍ରତିପତ୍ତି-ସଂସୂଚିତ ଭାରତୀୟ ଆଦିମ ସଭ୍ୟତା-ବିଧିବଦ୍ଧ ପଦ୍ଧତି-କବିତା, ପତଞ୍ଜଳ, ବାଦରାୟଣି ଓ ଜୈମିନୀ ପ୍ରଭୃତି ଦାର୍ଶନିକ ମୁକୁଟମଣି ଏବଂ ପୂଜ୍ୟପାଦ ଶଙ୍କର ରାମାନୁଜାଦି ଭାଷ୍ୟବ୍ୟାଖ୍ୟାତା ଆଚାର୍ଯ୍ୟଗଣ କର୍ତ୍ତୃକ ପ୍ରମାଣୀକୃତ ସୂକ୍ତୋକ୍ତି-ବହୁ ମନ୍ୱନ୍ତରାବଧି ପ୍ରତିଷ୍ଠିତ ବିରାଟ ସୁଖ୍ୟାତି-ଅଦ୍ୟାପି କୋଟିକୋଟି ନରନାରୀର ହୃଦୟରେ ଅକାତର ବିତରିତ ଭକ୍ତିପ୍ରୀତି-ଶବ୍ଦ ବ୍ରହ୍ମମୟୀ ସୁବିଶୁଦ୍ଧ ମୂର୍ତ୍ତି-'ପ୍ରସବନଶୀଳା ବିଶ୍ୱପ୍ରକୃତିର ଆଦିମ ନିରଜ ସନ୍ତତି'- ଅଜ୍ଞାନ ତିମିରାନ୍ଧୀଭୂତ ବିଶାଳ ଭାରତରେ ଅନାରାତ ବିକୀର୍ଣ୍ଣିତ ପରଂଜ୍ୟୋତିଃ ''ଗାମାଲଭେତ'' ଓ 'ମହିଁସ୍ୟାତ୍ ସର୍ବଭୂତାନି'' ଋକ୍‌ଦ୍ୱୟରେ ପ୍ରକଟୀକୃତ ତାତ୍ପର୍ଯ୍ୟମୟୀ ପ୍ରବୃତ୍ତି ନିବୃତ୍ତି ଜାଗତିକ ସର୍ବଧର୍ମ ଗ୍ରନ୍ଥୋପରି ଅବାଧ ପ୍ରସାରିତ ଶାଶ୍ୱତୀ କୀର୍ତ୍ତି-ସନାତନ ଆର୍ଯ୍ୟ ଜାତିର ଅଖଣ୍ଡ ଓ ଅବିସମ୍ବାଦିନୀ ପୁଣ୍ୟଶକ୍ତି ସେହି ଶ୍ରୁତି ସଂହତିର ପଂକ୍ତି ପର୍ଯ୍ୟାଲୋଚନା କରି ଅସୀମତାର ସୀମାଙ୍କନ, ବିଶ୍ୱମ୍ଭରାର ଭାର ଓଜନ ଲାଗି ଉଦ୍ୟତ ହେବାପରି ବୈଦିକ ତତ୍ତ୍ୱାଲୋଚନା କରିବା ମଧ୍ୟ ସାହସିକତା ଓ ଧୃର୍ତ୍ତତାର ବିଷୟ । ଏହି ବିରାଟ ବ୍ୟାପାର ଐଶ୍ୱରିକ ଭାବାପନ୍ନ, ସବ୍ୟୁତ୍ପନ୍ନ, ଅନୁଦବିଗ୍ନ, ସମାଧିରସମଗ୍ନ, ମହାପୁରୁଷଗଣର ଜନ୍ମଲଗ୍ନର ପ୍ରଭାବରେ ପ୍ରଭାବାନ୍ୱିତା ପ୍ରତିଭା ପ୍ରତି ହିଁ ନିର୍ଭର କରେ । ଅନୁର୍ବର ମସ୍ତିଷ୍କ ମାଦୃଶ ଅର୍ବାଚୀନର ବ୍ୟଗ୍ରତା ଦୁର୍ବାର ଲାଳସାର ପରିଚାୟକ । ସୁତରାଂ ଏ କ୍ଷେତ୍ରରେଏକମାତ୍ର ଭଗବତ୍‌କୃପା ବିନା ଅନ୍ୟ ଭରସା କ'ଣ ଅଛି !

ସହୃଦୟ ପ୍ରିୟ ପାଠକପାଠିକାଗଣ,

ଏହି ପରିଦୃଶ୍ୟମାନ ବିଶ୍ୱବ୍ରହ୍ମାଣ୍ଡ ମହୀୟସୀ ପ୍ରକୃତିର ପରିଣାମ ବା ବ୍ରହ୍ମଙ୍କର ବିବର୍ତ୍ତ ଯାହା କିଛି କହ, ଏହା ଏକ କାଳରେ ହୋଇଯାଇ ନାହିଁ । ସାଗରରସନା ଉର୍ବୀ, ଗ୍ରହ, ଉପଗ୍ରହ

ସଂକୁଳ ନଭୋମଣ୍ଡଳ, ସଲିଳରାଶି ପ୍ରଭୃତିର ବିସ୍ମୟୋତ୍ପାଦକ ସୃଷ୍ଟି ବହୁ ସମୟସାପେକ୍ଷ । ମାତୃଗର୍ଭସ୍ଥ ଭ୍ରୂଣ କ୍ରମବର୍ଦ୍ଧନଶୀଳ ହୋଇ କୌମାର-ଯୌବନ-ଜରାଦି ବିବିଧ ବେଶରେ ଏବଂ ସୂକ୍ଷ୍ମବୀଜ ଅଙ୍କୁରୋଦ୍‌ଗମ କ୍ରମେ ଫଳପୁଷ୍ପପୂର୍ଣ୍ଣ ଶାଖାପ୍ରଶାଖାନ୍ୱିତ ପ୍ରକାଣ୍ଡ ମହୀରୁହରୂପେ ଦୃଷ୍ଟିଗୋଚର ହୋଇ ପୂର୍ବ ସିଦ୍ଧାନ୍ତକୁ ଦୃଢ଼ୀଭୂତ କରୁଅଛି । ସେହି ପୂର୍ଣ୍ଣାତ୍‌ପୂର୍ଣ୍ଣତର ବିନା ପ୍ରତ୍ୟେକ ବସ୍ତୁର ଚରମ ପରିଣତି ଏତାବନ୍ମାତ୍ର ବୋଲି କିଏ ସାକ୍ଷ୍ୟ ଦେଇପାରିବ ନାହିଁ ।

ପ୍ରସ୍ତାବିତା ତ୍ରୟୀ ସୁଦ୍ଧା ଏହି ଦିନର ସାଧନସମ୍ପତ୍ତି ନୁହେଁ । ଜ୍ଞାନୀଗଣର ବହୁକାଳର ବିମଳ ସାଧନା ପ୍ରଭାବରେ ବିଜୁଳି ଆକାର ଧାରଣ କରିଥିବା ସ୍ୱାଭାବିକ ଏବଂ ଦର୍ଶନାକୃଷ୍ଟମାନସା, ଇତିହାସ, ହାସ୍ୟମୟୀ, ସ୍ମୃତିସଙ୍ଗିନୀସଙ୍ଗତା ଓ ପୁରାଣଭୂଷଣଭୂଷିତା, ପ୍ରୌଢ଼ାଶ୍ରୁତି ସୀମନ୍ତିନୀ ବୃଦ୍ଧା ବ୍ରାହ୍ମକ୍ରୀଡ଼ାବଶତଃ ଜ୍ଞାନ ଓ କର୍ମରୂପ ସନ୍ତାନଦ୍ୱୟ ଏବଂ ଭକ୍ତିନାମ୍ନୀ କନ୍ୟାଟିଏ ପ୍ରସବ କରି ମାତୃତ୍ୱର ଅତୁଳ ପୁଣ୍ୟୋଜ୍ଜ୍ୱଳ ବେଶରେ ଚିତ୍ତାକର୍ଷିଣୀ ହୋଇଅଛି । ତଦୀୟ ସୁପେୟ ବକ୍ଷୋଽମୃତଧାରା ଅନନ୍ତମୁଖେ ପ୍ରବାହିତା ସେହି ସର୍ବାଙ୍ଗ କଲ୍ୟାଣମୟୀ ଶ୍ରୁତିଜନନୀର ବ୍ୟଥାହାରିଣୀ ସତ୍‌କଥା କଦାପି ଅନ୍ୟଥାଯୋଗ୍ୟ ନୁହେଁ । ଅତଏବ ସଂକ୍ଷିପ୍ତରେ ତାହାର ପରିଚୟ ଦେବା ସର୍ବାଦୌ ପ୍ରଧାନ କର୍ତ୍ତବ୍ୟ ।

ଏହି ବେଦଗ୍ରନ୍ଥ ଅର୍ଥାତ୍ ଜ୍ଞାନଗ୍ରନ୍ଥର ପୁଙ୍ଖାନୁପୁଙ୍ଖ ଆଲୋଚନା ଗୋଟିଏ ବିରାଟ ବ୍ୟାପାର । ଭାରତୀୟ ମୁନି-ମନୀଷୀଗଣ ଏହାର ଗୋଟିଏ ଗୋଟିଏ ଋକ୍ ନେଇ ପ୍ରତିଭା ବଳରେ ବିବିଧ ବ୍ୟାଖ୍ୟା କରି ଅସଂଖ୍ୟ ଧର୍ମଗ୍ରନ୍ଥ ଓ ଅନେକ ସମ୍ପ୍ରଦାୟ ସୃଷ୍ଟି କରିଯାଇଅଛନ୍ତି । *

## ବେଦୋତ୍ପତ୍ତିର ସମୟ ନିର୍ଦ୍ଧାରଣ

ବେଦୋତ୍ପତ୍ତିର କାଳ ନିର୍ଣ୍ଣୟ ଲାଗି ପାଶ୍ଚାତ୍ୟ ପଣ୍ଡିତଗଣ ନାନାବିଧ କଳ୍ପନା କରୁଅଛନ୍ତି । ସୁତରାଂ ତାହା ଦୁଃସାଧ୍ୟ ବ୍ୟାପାର । ଯେହେତୁ ଉକ୍ତ ପଣ୍ଡିତଗଣ ଗଭୀର ଅଭିନିବେଶ ନକରି କେବଳ କେତୋଟି ନାମମାତ୍ର ନେଇ ସୁଲଭ ମତ ପ୍ରକାଶ କଲାପରି ବୋଧହୁଏ । ଯଥା- ଐତିରେୟ ବ୍ରାହ୍ମଣରେ ଜନ୍ମେଜୟ ଓ ପରୀକ୍ଷିତଙ୍କର ନାମ ଥିବା ଦେଖି କେତେକ ପଣ୍ଡିତ ମନେକରନ୍ତି ଏହି ଗ୍ରନ୍ଥ ମହାଭାରତ ପରେ ବର୍ଣ୍ଣିତ । ତାହାର ଉତ୍ତରରେ ଆମ୍ଭେ କହିବାକୁ ହେବକି ଋଗ୍ ବେଦରେ ତ ଅଛି, ''ଭୋଜସ୍ୟେଦଂ ପୁଷ୍କରିଣୀ ବେଶ୍ମ ।'' ତେବେ ଭୋଜ ନାମଦ୍ୱାରା ସୁବିଖ୍ୟାତ ଭୋଜରାଜାଙ୍କ ପରେ ଋଗ୍‌ବେଦ ରଚିତ ହେଲା କି ? ଏହିପରି ସ୍ଥୂଳ ଦୃଷ୍ଟିରେ ଗୋଟିଏ ପ୍ରାଚୀନ ଧର୍ମଗ୍ରନ୍ଥର କାଳ ନିର୍ଣ୍ଣୟ କରିବା ପ୍ରୟାସ ବିଡ଼ମ୍ବନା ମାତ୍ର । ତଥାପି ଶାସ୍ତ୍ରମାନଙ୍କୁ ପରସ୍ପର ମିଳାଇ କେତେକ ବିଶିଷ୍ଟ ବ୍ୟକ୍ତି ଯାହା ଅଭିମତ ଦେଇଅଛନ୍ତି, ତନ୍ମଧ୍ୟରୁ କେତୋଟି ଉଦ୍ଧୃତ କଲୁ ।

---

* ଏହିଠାରୁ ମୂଳ ପାଣ୍ଡୁଲିପିର ପୃଷ୍ଠା- ୩ ଓ ପୃଷ୍ଠା- ୪ର ପାଠ ମିଳୁନାହିଁ ।

ବେଦ ଚତୁଃସମୁଦ୍ରର ଅସ୍ତିତ୍ୱ ସୃଷ୍ଟିର ଅତି ପ୍ରାଚୀନତମ କାଳର ପରିଚାୟକ । ଭୂବିଦାରଣ ଆଗ୍ନେୟଗିରିର ଉଦ୍ଭେଦ, ନଦୀପ୍ରବାହର ଉଦ୍ଭବ ପ୍ରଭୃତି ନାନାରୂପ ନୈସର୍ଗିକ ଉତ୍ପାତାଦୀ ଯାହାକୁ ଭୂତତ୍ତ୍ୱବିଦ୍‌ଗଣ Seismic Disturbances କହନ୍ତି, ତତ୍‌ସମୁଦାୟ ଭାରତରେ ଅତି ପ୍ରାଚୀନତମ (Pliocene) ଯୁଗେ ସଭ୍ୟ ଆର୍ଯ୍ୟମାନବର ଅସ୍ତିତ୍ୱର ପରିଚୟ ପ୍ରଦାନ କରେ ।*

"ଅକ୍ଷୋଦୟଚ୍ଛବସା କ୍ଷାମ ବୁଧ୍ନ ବାର୍ଣ୍ଣ ବାତ୍‌ସ୍ତ ବିଷୀଭିରିନ୍ଦ୍ରଃ ।
ଦୃଲ୍‌ହା ନେୟୌଭ୍ରା ଦୁଶମାନ ଓଜୋହବାଭିନତ୍‌କୁଭଃ ପର୍ବତାନାମ୍ ।।"

(ଋ: ୪।୧୯।୪।)

"ହଯଃ ପୃଥିବୀଂ ବ୍ୟଥମାନା ମଦୃନ୍‌ହଦ୍ୟଃ
ପର୍ବତାନ ପ୍ରକୁପିତା ଅରମ୍ଣାତ୍ ।।"

(ଋ: ୨।୧୨।୨।)

*Rigvedic India
"ଧନ୍‌ବନ୍ତସ୍ରୋତଃ କୃଣୁତେ ଗାତୁମୂର୍ମିଂ
ଶୁକ୍ରୈ ଋର୍ମିଭିରଭି ନକ୍ଷତିକ୍ଷାମ ।" (ଋ: ୧/୯୫/୧୦)

ବାବିରୁଷ ଓ ଫିନୀସୀୟର ପୌରାଣିକ କାହାଣୀଠାରୁ ଭାରତୀୟ ସଭ୍ୟତାର ଅତି ପ୍ରାଚୀନତ୍ୱର ଆଭାସ ମିଳେ । କଥିତ ଅଛି ଯେ, ବାବିରୁଷୀୟ ପୁରୋହିତଗଣ ଏକ ସମୟେ ସେମାନଙ୍କ ସଭ୍ୟତାର ପ୍ରାଚୀନତ୍ୱ ସମ୍ବନ୍ଧେ 'ଡିଓ-ଡୋରାସେର' ନିକଟେ ପ୍ରକାଶ କରିଥିଲେ ଯେ, ଆଲେକ୍‌ଜାଣ୍ଡାରଙ୍କ ଅଭିଯାନ କାଳେ ତାହାର ବୟଃକ୍ରମ ୪୭୦୦୦୦ ବତ୍ସର ହୋଇଥିଲା ।

ଫିନୀସୀୟଗଣ ମଧ୍ୟ ଜୁଲିୟାସ ଆଫ୍ରିକାନ୍‌ସକୁ ବୋଲିଥିଲେ ଯେ, ସେମାନେ ପ୍ରାୟ ୩୦୦୦୦ ବତ୍ସର ହେଲା ଏହି ଦେଶକୁ ଆସି ଉପନିବେଶ ସ୍ଥାପନ କରିଥିଲେ ।

ଭାରତର ସପ୍ତସିନ୍ଧୁ ପ୍ରଦେଶାଗତ ଜାତିମାନଙ୍କଦ୍ୱାରା ହିଁ ବାବିରୁଷ୍ ଓ ଫିନୀସୀୟର ଇତିହାସ ପ୍ରସିଦ୍ଧ ପ୍ରାଚୀନ ସଭ୍ୟତା ଗଠିତ ହୋଇଥିଲା । ଆଲେକ୍‌ଜାଣ୍ଡାରଙ୍କ ଅଭିଯାନ କାଳେ ସେହି ସଭ୍ୟତାର ବୟଃକ୍ରମ ୪୭୦୦୦୦ ବତ୍ସର ହୋଇଥିଲା ସୁତରାଂ ଯେଉଁ ଆଦିମ ସଭ୍ୟତାର ଏହା ଅଙ୍ଗ ତାହା କେତେ ପ୍ରାଚୀନ ହୋଇପାରେ ତାହା ସହଜରେ ଅନୁମେୟ ।

"ଇନ୍ଦ୍ରୋ ଅସ୍ମାଂ ଅରଦଦ୍‌ବଜ୍ରବାହୁରପାହନ୍‌ବୃତଂ ପରିଧିଂ ନଦନାମ୍ ।"

(ଋ:୩।୩୩।୬)

"Indra dug out channels of rivers."
'ଗଭୀରଁ ଜ୍ରାତ୍ରେଜମାନାଁ ଅଧାରଯଦ୍ଧୌ କ୍ରନ୍ଦନ୍ନନ୍ତରୀକ୍ଷାଣି କୋପୟତ୍

(ଋ: ୧୦।୪୪।୮)

---

*Rigvedic India

"Indra firmly fixed the plains and
mountains as they shook."

ଯେଉଁ ସୃଷ୍ଟିବିଧ୍ୱଂସୀ ବିଶ୍ୱପ୍ଲାବନର ବିବରଣ ଅଥର୍ବ ବେଦଠାରୁ ଆରମ୍ଭ କରି ପୃଥିବୀର ସକଳ ଜାତିର ପୌରାଣିକ କଥା ଇତିହାସରେ ସ୍ଥାନ ଲାଭ କରିଅଛି ଋଗ୍‌ବେଦରେ ତାହାର କୌଣସି ଉଲ୍ଲେଖ ଦେଖିବାକୁ ମିଳେନାହିଁ । ସୁତରାଂ ଋଗ୍‌ବେଦ ମନ୍ତ୍ରକୁ ପ୍ଲାବନାପେକ୍ଷା ସୁଦ୍ଧା ପ୍ରାଚୀନ ବୋଲି କହିବା ନିତାନ୍ତ ଅସଙ୍ଗତ ନୁହେଁ ।

ବେଦର ସୁସଂଯତ ଭାଷା, ସୁନିବନ୍ଧ ଛନ୍ଦଃ, ସୁନିୟନ୍ତ୍ରିତ ବାକ୍ୟରଚନା ପ୍ରଣାଳୀ ପ୍ରଭୃତି ସନ୍ଦର୍ଶନ ମାତ୍ରେ ପାଶ୍ଚାତ୍ୟ ପଣ୍ଡିତଗଣ ତାହାକୁ ଖ୍ରୀଷ୍ଟପୂର୍ବ ସାର୍ଦ୍ଧଦ୍ୱିସହସ୍ର (୨୫୦୦) ବର୍ଷରର ଅନଧିକ କାଳ ପୂର୍ବେ ରଚିତ ବୋଲି ଅଭିମତ ପ୍ରକାଶ କରିଅଛନ୍ତି ।

ମିଷ୍ଟର ପି.ଟି. ଶ୍ରୀନିବାସ ଆୟାଙ୍ଗାର ଏମ୍.ଏ. ମହାଶୟ ତତ୍‌ପ୍ରଣୀତ "Life in Ancient India" ନାମକ ପୁସ୍ତକର ଭୂମିକାରେ ଲେଖିଅଛନ୍ତି ଯେ, ଭାଷାତତ୍ତ୍ୱ, ମାନବଜାତିତତ୍ତ୍ୱ, ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକଗଣର ଆବିଷ୍କାର ପ୍ରଭୃତିରୁ ବେଦ ରଚନା କାଳକୁ ଖ୍ରୀଷ୍ଟପୂର୍ବ ସପ୍ତଦଶ ଶତାବ୍ଦୀଠାରୁ ଖ୍ରୀଷ୍ଟପୂର୍ବ ଦଶମ ଶତାବ୍ଦୀର ଅନ୍ତର୍ବର୍ତ୍ତୀ ବୋଲି ନିରୂପଣ କରାଯାଇପାରେ । ତାହାଙ୍କ ମତରେ, ବେଦମନ୍ତ୍ରର ଅଧିକାଂଶ ଭାଗ ପ୍ରାୟ ଖ୍ରୀଷ୍ଟପୂର୍ବ ପଞ୍ଚଦଶ ଶତାବ୍ଦୀର ମଧ୍ୟେ ରଚିତ ହୋଇଥିଲା ।

The Orion ନାମକ ପ୍ରବନ୍ଧରେ ସ୍ୱର୍ଗୀୟ ଲୋକମାନ୍ୟ ବାଳଗଙ୍ଗାଧର ତିଳକ ଋଗ୍‌ବେଦର ୧୦,୮୫ ସୂକ୍ତ ସ୍ଥଳେ ଲେଖିଅଛନ୍ତି :-

''ସୂର୍ଯ୍ୟାୟା ବହତୁଃ ପ୍ରାଗାତ୍ ସବିତା ଯମବା ସୃଜତ୍ ।
ଅଘାସୁ ହନ୍ୟନ୍ତେ ଗାବୋହର୍ଜୁନ୍ୟୋଃ ପର୍ଯ୍ୟୁହ୍ୟତେ ।।''

ଏ ଋକ୍‌ଟି ସୂର୍ଯ୍ୟର ମକର ରାଶିରେ ବାସନ୍ତିକ ସଂକ୍ରମଣର ଉଲ୍ଲେଖ ହୋଇଅଛି ବୋଲି ଗଣନାଦ୍ୱାରା ପ୍ରମାଣିତ କରିବା ଚେଷ୍ଟା କରିଥିଲେ ଯେ, ବେଦ ଛ ସହସ୍ର ବର୍ଷରର ଅନଧିକ କାଳ ପୂର୍ବେ ରଚିତ ହୋଇଥିଲା ।

ସ୍ୱର୍ଗୀୟ ରମେଶ ଚନ୍ଦ୍ର ଦତ୍ତ କୃତ ଅନୁବାଦ- ପତିଗୃହେ ଗମନ କାଳେ ସୂର୍ଯ୍ୟ ସୂର୍ଯ୍ୟାଙ୍କୁ ଯେ ଉପଢୌକନ ଦେଇଥିଲେ ତାହା ଅଗ୍ରେ ଅଗ୍ରେ ଚାଲିଲା; ମଘାନକ୍ଷତ୍ରର ଉଦୟ କାଳେ ସେହି ଉପଢୌକନର ଅଦ୍ଭୁତ ଗାଭୀଗୁଡ଼ିକୁ ତଡ଼ି ନେଇଯାଏ । ଅର୍ଜୁନୀ ଅର୍ଥାତ୍ ଫାଲ୍‌ଗୁନୀ ନାମକ ଦୁଇ ନକ୍ଷତ୍ରର ଉଦୟକାଳେ ସେହି ଉପଢୌକନ ବହି ନେଇଗଲେ । କିନ୍ତୁ ବେଦସୂକ୍ତରୁ ଏହା ପ୍ରମାଣିତ ହୁଏ ଯେ, ଅତି ସ୍ମରଣାତୀତ କାଳରୁ ବେଦର ମନ୍ତ୍ରଗୁଡ଼ିକ ବିଭିନ୍ନ ଋଷିଗଣ କର୍ତ୍ତୃକ ବିଭିନ୍ନ ସମୟରେ ରଚିତ ହୋଇ ଆସିଥିଲା ଏବଂ ପରବର୍ତ୍ତୀକାଳେ ନବ ନବ ଋଷିଗଣ ଏ ସକଳ ମନ୍ତ୍ରଗୁଡ଼ିକୁ ନବ ଭାଷା ଓ ନବ ଛନ୍ଦେ ରୂପାନ୍ତରିତ କରିଦେଇଥିଲେ ।

ସର୍ବ ଶେଷେ ମହର୍ଷି କୃଷ୍ଣଦ୍ୱୈପାୟ ସଗ୍ର ବେଦମନ୍ତ୍ରକୁ ସଂହିତାକାରରେ ବିଭକ୍ତ କରିଦେଇ ସେ ନିଜେ ବେଦବ୍ୟାସ ଆଖ୍ୟା ପ୍ରାପ୍ତ ହୋଇଥିଲେ । ସୁତରାଂ କୌଣସି ବିଶେଷ ସୂକ୍ତ ବା ଋକ୍ ମାତ୍ରେ ଉଲ୍ଲିଖିତ ପ୍ରମାଣବଳେ ସକଳ ବେଦମନ୍ତ୍ରର ରଚନାକାଳ ନିରୂପଣରେ ପ୍ରବୃତ୍ତ ହେବା ସମୀଚୀନ ନୁହେଁ ।

ବେଦମନ୍ତ୍ରର ରଚନାକାଳ ସମ୍ବନ୍ଧେ ବେଦ ମନ୍ତ୍ରରେ ହିଁ ପୁରାତନ, ମଧ୍ୟମ ଓ ନୂତନ ତିନୋଟି ପୃଥକ୍ ପୃଥକ୍ ଯୁଗର ସ୍ପଷ୍ଟୋଲ୍ଲେଖ ଦେଖିବାକୁ ମିଳୁଅଛି ।

ବେଦର ଭାଷାର ସ୍ଥାନେ ସ୍ଥାନେ ଯେ ସକଳ ତାରତମ୍ୟ ଲକ୍ଷିତ ହୁଏ ସେଥିରୁ ମଧ୍ୟ ଅନୁମାନ ହୁଏ ଯେ କୌଣସି କୌଣସି ଋକ୍ ବହୁକାଳ ପୂର୍ବେ ରଚିତ ହୋଇଥିଲା । ଏତଦ୍‌ବ୍ୟତୀତ ବେଦମନ୍ତ୍ର ସମୂହରେ ଯେ ସକଳ ଉଚ୍ଚ ଓ ଗଭୀର ଦାର୍ଶନିକ ଭାବ, ଆଧ୍ୟାତ୍ମିକ ତତ୍ତ୍ୱ ପ୍ରଭୃତି ନିହିତ ଅଛି ତତ୍ ସମୁଦାୟ ଆଲୋଚନା କଲେ ସ୍ପଷ୍ଟ ଉପଲବ୍ଧି ହୁଏ ଯେ, ଯୁଗଯୁଗାନ୍ତର ସାଧନା ବ୍ୟତୀତ ଏହିପରି ଭାବ ଓ ଭାଷା ସମ୍ବଳିତ ରଚନା ସମ୍ଭବପର ନୁହେଁ । ଏକମାତ୍ର ଋଗ୍‌ବେଦ ରଚନାରେ ଷଷ୍ଟି ପ୍ରକାର ଛନ୍ଦଃ ବ୍ୟବହୃତ ହୋଇଅଛି ।

ଆର୍ଯ୍ୟ ମହର୍ଷିଗଣ ଗାୟତ୍ରୀ ମନ୍ତ୍ର ରଚନାକରି ଯାଇଅଛନ୍ତି, ଯଥାଃ-

"ଓଁ ଭୂ ର୍ଭୁବଃ ସ୍ୱଃ ତତ୍ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି ଧୀୟୋ ଯୋ ନଃ ପ୍ରଚୋଦୟାତ୍ ।" (ଋଃ୩।୬୨।୧୦) ଅର୍ଥ ଯେ ଭୁଲୋକ, ଭୁବଲୋକ ଏବଂ ସ୍ୱର୍ଗଲୋକ ଏହି ତିନି ଲୋକର ପ୍ରସବିତା, ଅର୍ଥାତ୍ ଯାହାଠାରୁ ଏହି ତିନିଲୋକ ବହିର୍ଗତ ହୋଇଅଛି ସେହି ଜଗତ୍ ପ୍ରସବକାରୀର ବରଣୀୟତେଜକୁ ଆମ୍ଭେ ଧ୍ୟାନ କରୁଛୁଁ ।

ସ୍ୱୀୟ କର୍ତ୍ତବ୍ୟ କାର୍ଯ୍ୟ ଅନୁଷ୍ଠାନରେ ଆମ୍ଭେମାନେ ଯାହାର ପ୍ରଭାବରୁ ପ୍ରବର୍ତ୍ତିତ ହେଉଅଛୁଁ ଏବଂ ସକଳ ଜୀବଗଣ ଓ ସ୍ଥାବର ଜଙ୍ଗମ ପ୍ରଭୃତି ଯେଉଁ ସ୍ଥାନରେ ଜନ୍ମଗ୍ରହଣ କରନ୍ତି ତାହାର ନାମ ଭୂଲୋକ ।

କଳ୍ପାନ୍ତେ (ପ୍ରଳୟାନ୍ତେ) ଉପଭୋଗ ନିମନ୍ତେ ପ୍ରାଣୀଗଣ ଯେଉଁ ସ୍ଥାନରେ ଜନ୍ମଧାରଣ କରନ୍ତି ତାହାର ନାମ ଭୁବର୍ଲୋକ ଏବଂ ସୁକୃତିସମ୍ପନ୍ନ ଲୋକମାନଙ୍କ ଆଳୟର ନାମ ସ୍ୱର୍ଲୋକ ବା ସ୍ୱର୍ଗଲୋକ ।

ୟୁରୋପୀୟମାନେ ସବିତୃ ଦେବ ଅର୍ଥେ ସୂର୍ଯ୍ୟ "Sun God" ବୋଲି ବୁଝନ୍ତି । କିନ୍ତୁ ଆର୍ଯ୍ୟମାନେ ବୁଝନ୍ତି -

"ସବିତା ସର୍ବଭୂତାନାଂ ସର୍ବଭାବାନ୍ ପ୍ରସୂୟତେ ।
ସବନାତ୍ ପାବନା ଛେବ ସବିତା ତେନ ଚୋଚ୍ୟତେ ।"

ଅର୍ଥ- ଯାହାଠାରୁ ପ୍ରାଣୀଗଣର ସର୍ବପ୍ରକାର ଉଦ୍ଭବ ହୋଇଥାଏ, ଯେ ସକଳ ପବିତ୍ର କରନ୍ତି ତାହାର ନାମ ସବିତା ।

ଏହି ଉଚ୍ଚ ମହାନ୍ ଭାବେ ଅନୁପ୍ରାଣିତ ହୋଇ ପ୍ରାଚୀନ ଆର୍ଯ୍ୟଋଷିମାନେ ନିତ୍ୟ ଉଦୀୟମାନ ବିବସ୍ୱାନଙ୍କ ଜବାକୁସୁମସଙ୍କାଶ ମନୋହର ମୂର୍ତ୍ତି ଦର୍ଶନେ ଓଁ ଭୂର୍ଭୁବଃ ସ୍ୱଃ ମନ୍ତ୍ରେ ଅଭିନନ୍ଦନ ଗୀତି ଗାନ କରିଥିଲେ । ସହସ୍ର ସହସ୍ର ବତ୍ସର ସାଧନା ବ୍ୟତୀତ ଏହାର ଉନ୍ମେଷ ଘଟିପାରେ ନାହିଁ ।

ନିରାଳ ଜଂଘେ, ଜଟାଜାଳ ବିମଣ୍ଡିତ ଅସହାୟ ଚଞ୍ଚଳ ବୁଦ୍ଧିସମ୍ପନ୍ନ ଗୁହାବାସୀ ଆର୍ଯ୍ୟ ଋଷିଙ୍କ ମୁଖରୁ ଏହି ମନ୍ତ୍ର ନିଃସୃତ ହେବା ସମ୍ଭବପର କି ନା ତାହା ଯେଉଁମାନେ ଆର୍ଯ୍ୟ ସଭ୍ୟତାକୁ ଚାରିସହସ୍ର ବତ୍ସରର ଅନଧିକ ପ୍ରାଚୀନ ବୋଲି ନିରୂପଣ କରନ୍ତି ସେମାନେ ଥରେ ଚିନ୍ତା କରିଦେଖିବା ଉଚିତ ।

ଖ୍ରୀଷ୍ଟଜନ୍ମର ପ୍ରାୟ ୫୦୦୦ ବତ୍ସର ପୂର୍ବେ ଗୋଟିଏ ବିଶ୍ୱବିଧ୍ୱଂସୀ ବିରାଟ ପ୍ଲାବନେ ପୃଥିବୀ ଧ୍ୱଂସ ହୋଇଥିଲା, ନୋୟା ଦୟା ପରବେଶ ହୋଇ ସେହି ସମୟରେ ପ୍ରତ୍ୟେକ ପ୍ରାଣୀବିଶେଷରୁ ଗୋଟିଏ ଗୋଟିଏ ସ୍ତ୍ରୀ ପୁଂସଙ୍କୁ ନିଜ ପୋତରେ ଆଶ୍ରୟ ଦେବାରୁ ଏହି ସଂସାର ରହିଅଛି ବୋଲି ୟୁରୋପୀୟଗଣର ଜନ୍ମଗତ ଧାରଣା । ଦୁଃଖର କଥା ଯେ, ଏହି ସଂସ୍କାରର ବଶବର୍ତ୍ତୀ ହୋଇ ଏମାନେ ଅନ୍ୟ କୌଣସି ଦେଶର ସଭ୍ୟତାକୁ ତିନିହଜାର ବର୍ଷରୁ ଅଧିକ ପୁରାତନ ବୋଲି ମନେକରନ୍ତି ନାହିଁ ।

ଅତଃପର ବେଦ ସମ୍ବନ୍ଧେ ଆର୍ଯ୍ୟ ଶାସ୍ତ୍ରମାନଙ୍କର ଅଭିପ୍ରାୟ ବିଚାର କରାଯାଉ । କେତେକ ଶାସ୍ତ୍ର କହେ, ''ଅପୌରୁଷେୟଂ ବେଦଃ'', ''ନିତ୍ୟା ବାଗୁତ୍କୃଷ୍ଟା ସ୍ୱୟମ୍ଭୂବା'' । ଅର୍ଥାତ୍ ବେଦ ଅପୌରୁଷେୟ, ସ୍ୱୟମ୍ଭୂଙ୍କଦ୍ୱାରା ବେଦ ଉତ୍କୃଷ୍ଟ ହେଲା ଇତ୍ୟାଦି । ଏ ବିଷୟରେ ଆମ୍ଭମାନଙ୍କର ଦର୍ଶନ ଶାସ୍ତ୍ରମାନଙ୍କରେ ସୁଦ୍ଧା କୁହାଯାଇଅଛି କି, ''ନକେନଚିଦପି ପୁରୁଷେଣ ପ୍ରଣୀତୋ ବେଦଃ'' । ମୀମାଂସାଦର୍ଶନର ସିଦ୍ଧାନ୍ତଏହି, କୌଣସି ମନୁଷ୍ୟ ବେଦର ପ୍ରଣେତା ନୁହନ୍ତି । ବେଦାନ୍ତ ସୂତ୍ର କହେ, ''ଶାସ୍ତ୍ରଯୋନିତ୍ତ୍ୱାତ୍'' । ଏହାର ଅର୍ଥ- ବ୍ରହ୍ମ ଋଗ୍‌ବେଦାଦି ଶାସ୍ତ୍ରର କାରଣ ସ୍ୱରୂପ । ବୈଶେଷିକ, ନ୍ୟାୟ ସାଙ୍ଖ୍ୟ ଏବଂ ପାତଞ୍ଜଳ ଦର୍ଶନ ବେଦର ପ୍ରାମାଣ୍ୟ ସ୍ୱୀକାର କରନ୍ତି ସତ କିନ୍ତୁ ଏମାନେ ବେଦ ଅକର୍ତ୍ତୃକ ବା ଈଶ୍ୱର କୃତ ବୋଲି କୌଣସି କଥା ସ୍ପଷ୍ଟକରି କହିନାହାନ୍ତି । ପ୍ରାୟ ଅନେକ ଦାର୍ଶନିକଙ୍କ ମତ ବେଦ ଋଷି ପ୍ରଣୀତ, ଏତାବନ୍ମାତ୍ର ଅଥଚ ବେଦ ସିଦ୍ଧ ବୋଲି ସର୍ବଶାସ୍ତ୍ର ସମ୍ମତ । ଯଥା- ପତଞ୍ଜଳ କହନ୍ତି, ''ନିତ୍ୟପର୍ଯ୍ୟାୟ ବାଚୀସିଦ୍ଧ ଶବ୍ଦଃ'' ଅର୍ଥାତ୍ ସିଦ୍ଧ ଶବ୍ଦ ନିତ୍ୟ ପର୍ଯ୍ୟାୟ ବାଚୀ । ଆଉ ଗୋଟିଏ କଥା- କେତେକ ବେଦମନ୍ତ୍ର ଋଷିପ୍ରଣୀତ ବୋଲି ଲେଖାଯାଇଅଛି । ଯଥା- ଋଷିପୁତ୍ରା ବିଲପତଂ ବେଦୟନ୍ତେ ସର୍ପରଷିର୍ମନ୍ତ୍ରକୃତ୍ ।'' ଐତିରେୟ ପୂର୍ବୋକ୍ତ ମନ୍ତ୍ର ଦେଖିବାକୁ ଗଲେ ବେଦମନ୍ତ୍ରର କର୍ତ୍ତା ଯେ ଏକ ଜଣ ନୁହନ୍ତି ତାହା ସୁଦ୍ଧା ମନ୍ତ୍ରରୁ ହିଁ ପ୍ରମାଣିତ । ଏହାର ଉତ୍ତର ସ୍ୱରୂପ କେତେକ ମନ୍ତ୍ରର ଋଷି ବିଶେଷଙ୍କୁ ମନ୍ତ୍ରର ଦ୍ରଷ୍ଟା ବୋଲାଯାଇଅଛି, ତାଦୃଶ ସ୍ଥଳରେ ଦ୍ରଷ୍ଟା ଶବ୍ଦର ଅର୍ଥ 'ପ୍ରଣେତା' ନକରି 'ସାକ୍ଷାତ୍‌କର୍ତ୍ତା' ବୋଲି ଅର୍ଥ କରିଦେଲେ ବିରୋଧ, ଅସାଙ୍ଗତ୍ୟ ପରିହାର

ହୋଇଯିବ । ବୃହ୍ମଚ ବ୍ରାହ୍ମଣ କହେ, "ତ୍ରୟୋବେଦା ଅଜାୟନ୍ତ ଋଗ୍‌ବେଦ ଏବାଗ୍ନେ ରଜାୟତେ ଯଜୁର୍ବେଦୋବାୟୋଃ ସାମବେଦୋ ଆଦିତ୍ୟାତତ୍ତାନ୍‌ବେଦାନଭ୍ୟତପତ୍" ଐତିରେୟ ୫।୫।୭ ଅର୍ଥାତ୍ ଋଗ୍ ଅଗ୍ନିଙ୍କଠାରୁ, ଯଜୁ ବାୟୁଙ୍କଠାରୁ, ସାମ ଆଦିତ୍ୟଙ୍କଠାରୁ ଜାତ ହୋଇଅଛି ।

ବେଦ ଅତି ପ୍ରାଚୀନ ଗ୍ରନ୍ଥ । ବେଦରୂପ କଳ୍ପତରୁର ବହୁ ଶାଖା ପ୍ରଳୟ ବାତ୍ୟାରେ ବିନଷ୍ଟ ହୋଇଥାଇପାରେ । ଏକ ଋଗ୍‌ବେଦର ହିଁ ବହୁ ଶାଖା ଥିବା ଅତି ପ୍ରାଚୀନ ନିରୁକ୍ତକାର ଯାସ୍କଙ୍କ ବାକ୍ୟରୁ ପ୍ରମାଣିତ ହୁଏ । ପ୍ରଣଷ୍ଟ ଅଂଶ ପୂରଣ କରିବାକୁ ଯାଇ କେତେକ ଋଷି ନିଜ ନିଜ ଉତ୍କର୍ଷ କଥା ମଧ୍ୟ ଲେଖିବାକୁ ଛାଡ଼ିନାହାନ୍ତି । ଏହି ବିଦ୍ୱେଷାତ୍ମକ ବ୍ୟାପାର ଏହି ପ୍ରବନ୍ଧରେ ହିଁ ଅନ୍ୟତ୍ର ଆମ୍ଭେ ଜଣାଇବୁ ଏବଂ ବେଦ ଅତି ଗମ୍ଭୀର, ଏହାର ଅର୍ଥବୋଧ ସହଜ କଥା ନୁହେଁ, ବୋଧଗମ୍ୟ ଲାଗି ଷଡ଼ଙ୍ଗର ସୃଷ୍ଟି । ଏହି ଷଡ଼ଙ୍ଗର ପରିଚୟ ସୁଦ୍ଧା ପ୍ରବନ୍ଧ ଶେଷରେ ଆଲୋଚିତ ହୋଇଅଛି ।

ଅନ୍ୟଚ, ବେଦମନ୍ତ୍ର ବୁଝିବାକୁ ଗଲେ ଋଷି, ଛନ୍ଦ ଓ ଦେବତା ବୁଝିବା ଅତି ପ୍ରୟୋଜନୀୟ ବିଷୟ । ବୈଦିକ ନିବନ୍ଧକାରଗଣ କହିଛନ୍ତି-

"ଅବିଦିତ୍ୱା ଋଷି ଛନ୍ଦୋ ଦୈବତଂ ଯୋଗମେବତ ।
ଯୋଽଧ୍ୟାପୟେତ୍ ଜପେତ୍ ବାପି, ପାପୀୟାନ୍ ଜାୟତେତୁ ସଃ ।।
ଋଷିଛନ୍ଦୋ ଦୈବାତାନି ବ୍ରହ୍ମଣାର୍ଥଂ ସ୍ୱରାଦ୍ୟପି ।
ଅବିଦିତ୍ୱା ପ୍ରଯୁଞ୍ଜାନୋ ମନ୍ତ୍ର କଣଟକମୁଚ୍ୟତେ ।"

ଅର୍ଥାତ୍- ବୈଦିକ ମନ୍ତ୍ରାଦିର ଋଷି, ଛନ୍ଦ, ଦେବତା ଓ ବିନିଯୋଗର ବିଷୟ ନଜାଣି ଯେ ଅଧ୍ୟାପନା କରାଏ ବା ଅଧ୍ୟୟନ କରେ ବା ମନ୍ତ୍ର ଜପ କରେ ସେ ପ୍ରତ୍ୟବାୟ ଗ୍ରସ୍ତ ହୁଏ । କ୍ରିୟା, ହେତୁ ଓ ସ୍ୱରାଦି ଜ୍ଞାନହୀନ ବ୍ରାହ୍ମଣର ମନ୍ତ୍ର ପ୍ରୟୋଗ ମନ୍ତ୍ର କଣଟକ ନାମେ ଖ୍ୟାତ । ମହାଭାଷ୍ୟ କହେଃ-

"ମନ୍ତ୍ରୋହୀନଃ ସ୍ୱରତୋ ବର୍ଣ୍ଣତୋବା
ସବାକ୍‌ବଜ୍ରଃଯଜମାନଂ ହିନସ୍ତି ।"

ଅର୍ଥାତ୍ ସ୍ୱର ଓ ବର୍ଣ୍ଣହୀନ ମନ୍ତ୍ରୋଚ୍ଚାରଣ ବଜ୍ରରୂପ ହୋଇ ଯଜମାନଙ୍କୁ ନାଶ କରେ । ଏହି ସୁବିଶୁଦ୍ଧ କ୍ରମ ପାଠରେ କଳିର ଅଜ୍ଞ ବ୍ରାହ୍ମଣ ପୌରୋହିତ୍ୟ କରି ଲୋକଚକ୍ଷୁରେ ହୀନତର ହେବା ପଦେ ପଦେ ପ୍ରତ୍ୟକ୍ଷୀଭୂତ ।

ତୈତ୍ତରିୟ ଆରଣ୍ୟକରେ ଋଷିର ଲକ୍ଷଣ ଲେଖିଅଛନ୍ତି -

"ଅଜାନ୍ ହବୈ ପୃଶ୍ନୀଂ ସ୍ତପଶ୍ୟମାନାନ୍ ବ୍ରହ୍ମ ସ୍ୱୟମ୍ଭୂଭ୍ୟା ନର୍ଷତଦୃଷୟୋଽଭବନ୍" ଅର୍ଥାତ୍

- ଯେଉଁମାନେ ପରମେଶ୍ୱରଙ୍କ ଅନୁଗ୍ରହରେ ପ୍ରଥମତଃ ଅତୀନ୍ଦ୍ରିୟ ବେଦର ଦର୍ଶନ ପାଇଥିଲେ ସେମାନେ ହିଁ ଋଷି । ଏବଂ ଅନ୍ୟତ୍ର କୁହାଯାଇଅଛି-

''ଯୁଗାନ୍ତେଽନ୍ତର୍ହିତାନ୍ ବେଦାନ୍ ସେତିହାସାନ୍ ମହର୍ଷୟଃ ।

ଲେଭିରେ ତପସାପୂର୍ବ ମନୁଜ୍ଞାତା ସ୍ୱୟମ୍ଭୁବା ।'' ଅର୍ଥାତ୍- ଯୁଗାନ୍ତରେ କଳ୍ପାବସାନେ ଇତିହାସ ସହିତ ସମଗ୍ର ବେଦ ଅନ୍ତର୍ହିତ ହେବାପରେ ସ୍ୱୟମ୍ଭୁ କର୍ତ୍ତୃକ ଅନୁଜ୍ଞାତ ହୋଇ ତପସ୍ୟଦ୍ୱାରା ମହର୍ଷିଗଣ ସେତିହାସ, ସମଗ୍ର ବେଦ ଲାଭ କରିଥିଲେ, ଏହା ଅସମ୍ଭବ ନୁହେଁ । ପ୍ରଳୟ କାଳରେ ଧ୍ୱଂସର ତାଣ୍ଡବ ଲୀଳା ସଙ୍ଗେ ସଙ୍ଗେ ବହୁମୂଲ୍ୟ ବସ୍ତୁ ପ୍ରଣଷ୍ଟ ହେବା ବିଚିତ୍ର କି ? ବୋଧହୁଏ ଏଥିଲାଗି ହିଁ ଶଙ୍ଖାସୁର ବେଦ ହରଣ କରିଥିଲା ଏବଂ ମତ୍ସ୍ୟାବତାରରେ ଭଗବାନ ତାହା ସଂଗ୍ରହ କରିଥିଲେ ବୋଲି ପୌରାଣିକ ଗଳ୍ପ ଅଛି । ଅନୁସଙ୍ଗରେ ଲେଖିଅଛନ୍ତି-

''ଈଶ୍ୱରାଃ ଋଷିକା ଶ୍ଚୈବ ଯେଚାନ୍ୟେ ବୈତଥା ଶ୍ରୁତାଃ ।
ଏତେମନ୍ତ୍ର କୃତଃସର୍ବେ କୃତ୍ସ୍ନଶଃ ତାନ୍ ନିବୋଧତ ।''

ଅର୍ଥାତ୍ ବ୍ରହ୍ମାଙ୍କର ମାନସପୁତ୍ରମାନେ ଈଶ୍ୱରନାମେ ଅଭିହିତ । ଭୃଗୁ, ମରୀଚି, ଅତ୍ରି, ଅଙ୍ଗିରା, ପୁଲହ, କ୍ରତୁ, ମନୁ, ଦକ୍ଷ, ବଶିଷ୍ଠ ଓ ପୁଲସ୍ତ୍ୟ ଏମାନଙ୍କ ସଂଖ୍ୟା ଦଶ । ଏମାନଙ୍କ ଔରସ ପୁତ୍ରମାନେ ଋଷିନାମେ ଖ୍ୟାତ । ଯଥା- ଶୁକ୍ର, ବୃହସ୍ପତି, କଶ୍ୟପ, ଉଶନା, ଉତଥ୍ୟ, ବାମଦେବ, ଅପୋଜ୍ୟ, ଉଶିକ, କର୍ଦ୍ଦମ, ବିଶ୍ରବା, ଶକ୍ତି, ବାଳଖିଲ୍ୟ, ବତ୍ସର, ନଗ୍ରହୁ, ଭରଦ୍ୱାଜ, ବୃହଦୁକ୍‌ଥ, ଶରଦ୍‌ବାନ୍, ଅଗସ୍ତ୍ୟ, ଔଶିକ, ଦୀର୍ଘତମା, ବାକଶ୍ରବା, ଭୃଗୁକାବ୍ୟ, ପ୍ରଚେତା, ଔର୍ବ, ଜମଦଗ୍ନି, ସାରସ୍ୱତ, ଆର୍ଷ୍ଟିଷେଣ, ବୀତହବ୍ୟ ପ୍ରଭୃତି ମନ୍ତ୍ରପ୍ରଣୟନ କର୍ତ୍ତା । କାଶ୍ୟପ, ବତ୍ସାର, ବିଭ୍ରମ, ରୈଭ୍ୟ, ଅସିତ, ଦେବଳ ଏ ଛ'ଜଣ ବ୍ରହ୍ମବାଦୀ । ଏହିପରି ଅନେକ ଋଷି ମନ୍ତ୍ର ଓ ବ୍ରାହ୍ମଣ ସଂକଳନ କରିଅଛନ୍ତି । ଏମାନେ କଳ୍ପାନ୍ତପ୍ରଣଷ୍ଟ ଶାସ୍ତ୍ରର ସଂସ୍କାରକ । ମହର୍ଷି ଜୈମିନି ଏହି ମନ୍ତ୍ର ଓ ବ୍ରାହ୍ମଣ ଭାଗର କର୍ମକାଣ୍ଡାନୁଶାସିତ ବିଧି ପ୍ରୟୋଗ ଇତ୍ୟାଦିର ସାମଞ୍ଜସ୍ୟ କରି ପୂର୍ବ ମୀମାଂସା ଦର୍ଶନ ପ୍ରଣୟନ କରିଅଛନ୍ତି । ଯାସ୍କ ମନ୍ତ୍ର ଶବ୍ଦର ବ୍ୟୁତ୍ପତ୍ତି କରିଅଛନ୍ତି,

''ମନ୍ତ୍ରାମନନାତ୍ ଯତ୍‌କାର୍ଯ୍ୟମଋଷିକାର୍ଯ୍ୟେସ୍ୟାଂ ଦେବତାୟା
ମର୍ଥାପତ୍ୟମିଛନ୍ ସ୍ତୁତିଂ ପ୍ରଯୁଁକ୍ତେ ତଦ୍ଦୈବତଃ ସମନ୍ତ୍ରୋ ଭବତି ।'' ନିରୁକ୍ତ ୭, ୧, ୧ ।

ଅର୍ଥାତ୍ କାମନାବାନ୍ ଋଷି କୌଣସି ଦେବତା ନିକଟରେ ଅର୍ଥ ଅପତ୍ୟାଦି ଲାଗି ଯେଉଁ ସ୍ତୁତି ପାଠ ପରେ ତାହାହିଁ ସେହି ଦେବତାର ମନ୍ତ୍ର । ଭାଷ୍ୟକାର ତ୍ରୟୋଦଶ ପ୍ରକାର ମନ୍ତ୍ର ଭେଦର କଥା ଉଲ୍ଲେଖ କରନ୍ତି । ଯଥା -

ବିଧ୍ୟର୍ଥବାଦ ଯାଚଁଶୀଭ୍ୟା ସ୍ତୁତିପ୍ରୈଷ ପ୍ରବହ୍ଲିକାଃ ।
ପ୍ରଶ୍ନୋ ବ୍ୟାକରଣଂ ତର୍କ ପୂର୍ବୋବୃତ୍ତାନୁକୀର୍ତ୍ତନଂ ।

ଅବଧାରଣଂ ଚୋପନିଷତ୍ୱାକ୍ୟାର୍ଥସ୍ତୁ ତ୍ରୟୋଦଶ ।
ମନ୍ତ୍ରେଷୁ ଯେ ପ୍ରଦୃଶ୍ୟନ୍ତେ ବ୍ୟାଖ୍ୟାତୃଭି ତିଚୋଦିତା ।

ବୈଦିକ ଗ୍ରନ୍ଥରେ ନାନାବିଧ ଛନ୍ଦର ପ୍ରୟୋଗ ଦେଖାଯାଏ । ଛନ୍ଦ ଓ ମନ୍ତ୍ର ମଧ୍ୟରେ ବିଶେଷ ସମ୍ବନ୍ଧ ଅଛି । ଛନ୍ଦଦ୍ୱାରା ହିଁ ମନ୍ତ୍ରର ଅଭିବ୍ୟକ୍ତି । ଷଡ଼ଙ୍ଗ ବିଚାରବେଳେ ଏହା ଲେଖିବାକୁ ହେବ । ଗାୟତ୍ରୀ, ଉଷ୍ଣିକ୍, ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍, ଜଗତୀ ପ୍ରଭୃତି ଭେଦରେ ଏହି ଛନ୍ଦ ୧୦୪ ଗୋଟି ।

## ବୈଦିକ ଦେବତାର ବିଷୟ

ଋଗ୍‌ବେଦରେ କେତେଗୁଡ଼ିଏ ଦେବତାର ନାମ ଉଲ୍ଲେଖ ଅଛି । ଏମାନେ ବୈଦିକ ମନ୍ତ୍ରରେ କିପରି ସ୍ତୁତ ହେଲେ, ତାହା ଆଲୋଚନା କଲେ ସ୍ପଷ୍ଟ ଜଣାଯାଏ କି, ପ୍ରତ୍ୟେକ ଦେବତା ଗୋଟିଏ ଗୋଟିଏ ଅଶରୀରିଣୀ ଶକ୍ତି ମାତ୍ର । ପ୍ରାଚୀନ ଆର୍ଯ୍ୟଋଷିଗଣ ସ୍ୱର୍ଗ, ମର୍ତ୍ତ୍ୟ ବା ଅନ୍ତରୀକ୍ଷସ୍ଥ ଦୈବଶକ୍ତି ବିଶେଷକୁ ଲକ୍ଷ୍ୟକରି ସେମାନଙ୍କ କାର୍ଯ୍ୟକାରୀତାକୁ ପୂଜା କରିଥାନ୍ତି । ଯଥା- ଇନ୍ଦ୍ର ଶବ୍ଦରେ ସହସ୍ରାକ୍ଷିଯୁକ୍ତକୌଣସି ଜୀବନ ବିଶେଷକୁ ବୁଝାଏ ନାହିଁ । ଋଗ୍‌ବେଦରେ ଇନ୍ଦ୍ର ଶବ୍ଦରେ ଯେ ଶକ୍ତି ପୂଜିତ ହୁଏ ତାହା ସହସ୍ର ଦିଗବ୍ୟାପୀ ଅମିତ ତେଜସମ୍ପନ୍ନ ମାତ୍ର । 'ଇନ୍ଦ୍ରାୟ ସ୍ୱାହା'ଏହି ମନ୍ତ୍ର ମାତ୍ର ହିଁ ଦେବତା, ଯେହେତୁ ଯାଗବେଳେ ଦ୍ରବ୍ୟ ତ୍ୟାଗର ଉଦ୍ଦିଷ୍ଟ ଦେବତାର ମନ୍ତ୍ର ହିଁ ଦେବତାତ୍ମକ; କିନ୍ତୁ କ୍ରମେ ସାଧକର ଭକ୍ତି ବିଭାବିତ ଉପାସନାରେ ଏହି ଅଶରୀରିଣୀ ଶକ୍ତିସମୂହ ମଧ୍ୟ ମୂର୍ତ୍ତିମୟୀ ରୂପେ ପ୍ରକଟିତ ହୋଇଅଛନ୍ତି । ମନ୍ତ୍ରରେ ଯେଉଁ ଇନ୍ଦ୍ର କାର୍ଯ୍ୟ ଫଳପ୍ରଦ ଅମୂର୍ତ୍ତ ବା ମନ୍ତ୍ରମୟୀ ଦେବତା, ପୌରାଣିକ ଯୁଗରେ ସେମାନେ କୁଣ୍ଡଳ-କିରୀଟଧାରୀ ଦିବ୍ୟମୂର୍ତ୍ତିଧର ଓ ବଜ୍ରଶକ୍ତିସମ୍ପନ୍ନ । ଜୈମିନି ମୀମାଂସା ଦର୍ଶନରେ ବିଚାର କରିଅଛନ୍ତି ଘୃତାଦି ଦ୍ରବ୍ୟ ଯେପରି ଯାଗର ଗୋଟିଏ ଅଙ୍ଗ ଦେବତା ମଧ୍ୟ ତଦ୍ରୂପ । ସେମାନେ ଯଦ୍ୟପି ଶରୀରୀ ହୋଇଥା'ନ୍ତେ, ତେବେ ଯଜମାନ ପ୍ରତ୍ୟକ୍ଷ୍ୟ କରନ୍ତା ନାହିଁକି; ଏବଂ ଯଦି ଅନେକ ବ୍ୟକ୍ତି ଏକ ସମୟରେ ଯାଗ କରନ୍ତି ଅର୍ଥାତ୍ ସମକାଳରେ ଦେବତାଙ୍କୁ ଆହ୍ୱାନ କରନ୍ତି, ଶରୀରୀ ହୋଇଥିଲେ ସେମାନେ ସର୍ବତ୍ର ଗମନ କରନ୍ତେ କିପରି ? ଅତଏବ ଦେବତାକୁ ମନ୍ତ୍ରାତ୍ମକ ସ୍ୱୀକାର କଲେ କୌଣସି ଆପତ୍ତି ନାହିଁ ।

ବେଦର ବହୁ ପ୍ରକାର ପଦାର୍ଥ ଦେବତା ବୋଲି ପ୍ରକୀର୍ତ୍ତିତ । ତଦ୍‌ଯଥା "ଦେବୋଦାନାଦ୍‌ବା, ଦୀପନାଦ୍‌ବା, ଦ୍ୟୋତନାଦ୍‌ବା, ଦ୍ୟୁସ୍ଥାନେଭବତିବା" ଏହି ନିରୁକ୍ତିରୁ ଜଣାଯାଏ ଯେ ଫଳ ଦାନେ ସମର୍ଥ ଯେ ଦୀପନ କରନ୍ତି, ଯେ ପ୍ରକାଶ କରନ୍ତି ଏବଂ ଯେ ଦ୍ୟୁସ୍ଥାନେ ଅବସ୍ଥାନ କରନ୍ତି ସେମାନେ ମଧ୍ୟ ଦେବତା । ଏଠାରେ ଦ୍ୟୁ ଶବ୍ଦର ଅର୍ଥ ଆକାଶମଣ୍ଡଳ ସୁତରାଂ ଗଗନବିହାରୀ ଚନ୍ଦ୍ରାଦି ଗ୍ରହ ନକ୍ଷତ୍ର ଏବଂ ସୌରଜଗତର ବହିର୍ଭୂତ ଧ୍ରୁବାଦି ମଧ୍ୟ ଦେବତା ପଦବାଚ୍ୟ । ବୃଷ୍ଟି ଦାନରେ ସମର୍ଥ ବୋଲି ବାୟୁ ପ୍ରଭୃତି ଅଚେତନ ପଦାର୍ଥ ମଧ୍ୟ ଦେବତା ପଦବାଚ୍ୟ । ଯାଯାବରାଦି ରାଜାମାନେ ଅର୍ଥ ଦାନରେ ସମର୍ଥ ବୋଲି

ସେମାନେ ବୈଦିକ ଦେବତା । ଅଶ୍ୱାଦି ଜୀବ ଓ ଗ୍ରାବାଦି ନିର୍ଜୀବ ଦେବତା ମଧ୍ୟେ ଗଣ୍ୟ । ପର୍ଜନ୍ୟ, ଅଗ୍ନି, ବ୍ରହ୍ମ, ବର୍ଚ୍ଚସୀ ପ୍ରଭୃତି ଦ୍ୟୋତନ ହେତୁ ବୈଦିକ ଦେବତାନ୍ତର୍ଭୁକ୍ତ । ବେଦର ଦେବତ୍ୱ ଆଲୋଚନା କଲେ ସ୍ପଷ୍ଟ ହୁଏ କି ଆବ୍ରହ୍ମସ୍ତମ୍ବ ପର୍ଯ୍ୟନ୍ତ ସକଳ ପଦାର୍ଥ ହିଁ ଯେ କୌଣସି ଦେବତା ରୂପେ ସ୍ୱୀକୃତ । ଦେବଭାବାପନ୍ନ ଆର୍ଯ୍ୟହୃଦୟ ଏହି ବିଶାଳ ବିଶ୍ୱବ୍ରାହ୍ମାଣ୍ଡର ପ୍ରତ୍ୟେକ ପଦାର୍ଥରେ ଦେବଭାବ ପ୍ରତ୍ୟକ୍ଷ କରିଅଛି । ଏତେକଥା କାହିଁକି, ଏ ବିରାଟ ଜଗତର ଅଣୁ ଓ ପରମାଣୁ ମଧ୍ୟ ଆର୍ଯ୍ୟଗଣର ସୂକ୍ଷ୍ମ ଦୃଷ୍ଟିରେ ଦେବତା ରୂପେ ସମାଦୃତ । ଅତଏବ ଆର୍ଯ୍ୟ ବେଦାନ୍ତୀ ପରିଶେଷରେ "ସର୍ବଂ ଖଲ୍ୱିଦଂ ବ୍ରହ୍ମ" ବୋଲି ଉଦ୍‌ଘୋଷଣା କରିଅଛନ୍ତି । ଦେବତତ୍ତ୍ୱର ଏ ବିଶାଳ ସତ୍ୟ ଯୁଗଯୁଗାନ୍ତରରୁ ଆର୍ଯ୍ୟଗଣ ଜଗତ୍ ସମକ୍ଷେ ପ୍ରକଟନ କରିଅଛନ୍ତି । ଆଧୁନିକ ପାଶ୍ଚାତ୍ୟ ଜଗତ୍ ଅଦ୍ୟାପି ଏ ନିଗୂଢ଼ ତତ୍ତ୍ୱ ବୁଝିନାହିଁ କହିଲେ ଚଳେ । ସୂକ୍ଷ୍ମଦର୍ଶୀ ଆର୍ଯ୍ୟଋଷି ନିକଟରେ ଦେବତତ୍ତ୍ୱ ସୃଷ୍ଟି ରହସ୍ୟର ଗୋଟିଏ ବିଶାଳ ବ୍ୟାପାର । ପ୍ରତ୍ୟେକ ପଦାର୍ଥର ଅଭ୍ୟନ୍ତରରେ ଅଦୃଷ୍ଟଚାରିଣୀ ମହାଶକ୍ତିର ଲୀଳା ବିରାଜମାନ । ସେହି ଶକ୍ତିଲୀଳାର ବିଦ୍ୟମାନ୍ୟତାରେ ହିଁ ପ୍ରତ୍ୟେକ ପରମାଣୁ କାର୍ଯ୍ୟଶୀଳ ସୁତରାଂ ସେହି ଚିନ୍ମୟୀ ଶକ୍ତି ହିଁ ଆର୍ଯ୍ୟଜାତିର ଦେବତା । ସେଥିଲାଗି ସନାତନ ଆର୍ଯ୍ୟସମାଜରେ କୋଟି କୋଟି ଦେବତାର କଥା ବର୍ଣ୍ଣିତ । କିନ୍ତୁ ଦେବତତ୍ତ୍ୱସମ୍ବନ୍ଧୀୟ ଏହି ବିଶାଳ ଧାରଣାର ମୂଳ ଏକମାତ୍ର ବୈଦିକ ଦେବତତ୍ତ୍ୱ । ଏହି ନୀଳ ନଭଃସ୍ଥଳର ଚନ୍ଦ୍ର ସୂର୍ଯ୍ୟାଦି ଗ୍ରହୋପଗ୍ରହ, ଅସଂଖ୍ୟ ତାରକାମଣ୍ଡଳୀ, ବିଶାଳ ବାୟୁରାଶି, ମେଘମାଳା, ପ୍ରକାଶଶୀଳା ବିଦ୍ୟୁତ୍‌ବଲ୍ଲୀ ମଧ୍ୟ ଯେପରି ଦେବତା ଏହି ବୃହତ୍ ଭୂମଣ୍ଡଳର ନଦନଦୀ, ବୃକ୍ଷ, ବଲ୍ଲରୀ ଓ ଜୀବଜନ୍ତୁ ମଧ୍ୟ ସେପରି ଦେବତା । ସ୍ଥାବର ଜଙ୍ଗମାଦି ସକଳ ପଦାର୍ଥ ହିଁ ଯେକୌଣସି ମନ୍ତ୍ରରେ ଦେବତା ବୋଲି ସ୍ୱୀକୃତ । କିନ୍ତୁ ବେଦରେ ଆକାଶମଣ୍ଡଳବାସୀ ଦେବତାର ହିଁ ଅଧିକତର ପ୍ରାଧାନ୍ୟ ଓ ବହୁଳ ଗୁଣକୀର୍ତ୍ତନ ଶ୍ରୁତ ହୁଏ । ଯାସ୍କ କହନ୍ତି, ଦବତାଗଣ ତ୍ରିସ୍ଥାନବାସୀ । ଅଗ୍ନି ପୃଥିବୀବାସୀ, ବାୟୁ ଅନ୍ତରୀକ୍ଷବାସୀ ଏବଂ ସୂର୍ଯ୍ୟ ଦ୍ୟୁମଣ୍ଡଳବାସୀ । ଅନେକ ସ୍ଥଳରେ ବାୟୁ ହିଁ ଇନ୍ଦ୍ରରୂପେ ବର୍ଣ୍ଣିତ; ଯଥା- "ବାୟର୍ବୈଇନ୍ଦ୍ରଃ" । କିନ୍ତୁ ଏ ସକଳ ପଦାର୍ଥ ବୈଦିକ ମନ୍ତ୍ରଦ୍ୱାରା ଦ୍ୟୋତକ ହେଲେହେଁ ଦେବତା ହୁଅନ୍ତି । ଶେଷ ତାତ୍ପର୍ଯ୍ୟ ଦେବତା ମନ୍ତ୍ରମୟୀ ନତୁ ଶରୀରୀ ।

ବେଦରେ ପ୍ରଧାନତଃ ତେତିଶଟି ଦେବତା କଳ୍ପିତ ହୋଇଅଛନ୍ତି । ତାହା ଆମ୍ଭେ ଦେବତା ପ୍ରକରଣରେ ଲେଖିଅଛୁ । ମାତ୍ର କୌଣସି କୌଣସି ମନ୍ତ୍ରରେ ରୁଦ୍ରଗଣଙ୍କୁ ବାୟୁ ବୋଲି କୌଣସି କୌଣସି ସ୍ଥାନରେ ଅଗ୍ନିକି ରୁଦ୍ର ବୋଲି କହିଅଛନ୍ତି । ଶତପଥ ବ୍ରାହ୍ମଣ କହେ, 'ସ୍ତନଇତ୍ନ୍ୟୁରେବଇନ୍ଦ୍ରଃ' । ଏ ସ୍ଥଳରେ ସ୍ତନଇତ୍ନ୍ୟୁଶବ୍ଦର ଅର୍ଥ ମେଘଚାଳକ ବାୟୁବିଶେଷ । ବେଦରେ ଏହିପରି ପାରିଭାଷିକ ଦେବତାର ଇଙ୍ଗିତ ଥିଲେ ମଧ୍ୟ, ମନ୍ତ୍ରଭାଗରେ ବାୟୁ, ଇନ୍ଦ୍ର, ସୂର୍ଯ୍ୟଙ୍କର ହିଁ ସମଧିକ ସ୍ତୋତ୍ର ବିଦ୍ୟମାନ । ନିରୁକ୍ତକାର କହିଅଛନ୍ତି, 'ତିସ୍ରୋଦେବତାଃ' ଦେବତା ତିନିଜଣ ମାତ୍ର ।

## ଋଗ୍‌ବେଦ

ଋଗ୍‌ବେଦ ସଂହିତା ଗୋଟିଏ ବୃହତ୍ ଗ୍ରନ୍ଥ । ଏହା ଦଶୋଟି ମଣ୍ଡଳରେ ବିଭକ୍ତ ହୋଇଅଛି । ଏଥିରେ ୮୫ଟି ଅନୁବାକ୍ (ପରିଛେଦ) ଅଛି । ସମଗ୍ର ଗ୍ରନ୍ଥର ସୂକ୍ତ ସଂଖ୍ୟା ୧୦୫୮୦ଟି ମାତ୍ର । ଋକ୍ ବା ମନ୍ତ୍ର ୧୫୩୮୨୬ ଗୋଟି । ମାତ୍ର ଦୟାନନ୍ଦଙ୍କ ଗଣନାନୁସାରେ ଭିନ୍ନ ଅଛି । ପ୍ରଥମ ମଣ୍ଡଳରେ ୨୪ଟି ଅନୁବାକ୍ ଏବଂ ୧୯୧ଟି ସୂକ୍ତ, ଦ୍ୱିତୀୟରେ ୪ ଅନୁବାକ୍, ୪୩ ସୂକ୍ତ, ତୃତୀୟରେ ୫ ଅନୁବାକ୍, ୬୨ ସୂକ୍ତ, ଚତୁର୍ଥରେ ୫ ଅନୁବାକ୍ ୫୮ ସୂକ୍ତ, ପଞ୍ଚମରେ ୬ ଅନୁବାକ୍ ୮୭ ସୂକ୍ତ, ଷଷ୍ଠରେ ୬ ଅନୁବାକ୍ ୭୫ ସୂକ୍ତ, ସପ୍ତମରେ ୬ ଅନୁବାକ୍ ୧୦୪ ସୂକ୍ତ, ଅଷ୍ଟମରେ ୧୦ ଅନୁବାକ୍ ୯୨ ସୂକ୍ତ, ଏତଦ୍‌ବ୍ୟତୀତ ୧୧ଟି ବାଳଖିଲ୍ୟ ସୂକ୍ତ ଅଛି । ନବମରେ ୭ ଅନୁବାକ୍ ୧୧୪ ସୂକ୍ତ, ଦଶମରେ ୧୨ ଅନୁବାକ୍ ୧୯୧ ସୂକ୍ତ ବିଦ୍ୟମାନ । ଶୌନକ ସୂକ୍ତର ଲକ୍ଷଣ କହିଅଛନ୍ତି-

''ସମ୍ପୂର୍ଣ୍ଣ ମୃଷିବାକ୍ୟନ୍ତୁ ସୂକ୍ତ ମିତ୍ୟ ଭିଧୀୟତେ ।''

ଅର୍ଥାତ୍ - ଛନ୍ଦୋମୟ ଋଷିବାକ୍ୟର ନାମ ସୂକ୍ତ । ଏହାର ନାନାବିଧ ଭେଦ ବିଦ୍ୟମାନ । ତାହାର ବିସ୍ତୃତ ବିବରଣ ନ ଲେଖି ପ୍ରଧାନ ପ୍ରଧାନ ବିଷୟର ପରିଚୟ ମାତ୍ର ଦେବୁଁ; ଯେହେତୁ ସନାତନ ଧର୍ମସମାଜର ଅନେକ ବ୍ରାହ୍ମଣ ସୁଦ୍ଧା ବେଦରେ କି କି ବିଷୟ ଉକ୍ତ ଅଛି ତାହା ନବୁଝି ବେଦ ନିଜର ସ୍ୱାଧିକାରଭୁକ୍ତ ସମ୍ପତ୍ତି ବୋଲି ଗର୍ବ କରିଥା'ନ୍ତି । ଋଗ୍‌ବେଦଗତ ବିଷୟ, ଯଥା- ଋଗ୍‌ବେଦରେ ଅଗ୍ନିର ସ୍ତୋତ୍ର ହିଁ ସର୍ବାପେକ୍ଷା ଅଧିକ । ତତ୍ପରେ ଇନ୍ଦ୍ରସ୍ତବ, ଯେହେତୁ ସେ ମେଘଚାଳକ, ବୃଷ୍ଟିଦ୍ୱାରା ଧରା ଶସ୍ୟଶାଳିନୀ ହୁଏ । ଇନ୍ଦ୍ର ବୃଷ୍ଟିର କର୍ତ୍ତା । ବୃତ୍ରାସୁର ଯୁଦ୍ଧ ବ୍ୟାପାର ଓ ମେଘ, ବୃଷ୍ଟି, ବଜ୍ରପାତ ପ୍ରଭୃତି ବର୍ଣ୍ଣନା ସୂଚକ ଅନେକ ଋକ୍ ଅଛି । ଉଷାର ସ୍ନିଗ୍ଧ-ମଧୁର କନକକିରଣ ଦେଖି ଆର୍ଯ୍ୟଙ୍କ ହୃଦୟରେ ଯେଉଁ କୋମଳ କବିତ୍ୱ ସଞ୍ଚାର ହୋଇଥିଲା ପୁଣି ସେହି ତରୁଣ ସୌନ୍ଦର୍ଯ୍ୟରେ ପ୍ରମୁଗ୍ଧ ହୋଇ ଯେଉଁ ପଦ୍ୟ ଗାଇଥିଲେ, ଋଗ୍‌ବେଦରେ ତାହାର ଯଥେଷ୍ଟ ପରିଚୟ ମିଳେ । ଉଷା ସୂର୍ଯ୍ୟର ଆଗମନ ସୂଚନା କରି ଆଲୋକ ପ୍ରଦାନ କରେ । ସୂର୍ଯ୍ୟଦ୍ୱାରା ବୀଜ ଅଙ୍କୁରିତ ହୁଏ । ସୂର୍ଯ୍ୟ ହିଁ ପ୍ରାଣଶକ୍ତିର ମୂଳ ନିଦାନ ଓ ବୁଦ୍ଧିବୃତ୍ତି ପ୍ରେରକ । ଏ ସମସ୍ତ ମନେକରି ଆର୍ଯ୍ୟଗଣ ସୂର୍ଯ୍ୟଦେବଙ୍କର ବହୁଳ ସ୍ତୁତି କରିଅଛନ୍ତି । ଏତଦ୍‌ବ୍ୟତୀତ ମିତ୍ର, ବରୁଣ, ସରସ୍ୱତୀ, ସୂନୃତା, ସୋମ, ଋଭୁ, ତ୍ୱଷ୍ଟା,ଇନ୍ଦ୍ରାଣୀ, ପୃଥିବୀ, ବିଷ୍ଣୁ, ଇଳା ପ୍ରଭୃତି ଦେବତାଗଣର ସ୍ତୋତ୍ର ଦେଖାଯାଏ । କୃଷିକାର୍ଯ୍ୟ, ମେଷପାଳନ, ଦେଶଭ୍ରମଣ, ବାଣିଜ୍ୟ, ସମୁଦ୍ରଯାନ, ନଦ୍ୟାଦିର ଭୌଗୋଳିକ ବିବରଣ ମଧ୍ୟ ଋଗ୍‌ବେଦରୁ ମିଳେ ।

ସୌରବତ୍ସର,ଚାନ୍ଦ୍ରମାନ ବତ୍ସର, ପ୍ରାଚୀନ ମନୁଷ୍ୟଙ୍କ ପରମାୟୁ, ତନ୍ତୁବାୟ ଓ ବସ୍ତ୍ରନିର୍ମାଣ ବିଷୟ, ବର୍ମ, ଶିରସ୍ତ୍ରାଣ ପ୍ରଭୃତି ବାଦ୍ୟଯନ୍ତ୍ର, ସର୍ପମନ୍ତ୍ର, ପକ୍ଷୀର ଅମଙ୍ଗଳ ଧ୍ୱନି ମନ୍ତ୍ର, ସୂର୍ଯ୍ୟର ଦୈନିକ ଗତି, ଶସ୍ୟର ବିବରଣ, ଖଦିର ଓ ଶିଶୁପା କାଷ୍ଠର ଶକଟ ନିର୍ମାଣ, ରଥ ନିର୍ମାଣ ଶିଳ୍ପ, ସୁବର୍ଣ୍ଣ ସଜ୍ଜିତ ସଂଗ୍ରାମିକ ଅଶ୍ୱ, ଅମାତ୍ୟ ବେଷ୍ଟିତ ଗଜସ୍କନ୍ଧାରୂଢ଼ ରାଜା, ପ୍ରସ୍ତର ନିର୍ମିତ ନଗର,

ସରଯୁର ପୂର୍ବ ଦିଗରେ ଆର୍ଯ୍ୟରାଜ୍ୟର ବିସ୍ତାର, ଆର୍ଯ୍ୟରାଜଗଣର ଯୁଦ୍ଧ ମଧ୍ୟ ବର୍ଣ୍ଣିତ ହୋଇଅଛି । ଦୃଷ୍ଟଦୃତୀ, ଅପେୟା, ରସା, କୁଭା, ସରସ୍ୱତୀର, ପରୁଷ୍ଣୀ, ଅଜିତଭା, ସିନ୍ଧୁ, ଗୋମତୀ, ବିପାଶା, ଶତଦ୍ରୁ, ଶର୍ଯ୍ୟଣାବତୀ, ଜାହ୍ନବୀ, ଆର୍ଜିକୀୟା ନଦୀର ନାମ ବିଦ୍ୟମାନ । ଅନାର୍ଯ୍ୟବର୍ବର ଜାତିର କଥା କୀକଟ ଅର୍ଥାତ୍ ଦକ୍ଷିଣ ମଗଧର ବର୍ବରଗଣର କଥା, ସୂର୍ଯ୍ୟଗ୍ରହଣ, ବଂଶାନୁକ୍ରମେ ମନ୍ତ୍ରରକ୍ଷା, ମୁଦ୍ରା ପ୍ରଚଳନ, ଲୌହ କଳଶ, ବିବାହରେ ବରବେଶ, ଧାତୁଦ୍ରବ୍ୟ କରଣ, କର୍ମକାରର ଯନ୍ତ୍ର, ଦଧି, ସୁରା ପ୍ରଭୃତି ରଖିବାର ଚର୍ମାଧାର, ହିରଣ୍ମୟ କବଚ, ଗୋଚର୍ମାବୃତ ଯୁଦ୍ଧରଥ, ଯୁଦ୍ଧ ଦୁନ୍ଦୁଭି ପ୍ରଭୃତି ବର୍ଣ୍ଣିତ ହୋଇଅଛି । ନଦୀକୂଳ ଓ ଉର୍ବରା ଭୂମିଲାଗି ବିବାଦ, ଭେକ ଓ ସାରମେୟ ସ୍ତୁତି ପ୍ରଭୃତି ବିଦ୍ୟମାନ । ସୁଦାସ ରାଜାର କଥା, ସ୍ୱର୍ଗ ଓ ଅମରତ୍ୱ ଲାଭ, ସୋମରସ ପ୍ରସ୍ତୁତି ପ୍ରଣାଳୀ ଏବଂ ସମୁଦ୍ର ମନ୍ଥନାଦି କେତେଗୁଡ଼ିଏ ବୈଦିକ ଉପାଖ୍ୟାନ, ଅନ୍ତ୍ୟେଷ୍ଟି କ୍ରିୟାର ମନ୍ତ୍ର, ସତ୍ୟର ସମ୍ମାନ, କନ୍ୟା ବିବାହେ ଅଳଙ୍କାର ଦାନ, ଅଗ୍ନିଦାହ ପ୍ରଥା ଓ ମୃତଦେହ ମୃତ୍ତିକାରେ ସ୍ଥାପନ, କୂପ ଖନନ, ପଶୁଚାରଣ, ମେଷ ଲୋମରେ ବସ୍ତ୍ର ବୟନ, ଆର୍ଯ୍ୟ ନିବାସ ସ୍ଥାନ, ଶୋକ ପ୍ରକାଶ ପ୍ରଥା, ଭାଷାର ଆଲୋଚନା, ଜ୍ୟୋତିଷ କଥା, ସପତ୍ନୀଗଣ ଉପରେ ପ୍ରଭୁତ୍ୱ ଲାଭ ମନ୍ତ୍ର, ଗର୍ଭରକ୍ଷା ମନ୍ତ୍ର, ଆରୋଗ୍ୟମନ୍ତ୍ର, ଅମଙ୍ଗଳନାଶନ ମନ୍ତ୍ର, ରାଜାଭିଷେକ ମନ୍ତ୍ର ଇତ୍ୟାଦି ବହୁଳ ଭାବରେ ଆଲୋଚିତ । ସାମାଜିକ, ବୈଜ୍ଞାନିକ, ଗୃହ୍ୟ ଓ ଧର୍ମ ବିଷୟକ କଥା ଋଗ୍‌ବେଦରେ ଦେଖିବାକୁ ମିଳେ । ଏତଦ୍‌ଦ୍ୱାରା ବୁଝାଯାଏ କି ପ୍ରାଚୀନ ଆର୍ଯ୍ୟମାନେ ବିଭିନ୍ନ ବିଷୟରେ କେଉଁ ଜ୍ଞାନ ସଞ୍ଚୟ କରିଥିଲେ, ସେ ସମସ୍ତ ଥରେ ଆନୁପୂର୍ବିକ ଆଲୋଚନା ନକରି ଆର୍ଯ୍ୟଗଣଙ୍କର କରଣୀ ବା ଅନୁସୃତ ସରଣି ବିଷୟରେ ତୀବ୍ର ଆକ୍ଷେପ କରିବା ବିଡ଼ମ୍ବନା ମାତ୍ର ।

## ଯଜୁର୍ବେଦ

ଯଜୁର୍ବେଦ ସଂହିତାର ତୈତ୍ତରୀୟ ନାମ ବ୍ୟତୀତ କୃଷ୍ଣଯଜୁଃ ବୋଲି ମଧ୍ୟ ଅପର ଏକ ନାମ ଅଛି । ତୈତ୍ତରୀୟ ସଂହିତା ୨୭ଟି ଶାଖାରେ ବିଭକ୍ତ । ବୈଶମ୍ପାୟନ ଯାଜ୍ଞବଲ୍କ୍ୟାଦି ଶିଷ୍ୟଙ୍କୁ ବେଦାଧ୍ୟାପନା କରାଇଲାବେଳେ ଯେଉଁ କାଣ୍ଡ ଘଟିଥିଲା ତାହା ମହୀଧର ଭାଷ୍ୟର ଉପୋଦ୍‌ଘାତରୁ ଜଣାଯାଏ । କୌଣସି କାରଣରୁ ବୈଶମ୍ପାୟନ ଯାଜ୍ଞବଲ୍କ୍ୟଙ୍କ ପ୍ରତି କ୍ରୁଦ୍ଧ ହୋଇ କହିଲେ କି, "ତୁମ୍ଭେ ମୋ ନିକଟରୁ ଯେଉଁ ବେଦୋପଦେଶ ପାଇଅଛ, ତାହା ପ୍ରତ୍ୟର୍ପଣ କର ।" ଯାଜ୍ଞବଲ୍କ୍ୟ ପରମ ଯୋଗୀ ଥିଲେ । ତେଣୁ ଗୁରୁଙ୍କ ଆଜ୍ଞାମାତ୍ରେ ଯୋଗ ପ୍ରଭାବରୁ ସେ ଅଧୀତ ବିଦ୍ୟାକୁ ମୂର୍ତ୍ତିମତୀ କରି ବମନ କରିଦେଲେ । ତଦର୍ଶନେ ଗୁରୁ ଉପସ୍ଥିତ ଅପର ଶିଷ୍ୟମାନଙ୍କୁ ଆଦେଶ ଦେଲେ, 'ତୁମ୍ଭେ ବାନ୍ତଯଜୁଃ ସମୂହକୁ ଗ୍ରହଣ କର' । ଶିଷ୍ୟଗଣ ତିତ୍ତିରୀ ପକ୍ଷୀ ରୂପ ଧାରଣ କରି ତାହା ଗ୍ରହଣ କଲେ । ଅତଏବ ଯଜୁର୍ବେଦ ସଂହିତା ତୈତ୍ତରୀୟ ସଂହିତା ନାମେ ଅଭିହିତ ହେଲା । ବୁଦ୍ଧିମାଳିନ୍ୟ ବଶରୁ ଯଜୁଗୁଡ଼ିକ କୃଷ୍ଣବର୍ଣ୍ଣ ହୋଇଥିଲା, ତଦବଧି କୃଷ୍ଣ ଯଜୁର୍ବେଦ ନାମେ ତାହା ଅଭିହିତ; କିନ୍ତୁ ଯୋଗୀ ଯାଜ୍ଞବଲ୍କ୍ୟ କଠୋର ତପଃଦ୍ୱାରା ସୂର୍ଯ୍ୟଙ୍କୁ ତୃପ୍ତକରି ତାହାଙ୍କଠାରୁ ଅନ୍ୟବିଧି ଯଜୁଃ ପ୍ରାପ୍ତହୋଇ ଜାବାଳି ପ୍ରଭୃତି ପଞ୍ଚଦଶ ଜଣ ଶିଷ୍ୟଙ୍କୁ ସେହି

ଯଜୁଃ ଉପଦେଶ ଦେଲେ । ସୂର୍ଯ୍ୟପ୍ରଦତ୍ତ ବେଦ ବିଶୁଦ୍ଧ ହେତୁ ତାହା ଶୁକ୍ଳ ଯଜୁର୍ବେଦ ନାମେ ଖ୍ୟାତ । ଏହାର ଅପର ନାମେ ବାଜସନେୟ ସଂହିତା । ଯାଜ୍ଞବଲ୍କ୍ୟଙ୍କ ପିତାଙ୍କ ନାମ ବାଜସନି ଥିବାରୁ ସେ ପୈତୃକ ନାମାନୁସାରେ ବୈଦିକ ସାହିତ୍ୟରେ ପରିଚୟ ଦେଲେ । ଯାଜ୍ଞବଲ୍କ୍ୟଙ୍କ ପନ୍ଦରଜଣ ଶିଷ୍ୟ ମଧ୍ୟରୁ ମାଧ୍ୟନ୍ଦିନ ମେଧାବୀ ଛାତ୍ର । ସେ ନିଜ ନାମରେ ମାଧ୍ୟାନ୍ଦିନ ଶାଖା ପ୍ରଚଳନ କଲେ । ଶୁକ୍ଳ ଓ କୃଷ୍ଣ ଯଜୁର୍ବେଦ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅଛି । ଏପରିକି ଉଭୟଙ୍କ ମଧ୍ୟେ ପ୍ରବଳ ଶତ୍ରୁତା ଥିବା ମଧ୍ୟ ସ୍ପଷ୍ଟ ହେଉଅଛି । କୃଷ୍ଣ ଯଜୁର୍ବେଦର ଚରକ ଶାଖୀୟମାନେ ଶୁକ୍ଳ ଯଜୁର୍ବେଦର ଅଧ୍ୱର୍ଯ୍ୟୁକୁ ସ୍ୱୀକାର ନକରି ବରଂ ନିନ୍ଦା ରଚନା କରିଅଛନ୍ତି । ସୁପବିତ୍ର ବେଦ ଗ୍ରନ୍ଥରେ ମଧ୍ୟ ବିଦ୍ୱେଷ ପୂର୍ଣ୍ଣମାତ୍ରାରେ ଥିବାଠାରେ ଅନ୍ୟ ସାମ୍ପ୍ରଦାୟିକଙ୍କ କଥା ପଚାରୁଛି କିଏ । କୃଷ୍ଣ ଯଜୁର୍ବେଦର ଏହି କୁତ୍ସିତ ମତର ପ୍ରତିଶୋଧ ନେବାଲାଗି ଶୁକ୍ଳଯଜୁର୍ବେଦୀ ଚରକାଚାର୍ଯ୍ୟଙ୍କୁ ଦୁଃକୃତ ସନ୍ନିଧାନେ ବଳି ଦେବ ବୋଲି ମଧ୍ୟ କହିଅଛନ୍ତି । ଯଥା :- ''ଦୁସ୍କୃତାୟ ଚରକାଚାର୍ଯ୍ୟଂ ବଳିଂଦଦ୍ୟାତ୍'' (ବାଜସନେୟ) । ଧନ୍ୟରେ ଦୁରାଗ୍ରହ !

ପାଠକଗଣର କୌତୂହଳ ନିବୃତ୍ତି ଲାଗି ଗୃହଛିଦ୍ର ମନେ ନକରି ଅନ୍ୟାନ୍ୟ ବେଦରୁ ବିଦ୍ୱେଷସୂଚକ ଋକ୍ କେତୋଟି ନିମ୍ନରେ ପ୍ରଦତ୍ତ ହେଲା । ଅଥର୍ବବେଦୀଗଣ ବେଦତ୍ରୟୀର ଭିନ୍ନ ଭିନ୍ନ ଋତ୍ୱିକକୁ ଯଥେଷ୍ଟ ଭର୍ତ୍ସନା କରି ଅଥର୍ବବେଦୀ ଋତ୍ୱିକର ହିଁ ଯଥେଷ୍ଟ ପ୍ରଶଂସା କରିଅଛନ୍ତି । ଯଥା -

''ବହ୍ୱୃଚେହନ୍ତି ବୈରାଷ୍ଟ୍ରଂ ଅଧ୍ୱର୍ଯ୍ୟୁର୍ନାଶୟେତ୍ସୁତାନ୍
ଛନ୍ଦୋଗୋଧନଂ ନାଶୟେତ୍ ତସ୍ମାତ୍ ଅଥର୍ବଣୋଗୁରୁଃ ।
ଅଜ୍ଞାନାଦ୍ୱା ପ୍ରମାଦାଦ୍ୱା ଯସ୍ୟସ୍ୟାତ୍ ବହବୃଚୋ ଗୁରୁଃ
ଦେଶରାଷ୍ଟ୍ର ପୁରାମାତ୍ୟ ନାଶସ୍ତସ୍ୟ ନ ସଂଶୟଃ ।
ଯଦିବାଧ୍ୱର୍ଯ୍ୟବଂରାଜା ବିଜୁନକ୍ତି ପୁରୋହିତଂ
ଶସ୍ତ୍ରେଣ ବଧ୍ୟତେକ୍ଷିପ୍ରଂ ପରିକ୍ଷୀଣାର୍ଥ ବାହନଃ ।
ଯଥୈବ ପଙ୍ଗୁରଧ୍ୱାନ ମପକ୍ଷୀଚାଣ୍ଡଭାଜନଂ
ଏବଂ ଛନ୍ଦୋଚ ଗୁରୁଣା ରାଜାବୃଦ୍ଧିଂ ନ ଗଚ୍ଛତି ।'' (ଅଥର୍ବ ସଂହିତା)

ବହ୍ୱୃଚ ଅର୍ଥାତ୍ ଋଗ୍‌ବେଦୀ ଋତ୍ୱିକ୍ ଯଜମାନର ରାଜ୍ୟ ନାଶକରେ, ଯଜୁର୍ବେଦୀ ଋତ୍ୱିକ୍ ଯଜମାନର ପୁତ୍ରନାଶକରେ, ସାମବେଦୀ ଋତ୍ୱିକ୍ ଯଜମାନର ଅର୍ଥ ନାଶ କରେ । ଅତଏବ ଅଥର୍ବବେଦୀ ଋତ୍ୱିକ୍ ହିଁ ପ୍ରକୃତ ଗୁରୁ । ଅଜ୍ଞାନ ବା ପ୍ରମାଦ ବଶର ଯେଉଁ ରାଜା ଋଗ୍‌ବେଦୀ ଋତ୍ୱିକ୍‌କୁ ଗୁରୁ କରେ ତାହାର ଦେଶ, ରାଜ୍ୟ, ନଗର, ଅମାତ୍ୟ ନଷ୍ଟ ହୁଏ । ଯଜୁର୍ବେଦୀ ପୁରୋହିତ କଲେ ଧନ ଓ ବାହନ ବିହୀନ ହୁଏ ଏବଂ ଅସ୍ତ୍ରାଘାତରେ ପ୍ରାଣତ୍ୟାଗ କରେ । ପଙ୍ଗୁ ଯେପରି ପଥ ଗମନରେ ଅଶକ୍ତ, ପକ୍ଷୀ ଭିନ୍ନ ଜୀବ ଯେପରି ଅଣ୍ଡ ପ୍ରସବେ ଅସମର୍ଥ, ରାଜା ସେପରି ସାମବେଦୀ ଗୁରୁଦ୍ୱାରା ଉନ୍ନତି ଲାଭେ ଅକ୍ଷମ ହୁଏ । ଏହି ବେଦବାକ୍ୟର ବିରୁଦ୍ଧରେ ଅନ୍ୟ ବେଦ କହେ-

''ପୁରୋଧା ଜଳଦୋ ଯସ୍ୟ ମୌଦୋବାସ୍ୟାତ୍ କଥଂଚନ ।
ଅବ୍ଦାଦ୍ଦଶେଭ୍ୟୋ ମାସେଭ୍ୟୋ ରାଷ୍ଟ୍ରଭ୍ରଂଶଂ ସଗଚ୍ଛତି ।।''

ଅର୍ଥାତ୍ ଜଳଦ ଓ ମୌଦ ଦୁଇ ଶାଖୀୟ ବ୍ରାହ୍ମଣକୁ ପୁରୋହିତ କଲେ ଦଶମାସ ମଧ୍ୟରେ ରାଜା ରାଜ୍ୟଭ୍ରଷ୍ଟ ହୁଏ । ଅଥର୍ବବେଦର ଜଳଦ ଓ ମୌଦ ଦୁଇଗୋଟି ଶାଖା ଅଛି, ସେ ଦୁହିଁଙ୍କ ପ୍ରତି ଏ ଆକ୍ଷେପୋକ୍ତି । ଏହିପରି ସାମବେଦର ବ୍ରାହ୍ମଣ ଭାଗରେ ଋଗ୍‌ବେଦୀ ବ୍ରାହ୍ମଣକୁ ବହୁତ ନିନ୍ଦା କରାଯାଇଅଛି । ସେ ସମସ୍ତ ବିସ୍ତୃତ ଭାବେ ଲେଖି ଜାତୀୟ କଳଙ୍କକୁ ବାହାରେ ପ୍ରକାଶ କରିବା ଅନୁଚିତ । କିନ୍ତୁ ଏ ସମସ୍ତ ବାକ୍ୟ ପରବର୍ତ୍ତୀ ଦ୍ୱେଷୀଙ୍କର ପ୍ରକ୍ଷିପ୍ତ ବୋଲି ସୁସ୍ପଷ୍ଟ ବୋଧହୁଏ । ଥାଉ ସେକଥା, ଅତଃପର ପ୍ରକୃତ ଅନୁସରଣ କରାଯାଉ । ତୈତ୍ତରୀୟ ଉପନିଷତ୍ ତିନିଭାଗରେ ବିଭକ୍ତ । ପ୍ରଥମଭାଗ ଶିକ୍ଷାବଲ୍ଲୀ । ଏହି ଅଂଶରେ ବ୍ୟାକରଣ ସମ୍ବନ୍ଧେ କିଞ୍ଚିତ୍ ଆଲୋଚନା ଅଛି । ତା'ପରେ ଅଦ୍ୱୈତବାଦର ଶ୍ରୁତ୍ୟାଦି ଆଲୋଚିତ । ଦ୍ୱିତୀୟ ଭାଗର ନାମ ଆନନ୍ଦବଲ୍ଲୀ । ତୃତୀୟ ଭାଗର ନାମ ଭୃଗୁବଲ୍ଲୀ । ଏ ଦୁଇଭାଗ ଏକତ୍ର ବାରୁଣୀ ଉପନିଷତ୍ ନାମେ ଅଭିହିତ । ଏଥିରେ ବ୍ରହ୍ମବିଦ୍ୟାର ପରାକାଷ୍ଠା ପ୍ରଦର୍ଶିତ । ଶ୍ରୀ ଶଙ୍କରାଚାର୍ଯ୍ୟ ତୈତ୍ତରୀୟ ଉପନିଷଦ୍‌ର ଭାଷ୍ୟ ରଚନା କରିଅଛନ୍ତି । ଫଳତଃ ତୈତ୍ତରୀୟ ଆରଣ୍ୟକରେ ଶ୍ରୁତି, ସ୍ମୃତି, ଇତିହାସ, ପୁରାଣ ଓ ବ୍ରହ୍ମବିଦ୍ୟାର ବହୁଳ ସାରତତ୍ତ୍ୱ ଆଲୋଚିତ ହୋଇଅଛି ।

## ସାମବେଦ

ଗୀତାରେ ଶ୍ରୀକୃଷ୍ଣ ଭଗବାନ କହିଅଛନ୍ତି, ''ବେଦାନାଂ ସାମବେଦୋଽସ୍ମି'' । ଅର୍ଥାତ୍ ବେଦ ମଧ୍ୟରେ ମୁଁ ସାମବେଦ ଅଟେ । ତେବେ ସାମବେଦର ଏ ଉତ୍କୃଷ୍ଟତା କାହିଁକି ? ମଧୁସୂଦନ ସରସ୍ୱତୀ ଲେଖିଛନ୍ତି, ''ବେଦାନାଂମଧ୍ୟେ ସାମୋ ମାଧୁର୍ଯ୍ୟେଣାଜି ରମଣୀୟଃ'' । ବେଦ ମଧ୍ୟରେ ସାମ ମାଧୁର୍ଯ୍ୟବଶତଃ ଅତି ରମଣୀୟ । ଏହି ବେଦ ନାନାବିଧ ମନ୍ତ୍ରରେ ନିଜ କଳେବର ବୃଦ୍ଧି କରିଅଛି, ଏତଦ୍ୱାରା କ୍ରମଶଃ ଆର୍ଯ୍ୟଗଣର ଗାନସ୍ପୃହା ବଳବତୀ ହେବା ସ୍ପଷ୍ଟ ପ୍ରତୀତ ହୁଏ । ସାମବେଦର ଋକ୍‌ଗୁଡ଼ିକ ଅଧିକାଂଶ ଋଗ୍‌ବେଦରେ ଦେଖିବାକୁ ମିଳେ । କିନ୍ତୁ ଋକ୍‌ଗୁଡ଼ିକରେ ବର୍ଣ୍ଣ, ପଦବିନ୍ୟାସ, ଉଚ୍ଚାରଣର ସ୍ୱତନ୍ତ୍ର ନିୟମ ଅଛି । ଏଥିରେ ନାନାବିଧ ଯାଗଯଜ୍ଞର ପ୍ରଶଂସା, ମୂଳପ୍ରକୃତିର ବିଚାର, ବିବିଧ ଉପାଖ୍ୟାନ ଏବଂ ଐତିହାସିକଗଣର ଜ୍ଞାତବ୍ୟ ବହୁ ବିଷୟ ବିଦ୍ୟମାନ ।

## ଅଥର୍ବ ବେଦ

ଏହି ବେଦର ସମସ୍ତ ମନ୍ତ୍ର ହିଁ ଋଗ୍‌ବେଦୋକ୍ତ ଲକ୍ଷଣ ସମାଯୁକ୍ତ । ଅନ୍ୟ ବେଦଦ୍ୱୟର ମଧ୍ୟ ଉପଦେଶ ବିଜଡ଼ିତ । ଏହି ବେଦ ଅଥର୍ବାଖ୍ୟ ଋଷିପ୍ରଣୀତ ବୋଲି ଏହାର ନାମ ଅଥର୍ବବେଦ । ଅର୍ବାଚୀନ ହେତୁ ଏହା ବେଦମଧ୍ୟେ ଗଣ୍ୟ ନୁହେଁ ବୋଲି ଅନେକେ ତର୍କ କରନ୍ତି । ସୁତରାଂ ସପକ୍ଷବାଦୀମାନେ ତ୍ରୟୀର ବାକ୍ୟ ପ୍ରମାଣଦେଇ ଏହାକୁ ସୁଦ୍ଧା ବେଦ ବୋଲି ସ୍ୱୀକାର

କରିଅଛନ୍ତି । ଅଥର୍ବବେଦର ବ୍ରାହ୍ମଣଗ୍ରନ୍ଥ ମଧ୍ୟରେ ଗୋପଥବ୍ରାହ୍ମଣ ହିଁ ପ୍ରସିଦ୍ଧ । ସମଗ୍ର ଗ୍ରନ୍ଥ ପୂର୍ବୋତ୍ତର ଦୁଇ ଖଣ୍ଡରେ ଏବଂ ଏଗାର ପ୍ରପାଠକରେ ବିଭକ୍ତ । ପୂର୍ବାର୍ଦ୍ଧରେ ନାନାପ୍ରକାର ଆଖ୍ୟାନ ଏବଂ ଉତ୍ତରାର୍ଦ୍ଧରେ କର୍ମକାଣ୍ଡର ଅବତାରଣା ।

## ଅଥର୍ବବେଦର ପ୍ରତିପାଦ୍ୟ ବିଷୟ

ଯଥା- ''ପୌରୋହିତ୍ୟ ଶାନ୍ତିକ ପୌଷ୍ଟିକାନି ରାଜ୍ଞା ଅଥର୍ବବେଦେନ କାରୟେତ୍'' । ରାଜା ଅଥର୍ବଦ୍ୱାରା ପୌରୋହିତ୍ୟ, ଶାନ୍ତିକ, ପୌଷ୍ଟିକ କରାଇବ । ଅଥର୍ବବେଦ ମଧ୍ୟେ କୌଶିକ ସୂତ୍ରଖଣ୍ଡିକ ପ୍ରଧାନତମ । ଏଥିରେ ସ୍ଥାଲୀପାକ ବିଧାନେ ଦର୍ଶପୂର୍ଣ୍ଣମାସ ବିଧି, ମେଧାଜନନ, ଗ୍ରାମ, ଦୁର୍ଗ, ରାଷ୍ଟ୍ର ଲାଭାଦି, ଗଜତୁରଙ୍ଗାଦି ସର୍ବସଂପତ୍ ଲାଭ, ରାଜକର୍ମ ସମୁଦାୟ ଅର୍ଥାତ୍ ଶସ୍ତ୍ରନିର୍ମାଣ, ଶତ୍ରୁସ୍ତମ୍ଭନଠାରୁ ରାଜାର ରାଜ୍ୟାଭିଷେକ ପର୍ଯ୍ୟନ୍ତ ସମସ୍ତ ବିଷହରଣ ଔଷଧି, ଗର୍ଭାଧାନ, ପୁଂସବନାଦି କର୍ମ ଇତ୍ୟାଦୀଷ୍ଟ ବାଧାନିବାରଣୋପାୟ, ସଭାଜୟ କର୍ମ, ନଦୀପ୍ରବାହତରଣ, ବୃଷ୍ଟି କର୍ମ, ଭୂକମ୍ପାଦି ଉତ୍ପାତ ଉପଶମନ ପ୍ରଭୃତି ଅଛି । ବୈତୟନ ସୂତ୍ରେ ନକ୍ଷତ୍ରକଳ୍ପରେ ଶୁଦ୍ଧିକାମୀର ସାବିତ୍ରୀ, ବ୍ରହ୍ମବର୍ଚ୍ଚସକାମୀର ଗାୟତ୍ରୀ, ରାଜ୍ୟକାମୀର ମାହେନ୍ଦ୍ରୀ, ଧନକାମୀର କୌବେରୀ, ରୋଗାର୍ତ୍ତ ଓ ଆପଦ୍‌ଗ୍ରସ୍ତର ରୌଦ୍ରୀ, ଯମଭୟେ ଯାମ୍ୟା, ଜଳ ଭୟେ ବାରୁଣୀ ପ୍ରଭୃତି ଅନେକ ବିଦ୍ୟାର ବିଚାର ବିଦ୍ୟମାନ ଅଛି । ଆଙ୍ଗୀରସ କଳ୍ପରେ କର୍ତ୍ତା ଓ କାରୟିତା ସଦସ୍ୟଗଣର ଆତ୍ମରକ୍ଷଣ ବିଧି ଓ ଅଭିଚାର କର୍ମ ଲାଗି ଦେଶ କାଳ ମଣ୍ଡପ ଇତ୍ୟାଦି ବିଷୟ ଆଲୋଚିତ । ଶାନ୍ତି କଳ୍ପରେ ବୈନାୟକ ଗ୍ରହ ଗୃହୀତ ଲକ୍ଷଣ, ତତ୍‌ଶାନ୍ତି ଲାଗି ଦ୍ରବ୍ୟସମ୍ଭାର ଆହରଣ ଓ ହୋମପୂଜାଦି, ଆଦିତ୍ୟାଦି ନବଗ୍ରହ ଯଜ୍ଞ ବିଚାର, ରାଜ୍ୟାଭିଷେକ ବ୍ୟାପାରେ ଦ୍ରବ୍ୟସମ୍ଭାରାଦି ଏବଂ ରାଜାର ପ୍ରାତଃକୃତ୍ୟଠାରୁ ଯାବତୀୟ ଦାନ ପ୍ରଭୃତି ଏଥିରେ ସନ୍ନିବେଶିତ ହୋଇଅଛି ଏବଂ ଅଥର୍ବଣ ଉପନିଷଦ୍, ପ୍ରଶ୍ନ, ମାଣ୍ଡୁକ୍ୟ, ନୃସିଂହତାପିନୀ ପ୍ରଭୃତି ଉପାଦେୟ ଉପନିଷଦ୍‌ମାନ ବିଦ୍ୟମାନ । ଏଗୁଡ଼ିକର ଭାଷ୍ୟ ଶଙ୍କର ପ୍ରଭୃତି ଖ୍ୟାତନାମା ମନୀଷୀମାନେ ରଚନା କରିଅଛନ୍ତି । ଏତଦ୍‌ବ୍ୟତୀତ ୯୭ ଗୋଟି ଆଥର୍ବଣୋପନିଷତ୍ ଅଛି । ଗ୍ରନ୍ଥ ବାହୁଲ୍ୟ ଭୟରୁ ସେ ସକଳର ନାମ ନଲେଖି ଏତାବନ୍ମାତ୍ର ପରିଚୟ ଦେଇ ବିରତ ହେଲୁ ।

## ବୈଦିକ ଯୁଗର ସାମାଜିକ ବ୍ୟବସ୍ଥା ଓ ରୀତିନୀତି

ଉକ୍ତ ସମୟରେ ଯୌବନ ପ୍ରାପ୍ତି ପରେ ହିଁ ସ୍ତ୍ରୀଲୋକର ବିବାହ ହେଉଥିଲା । ପତିର ମୃତ୍ୟୁପରେ ସ୍ତ୍ରୀ ଦେବରକୁ ବିବାହ କରୁଥିଲାଏବଂ ଗୁପ୍ତପ୍ରସବ, ବ୍ୟଭିଚାର ଓ ଦ୍ୟୁତିକ୍ରୀଡ଼ାଦ୍ୱାରା ଅର୍ଥୋପାର୍ଜନାଦି କଦାଚାର ମଧ୍ୟ ପ୍ରଚଳିତ ଥିଲା । ଆର୍ଯ୍ୟମାନେ ରାଜା, ପୁରୋହିତ, ଗ୍ରାମଣୀ ଇତ୍ୟାଦି ବିଭିନ୍ନ ପଦରେ ବିଭକ୍ତ ଥିଲେ । ଶୀତପ୍ରଧାନ ଦେଶରେ ବାସ କରିବାରୁ ସେମାନେ ସ୍ୱାସ୍ଥ୍ୟଲାଗି ସମଧିକ ସୁରାପ୍ରିୟ ଥିଲେ, ଋକ୍‌ବେଦର ୧।୧୧୬।୭ ମନ୍ତ୍ରଦ୍ୱାରା ତାହା ସ୍ପଷ୍ଟ ହୁଏ ।

ଚର୍ମାଧାରରେ ସୁରା ରଖି ବିକ୍ରୟ କରୁଥିଲେ । ଏହା ୧।୧୯ ୧।୧୦ ଋକ୍‌ରେ ଦେଖାଯାଏ । ଆର୍ଯ୍ୟମାନେ ବାଣିଜ୍ୟ ଲାଗି ଦେଶଭ୍ରମଣ ଓ ସମୁଦ୍ର ଯାତ୍ରା ମଧ୍ୟ କରୁଥିଲେ । ସୋମରସ ପ୍ରସ୍ତୁତ ଆର୍ଯ୍ୟଗଣର ଧର୍ମ କର୍ମ ମଧ୍ୟେ ପରିଗଣିତ ଥିଲା । ଋକ୍‌ସଂହିତାରେ ଯୋଗାଦିର କଥା ନାହିଁ, କିନ୍ତୁ ଯଜୁରେ ମାତ୍ର ଚାରିଯୁଗର କଥା ବିଦ୍ୟମାନ । ବେଦସଂହିତା ଭାରତବର୍ଷୀୟ ସନାତନ ଧର୍ମର ଆଦିମ ଅବସ୍ଥା । ବ୍ରାହ୍ମଣ ଓ ଆରଣ୍ୟକ ସମୁଦାୟ ଦ୍ୱିତୀୟାବସ୍ଥା । କଳ୍ପସୂତ୍ର ଓ ସ୍ମୃତିସଂହିତା ତୃତୀୟାବସ୍ଥା । ପୁରାଣ ଓ ତନ୍ତ୍ରର ପ୍ରଚଳନ ଚତୁର୍ଥାବସ୍ଥା । ବୈଦିକ କ୍ରିୟାକଳାପ ଏକ ସମୟରେ ପ୍ରଚଳିତ ହୋଇନାହିଁ । କେତେକ ବୈଦିକ ଋଷି ବିଶ୍ୱାସ କରୁଥିଲେ ଯେ, ଦେବତାଗଣ କ୍ରୋଧ ଓ ହିଂସା ପରବଶ ହୋଇ ଶତ୍ରୁସଂହାର କରନ୍ତି ଓ ପ୍ରବୃତ୍ତି ବିଶେଷର ବଶବର୍ତ୍ତୀ ହୋଇ ଦାରପରିଗ୍ରହ କରନ୍ତି । ଯଥା :-

ଉତନ୍ନାବ୍ୟନ୍ତୁ ଦେବପତ୍ନୀରିନ୍ଦ୍ରାଣୀ ଅଗ୍ନାୟ୍ୟଶ୍ୱିନୀରାଦ,
ଆରୋଦାସୀ ବରୁଣାନି, ଶୃଣୋତୁ ବ୍ୟନ୍ତୁଦେବୀର୍ଯ୍ୟ ଋତୁର୍ବନୀନାଂ ।''

ଅର୍ଥାତ୍ ଇନ୍ଦ୍ରପତ୍ନୀ ଇନ୍ଦ୍ରାଣୀ, ଅଗ୍ନିପତ୍ନୀ ଆଗ୍ନେୟୀ, ଅଶ୍ୱିନ୍‌ପତ୍ନୀ ଦୀପ୍ତିମତୀ, ରୁଦ୍ରପତ୍ନୀ ରୋଦସୀ, ବରୁଣପତ୍ନୀ ବରୁଣାନୀ ପ୍ରଭୃତି ଦେବପତ୍ନୀଗଣ ହବି ଭକ୍ଷଣ କରନ୍ତୁ । କୌଣସି କୌଣସି ମନ୍ତ୍ରରୁ ପ୍ରକାଶ ହୁଏ, ଯେ, ଦେବତାଗଣ ମଧ୍ୟରେ ସୁଦ୍ଧା ମହତ୍, ନିକୃଷ୍ଟ, କନିଷ୍ଠ ଓ ଜ୍ୟେଷ୍ଠ ପ୍ରଭୃତି ଅଛନ୍ତି । ଯଥାଃ- ''ନମୋ ମହଦ୍ଭ୍ୟୋ ନମୋ ଅଭିକେଭ୍ୟଃ ନମୋ ଯୁବଭ୍ୟୋ ଅଶ୍ୱିନେଭ୍ୟଃ ଯଜାମଦେବାନ୍ ଯଦିସକବାମ ମାଜ୍ୟାୟସଃ ଶଂସମାବୃକ୍ଷିଦେବାଃ'' । ମହାଦେବଗଣଙ୍କୁ ନମସ୍କାର, ଅଳ୍ପ ଗୁଣଶାଳୀ ଦେବଗଣଙ୍କୁ ନମସ୍କାର, ଯୁବା ଓ ବୃଦ୍ଧ ଦେବତାଗଣଙ୍କୁ ନମସ୍କାର ଇତ୍ୟାଦି ।

## ଷଡ଼ଙ୍ଗ

ପୂର୍ବୋକ୍ତ ବେଦଗ୍ରନ୍ଥ ଷଡ଼ଙ୍ଗ ଅଧ୍ୟୟନ ବିନା ବୋଧ ହେବା ଅସମ୍ଭବ । ଅତଏବ ଷଡ଼ଙ୍ଗ ଅର୍ଥାତ୍ ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ ଛନ୍ଦ, ଜ୍ୟୋତିଷର ବିଷୟ ଏଠାରେ ଆଲୋଚନା କରାଯାଉ ।

## ଷଡ଼ଙ୍ଗର ପୂର୍ବାଭାସ

ବୈଦିକ ଋଷିମାନଙ୍କର ନାମ ସାଧନ ସଙ୍କେତ ସମନ୍ୱିତ ବେଦ ନିତ୍ୟ ଓ ଅପୌରୁଷେୟ ଏବଂ ତାହା ବ୍ରହ୍ମରେ ପର୍ଯ୍ୟବସିତ; ସୁତରାଂ ବେଦ ପରମାତ୍ମା ପ୍ରଚାରିତ । ଷଡ଼ଙ୍ଗ; ବଦରେ ନିତ୍ୟ ବର୍ତ୍ତମାନ, ଅତଏବ ''ଜୀବଭୂତାପରା ପ୍ରକୃତି'' ବା ପୁରୁଷ ମଧ୍ୟରେ ସାଙ୍ଗ ବେଦ ନିତ୍ୟ ବର୍ତ୍ତମାନ । ଜୀବତତ୍ତ୍ୱ ଜ୍ଞାନରୁ ବେଦଜ୍ଞାନ, ସୁତରାଂ ଜୀବର ଷଡ଼ଭାବ ହିଁ ବେଦର ଷଡ଼ଙ୍ଗ ବୋଲି ବୁଝିବାକୁ ହେବ । ଷଡ୍‌ଭାବ ପଦରେ ଜୀବର ଅସ୍ତିତ୍ୱ, ଜନ୍ମ, ବୃଦ୍ଧିପ୍ରାପ୍ତି, ବିପରିଣାମ, ଅପକ୍ଷୟ ଏବଂ ନାଶ ଏମାନଙ୍କୁ ବୁଝାଏ ।

ଜୀବର ଅସ୍ତିତ୍ୱସୂଚକ ନାସିକାସ୍ଥ ପ୍ରାଣପ୍ରବାହ ହିଁ ସ୍ୱରୋଚ୍ଚାରଣ ପ୍ରଣାଳୀ ଶିକ୍ଷାଶାସ୍ତ୍ରର ବିଷୟ । ଅତଏବ ଅସ୍ତିତ୍ୱରୂପ ଶିକ୍ଷା ହିଁ ବେଦପୁରୁଷର ନାସିକା ସ୍ଥାନୀୟ । "ପବନବିଜୟ ସ୍ୱରୋଦୟ" ଗ୍ରନ୍ଥେ ସ୍ୱର ପଦରେ ପ୍ରାଣ ଓ ପରମାତ୍ମାଙ୍କୁ ବୁଝାଏ । ତୈତ୍ତରୀୟରେ ପ୍ରଥମ ଓ ଦ୍ୱିତୀୟ ଅନୁବାକରେ ଶିକ୍ଷାର ବ୍ୟାଖ୍ୟାରେ ପ୍ରାଣକର୍ମର କୌଶଳ ଓ ଅଭ୍ୟାସ ହିଁ ଶିକ୍ଷାଶାସ୍ତ୍ର ନାମେ ବିବୃତ ହୋଇଅଛି ।

ଜୀବର ଜନ୍ମ ହିଁ କଳ୍ପ ସ୍ଥାନୀୟ । ଜନ୍ମଠାରୁ ଜୀବ ଇନ୍ଦ୍ରିୟ ଦ୍ୱାରରେ ବହିର୍ଜଗତର ଜ୍ଞାନଗ୍ରହଣ କରେ ବୋଲି କଳ୍ପବେଦର ହସ୍ତ ପଦବାଚ୍ୟ ।

ଜୀବର ବର୍ଦ୍ଧନ ହିଁ ବେଦର ମୁଖ ସ୍ୱରୂପ । କଳ୍ପାଦି ଶାସ୍ତ୍ର ବେଦର ଅଙ୍ଗ । ବ୍ୟାକରଣ ପଦର ବ୍ୟୁତ୍ପତ୍ତିଏହି ଯେ, ଯାହା ନାମ ଓ ରୂପରେ ବିଶେଷ ଭାବେ ଆକାରିତ କରେ, ଯେହେତୁ ଜୀବର ମୁଖ ଦେଖି ଚିହ୍ନିବାକୁ ହୁଏ ।

ଜୀବର ବିପରିଣାମ ବେଦର ନିରୁକ୍ତ ସ୍ଥାନୀୟ । ବାଲ୍ୟାବଧି ବିପରିଣାମ ଅର୍ଥାତ୍ ଚରମ ପରିଣତି ପର୍ଯ୍ୟନ୍ତ ପ୍ରତ୍ୟେକ ଶବ୍ଦର ଅର୍ଥାନ୍ୱେଷଣରେ ଜୀବ ବ୍ୟସ୍ତ, ଅତଏବ ନିରୁକ୍ତ ବେଦପୁରୁଷର ଶ୍ରୋତ୍ରସ୍ଥାନୀୟ । ଯେହେତୁ ଜୀବ କର୍ଣ୍ଣରେ ଶ୍ରବଣ କରି ପ୍ରତ୍ୟେକ ଶବ୍ଦର ଅର୍ଥ ଗ୍ରହଣ କରେ ।

ଜୀବର ଅପକ୍ଷୟ ହିଁ ବେଦର ପାଦସ୍ଥାନୀୟ । ପ୍ରାଣଶକ୍ତିର କ୍ଷୟ ହେଲେ ଜୀବର ଚେଷ୍ଟାଦି କ୍ଷୟପ୍ରାପ୍ତ ହୁଏ । ଅର୍ଥାତ୍ ଗତି ସୁଦ୍ଧା କ୍ଷୀଣ ହୋଇପଡ଼େ । ଅତଏବ ଛନ୍ଦ ବେଦର ପାଦସ୍ଥାନୀୟ । ଜୀବର ନାଶ ବା ଭୌତିକ ଦେହପାତ ଜ୍ୟୋତିଷାୟନ । ଅର୍ଥାତ୍ ପ୍ରାକୃତ ମୃତ୍ୟୁରେ ବ୍ରହ୍ମଜ୍ୟୋତି, ସର୍ବଜ୍ୟୋତିର ଆଧାର ବ୍ରହ୍ମରେ ଲୟ ପ୍ରାପ୍ତହୁଏ । ଅତଏବ ଜ୍ୟୋତିଷାୟନ ହିଁ ବେଦପୁରୁଷର ଚକ୍ଷୁସ୍ଥାନୀୟ । ପୃଥକ୍ ପୃଥକ୍ ଅଙ୍ଗ ଶୀର୍ଣ୍ଣ ହେଲେ ଯେପରି କୌଣସି ଜୀବର ସମ୍ୟକ୍ ଜ୍ଞାନ ଅସମ୍ଭବ ତଦ୍‌ଗତ ଶିକ୍ଷାଦି ଶୀର୍ଣ୍ଣାଙ୍ଗ ହେଲେ ବେଦର ସମ୍ୟକ୍ ଜ୍ଞାନ ହୁଏନାହିଁ ।

ପରମାତ୍ମା ଜ୍ଞାନ ସ୍ୱରୂପ । ସେ ସୃଷ୍ଟିକାଳେ ବହୁତ ହେବା ଇଚ୍ଛାରେ ନିଜକୁ ଭିନ୍ନ ଭିନ୍ନ କରି ଜୀବ ମଧ୍ୟରେ ଅନୁପ୍ରବିଷ୍ଟ ହୋଇଅଛନ୍ତି । ତାହାହିଁ ଜୀବର ଆତ୍ମତତ୍ତ୍ୱରୂପ ସାମ୍‌ବେଦରେ ଏହା ବିଷଦୀକୃତ ।

ଇନ୍ଦ୍ର ପଦର ସ୍ୱରୋଚ୍ଚାରଣ ଦୋଷରୁ ବୃତ୍ର ଯଜ୍ଞରେ ଇନ୍ଦ୍ରନାଶ ନହୋଇ ସ୍ୱୟଂ ବୃତ୍ର ନଷ୍ଟ ହୋଇଥିବା ଦୃଷ୍ଟାନ୍ତଦ୍ୱାରା ଭାଷ୍ୟକାରଗଣ ଶିକ୍ଷାଦି ଶାସ୍ତ୍ର ଉପାଦେୟତା ପ୍ରତିପାଦନ କରିଅଛନ୍ତି ।

ବେଦ ସର୍ବତ୍ର ପରମାତ୍ମମହିମା ଉଦ୍‌ଘୋଷଣ କରିବାରେ ସର୍ବଦା ବ୍ୟସ୍ତ । ଅତଏବ ବେଦାଧ୍ୟୟନ ସତ୍‌କର୍ମମାନଙ୍କ ମଧ୍ୟରେ ଅନ୍ୟତମ । ଋଗ୍‌ବେଦ କହେ -

''ନତେ ଗିରୋ ଅପିମୃଷ୍ୟେ ତୁରସ୍ୟନ ସୁଷ୍ଟୁତି ମସୂର୍ଯ୍ୟସ୍ୟ ବିଦ୍ୱାନ୍
ସଦାତେନାମ ସ୍ୱୟଶୋବିବକ୍ମ''

ଅର୍ଥାତ୍ - ଭଗବତ ବାକ୍ୟରୂପ ଶାସ୍ତ୍ରର ମର୍ମାର୍ଥ ବିବେଚନା ଶକ୍ତି ମାନବର ନାହିଁ । ଏବଂ ସ୍ୱାନୁଭୂତିରେ କୂଟସ୍ଥ ଚୈତନ୍ୟ ରୂପ ତୀବ୍ରବେଗ ସମ୍ପନ୍ନ । ଅଥଚ ସ୍ଥିର ସତ୍ୟର ମଧ୍ୟ ସମ୍ୟକ୍ ସ୍ତୁତି ସମ୍ଭବ ହୁଏନାହିଁ; ଅତଏବ ଭଗବାନ୍ନାମରୂପ ସ୍ୱଯଶହିଁ ମାନବର ସର୍ବଦା କୀର୍ତ୍ତନୀୟ ।

ଶୁକ୍ଳ ଯଜୁର୍ବେଦରେ ଆପାମର ସମସ୍ତଙ୍କର ବେଦ ପାଠରେ ଅଧିକାର ଅଛି । ଯଥାଃ-

''ଯଥେମାଂ ବାଚଂ କଲ୍ୟାଣୀ ମାବଦାନି ଜନେଭ୍ୟଃ'' ଇତ୍ୟାଦି ।

ଅର୍ଥାତ୍ ଏହି କଲ୍ୟାଣୀ ବେଦବାଣୀ ମୁଁ ଆପାମର ଲୋକଙ୍କ ଭିତରେ ପ୍ରଚାର କଲି । ''ସ୍ତ୍ରୀଶୂଦ୍ରୌନାଧୀୟେତାଂ'', ଏହି ଋକ୍ ଖଣ୍ଡିକ ଧରି ବେଦ ପାଠରେ ସ୍ତ୍ରୀଶୂଦ୍ରାଦିର ଅଧିକାର ନାହିଁ ବୋଲିବା ଅସଙ୍ଗତ, ଅତଏବ ସାମବେଦ ଅଧ୍ୟୟନ ବିନା ପ୍ରକୃତ ତାତ୍ପର୍ଯ୍ୟ ଅବଗତ ହେବା କଠିନତର ବ୍ୟାପାର ।

ଉଦାର ଭାବମଣ୍ଡିତ ସୁପବିତ୍ର ବେଦ ଗ୍ରନ୍ଥରେ ଏହିପରି ସଂକୀର୍ଣ୍ଣତା ଅଶୋଭନୀୟ ନୁହେଁ କି? ଯେହେତୁ ବେଦ ନିଜେ ଘୋଷଣା କରୁଅଛି -

''ଆବିରଭୂନ୍ମହିମା ଘୋନମେଷାଂ ବିଶ୍ୱଂଜୀବଂତ ମସୋ ନିରମୋଚି'' ଇତ୍ୟାଦି ।
(ଋଗ୍‌ବେଦେ ୧୦।୯।୮।୧)

ପରମାତ୍ମା ଜୀବର ପିତାମାତା ଅପେକ୍ଷା ଆତ୍ମୀୟ ବନ୍ଧୁ । ସୁତରାଂ ତାହାଙ୍କୁ ଭାବିବାକୁ କାଳକାଳ ଶୌଚାଶୌଚ କୌଣସି କଥା ଆବଶ୍ୟକ ନାହିଁ ।

## ପାଣିନୀୟ ଶିକ୍ଷା

ପାଣିନି ଶିକ୍ଷାର ନାମ ''ବାକ୍ୟୋଚ୍ଚାରଣ ବିଧି'' । ଉଚ୍ଚାରଣରେ ସ୍ୱରର ଆବଶ୍ୟକତା ହେଉଛି ପ୍ରଧାନ । ସେଥିଲାଗି ଉଦାତ୍ତ, ଅନୁଦାତ୍ତ, ସ୍ୱରିତ, ହ୍ରସ୍ୱ, ଦୀର୍ଘ, ପ୍ଳୁତ, ଅନୁନାସିକ ଏବଂ ଅନନୁନାସିକ କ୍ରମରେ ସ୍ୱର ବିଭାଗ କରିଅଛନ୍ତି । ଉଦାତ୍ତ ଉଚ୍ଚସ୍ୱରେ, ଅନୁଦାତ୍ତ ନୀଚସ୍ୱରେ, ସ୍ୱରିତ ଉଭୟର ମଧ୍ୟବର୍ତ୍ତୀ ସ୍ୱରେ ଉଚ୍ଚାରଣୀୟ । ବ୍ୟାଘ୍ରୀ ଓ ମାର୍ଜାରୀ ନିଜ ନିଜ ଶାବକକୁ ଦନ୍ତରେ ଘେନି ଜାଗ୍ରତରେ ନେଲାପରି, କୌଣସି କଷ୍ଟ ନଦେଇ ବୈଦିକ ବାକ୍ୟ ଉଚ୍ଚାରଣୀୟ । ମାଧୁର୍ଯ୍ୟ, ସ୍ପଷ୍ଟୋଚ୍ଚାରଣ, ପଦଚ୍ଛେଦ, ସୁକଣ୍ଠ, ଧୈର୍ଯ୍ୟ ଓ ଲୟସାମର୍ଥ୍ୟ ବିନା ବେଦାଧ୍ୟୟନ ଦୋଷଜୁଷ୍ଟ । ଶଙ୍କିତ, ଭୀତ, ଉଦ୍‌ଘୁଷ୍ଟ, ଅବ୍ୟକ୍ତ, ଅନୁନାସିକ, କାକସ୍ୱରେ ଶିରଃ କମ୍ପନଯୁକ୍ତ ଓ ଉଚ୍ଚାରଣ ସ୍ଥାନ ବର୍ଜନ କରି ଉପାଂଶୁ, ତଡ଼ିତ୍, ନିରସ୍ତ, ଗଦ୍‌ଗଦ୍ କଣ୍ଠରେ ବିଳମ୍ବିତ, ପ୍ରଗୀତ, ନିଃଷ୍ପୀଡ଼ିତ, ଗ୍ରସ୍ତପଦାକ୍ଷର କିମ୍ବା ସାନୁନାସିକ କରି ବୈଦିକ ବାକ୍ୟୋଚ୍ଚାରଣ କରିବା ନିଷେଧ ।

ମୟୂର, ହଂସ ଓ କୋକିଳ କଣ୍ଠେ ବେଦ ପଠନୀୟ । ଏହିପରି ଅନେକ ଜ୍ଞାତବ୍ୟ ବିଷୟ ପାଣିନୀୟ ସ୍ୱରପ୍ରକରଣ ସୂତ୍ରସମୂହରେ ନିବଦ୍ଧ ହୋଇଅଛି ।

ପ୍ରାତଃକାଳରେ ଶାର୍ଦ୍ଦୂଳ ରୁତୋପମ କଣ୍ଠରେ ବକ୍ଷରୁ ସ୍ୱର ଉଚ୍ଚାରଣପୂର୍ବକ ପଠନୀୟ । ମଧ୍ୟାହ୍ନରେ ଚକ୍ରବାକ ପକ୍ଷୀର କୂଜନ ସ୍ୱରେବେଦ ଅଧ୍ୟୟନୀୟ । ସାୟଂକାଳରେ ଶୀର୍ଷଣ୍ୟ ସ୍ୱରରେ ବେଦପାଠ କର୍ତ୍ତବ୍ୟ । ଏକମାତ୍ର ଚଷାପୁଅ (ପକ୍ଷୀ ବିଶେଷର) କଣ୍ଠରେ ସ୍ୱର ଉଚ୍ଚାରିତ ହୁଏ । ବାୟସର ଦ୍ୱିମାତ୍ର, ଶିଖୀର ତ୍ରିମାତ୍ର ଏବଂ ନକୁଳକଣ୍ଠେ ଅର୍ଦ୍ଧମାତ୍ର ସ୍ୱର ଉଚ୍ଚାରିତ ହୁଏ ।

ଅନ୍ତ୍ୟୋଦାତ୍ତ, ଆଦ୍ୟୋଦାତ୍ତ, ଉଦାତ୍ତ, ଅନୁଦାତ୍ତ, ନୀଚସ୍ୱରିତ, ମଧ୍ୟୋଦାତ୍ତ, ସ୍ୱରିତ, ଦ୍ୱ୍ୟୁଦାତ୍ତ, ତ୍ର୍ୟୁଦାତ୍ତ ଏହି ନବବିଧ ସ୍ୱରସଞ୍ଜ୍ଞା ଯଥାକ୍ରମେ ନିମ୍ନଲିଖିତ ମନ୍ତ୍ରେ ଅଛି । ଯଥା :-

''ଅଗ୍ନିଃ ସୋମଃ ପ୍ର ବୋ ବୀର୍ଯଂ ହବିଷାଂ ସ୍ୱର୍ବୃହସ୍ପତି ରିନ୍ଦ୍ର ବୃହସ୍ପତି'' । ଇତି ।

ଏହିପରି ନାରଦୀୟ ଶିକ୍ଷା ମଧ୍ୟରେ ସାମବେଦୀୟ ପ୍ରଥମ ମନ୍ତ୍ରର ଗୌତମ ପ୍ରକାଶିତ ଶାଖା ଭେଦ ଅଛି । କଶ୍ୟପଙ୍କର ମଧ୍ୟମାଖ୍ୟ ବର୍ହିଷୀ ସାମଗାନ ପ୍ରଭୃତି ବହୁ ପ୍ରକାର ବର୍ଣ୍ଣିତ । ଏତଦ୍‌ବ୍ୟତୀତ ପଦ, କ୍ରମ, ଜଟା, ଘନ ପ୍ରଭୃତି ବହୁ ପ୍ରକାର ଗାନ ପ୍ରଣାଳୀ ବିଦ୍ୟମାନ । ଆମ୍ଭେ ଏ ସମ୍ବନ୍ଧରେ ଦିଗ୍‌ଦର୍ଶନ ମାତ୍ର କରିଦେଲୁ । ସେ ସମସ୍ତ ଅଭ୍ୟାସ ବିନା ବୋଧଗମ୍ୟ ହେବ ନାହିଁ ।

**କଳ୍ପ**

ଆପସ୍ତମ୍ବ, ବୌଧାୟନ ଆଶ୍ୱଳାୟନ ଓ ପାରସ୍କର୍ଯ୍ୟ କଳ୍ପ ଶାସ୍ତ୍ରଗୁଡ଼ିକ ଶ୍ରୌତ ଓ ଗୃହ୍ୟସୂତ୍ର ଭେଦରେ ଦ୍ୱିବିଧ । ଏଥିରେ ଯଥାକ୍ରମେ ଶ୍ରୌତ ଓ ସ୍ମାର୍ତ୍ତ ଯଜ୍ଞପଦ୍ଧତି ଲିପିବଦ୍ଧ ହେବ । ତ୍ରିକୋଣ, ଚତୁଃକୋଣଳ ବୃତ୍ତାକାର, ଅର୍ଦ୍ଧବୃତ୍ତାକାର ଇତ୍ୟାଦି ବହୁବିଧ କ୍ଷେତ୍ରଫଳ ଠିକ୍ ରଖି ଏହିସବୁ ଯଜ୍ଞବେଦି ବିଭିନ୍ନ ଆକାରେ ନିର୍ମାଣ କରିବା ବିଧାନ କଳ୍ପ ଓ ବ୍ରାହ୍ମଣରେ ଉପବର୍ଣ୍ଣିତ ହୋଇଅଛି । ଏହି ମୂଳ ସୂତ୍ରଗୁଡ଼ିକରୁ ହିଁ ଜ୍ୟାମିତି ଶାସ୍ତ୍ରର ଉତ୍ପତ୍ତି ଏବଂ କେଉଁ ସମୟରେ କେଉଁ ଯଜ୍ଞ ଆରମ୍ଭ କରିବାକୁ ହେବ, କେଉଁ ସମୟରେ ପ୍ରୟାଜ୍ୟା (ଆହୁତି ପୂର୍ବକ ପାଠ୍ୟ ଋକ୍‌ମନ୍ତ୍ର), ଅନୁୟାଜ୍ୟା (ଆହୁତି ପରେ ପଠିତ ଋକ୍‌ମନ୍ତ୍ର), କେଉଁ ସମୟରେ ସ୍ତୋତ୍ର (ସାମଗାନ) ଓ ଶସ୍ତ୍ରାଦିର (ଦେବତା ବିଶେଷର ପ୍ରଶଂସାସୂଚକ ଋକ୍) ପ୍ରୟୋଗ ଇତ୍ୟାଦି ବିବରଣ କଳ୍ପରେ ଲିପିବଦ୍ଧ ହୋଇଅଛି । କେଉଁ ଦେବତାର କେଉଁ ପଶୁ ପ୍ରିୟ, କେତେକ ପୁରୋଡ଼ାଶାଦି ଦେବାକୁ ହେବ ଏବଂ ଆହୁତି ଦ୍ରବ୍ୟର ବିଶେଷ ବିଶେଷ ବ୍ୟବସ୍ଥା ମଧ୍ୟ ତହିଁରେ ବିଦ୍ୟମାନ ।

ଆଶ୍ୱାଳାୟନ, ବୌଧାୟନ, ଆପସ୍ତମ୍ବ ଏବଂ ଋଗ୍‌ବେଦର ଐତରୀୟ ବ୍ରାହ୍ମଣର ସାମଞ୍ଜସ୍ୟ କରି କଳ୍ପରେ ଅନେକ ଆଦର୍ଶ ଯଜ୍ଞର ଅଗ୍ନ୍ୟାଧାନଠାରୁ ଅବଭୃତ ସ୍ନାନ ପର୍ଯ୍ୟନ୍ତ ବିବୃତ ହୋଇଅଛି । ଯାବତୀୟ ଯଜ୍ଞ ପ୍ରଧାନତଃ ତିନି ଶ୍ରେଣୀରେ ବିଭକ୍ତ । ଯଥା :- ଇଷ୍ଟିଯାଗ, ପଶୁଯାଗ ଓ ସୋମଯାଗ ।

## ଇଷ୍ଟିଯାଗ

ବୈଦିକ ଯୁଗରେ ଅଗ୍ନିହୋତ୍ର ପ୍ରତ୍ୟେକ ବିବାହିତ ଗୃହୀର  ଦୈନିକ କର୍ତ୍ତବ୍ୟ ଥିଲା । ସେଥିଲାଗି ଗୃହର ଅଭ୍ୟନ୍ତରରେ ଅଗ୍ନିଶାଳା ନିର୍ମିତ ହୋଇଥାଏ । ସେଠାରେ ଚତୁଃକୋଣ ବେଦିଟିଏ କରାଇ ତାହାର ପଶ୍ଚିମରେ ଗାର୍ହପତ୍ୟାଗ୍ନି, ପୂର୍ବଦିଗରେ ଆହବନୀୟ ଏବଂ ଦକ୍ଷିଣ ଦିଗରେ ଦକ୍ଷିଣାଗ୍ନି ସ୍ଥାପନ କରୁଥିଲେ । ମୃତ୍ତିକା ପ୍ରାଚୀରଦ୍ୱାରା ଅଗ୍ନିସ୍ଥାନ ଆବୃତ କରାଯାଉଥିଲା । ଗାର୍ହପତ୍ୟ କୁଣ୍ଡ ଚତୁର୍ଭୁଜାକାର, ଆହବନୀୟ ବୃତ୍ତାକାର, ଦକ୍ଷିଣାଗ୍ନିର ଅର୍ଦ୍ଧ ବୃତ୍ତାକାର । ତିନୋଟିର କ୍ଷେତ୍ରଫଳ ଏକ ହସ୍ତ ଦୀର୍ଘ ଓ ଏକ ହସ୍ତ ପ୍ରସ୍ଥ ଥିବା କ୍ଷେତ୍ରର ଫଳ ସଙ୍ଗେ ସମାନ । ଆହବନୀୟରେ ଦେବଗଣର ଆହୁତି, ଗାର୍ହପତ୍ୟ ଯଜମାନର ପ୍ରତିନିଧି ଗୃହକର୍ତ୍ତା ଏଥିରେ ସ୍ମାର୍ତ୍ତପାକଯଜ୍ଞ ସମୀଧା ହୁଏ । ଦକ୍ଷିଣାଗ୍ନି ପିତୃଲୋକରେ ହବ୍ୟ ନିମିତ୍ତ କେବଳ ଦୀପ୍ତ କରାଯାଇଥାଏ ।

## ଅଗ୍ନ୍ୟାଧ୍ୟାନ ବିଧି

ପୂର୍ବ ଦିଗରେ ପ୍ରାୟଶ୍ଚିତ୍ତ ଓ ବୃଦ୍ଧି ଶ୍ରାଦ୍ଧାଦି କରି ଯଜମାନ କର୍ମଲାଗି ପ୍ରସ୍ତୁତ ହେଉଥିଲେ । ଅଧ୍ୱର୍ଯ୍ୟୁନାମକ ଋତ୍ୱିକ୍ ଶାସ୍ତ୍ରବିହିତ ସ୍ଥାନରୁ ଅଗ୍ନି ଆଣି ଗାର୍ହପତ୍ୟ ସ୍ଥାନରେ ରଖିଦିଅନ୍ତି । ସନ୍ଧ୍ୟାକାଳେ ସପତ୍ନୀକ ଯଜମାନ ଅଗ୍ନିଶାଳାରେ ପ୍ରବେଶ କରି କାଷ୍ଠ ପ୍ରକ୍ଷେପ ଦ୍ୱାରା ଗାର୍ହପତ୍ୟାଗ୍ନିକି ସମସ୍ତ ରାତ୍ର ପ୍ରଜ୍ୱଳିତ ରଖନ୍ତି । ଶମୀବୃକ୍ଷ ଉପରେ ଉଠିଥିବା ଅଶ୍ୱତ୍ଥର କାଷ୍ଠ ଖଣ୍ଡଦ୍ୱୟ (ଉତ୍ତରାଅରଣି ଓ ଅଧରଅରଣି) ଅଗ୍ନିଶାଳାରେ ସେହି ସମୟରେ ରଖାହୁଏ । ପ୍ରାତଃକାଳେ ଅଧ୍ୱର୍ଯ୍ୟୁ ସେହି ଅଗ୍ନି ନିର୍ବାପିତ କରିଦିଅନ୍ତି । ସୂର୍ଯ୍ୟୋଦୟ ପୂର୍ବରୁ ଉକ୍ତ ଅରଣିଦ୍ୱୟର ସଂଘର୍ଷଣଦ୍ୱାରା ନୂତନ ଅଗ୍ନି ଉତ୍ପାଦନ କରିବାକୁ ହୁଏ । ଏହି ଅଗ୍ନି ମନ୍ଥନ ସମୟେ ଗୋଟିଏ ଅଶ୍ୱ ନେଇ ରଖିବାକୁ ହୁଏ । ସେହି ନୂତନାଗ୍ନି ମାଟି ଖପରାଟିରେ ଘସି ରଖନ୍ତି । ଯଜମାନ ଫୁଙ୍କି ଫୁଙ୍କି ତାହାକୁ ପ୍ରଜ୍ୱଳିତ କଲେ ଅଧ୍ୱର୍ଯ୍ୟୁ ସେଥିରେ ଯଜ୍ଞୀୟକାଷ୍ଠ ଜାଳି ଗାର୍ହପତ୍ୟ ରଖନ୍ତି । ଉକ୍ତ ସମୟେ ବ୍ରହ୍ମା ନାମକ ଋତ୍ୱିକ୍ ସାମ ଗାନ କରେ । ଗାର୍ହପତ୍ୟରୁ ଅଗ୍ନିନେଇ ଅଧ୍ୱର୍ଯ୍ୟୁର ଆହବନୀୟ ସ୍ଥାପନ କାଳେ ଅଗ୍ରଗାମୀ ଅଶ୍ୱ ଓ ତଦନୁଗାମୀ ସପତ୍ନୀକ ଯଜମାନ ଏବଂ ସାମଗାୟୀ ବ୍ରହ୍ମା ଅଧ୍ୱର୍ଯ୍ୟୁର ସଙ୍ଗେ ସଙ୍ଗେ ଗମନ କରନ୍ତି । ଅଶ୍ୱଟି ଆହବନୀୟ ସ୍ଥାନେ ଗୋଟିଏ ପାଦ ରଖି ପଶ୍ଚିମାଭିମୁଖୀରେ ଛିଡ଼ା ହୋଇଥାଏ । ଅଶ୍ୱର ପାଦରେ ସେହି ଅଗ୍ନି ସ୍ପର୍ଶ କରାଇ ଅଧ୍ୱର୍ଯ୍ୟୁଆହବନୀୟ ସ୍ଥାପନ କରନ୍ତି । ଉକ୍ତବେଳେ ବ୍ରହ୍ମା ଆଉଥରେ ସାମଗାନ କରନ୍ତି । ଏହିପରି ଦକ୍ଷିଣାଗ୍ନି କୁଣ୍ଡରେ ମଧ୍ୟ ଗାର୍ହପତ୍ୟରୁ ସମାନୀତ ଅଗ୍ନି ଅଧ୍ୱର୍ଯ୍ୟୁକର୍ତ୍ତୃକ ସ୍ଥାପିତ ହେଲେ ବ୍ରହ୍ମା ତିନିଥର ସାମଗାନ କରନ୍ତି । ତତ୍ପରେ ସମସ୍ତେ ଅଗ୍ନି ପ୍ରଦକ୍ଷିଣ କରି ଅଶ୍ୱଟି ଛାଡ଼ିଦିଅନ୍ତି । ଅଧ୍ୱର୍ଯ୍ୟୁଯଜମାନସ୍ପୃଷ୍ଟ ଜୁହୂରେ (କାଷ୍ଠହସ୍ତରେ) କେତେକ ଘୃତ ନେଇ ଗାର୍ହପତ୍ୟାଗ୍ନିରେ ତପ୍ତକରି ଯଜୁମନ୍ତ୍ର ପଢ଼ି ଆହବନୀୟରେ ପୂର୍ଣ୍ଣାହୂତି ଦିଅନ୍ତି । ଏହି ତିନି ଅଗ୍ନି ମଧ୍ୟରୁ ଗାର୍ହପତ୍ୟାଗ୍ନି ଆଜୀବନ ପ୍ରଜ୍ୱଳିତ ରଖିବାକୁ ହୁଏ; ଯେହେତୁ ସାଗ୍ନିକର ଦେହ ସତ୍କାର ଗାର୍ହପତ୍ୟାଗ୍ନି ଦ୍ୱାରା

ସମ୍ପାଦନୀୟ । ଆହବନୀୟ ଦକ୍ଷିଣାଗ୍ନି ବିଧିମତେ ଗାର୍ହପତ୍ୟରୁ ପ୍ରଜ୍ୱଳିତ କରି ଯଥାକ୍ରମେ ଦେବତା ଓ ପିତୃଗଣୋଦ୍ଦେଶେ ଯଜ୍ଞ କରୁଥିଲେ । ଏହିପରି ଆହିତାଗ୍ନି ଗୃହସ୍ଥ ହିଁ ଯାବତୀୟ ଶ୍ରୌତକର୍ମ ଦେବପିତୃ ଯଜ୍ଞର ଏକମାତ୍ର ଅଧିକାରୀ । ଅଗ୍ନ୍ୟାଧାନର ଅଶ୍ୱଟି ପ୍ରାଣାଗ୍ନିହୋତ୍ରର ପ୍ରତୀକ ମାତ୍ର ।

ଅଗ୍ନ୍ୟାଧାନ ପରେ ପ୍ରତ୍ୟେକର ଦୈନିକ ଅଗ୍ନିହୋତ୍ର ଉଭୟ ସନ୍ଧ୍ୟାରେ କରିବା ବିଧି ଥିଲା । ପ୍ରତ୍ୟେକ ଗୃହସ୍ଥର ଏକ ଏକ ଅଗ୍ନି ହୋତ୍ରୀ ଗୋ ଥାଏ । ତାହାର କ୍ଷୀର ମୃତ୍ତିକା ପାତ୍ରରେ ଗାର୍ହପତ୍ୟାଗ୍ନିରେ ଉତ୍ତପ୍ତ କରି ଆହବନୀୟରେ ଶ୍ରଦ୍ଧା ହୋମର ବ୍ୟବସ୍ଥା କରନ୍ତି । ସୃବରେ ଚାରି ପାଞ୍ଚବାର ଦୁଗ୍ଧ ଧରି ପ୍ରଥମେ ଆହବନୀୟ ଉଦ୍ଦେଶ୍ୟେ ଉଭୟେ ସନ୍ଧ୍ୟାରେ ଦୁଇଥର "ଭୂର୍ଭୁବଃସ୍ୱଃ ସୂର୍ଯ୍ୟୋଜ୍ୟୋତିଃ ଜ୍ୟୋତିଃ ସୂର୍ଯ୍ୟଃ ସ୍ୱାହା" ଏହି ମନ୍ତ୍ରେ ଆହୁତି ଦିଅନ୍ତି । ପ୍ରଥମାହୁତିର ଦେବତା ଅଗ୍ନି ଅନ୍ନପତି । ଦ୍ୱିତୀୟାହୁତିର ଦେବତା ପ୍ରଜାପତି । ସାୟଂକାଳେ ଅଗ୍ନିହୋତ୍ରର ମନ୍ତ୍ର ଯଥା- "ଭୂର୍ଭୁବଃ ସ୍ୱଃ ଅଗ୍ନିଃଜ୍ୟୋତିଃ ଜ୍ୟୋତିଃରଗ୍ନି ସ୍ୱାହା" । ଅଗ୍ନିହୋତ୍ର ହବନ ପରେ ଅବଶିଷ୍ଟ ଦୁଗ୍ଧ ହବିଃ ଶେଷ ରୂପେ ସପତ୍ନୀକ ଯଜମାନ ପାନ କରିଥାଏ । ତତ୍ପରେ ଗାର୍ହପତ୍ୟ ଦକ୍ଷିଣାଗ୍ନିରେ ଦୁଇଗୋଟି ଆହୁତି ଦେଇ ସପତ୍ନୀକ ଯଜମାନ ତିନିଖଣ୍ଡ ସମିଧ ପ୍ରକ୍ଷେପ ପରେ ତିନିଅଗ୍ନିର ଉପସ୍ଥାନ କରି ଅଗ୍ନିଶାଳାରୁ ନିଷ୍କ୍ରାନ୍ତ ହୁଅନ୍ତି ।

ଏହିପରି ଦଶପୂର୍ଣ୍ଣମାସ ଯାଗ, ସୋମଯାଗ ପ୍ରଭୃତି ଅନେକ ଯାଗର ପ୍ରକ୍ରିୟା ଭିନ୍ନ ଭିନ୍ନ ଭାବେ ବିଦ୍ୟମାନ ଥିଲା । ବୈଦିକଯୁଗର ଗୃହସ୍ଥଗଣ ଏ ସମସ୍ତର ଅନୁଷ୍ଠାନ କରୁଥିଲେ । ଆଜି ନାମମାତ୍ର ଗର୍ବିତ ବ୍ରାହ୍ମଣର ଏ ସମସ୍ତ ବିଧି ସ୍ୱପ୍ନ ପ୍ରାୟ । ଯେଉଁ ବୈଦିକ ବ୍ରାହ୍ମଣ ଗୃହସ୍ଥର ଗର୍ଭ ଧାନଠାରୁ ଅନ୍ତ୍ୟେଷ୍ଟିକ୍ରିୟା ପର୍ଯ୍ୟନ୍ତ ସମସ୍ତ ଜୀବନ ମନ୍ତ୍ରପୂତ ସେହି ଆର୍ଯ୍ୟବଂଶୋଦ୍ଭବ ବ୍ରାହ୍ମଣ ପ୍ରାଣାଗ୍ନିରେ ପ୍ରଭାତର କାଫି ହୋମ ବିନା ଏ ସମସ୍ତ ରହସ୍ୟ ବୁଝିଅଛନ୍ତି କି? ଏହିପରି ସ୍ଥିତିରେ ବ୍ରାହ୍ମଣର ମାନମହତ୍ତ୍ୱ ରହିବ କିପରି !

## ବ୍ୟାକରଣ

ପାଣିନି ଆଦିବ୍ୟାକରଣ କର୍ତ୍ତା ନୁହନ୍ତି । ଯେହେତୁ ଅଷ୍ଟାଧ୍ୟାୟୀ ସୂତ୍ରରେ ଅତ୍ରି, ଅଙ୍ଗିରା, ଭରଦ୍ୱାଜ, ଶାକଟାୟନ ଓ ଆପିଶାଳୀ ପ୍ରଭୃତି ଅନେକ ବ୍ୟାକରଣାଚାର୍ଯ୍ୟଙ୍କର ପ୍ରମାଣ ମିଳେ । କିନ୍ତୁ ସମସ୍ତ ଶାବ୍ଦିକ ଗ୍ରନ୍ଥ ତୁଳନାରେ ପାଣିନି ପରି ଏଡ଼େ ସୁସଂଯତ ଓ ପରିଷ୍କାର ଗ୍ରନ୍ଥ ନାହିଁ କହିଲେ ଚଳେ ।

ବ୍ୟାକରଣ ଶବ୍ଦର ବ୍ୟୁତ୍ପତ୍ତି ଯଥା- "ବ୍ୟାକ୍ରୀୟନ୍ତେ ବ୍ୟୁତ୍ପାଦ୍ୟନ୍ତେ ସାଧୁଶବ୍ଦାସ୍ମିନ୍ ଅନେନବା ।" ଯହିଁରେ ବା ଯାହାଦ୍ୱାରା ସାଧୁଶବ୍ଦ ସକଳ ବ୍ୟୁତ୍ପାଦିତ ହୁଏ ତାହାର ନାମ ବ୍ୟାକରଣ । ଏହାର ଅପରନାମ ଶବ୍ଦାନୁଶାସନ ।

## ଶାସ୍ତ୍ରର ପ୍ରୟୋଜନୀୟତା

''ଏକଃଶବ୍ଦଃ ସୁପ୍ରଯୁକ୍ତଃ ସମ୍ୟକ୍ ଜ୍ଞାତଃ ସ୍ୱର୍ଗେଲୋକେଚ କାମଧୁକ୍ ଭବତି'' ।

ଅର୍ଥାତ୍ ସମ୍ୟକ୍ ଜ୍ଞାତ ହୋଇ ଏକମାତ୍ର ସାଧୁଶବ୍ଦ ଉତ୍ତମରୂପେ ପ୍ରୟୋଗ କରିପାରିଲେ ସ୍ୱର୍ଗରେ ଏବଂ ମର୍ତ୍ତ୍ୟରେ କାମଧୁକ୍ ହୁଏ ।

ମହାଭାଷ୍ୟକାର ପାତଞ୍ଜଳ ଏହାର ପ୍ରୟୋଜନୀୟତା ବିଷୟରେ କହିଅଛନ୍ତି- ''ରକ୍ଷୋହାଗମଲଘ୍ୱସନ୍ଦେହଃ ପ୍ରୟୋଜନଂ'' । ଅର୍ଥାତ୍ ରକ୍ଷାର୍ଥ, ଉହାର୍ଥ, ଆଗମାର୍ଥ, ଲଘ୍ୱର୍ଥ ଏବଂ ଅସନ୍ଦେହାର୍ଥ ଏହି ପଞ୍ଚାଙ୍ଗ ବ୍ୟାକରଣ ଶାସ୍ତ୍ରର ପ୍ରୟୋଜନୀୟତା ।

ରକ୍ଷାର୍ଥ ପଦରେ ବେଦରକ୍ଷାର୍ଥ ବ୍ୟାକରଣ ଶାସ୍ତ୍ରର ପ୍ରୟୋଜନ । ଉହାର୍ଥ ପଦରେ ଅନୁସନ୍ଧାନ ପୂର୍ବକ ବେଦାର୍ଥର ତାତ୍ପର୍ଯ୍ୟ ପରିଗ୍ରହଣ, ଯେହେତୁ ବୈଦିକ ମନ୍ତ୍ରସମୂହ ସର୍ବତ୍ର ସର୍ବଲିଙ୍ଗ ଓ ସର୍ବଭ ବିଭକ୍ତିଦ୍ୱାରା ଅଭିବ୍ୟକ୍ତ ହୁଏନାହିଁ । ଯାଜ୍ଞିକଗଣ ଭିନ୍ନ ଭିନ୍ନ ସ୍ଥାନେ ଭିନ୍ନଭିନ୍ନ ତାତ୍ପର୍ଯ୍ୟ ଗ୍ରହଣ କରନ୍ତି । ବ୍ୟାକରଣ ବିନା ଏହାର ନିର୍ଦ୍ୱନ୍ଦ୍ୱ ଜ୍ଞାନଲାଭ ଅସମ୍ଭବ । ଆଗମାର୍ଥ ପଦରେ ବ୍ୟାକରଣ ବେଦାଙ୍ଗତ୍ୱ ହୁଏ । ସୁତରାଂ ବ୍ୟାକରଣ ବେଦତୁଲ୍ୟ ଅଧ୍ୟେତବ୍ୟ । ଲଘ୍ୱର୍ଥ ପଦରେ ଲଘୁ ଉପାୟଦ୍ୱାରା ଶବ୍ଦଜ୍ଞାନ ଲାଭ କରିବାକୁ ହେଲେ ବ୍ୟାକରଣ ଅଧ୍ୟେୟ । ଯେହେତୁ ଲଘୁ ଉପାୟରେ ହିଁ ଶବ୍ଦଜ୍ଞାନ ସମ୍ବନ୍ଧରେ ବ୍ୟାକରଣ ଶିକ୍ଷା ପ୍ରଦାନ କରେ । ଅସନ୍ଦେହାର୍ଥ ବ୍ୟାକରଣ ବିଦା ବେଦାର୍ଥଜ୍ଞାନରେ ସନ୍ଦେହ ନିରସନ ହୁଏନାହିଁ । ଯଥା- ଯାଜ୍ଞିକଗଣ ପାଠ କରନ୍ତି, ''ସ୍ଥୂଳ ପୃଷତୀମାଗ୍ନି ବାରୁଣୀ ମନଡ୍ୱାହୀ ମାଲଭେତ୍'' । ଏଠାରେ ସ୍ଥୂଳ ପୃଷତୀ ଶବ୍ଦ କିପରି ସ୍ୱରରେ ପାଠ କରିବାକୁ ହେବ ତାହା ଅବୈୟାକରଣୀର ସହଜରେ ସନ୍ଦେହ ଜନ୍ମିବାର କଥା, ଯେହେତୁ ଏହି ଶବ୍ଦ ତତ୍ପୁରୁଷ ଓ ବହୁବ୍ରୀହୀ ଦୁଇ ପ୍ରକାର ସମାସବଦ୍ଧ ହୋଇପାରେ । ଯଥା-

(କ) ''ସ୍ଥୂଳାଚାସୌ ପୃଷତୀର ସ୍ଥୂଳପୃଷତୀ'' (ତତ୍ପୁରୁଷ)
(ଖ) ''ସ୍ଥୂଳାନିବା ପୃଷନ୍ତୀଯସ୍ୟାଃ ସାସ୍ଥୂଳପୃଷତୀ''

(ଖ)ଚିହ୍ନିତ ସମାସ ନିଷ୍ପନ୍ନ ହେଲେ ପୂର୍ବପଦ ପ୍ରକୃତ ସ୍ୱରରେ ଉଚ୍ଚାରିତ ହେବ ଏବଂ (କ) ଚିହ୍ନିତ ସମାସ ନିଷ୍ପନ୍ନ ହେଲେ ଅନ୍ତ୍ୟପଦ ଉଦାତ୍ତ ସ୍ୱରରେ ଉଚ୍ଚାରିତ ହେବ । ଅତଏବ ବୈୟାକରଣିକ ଭିନ୍ନ ଅନ୍ୟପକ୍ଷେ ବେଦ ସ୍ୱରୋଚ୍ଚାରଣ ଅସମ୍ଭବ ସ୍ୱର ବ୍ୟଭିଚାରରେ ଅନିଷ୍ଟ ଫଳ ଅବଶ୍ୟମ୍ଭାବୀ । ଏଣୁ ଦୁଷ୍ଟ ଶବ୍ଦର ପରିହାର ଲାଗି ବ୍ୟାକରଣ ଶାସ୍ତ୍ର ଅଧ୍ୟେୟ । ଏହି ବ୍ୟାକରଣ ପାଣିନୀୟ ଦର୍ଶନ ପଦରେ ପ୍ରତିଷ୍ଠିତ ଯୋଗୁଁ ଦର୍ଶନ ପ୍ରକରଣରେ ଦ୍ୱିରୁକ୍ତି ଆଶଙ୍କା କରି ଏହି ବେଦାଙ୍ଗରେ ହିଁ ପାଣିନୀୟ ଦର୍ଶନଗତ ତାତ୍ପର୍ଯ୍ୟ ଉଲ୍ଲେଖ କରୁଅଛୁ ।

## ପାଣିନୀୟ ଦର୍ଶନ

ଏହି ଦର୍ଶନ ମତରେ ଜଗତର କାରଣ ସ୍ୱରୂପ ନିରବୟବ ନିତ୍ୟ ଶବ୍ଦ ହିଁ ପରଂବ୍ରହ୍ମ ଯଥା ସର୍ବଦର୍ଶନ ସଂଗ୍ରହେ :-

ଅନାଦି ନିଧନଂ ବ୍ରହ୍ମ ଶବ୍ଦତତ୍ତ୍ୱଂ ଯଦକ୍ଷରଂ
ନିବର୍ତ୍ତତେଽର୍ଥାଭାବେନ ପ୍ରକ୍ରିୟା ଜଗତୋ ଯତଃ ।।

ଅର୍ଥାତ୍ ଅକ୍ଷର ଶବ୍ଦତତ୍ତ୍ୱ ହିଁ ଅନାଦି ନିଧନ ବ୍ରହ୍ମ । ଯେଉଁ ଶବ୍ଦତତ୍ତ୍ୱରୁ ଜାଗତିକ କ୍ରିୟା ସକଳ ଅର୍ଥାଭାବରେ ନିବର୍ତ୍ତିତ ହୁଏ ।

ପାଣିନୀୟ ଦାର୍ଶନିକମାନେ ନିତ୍ୟ ଓ ଅନିତ୍ୟ ଭେଦେ ଶବ୍ଦ ଦୁଇ ପ୍ରକାର ମାନନ୍ତି । ନିତ୍ୟଶବ୍ଦ ଏକମାତ୍ର ସ୍ଫୋଟ । ବର୍ଣ୍ଣାତ୍ମକ ଶବ୍ଦସମୂହ ଅନିତ୍ୟ । ଏମାନେ କହନ୍ତି, ଯଦି ସ୍ଫୋଟ ସ୍ୱୀକାର କରା ନଯିବ ତେବେ କେବଳ ବର୍ଣ୍ଣାତ୍ମକ ଶବ୍ଦଦ୍ୱାରା କୌଣସି ପ୍ରକାରେ ଅର୍ଥବୋଧ ହେବନାହିଁ । ଯେହେତୁ ଅକାର, ଗକାର, ନକାର ଓ ଇକାର ଏହି ଚାରି ବର୍ଣ୍ଣ ବିଶିଷ୍ଟ ଅଗ୍ନିଶବ୍ଦ ବହ୍ନି ଅର୍ଥାତ୍ମକ କିନ୍ତୁ ଏହି ଚାରିବର୍ଣ୍ଣଦ୍ୱାରା ସମ୍ପାଦିତ ହୋଇ ନପାରେ । କାରଣ ପ୍ରତ୍ୟେକ ବର୍ଣ୍ଣଦ୍ୱାରା ବହ୍ନିର ବୋଧ ହେଲେ ଯେକୌଣସି ଏକ ବର୍ଣ୍ଣର ଉଚ୍ଚାରଣରେ ହିଁ ବହ୍ନିର ବୋଧ ହୁଅନ୍ତା । ସମସ୍ତ ବର୍ଣ୍ଣ ଏକତ୍ରିତ ନହେଲେ 'ବହ୍ନିବୋଧ' ଜନ୍ମାଇବ ନାହିଁ । ବର୍ଣ୍ଣଗୁଡ଼ିକ ଆଶୁ ବିନାଶୀ । ପରପର ବର୍ଣ୍ଣର ଉତ୍ପତ୍ତି କାଳରେ ପୂର୍ବ ପୂର୍ବ ବର୍ଣ୍ଣ ସକଳ ବିନଷ୍ଟ ହୋଇଥା'ନ୍ତି, ସୁତରାଂ ଅର୍ଥବୋଧର କଥା ଦୂରେ ଥାଉ ସେମାନଙ୍କର ଏକତ୍ରାବସ୍ଥାନ ହିଁ ଅସମ୍ଭବ ।

ଅତଏବ ସ୍ୱୀକାର କରିବାକୁ ହେବ ଯେ, ଏହି ଚାରିବର୍ଣ୍ଣରୁ ପ୍ରଥମେ ସ୍ଫୋଟର ଅଭିବ୍ୟକ୍ତି, ତତ୍ପରେ ସେହି ସ୍ଫୋଟଦ୍ୱାରା ବହ୍ନିର ବୋଧ । ଏହି ସ୍ଫୋଟକକୁ ହିଁ ଶାବ୍ଦିକମାନେ ସଚ୍ଚିଦାନନ୍ଦ ବ୍ରହ୍ମ ବୋଲି ସ୍ୱୀକାର କରନ୍ତି । ସୁତରାଂ ଶବ୍ଦତତ୍ତ୍ୱର ଗବେଷଣାରେ କ୍ରମଶଃ ଅବିଦ୍ୟା ନିବୃତ୍ତ ହୋଇ ମୋକ୍ଷପଦ ପ୍ରାପ୍ତ ହୁଏ ।

ପ୍ରାଚୀନ ପଣ୍ଡିତଗଣ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିଅଛନ୍ତି । ମୁକ୍ତିର ଦ୍ୱାରସ୍ୱରୂପ ଏହି ବ୍ୟାକରଣ ଶାସ୍ତ୍ର ବାଙ୍ମଳାପହ ଚିକିତ୍ସା ତୁଲ୍ୟ, ସମସ୍ତ ଶାସ୍ତ୍ରଠାରୁ ସୁପବିତ୍ର, ସିଦ୍ଧିର ପ୍ରଥମ ସୋପାନ ଏବଂ ମୋକ୍ଷନଗରର ପ୍ରାପ୍ତିର ସରଳ ରାଜମାର୍ଗ ସ୍ୱରୂପ ।

ଯଥା :- "ଶବ୍ଦବ୍ରହ୍ମଣି ନିଷ୍ଣାତଃ ପରଂବ୍ରହ୍ମାଧିଗଚ୍ଛତି" ।

ଅର୍ଥାତ୍ ଶବ୍ଦବ୍ରହ୍ମରେ ନିଷ୍ଣାତ ବ୍ୟକ୍ତି ପରମପଦ ପ୍ରାପ୍ତହୁଏ । ତଥାଚ "ଶବ୍ଦାନୁଶାସନ ଶାସ୍ତ୍ରସ୍ୟ ନିଃଶ୍ରେୟସ ସାଧନତ୍ୱ ସିଦ୍ଧଂ " ତଦୁକ୍ତଂ-

"ତଦ୍ଦ୍ୱାରମପବର୍ଗସ୍ୟ ବାଙ୍ମଳାନାଂ ଚିକିତ୍ସିତଂ ।
ପବିତ୍ରଂ ସର୍ବବିଦ୍ୟାନଂ ଅଧିବିଦ୍ୟଂ ପ୍ରଚକ୍ଷତେ ।।

ଇଦମାଦ୍ୟଂ ପଦସ୍ଥାନଂ ସିଦ୍ଧି ସୋପାନ ପର୍ବଣାଂ ।
ଇୟଂସା ମୋକ୍ଷମାର୍ଗାଣାମଜିହ୍ମା ରାଜପଦ୍ଧତିଃ ॥''

ପାଣିନିମୁନି ପ୍ରଣୀତ ଅଷ୍ଟାଧ୍ୟାୟୀର ଅପର ନାମ ପାଣିନି ଦର୍ଶନ । ଏଥିରେ ସଂଜ୍ଞା, ସନ୍ଧି, ଧାତୁ, ସମାସକୃତ ତଦ୍ଧିତ ପ୍ରଭୃତି ବ୍ୟାକରଣୋକ୍ତ ସମସ୍ତ ବିଷୟ ସନ୍ନିବେଶିତ ହୋଇଅଛି । ଉକ୍ତ ଗ୍ରନ୍ଥରେ ପଦ, କାଳ, ବଚନ, ଲିଙ୍ଗ, କାରକ, ପୁରୁଷ, ତଥା ବ୍ୟତ୍ୟୟରେ ନିପାତ ସିଦ୍ଧ ଇତ୍ୟାଦି ଶୃଙ୍ଖଳାବଦ୍ଧ ସୂତ୍ରସମୂହ ଲୌକିକ, ବୈଦିକ ଓ ସ୍ୱରପ୍ରକ୍ରିୟା ପ୍ରଭୃତି ପ୍ରକରଣରେ ସୁବିଭକ୍ତ ହୋଇଅଛି ।

ସଂସ୍କୃତ ଭାଷାର ସର୍ବପ୍ରଧାନ ଓ ସର୍ବପ୍ରାଚୀନ ଶୃଙ୍ଖଳାବଦ୍ଧ ବ୍ୟାକରଣ ରଚୟିତା ପାଣିନିଙ୍କର ଅସାମାନ୍ୟ ଶବ୍ଦଜ୍ଞାନ ଅବଲୋକନ କରି ଏହାଙ୍କର ଆବିର୍ଭାବ ସମୟ ନିରୂପଣ ଲାଗି ଖ୍ୟାତନାମା ୟୁରୋପୀୟ ସଂସ୍କୃତବିତ୍ ପଣ୍ଡିତଗଣ ଓ ଅସ୍ମଦ୍ଦେଶୀୟ ପୁରାତତ୍ତ୍ୱବିତ୍‌ଗଣ ଅଗ୍ରସର ହୋଇଅଛନ୍ତି କି ଏ କେଉଁ ସୂତ୍ରକୁ ଧରି ସମୟ ନିର୍ଦ୍ଧାରଣ କରଣେ ବ୍ୟଗ୍ରତର । ପାଣିନିଙ୍କ ଅଷ୍ଟାଧ୍ୟାୟୀର ଭାଷ୍ୟକାର ପତଞ୍ଜଳି । ଏଣୁ ପତଞ୍ଜଳିଙ୍କ ପୂର୍ବରେ ପାଣିନି ଥିବା କଥା । ପାଣିନିଙ୍କ ପିତାମହଙ୍କ ନାମ ଦେବଳ ଓ ମାତାଙ୍କ ନାମ ଦକ୍ଷୀ । ମାତା ନାମାନୁସାରେ ସେ ଦାକ୍ଷାୟନ ନାମେ ଖ୍ୟାତ ଥିଲେ । ଗାନ୍ଧାର ଅନ୍ତର୍ଗତ ଶଳାତୁର ଗ୍ରାମରେ ତାହାଙ୍କର ଜନ୍ମ, ଅତଏବ ସେ ଶାଳାତୁରୀୟ ନାମେ ଖ୍ୟାତ । ଏହାଙ୍କ ରଚିତ ସୂତ୍ରଗ୍ରନ୍ଥରୁ ତାଙ୍କର ଜନ୍ମଭୂମି ପ୍ରଭୃତିର ପରିଚୟ ମିଳେ । ସମସ୍ତ ମତ ସମନ୍ୱୟରେ ସ୍ଥିରୀକୃତ ହୋଇଅଛି କି, ଖ୍ରୀଷ୍ଟପୂର୍ବ ପାଞ୍ଚଶତ ଅବ୍ଦରେ ପାଣିନି ଆବିର୍ଭୂତ ହୋଇଥିଲେ । ବୌଦ୍ଧ ଇତିହାସ ମଧ୍ୟ ଏହା ସମର୍ଥନ କରୁଅଛି । ତାହାଙ୍କର ଗ୍ରନ୍ଥରେ ୮ ଟି ଅଧ୍ୟାୟ, ୩୨ ଟି ପାଦ ଏବଂ ୩୯୯୭ ଗୋଟି ସୂତ୍ର ଅଛି । ପ୍ରଥମତଃ କାତ୍ୟାୟନ ଅନେକ ବାର୍ତ୍ତିକ ଏହି ଗ୍ରନ୍ଥରେ ସନ୍ନିବେଶିତ କରି ତାହାର ପୁଷ୍ଟି ସାଧନ କରିଥିଲେ । ତା'ପରେ ପତଞ୍ଜଳି ମହାଭାଷ୍ୟ ପ୍ରଣୟନ କରି ସୂତ୍ରାର୍ଥବୋଧର ସୁଗମ ପଥ ଫିଟାଇଥିଲେ ।

ଯାହାହେଉ ବ୍ରହ୍ମମୟୀ ବାଣୀସେବକ ପରଂପଦ ଲାଭ କରେ ବୋଲି ମହର୍ଷି ପାଣିନି ମୁକ୍ତ କଣ୍ଠରେ ପ୍ରକାଶ କରି ଅଛନ୍ତି । ତେବେ ସେହି ଶବ୍ଦ କେଉଁ ସ୍ଥାନରୁ କିପରି ଜାତ ହେଲା ସେ ସମ୍ବନ୍ଧେ ଦୁଇଚାରି ପଂକ୍ତି ଆଲୋଚନା କରିବା ବୋଧହୁଏ ଏ ସ୍ଥଳରେ ଅପ୍ରାସଙ୍ଗିକ ହେବ ନାହିଁ ।

କଣ୍ଠରୁ ଯେଉଁ ସ୍ୱାଭାବିକ ଧ୍ୱନି ଉତ୍ପନ୍ନ ହୁଏ ତାହାର ବିବିଧ ରୂପାନ୍ତରର ନାମ 'ଶବ୍ଦ' ଏବଂ ଯେଉଁ ଶବ୍ଦଦ୍ୱାରା ମନୋଭାବ ପ୍ରକାଶ କରାଯାଏ ତାହାକୁ ଭାଷା କୁହାଯାଏ ।

ଜଗତରେ ପଶୁପକ୍ଷୀଠାରୁ ମାନବ ପର୍ଯ୍ୟନ୍ତ ପ୍ରାଣୀମାତ୍ରକେ ମନୋଗତ ଭାବ ପ୍ରକାଶ କରିବାର ଉପଯୁକ୍ତ ଭାଷା ଅଛି । ଏଥିଲାଗି ଋଗ୍‌ବେଦର ଋଷି କହିଛନ୍ତି -

''ଦେବୀଂ ବାଚମଜନୟନ୍ତୁ ଦେବାସ୍ତାଂ ବିଶ୍ୱରୂପାଃ ପଶବୋ ବଦନ୍ତି'' । (୮।୧୦୦।୧୧)

ଅର୍ଥାତ୍ ବାଗ୍‌ଦେବୀଙ୍କୁ ଦେବଗଣ ସୃଜନ କରିଥିଲେ, ସେ ବିଶ୍ୱରୂପା । ପଶୁମାନେ ମଧ୍ୟ ବଚନ କହନ୍ତି ।

ମାନବଗଣ ଯେତେବେଳେ ସଂଖ୍ୟାରେ ଅଳ୍ପ ଥିଲେ ଏବଂ ସ୍ୱଚ୍ଛନ୍ଦରେ ବନଜାତ ଫଳମୂଳ ଭକ୍ଷଣ କରି କ୍ଷୁଧା ନିବାରଣ କରୁଥିଲେ, ସେତେବେଳେ ସେମାନଙ୍କର ଭାଷାର ବିଶେଷ ପ୍ରୟୋଜନ ନଥିଲା । କିନ୍ତୁ ବଂଶବୃଦ୍ଧି ଓ ସଭ୍ୟତାର କ୍ରମବିକାଶ ସଙ୍ଗେ ସଙ୍ଗେ ସେମାନେ ସଂସାରଯାତ୍ରା ନିର୍ବାହ ନିମନ୍ତେ ଆବଶ୍ୟକୀୟ ଦ୍ରବ୍ୟାଦିର ନାମକରଣର ପ୍ରୟୋଜନୀୟତା ଅନୁଭବ କରିଥିଲେ । ତାହାର ଫଳରେ ଭାଷାର ସୃଷ୍ଟି ହୋଇଅଛି ।

ଋଗ୍‌ବେଦ ଦଶମ ମଣ୍ଡଳର ଏକ ସପ୍ତତି ସୂକ୍ତେ ସ୍ୱୟଂ ବାକ୍‌ର ପତି, (ବାଚସ୍ପତି) ବୃହସ୍ପତି, ଅତି ବିସ୍ମୟର ସହିତ କହିଅଛନ୍ତି -

ବୃହସ୍ପତେ ପ୍ରଥମଂ ବାଚୋ ଅଗ୍ରଂ ଯତ୍‌ପ୍ରେରତ ନାମଧେୟଂ ଦଧାନାଃ
ଯଦେଷଂ ଶ୍ରେଷ୍ଠଂ ଯଦିରିପ୍ରମାସୀତ୍‌ପ୍ରେଣା ତଦେଷାଂ ନିହତ ଗୁହାବିଃ ।।
ଋଃ ୧୦,୭୧,୧

ଉତତ୍ୱଃ ପଶ୍ୟନ୍ ଅଦଦର୍ଶ ବାଚମ୍ । ଉତତ୍ୱଃ ଶୃନ୍‌ବନ୍ ନ ଶୃଣୋତି ଏନାମ୍ ।।
ଉତତ୍ସ୍ମୈ ଅସ୍ମୈ ତନ୍‌ଂ ବିସସ୍ରେ ଜାଏନ ପତ୍ୟ ଉଶତୀ ସୁବାସାଃ ।।୪।।

ଅର୍ଥାତ୍ ଏହି ଯେ ବାକ୍ ଯାହା ସୃଷ୍ଟ ପଦାର୍ଥର ନାମକରଣରେ ପ୍ରଥମେ ଆବିର୍ଭୂତ ହୋଇଥିଲା ତାହା କେଉଁ ଗୁହା ମଧ୍ୟରେ ନିହିତ ଥିଲା? କି ପ୍ରେମବଳରେ ସେହି ଗୁହାରୁ ସେ ବହିର୍ଗତ ହେଲା? ଲୋକେ ଏହାକୁ ଦେଖିଲେ ମଧ୍ୟ ଦେଖନ୍ତି ନାହିଁ, ଶୁଣିଲେ ମଧ୍ୟ ଶୁଣନ୍ତି ନାହିଁ । ପତ୍ନୀ ଯେପରି ସୁଶୋଭନ ବାସ ପରିଧାନ କରି ପତିର ନିକଟକୁ ଗମନ କରେ, ଏ ମଧ୍ୟ ସେପରି ପ୍ରେମଭରେ ନିଜ ଦେହ ପ୍ରକାଶ କରେ ।

ପ୍ରକୃତରେ ସଂସ୍କୃତ ବର୍ଣ୍ଣମାଳାର ବର୍ଣ୍ଣସମୂହର ଉଚ୍ଚାରଣ ସ୍ଥାନ ଲକ୍ଷ କଲେ, ବାଚସ୍ପତିଙ୍କ ପରି ବିସ୍ମୟାବିଷ୍ଟ ହୋଇ କହିବାକୁ ହୁଏ ଯେ, ଏ କେଉଁ ଗୁହା ଗର୍ଭରେ ନିହିତ ଥିଲା? ଏବଂ କେଉଁ ପ୍ରେମବଳରେ ସେହି ଗୁହାରୁ ବହିର୍ଗତ ହେଲା !

ସଂସ୍କୃତ ସ୍ୱର ଓ ବ୍ୟଞ୍ଜନ ବର୍ଣ୍ଣ ସକଳ ଯଥାକ୍ରମେ କଣ୍ଠ, ଜିହ୍ୱା, ତାଳୁ, ମୂର୍ଦ୍ଧା, ଦନ୍ତ ଓ ଓଷ୍ଠଦେଇ ବିନିର୍ଗତ ହେଉଅଛି । ପୃଥିବୀର କୌଣସି ଭାଷାରେ ଶବ୍ଦର ଏ ପରିକ୍ରମ ପରିସ୍ଫୁରଣ ଲକ୍ଷିତ ହୁଏନାହିଁ । ସକଳ ଆର୍ଯ୍ୟଶାସ୍ତ୍ର ସମସ୍ୱରେ ଉଦ୍‌ଘୋଷଣା କରିଛନ୍ତି- ''ବାଗବୈବ୍ରହ୍ମ'' ବାକ୍ ହିଁ ବ୍ରହ୍ମ ।

ଯାସ୍କର ନିରୁକ୍ତିରେ ସତାନବେ ବାକ୍‌ଶବ୍ଦର ନାମ ଲେଖାଅଛି । ବାକ୍ ବା ବାକ୍ୟର ପ୍ରତିଶବ୍ଦ ସ୍ୱର,ଘୋଷ, ବାଣୀ, ଭାରତୀ, ସରସ୍ୱତୀ, ଅଦିତି, ଯଜ୍ଞକ୍ରତୁରୂପିଣୀ ଶଚୀ, ଅଗ୍ନିପତ୍ନୀ ସ୍ୱାହା, ମହେଶ୍ୱରପତ୍ନୀ ଗୌରୀ, ମହୀ, ଗୋ, ଧେନୁ ଇତ୍ୟାଦି । ଆର୍ଯ୍ୟଋଷିଙ୍କ ମତେ ବାକ୍‌ଦେବୀ ସର୍ବଦେବମୟୀ ଏବଂ ସର୍ବମୟୀ ।

ବୃହସ୍ପତି କହିଅଛନ୍ତି :-

"ଋଚାଂତ୍ୱଃ ପୋଷମାସ୍ତେ ପୁପୁଷ୍ମାନ୍ ଗାୟତ୍ରଂ ଯୋ ଗାୟତ୍ରୀ ଶକ୍ୱରୀଷୁ ।

ବ୍ରହ୍ମତ୍ୱୋ ବଦତି ଜାତବେଦ୍ୟଂ ଯଜ୍ଞସ୍ୟ ମାତ୍ରାଂ ବିମିମୀତ ଉତ୍ୱଃ" ।

ଅର୍ଥାତ୍ ଏହି ବାକ୍ ହୋତାର ମୁଖେ ଋକ୍ ରୂପେ ଉଚ୍ଚାରିତ ହୋଇ ଯଜ୍ଞକୁ ପୁଷ୍ଟ କରେ ।

ଉଦ୍‌ଗାତାର ମୁଖେ ଶକ୍ୱରୀ ସାମରୂପେ ଗୀତ ହୁଏ । ଅଧ୍ୱର୍ଯ୍ୟୁର ମୁଖେ ଯଜୁର୍ମନ୍ତ୍ର ରୂପେ ଯଜ୍ଞର ଶରୀର ନିର୍ମାଣ କରେ । ବ୍ରହ୍ମା ଏହି ବାଦ୍ୟାକୁ ଯଜ୍ଞକର୍ମରେ ନିଯୁକ୍ତ କରିଥିଲେ । ଅତଏବ ଏହି ବାକ୍ ଅର୍ଥରେ ବିଶେଷତଃ ବେଦ ବିଦ୍ୟାକୁ ହିଁ ବୁଝାଇଥାଏ ।

ବେଦଭାଷ୍ୟକାର ସାୟନାଚାର୍ଯ୍ୟ ପ୍ରତ୍ୟେକ ଅଧ୍ୟାୟର ପ୍ରାରମ୍ଭରେ ଯସ୍ୟନିଃଶ୍ୱସିତଂ ବେଦାଃ" ବୋଲି ମହେଶ୍ୱରଙ୍କୁ ପ୍ରଣାମ କରିଅଛନ୍ତି ଏବଂ କହିଅଛନ୍ତି, "ଯୋ ବେଦେଭ୍ୟୋଽଖିଳଂ ଜଗତ୍ ନିର୍ମମେ", ଅର୍ଥାତ୍ ଯେ ବେଦବାକ୍ୟଦ୍ୱାରା ଅଖିଳ ଜଗତ ନିର୍ମାଣ କରିଅଛନ୍ତି । ଏଥିଲାଗି ଏହି ବେଦବାକ୍ୟକୁ ଆର୍ଯ୍ୟଋଷିଗଣ "ଅନାଦି ନିଧନା ନିତ୍ୟ", ନିତ୍ୟ ଓ ଅନାଦି ବୋଲି ମାନିଯାଇ ଅଛନ୍ତି ।(୧)

ବେଦବାକ୍ୟ ମୂର୍ତ୍ତିହୀନ ଶବ୍ଦ ରୂପେ ଚିରକାଳ ବିଦ୍ୟମାନ ଥିଲା । ଏହି ଶବ୍ଦ ଋଷିଗଣଙ୍କୁ ଦର୍ଶନ ଦାନ କରେ ଏବଂ ଋଷିମୁଖେ ଆତ୍ମପ୍ରକାଶ କରେ । ସୁତରାଂ ବେଦବାକ୍ୟହିଁ ବାକ୍‌ଦେବତା ବା ବ୍ରହ୍ମ । ବୋଧହୁଏ ଏହି କାରଣବଶତଃ ବେଦକୁ ପ୍ରାଚୀନ ଋଷିମାନେ ଅପୌରୁଷେୟ ନାମେ ଅଭିହିତ କରିଛନ୍ତି ।

## ନିରୁକ୍ତ

ଯାସ୍କାଚାର୍ଯ୍ୟ ବିଭିନ୍ନ ବୈଦିକ ନାମର ଯେଉଁ ସମାନାର୍ଥବୋଧକ ଅନୁକ୍ରମଣିକା ଦେଇଅଛନ୍ତି, ନିରୁକ୍ତର ସେହି ଭାଗର ନାମ ନିର୍ଘଣ୍ଟୁ । ତାହାର ପ୍ରଥମାଧ୍ୟାୟରେ ପୃଥିବୀବୋଧକ ଏକବିଂଶତି ଶବ୍ଦ, ୧୫ଟି ହିରଣ୍ୟର ନାମ, ୧୬ ଅନ୍ତରୀକ୍ଷ ନାମ, ସ୍ୱଃ ପ୍ରଭୃତି ଷଟ୍ ସାଧାରଣ ନାମ, ୧୫ଟି ରଶ୍ମି ନାମ, ଅଷ୍ଟ ଦିଙ୍‌ନାମ, ୨୩ ରାତ୍ରି ନାମ, ୧୬ ଉଷା ନାମ, ୧୨ ଅହଃ ନାମ, ୩୦ଟି ମେଘ ନାମ, ୫୦ଟି ବାଙ୍‌ନାମ, ୧୦୦ ଉଦକନାମ, ୩୭ଟି ନଦୀ ନାମ, ୨୬ଟି ଅଶ୍ୱନାମ, ୧୦ଟି ଇଷ୍ଟୋପଯୋଜନ ଅଶ୍ୱ ନାମ, ୧୦ଟି ପ୍ରକାଶାର୍ଥବୋଧିକା ଧାତୁର ନାମ, ୧୧ଟି ଜ୍ୟୋତିଃଷ୍ମାନ୍ ପଦାର୍ଥବୋଧକ ପଦ ଏବଂ ୧୭ଟି ପ୍ରକାଶାର୍ଥକ ଧାତୁ ନାମ ଅଛି ।

ଦ୍ୱିତୀୟାଧ୍ୟାୟରେ ୨୫ଟି ମନୁଷ୍ୟ ନାମ, ୧୨ଟି ବାହୁ ନାମ, ଦ୍ୱାବିଂଶ ଅଙ୍ଗୁଳି ନାମ, ୧୮ଟି କାମନାର୍ଥ ବୋଧକ ଧାତୁର ନାମ, ଅଷ୍ଟବିଂଶ ଅନ୍ନ ନାମ, ୧୦ଟି ଅଭିକର୍ମ ନାମ, ୨୮ଟି

(୧) "ଅନାଦି ନିଧନା ନିତ୍ୟା ବାଗୁତ୍ସୃଷ୍ଟା ସ୍ୱୟମ୍ଭୁବା"

ଅର୍ଥାତ୍ ସ୍ୱୟମ୍ଭୁ କର୍ତ୍ତୃକ ଉତ୍ସୃଷ୍ଟ ହେଲେ ମଧ୍ୟ ଏହି ବାକ୍ ନିତ୍ୟ । ଏହାର ଆଦି ନାହିଁ କି ନିଧନ ମଧ୍ୟ ନାହିଁ ।

ବଳର ନାମ, ୨୮ଟି ଧନ ନାମ, ୯ଟି ଗୋନାମ, ୧୦ଟି କ୍ରୁଧ୍ୟତି କର୍ମନାମ, ୧୧ଟି କ୍ରୋଧନାମ, ୧୨ଟି ଗତି କର୍ମ ନାମ, ୨୬ଟି କ୍ଷିପ୍ରନାମ, ୧୧ଟି ଅନ୍ତିକନାମ, ୪୬ଟି ସଂଗ୍ରାମ ନାମଳ ୧୦ଟି ବ୍ୟାପ୍ତକର୍ମ ନାମ, ୩୩ଟି ବଧକର୍ମ ନାମ, ୧୮ଟି ବଜ୍ରନାମ, ୪ଟି ଐଶ୍ୱର୍ଯ୍ୟ କର୍ମ ନାମ, ୨୪ଟି ଈଶ୍ୱର ନାମ ଏବଂ ୨୨ଟି ଐଶ୍ୱର୍ଯ୍ୟପଦର ପ୍ରତିଶବ୍ଦ ବିଦ୍ୟମାନ ।

ତୃତୀୟ ଅଧ୍ୟାୟରେ ୧୨ଟି ବହୁନାମ, ୧୧ଟି ହ୍ରସ୍ୱନାମ, ଷୋଡ଼ଶରୂପ ନମେ, ୧୦ଟି ପ୍ରଶସ୍ୟନାମ, ୧୦ଟି ପରିଚରଣ କର୍ମନାମ, ୨୧ଟି ସୁଖନାମ, ୧୧ଟି ପ୍ରଜ୍ଞା ନାମ, ୬ଟି ସତ୍ୟ ନାମ, ୮ଟି ପଶ୍ୟତିକର୍ମ ନାମେ, ୯ଟି ସର୍ବପଦ ସମାମ୍ନାନ ନାମ, ୪୪ଟି ଅର୍ଚ୍ଚତିକର୍ମ ନାମ, ୨୪ଟି ମେଧାବୀ ନାମ, ୧୩ଟି ସ୍ତୋତ୍ରୀ ନାମ, ୧୫ଟି ଯଜ୍ଞନାମ, ୮ଟି ଋତ୍ୱିକ୍ ନାମ, ୧୭ଟି ଯାଚଞ୍ଚା କର୍ମ, ୧୦ଟି ଦାନ କର୍ମ, ୪ ଅଧୋକ୍ଷଣା କର୍ମ, ୧୪ଟି କୂପ ନାମ, ୧୪ଟି ସ୍ତେନ ନାମ, ୬ ଅନ୍ତର୍ଦ୍ଧାନ ନାମ, ୫ଟି ଦୂର ନାମ, ୬ଟି ପୁରାଣ ନାମ, ୬ ନୂତନ ନାମ, ୨୭ଟି ମନୁଷ୍ୟର ପୁରୁଷାଙ୍ଗ ପ୍ରଭୃତିର ପ୍ରତିଶବ୍ଦ ୨୪ଟି ଦ୍ୟାବା ପୃଥିବୀ ନାମ ଅଛି ।

ଚତୁର୍ଥ ଅଧ୍ୟାୟରେ ବିଭିନ୍ନାର୍ଥ ଜ୍ଞାପକ କେତେକ ବୈଦିକ ନାମ ଓ ୧୩୩ଟି ଉପନାମ ବିଦ୍ୟମାନ ।

ପଞ୍ଚମ ଅଧ୍ୟାୟରେ ଅଗ୍ନିର ବିଭିନ୍ନ ନାମ ମାତ୍ର ସନ୍ନିବିଷ୍ଟ ଏବଂ ଅନ୍ୟ କେତେ ବିଶିଷ୍ଟ ନାମ ଲେଖାଅଛି, ଏଥିରେ ନିଘଣ୍ଟୁ ସମାପ୍ତ ।

ନିରୁକ୍ତ ଦୁଇ ଭାଗରେ ବିଭକ୍ତ, ପୂର୍ବଷଟ୍କ ଓ ଉତ୍ତରଷଟ୍କ ବର୍ଣ୍ଣିତ ଶବ୍ଦଗୁଡ଼ିକର ବ୍ୟୁତ୍ପତ୍ତିର୍ଥ ମଧ୍ୟ ଦେଇଅଛନ୍ତି । ସେ ସମସ୍ତ ସମ୍ୟକ୍ ଅବଗତ ନହେଲେ ନାମଗୁଡ଼ିକ ଭିନ୍ନାର୍ଥ ପ୍ରତିପାଦକ ହୋଇଯିବ ।

ନିରୁକ୍ତର ଉତ୍ତର ଷଟ୍କରେ ପରୋକ୍ଷକୃତ, ପ୍ରତ୍ୟକ୍ଷକୃତ ଓ ଅଧ୍ୟାତ୍ମିକ ଏହିପରି ତ୍ରିବିଧ ମନ୍ତ୍ର ବିଭାଗ ଏବଂ ପ୍ରତ୍ୟେକ ମନ୍ତ୍ରର ଦେବତା, ଋଷି, ଛନ୍ଦ କଥିତ ହୋଇଅଛି । ମନ୍ତ୍ରଦ୍ରଷ୍ଟାର ନାମ ଋଷି । ବିଷୟର ନାମ ଦେବତା । ନିର୍ଦ୍ଦିଷ୍ଟ ଅକ୍ଷରବଦ୍ଧ ଭାବବ୍ୟକ୍ତର ନାମ ଛନ୍ଦ । ଯେଉଁ ମନ୍ତ୍ରରେ ପ୍ରଥମ ପୁରୁଷର କ୍ରିୟାପଦ ଥାଏ ତାହାହିଁ ପରୋକ୍ଷକୃତ ମନ୍ତ୍ର । ଯହିଁରେ ମଧ୍ୟମ ପୁରୁଷର କ୍ରିୟାପଦ ଥାଏ ତାହା ପ୍ରତ୍ୟକ୍ଷୀକୃତ ଏବଂ ଯାହା ଉତ୍ତମ ପୁରୁଷର କ୍ରିୟା ପଦଯୁକ୍ତ ତାହା ଆଧ୍ୟାତ୍ମିକ ମନ୍ତ୍ର ।

ପୃଥିବୀ ଅନ୍ତରୀକ୍ଷ ଓ ଦ୍ୟୁସ୍ଥାନ ଭେଦେ ତ୍ରିବିଧ ଦେବତାର କଥା । ପ୍ରାତଃ ପୃଥିବୀ ଦେବତା, ମଧ୍ୟାହ୍ନ ସବନେ ଅନ୍ତରୀକ୍ଷ ଦେବତା, ତୃତୀୟସବନେ ଦ୍ୟୁସ୍ଥାନ ଦେବତା । ପୃଥିବୀ ସ୍ଥାନ ଦେବତାର ସ୍ତୁତି ମନ୍ତ୍ରରେ ପ୍ରଥମାଧ୍ୟାୟ ସମାପ୍ତ । ଦ୍ୱିତୀୟାଧ୍ୟାୟଟି ଅନ୍ୟ କେତେକ ପୃଥିବୀ ସ୍ଥାନ ଦେବତାମୂଳକ ମନ୍ତ୍ରବ୍ୟାଖ୍ୟାରେ ସନ୍ନିବଦ୍ଧ ।

ପୃଥିବୀର ଆୟତନ ଏବଂ ଗୋ, ଅଶ୍ୱ, ଜଳ ଇତ୍ୟାଦି ଦେବତା ବିଷୟକ ମନ୍ତ୍ରବ୍ୟାଖ୍ୟାରେ ତୃତୀୟ ଅଧ୍ୟାୟ ପରିପୂର୍ଣ୍ଣ । ଚତୁର୍ଥଟି ମଧ୍ୟମ ଅନ୍ତରୀକ୍ଷସ୍ଥ ଦେବତାସ୍ତୁତିମୂଳକ ମନ୍ତ୍ରବ୍ୟାଖ୍ୟାରେ

ପରିପୂର୍ଣ୍ଣ । ପଞ୍ଚମାଧ୍ୟାୟ ଶ୍ୟେନ ଓ ସୁପର୍ଣ୍ଣା ଗାୟତ୍ରୀ କର୍ତ୍ତୃକ ସୋମହରଣାତ୍ମକ ପାବମାନୀ ଋଙ୍ମନ୍ତ୍ର ବ୍ୟାଖ୍ୟା ଓ ବାଣୀସ୍ତୁତିମୂଳକ କତିପୟ ମନ୍ତ୍ର ବ୍ୟାଖ୍ୟାରେ ସମାପ୍ତ । ଷଷ୍ଠାଧ୍ୟାୟ ସୁଦ୍ଧା ଦ୍ୟୁସ୍ଥାନ ଦେବତାସ୍ତୁତିମୂଳକ କତିପୟ ମନ୍ତ୍ରବ୍ୟାଖ୍ୟାରେ ପରିପୂର୍ଣ୍ଣ । ସପ୍ତମାଧ୍ୟାୟ ପରିଶିଷ୍ଟାତ୍ମକ । ଏହି ତିନିସ୍ଥାନ ଦେବତା ସଙ୍କରାତ୍ମକ ସ୍ତୁତିମୂଳକ ଋଙ୍ମନ୍ତ୍ର ବ୍ୟାଖ୍ୟା ଓ ଅପର ପରିଶିଷ୍ଟାତ୍ମକ । ଅଷ୍ଟମ ଅଧ୍ୟାୟ ଉର୍ଦ୍ଧ୍ୱ ମାର୍ଗ ଗତିମୂଳକ, ଅପର କତିପୟ ମନ୍ତ୍ରବ୍ୟାଖ୍ୟାରେ ସମ୍ପୂର୍ଣ୍ଣ ।

ନିରୁକ୍ତ ଶାସ୍ତ୍ରର ମୂଳ ଯେ ପଞ୍ଚଭୌତିକ ଜୀବଜଗତ ତାହା ଯାସ୍କାଚାର୍ଯ୍ୟ ନିର୍ଘଣ୍ଟରୂପ ଅଧ୍ୟାୟମାନଙ୍କରେ ବିଭାଗ କରି ଇଙ୍ଗିତ ଦେଇଅଛନ୍ତି କି ଜୀବର ସୃଷ୍ଟି, ସ୍ଥିତି, ଲୟ ପ୍ରଭୃତି ଅପବର୍ଗ ବିବରଣାତ୍ମକ କେବଳ ।

**ଛନ୍ଦଃ**

ବୈଦିକ ଛନ୍ଦ ପ୍ରକରଣ ସପ୍ତପ୍ରାଣରୁ (ପଞ୍ଚଜ୍ଞାନେନ୍ଦ୍ରିୟ, ମନ ଓ ବୁଦ୍ଧି) ଉତ୍ପତ୍ତି । ଋଷିଗଣ ସେହି ସପ୍ତଛନ୍ଦର ପ୍ରତ୍ୟେକର ପ୍ରତି ପାଦରେ (Merrical foot) ପର ପର ଚାରି ଚାରିଟି ଅକ୍ଷର ବୃଦ୍ଧିକରି ଚତୁର୍ବର୍ଗ ବାସନା ଇଙ୍ଗିତରେ ଅଶେଷ ଗୂଢ଼ଭାବ ଜଗତ ପ୍ରତୀକରେ ବହୁ ଛନ୍ଦର ଅବତାରଣା କରିଅଛନ୍ତି । ତନ୍ମଧ୍ୟରୁ ସପ୍ତ ପ୍ରାଣସ୍ପନ୍ଦନ ହିଁ ସପ୍ତଛନ୍ଦ ଏହା ମୁଣ୍ଡକର ଅଷ୍ଟମାଦି ମନ୍ତ୍ରରେ ଦ୍ରଷ୍ଟବ୍ୟ ।

ସୃଷ୍ଟି କାଳରେ ଅବାତ ପ୍ରାଣସମ୍ଭୂତ ପ୍ରବହ, ନିବହ, ପରାବହ, ଉଦ୍‌ବହ, ସମ୍ବହ, ପରିବହ ଏବଂ ଆବହ ନାମକ ସପ୍ତପ୍ରାଣ ହିଁ ସପ୍ତାର୍ଚ୍ଚିଅଗ୍ନି । ଏମାନେ ବ୍ରହ୍ମାଗ୍ନିରେ ଆହୁତି ବିଧାନରେ ସମିଧ ସ୍ଥାନୀୟ ।

ଜଗତର ମୂଳଛନ୍ଦ ପ୍ରାଣସ୍ପନ୍ଦନ । ପଞ୍ଚ ଜ୍ଞାନେନ୍ଦ୍ରିୟ ମନ ଓ ବୁଦ୍ଧିର ଛନ୍ଦରେ, ସ୍ପନ୍ଦନରେ, ପ୍ରରୋଚନାରେ, ଅନୁପ୍ରେରଣାରେ ଜୀବର ଅଶେଷ କର୍ମ ସମ୍ପାଦିତ ହୁଏ ।

ଜୀବସୃଷ୍ଟିରୁ ବ୍ରହ୍ମସାଯୁଜ୍ୟରୂପ ମୋକ୍ଷ ପର୍ଯ୍ୟନ୍ତ ଯେଉଁ ସମସ୍ତ ଭାବ ପ୍ରକଟିତ ହୁଏ ତାହାହିଁ ବେଦର ବିଭିନ୍ନ ଛନ୍ଦ ଏବଂ ସେଥିରେ ହିଁ ଶିକ୍ଷାଦି ଶାସ୍ତ୍ର ପ୍ରତିଷ୍ଠିତ ।

ଗାୟତ୍ରୀ ପାଦର ଚାରୋଟି ଅକ୍ଷର ବୃଦ୍ଧିରେ ଉଷ୍ଣିକ, ପୂର୍ବବତ୍ ଚାରି ଅକ୍ଷର ବୃଦ୍ଧି କ୍ରମେ ଅନୁଷ୍ଟୁପ୍, ବୃହତୀ, ପଂକ୍ତି, ତ୍ରିଷ୍ଟୁପ୍, ଜଗତୀ ଏହି ସାତଟି ମୂଳଛନ୍ଦ ଉତ୍ପନ୍ନ ହୋଇଅଛି ।

ପ୍ରାଣ-ପ୍ରଣବ-ଉକ୍ଥ-ଭାରତୀ-ବାକ୍ ହିଁ ଗାୟତ୍ରୀ ଛନ୍ଦ । ଏହା ଶିକ୍ଷା ଭୂମିକାରେ ବର୍ଣ୍ଣିତ । ଗାୟତ୍ରୀ ଛନ୍ଦର ଚତୁର୍ବିଂଶାକ୍ଷର (ଚତୁର୍ବିଂଶତି ତତ୍ତ୍ୱ) ଏବଂ ମନ, ବୁଦ୍ଧି, ଚିତ୍ତ, ଅହଂକାର ଏହି ଚବିଶରୁ ଜୀବଜଗତର ଉତ୍ପତ୍ତି । ଏମାନେ କ୍ଷର ଓ ଅନିତ୍ୟ । ଏଗୁଡ଼ିକ ଯେତେବେଳେ ବ୍ରହ୍ମରେ ଲୟପ୍ରାପ୍ତ ହୁଅନ୍ତି, ତେବେ ଅକ୍ଷର ବା ଅବ୍ୟୟ ପଦବାଚ୍ୟ । ପ୍ରଣବ ଗାୟତ୍ରୀର ଚବିଶ ଅକ୍ଷର ଛାନ୍ଦୋଗ୍ୟ ଶ୍ରୁତିରେ ବର୍ଣ୍ଣିତ ।

ଜଗତୀ ଛନ୍ଦର ଚାରି ପାଦରେ ଚାରି ଅକ୍ଷର ବୃଦ୍ଧିରେ ୫୨ ଅକ୍ଷର, ଅତି ଜଗତୀ ଏହି କ୍ରମେ ଚାରି ଅକ୍ଷର ବୃଦ୍ଧି ଯୋଗେ ଶକ୍କରୀ, ଅତିଶକ୍କରୀ, ଅଷ୍ଟି, ଅତ୍ୟଷ୍ଟି, ଧୃତି, ଅତିଧୃତି, ଅତିଛନ୍ଦ, କୃତି, ପ୍ରକୃତି, ଆକୃତି, ବିକୃତି, ସଂସ୍କୃତି, ଅତିକୃତି, ୧୪୦ ଅକ୍ଷର ବିଶିଷ୍ଟ ଉତ୍କୃତି, ଏହି ସାତୋଟିର ନାମ ବିଚ୍ଛନ୍ଦ ।

ପିଙ୍ଗଳ ସୂତ୍ର ନାମକ ଛନ୍ଦୋଗ୍ରନ୍ଥେ ବୈଦିକ ଓ ଲୌକିକ ଦୁଇଶତ ଛନ୍ଦର ନାମ ଓ ଲକ୍ଷଣ ବିବୃତ ଅଛି । ତନ୍ମଧ୍ୟେ ଭୂରିକ, ସରାଟ, ବିରାଟ, ନିଗୃଢ଼, ବିଚୃତ, ଆସ୍ତାରପଂକ୍ତି, ବିସ୍ତାରପଂକ୍ତି, ସଂସ୍ତାରପଂକ୍ତି, ଦୈବୀ, ଗାୟତ୍ରୀ, ଉଷ୍ଣିକ୍ ଆଦି ବୈଦିକ ଛନ୍ଦ ବହୁଳ ରୂପେ ଲିଖିତ ।

ସୁତରାଂ ଶିକ୍ଷାଦି ବେଦଷଡ଼ଙ୍ଗ, ପୂର୍ଣ୍ଣାଙ୍ଗ, ବେଦପୁରୁଷ ବା ପରଂବ୍ରହ୍ମ ଭୌତିକ ଜଗତରେ ନିତ୍ୟ ବିଦ୍ୟମାନ । ଜୀବର ନିଜ ବୋଧରେ ବ୍ରହ୍ମଜ୍ଞାନ ହୁଏ, ଏହା ଶ୍ରୁତିପ୍ରତିପନ୍ନ ।

ଷୋଡ଼ଶକଳା, ଯଜ୍ଞପୁରୁଷ ଜୀବର ଷୋଡ଼ଶ କଳା ମାତ୍ର । ଏମାନେ ସୋମଯାଗର ଷୋହଳ ଜଣ ଋତ୍ୱିକ୍ ସ୍ଥାନୀୟ । ଜୀବ ନିଜେ ବ୍ରହ୍ମଯଜ୍ଞର ଯଜମାନ ଏବଂ ବୁଦ୍ଧି ଯଜମାନର ମହିଷୀ, ଯେହେତୁ "ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ । ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ" । (ବୃହଦାରଣ୍ୟକ ୫ ଅଧ୍ୟାୟ) ଇତି ଛନ୍ଦବିଚାର ।

## ଜ୍ୟୋତିଷ

ଲଗଧ ମୁନି କାଳ ଜ୍ଞାନ ଉଦ୍ଦେଶ୍ୟରେ ମାସ, ଯୁଗ, କଳ୍ପ, ଅୟନ, କଳା, ମୁହୂର୍ତ୍ତ, ଲବ, କାଷ୍ଠା, କୃଷ୍ଣପକ୍ଷ, ଶୁକ୍ଳପକ୍ଷ, ନକ୍ଷତ୍ର, ତିଥି, ବାର, ଲଗ୍ନ ଇତ୍ୟାଦିର ଛୋଟ ଛୋଟ ସୂତ୍ର କରି ବେଦାଙ୍ଗ ଜ୍ୟୋତିଷ ପ୍ରଣୟନ କରିଅଛନ୍ତି । କେଉଁ ରାଶିରେ କେଉଁ ଲଗ୍ନରେ କେଉଁ ନକ୍ଷତ୍ର ଇତ୍ୟାଦିରେ କେଉଁ ଯଜ୍ଞ ଆରମ୍ଭ ଓ ସମାପ୍ତ କରାଯିବ ଇତ୍ୟାଦି ଯଜ୍ଞ କାଳଜ୍ଞାନ ଜ୍ୟୋତିଷ ଦ୍ୱାରା ହିଁ ନିରୂପଣୀୟ । ତେବେ ଜ୍ୟୋତିଷ ପଦରେ "ଜ୍ୟୋତିଷାଂ ସୂର୍ଯ୍ୟାଦିଗ୍ରହାଣାଂ ବୋଧକଶାସ୍ତ୍ରଂ" ସୂର୍ଯ୍ୟାଦିଗ୍ରହ ବା କାଳ ପ୍ରଭୃତିର ବୋଧକ ବେଦାଙ୍ଗ ଶାସ୍ତ୍ରଭେଦ । ଯେଉଁ ଶାସ୍ତ୍ରଦ୍ୱାରା ନଭୋମଣ୍ଡଳସ୍ଥ ଯାବତୀୟ ଜ୍ୟୋତିଷ୍କ ମଣ୍ଡଳର ବିଷୟ ଆବିଷ୍କୃତ ହୋଇଅଛି, ଅର୍ଥାତ୍ ସୂର୍ଯ୍ୟାଦି ଗ୍ରହମାନଙ୍କର ଗତି, ସ୍ଥିତି ପ୍ରଭୃତି ଓ ଗଣିତ ଜାତକ, ହୋରାଦିର ସମ୍ୟକ୍‌ଜ୍ଞାନ ହୁଏ ତାହାକୁ ଜ୍ୟୋତିଷ ଶାସ୍ତ୍ର କୁହାଯାଏ । ଏହି ଶାସ୍ତ୍ରଟି ଅପରାପର ଶାସ୍ତ୍ରର ଚକ୍ଷୁ । ଜ୍ୟୋତିଷ କାଳ ବିନା ଜ୍ଞାନ ଅସମ୍ଭବ ।

ଭଗବାନ ଜଗତରେ ଯେପରି ଆଶ୍ଚର୍ଯ୍ୟ ପଦାର୍ଥ ସୃଷ୍ଟି କରିଅଛନ୍ତି, ତଦ୍‌ବତ୍ ସେହି ରହସ୍ୟ ବିଶ୍ଳେଷଣ ଲାଗି ମନୁଷ୍ୟକୁ ପ୍ରତିଭା ସୁଦ୍ଧା ଦେଇଅଛନ୍ତି । ଆଜିକାଲି ୟୁରୋପୀୟମାନେ ଏହି ଶାସ୍ତ୍ରର ଅନୁଶୀଳନରେ ଆକୃଷ୍ଟ ହୋଇ ଜ୍ୟୋତିଷ୍କମଣ୍ଡଳର ପର୍ଯ୍ୟବେକ୍ଷଣ ଲାଗି ଯେତେ ଅଦ୍ଭୁତ ଯନ୍ତ୍ର ଆବିଷ୍କାର କରିଅଛନ୍ତି ତାହା ଶୁଣିଲେ ଚମତ୍କୃତ ହେବାକୁ ହୁଏ । କିନ୍ତୁ ସୌରଜଗତର ତତ୍ତ୍ୱାନୁସନ୍ଧାନ ଲାଗି ପ୍ରାଚ୍ୟ ପ୍ରତିଭା ପ୍ରଥମରୁ ହିଁ ଜାଗରୁକ ଥିଲା ।

## ବୈଦିକ ଜ୍ୟୋତିଷ

ତୈତ୍ତରୀୟ ସଂହିତାରୁ ପ୍ରମାଣ ମିଳେ ଯେ ପ୍ରାଚୀନ କାଳରେ ବାସନ୍ତ ବିଷୁବଦିନ କୃତ୍ତିକା ନକ୍ଷତ୍ରରେ ସଂକ୍ରମିତ ଥିଲା । ଶତପଥ ବ୍ରାହ୍ମଣ କହେ, ବୈଦିକ ବର୍ଷାରମ୍ଭ ରୂପେ ଯେତେବେଳେ ଶାରଦ ବିଷୁବଦିନ ଧରାଯାଇ ଥିଲା ତଦବଧି ପ୍ରାଚୀନ ଓ ନୂତନ ଉଭୟବିଧ ବର୍ଷାରମ୍ଭ ଲିପିବଦ୍ଧ କରାଯାଉଥିଲା । ସାଧାରଣତଃ ଏହା ବୁଝିବାକୁ ହେବ ଯେ ଅୟନ ମାଘରେ ଆରମ୍ଭ ହେଲେ ନିଶ୍ଚୟ କୃତ୍ତିକାକୁ ରବି ସଂକ୍ରମିତ ହେବ ।

ସୂର୍ଯ୍ୟ ମୃଗଶିରା ନକ୍ଷତ୍ରକୁ ସଂକ୍ରମିତ ହେଲେ ଉତ୍ତରାୟଣ ଆରମ୍ଭ ହୁଏ । ଏହା ସ୍ପଷ୍ଟ ରୂପେ ବର୍ଣ୍ଣିତ । ଋଗ୍‌ବେଦରେ (୧୦।୮୬।୪।୫) ଇନ୍ଦ୍ର ସୂର୍ଯ୍ୟକୁ କହୁଅଛନ୍ତି, "ହେ କ୍ଷମତାଶାଳୀ ବୃଷାକପି ଯେବେ ଉର୍ଦ୍ଧ୍ୱରେ ଉଦିତ ହୋଇ ତୁମେ ଆମ୍ଭମାନଙ୍କ ଗୃହରେ ଉପସ୍ଥିତ ହେବ ସେତେବେଳେ ମୃଗ ରହିବ କେଉଁଠାରେ ?" ଅର୍ଥାତ୍ ସୂର୍ଯ୍ୟ ମୃଗଶିରା ସଂକ୍ରମିତ ହେଲେ ଉକ୍ତ ନକ୍ଷତ୍ରପୁଞ୍ଜ ଅଦୃଶ୍ୟ ହୁଏ ।

ସୂର୍ଯ୍ୟ ଯେବେ ଇନ୍ଦ୍ରାଳୟରେ ପ୍ରବେଶ କରନ୍ତି ଅର୍ଥାତ୍ ନିରକ୍ଷବୃତ୍ତରେ ଉତ୍ତରାଂଶରେ ଗତି କରନ୍ତି ସେ ସମୟରେ ଏପରି ଘଟଣା ଘଟିଥାଏ ।

ଏହି ଅୟନ ଗଣନା ବିଷୟରେ ନାନାମତ ଦେଖାଯାଏ । ଆର୍ଯ୍ୟଜାତି ଅତି ପ୍ରାଚୀନ କାଳରୁ ଆୟନଚଳନ ଲିପିବଦ୍ଧ କରିଯାଇଅଛନ୍ତି । ଯଥା - ପୁନର୍ବସୁଠାରୁ ମୃଗଶିରା, (ଋଗ୍‌ବେଦ) ମୃଗଶିରାଠାରୁ ରୋହିଣୀ, (ଐ.ବ୍ରା) ରୋହିଣୀଠାରୁ କୃତ୍ତିକା, (ତୈତ୍ତରୀୟ) କୃତ୍ତିକାଠାରୁ ଭରଣୀ (ବେଦାଙ୍ଗ ଜ୍ୟୋତିଷ) ଏବଂ ଭରଣୀଠାରୁ ଅଶ୍ୱିନୀ ଇତ୍ୟାଦି ।

ସୂର୍ଯ୍ୟସିଦ୍ଧାନ୍ତରୁ ଅନୁମିତ ହୁଏ ଯେ ଭାରତରେ ସୃଷ୍ଟି ଆରମ୍ଭରୁ ଜ୍ୟୋତିଷର ଚର୍ଚ୍ଚା ଚାଲିଅଛି । ଅଧ୍ୟାପକ ଜେକୋବି (Jacobi)କହନ୍ତି, ଆମେ ପ୍ରଥମେ ବର୍ଷାକାଳର ଉଲ୍ଲେଖ ଦେଖୁଁ । ଋଗ୍‌ବେଦ ପ୍ରକାଶିତ ସ୍ଥାନ ପଞ୍ଜାବରେ ଋତୁପ୍ରତି ଦୃଷ୍ଟି ରଖିଲେ ତାହା ସହଜରେ ବୁଝାଯାଏ ଯେ, ବର୍ଷାକାଳ ଗ୍ରୀଷ୍ମାୟନରେ ସଂଘଟିତ ହେଉଥିଲା । ପରେ ନକ୍ଷତ୍ରାଦି ଗତିର ଅଳ୍ପ ପରିବର୍ତ୍ତନ ହେତୁ ଋତୁ ପ୍ରଭୃତିର ମଧ୍ୟ ଭେଦ ଜନ୍ମିଅଛି । ଗୃହ୍ୟ ସୂତ୍ରରେ ମଧ୍ୟ ଏହାର ଆଭାସ ମିଳେ ।

ଏତଦ୍ଦ୍ୱାରା ସ୍ପଷ୍ଟ ରୂପେ ଜଣାଯାଏ ଯେ ଜ୍ୟୋତିଷ ବେଦର ଏକ ପ୍ରଧାନ ଅଙ୍ଗ । ବେଦର ପ୍ରତ୍ୟେକ ବିଷୟ ଏହି ଶାସ୍ତ୍ରର ସାହାଯ୍ୟ ବିନା ସମ୍ପାଦିତ ହୋଇପାରିବ ନାହିଁ । ବିକଳାଙ୍ଗ ଯେପରି ସକଳ କାର୍ଯ୍ୟରେ ଅକ୍ଷମ ତଦ୍ୱତ୍ କାଳଜ୍ଞାନ ନହେଲେ ଯଜ୍ଞାଦି ଅନୁଷ୍ଠାନରେ ପ୍ରତ୍ୟବାୟ ଘଟେ ।

## ଜ୍ୟୋତିଷର କ୍ରମପ୍ରସାର

ଯେଉଁ ଶାସ୍ତ୍ରଦ୍ୱାରା ନଭୋମଣ୍ଡଳସ୍ଥ ଯାବତୀୟ ଜ୍ୟୋତିଷ୍କମଣ୍ଡଳର ବିଷୟ ସକଳ ପୂର୍ଣ୍ଣରୂପେ ଜଣାଯାଏ ଏବଂ ଯେଉଁ ଗ୍ରହ ସକଳର ଗତିବିଧି ଲକ୍ଷ୍ୟକରି ସମୟ ନିରୂପଣ କରାଯାଏ, ତାହାକୁ

ଜ୍ୟୋତିଷ ବା ଜ୍ୟୋତିଃ ଶାସ୍ତ୍ର କୁହାଯାଏ । ଏହି ଶାସ୍ତ୍ର ଦ୍ୱିବିଧ- ଗଣିତ ଜ୍ୟୋତିଷ ଓ ଫଳିତ ଜ୍ୟୋତିଷ । ପ୍ରଥମରେ ଉଭୟ ଜ୍ୟୋତିଷ କାର୍ଯ୍ୟତଃ ଏକ ବୋଲି ଧରାଯାଉଥିଲା, କିନ୍ତୁ ଆଜିକାଲି ପୃଥକୀକୃତ ହୋଇଅଛି ।

ଗଣିତ ଜ୍ୟୋତିଷରେ ଅନନ୍ତ ନୀଳାକାଶରେ ଅତୁଳାନନ୍ଦକନ୍ଦ ଜ୍ୟୋତିଷ୍ମନ୍ତ ଚନ୍ଦ୍ରସୂର୍ଯ୍ୟଙ୍କର ଆବିର୍ଭାବ, ନିୟମିତ ଗମନାଗମନ, ଉଜ୍ଜ୍ୱଳମୟୀ ତାରକାନିକରର ସ୍ଥିତି, ଗତି, ଆକାର ପ୍ରଭୃତି ଏବଂ ସକଳ ଗ୍ରହନକ୍ଷତ୍ରର ଦୂରତ୍ୱ, ଆକୃତିପ୍ରକୃତି, ପ୍ରତ୍ୟାବର୍ତ୍ତନ, ଉଦୟାସ୍ତ କାଳ ଓ ଏମାନଙ୍କର ଅବସ୍ଥାନ ସମୟେ ଫଳାଫଳ ପ୍ରଭୃତି ସୁଚାରୁରୂପେ ବର୍ଣ୍ଣିତ ହୋଇଅଛି ।

ଅନ୍ୟ ସକଳ ଶାସ୍ତ୍ର ଅପେକ୍ଷା ଗଣିତ ଜ୍ୟୋତିଷ ଶ୍ରେଷ୍ଠ ଓ ଶ୍ରେୟସ୍କର । ଯେହେତୁ ଏହାର ସାହାଯ୍ୟଦ୍ୱାରା ଆମ୍ଭେମାନେ ବିଶ୍ୱପତିଙ୍କର ଅନନ୍ତ ରାଜ୍ୟରେ ଅନନ୍ତ କୌଶଳମୟୀ ଲୀଳାର ସ୍ଥଳୀଭୂତ ଅସଂଖ୍ୟ ସୂର୍ଯ୍ୟାଦି ଗ୍ରହୋପଗ୍ରହ, ପୃଥିବୀ ପ୍ରଭୃତିର ସମାବେଶ ସଂଦର୍ଶନ ଓ ଅନନ୍ତ ଶୂନ୍ୟ ମାର୍ଗର ନାନା ବିଷୟ ଉପଲବ୍ଧି କରି ଉନ୍ନତି ପଥରେ ଅଗ୍ରସର ହେଉଅଛୁଁ ।

ଫଳିତ ଜ୍ୟୋତିଷ ଶାସ୍ତ୍ରଦ୍ୱାରା ମାନବର ଶୁଭାଶୁଭ ନିର୍ଣ୍ଣୟ କରାଯାଏ । ଜନ୍ମକାଳୀନ ଗ୍ରହଚକ୍ରର ଅନୁସରଣରେ ଗ୍ରହଗଣର ସ୍ଥିତି ଅନୁଲକ୍ଷ କରି ବିଜ୍ଞ ଜ୍ୟୋତିଷୀ ମାନବର ଭବିଷ୍ୟତ୍ ଜୀବନୀ ଓ ବ୍ୟକ୍ତି ବିଶେଷର ଶାରୀରିକ ଗଠନ ଓ ମାନସିକ ଅବସ୍ଥା ପ୍ରଭୃତି ନିରୂପଣ କରିପାରେ ।

ଏହି ଜ୍ୟୋତିଷ ଗ୍ରନ୍ଥ ଅତି ପ୍ରାଚୀନ କାଳରୁ ଭାରତରେ ପ୍ରଚଳିତ । ଆର୍ଯ୍ୟଋଷିମାନେ ବୈଜ୍ଞାନିକ ଦୃଷ୍ଟିରେ ତଥା ନିଜ ପ୍ରତିଭା ବଳରେ କୌଣସି ଯନ୍ତ୍ରର ସାହାଯ୍ୟ ନନେଇ ଘରଛାତରେ ବଂଶୀନଳୀ ଖଞ୍ଜି ଖଗୋଳକୁ ସାରାରାତି ଚାହିଁଚାହିଁ ଯେଉଁ ସାରମର୍ମ ଉପଲବ୍ଧି କରି ଏହି ଶାସ୍ତ୍ର ପ୍ରଣୟନ କରିଯାଇଛନ୍ତି, ତଦ୍ୱାରା ଆଜି ସମଗ୍ର ଜଗତ ଚମତ୍କୃତ । ସେମାନେ ବୈଜ୍ଞାନିକ ତତ୍ତ୍ୱବିଶ୍ଳେଷଣରେ କିପରି ପାଟବତା ଲଭିଥିଲେ ତାହା ସହଜେ ଅନୁମେୟ ।

ଅନୁମାନ ହୁଏ ଯେ, ମାନବ ସମାଜର ସଭ୍ୟତା ପୂର୍ବରୁ ଜ୍ୟୋତିଃଶାସ୍ତ୍ରର ଆବିର୍ଭାବ । ଏହି ପ୍ରାଣୀଜଗତ ଗ୍ରହନକ୍ଷତ୍ରାଦିଙ୍କର କେନ୍ଦ୍ରସ୍ଥଳୀ । ଉକ୍ତ ଗ୍ରହ ନକ୍ଷତ୍ରଗଣ ମନୁଷ୍ୟ ଜୀବନ ଉପରେ ପ୍ରଭାବ ବିସ୍ତାର କରିଥା'ନ୍ତି । ଯଦି ସେମାନଙ୍କର ଭୂଗୋଳ ପ୍ରାଣୀଙ୍କ ଉପରେ ଆଧିପତ୍ୟ ନଥା'ନ୍ତା ତେବେ ପୂର୍ବାଚାର୍ଯ୍ୟଗଣ କାହିଁକି ଅସୀମ ଶ୍ରମସ୍ୱୀକାରପୂର୍ବକ ଉକ୍ତ ମାର୍ଗରେ ଗତିଶୀଳ ହୋଇଥା'ନ୍ତେ ।

ଗ୍ରହ ନକ୍ଷତ୍ରାଦିର ସ୍ଥିତିଗତିରୁ ମାନବର ଭବିଷ୍ୟତ ଶୁଭାଶୁଭ ଉପଲବ୍ଧି କରିବା ଯୋଗୁଁ ଆଜି ମାନବ ସମାଜରେ ଫଳିତ ଜ୍ୟୋତିଷର ଆଦର ଏତେ ଅଧିକ । ସେଥିଲାଗି ହିଁ ଉକ୍ତ ଶାସ୍ତ୍ରର ଆବିର୍ଭାବ ।

ଭାରତୀୟ, ଇଜିପ୍‌ସିଏନ୍, ଚୀନ୍, ଗ୍ରୀକ୍, ଗଲ୍‌ଡ଼ିଏନ୍‌ସ, ଜୁସ୍ ଓ ରୋମୀୟମାନେ ଏହି ଜ୍ୟୋତିଃଶାସ୍ତ୍ରକୁ ବିଶ୍ୱାସର ସହିତ ବ୍ୟବହାର କରନ୍ତି । ଖ୍ରୀଷ୍ଟିୟାନମାନେ ସୁଦ୍ଧା ଏ ଶାସ୍ତ୍ରକୁ ଅନେକାଂଶରେ ମାନନ୍ତି ।

କୋପର୍ନିକସ୍ (Copornicus) କହନ୍ତି- ସୂର୍ଯ୍ୟ ଯେବେ ଜଗତର କେନ୍ଦ୍ର ହୁଏ ପୁଣି ପୃଥିବୀ ଯେବେ ଗ୍ରହରୂପେ ତାହାର ଚତୁର୍ଦ୍ଦିଗରେ ଭ୍ରମଣ କରେ ତେବେ ଗ୍ରହମଣ୍ଡଳ ଓ ନକ୍ଷତ୍ରଗଣର ସ୍ଥିତି ଗତିରେ ମନୁଷ୍ୟର ଭାଗ୍ୟ ନିୟନ୍ତ୍ରୃତ୍ୱ କଳ୍ପନା ଅଳୀକ ମାତ୍ର ।

ସମସ୍ତ ବିଜ୍ଞାନ ମଧ୍ୟରେ ଜ୍ୟୋତିଷ ବିଜ୍ଞାନ ଅତି ଆଶ୍ଚର୍ଯ୍ୟ । ପର୍ବତ, ଅରଣ୍ୟ, ଜଳ, ଶସ୍ୟଶ୍ୟାମଳ କ୍ଷେତ୍ର ବିଶିଷ୍ଟ ଭୂମିର ତତ୍ତ୍ୱ ଜାଣିବା ଉପକରଣଗୁଡ଼ିକ ଆମ୍ଭମାନଙ୍କର କରଗତ । ଅତଏବ ତାହାର ତତ୍ତ୍ୱ ଆବିଷ୍କାର କରିବା ସହଜସାଧ୍ୟ । କିନ୍ତୁ ଭୌତିକ ଇନ୍ଦ୍ରିୟାତୀତ ସୁଦୂରସ୍ଥିତ ଗ୍ରହନକ୍ଷତ୍ରାଦିର ବିଷୟ ଅବଗତ ହେବା ଅତ୍ୟାଶ୍ଚର୍ଯ୍ୟ ବ୍ୟାପାର ନୁହେଁ କି? ତଥାପି ଗଣିତ ଶାସ୍ତ୍ରଜ୍ଞମାନେ ଅଲୌକିକ ବିଜ୍ଞାନ ଶକ୍ତିଦ୍ୱାରା ସେମାନଙ୍କର କଳ୍ପନାତୀତ ଦୂରତ୍ୱ, ଆକାର, ପ୍ରକାର, ଗୁରୁତ୍ୱ ଓ ନିର୍ମାଣସାମଗ୍ରୀ ପର୍ଯ୍ୟନ୍ତ ଠିକ୍ ରୂପେ ନିର୍ଣ୍ଣୟ କରିବାରେ ଆଶାତୀତ ନିପୁଣତା ପ୍ରକାଶ କରିଛନ୍ତି । ସେ ସକଳର ବୈଜ୍ଞାନିକ ଉଦ୍ଭାବନ ପ୍ରଣାଳୀର ବିଚାର ସର୍ବସଧାରଣର ସାମର୍ଥ୍ୟ ବହିର୍ଭୂତ ।

୧୬୬୮ ଖ୍ରୀଷ୍ଟାବ୍ଦରେ ସାର୍ ଆଇଜାକ୍ ନିଉଟନ୍‌ଙ୍କର ମାଧ୍ୟାକର୍ଷଣ ଶକ୍ତିର ତଥ୍ୟାବିଷ୍କାର ବିଧିଦ୍ୱାରା ଗଣିତଜ୍ଞମାନଙ୍କର ମୁଷ୍ଟିମେୟ ରୂପେ ଚିହ୍ନିତ ଭୂଗୋଳ ଓ ଖଗୋଳ ତତ୍ତ୍ୱ ବିରାଟ ଆକାର ଧାରଣ କରିଅଛି । ସୂର୍ଯ୍ୟ ବୃତ୍ତାଭାସଗଠିତ ପଥରେ ନିଜର ଆକର୍ଷଣ ଶକ୍ତିଦ୍ୱାରା ପୃଥିବୀ ଓ ଗ୍ରହମାନଙ୍କୁ ଯଥା ସ୍ଥାନରେ ରଖିଅଛନ୍ତି । କିନ୍ତୁ ସୂର୍ଯ୍ୟଙ୍କ ଆକର୍ଷଣ ଶକ୍ତି ହିଁ ପ୍ରଧାନ ନୁହେଁ । ସୂର୍ଯ୍ୟାଦି ଗ୍ରହମଣ୍ଡଳ, ନକ୍ଷତ୍ରମଣ୍ଡଳ ଓ ପୃଥିବୀ ପରସ୍ପର ଶକ୍ତି ବିନିମୟରେ ପରସ୍ପରକୁ ଆକର୍ଷଣ କରି ଧରି ଅଛନ୍ତି । ଅବଶ୍ୟ ସୂର୍ଯ୍ୟଙ୍କଠାରୁ ଗ୍ରହମାନେ ଅପେକ୍ଷାକୃତ କ୍ଷୁଦ୍ର, ତାଙ୍କର ଶକ୍ତି ସୁଦ୍ଧା ନ୍ୟୂନ । ଅତଏବ ସେମାନଙ୍କର ସଂହତି ଶକ୍ତି କାର୍ଯ୍ୟସାଧିକା ହୋଇଅଛି । ଅର୍ଥାତ୍ ସମସ୍ତ ମଣ୍ଡଳର ଆକର୍ଷଣୀ ଶକ୍ତିଦ୍ୱାରା ସମସ୍ତେ ଆକର୍ଷିତ ହୋଇ ପରସ୍ପର ସାହାଯ୍ୟରେ ଅବସ୍ଥିତ ।

ଦୂରବୀକ୍ଷଣ ଯନ୍ତ୍ର ବିନା ଅନେକ ଗ୍ରହ ସ୍ପଷ୍ଟ ଭାବରେ ଦେଖାଯା'ନ୍ତି ନାହିଁ । ସୁପ୍ରସିଦ୍ଧ ଜ୍ୟୋତିର୍ବିଦ କୋପର୍ନିକସ୍ (Copornicus) ତାହାଙ୍କ ଜୀବନରେ ବୁଧଗ୍ରହ ଦର୍ଶନ ଲାଭ ଅସମ୍ଭବ ଭାବି ଦୁଃଖିତ ଥା'ନ୍ତି ।

ଚୀନ୍‌ବାସୀଗଣ ବୁଧ, ଶନି, ମଙ୍ଗଳ, ବୃହସ୍ପତି ଗ୍ରହମାନଙ୍କୁ ଚନ୍ଦ୍ରର ସମାନ ବୋଲି କହନ୍ତି । ଭାରତରେ ମଧ୍ୟ ଅତି ପ୍ରାଚୀନ ଯୁଗରୁ ଜ୍ୟୋତିଃଶାସ୍ତ୍ରର ପ୍ରଚାର ଥିଲା । ଖ୍ରୀଷ୍ଟପୂର୍ବ ୩୦୦୨ ଅବ୍ଦରେ ଶନି ଓ ବୃହସ୍ପତିର ଅନ୍ୟୂନ ଘୂର୍ଣ୍ଣନ ଦେଖାଗଲା; ସୂର୍ଯ୍ୟାଦିଗ୍ରହ ଗହଣର ହିସାବ ମଧ୍ୟ ନିର୍ଣ୍ଣୟ କରାଗଲା ।

ଆଲେକ୍‌ଜାଣ୍ଡାରଙ୍କ (Alexander the Great) ସମୟରେ ଚାଲଡ଼ିୟନ୍ ବା ବେବିଲୀୟନ୍‌ମାନେ ଗବେଷଣାପୂର୍ବକ ଜ୍ୟୋତିଷ ଚର୍ଚ୍ଚାକରି ଅନେକ ବର୍ଷ ପରେ ଧୂମକେତୁର ବୃତ୍ତାଭାସଘଟିତ ଗତି, ତତ୍‌ସମ୍ବନ୍ଧୀୟ ଭବିଷ୍ୟତ କଥା, ଜଗତରେ ତାହାର ସ୍ଥାନାଦି ବିଷୟ ଉଦ୍ଭାବନ କରିଥିଲେ ।

ଇଜିପ୍ଟୀୟ ଧର୍ମଯାଜକମାନେ ଜ୍ୟୋତିଷକୁ ଧର୍ମମୂଳକ ଶାସ୍ତ୍ର ବୋଲି ଆଦର କରନ୍ତି । ଗ୍ରୀକ୍‌ମାନଙ୍କର ପ୍ରାଚୀନ ରାଶିଚକ୍ରର ବିଚାର, ଓ ସୂକ୍ଷ୍ମାଗ୍ର ଅତ୍ୟୁଚ୍ଚ ମନ୍ଦିରାଦି ନିର୍ମାଣରୁ ସେମାନଙ୍କର ବିଜ୍ଞାନ ସମ୍ବନ୍ଧୀୟ ଜ୍ଞାନ ଲାଭର ପରିଚୟ ମିଳେ ।

ଖ୍ରୀଷ୍ଟପୂର୍ବ ୬୩୯ ଅବ୍ଦରେ ମିଲଟସ୍ (Miletus)ରେ ଥେଇଲ୍‌ସ (Theles) ଜନ୍ମଗ୍ରହଣ କରି ସର୍ବପ୍ରଥମେ ସୂର୍ଯ୍ୟଗ୍ରହଣର ଭବିଷ୍ୟତ ବାଣୀ ଶୁଣାଇଥିଲେ । ତାଙ୍କ ପରବର୍ତ୍ତୀ ବୈଜ୍ଞାନିକଗଣ ଜ୍ୟୋତିଷସମ୍ବନ୍ଧେ ଯେଉଁ ମତ ପ୍ରକାଶ କରିଛନ୍ତି ତାହା ଅଦ୍ୟାପି ଆଶ୍ଚର୍ଯ୍ୟଜନକ ଅଟେ ।

ପିଥାଗୋରାସ (Pythaguors) ଗ୍ରହ ମଧ୍ୟରେ ସୂର୍ଯ୍ୟହିଁ କେନ୍ଦ୍ର ବୋଲି ଘୋଷଣା କରିଥିଲେ । ଟାଲମିସ୍‌ଙ୍କ (Tolemes) ସମୟରେ ଏହି ଜ୍ୟୋତିଷ ଶାସ୍ତ୍ରର ଅନେକ ଉନ୍ନତି ଘଟିଥିଲା । ଖ୍ରୀଷ୍ଟପୂର୍ବ ୩୦୦ ବର୍ଷ ସମୟରେ ଟିମୋଚେରିସ୍ ଓ ଏରିଷ୍ଟିଲାସ୍ (Timochares and Aristyllus) ଗ୍ରହବିଷୟକ ତଥ୍ୟ ଆବିଷ୍କାର କରିବା ଲାଗି ନିଯୁକ୍ତ ହୋଇଥିଲେ । ସେମସ୍‌ର ପ୍ରିଷ୍ଟାରକାସ୍ (Pristrechus of Sames) ପୃଥିବୀ ତା'ର ଅକ୍ଷଦଣ୍ଡ ଓ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଦ୍ୱିଗୁଣିତ ଭାବେ ଘୂର୍ଣ୍ଣନ କରେ ବୋଲି ପ୍ରକାଶ କରିଥିଲେ । ହିପ୍ରାକାସ୍ (Hipprachus) ନୂତନ ତଥ୍ୟ ଆବିଷ୍କାରପୂର୍ବକ ନକ୍ଷତ୍ରମାନଙ୍କର ଗୋଟିଏ ତାଲିକା ପ୍ରସ୍ତୁତ କଲେ ।

ଖ୍ରୀଷ୍ଟଜନ୍ମର ୨୦୦ ବର୍ଷ ପରେ ଇଜିପ୍ଟର "କ୍ଲାଉଡ଼ୀୟସ୍ ଟାଲେମି" (Claudius Tolimy) ନିମ୍ନଲିଖିତ ନୂତନ ତଥ୍ୟ ଆବିଷ୍କାର କରି ଖ୍ୟାତିଲାଭ କରିଅଛନ୍ତି । ପୃଥିବୀ ବିଶ୍ୱର କେନ୍ଦ୍ର । ଏହାର ଚତୁର୍ଦ୍ଦିଗରେ ସୂର୍ଯ୍ୟଚନ୍ଦ୍ରାଦି ଗ୍ରହ ନିମ୍ନୋକ୍ତ ପ୍ରକାରେ ଘୂରୁ ଅଛନ୍ତି । ପୃଥିବୀର ସମୀପରେ ଚନ୍ଦ୍ରମଣ୍ଡଳ, ତାପରେ ବୁଧ, ଶୁକ୍ର, ସୂର୍ଯ୍ୟ, ମଙ୍ଗଳ, ବୃହସ୍ପତି ଓ ଶନି ପ୍ରଭୃତି ମଣ୍ଡଳ, ତାପରେ ନିଶ୍ଚଳ ତାରା ମଣ୍ଡଳ କ୍ରମରେ ଦୁଇଟି ସ୍ଫଟିକମୟ ପଥରେ ଘୂରୁଛନ୍ତି । ଏହି ଶେଷୋକ୍ତ କୋଲିୟମ୍ ଏମ୍ପୀରିୟସ୍ (Coleum Empyreus) କହିଅଛନ୍ତି, ଘନାବୃତଦ୍ୱାରା ବୁଲୁଛନ୍ତି, ଯେଉଁଠାରେ କି ପୁଣ୍ୟାତ୍ମାମାନେ ବିଶ୍ରାମ କରନ୍ତି ।

ଅଷ୍ଟମ ଶତାବ୍ଦୀର ମଧ୍ୟଭାଗରେ ଆରବୀୟମାନେ ଜ୍ୟୋତିଷର ତଥ୍ୟ ଆବିଷ୍କାର କରଣେ ଯତ୍ନ ନେଲେ । ପ୍ରାୟ ୪୦୦ ବର୍ଷ ବ୍ୟାପୀ ଏହି ସାଧନାରେ ବ୍ୟସ୍ତ ରହି ୟୁବିନ୍‌ୟୁନିସ୍ ବୃହସ୍ପତି ଓ ଶନିଙ୍କର ଅନିୟମିତ ଭାବ ଓ ଅନୈକ୍ୟ କେନ୍ଦ୍ରିକତାର ବିଚାର କଲେ । ଏଥିର ନାନାପ୍ରକାର ଯୁକ୍ତି ଓ ନିଦର୍ଶନ ଦର୍ଶାଇ ଅଛନ୍ତି ।

ଷୋଡ଼ଶ ଶତାବ୍ଦୀରେ ନିକୋଲାସ୍ କୋପର୍ନିକାସ୍ ସ୍ମରଣଯୋଗ୍ୟ ତଥ୍ୟ ଆବିଷ୍କାର କରିଅଛନ୍ତି । ସେ କହନ୍ତି, ସୌର ଜଗତରେ ସୂର୍ଯ୍ୟଙ୍କୁ କେନ୍ଦ୍ରସ୍ଥାନ କରି ପୁଣି ଅନ୍ୟାନ୍ୟ ଗ୍ରହ ଓ ଉପଗ୍ରହ ତାଙ୍କର ଚାରିଦିଗରେ ଭ୍ରମଣ କରୁଅଛନ୍ତି । ଏହା ବିଶ୍ୱ ଗୃହୀତ ହୋଇଅଛି ।

ଜ୍ୟୋତିର୍ବିଦ ଡେନିସ୍‌ଙ୍କର ଶିଷ୍ୟ, ନବାବିଷ୍କରଣେ ଲବ୍ଧପ୍ରତିଷ୍ଠ କେପ୍‌ଲେର୍ (Kepler, born

in 1571) କହିଅଛନ୍ତି କି, ଗ୍ରହମାନେ ଗୋଲାକାରରେ ବୁଲନ୍ତି ନାହିଁ, କେବଳ ଡିମ୍ବାକାରରେ ଭ୍ରମଣ କରନ୍ତି । ସୂର୍ଯ୍ୟ ସେମାନଙ୍କର ଆଲୋକ ରଶ୍ମିର ଅଧିଶ୍ରୟଣ ବିନ୍ଦୁ (Focus)ସ୍ୱରୂପ । ସୂର୍ଯ୍ୟ ଓ ଗ୍ରହମାନଙ୍କର ମଧ୍ୟଗତ ଅର୍ଦ୍ଧବ୍ୟାସ ରେଖା ସମାନ ସମୟରେ ସମାନ ସ୍ଥାନରେ ଭ୍ରମଣ କରୁଅଛନ୍ତି ।

ଗାଲିଲିଓ (Galileo) ତାହାଙ୍କର ଅନୁସନ୍ଧାନ ଓ ଦୂରବୀକ୍ଷଣ ଯନ୍ତ୍ରର ଉଦ୍ଭାବକ କୋପରନିସିଏନ୍ (Copornician theory) ମତ ଉପରେ ପ୍ରତିଷ୍ଠିତ କରିଛନ୍ତି ।

ନିଉଟନ୍ ପଦାର୍ଥ ବିଜ୍ଞାନର ନିଗୂଢ଼ ତତ୍ତ୍ୱାନୁସନ୍ଧାନଦ୍ୱାରା ଗ୍ରହମାନଙ୍କ ଗତି ସତ୍ୟମୂଳକ ଭାବି ସେଥିରୁ ମାଧ୍ୟାକର୍ଷଣ ଶକ୍ତିର ତଥ୍ୟ ଆବିଷ୍କାର, ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ହେର୍ଷେଲ୍‌ଙ୍କ (Hersehel) ୟୁରାନ୍‌ସ (Yranus) ଗ୍ରହର ଆବିଷ୍କାର; ଅସଂଖ୍ୟ ନକ୍ଷତ୍ର ନିକଟକୁ ସୁଗମ ପଥ, ବହୁ ଦୂରସ୍ଥ ନକ୍ଷତ୍ରମାଳାଜନିତ ଆକାଶର କୁଜ୍ଝଟିକାମୟ ଭାବ; ଦ୍ୱିଗୁଣିତ, ତ୍ରିଗୁଣିତ; ନକ୍ଷତ୍ରମାଳାର ତଥ୍ୟ ଆବିଷ୍କାର Lalauce, Lagrauge, Lalambre & Laplace ପ୍ରଭୃତି ବୈଜ୍ଞାନିକମାନଙ୍କରଆବିଷ୍କୃତ ତଥ୍ୟସମୂହ ବିଜ୍ଞାନକୁ ଉନ୍ନତ କରିଅଛି ।

ଊନବିଂଶ ଶତାବ୍ଦୀରେ ଚାରୋଟି ସାମାନ୍ୟ ଗ୍ରହ ପୁଣି ନେପଚ୍ୟୁନ୍ (Neptune), ସୂର୍ଯ୍ୟଙ୍କଠାରୁ ଅତି ଦୂରରେ ଥିବା ଓ ୟୁରାନ୍‌ସ (Uransu) ଅତିଶୟ ଦୂରରେ ଥିବା ଆବିଷ୍କୃତ ହେଲା । ତା'ପରେ Spetroscope Photography ଦ୍ୱାରା ଅନ୍ୟାନ୍ୟ କେତେକ ନୂତନ ବିଷୟ ମଧ୍ୟ ଆବିଷ୍କୃତ ହୋଇଅଛି ।

ଜ୍ୟୋତିଷର ଆଶ୍ଚର୍ଯ୍ୟଜନକତା ସମ୍ବନ୍ଧେ ଜଗତ ବିମୁଗ୍ଧ । ଗ୍ରହଗହଣର ସ୍ଥିତି ଗତିରେ ମାନବର ଶୁଭାଶୁଭ ନିର୍ଭର କରିଥିବା ଯୋଗୁଁ ଆଜି ସୌରଜଗତର ରହସ୍ୟ ଜାଣିବା ଲାଗି ମାନବହୃଦୟ ଉତ୍କଣ୍ଠିତ ଓ ଉଦ୍‌ବେଳିତ । ଅଦ୍ୟାପି ତାହାର ନିବୃତ୍ତି ନାହିଁ । ଯୁଗଯୁଗାନ୍ତରରୁ ଆର୍ଯ୍ୟଗଣ ଏବଂ ବୈଜ୍ଞାନିକମାନେ ଯେଉଁ ଯତ୍ନ ଓ ଚେଷ୍ଟା କରୁଅଛନ୍ତି, ତାହାର ବିରାମ ନାହିଁ । ଏହାର ତଥ୍ୟ ଜାଣିବା ନିମନ୍ତେ ନାନାବିଧ ଯନ୍ତ୍ର ଉଦ୍ଭାବନ କରାଯାଇଅଛି । ଈଶ୍ୱର କରନ୍ତୁ ତାହାଙ୍କ ମହିମା ଉପଲବ୍ଧି କରିବା ଲାଗି ମାନବ ହୃଦୟରେ ନବ ନବ ଶକ୍ତୀର ବିକାଶ ହେଉ ।

## ଗ୍ରହଗଣର ରାଶିଚକ୍ର ଭ୍ରମଣାନ୍ତେ ପ୍ରାରମ୍ଭ ସ୍ଥାନେ ଉପସ୍ଥିତ ସମୟ

| କ୍ରମ | ଗ୍ରହର ନାମ | ଦିନ | ଘଣ୍ଟା | ମିନିଟ୍ | ସେକେଣ୍ଡ |
|---|---|---|---|---|---|
| ୧ | ବୁଧ | ୮୭ | ୨୩ | ୨୬ | ୦ |
| ୨ | ଶୁକ୍ର | ୨୨୪ | ୧୬ | ୪୬ | ୦ |
| ୩ | ପୃଥିବୀ | ୩୬୫ | ୬ | ୧୨ | ୯ |
| ୪ | ଶନି | ୧୦୭୬୫ | ୨୮ | ୨୪ | ୪୬ |
| ୫ | ମଙ୍ଗଳ | ୬୮୬ | ୨୩ | ୧୬ | ୨୪ |
| ୬ | ବୃହସ୍ପତି | ୪୩୩୨ | ୭ | ୩୪ | ୩୬ |

## ପାଶ୍ଚାତ୍ୟ ମତେ

| କ୍ରମ | ଗ୍ରହର ନାମ | ଇଂରାଜୀ ନାମ | ଦିନ | ଘଣ୍ଟା | ମିନିଟ୍ | ସେକେଣ୍ଡ |
|---|---|---|---|---|---|---|
| ୧ | ବୁଧ | Mercury | ୮୭ | ୨୩ | ୧୫ | ୩୬ |
| ୨ | ଶୁକ୍ର | Venus | ୨୨୪ | ୧୬ | ୩୨ | ୪୮ |
| ୩ | ପୃଥିବୀ | Earth | ୩୬୫ | ୬ | ୮ | ୪୮ |
| ୪ | ଶନି | Saturn | ୧୦୭୬୯ | ୫ | ୧୬ | ୦ |
| ୫ | ମଙ୍ଗଳ | Mars | ୬୮୬ | ୨୩ | ୩୦ | ୨୪ |
| ୬ | ବୃହସ୍ପତି | Jupiter | ୪୩୩୨ | ୧୪ | ୨ | ୦ |

## ଗ୍ରହଗ୍ରହଣର ଆହ୍ନିକ ଗତି

| କ୍ରମ | ଗ୍ରହର ନାମ | ଘଣ୍ଟା | ମିନିଟ୍ | ସେକେଣ୍ଡ |
|---|---|---|---|---|
| ୧ | ବୁଧ | ୨୪ | ୫ | ୨୮ |
| ୨ | ଶୁକ୍ର | ୨୩ | ୨୧ | ୭ |
| ୩ | ପୃଥିବୀ | ୨୩ | ୫୬ | ୪ |
| ୪ | ଶନି | ୧୦ | ୨୬ | ୦ |
| ୫ | ମଙ୍ଗଳ | ୨୪ | ୩୯ | ୨୧ |
| ୬ | ବୃହସ୍ପତି | ୯ | ୫୫ | ୦ |

## ଗ୍ରହ ଓ ନକ୍ଷତ୍ରଗଣର ଆକାର, ଗତି ଓ ଜ୍ୟୋତି

ଚକ୍ଷୁର ଅଗୋଚରରେ ଅନ୍ୟ କେତେ ଯେ ସୌରଜଗତ ଏହି ବିଶ୍ୱର ବିରାଟତ୍ୱର ମହିମା ଘୋଷଣା କରୁଅଛି ତାହାର ଇୟତ୍ତା ନାହିଁ । ପୃଥିବୀ ସୂର୍ଯ୍ୟର ଗୋଟିଏ ଗ୍ରହ, ଇନ୍ଦୁ ଉପଗ୍ରହ । ଗୋଟିଏ ନିର୍ଦ୍ଦିଷ୍ଟ ପଥରେ ପ୍ରତି ସେକେଣ୍ଡରେ ୧୯ ମାଇଲ ଘୂର୍ଣ୍ଣନ କରି ପୃଥିବୀ ଏକ ବର୍ଷରେ ଥରେ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରୁଅଛି ।

ଚନ୍ଦ୍ର ପୃଥିବୀକି ୨୭ ଦିନରେ ପ୍ରଦକ୍ଷିଣ କରେ । ସ୍ୱଳ୍ପାୟତନ ବିଶିଷ୍ଟ କେତୋଟି ନକ୍ଷତ୍ର ଛଡ଼ା ଅଧିକାଂଶ ନକ୍ଷତ୍ର ସୂର୍ଯ୍ୟାପେକ୍ଷା ବୃହତ୍ । ସେମାନଙ୍କର ନାମ ସୂର୍ଯ୍ୟଙ୍କଠାରୁ ଦୂରତାନୁଯାୟୀ କ୍ରମରେ ଦିଆଗଲା । ଯଥା - ବୁଧ (Mercury), ଶୁକ୍ର (Venus), ପୃଥିବୀ (Earth), ମଙ୍ଗଳ (Mars), ବୃହସ୍ପତି (Jupiter), ଶନି (Saturn), ପ୍ରଜାପତି (Uranus), ବରୁଣ (Neptune) ଓ ଯମ (Pluto) । ପ୍ରଥମ ଚାରୋଟି ସୂର୍ଯ୍ୟଙ୍କର ନିକଟବର୍ତ୍ତୀ । ତତ୍ପରବର୍ତ୍ତୀ ଚାରୋଟି ଅପେକ୍ଷାକୃତ ଦୂରରେ, ଏବଂ ଯମ ସର୍ବାପେକ୍ଷା ଦୂରରେ । ବୁଧ ଓ ଶୁକ୍ରର ଆବର୍ତ୍ତନ ଚକ୍ର ପୃଥିବୀର ଚକ୍ରାପେକ୍ଷା ଅନେକ ଛୋଟ, ଅପରଗୁଡ଼ିକ ବଡ଼ । ବୁଧଗ୍ରହ ସୂର୍ଯ୍ୟଙ୍କଠାରୁ ୩୬୦୦୦୦୦୦ ମାଇଲ

ଦୂରରେ । ବୁଧର ଗତି ଏକ ସେକେଣ୍ଡରେ ପ୍ରାୟ ୩୦ ମାଇଲ । ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଭ୍ରମଣ କରିବାକୁ ବୁଧକୁ ୮୮ ଦିନ, ଶୁକ୍ରକୁ ୭ ମାସ ୧୫ ଦିନ, ମଙ୍ଗଳକୁ ୧ ବର୍ଷ ୧୧ ମାସ ଲାଗେ ।

ପୃଥିବୀର ବ୍ୟାସ ୮୦୦୦ ମାଇଲ, ବୃହସ୍ପତିଙ୍କର ବ୍ୟାସ ୮୮୬୪୦ ମାଇଲ । ଶନି ବୃହସ୍ପତିଙ୍କଠାରୁ ଛୋଟ, ଏହାର ବ୍ୟାସ ୭୦୦୦୦ ମାଇଲ । ପ୍ରଜାପତି ଓ ବରୁଣ ପୃଥିବୀ ଅପେକ୍ଷା ୬୪ ଗୁଣ ବଡ଼ । ପୃଥିବୀଠାରୁ ସୂର୍ଯ୍ୟ ୯୨୮୭୦୦୦୦ ମାଇଲ, ଚନ୍ଦ୍ର ୨୩୮୮୫୭ ମାଇଲ, ଶୁକ୍ର ୨୬୦୦୦୦୦୦ ମାଇଲ, ମଙ୍ଗଳ ୩୫୦୦୦୦୦୦ ମାଇଲ ଓ ବୁଧ ୪୭୦୦୦୦୦୦ ମାଇଲ ଦୂରରେ ଅବସ୍ଥିତ ।

ନିର୍ମଳ ନୈଶଗଗନରେ ଆମ୍ଭେ ନଗ୍ନ ଚକ୍ଷୁରେ ଯେତେ ତାରକା ଦେଖୁଁ, ସେମାନଙ୍କର ସଂଖ୍ୟା ୩୦୦୦ । ଏହି ଗୋଲାର୍ଦ୍ଧର ବାହାରେ, ଆକାଶର ଅନ୍ୟ ଅର୍ଦ୍ଧାଂଶରେ ଆହୁରି ୩୦୦୦ ନକ୍ଷତ୍ର ଅଛନ୍ତି । ରାତ୍ରିର ସୁନିର୍ମଳ ଆକାଶରେ ସୃଷ୍ଟିର ଉପାଦାନ ଯେଉଁ ଜଡ଼କଣିକା ବା ନୀହାରିକାର ଏକ ଅଖଣ୍ଡ ସ୍ରୋତ ଆକାଶରଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ପରିଦୃଶ୍ୟମାନ ହୁଏ, ଋଷିଗଣ ଏହାକୁ ଛାୟାପଥ ବା ଆକାଶଗଙ୍ଗା ବୋଲି ନିର୍ଦ୍ଦେଶ କରିଅଛନ୍ତି । ୩୦୦ ବର୍ଷର ପୂର୍ବେ ଗାଲିଲିଓ ଯେଉଁଦିନ ପ୍ରଥମେ ଦୂରବୀକ୍ଷଣ ଯନ୍ତ୍ର ଆବିଷ୍କାର କଲେ, ଉକ୍ତ ଦିବସ ମାନବ ଚକ୍ଷୁରୁ ଗୋଟିଏ ବିଶେଷ ଆବରଣ ଅପସାରିତ ହେଲା; ସ୍ଥୂଳ ଚକ୍ଷୁର ଅଦୃଶ୍ୟମାନ ଶତ ସହସ୍ର ନକ୍ଷତ୍ର ପରିଷ୍କାର ରୂପେ ଜଣାଗଲେ ।

କ୍ରମେ ଊନବିଂଶ ଶତାବ୍ଦୀର ବିଜ୍ଞାନ ପ୍ରଭାବରେ ଦୂରବୀକ୍ଷଣ ଯୋଗେ ପଚାଶ କୋଟି ସୂର୍ଯ୍ୟ ସଦୃଶ ପ୍ରଭାସମ୍ପନ୍ନ ନକ୍ଷତ୍ରର ଆବିଷ୍କାର ହେଲା । ଉଇଲିସନ୍‌ଙ୍କ ୧୦୦ ଇଞ୍ଚ (Lens)…. ଶକ୍ତିଶାଳୀ ଦୂରବୀକ୍ଷଣ ପ୍ରାୟ ୨୦ ଲକ୍ଷ ନୀହାରିକାର ସନ୍ଧାନ ଦେଲା । ବୈଜ୍ଞାନିକଗଣ ବିଶ୍ୱାସ କରନ୍ତିଯେ, ୨୦୦ ଇଞ୍ଚ (Lens) ଶକ୍ତିଶାଳୀ ଦୂରବୀକ୍ଷଣ ପ୍ରସ୍ତୁତ କରାଗଲେ ଅଦୃଶ୍ୟମାନ ୧୬୦ ଲକ୍ଷ ନୀହାରିକା ଦେଖାଯାଇପାରିବ ।

ଆଲୋକର ଗତି ପ୍ରତି ସେକେଣ୍ଡରେ ୧,୮୬,୨୮୪ ମାଇଲ । ସର୍ବାପେକ୍ଷ ନିକଟତମ ନକ୍ଷତ୍ର ପ୍ରକ୍‌ସିମାସେନଟୁୟାରିଠାରୁ ପୃଥିବୀକୁ ଆଲୋକ ଆସିବାକୁ ୪୭ ବର୍ଷର ଲାଗେ; ଧ୍ରୁବ ନକ୍ଷତ୍ରର ଆଲୋକ ଆସିବାକୁ ୪୬ ବର୍ଷର ଲାଗେ । ତା'ଛଡ଼ା ଅନ୍ୟ କେତେକଙ୍କର ଆଲୋକ ଆସିବାକୁ ହଜାରେ ବା ଦୁଇଜାର ବର୍ଷର ଲାଗିବ । ଲୋକଚକ୍ଷୁର ଶେଷ ପ୍ରାନ୍ତସ୍ଥିତ ନୀହାରିକାଠାରୁ ଆଲୋକ ଆସିବାକୁ ୧୪ କୋଟି ବର୍ଷର ଲାଗିବ । ଆହୁରି ଶୁଣାଯାଏ ଅନେକ ନକ୍ଷତ୍ରରୁ ଆଲୋକ ବାହାରିଲାଣି କିନ୍ତୁ ଅଦ୍ୟାପି ପୃଥିବୀକୁ ସ୍ପର୍ଶ କରିପାରି ନାହିଁ । ସାର୍ ଜେମ୍‌ସ ଜିନ୍‌ସ୍ କହନ୍ତି, ସମୁଦ୍ରତଟସ୍ଥ ବାଲୁକାକଣାର ସଂଖ୍ୟା ଅପେକ୍ଷା ନକ୍ଷତ୍ରଗଣର ସଂଖ୍ୟା ନ୍ୟୂନ ନୁହେଁ ।

୧୯୩୩ ସାଲର ଚିକାଗୋ ମହାସମ୍ମିଳନୀରେ ଯେଉଁ ବିଜ୍ଞାନର ପ୍ରଭାବ ଦେଖାଯାଇଥିଲା, ତଦ୍ଦ୍ୱାରା ମାନବ ବିଶ୍ୱସୃଷ୍ଟି କୌଶଳରେ କେତେ ଯେ ରହସ୍ୟ ବୁଝିବାକୁ ଅଗ୍ରସର ହେଲାଣି ତାହା

ଅକଥନୀୟ । ସ୍ୱାତି ନକ୍ଷତ୍ର କମଳା ରଙ୍ଗର ତାହାର ଆଲୋକ ପ୍ରତି ସେକେଣ୍ଡରେ ୧୮୬୨୮୪ ମାଇଲ ଗତିରେ ପୃଥିବୀକୁ ସ୍ପର୍ଶ କରେ । ବୈଜ୍ଞାନିକଗଣ ୩୩ ଖ୍ରୀଷ୍ଟାବ୍ଦର ଠିକ୍ ମେଳାଦିନ ତାହା ପୃଥିବୀ ସ୍ପର୍ଶ କରିବ ବୋଲି ସ୍ଥିର କରି ସେହି ଆଲୋକ ସ୍ପନ୍ଦନରେ ମହାସମ୍ମିଳନୀର କାର୍ଯ୍ୟାରମ୍ଭ ଲାଗି ଅଦ୍ଭୁତ ଯନ୍ତ୍ର ସାହାଯ୍ୟରେ ସେହି ବିଛୁରିତ ଆଲୋକଗୁଡ଼ିକୁ ଏକ କେନ୍ଦ୍ରରେ ଆକର୍ଷଣ କରି ସମସ୍ତ ଉତ୍ସବମନ୍ଦିର ସେହି ନକ୍ଷତ୍ର ଜ୍ୟୋତିରେ ଆଲୋକିତ କରିଥିଲେ । ଏତଦ୍ୱାରା ଆଧୁନିକ ବିଜ୍ଞାନ ସୌରଜଗତର କେତେ ତତ୍ତ୍ୱ ଆବିଷ୍କାର କରିପାରିଲାଣି, ତାହା ସହଜରେ ଅନୁମେୟ ।

ଏହି ଗ୍ରନ୍ଥରେ ଏକମାତ୍ର ଜ୍ୟୋତିଷ ବିଷୟ ହିଁ ଆଲୋଚ୍ୟ ନଥିବାରୁ ଏ ଦିଗରେ ଆଉ ଅଧିକ ଅଗ୍ରସର ନୋହି କେତେକର ଦିଗ୍‌ଦର୍ଶନ ମାତ୍ର କରି କ୍ଷାନ୍ତ ହେଲୁ ।

ସଫଳଂ ଜ୍ୟୋତିଷଂ ଶାସ୍ତ୍ରଂ
ଚନ୍ଦ୍ରାର୍କୌ ଯନ୍ତ୍ର ସାକ୍ଷିଣୌ ॥

## ଆଲୋଚନା

ଭଗବାନଙ୍କର ପ୍ରାକୃତିକ ସୃଷ୍ଟି ମଧ୍ୟେ ମାନବର ସ୍ଥାନ ସର୍ବୋଚ୍ଚ । ଆକାରଗତ ଦୈର୍ଘ୍ୟ, ବର୍ଣ୍ଣଗତ ସୌନ୍ଦର୍ଯ୍ୟ, ଶାରୀରିକ ବଳ, ସହିଷ୍ଣୁତା ପ୍ରଭୃତିରେ ମାନବର ସ୍ଥାନ ସର୍ବୋନ୍ନତ ନହେଲେ ସୁଦ୍ଧା, ଅପର ସୃଷ୍ଟ ଜୀବଗଣଠାରୁ ସେ ମାନସିକ ବଳରେ ବଳୀୟାନ୍ । ଅଧିକନ୍ତୁ, ଅନାବିଳଚିତ୍ତ ଜ୍ଞାନୀଗଣର ନୂତନ ଜ୍ଞାନ ସମ୍ପ୍ରସାରଣ ଓ ପଶୁତ୍ୱରୁ ଦେବାତ୍ମାର ଜାଗରଣ ପାଇଁ ଯେଉଁ ଅମର ପିପାସା ତାହା ସର୍ବଶ୍ରେଷ୍ଠ । ସେଥିଲାଗି ସୃଷ୍ଟିର ପ୍ରାକ୍‌କାଳରୁ ଅଦ୍ୟାବଧି ଦର୍ଶନ ବିଜ୍ଞାନ ପ୍ରଭୃତି କାବ୍ୟକଳାର ସୂକ୍ଷ୍ମତର ମାର୍ଗ ଭିତରେ ଜ୍ଞାନୀ ମାନବର ଆମରଣ ଚେଷ୍ଟା ସତ୍ୟଜ୍ଞାନାନନ୍ଦରୂପ ସୂକ୍ଷ୍ମାନୁଭୂତି ନିମନ୍ତେ ।

ଏହାର ପ୍ରବଳ ଗବେଷଣା ବା ଅବିଚ୍ଛିନ୍ନ ଆଲୋଚନାରେ ଶ୍ରୋତା ଓ ବକ୍ତା ପୁନରୁକ୍ତି ଦୋଷର ତିକ୍ତତା ଅନୁଭବ କରନ୍ତି ନାହିଁ । ମାତ୍ର ଯେପରି ଅଣୁବୀକ୍ଷଣ କାଚ ଯେତେ ଶକ୍ତିଶାଳୀ ହୁଏ ବସ୍ତୁର ସ୍ୱରୂପ ମଧ୍ୟ ତେତେ ଅଧିକରୁ ଅଧିକ ରୂପେ ନିଜକୁ ପ୍ରକାଶ କରେ । ଯଥାର୍ଥତଃ ସେଠାରେ ବସ୍ତୁର ସ୍ୱରୂପଗତ କୌଣସି ତାରତମ୍ୟ ନାହିଁ । କାଚର ଶକ୍ତି ଉପରେ ହିଁ ବସ୍ତୁର ସଙ୍କୋଚବିକାଶ ନିର୍ଭର କରେ, ତଦ୍‌ବତ୍ ସତ୍ୟବସ୍ତୁର ଉପଲବ୍ଧି ଲାଗି ବହିଃଚକ୍ଷୁ ଅପେକ୍ଷା ଅନ୍ତଃଚକ୍ଷୁର ସୁବିଶୁଦ୍ଧ ସମ୍ପ୍ରସାରଣ ଅତ୍ୟାବଶ୍ୟକ ।

ପୃଥିବୀରେ ବୌଦ୍ଧ, ଖ୍ରୀଷ୍ଟ, ଇସ୍‌ଲାମ ପ୍ରଭୃତି ଯେଉଁ ବିଶାଳ ଧର୍ମମାନ ପ୍ରଚଳିତ ତାହା ପ୍ରତ୍ୟେକ ଜଣେ ଜଣେ ମହାମାନବଙ୍କଦ୍ୱାରା ପ୍ରତିଷ୍ଠିତ । ତାହାର ମୂଳରେ ପ୍ରତିଷ୍ଠାତାଙ୍କ ଆଦେଶ, ନିର୍ଦ୍ଦେଶ, ଉପଦେଶ ସମ୍ବଳିତ ଧର୍ମଶାସ୍ତ୍ର ବିଦ୍ୟମାନ । କିନ୍ତୁ ଭାରତୀୟ ସନାତନ ଆର୍ଯ୍ୟଧର୍ମ କୌଣସି ବ୍ୟକ୍ତିବିଶେଷଦ୍ୱାରା ପ୍ରବର୍ତ୍ତିତ ହୋଇନାହିଁ । ଏହା ଚିରଦିନରୁ ବହୁ ମହାପୁରୁଷଗଣ କର୍ତ୍ତୃକ ନାନା ଭାବେ ବ୍ୟାଖ୍ୟାତ ଓ ସୁସଂସ୍କୃତ ।

ଆଧୁନିକ ପାଶ୍ଚାତ୍ୟ ଆଲୋକସ୍ପର୍ଶ ରହିତ ପ୍ରକୃତିର ସୁରମ୍ୟ ଓ ନିଭୃତ ଛାୟାତଳ ହିଁ ଏହି ଆଧ୍ୟାତ୍ମିକ ବାତୁଳତାର ଜନ୍ମସ୍ଥାନ । ଅତୀତ ଇତିହାସର ସୂକ୍ଷ୍ମଦୃଷ୍ଟି ସୁଦ୍ଧା ଯେଉଁଠାରେ ଅନ୍ଧୀଭୂତ ଓ ମନ୍ଦୀଭୂତ, ସେହି ସ୍ମରଣୀୟ ବୈଦିକ ଆଦିମ ଯୁଗରେ ଭାରତର ଉତ୍ତର-ପଶ୍ଚିମାଞ୍ଚଳରେ ଶୁଭମୁହୂର୍ତ୍ତରେ ଆର୍ଯ୍ୟଶିଶୁର ହୃଦୟରେ ପ୍ରକୃତିର ରୁଦ୍ର-ମଧୁର-ଲୀଳା ଭଙ୍ଗୀରେ ରମଣୀୟ ଋକ୍ ଛନ୍ଦରେ ଅନାବିଳ ଦିବ୍ୟ ଜ୍ୟୋତି ପ୍ରଭାବିତ ହେଲା, ତାହାହିଁ ମାନବସଭ୍ୟତାର ସୁପ୍ରଭାତ । ସୁତରାଂ ତାହାର ଗତି ଅତି ଧୀର ଅତି ମୃଦୁ । ଗଭୀରମନା ସଂଯୋଗ ବ୍ୟତୀତ ଅସ୍ମଦୀୟ ବୋଧରେଖାରେ ତାହା ଅବଗତ ହେବା ଅସମ୍ଭବ ।

ଅଖଣ୍ଡ କାଳସ୍ରୋତରେ ପ୍ରଭାସମାନ ଏହି ପ୍ରାଚୀନ ଜାତିର ଭାଗ୍ୟତରି କେତେ ପ୍ରବଳ ଝଞ୍ଜାର ତାଡ଼ନା ସହ୍ୟ କରିଅଛି, ଏହାର ଜୀବନ କେତେ ଭୀଷଣ ଅଗ୍ନ୍ୟୁତ୍ପାତ ସମ୍ମୁଖେ ବକ୍ଷ ପାତିଅଛି, ପୁଣି ଏହାର ଅଜ୍ଞାନପର୍ବତ କେତେ ଲକ୍ଷ ଦଧୀଚିଅସ୍ଥିରେ ଭିନ୍ନ ହୋଇଅଛି, ଏହି ଦେଶର ମାଟି କେତେ ତ୍ୟାଗୀର ଭସ୍ମରେ ଗଢ଼ା ହୋଇଅଛି, ତାହାର ଇୟତ୍ତା ନାହିଁ । ତଥାପି ବଞ୍ଚି ରହିଅଛି ସେହି ପୁଣ୍ୟବଳରୁ କେବଳ ।

ଭାରତୀୟ କାମନାଶୂନ୍ୟ, ନିଃଷ୍କଳୁଷ ଆଦିମ ଆର୍ଯ୍ୟହୃଦୟ ସାଗରବତ୍ ଗମ୍ଭୀର, ଆକାଶ ସଦୃଶ ଉଦାର, ବାୟୁତୁଲ୍ୟ ସର୍ବଗ, ହିମାଦ୍ରି ପରି ଉନ୍ନତ, ଧରିତ୍ରୀ ସଂକାଶ ସର୍ବଂସହ ଥିଲା । ଆର୍ଯ୍ୟଶିଶୁ ଇନ୍ଦ୍ରିୟ ତର୍ପଣତାମୂଳକ ଯଥେଚ୍ଛାଚାର, ଭୋଗସ୍ପୃହା ପରିବର୍ତ୍ତେ ସଚ୍ଚିଦାନନ୍ଦ ତତ୍ତ୍ୱାନୁସନ୍ଧିତ୍ସୁ ଥିଲାବେଳେ ତଦୀୟ ମନରେ ସ୍ୱାର୍ଥର କୁହେଳିକା, ଦ୍ୱୈତର ଦ୍ୱନ୍ଦ୍ୱ, ଆକାଂକ୍ଷାର ପଙ୍କିଳତା ଲେଶ ସ୍ଥାନ ପାଇନଥିଲା; ହୋମାଗ୍ନି ପରି ଜଳି ଉଠୁଥିଲା । ନିର୍ବେଦାନୁସନ୍ଧାନ କେବଳାଦ୍ୱୈତ, "ଓଁ ସର୍ବଂ ଖଳ୍ୱିଦଂ ବ୍ରହ୍ମ" ଏହା ଅନେକ ଋର୍ଚ୍ଚ୍ଚକ୍ଷରେ ପ୍ରମାଣିତ ।

ଆଉ ଗୋଟିଏ କଥା, ପ୍ରାଚୀନ ଋଷିବୃନ୍ଦ ଯେଉଁ ସକଳ ଶାସ୍ତ୍ର ପ୍ରଣୟନ କରିଯାଇ ଅଛନ୍ତି, ଆମ୍ଭେ ତାହାର ବାହ୍ୟ ଓ ରାହସ୍ୟିକ ଭେଦରେ ଦୁଇଗୋଟି ସ୍ୱରୂପ ପ୍ରତ୍ୟକ୍ଷ କରୁଁ । ସେମାନେ ବାସ୍ତବିକ ରୂପକୁ ବହୁ ସ୍ଥଳରେ ଏପରି ଭାବେ ଚିତ୍ରଣ କରନ୍ତି ଯେ ତାହାର ଭୌତିକ ସ୍ଥୂଳରୂପ ମାତ୍ର ବହିବ ପ୍ରସ୍ଫୁଟିତ ହୋଇ ସୂକ୍ଷ୍ମରୂପ ଅନ୍ତଃକରଣ ବୃତ୍ତିତୁଲ୍ୟ ଗଭୀର ପ୍ରଦେଶରେ ଗୁପ୍ତଓ ସୁପ୍ତ ଥାଏ । ତାହାର ବିଶ୍ଳେଷଣର ନାମ ହିଁ ଆଧ୍ୟାତ୍ମିକ ବ୍ୟାଖ୍ୟା । ଛାନ୍ଦୋଗ୍ୟ ଓ ବୃହଦାରଣ୍ୟକରେ ଦେହକୁ ଅବଲମ୍ବନ କରି ଯେଉଁ ଦେବାସୁର ସଂଗ୍ରାମର ବ୍ୟାପାର ଉଲ୍ଲେଖ ଅଛି ତାହାହିଁ ଦୃଷ୍ଟାନ୍ତର ସ୍ଥଳ । ଯାସ୍କ ଓ ଦୁର୍ଗାଚାର୍ଯ୍ୟଙ୍କ ଭାଷ୍ୟରୁ ବୋଧହୁଏ ବେଦର ମଧ୍ୟ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଯାଜ୍ଞିକ ଭାବେ ତିନିଗୋଟି ଅର୍ଥ ବିଦ୍ୟମାନ । ତନ୍ମଧ୍ୟେ ଯାଜ୍ଞିକପକ୍ଷୀୟ ବ୍ୟାଖ୍ୟା ସମାଜରେ ପ୍ରବଳ ଭାବେ ପ୍ରଚଳିତ । ଯଥା- ଯାସ୍କ ନିରୁକ୍ତରେ 'ଇନ୍ଦ୍ର' ଶବ୍ଦର ତିନି ପ୍ରକାର ବ୍ୟାଖ୍ୟା ପ୍ରକାଶକରି ଅଛନ୍ତି । ଆଧ୍ୟାତ୍ମିକ ପକ୍ଷେ - ଇଦି ଐଶ୍ୱର୍ଯ୍ୟେ, ଯେ ସ୍ୱୀୟ ମାୟାଦ୍ୱାରା ଜଗଦ୍ରୂପ ଐଶ୍ୱର୍ଯ୍ୟ ସୃଷ୍ଟି କରିଅଛନ୍ତି । ଆଧିଦୈବିକ ପକ୍ଷେ- ଇରା (ଅନ୍ନ) ଦୃ, ଯେ ଅନ୍ନ ଉଦ୍ଦେଶ୍ୟେ ଜଳ ଲାଗି ମେଘ ବିଦାରଣ କରନ୍ତି । ଯାଜ୍ଞିକ ପକ୍ଷେ ଇନ୍ଦୁ (ସୋମ) ଦ୍ରୁ (ସୋମର ପ୍ରତି ଯେ ଦ୍ରୁତଗତି କରନ୍ତି) ।

ଆଧ୍ୟାତ୍ମିକପକ୍ଷ ବ୍ୟାଖ୍ୟା ଯାସ୍କଙ୍କ ମନଗଢ଼ା ନୁହେଁ । ତାହାଙ୍କ ବହୁ ପୂର୍ବେ ଆଗ୍ରାୟଣ ନାମକ ମୁନି କହିଅଛନ୍ତି, "ଇଦଂକରଣାତ୍ ଇନ୍ଦ୍ରଃ" । ଇନ୍ଦ୍ର ହିଁ ପରମାତ୍ମା ରୂପେ ଏହି ପରିଦୃଶ୍ୟମାନ ଜଗତର ସୃଷ୍ଟି କରିଅଛନ୍ତି । ପୂର୍ବେ ହିଁ କୁହାଯାଇଅଛି ବେଦର ତାତ୍ପର୍ଯ୍ୟ ବଡ଼ ଗହନ । ଏଥିରୁ ମୌଳିକ ଅର୍ଥ ବାହାର କରିବା ଅତ୍ୟନ୍ତ କଠିନ । ପ୍ରକୃତ ଧର୍ମ ଓ ବ୍ରହ୍ମଜ୍ଞାନ ପ୍ରାପ୍ତି ସମ୍ବନ୍ଧେ ସାୟନ ଋଗ୍‌ବେଦର ଭାଷ୍ୟର ଉପୋଦ୍‌ଘାତ ବେଦ ପ୍ରମାଣ ଦେଇ ଲେଖିଅଛନ୍ତି, "ନାବେଦବିନ୍ଦନ୍ମନୁତେତଂ ବୃହନ୍ତଂ" ଅର୍ଥାତ୍ ବେଦର ରହସ୍ୟଜ୍ଞାତା ବିନା ସେହି ବୃହତ୍ ବ୍ରହ୍ମକୁ ମନନ କରିପାରିବ ନାହିଁ । ଋଗ୍‌ବେଦ ପାଠରୁ ଜଣାଯାଏ ଯେ, ଘୋଷା, ଲୋପାମୁଦ୍ରା, ମମତା, ଅପଳା, ବିଶ୍ୱବରା, ବିଶ୍ୱପାଳା, ଇନ୍ଦ୍ରସେନା, ମୈତ୍ରେୟୀ ପ୍ରଭୃତି ପୂଜ୍ୟା ମହିଳାଗଣ ବେଦର ତାତ୍ପର୍ଯ୍ୟ ନିର୍ଣ୍ଣୟ ଲାଗି ଯଥେଷ୍ଟ ଆଲୋଚନା କରିଅଛନ୍ତି । ଯାଜ୍ଞବଲ୍କୀୟ କାଣ୍ଡେ ଗାର୍ଗୀଙ୍କର ଶ୍ରୁତିପାରଦର୍ଶିତା ଉଲ୍ଲେଖଯୋଗ୍ୟ । ସ୍ତ୍ରୀଗଣର ବେଦାଧ୍ୟୟନ ବିଚାରେ ହାରୀତ ସ୍ମୃତି କହେ, "ଦ୍ୱିବିଧା ହି ସ୍ତ୍ରିୟୋ ବ୍ରହ୍ମବାଦିନଃ ସଦ୍‌ବଧୂଷ୍ଚ, ତତ୍ର ବ୍ରହ୍ମବାଦିନୀନାଂ ଉପନୟନଂ ମୌଞ୍ଜୀବନ୍ଧନଂ ବେଦାଧ୍ୟୟନଂ ସ୍ୱଗୃହେ ଭିକ୍ଷାଚର୍ଯ୍ୟା" । ଅର୍ଥାତ୍ ବ୍ରହ୍ମବାଦିନୀ ଏବଂ ସଦ୍‌ବଧୂ ଭେଦେ ସ୍ତ୍ରୀଗଣ ଦ୍ୱିବିଧ । ବ୍ରହ୍ମବାଦିନୀର ଉପନୟନ, ମୌଞ୍ଜୀବନ୍ଧନ, ବେଦାଧ୍ୟୟନ ଏବଂ ସ୍ୱଗୃହେ ଭିକ୍ଷାଦି ବିଧାନର ବ୍ୟବସ୍ଥା ଇତ୍ୟାଦି ସୁଦ୍ଧା ଅଛି । ସ୍ତ୍ରୀର ବେଦାଧ୍ୟୟନ ଲାଗି ଅନେକ ପ୍ରମାଣ ବିଦ୍ୟମାନ ଏବଂଚ ବେଦ ଅର୍ଥାତ୍ ଜ୍ଞାନଶାସ୍ତ୍ର ଅପୌରୁଷେୟ ବୋଲି ସର୍ବତ୍ର ନିଗଦିତ । ଅତଏବ ପ୍ରତ୍ୟେକ ଆର୍ଯ୍ୟଶାସ୍ତ୍ର ତତ୍‌ପ୍ରତି ବେଦବାକ୍ୟ ନିତ୍ୟ ବୋଲି ଭକ୍ତିମୟୀ ଆସ୍ଥା ରଖି ଉକ୍ତ ବେଦଋକ୍ ଅଭ୍ରାନ୍ତ ପ୍ରମାଣ ସ୍ୱରୂପ ବାରମ୍ବାର ରୋମନ୍ଥ କରନ୍ତି । ତେବେ ଏଠାରେ ଜିଜ୍ଞାସା ଏହିକି ସତେ କ'ଣ ବେଦଋକ୍‌ଗୁଡ଼ିକ କୌଣସି ପୁରୁଷ କର୍ତ୍ତୃକ ନୁହେଁ? ସତେ କ'ଣ, "ନିତ୍ୟାବାଗୁତ୍ସୃଷ୍ଟାସ୍ୱୟମ୍ଭୁବା" ଅର୍ଥାତ୍ ସ୍ୱୟମ୍ଭୂଙ୍କ ଦ୍ୱାରା ତାହା ଉତ୍ସୃଷ୍ଟ? ଏବଂଚ ତୈତ୍ତରୀୟ କହିଲା ପରି, "ଋଗ୍‌ବେଦ ଏବାଗ୍ନେରଜାୟତ । ଯଜୁର୍ବେଦୋ ବାୟୋଃ ସାମବେଦୋ ଆଦିତ୍ୟାତ୍" । ଅର୍ଥାତ୍ ଋଗ୍‌ବେଦ ଅଗ୍ନିଙ୍କଠାରୁ, ଯଜୁର୍ବେଦ ବାୟୁଙ୍କଠାରୁ, ସାମବେଦ ଆଦିତ୍ୟଙ୍କଠାରୁ ଜନ୍ମ ହୋଇଅଛି । ମନୁ ମଧ୍ୟ ଏହି ମତକୁ ସମର୍ଥନ କରିଅଛନ୍ତି, ଯଥା- "ଅଗ୍ନି ବାୟୁ ରବିଭ୍ୟସ୍ତୁ ତ୍ରୟଂ ବ୍ରହ୍ମ ସନାତନଂ" । ଅନ୍ୟଚ୍ଚ "ସର୍ବାହମସ୍ମି ରୋମଶା ଗାନ୍ଧାରାଣାମିବାବିକା" । ମୁଁ ଗାନ୍ଧାର ଦେଶର ମେଷୀତୁଲ୍ୟ ସର୍ବଲୋମବିଶିଷ୍ଟ ମେଷୀ ପାଇବି । "ପୁଷ୍ୟମେତନୟଂହିମାଃ" । ହେ ମରୁଦ୍‌ଗଣ ଆମ୍ଭର ପୁତ୍ରଙ୍କ ଶତହିମ (ଶତବର୍ଷ) ପୋଷଣ କର ପ୍ରଭୃତି ପ୍ରାର୍ଥନା ମନ୍ତ୍ର । "କୁହସ୍ୱିଦ୍ଦୋଷା କୁହବନ୍ତୋ ରଶ୍ୱିନା କୁହାଭିପିତ୍ୱଂ କରତଃ କୁହୋଷତୁଃ । କୋବାଂଶୟତ୍ରବିଧବେବ ଦେବରଂ ମର୍ଯ୍ୟଂ ନ ଯୋଷା କୃଣୁତେ ସଧସ୍ଥଆ ।।" ଅର୍ଥାତ୍ ହେ ଅଶ୍ୱିଦ୍ୱୟ ତୁମ୍ଭେ ଦିବା ଓ ରାତ୍ରିକାଳେ କେଉଁଠାରେ ରହୁଅଛ? ଆସ, ଶୟନକାଳେ ବିଧବା ଦେବରକୁ ସମାଦର କଲାପରି ଯଜ୍ଞସ୍ଥଳେ ଆମ୍ଭେ ତୁମ୍ଭଙ୍କୁ ତଦ୍ରୂପ ସମାଦର କରିବୁ ଇତ୍ୟାଦି ବିଧବା ଦେବର ମିଳନସୂଚକ ମନ୍ତ୍ର । ସୋମରସ ପାନପ୍ରଣାଳୀ, ଗୋଚର୍ମାବୃତ ରଥ ବ୍ୟବହାର, ମୃତ ଦେହକୁ ମୃତ୍ତିକାରେ ସ୍ଥାପନ, ଦ୍ୟୁତକ୍ରୀଡ଼ା, ଚର୍ମାଧାରେ ସୁରାରକ୍ଷଣ ମନ୍ତ୍ର ପ୍ରଭୃତିକୁ ସ୍ୱୟମ୍ଭୁ ମୁଖୋତ୍ସୃଷ୍ଟ ନିତ୍ୟାବାକ୍ ବୋଲିବା ଅଯୌକ୍ତିକ ଓ ଅସମ୍ଭବ । ଏବଂବିଧ ତତ୍କାଳୀନ

ପ୍ରଚଳିତ ସାମାଜିକ ବ୍ୟବସ୍ଥାଦ୍ୟୋତକ ଆମ୍ନାୟ ବାକ୍ୟ କଦାପି ତାଦୃଶ ସମ୍ମାନର ପାତ୍ର ନୁହେଁ । "ସର୍ପରକ୍ଷିମନ୍ତ୍ରକୃତ୍" ଇତ୍ୟାଦି ଋକ୍‌ଦ୍ୱାରା ସ୍ପଷ୍ଟହେଉଅଛି କି ସମସ୍ତ ବୈଦିକମନ୍ତ୍ର ସମୟଭେଦେ, ଯୁଗଭେଦେ, ଶାସନଗତ ଆଧିପତ୍ୟ ଭେଦେ କେବଳ ପୁରୁଷ ପରମ୍ପରାକୃତ । ତେବେ ଆଶଙ୍କା ହୁଏ ଯେ, କେଉଁ ବିମଳ ଋକ୍‌ଗୁଡ଼ିକର ଆକର୍ଷଣୀ ଶକ୍ତି ପ୍ରଭାବରେ ଧର୍ମାଚାର୍ଯ୍ୟଙ୍କ ହୃଦୟେ ବେଦବାକ୍ୟ ସ୍ୱତଃସିଦ୍ଧ ବୋଲି ଏ ବିପୁଳ ଉନ୍ମାଦନାର ସୃଷ୍ଟି ହେଲା ? କାହାର ଜୀବନ୍ତ ଛବି ଅଦ୍ୟାପି ଭାରତକୁ ସଜାଗ ରଖିଅଛି ? ଏହାର ଉତ୍ତରରେ ଆମ୍ଭେ ଏତିକି କହିପାରୁ ଯେ, ବ୍ରହ୍ମଭାବୋଦ୍ଦୀପକ ଯେଉଁ କେତୋଟି ଋକ୍ ଦିନେ ସରଳ ସତ୍ୟପୂତ ନିଃସ୍ୱାର୍ଥ ଆର୍ଯ୍ୟଗଣର ମଧୁମୟ ହୃଦୟେ ଅଖଣ୍ଡ ପୁଣ୍ୟବଳେ ଏକନିଷ୍ଠଧ୍ୟାନଫଳେ ମୁହୂର୍ତ୍ତକ ଲାଗି ମଧୁର ସ୍ୱପ୍ନପରି, ଚପଳାର ମୃଦୁ ସ୍ପନ୍ଦନ ପରି, ବାଳକର ଅନିମିତ୍ତ ହାସପରି, ଅମର ଲୋକର କଲ୍ୟାଣବାର୍ତ୍ତା ପରି, ପାରିଜାତର ସୌରଭ ପରି ପ୍ରତିଭାତ ହୋଇଥିଲା ତାହାହିଁ ସ୍ମୃତିମୟୀ ନିତ୍ୟା ଶ୍ରୁତିବାକ୍ ରୂପେ ଚିର ସଞ୍ଜୀବିତ ।

ମହାପୁରୁଷ ମହମ୍ମଦ ସୁଦ୍ଧା ଏକଦା ଗିରିଗୁହାନ୍ତରାଳର ନିଭୃତ ପ୍ରଦେଶରେ ଧ୍ୟାନବଳେ ସେହି ଅଲୌକିକ ମହାବାକ୍ୟେ ଉଦ୍‌ବୁଦ୍ଧ ହୋଇଥିବା କଥା ସ୍ପଷ୍ଟାକ୍ଷରେ କୋରାନ୍‌ରେ ଲିପିବଦ୍ଧ ହୋଇଅଛି ।

ସେହି ସ୍ମରଣୀୟ ମାହେନ୍ଦ୍ର ଯୁଗରେ ଏକ ଅଖଣ୍ଡ ଆକାଶତଳେ ଅଦ୍ୱିତୀୟ ବ୍ରହ୍ମସତ୍ତାବିହ୍ୱଳ ଆର୍ଯ୍ୟହୃଦୟର କୋମଳ ବୃତ୍ତଗୁଡ଼ିକ ଏକ ଅପୂର୍ବ ସ୍ୱର୍ଗୀୟ ସୂକ୍ଷ୍ମ ସ୍ୱର୍ଣ୍ଣ-ସୂତ୍ରର ଗ୍ରଥିତ ଥିଲା । ଧର୍ମ ବହୁଧା ବିଭକ୍ତ ନହୋଇ ଏକ ଅଖଣ୍ଡ ଥିଲା । ସୁତରାଂ ଧର୍ମନାମେ ଅଧର୍ମ, ଶାନ୍ତିନାମେ କୋଳାହଳ, ଅହିଂସାବ୍ରତେ ହିଂସାର ପୂତିଗନ୍ଧ, ସତ୍ୟର ରାଜମାର୍ଗେ ପ୍ରବଞ୍ଚନାର ଆବର୍ଜନା, କାମନାର ମୂଳେ ତୀବ୍ର ଲାଳସାର ପ୍ରେରଣା ଲେଶମାତ୍ର ଜନ୍ମି ନଥିଲା । ଐଶୀତତ୍ତ୍ୱ ପ୍ରକାଶିକାରେ ଆମ୍ଭେ ବେଦର କ୍ରମବିକାଶର ସମ୍ପ୍ରସାରଣ ଯଥେଷ୍ଟ ଆଲୋଚନା କରିଯାଇଅଛୁ ।

ବୈଦିକ ଗ୍ରନ୍ଥରେ ଅନେକଗୁଡ଼ିଏ ଅଲୌକିକ ଓ ବୈଜ୍ଞାନିକୋପହସିତ ଆଖ୍ୟାନ ବିଦ୍ୟମାନ । ତାହାରମୌଳିକ ତାତ୍ପର୍ଯ୍ୟ ସାଧାରଣ ବୁଦ୍ଧିର ଅଗୋଚର । ଉଦାହରଣ ସ୍ୱରୂପ ଛାନ୍ଦୋଗ୍ୟ କହେ - ଏକଦା କ୍ଷୁଧାତୁର ଶ୍ୱାନଗୁଡ଼ିଏ ଗୋଟିଏ ଶ୍ୱେତବର୍ଣ୍ଣ କୁକ୍କୁରଦ୍ୱାରା ଉପଦିଷ୍ଟ ହୋଇ କ୍ଷୁନ୍ନିବୃତ୍ତି ଲାଗି ଭଗବାନଙ୍କ ନିକଟରେ ଓଁ ଓଁ ଖାଦ୍ୟ ଦିଅ ବୋଲି ଯାଚଞ୍ଚା କରିଥିଲେ । ଏଠାରେ ଆତ୍ମା ଏବଂ ମହଦାଦି ପଞ୍ଚବିଂଶତି ତତ୍ତ୍ୱ ଇତ୍ୟାଦି ନିମନ୍ତେ ଯାସ୍କର ଆଧ୍ୟାତ୍ମିକ ବା ଆଧିଦୈବିକ ଅର୍ଥର ସହାୟ ନନେଲ ଗତ୍ୟନ୍ତର ନାହିଁ । ଏବଂଚ କୃଷ୍ଣ ଓ ଶୁକ୍ଳ ଯଜୁର୍ବେଦର ବିଭାଗକୁ ନେଇ ବୈଶମ୍ପାୟନ ଓ ତାହାଙ୍କ ଶିଷ୍ୟ ଯାଜ୍ଞବଲ୍କ୍ୟଙ୍କ ମଧ୍ୟରେ ଯେଉଁ ବିବଦମାନ ଅଂଶଟି ଅଛି ତାହାଏପରି ଗ୍ରହଣ କରାଯାଇପାରେ - ଗୁରୁଙ୍କ ଆଦେଶରେ ଯାଜ୍ଞବଲ୍କ୍ୟ ଅଧୀତ ବିଦ୍ୟାକୁ ବମନ କରିଦେବା ଓ ଅପର ଶିଷ୍ୟଗଣ ତିତ୍ତିରିପକ୍ଷୀ ରୂପେ ତାହା ଭକ୍ଷଣ କରିବା ଇତ୍ୟାଦି ହେଉଛି କଥାଂଶ । ଏଠାରେ ବାନ୍ତ ପଦର ଉଦ୍‌ଗୀର୍ଣ୍ଣ ଅର୍ଥ ନକରି ଗୁରୁଙ୍କ ନିକଟରେ ପ୍ରତ୍ୟର୍ପଣ କରି ଅନ୍ୟ ସମୟରେ ଅଧୀତ ମନ୍ତ୍ରୋଚ୍ଚାରଣ ବା ପୁନର୍ବ୍ୟବହାର ନ କରିବାପାଇଁ ଶପଥ କରିବା । ଉକ୍ତ ମନ୍ତ୍ରଗୁଡ଼ିକୁ

ବୈଶମ୍ପାୟନ ଅନ୍ୟ ଶିଷ୍ୟମାନଙ୍କୁ ପଢ଼ାଇବା ଛଡ଼ା ବିଦ୍ୟାର ବମନ ଓ ପକ୍ଷୀରୂପେ ଭକ୍ଷଣ ଇତ୍ୟାଦି ଅଭିଧାମୂଳକ ଅର୍ଥ କି ସମ୍ଭବପର ହୋଇପାରେ?

ବେଦର ବିବଦମାନ ଅଂଶଗୁଡ଼ିକ ଅନେକ ସ୍ଥଳରେ ଅପରର ମଧ୍ୟସ୍ଥତାରେ ନିଷ୍ପନ୍ନ ହୋଇଥିବା ମଧ୍ୟ ଜତୁରତାର ଆଭାସ ମିଳେ । ଯଥା- ପ୍ରବନ୍ଧୋଲ୍ଲିଖିତ ଚରକ, ଜଳଦ ଓ ମୌଦ ଶାଖୀୟଗଣର ଅନ୍ୟାନ୍ୟ ଆକ୍ଷେପ ଓ ଆକ୍ରୋଶ ପ୍ରଭୃତିର ସମାଧାନ ପୂର୍ବକ ଗୋପଥ-ବ୍ରାହ୍ମଣ ବ୍ୟବସ୍ଥା ଦେଇଅଛନ୍ତି-

''ତସ୍ମାତ୍ ଋଗ୍‌ବେଦମେବ ହୋତାରଂ ବୃଣୀଷ୍ବ,

ଯଜୁର୍ବେଦ ମଧ୍ୱର୍ଯ୍ୟୁଂ ସାମବେଦ ମଦ୍ଗାତାରଂ ଅଥର୍ବାଙ୍ଗିରୋବ୍ରହ୍ମାଣଂ'' ।

ଅତଏବ ଋଗ୍‌ବେଦୀଙ୍କୁ ହୋତାରୂପେ, ଯଜୁର୍ବେଦୀଙ୍କୁ ଅଧ୍ୱର୍ଯ୍ୟୁ ରୂପେ, ସାମବେଦୀଙ୍କୁ ଉଦ୍ଗାତା ରୂପେ, ଅଥର୍ବାଙ୍ଗିରବିଦଙ୍କୁ ବ୍ରହ୍ମା ରୂପେ ବରଣ କର । ଏବଂଚ ଯଜ୍ଞୀୟ ବିଧାନର ଅଗ୍ନି ସ୍ଥାପନ, ଶାଳା ନିର୍ମାଣ, ଅଶ୍ୱ ସ୍ପର୍ଶନ ପ୍ରଭୃତିର ତାତ୍ପର୍ଯ୍ୟ ଆଲୋଚନା କରିବାକୁ ଗଲେ ବୁଦ୍ଧିବୃତ୍ତିବିମୂଢ଼ ହୋଇଯିବ । ବେଦ ମହାମହୀରୁହର ଶାଖା ପ୍ରଶାଖା ଅନନ୍ତ; ପ୍ରତିପାଦ୍ୟ ବିଷୟର ସୁଦ୍ଧା ଇୟତ୍ତା ନାହିଁ, ତନ୍ମଧ୍ୟେ ଜିଗୀଷାବାଦ ଓ ପ୍ରକ୍ଷିପ୍ତ ବାକ୍ୟର ସଂଖ୍ୟା ସୁଦ୍ଧା ନ୍ୟୂନ ନୁହେଁ । ଏହି ବେଦସାଗର ମଧ୍ୟରେ ପ୍ରବେଶ କଲେ ଉତ୍ତୁଙ୍ଗ ତରଙ୍ଗାଘାତରେ ନିମଜ୍ଜିତ ଓ ଉନ୍ମଜ୍ଜିତ ହେବା ବ୍ୟତିରେକେ ତତ୍ତ୍ୱରତ୍ନ ଯେ ବାହାର କରିବା ଆଶା ସୁଦୂର ପରାହତ । ଭଗବାନ ଶ୍ରୀକୃଷ୍ଣ ଗୀତାରେ ସୂଚନା ଦେଇଅଛନ୍ତି କି,

''ତ୍ରୈଗୁଣ୍ୟ ବିଷୟା ବେଦାଃ ନିସ୍ତ୍ରୈଗୁଣ୍ୟୋ ଭବାର୍ଜୁନ'' ।
ବେଦଗୁଡ଼ିକ ତ୍ରିଗୁଣ ବିଶିଷ୍ଟ ଅତଏବ ତୁମ୍ଭେ ନିସ୍ତ୍ରୈଗୁଣ୍ୟ ହୁଅ । ଏବଂଚ
''ଯାମିମାଂ ପୁଷ୍ପିତାଂ ବାଚଂ ପ୍ରବଦ୍ୟନ୍ତ୍ୟ ବିପଶ୍ଚିତଃ ।
ବେଦ ବାଦରତାଃ ପାର୍ଥ ନାନ୍ୟ ଦସ୍ତୀତି ବାଦିନଃ'' ।

ଅର୍ଥାତ୍ ଅପଣ୍ଡିତଗଣ ବେଦବାଦରତ ହୋଇ ଫଳଶୂନ୍ୟ ପୁଷ୍ପିତା ବାଣୀକି ମାତ୍ର ଅବଲମ୍ବନ କରି ଅନ୍ୟ କିଛି ନାହିଁ ବୋଲି କହିଥାନ୍ତି । ଅତଏବ ବେଦର ସାମୟିକୀ ବ୍ୟାବହାରିକ ରୀତିନୀତିଦ୍ୟୋତକ, ସାମାଜିକ ବିଧିନିବନ୍ଧମୂଳକ, ତତ୍କାଳୀନ ରାଷ୍ଟ୍ରନୀତିସୂଚକ, କର୍ମକାଣ୍ଡପ୍ରବର୍ତ୍ତକ ଋକ୍‌ଗୁଡ଼ିକୁ ପୃଥକ୍ କରିଦେଇ ଅବଶିଷ୍ଟ ଜ୍ଞାନୀବର୍ଯ୍ୟ ଆର୍ଯ୍ୟଙ୍କର ଅନ୍ତରର ଅନୁଭୂତି, ଜୀବନର ରହସ୍ୟରୂପ ସୂକ୍ଷ୍ମମୂର୍ତ୍ତି ଅନୁସନ୍ଧାନ କରିଯାଅ, ଦେଖିବ ବେଦର ପ୍ରାଣରୂପ ଗୋଟିଏ ଅତୁଳ ଓ ଅମୋଘ ବ୍ରାହ୍ମୀଶକ୍ତିର ପ୍ରଭାବ ଅନାହତ ଜାଗ୍ରତ ଚୈତନ୍ୟ ରୂପେ ବିରାଜମାନ ।

ଏଠାରେ ଏହି ବିଷୟର ଆଉ ଟିକିଏ ବିଶ୍ଳେଷଣ କରାଯାଉ । ବୈଜ୍ଞାନିକଙ୍କ ମତରେ ସୃଷ୍ଟି ବ୍ୟାପାରର ମୂଳୀଭୂତ କାରଣ ରୂପେ ତଡ଼ିତ୍ ବିଦ୍ୟମାନ । ପକ୍ଷାନ୍ତରେ ବୈଦିକଋଷି କହେ ଏକ ଅଦ୍ୱିତୀୟ ବ୍ରହ୍ମ ଅଣୁପରମାଣୁର ମଧ୍ୟେ ଚୈତନ୍ୟ ରୂପେ ବିଦ୍ୟମାନ । ଅତଏବ

ଜଡ଼ବିଜ୍ଞାନରେ ଯାହା ତଡ଼ିତ୍ ଶକ୍ତିର ପ୍ରେରକ, ବେଦର ତାହା ସକ୍ରିୟ ବ୍ରହ୍ମ । ସୁତରାଂ ଏ ବିଷୟରେ ବକ୍ତବ୍ୟ ଏହି ଯେ ବୈଜ୍ଞାନିକ ତାହାର ସିଦ୍ଧାନ୍ତିକ ଜଗତ୍‌ବ୍ୟାପାରର ମୂଳୀଭୂତ କାରଣ ରୂପେ ତଡ଼ିତ୍‌ତାଡ଼କଙ୍କୁ ଯଉଁ ଚକ୍ଷୁରେ ଦେଖେ ବୈଦିକ ଋଷି ସ୍ୱ ସିଦ୍ଧାନ୍ତିକ ଜାଗତିକ ମୂଳୀଭୂତ କାରଣ ଈଶ୍ୱରଙ୍କୁ ସେହି ଚକ୍ଷୁରେ ଦେଖେନାହିଁ । ତଡ଼ିତ୍‌ର ଦ୍ୱାରେ ବୈଜ୍ଞାନିକର ଅଗ୍ରଗତି ରୁଦ୍ଧ ହୋଇଯାଏ । ତାହାର ଆନନ୍ଦ ଓ ତନ୍ମୟତା ସାମୟିକ ମାତ୍ର । ବୈଦିକ ଋଷିର ଅଗ୍ରଗତି ପରିଦୃଶ୍ୟମାନ ସୃଷ୍ଟି ରାଜ୍ୟ ଛାଡ଼ି ଅନିର୍ବଚନୀୟ ଆନନ୍ଦଲୋକ ପର୍ଯ୍ୟନ୍ତ ପ୍ରସାରିତ ହୁଏ । ସେ ଏକ ଅନନୁଭୂତ ଆକର୍ଷଣେ ଆକୃଷ୍ଟ ହୋଇ ନିଜର ଅସ୍ତିତ୍ୱ ପର୍ଯ୍ୟନ୍ତ ଭୁଲିଯାଏ । ସେହି ଆଧ୍ୟାତ୍ମିକ ବ୍ୟାକୁଳତା ଦିଗନ୍ତବିସ୍ତାରିଣୀ ନଭଃଚୁମ୍ବିନୀ ବିରାଟ ବିଶ୍ୱବ୍ୟାପିନୀ ବ୍ରହ୍ମରୂପ ମହାସିନ୍ଧୁର ମିଳନାକାଂକ୍ଷୀ । ଏହି ଭୂମାନନ୍ଦ ହିଁ ଭାରତୀୟ ଧର୍ମ ମନ୍ଦିରର ମୂଳଭିତ୍ତି । ଲକ୍ଷ୍ୟ ଓ ଲକ୍ଷଣାକ୍ରାନ୍ତ ବିରାଟ ବିଶ୍ୱ ମଧ୍ୟରେ ବେଦର ଅନ୍ତର୍ଦେବତା ହିଁ ଆର୍ଯ୍ୟଜାତିର ଲକ୍ଷିତ, ତଦ୍‌ବ୍ୟତୀତ ସମସ୍ତ ବିଶ୍ୱ ଲକ୍ଷଣ କେବଳ । ଏହି ଉଦାର ମହାଶିକ୍ଷା ସଂଖ୍ୟାଧିକ କାଳ ହେଲା ପ୍ରତ୍ୟେକ ଶାସ୍ତ୍ରୀୟ ବ୍ୟାଖ୍ୟାରେ ବିବୃତ୍ତ । ଯେପରି ମହାସିନ୍ଧୁ ମଧ୍ୟରୁ ଗୋଟିଏ ବିନ୍ଦୁର ମହତ୍ତ୍ୱ ବୁଝିପାରିଲେ ଆଉ ଅଧିକ ଦୂର ପୁରଃସର ହେବା ଅନୁଚିତ ସେହିପରି ବେଦପ୍ରକାଶିତ ଏକ ପ୍ରଣବବ୍ୟାହୃତିର ତତ୍ତ୍ୱ ଗ୍ରହଣ କରିପାରିଲେ ସହଜେ ଶିକ୍ଷା ସାଙ୍ଗଏବଂ ଦୀକ୍ଷାପୂର୍ଣ୍ଣ ହୋଇଯିବ । କିନ୍ତୁ ସେ ବିରାଟ ସାଧନା ସୁଲଭସାଧ୍ୟ ନୁହେଁ । ଏହି ସୂକ୍ଷ୍ମ ସୂତ୍ରର ଅବଲମ୍ବନରେ ହିଁ ସମଗ୍ର ଗ୍ରନ୍ଥ ଗ୍ରଥିତ ଓ ସମନ୍ୱିତ ହେବ ।



ସୃଷ୍ଟି ସ୍ଥିତି ପ୍ରଳୟ କାରଣମତ୍ୟୁଦାରଂ ।
ସ୍ୱର୍ଗାପବର୍ଗ ସୁଖଦଂ ଶ୍ରୁତିଶାସ୍ତ୍ରସାରଂ ।।
ତଂଦେବଦେବ ମମଳଂ ବିଭୁ ନିର୍ବିକାରଂ ।
ବନ୍ଦେ ବିଚିତ୍ର ଭବନାଟକ ସୂତ୍ରଧରଂ ।।

ଏହି ବିରାଟ ବିଶ୍ୱସୌନ୍ଦର୍ଯ୍ୟର ମୂଳରେ କେଉଁ ମହୀୟସୀ ଅଖଣ୍ଡ ଚୈତନ୍ୟମୟୀ ଶକ୍ତି ଅବିରତ ଜାଗ୍ରତ, ଏହି ଅନନ୍ତ ବିଶ୍ୱ ବ୍ରହ୍ମାଣ୍ଡ ପରିଚାଳନାରେ କାହାର ସୁନିୟତ ଅଭ୍ରାନ୍ତ ପ୍ରେରଣା କାର୍ଯ୍ୟକରେ, ଏହି ବିଶାଳ ବିଶ୍ୱ ନିର୍ମାଣରେ କାହାର ଅଦ୍ଭୁତ ଅଲକ୍ଷ ହସ୍ତନୈପୁଣ୍ୟ ବିଦ୍ୟମାନ ଏ ସମସ୍ତ ଆଲୋଚନା କରିବା ସଙ୍ଗେସଙ୍ଗେ ବିସ୍ମୟାବହ ଜାଗତିକୀ ସର୍ଜନାତ୍ମିକା ପ୍ରକ୍ରିୟାର ରହସ୍ୟ ଅଂଶ ବିଶ୍ଳେଷଣ ଲାଗି ଅଦ୍ୟାପି ନାନା ମନୀଷୀଙ୍କର ଅବିରାମ ଓ ଆଜୀବନ ଅକ୍ଳାନ୍ତ ଚେଷ୍ଟା ନାନାଭାବେ ନାନାଛନ୍ଦେ ଇତିହାସର ପ୍ରତ୍ୟେକ ସୂତ୍ରେ ଗ୍ରଥିତ । ସ୍ଥୂଳ ସୂକ୍ଷ୍ମ ଭେଦେ ଅସୀମ ସୃଷ୍ଟିର ପରିଦୃଶ୍ୟମାନ ବିପୁଳ ବସ୍ତୁଠାରୁ କ୍ଷୁଦ୍ରାତ୍ କ୍ଷୁଦ୍ରତର ପରମାଣୁପୁଞ୍ଜ ପର୍ଯ୍ୟନ୍ତ ପ୍ରତ୍ୟେକର ପ୍ରସାର ମହିମାମଣ୍ଡିତ । ଏମାନଙ୍କ ମଧ୍ୟରୁ ଗୋଟିକର ମହତ୍ତ୍ୱ ଉପଲବ୍ଧି କରିବାକୁ ଗଲେ ମାନବର ବୁଦ୍ଧିବୃତ୍ତି ସ୍ତିମିତ, ଚିନ୍ତାଗତି ପ୍ରତିହତ ହୋଇଯିବ । ତଥାପି ପ୍ରଜ୍ଞାର ପ୍ରଭାବେ, ଅଖଣ୍ଡ ବୁଦ୍ଧିସ୍ଫୂର୍ତ୍ତିର ବଳେ ମାନବ ମୂଳତତ୍ତ୍ୱାନୁସନ୍ଧାନେ ସର୍ବଦା ଉଦ୍‌ଗ୍ରୀବ ଓ ପ୍ରଯତ୍ନଶୀଳ । ଆଶ୍ଚର୍ଯ୍ୟର ବ୍ୟାପାର ବୈଚିତ୍ର୍ୟପୂର୍ଣ୍ଣ ବିଶ୍ୱ ପ୍ରକୃତିର ଅନନ୍ତ ଲୀଳାଭଣ୍ଡାରେ ଗୋଟିକର ସଙ୍ଗେ ଅପରଟିର ସୌସାଦୃଶ୍ୟ ଲକ୍ଷିତ ହୁଏନାହିଁ । ଏହି ଅକାଟ୍ୟ ନିୟମ ଓ ପ୍ରାକୃତିକ ଜଗତର ବୈଶିଷ୍ଟ୍ୟ ହିଁ ସ୍ରଷ୍ଟାର ନୈପୁଣ୍ୟ ଘୋଷଣା କରେ। ଚେତନାଚେତନ ପ୍ରତ୍ୟେକ ବସ୍ତୁର ଅପରିହାର୍ଯ୍ୟ ମୃଦୁମନ୍ଦ ପରିବର୍ତ୍ତନ ଦୃଗ୍‌ବିଷୟୀଭୂତ ନହେଲେ ସୁଦ୍ଧା ମହାମନୀଷୀଗଣ ମନୀଷା ପ୍ରଭାବେ ଅନନ୍ତ ରାଜ୍ୟର ଗଭୀର ସ୍ତରକୁ ଯାଇ ଅଖଣ୍ଡ ସତ୍ୟ ଉପଲବ୍ଧି କରିବାକୁ ଛାଡ଼ି ନାହାନ୍ତି । ସୃଷ୍ଟି, ସ୍ଥିତି, ପ୍ରଳୟ ନିତ୍ୟ ନିୟମିତ ଭାବେ ପ୍ରତ୍ୟହ ପ୍ରାଣୀଜଗତରେ ସୁଦ୍ଧା ଜାଗ୍ରତାଦି ଭେଦେ ଦେଖାଯାଏ । ପ୍ରାକୃତିକ ଲୀଳାବଳେ ଆଧେୟର କଥା କାହିଁକି ଆଧାରୀଭୂତ ବିରାଟ ବିଶ୍ୱ ସୁଦ୍ଧା କେତେ କୋଟିବାର ଧ୍ୱଂସର ଭୀଷଣ ମୁଖରେ କବଳିତ ତାହାର ଇୟତ୍ତା ନାହିଁ ।

ଏହାର ଦୃଷ୍ଟାନ୍ତ ରୂପେ ଦିନେ ଶ୍ରୀକୃଷ୍ଣ ଭଗବାନ ଅର୍ଜ୍ଜୁନଙ୍କୁ ବିଶ୍ୱରୂପ ଦର୍ଶନଛଳେ ବୁଝାଇ ଦେଇଅଛନ୍ତି କି -

''ଇହୈକସ୍ଥଂ ଜଗତ୍‌କୃତ୍ସ୍ନଂ ପଶ୍ୟାଦ୍ୟ ସଚରାଚରଂ ।

ମମଦେହେ ଗୁଡ଼ାକେଶ ଯଚ୍ଚାନ୍ୟ ଦ୍ରଷ୍ଟୁମିଚ୍ଛସି'' ।।

ଏହାର ତାତ୍ପର୍ଯ୍ୟ - କୋଟି କୋଟି ବିଶ୍ୱବିନ୍ଦୁ ସେହି ଅନନ୍ତ ମହାସମୁଦ୍ରେ ନାମରୂପ ହରାଇ ଏକାଂଶେ ସମ୍ମିଳିତ । ଶାସ୍ତ୍ରଦ୍ୱାରା ବୁଝାଯାଉଅଛି ଯେ, ସୃଷ୍ଟିର ଆଦିମ ଅବସ୍ଥାରେ ଜଗତର ସ୍ୱରୂପ ଏବଂବିଧ ନଥିଲା । ଏ ଅବାନ୍ତରରେ ଓତଃପ୍ରୋତ ଭାବେ ଅସମ୍ଭବ ରୂପେ କେତେ ନୂତନ ଜୀବ ଉତ୍ପନ୍ନ, କେତେ ଜୀବସୃଷ୍ଟି ଉଚ୍ଛନ୍ନ, କେତେ ପ୍ରାଣୀରାଜ୍ୟର ପରିବର୍ତ୍ତନ ଘଟିଅଛି, ଭୂତତ୍ତ୍ୱବିଦ୍‌ଗଣ ତାହା ବହୁ ଗବେଷଣାବଳେ ସ୍ୱାନୁଭୂତି ଲିପିବଦ୍ଧ କରିଯାଇଅଛନ୍ତି । ଅତଏବ ଏ ସମସ୍ତ କଳ୍ପନା କରିବାର ବହୁପୂର୍ବେ ବିଶ୍ୱର ଅବସ୍ଥା, ପ୍ରସାର ଓ ଜୀବଗଣର କ୍ରମୋନ୍ନତି ପ୍ରଭୃତି ଜ୍ଞାନୀଗଣ ଦର୍ଶନ, ବିଜ୍ଞାନ ଓ ପୁରାଣାଦି ଶାସ୍ତ୍ରମାନଙ୍କରେ ଯାହା ଲେଖିଛନ୍ତି ସେ ସକଳର ତାତ୍ପର୍ଯ୍ୟ ଏବଂ ପୂର୍ବୋକ୍ତ ବେଦଶାସ୍ତ୍ରର ଅଭିମତ ଏଠାରେ ସରଳ ଭାବେ ପ୍ରିୟ ପାଠକପାଠିକାଙ୍କୁ ଉପହାର ଦେଉଅଛି । ଏହି ଅଜ୍ଞେୟ ସୃଷ୍ଟିତତ୍ତ୍ୱସମ୍ବନ୍ଧେ ଯେଉଁଠାରୁ ମନୁଷ୍ୟ ଚିନ୍ତା କରିବାକୁ ଅଗ୍ରସର ହେଲା ତଦବଧି ତାହାର ମନୋବୃତ୍ତି ଓ ଧୀଶକ୍ତି ଏହି ବିଶ୍ୱସାମ୍ରାଜ୍ୟର ରହସ୍ୟୋଦ୍‌ଘାଟନ ଲାଗି ଶତଚେଷ୍ଟା କଲା । ମୁଁ କିଏ, କେଉଁଠାରୁ କେଉଁଠାକୁ ଆସିଅଛି? ମୋର ଏ ଲୀଳାକ୍ଷେତ୍ରର ପରିଣତି କେଉଁଠାରେ? ସ୍ୱଭାବତଃ ଚିନ୍ତାଶୀଳ ମାନବର ମନରେ ଏ ସକଳ ପ୍ରଶ୍ନ ଉଠିବା ଅସ୍ୱାଭାବିକ ନୁହେଁ । ସଭ୍ୟ ଅସଭ୍ୟ ସକଳ ଯୁଗର ସକଳ ଜାତି ହିଁ ଏହି କୌତୂହଳ ବଶବର୍ତ୍ତୀ ହୋଇ ଜଗତର ଉତ୍ପତ୍ତି ଓ ପରିଣତି ସମ୍ବନ୍ଧେ ଏକ ପ୍ରକାର ମୀମାଂସାରେ ଉପନୀତ ହୁଅନ୍ତି । ଭାରତର ଆର୍ଯ୍ୟଋଷିଗଣ ସୃଷ୍ଟି ଭଗବାନଙ୍କର ପ୍ରାକୃତିକ ଅସ୍ତିତ୍ୱର ଅଙ୍ଗୀଭୂତ ବୋଲି ଧରି ନେଇଛନ୍ତି । ସୃଷ୍ଟିର ଆଦି ଓ ଅନ୍ତ ନାହିଁ । ସୃଷ୍ଟ ହେଲେ ମଧ୍ୟ ପଦାର୍ଥ ଅନାଦି ଓ ଅନନ୍ତ । ''ଏକୋଽହଂବହୁସ୍ୟାଂ'' ଉକ୍ତି ଜଗତର ମୂଳୀଭୂତ କାରଣ । କିନ୍ତୁ ଏହି ଇଚ୍ଛା ଯେ ଭଗବାନଙ୍କର ମନରେ କେବେ ଉଦିତ ହୋଇଥିଲା ତାହା କେହି ନିର୍ଦ୍ଧାରଣ କରିନାହାନ୍ତି ଏବଂ ଏକତ୍ୱ ଓ ବହୁତ୍ୱର ଧାରଣା ମଧ୍ୟ କଳ୍ପନାବିନା ମାନବବୁଦ୍ଧିର ଅଗୋଚର ।

ମନୁ ପ୍ରଭୃତି ପ୍ରାଚୀନ ସଂହିତାକାରଙ୍କ ମତରେ ସୃଷ୍ଟିକାର୍ଯ୍ୟ ଅନବରତ ଚଳୁଅଛି ସତ୍ୟ, କିନ୍ତୁ ଯେତେବେଳେ ଦୃଶ୍ୟମାନ ଜଗତ ଏକବାର ବିଲୁପ୍ତହୋଇ ସ୍ରଷ୍ଟାର ଧାରଣାରେ ଯାଇ ବିଲୀନ ହୁଏ, ସେତେବେଳେ ଗୋଟିଏ ଘନ ଓ ଗାଢ଼ ତମ ବ୍ୟତୀତ ଅନ୍ୟ କିଛିର ଅସ୍ତିତ୍ୱ ନଥାଏ । ''ଆସୀଦିଦଂ ତମୋଭୂତମପ୍ରଜ୍ଞାତ ମଲକ୍ଷଣଂ'' ସେ ସମୟର ଅବସ୍ଥା ପ୍ରତ୍ୟକ୍ଷରୁ ଅଗୋଚର । ଉକ୍ତ ସମୟ ତର୍କ ଓ ଜ୍ଞାନର ଅତୀତ ହୋଇ ସର୍ବତୋଭାବେ ପ୍ରଗାଢ଼ ନିଦ୍ରାଭିଭୂତ ଥିଲା । ପରେ ସ୍ୱୟମ୍ଭୁ ଅବ୍ୟକ୍ତ ଭଗବାନ୍ ମହା ଭୂତାଦି ଚତୁର୍ବିଂଶତି ତତ୍ତ୍ୱରେ ଏ ବିଶ୍ୱକୁ କ୍ରମେ କ୍ରମେ ପ୍ରକଟିତ କରି ସ୍ୱୟଂ ଅବସ୍ଥାର ବିଧ୍ୱଂସକ ହୋଇ ପ୍ରକାଶିତ ହୁଅନ୍ତି । ପରେ ପ୍ରକାଶ୍ୟଭାବେ

ସୃଷ୍ଟି କାର୍ଯ୍ୟ ଆରମ୍ଭ ହେଲା । ଭଗବାନ୍‌ଧ୍ୟାନ ଯୋଗେ ସର୍ବପ୍ରଥମେ ଜଳ ସୃଷ୍ଟିକରି ତହିଁରେ ବୀଜ ନିକ୍ଷେପ କଲେ । ଯଥା - "ଅପଏବ ସସର୍ଜାଦୌ ତାସୁବୀଜମବାକ୍ଷିପତ୍" ସେହି ବୀଜରୁ ସ୍ୱର୍ଣ୍ଣୋପମ ସୂର୍ଯ୍ୟସଦୃଶ ତେଜୋମୟ ଏକ ଅଣ୍ଡ ଉଦ୍ଭୂତ ହେଲା । ସେହି ଅଣ୍ଡ ମଧ୍ୟେ ସ୍ୱୟଂ ଭଗବାନ ସର୍ବଲୋକ ପିତାମହ ବ୍ରହ୍ମା ରୂପେ ଜନ୍ମିଲେ ।

ଭଗବାନ ଏହି ବ୍ରହ୍ମାଣ୍ଡରେ ବ୍ରହ୍ମମାନର ସମସ୍ତର କାଳ ରହି ଧ୍ୟାନବଳେ ସେହି ଅଣ୍ଡକୁ ଦ୍ୱିଧା କରି ଉର୍ଦ୍ଧ୍ୱଖଣ୍ଡରେ ସ୍ୱର୍ଗାଦି ଲୋକ, ଅଧୋଖଣ୍ଡରେ ପୃଥିବ୍ୟାଦି ଏବଂ ମଧ୍ୟଦେଶରେ ଆକାଶ, ଅଷ୍ଟଦିକ୍ ଓ ସମୁଦ୍ର ସକଳ ସୃଷ୍ଟି କଲେ । ଅତଃପର ମହତ୍ ତତ୍ତ୍ୱର ବିକାଶ ବିଷୟଗ୍ରହଣକ୍ଷମ ଇନ୍ଦ୍ରିୟାଦି, ଅନନ୍ତକାର୍ଯ୍ୟକ୍ଷମ ଅହଂକାର ଓ ଦେବ ମନୁଷ୍ୟାଦି ଜୀବର ଉତ୍ପତ୍ତି ପ୍ରଭୃତି ଏବଂ ସ୍ଥାବରଜଙ୍ଗମାତ୍ମକ ସୃଷ୍ଟି ସମ୍ବନ୍ଧେ ଏହାହିଁ ଭଗବାନ ମନୁଙ୍କର ଯୋଗଲବ୍ଧ ଜ୍ଞାନ!

ସୁତରାଂ ଦର୍ଶନଶାସ୍ତ୍ରକାରଙ୍କ ମଧ୍ୟେ ପୂର୍ବୋକ୍ତ ସୃଷ୍ଟି କ୍ରମକୁ ନେଇ କିଞ୍ଚିତ୍ ମତଭେଦ ଦେଖାଯାଏ । ଫଳତଃ ଏକ ପରଂବ୍ରହ୍ମରୁହିଁ ଏ ଜଗତର ସୃଷ୍ଟି, ଏ ବିଷୟରେ କାହାର ମତଦ୍ୱୈଧ ନାହିଁ । ସାଂଖ୍ୟ ମାତ୍ର ପ୍ରକୃତି ଓ ପୁରୁଷ ସଂଯୋଗେ ସୃଷ୍ଟି ବୋଲି ସ୍ୱୀକାର କରନ୍ତି । ସୁତରାଂ ପୁରୁଷଙ୍କୁ ଈଶ୍ୱର ସ୍ଥାନରେ ରଖିଦେଲେ କୌଣସି ବିରୋଧଭାବର ସମ୍ଭାବନା ନାହିଁ । ବୈଶିଷିକାଦିଙ୍କ ମତରେ ଅଦୃଷ୍ଟଯୁକ୍ତ ଆତ୍ମାର ସଂଯୋଗେ ପ୍ରଥମେ ବାୟବୀୟ ପରମାଣୁରେ କର୍ମର ଉତ୍ପତ୍ତି ଏବଂ ପବନ ପରମାଣୁ ସକଳର ଅନ୍ୟୋଽନ୍ୟ ସଂଯୋଗ । ଦ୍ୟଣୁକାଦି ମହାନ ବାୟୁ ଉତ୍ପନ୍ନ ଓ କମ୍ପମାନ ହୋଇ ଆକାଶେ ଅବସ୍ଥିତ ହୁଏ । ବାୟୁର ସ୍ୱଭାବ ତିର୍ଯ୍ୟକ୍ ଗମନ । ସେକାଳେ ଅନ୍ୟ କୌଣସି ଦ୍ରବ୍ୟର ଉତ୍ପତ୍ତି ହୋଇନାହିଁ ଯଦ୍ୱାରା ବାୟୁର ବେଗ ପ୍ରତିହତ ହେବ । ବାୟୁ ସୃଷ୍ଟିର ପରେ ଜଳୀୟ ପରମାଣୁରେ କର୍ମର ଉତ୍ପତ୍ତି ହୋଇ ବାଣୁକାଦି କ୍ରମେ ମହାନ୍ ସଲିଳ ରାଶି ଉତ୍ପନ୍ନ ଓ ବାୟୁବେଗ କମ୍ପମାନ ହୋଇ ବାୟୁରେ ଅବସ୍ଥାନ କରେ । ତତ୍‌ପରେ ଉକ୍ତ ପ୍ରଣାଳୀ ଅନୁସାରେ ପାର୍ଥିବ ପରମାଣୁ ସଂଯୋଗେ ନିବିଡ଼ ବାୟବୀୟ ମହାପୃଥିବୀ ଉତ୍ପନ୍ନ ହୋଇ ଜଳରେ ସମବସ୍ଥିତ ।

ଏହିରୂପେ ତେଜୋରାଶି ସମୁତ୍ପନ୍ନ ହୋଇ ଜଳରାଶିରେ ଅବସ୍ଥାନ କରେ । ତତ୍ପରେ ପରମେଶ୍ୱରଙ୍କ ସଂକଳ୍ପମାତ୍ରେ ବ୍ରହ୍ମାଣ୍ଡ ଓ ବ୍ରହ୍ମାର ଉତ୍ପତ୍ତି ହୁଏ । ଜ୍ଞାନବୈରାଗ୍ୟ ଐଶ୍ୱର୍ଯ୍ୟସମ୍ପନ୍ନ ବ୍ରହ୍ମା ମହେଶ୍ୱରକର୍ତ୍ତୃକ ସୃଷ୍ଟି କାର୍ଯ୍ୟରେ ନିଯୁକ୍ତ ହୋଇ ପ୍ରାଣୀର କର୍ମାନୁସାରେ କ୍ରମେ ଅନନ୍ତଜଗତର ସୃଷ୍ଟି କରନ୍ତି । ବେଦାନ୍ତ ମତରେ ବ୍ରହ୍ମହିଁ ଜଗତ୍‌ସୃଷ୍ଟି ସ୍ଥିତିପ୍ରଳୟର କାରଣ । "ଯତୋବା ଇମାନୀ ଭୂତାନି ଜାୟନ୍ତେ", "ଏତସ୍ମାଦାତ୍ମନଃ ଆକାଶଃ ସମ୍ଭୁତଃ ଆକାଶତ୍ ବାୟୁଃ ବାୟୋରଗ୍ନିଃ ଅଗ୍ନେରାପଃ ଅଦ୍ଭ୍ୟଃ ପୃଥିବୀ ଚୋତ୍ପଦ୍ୟନ୍ତେ" । ଏତଭିନ୍ନ ପ୍ରତ୍ୟେକ ପୁରାଣର ଗୋଟିଏ ଗୋଟିଏ ବିଶିଷ୍ଟ ଅଙ୍ଗ ସୃଷ୍ଟି, ସ୍ଥିତି, ପ୍ରଳୟ ବର୍ଣ୍ଣନ ରୂପେ ବିଦ୍ୟମାନ । ପ୍ରତ୍ୟେକ ପୁରାଣରେ ସୃଷ୍ଟି ପ୍ରକ୍ରିୟାର ବୈଲକ୍ଷଣ୍ୟ ଥିଲେ ସୁଦ୍ଧା ପରମେଶ୍ୱର ସୃଷ୍ଟିକର୍ତ୍ତା, ଏ ମୂଳ

ସୂତ୍ର ମାତ୍ର କେହି ଭୁଲିନାହାନ୍ତି । ସଂହିତା, ଦର୍ଶନ ଓ ପୁରାଣାଦି ପ୍ରତ୍ୟେକ ଶାସ୍ତ୍ରର ମତ "ଦ୍ୟାବା ଭୂମି ଜନୟନ୍ ଦେବ ଏକଆସ୍ତେ ବିଶ୍ୱସ୍ୟ କର୍ତ୍ତା ଭୁବନସ୍ୟ ଗୋପ୍ତା" । ଅର୍ଥାତ୍ ଏକମାତ୍ର ଦେବତାଙ୍କ ହିଁ ସ୍ୱର୍ଗମର୍ତ୍ତ୍ୟାଦି ଚରାଚର ଜଗତର ଉତ୍ପତ୍ତି ଓ ପାଳନ ମୂଳେ ବିଦ୍ୟମାନ । ଗୋଟିଏ ବିଚିତ୍ର ପୌରାଣିକ ମତ ଏହିକି, ପୃଥୁରାଜ ପ୍ରଜାହିତାର୍ଥେ ଗୋମୂର୍ତ୍ତିଧରା ବସୁନ୍ଧରାଙ୍କୁ ସମ୍ମତ କରାଇ ସ୍ୱାୟମ୍ଭୁବ ମନୁଙ୍କୁ ବତ୍ସ କଳ୍ପନା କରି ଶସ୍ୟାଦି ଦୋହନ କଲେ । ଏ ଗୋଟିଏ ପ୍ରକାଣ୍ଡ କଳ୍ପନା ବ୍ୟାପାର ହେଲେ ସୁଦ୍ଧା ଉପଦେଶଛଳେ ତାତ୍ପର୍ଯ୍ୟ ପରିପୂର୍ଣ୍ଣ ।

ସୃଷ୍ଟିପ୍ରକ୍ରିୟା ସମ୍ବନ୍ଧେ ନାନାରୂପ ମତ ଦୃଶ୍ୟ ହେଲେ ମଧ୍ୟ ସମସ୍ତ ଆର୍ଯ୍ୟଶାସ୍ତ୍ରର ମୂଳ ଭିତ୍ତି ସେହି ଏକମାତ୍ର "ଏକୋଽହଂ ବହୁସ୍ୟାଂ ପ୍ରଜାୟେୟ" । ଏହାହିଁ ସୃଷ୍ଟିର ମୂଳୀଭୂତ କାରଣ । ପ୍ରକୃତିର ଶକ୍ତି, ଐଶୀଶକ୍ତିର ସ୍ଫୁରଣ ମାତ୍ର । ଏ ବିଷୟରେ ବୌଦ୍ଧ, ଜୈନ ପ୍ରଭୃତି ପୃଥିବୀର ଯାବତୀୟ ଧର୍ମଶାସ୍ତ୍ରରେ ମନୀଷୀମାନେ ବିସ୍ତୃତ ଆଲୋଚନା କରିଯାଇଅଛନ୍ତି । ଖଗୋଳର ଗ୍ରହ, ଉପଗ୍ରହ ପ୍ରଭୃତି ସୌରଜଗତ ବିଷୟ, ଭୂଗୋଳର ଅଦ୍ଭୁତ ଜୀବ ସୃଷ୍ଟି, ଅର୍ଥାତ୍ ତରୁ, ଲତା, ଗୁଳ୍ମ, ପଶୁ, ପକ୍ଷୀ, କୀଟପତଙ୍ଗ, ସରୀସୃପ, ନର ପ୍ରଭୃତିର ବୈଚିତ୍ର୍ୟ ଏବଂ ଜଳୀୟ ଅଦ୍ଭୁତ ଜୀବର ଆକାର ପ୍ରକାର ଆଲୋଚନା କରିବାକୁ ଗଲେ ବିଶ୍ୱପିତାଙ୍କର ଅଚିନ୍ତ୍ୟ ମହତ୍ତ୍ୱ ଉପଲବ୍ଧ ହୋଇ ତଟସ୍ଥ ହେବାକୁ ହୁଏ ।

ପ୍ରାଚୀନ ଗ୍ରୀକ୍ ଦାର୍ଶନିକଗଣ ସୃଷ୍ଟିତତ୍ତ୍ୱ ଆଲୋଚନା କରିବାକୁ ଯାଇ ସ୍ଥିର କରିଅଛନ୍ତି କି, ଜଗତର ରୂପ ଓ ସ୍ଥିତି କାଳ ଉଭୟେ ଅନାଦି ଓ ଅନନ୍ତ ଅର୍ଥାତ୍ ଯେଉଁ ଅବସ୍ଥାରେ ଆମ୍ଭେ ଜଗତକୁ ଦେଖୁଅଛୁ , ତାହା ବରାବର ସେହି ଅବସ୍ଥାରେ ଅଛି ଓ ଥିବ । ଆରିଷ୍ଟୋଟଲାଇ ଏହି ମତର ପ୍ରଥମ ପ୍ରବର୍ତ୍ତକ । ପ୍ଲେଟୋ ଜେନୋଫେନିସ୍ ପ୍ରଭୃତିଙ୍କ ମତେ ବ୍ରହ୍ମାଣ୍ଡ ଓ ଭଗବାନ ଅଭିନ୍ନ । ଆମ୍ଭମାନଙ୍କର ଯେ ଆଣବିକ ଶକ୍ତି ଲେଖାଯାଇଅଛି ଦାର୍ଶନିକ ଏପିକ୍ୟୁରାସ୍‌ର ଅନୁବର୍ତ୍ତୀ ପାଶ୍ଚାତ୍ୟ ଦାର୍ଶନିକଗଣ ସେହି ଶକ୍ତିକୁ ହିଁ ବିଶ୍ୱବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ବୋଲି ଗ୍ରହଣ କରିଅଛନ୍ତି । ଖ୍ରୀଷ୍ଟ ଧର୍ମଗ୍ରନ୍ଥ କହେ, ରୂପବିହୀନ ଜଡ଼ପିଣ୍ଡବତ୍ ପଦାର୍ଥରୁ ଭଗବାନଙ୍କ ଆଦେଶରେ କ୍ରମେ ବିଶ୍ୱବ୍ରହ୍ମାଣ୍ଡର ସକଳ ପଦାର୍ଥ ସୃଷ୍ଟ ହେଲା । ପ୍ରଥମେ ଏହି ନିୟମରେ ଶୃଙ୍ଖଳାରହିତ ଜଡ଼ପିଣ୍ଡରୁ ଆଲୋକ ସୃଷ୍ଟି ହେଲା କିନ୍ତୁ ଇଦାନୀଂ ଯେପରି ଏକମାତ୍ର ଆଧାରେ ସୂର୍ଯ୍ୟ କେନ୍ଦ୍ରୀଭୂତ ପ୍ରଥମେ ସେପରି ସମଗ୍ର ବିଶ୍ୱମୟ ବ୍ୟାପ୍ତ । ପରେ ଆକାଶ ସୃଷ୍ଟି କରିଏହି ଜଡ଼ପିଣ୍ଡକୁ ଦୁଇ ଭାଗେ ବିଭକ୍ତ କଲେ । ଗୋଟିକୁ ଆକାଶର ତଳଦେଶରେ ଓ ଅପର ଭାଗକୁ ଊର୍ଦ୍ଧ୍ୱେ ପ୍ରତିଷ୍ଠିତ କଲେ । ସ୍ଥଳଭାଗେ ତୃଣ ଲତା ପ୍ରଭୃତି ଓ ନକ୍ଷତ୍ରଲୋକେ ଗ୍ରହୋପଗ୍ରହ ସୃଷ୍ଟି କଲେ । ଏହିଭାବେ ଜଗତ୍ ଜୀବରାଶିର ବାସୋପଯୋଗୀ କରି ଭଗବାନ୍ ମତ୍ସ୍ୟାଦି ଜଳଜନ୍ତୁ ଓ ଉଡ଼୍‌ଡୀୟମାନ ପକ୍ଷୀ ପ୍ରଭୃତି ସର୍ଜନା କଲେ । ପରେ ଚତୁଷ୍ପଦ ଓ ସରୀସୃପର ସୃଷ୍ଟି । ସୃଷ୍ଟିବ୍ୟାପାରର ଚୂଡ଼ାନ୍ତ ସ୍ୱରୂପ ସ୍ତ୍ରୀ ପୁରୁଷ ଆକାରେ ଦୁଇଟି ମନୁଷ୍ୟର ଉତ୍ପତ୍ତି । ଆଧୁନିକ ଇହୁଦିଙ୍କର ଗୁରୁପଦବାଚ୍ୟ ମେମୋନାଇଡିସ୍ କହିଅଛନ୍ତି, ପ୍ରଥମେ ସମସ୍ତ ବସ୍ତୁ ଏକ କାଳରେ

ସୃଷ୍ଟ ହୋଇଥିଲା, ପରେ ସେଗୁଡ଼ିକ ପୃଥକ୍ ଓ ଶ୍ରେଣୀବଦ୍ଧ କରାଗଲା । ପ୍ରାଚୀନ ଇଜିପ୍ଟ ପ୍ରଭୃତି ଦେଶର କେତେ ଯେ ଦାର୍ଶନିକ ଏ ସମ୍ବନ୍ଧେ ବିଚାର କରିଅଛନ୍ତି, ତାହାର ଇୟତ୍ତା ନାହିଁ । କିଏ କହେ ପ୍ରଥମେ ଅତଳସ୍ପର୍ଶୀ ଗହ୍ବରଓ ଶୂନ୍ୟ ଥିଲା । କିଏ କହେ ପ୍ରଥମେ କୁଜ୍ଝଟିକାଚ୍ଛନ୍ନ ଥିଲା । ଅନ୍ୟ କେହି କହନ୍ତି କାଳକ୍ରମେ ଗୋଟିଏ ଅତି ଉଷ୍ଣ ଝଡ଼ ପ୍ରବାହିତ ହୋଇ ଘନୀଭୂତ ଜଳରାଶିକୁ ତରଳାଇ ଦେଲା । ସେହି ଜଳରୁ ଗୋଟିଏ ଦୈତ୍ୟ ଉତ୍ପନ୍ନ ହେଲା । ସେତେବେଳେ ଗୋଟିଏ ଗାଈ ସୃଷ୍ଟିହୋଇ ତା'ର ପ୍ରକାଣ୍ଡ ଓଧରୁ ଚାରିଧାରାରେ ଅଜସ୍ର ଦୁଗ୍ଧ କ୍ଷରିତ ହେଲା । ଦୈତ୍ୟ ତାହା ପାନକରି ହୃଷ୍ଟପୁଷ୍ଟ । ଅନନ୍ତର ସେହି ଗାଈ ଲବଣ ଓ ଘନ ନୀହାରସମାବୃତ ଚାରୋଟି ପ୍ରସ୍ତର ଖଣ୍ଡ ଲେହନ କରି, ତିନିଦିନରେ ବୁଦ୍ଧି ନାମକ ଗୋଟିଏ ମନୁଷ୍ୟାକୃତି ଜୀବ ପ୍ରସବ କଲା । କ୍ରମେ ବୁଦ୍ଧିର ପୁତ୍ରର ଔରସରେ ଗୋଟିଏ ଦୈତ୍ୟସ୍ତ୍ରୀର ଗର୍ଭରୁ ତିନୋଟି ଦେବତା ଜାତ ହେଲେ । ସେମାନେ ଦୈତ୍ୟକୁ ବଧକରି ତାହାର ଦେହ ଗୋଟିଏ ଗହ୍ବରକୁ ନେଲେ । ତଦବଧି ସୃଷ୍ଟି କାର୍ଯ୍ୟର ପ୍ରାରମ୍ଭ । ଦୈତ୍ୟର ମାଂସରେ ପୃଥିବୀ, ରକ୍ତରେ ସମୁଦ୍ର ଓ ନଦୀ, ଏବଂ ବୃହତ୍ ଅସ୍ଥିରେ ପର୍ବତ ପ୍ରଭୃତି ନିର୍ମିତ ହେଲା । ଏ ଆଖ୍ୟାୟିକାଟି ଆମ୍ଭର ପୌରାଣିକ ମଧୁକୈଟଭ ଦୈତ୍ୟର ମାଂସରେ ମେଦିନୀ ନିର୍ମାଣର ଅନୁରୂପ ବୋଧହୁଏ ।

ପୂର୍ବୋକ୍ତ ମତମାନଙ୍କରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ସମସ୍ତ ପ୍ରାଚୀନ ଜାତି ସୃଷ୍ଟିର ମୂଳରେ ଗୋଟିଏ ଜଳମୟଅବସ୍ଥା କଳ୍ପନା କରିଅଛନ୍ତି । ଜାପାନୀମାନଙ୍କର ସୁଦ୍ଧା ଏହାହିଁ ଅନୁମୋଦନୀୟ । ସ୍ଥୂଳତଃ କହିବାକୁ ଗଲେ ଏ ସମସ୍ତ ମାନବକଳ୍ପନା ପ୍ରସୂତ । ଏହି ପରିଦୃଶ୍ୟମାନ ଜଗତର କ୍ରମିକ ଉତ୍ପତ୍ତିର ପୂର୍ଣ୍ଣତା ଲାଭ ସମ୍ବନ୍ଧେ ଭୂତତ୍ତ୍ୱବିତ୍ ଓ ମାନବତତ୍ତ୍ୱବିତ୍ ପଣ୍ଡିତଗଣ ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ବାଷ୍ପ ହିଁ ଜଗତର ମୂଳୀଭୂତ କାରଣ, କ୍ରମେ ତହିଁରୁ ଜୀବ ଓ ଜଡ଼ଜଗତର ଉତ୍ପତ୍ତି । ଏମାନେ ଜୀବ ଓ ଜଡ଼ଜଗତର କ୍ରମବିକାଶ ଓ ପୂର୍ଣ୍ଣତା ଲାଭକୁ ଚାରୋଟି ସ୍ତରରେ ବିଭକ୍ତ କରିଅଛନ୍ତି । ପ୍ରଥମେ ବାଷ୍ପରୁ ବିଶ୍ୱବ୍ରହ୍ମାଣ୍ଡର କ୍ରମବିକାଶ ଏବଂ ପୃଥିବୀ ଜୀବକୋଟିର ଉତ୍ପତ୍ତି ଓ ଜୀବନଧାରଣୋପଯୋଗୀ ହେଲା । ପରବର୍ତ୍ତୀ ସ୍ତରତ୍ରୟେ ପୃଥିବୀର ଅବସ୍ଥା ଉନ୍ନତରୁ ଉନ୍ନତତର ହୋଇ ଦ୍ୱିତୀୟେ ଜୀବସୃଷ୍ଟି - ଅସ୍ଥିବିହୀନ ମତ୍ସ୍ୟଶମ୍ବୁକାଦି ଜୀବ ଓ ବୃକ୍ଷଲତାଦି ଉଦ୍ଭବ । ତୃତୀୟେ ସରୀସୃପ ଓ ଚତୁର୍ଥେ ସ୍ଥୂଳଚର୍ମା ସ୍ତନ୍ୟପାୟୀ ଜୀବସମୂହ ଏବଂ ମାନବଜାତି ସମୁତ୍ପନ୍ନ ।

ଜ୍ୟୋତିଷ ମଧ୍ୟ ଏହା ସମର୍ଥନ କରେ ଯେ, ପ୍ରଦୀପ୍ତ ନୀହାରିକାରାଶିର ଅବସ୍ଥାନ୍ତର ଘଟଣାରୁ ହିଁ ଏ ଜଗତର ଅଭିବ୍ୟକ୍ତି । ଶ୍ରେଷ୍ଠ ଦାର୍ଶନିକ କ୍ୟାଣ୍ଟ୍ ମଧ୍ୟ କହନ୍ତି, ପ୍ରଥମେ ଶୃଙ୍ଖଳାରହିତ ବାଷ୍ପମୟ ପଦାର୍ଥରାଶି ମାଧ୍ୟାକର୍ଷଣ ପ୍ରଭୃତି ନୈସର୍ଗିକ ନିୟମର ବଶବର୍ତ୍ତୀ ହୋଇ ଭ୍ରମି ଭ୍ରମି କ୍ରମଶଃ କଠିନତ୍ୱ ପ୍ରାପ୍ତହୋଇ ପୃଥିବୀ ଆକାରେ ପରିଣତ ହୋଇଅଛି । ଏମାନେ ପୁରାତନ ପୃଥିବୀର ବିଲୋପ ଓ ନୂତନ ପୃଥିବୀର ସୃଷ୍ଟି ସମ୍ବନ୍ଧେ ବିଶେଷ ଆସ୍ଥାବାନ୍ । ଭୂତତ୍ତ୍ୱ ଆଲୋଚନାର ଫଳେ ଜୀବ ଜଗତର ସୃଷ୍ଟି ସମ୍ବନ୍ଧେ ଦୁଇଟି ଭିନ୍ନ ମତ ସୃଷ୍ଟ ହେଲା ।

ପ୍ରଥମ ସୃଷ୍ଟିବାଦ, ଦ୍ୱିତୀୟ ବିବର୍ତ୍ତନବାଦ । ବିବର୍ତ୍ତନବାଦ ଅନୁଯାୟୀ ସିଦ୍ଧାନ୍ତ କରାଯାଇଅଛି ଯେ, ପିତାପୁତ୍ରର ସମ୍ବନ୍ଧ ପରି ପ୍ରଥମ ଯୁଗର ପ୍ରାଣୀଙ୍କର ସୃଷ୍ଟିହୋଇ ପରିଶେଶେ ମନୁଷ୍ୟର ଉତ୍ପତ୍ତି ହୋଇଅଛି । ଏହି ମତର ପ୍ରବର୍ତ୍ତକ ଡାରଉଇନ୍ । ଏହାଙ୍କ ସିଦ୍ଧାନ୍ତରେ ବାନରଠାରୁ କ୍ରମଶଃ ନରର ସମ୍ଭୁଭବ । କିନ୍ତୁ ସୃଷ୍ଟିବାଦ ସମର୍ଥକଗଣ କହନ୍ତି, ବିଭିନ୍ନ ଯୁଗର ପ୍ରାଣୀଙ୍କ ମଧ୍ୟରେ ଏପରି କୌଣସି ରକ୍ତମାଂସର ସମ୍ବନ୍ଧ ନାହିଁ । ତଥାପି ମନୁଷ୍ୟର ପ୍ରକୃତି ପର୍ଯ୍ୟବେକ୍ଷଣ କଲେ ଜଣାଯାଏ ଯେ, ତାହାଠାରେ ପଶୁପକ୍ଷୀ ପ୍ରକୃତିର ଅର୍ଥାତ୍ ମୟୂରର ମତ୍ତତା, ବାନରର ଚପଳତା, ବ୍ୟାଘ୍ର ପ୍ରଭୃତି ଶ୍ୱାପଦର କ୍ରୂରତାର ସତ୍ତା ଦେଖାଯାଉଅଛି । ଆମ୍ଭେ ପୂର୍ବରୁ କହିଯାଇଅଛୁ ଯେ, ସୃଷ୍ଟିର ଆଦିମ ଅବସ୍ଥା ପ୍ରଭୃତି ସମ୍ବନ୍ଧେ ନାନାଶାସ୍ତ୍ରର ନାନା ବ୍ୟାଖ୍ୟା, ନାନା ମନୀଷୀଙ୍କର ନାନା ମତ । ଅପର କେତେକ ବୈଜ୍ଞାନିକ ବେଦ ଓ ପୁରାଣ ବାକ୍ୟ ବିଜ୍ଞାନ ସଙ୍ଗେ ସମନ୍ୱୟ କରି କହନ୍ତି ଯେ, ସୃଷ୍ଟିର ଆଦିମ ଅବସ୍ଥାରେ ପରିଦୃଶ୍ୟମାନ ପଦାର୍ଥ କିଛି ନଥିଲା । ଏହି ଦିଗନ୍ତବ୍ୟାପୀ ଜଗତ, ଏହି ସୂର୍ଯ୍ୟ ଚନ୍ଦ୍ରାଦି ଗ୍ରହ ଓ ନକ୍ଷତ୍ରରାଜି ଏବଂ ପ୍ରତ୍ୟକ୍ଷ ଅନୁମାନ ଓ ଶବ୍ଦର ବିଷୟ ପ୍ରଭୃତି କିଛି ନଥିଲା । ଥିଲା କେବଳ ଅନନ୍ତ ଅନ୍ଧକାର, ଥିଲା କେବଳ ନିତ୍ୟ ପରମାଣୁ । ତାହା ମଧ୍ୟ ସମସ୍ତ କ୍ରିୟା ଓ ଶକ୍ତିହୀନ, ସୁତରାଂ ଯେପରି ନିଦ୍ରାରେ ଅଚେତନ ।

ଚଳନଶକ୍ତି ଥିଲେ ସୁଦ୍ଧା ଅନ୍ଧ ମାର୍ଗରେ ଯାଇ ନପାରିଲା ପରି, ଚକ୍ଷୁସତ୍ତ୍ୱେ ପଙ୍ଗୁ ଦୂରସ୍ଥ ଦ୍ରବ୍ୟ ଦେଖି ନପାରିଲା ପରି ଶକ୍ତିଶୂନ୍ୟ ହୋଇଥିଲା । ଏହି ନିଷ୍କ୍ରିୟ ଅବସ୍ଥା ହିଁ ପ୍ରଳୟାବସ୍ଥା ।

## ସୃଷ୍ଟିର ପ୍ରଥମ ଅବସ୍ଥା

ନିଷ୍କ୍ରିୟ ଅବସ୍ଥା ପରେ ସୃଷ୍ଟିର କ୍ରିୟା ଉଦ୍ଭବ । ସେହି ସମୟରେ ଏକ ଅଦ୍ଭୁତ କ୍ରିୟାର ଆରମ୍ଭ । ଲୁକ୍କାୟିତ ଶକ୍ତି ଅଚଳ ପରମାଣୁର ସଂଯୋଗେ ନିଷ୍କ୍ରିୟ ପରମାଣୁ କ୍ରିୟାଶୀଳ ହେଲା, ଅଥଚ ଅଚଳ ପରମାଣୁ ଶକ୍ତିଯୋଗେ ସଚଳ ଓ ପ୍ରଜ୍ୱଳିତ ହୋଇ ଭୀଷଣ ବେଗେ ଘୂର୍ଣ୍ଣିତ ହେଲା; ଅବିଦ୍ୟମାନରୁ ବିଦ୍ୟମାନ ବସ୍ତୁର ସୃଷ୍ଟିହେଲା । ଏହାହିଁ ବିଷ୍ଣୁପୁରାଣୋକ୍ତ ପ୍ରଥମ ସୃଷ୍ଟି ''ମହତତ୍ତ୍ୱ'' (ଅଣୁର ପ୍ରଥମସ୍ପନ୍ଦନ, ଆଦିବୃତ୍ତ) ।

## ସୃଷ୍ଟିର ଦ୍ୱିତୀୟ ଅବସ୍ଥା

କ୍ରମେ ସ୍ୱସ୍ୱ ଆକର୍ଷଣଶକ୍ତିଦ୍ୱାରା କ୍ରମାନ୍ୱୟରେ ଅନନ୍ତ ପରମାଣୁ ଏକତ୍ର ସଂଯୁକ୍ତ ହୋଇ ଘୂରିବାକୁ ଲାଗିଲେ । ବାଷ୍ପରେ ଚତୁର୍ଦ୍ଦିଗ ପୂର୍ଣ୍ଣ ହୋଇଗଲା । ବୃହସ୍ପତି ଋଷିଙ୍କ ମତେ ଏହି ବାଷ୍ପସମୁଦ୍ର ହିଁ ''ଆକାଶ'' । ସମୁଦ୍ର ନାମକ ପ୍ରଥମ ଭୂତ (Element) ଆକାଶଠାରୁ ଦ୍ୱିତୀୟ ଭୂତ ''ବାୟୁ'' ଉତ୍ପନ୍ନ ହେଲା । ଆକାଶଜାତ ବାୟୁଠାରୁ ତୃତୀୟ ଭୂତ ''ତେଜ'', ତେଜଠାରୁ ଚତୁର୍ଥ ଭୂତ ''ଜଳ'', ଜଳଠାରୁ ପଞ୍ଚମ ଭୂତ ''କ୍ଷିତି'' (Solid matter) ଜନ୍ମିଲା । ଏହାହିଁ ବିଷ୍ଣୁପୁରାଣୋକ୍ତ ଦ୍ୱିତୀୟ ସୃଷ୍ଟି ''ଭୂତସର୍ଗ'' ।

## ସୃଷ୍ଟିର ତୃତୀୟ ଅବସ୍ଥା

ବୃହସ୍ପତି ଋଷି କହିଅଛନ୍ତି, କ୍ଷିତିଠାରୁ ତେଜସ୍ୱୀ, ଅବିନାଶୀ, ବନ୍ଧନଦ୍ୱାରା ରକ୍ଷିତ ଜ୍ୟୋତିଷଗଣ ଜନ୍ମିଲେ । କେତେଗୁଡ଼ିଏ ଜ୍ୱଳନ୍ତ ପରମାଣୁ ପରସ୍ପରଯୁକ୍ତ ହୋଇ ଅସଂଖ୍ୟ କ୍ଷୁଦ୍ର କ୍ଷୁଦ୍ର ନୀହାରିକାରେ ପରିଣତ ହୋଇ ଘୂରିବାକୁ ଲାଗିଲେ । କ୍ରମେ ଏହି ସକଳ ନୀହାରିକା ପିଣ୍ଡ ଏକତ୍ର ମିଳିତ ହୋଇ ବୃହତ୍ତରଳ ଗୋଲକରେ ପରିଣତ ହେଲା ଏବଂ ଅନ୍ତରୀକ୍ଷରେ ମହାବେଗେ ଘୂର୍ଣ୍ଣନ କଲା । ଏହି ତରଳଗୋଲକ ନୃତ୍ୟ କରି କରି ଅର୍ଥାତ୍ ଘୂରି ଘୂରି ଜ୍ୟୋତିର୍ମୟ ରେଣୁ ସକଳ ନିକ୍ଷେପ କଲା । ଏହି ଜ୍ୱଳନ୍ତ ତରଳ ଗୋଲକ ହିଁ ଉକ୍ତ ଋଷିଙ୍କ ମତେ ସୌରଜଗତ ପ୍ରସବ କଲା । ଏହିପରି ଅସଂଖ୍ୟ ଜ୍ୟୋତିର୍ମୟ ଗୋଲକ ସୃଷ୍ଟ ହୋଇଥିଲା । ପ୍ରତ୍ୟେକ ହିଁ ଗୋଟିଏ ଗୋଟିଏ ସୌରଜଗତ ପ୍ରସବ କରିଅଛନ୍ତି । ଏହାହିଁ ବିଷ୍ଣୁପୁରାଣୋକ୍ତ ତୃତୀୟ ସୃଷ୍ଟି-ବୈକାରିକ ବା ଐନ୍ଦ୍ରିୟକ ଅର୍ଥାତ୍ ଇନ୍ଦ୍ରିୟଗ୍ରାହ୍ୟ ସୃଷ୍ଟି ।

ୟୁରୋପୀୟ ପଣ୍ଡିତ ଲାପ୍ଲାସ୍ (Laplace) କହନ୍ତି ଯେ, କ୍ରମେ ଏହି ବୃହତ୍ ଉତ୍ତପ୍ତ ଗୋଲକ ଶୀତଳ ହୋଇ କେନ୍ଦ୍ରାଭିମୁଖେ ସଙ୍କୋଚିତ ହେଲା । ସଂକୋଚନ ଅନୁପାତରେ ବେଗ ମଧ୍ୟ ବୃଦ୍ଧିପାଇ କ୍ରମେ ତାହାର କେନ୍ଦ୍ରାତିଗ ଶକ୍ତି ବୃଦ୍ଧି କଲା । ଘୂର୍ଣ୍ଣନ ବେଗରେ ତାହାର ନିରକ୍ଷ ବୃତ୍ତ ସନ୍ନିହିତ ସ୍ଥାନର କେତେକ ପରମାଣୁ ସମଷ୍ଟି କେନ୍ଦ୍ରର ଆକର୍ଷଣ ଅତିକ୍ରମ କରି ମୂଳଗୋଲକଠାରୁ କ୍ରମରେ ବାହାରି ଅନନ୍ତ ବାଷ୍ପରେ ସମୁଦ୍ର ମଧ୍ୟରେ ପଡ଼ିବାକୁ ଲାଗିଲା । ଏହି ନିକ୍ଷିପ୍ତ ଜ୍ୟୋତିଷ୍କ ସକଳ ଅଙ୍ଗୁରୀୟ ଆକାରରେ ବୃହତ୍ ମୂଳ ଗୋଲକର ଚାରିଦିଗେ ଘୂରିବାକୁ ଲାଗିଲେ ।

ବୃହସ୍ପତି ମୁନିଙ୍କ ମତେ, କ୍ରମେ ଉକ୍ତ ସମସ୍ତ ଅଙ୍ଗୁରୀୟକର ବେଗ ବୃଦ୍ଧି ହୁଅନ୍ତେ ବାୟୁଦ୍ୱାରା ତାହାର ନିରକ୍ଷ ଦେଶସ୍ଥିତ ହୋଇ ପରିତ୍ୟକ୍ତ ଅଙ୍ଗରୀୟକଗୁଡ଼ିକ ସେହିକ୍ଷଣି ତେଜୋମୟ ଗୋଲକରେ ପରିଣତ ହେଲା ।

ହିରଣ୍ୟସ୍ତୂପମହର୍ଷି କହିଅଛନ୍ତି- ଏହି ଗୋଲକଗୁଡ଼ିକ ମୂଳ ଗୋଲକର ଚତୁର୍ଦ୍ଦିଗରେ ଧୂରି ଅବଲମ୍ବନେ ରଥଚକ୍ରପରି ଘୂର୍ଣ୍ଣନ କଲେ ଏଥିରୁ ଗୋଟିଏ ଆମ୍ଭର ଅଧ୍ୟୁଷିତ ପୃଥିବୀ ।

ଏହି ସମସ୍ତ ଗୋଲକରୁ ପୁଣି ଅଙ୍ଗୁରୀୟକ ବିଚ୍ଛିନ୍ନ ହୋଇ ଘୂରି ଘୂରି କ୍ରମେ ଅନ୍ୟ ଗୋଲକରେ ପରିଣତ ହେଲା ଏବଂ ତାହାହିଁ ଚାରିଦିଗେ ଘୂରିବାକୁ ଲାଗିଲା । ଏହିରୂପେ ଅସଂଖ୍ୟ ତେଜୋମୟ ପିଣ୍ଡ ସୃଷ୍ଟ ହୋଇ ଏକ ନିୟମେ ମୂଳ ଗୋଲକର ଚତୁର୍ଦ୍ଦିଗରେ ଘୂରିବାକୁ ଆରମ୍ଭ କଲେ ।

ବୃହତ୍ ମୂଳଗୋଲକର ଆଉ ସେଦିନ ନାହିଁ ସେ ସୂତିକା ଗ୍ରସ୍ତ ପ୍ରସୂତି ପରି ଶୀର୍ଣ୍ଣକାୟ ହୋଇ ସ୍ୱୀୟ ତେଜରେ ଦିଗନ୍ତ ଉଦ୍ଭାସିତ କରିଅଛି ଏବଂ ଏକାନ୍ନଭୁକ୍ତ ପରିବାର ପରି ପୁତ୍ରପୌତ୍ରାଦିରୂପ ସକଳ ପିଣ୍ଡକୁ ଏକ ଶୃଙ୍ଖଳାବଦ୍ଧ କରି ରଖିଅଛି ।

## ଗ୍ରହ

ଏହି ପର୍ଯ୍ୟନ୍ତ ସୌରଜଗତ ମଧ୍ୟେ ୯ ଗୋଟି ବୃହତ୍‌ପିଣ୍ଡ ଦେଖା ଦେଇଥିଲା । ଯଥା - ସୂର୍ଯ୍ୟ, ବୁଧ, ଶୁକ୍ର, ପୃଥିବୀ, ମଙ୍ଗଳ, ବୃହସ୍ପତି, ଶନି, ୟୁରାନ୍‌ସ ଓ ନେପ୍‌ଚ୍ୟୁନ । ଏମାନଙ୍କ ମଧ୍ୟରୁ ସୂର୍ଯ୍ୟ ମଧ୍ୟରେ ରହି ଅନ୍ୟ ଆଠଗୋଟି ପିଣ୍ଡ ଓ ଉପପିଣ୍ଡଗୁଡ଼ିକୁ ଆପଣାର ଚତୁର୍ଦ୍ଦିଗେ ଏକ ନିୟମରେ ଘୂରାଉଅଛନ୍ତି ।

ସୂର୍ଯ୍ୟଙ୍କ ନିକଟସ୍ଥ ପିଣ୍ଡର ନାମ ବୁଧ । ତତ୍ପରେ କ୍ରମେ ଶୁକ୍ର, ପୃଥିବୀ, ମଙ୍ଗଳ, ବୃହସ୍ପତି, ଶନି, ୟୁରାନ୍‌ସ, ନେପଚୁନ୍‌ଙ୍କ ସ୍ଥିତି । ବୃହସ୍ପତିମୁନିଙ୍କ ମତେ ଆର୍ଯ୍ୟଗଣ ଚନ୍ଦ୍ରଙ୍କୁ ଗ୍ରହଶ୍ରେଣୀରେ ଭୁକ୍ତ କରିଥିଲେ । କିନ୍ତୁ ପରେ ଅତ୍ରିଋଷି ଜାଣିପାରିଥିଲେ ଯେ, ଚନ୍ଦ୍ର ମୂଳ ଗୋଲକଠାରୁ ନ ଜନ୍ମି ପୃଥିବୀଠାରୁ ଜନ୍ମିଛନ୍ତି । ଏହି ସମସ୍ତ ବୈକାରିକ ସୃଷ୍ଟିର ଅନ୍ତର୍ଗତ ।

ଗ୍ରହର ଅର୍ଥ ଗ୍ରହଣ କରିବା ବା ଗୃହୀତ ହେବା । ଯେଉଁମାନେ ସାକ୍ଷାତ୍ ସମ୍ବନ୍ଧରେ ସୂର୍ଯ୍ୟଦ୍ୱାରା ଗୃହୀତ ବା ଧୃତ ଅର୍ଥାତ୍ ଆକର୍ଷିତ ସେହିମାନେ ହିଁ ଗ୍ରହ ।

ବୃହସ୍ପତିଋଷି ସୂର୍ଯ୍ୟାଦି ଗ୍ରହ, ଚନ୍ଦ୍ର ଓ ନକ୍ଷତ୍ରଗଣର ଜନ୍ମବୃତ୍ତାନ୍ତ ବର୍ଣ୍ଣନା କରିଅଛନ୍ତି । ଅଥର୍ବ ଋଷି କାର୍ଯ୍ୟଦ୍ୱାରା ଗ୍ରହ ନିର୍ଣ୍ଣୟ କରିଅଛନ୍ତି, ଏବଂ ଭୃଗୁବଂଶୀୟ ଋଷି ଦକ୍ଷେ ଅର୍ଥାତ୍ ନକ୍ଷତ୍ର ଚକ୍ରେ ସେମାନଙ୍କର ଓ ପୃଥିବୀର ଗତି ଅବଧାରଣ କରିଅଛନ୍ତି ।

## ଚନ୍ଦ୍ର

ପାଶ୍ଚାତ୍ୟ ପଣ୍ଡିତଗଣଙ୍କ ମତେ ମଙ୍ଗଳ ପ୍ରଭୃତି ଗ୍ରହଠାରୁ ଅଙ୍ଗୁରୀୟକ ଆକାରରେ ଖସିଯାଇ ଯେଉଁ ପିଣ୍ଡ ତାହାର ଚାରିଦିଗରେ ଘୂରେ ତାହାକୁ ସେହି ସେହି ପିଣ୍ଡର ଚନ୍ଦ୍ର କହନ୍ତି । ଗ୍ରହଠାରୁ ଜନ୍ମି ଗ୍ରହର ଚାରିଦିଗରେ ଭ୍ରମୁଛନ୍ତି ବୋଲି ଚନ୍ଦ୍ରଙ୍କୁ ଉପଗ୍ରହ କହନ୍ତି । ପୃଥିବୀଠାରୁ ମଧ୍ୟ ଏହିପରି ଗୋଟିଏ ଚନ୍ଦ୍ର ଜନ୍ମଗ୍ରହଣ କରିଛନ୍ତି ।

ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା ଦେଖାଯାଉଅଛି କି ମଙ୍ଗଳର ଚନ୍ଦ୍ର ୨ ଗୋଟି, ବୃହସ୍ପତିର ୫ଗୋଟି, ଶନିର ୮ ଗୋଟି, ୟୁରାନ୍‌ସର ୪ଗୋଟି ଓ ନେପ୍‌ଚ୍ୟୁନ୍‌ର ଗୋଟିଏ ଅଛି; ବୁଧ ଓ ଶୁକ୍ରର ଚନ୍ଦ୍ର ନାହିଁ ।

ଅତ୍ରି ଋଷିଙ୍କ ମତେ ଚନ୍ଦ୍ର ପୃଥିବୀର ପୁତ୍ର । ପରବର୍ତ୍ତୀ ଋଷିଗଣ ପ୍ରଥମେ ବେଦର ଅର୍ଥ ବୁଝି ନପାରି ଚନ୍ଦ୍ରର ଉତ୍ପତ୍ତି ବିବିଧ ପ୍ରକାରେ କଳ୍ପନା କରିଅଛନ୍ତି । ସମୁଦ୍ର ମନ୍ଥନେ, ଅତ୍ରିଙ୍କ ଔରସରୁ, ଅତ୍ରିର ନେତ୍ରରୁ ଇତ୍ୟାଦି କଳ୍ପନା କରିଅଛନ୍ତି ପୁଣି ଚନ୍ଦ୍ରଙ୍କୁ ଗ୍ରହ ମଧ୍ୟରେ ପରିଗଣିତ କରିଅଛନ୍ତି । ପୌରାଣିକ ଯୁଗରେ ହିଁ ଏହିପରି ଭ୍ରମ ଓ କଳ୍ପନା ଦେଖାଯାଏ ।

ଚନ୍ଦ୍ରର ଆଲୋକ ନାହିଁ, ସୂର୍ଯ୍ୟର ଆଲୋକ ପ୍ରତିଫଳିତ ହେଲେ ହିଁ ଚନ୍ଦ୍ରରେ କିରଣ ପ୍ରକାଶ ପାଏ । ଆର୍ଯ୍ୟଗଣ ଏହି ତତ୍ତ୍ୱ ଅବଗତ ହୋଇ ଚନ୍ଦ୍ର ଓ ପୃଥିବୀକୁ ସ୍ୱର୍ଭାନୁ ନାମ ଦେଇଛନ୍ତି । "ସ୍ୱଃ ସ୍ୱର୍ଗୀୟ, ଭା ଦୀପ୍ତ, + ନୁ (ନୁଦଧାତୁ) ପ୍ରେରଣ କରିବା ଅର୍ଥାତ୍ ପ୍ରେରିତ ସ୍ୱର୍ଗୀୟ ଦୀପ୍ତି ଯେ

ପାଏ । ଏହି ଅର୍ଥରେ ପୃଥିବୀ ଓ ଚନ୍ଦ୍ର ଉଭୟେ ସ୍ୱର୍ଭାନୁ । ଆର୍ଯ୍ୟମତେ ଯେପରି ଦର୍ପଣରେ ମୁଖର ପ୍ରତିବିମ୍ବ ଦେଖାଯାଏ, ସେହିପରି ଚନ୍ଦ୍ରରେ ପୃଥିବୀର ପ୍ରତିବିମ୍ବ ଦେଖାଯାଏ । ଏହି ପ୍ରତିବିମ୍ବ ହିଁ ଚନ୍ଦ୍ରର କଳଙ୍କ ।

ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟେ ୟୁରୋପୀୟ ପଣ୍ଡିତଗଣ ଚନ୍ଦ୍ରମଣ୍ଡଳରେ ପ୍ରକାଣ୍ଡ ପ୍ରକାଣ୍ଡ ପର୍ବତ ଓ ଗଭୀର ଗହ୍ୱର ଥିବାର କହନ୍ତି । ସେ ସକଳ ଭାଗ ଚନ୍ଦ୍ରର କଳଙ୍କ ରୂପେ ପରିଚିତ । ଏହାର ଚତୁର୍ଦ୍ଦିଗ ପର୍ବତ ବେଷ୍ଟିତ ନିମ୍ନପ୍ରାନ୍ତର ମାତ୍ର । ଚନ୍ଦ୍ରର ଯେଉଁ ଅଂଶ ଅପେକ୍ଷାକୃତ ଉଜ୍ଜ୍ୱଳତର ବୋଲି ବୋଧହୁଏ, ତାହା ଉଚ୍ଚ ପର୍ବତ ଏବଂ ମଧୁଚକ୍ର ପରି ଛିଦ୍ରବିଶିଷ୍ଟ ଶୈଳ ସମାଚ୍ଛନ୍ନ ଭୂମି । ଯନ୍ତ୍ରଦ୍ୱାରା ଚନ୍ଦ୍ରଠାରେ ମେଘର ଅସ୍ତିତ୍ୱ ଦେଖାଯାଏ ।

ପୁରାଣମତେ ସୃଷ୍ଟି ୯ ଭାଗେ ବିଭକ୍ତ । ଯଥା :- ମହତ୍ତତ୍ତ୍ୱ, ଭୂତସର୍ବ, ବୈଅକାରିକ ବା ଐନ୍ଦ୍ରିୟକ, ମୁଖ୍ୟସ୍ଥାବର ବାନଗ, ତିର୍ଯ୍ୟକଶ୍ରୋତା, ଉର୍ଦ୍ଧ୍ୱଶ୍ରୋତା, ଅର୍ବାକ୍‌ଶ୍ରୋତା, ଅନୁଗ୍ରହ ଓ କୌମାର । ଏଥିରୁକେତେକ ବିସ୍ତୃତ ଭାବେ ଉପରେ କୁହାଯାଇଅଛି । ଶ୍ରୁତି, ସ୍ମୃତି ଓ ପୁରାଣମାନଙ୍କରୁ ଏ ସକଳ ଉଦ୍ଧୃତ କରାଯାଇଅଛି । ବିଶେଷତଃ ଋଗ୍‌ବେଦରେ ଅନେକ ପ୍ରମାଣ ମିଳେ । ଆବଶ୍ୟକ ହେଲେ ନିମ୍ନୋକ୍ତ ଋକଗୁଡ଼ିକ (୧୦,୧୨୯,୧) "୧୦,୧୨୯,୩" । "୧,୧୬୮,୪" । "୧୦,୭୨,୩" । "୧୦,୭୨,୪" । "୧୦,୭୨,୫" । "୧୦,୭୨,୬" । "୧୦,୭୨,୨" । "୧,୩୫,୬" । "୧,୧୬୦,୪" । "୪,୫୬,୩" । "୧୦,୭୨,୭" । "୮" । "୯" । "୫" । "୮୦,୭" । "୧,୭୫,୨,୩" । "୧୦,୭୨,ସୂକ୍ତ", "୧୦,୯୨,୧୦", "୨,୨୫,୨," । "୧, ୨୮,୧୦" । "୧,୨୮,୨୫" । ଏବଂ ବିଷ୍ଣୁପୁରାଣ, ୧, ୨ ଅଃର, ମାର୍କଣ୍ଡେୟ ପୁରାଣ, ୭୬ ଅଃ, ମହାଭାରତ ଶାନ୍ତି ୧୮୩ ଅଃ, ମତ୍ସ୍ୟ ୧୨୬, ୨୯ ଶ୍ଳୋକ, ପ୍ରକୃତିବାଦ ଅଭିଧାନ, ଜୈମିନୀ ଓ କଣାଦ ଦର୍ଶନ, ବୈଶେଷିକ ଦର୍ଶନ ପ୍ରଭୃତି ଦ୍ରଷ୍ଟବ୍ୟ ।

ଆର୍ଯ୍ୟମହର୍ଷିଗଣ ଏହି ସୃଷ୍ଟିତତ୍ତ୍ୱ ସମ୍ବନ୍ଧେ ନାନାପ୍ରକାର ଆଲୋଚନା କରି ଯାଇଅଛନ୍ତି । ପୃଥିବୀର କେନ୍ଦ୍ରାତିଗ ଓ କେନ୍ଦ୍ରାନୁଗ ଗତିର ସଙ୍ଗେ ତାହାର ଅବସ୍ଥା ବହୁ ଗବେଷଣା ପୂର୍ବକ ସ୍ଥିରକରି ରାଶି ଓ ନକ୍ଷତ୍ରର ନାମକରଣ କରିଅଛନ୍ତି । ସୃଷ୍ଟିର ଆଦିମ ଅବସ୍ଥାରେ ପୃଥିବୀର ଅବସ୍ଥା କେଉଁ ରାଶି ନକ୍ଷତ୍ରରେ କିପରି ଥିଲା, କିପରି ସକଳ ଜୀବର ସୃଷ୍ଟି ହେଲା, କେଉଁ ପ୍ରଣାଳୀରେ ଜଗତ ବର୍ତ୍ତମାନ ଅବସ୍ଥାରେ ଉପନୀତ ହୋଇଅଛି ଏ ସକଳର ତତ୍ତ୍ୱ ଆର୍ଯ୍ୟଶାସ୍ତ୍ରରେ ପ୍ରାଞ୍ଜଳ ଭାବେ ବିବୃତ ହୋଇ ନଥିଲେ ସୁଦ୍ଧା, ନାନାବିଧ ରୂପକ ଛଳେ ଅତିକୌଶଳରେ ପୁରାଣାଦି ଧର୍ମଗ୍ରନ୍ଥମାନଙ୍କରେ ଏବଂ ଜ୍ୟୋତିଷ ଶାସ୍ତ୍ରରେ ତହିଁର ନିଗୂଢ଼ ତତ୍ତ୍ୱ ନିହିତ । ରାଶି ଓ ନକ୍ଷତ୍ରମାନଙ୍କର ତତ୍ତ୍ୱାର୍ଥ ଆଲୋଚନା କଲେ ଭୂତତ୍ତ୍ୱର ଅନେକ ସାରମର୍ମ ଜଣାଯାଏ ।

ପୃଥିବୀ ବିଷ୍ଣୁପୁରାଣୋକ୍ତ ବୈକାରିକ ବା ଇନ୍ଦ୍ରିୟଗ୍ରାହ୍ୟ ସୃଷ୍ଟିର ଅନ୍ତର୍ଗତ । ଏହିଠାରୁ ହିଁ ଭୂତତ୍ତ୍ୱର ଆରମ୍ଭ ।

## ମେଷରାଶି ବା ମେଷ ଅନ୍ତର୍ଯୁଗ

**(୧) ଅଶ୍ୱିନୀ ଗର୍ଭାନ୍ତର୍ଯୁଗ :** ଅଶ୍ୱ ଅର୍ଥ ତେଜ, ଋଗ୍‌ବେଦରେ ସୂର୍ଯ୍ୟଙ୍କ ତେଜକୁ ଅଶ୍ୱ ବୋଲି କହନ୍ତି । ପୃଥିବୀ ସୂର୍ଯ୍ୟଠାରୁ ଖସି ଆସି ଏହି ନକ୍ଷତ୍ରରେ ରହି ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ଭ୍ରମଣ କଲା. ପୃଥିବୀ ଏହି ସମୟରେ ତେଜୋମୟୀ । ୨୦୦୦ ସେଣ୍ଟିଗ୍ରେଡ୍ ଉତପ୍ତ ତରଳ ପଦାର୍ଥ ଥିବାରୁ ଏହି ନକ୍ଷତ୍ରର ନାମ ଅଶ୍ୱିନୀ ହୋଇଛି । *

ଶୀତଳ ଆକାଶର ସ୍ପର୍ଶରୁ କ୍ରମେ ପୃଥିବୀର ଉତ୍ତାପ ହ୍ରାସ ହେଲା । ତରଳ ପଦାର୍ଥ କ୍ରମେ ଘନ ହୋଇଗଲା । ଏହି ସମୟେ ଚନ୍ଦ୍ର ଖସିଯାଇ ପୃଥିବୀର ଚତୁର୍ଦ୍ଦିଗେ ଭ୍ରମିଲା । ପୃଥିବୀ କେନ୍ଦ୍ରାଦିଗ ଗତିଦ୍ୱାରା ସୂର୍ଯ୍ୟଠାରୁ ଦୂରେଇ ଯିବାକୁ ଆରମ୍ଭ କଲା । ୪୨୩୨୬୮ ସୃଷ୍ଟ୍ୟାବ୍ଦ ବା ଖ୍ରୀଷ୍ଟପୂର୍ବ ୫୪୫୨୫ଠାରୁ ୫୦୨୯୩,୫,୨୬, ଅବ୍ଦ ପର୍ଯ୍ୟନ୍ତ ପୃଥିବୀ ଏହି ନକ୍ଷତ୍ରେ ଭ୍ରମି ଦ୍ୱିତୀୟ ନକ୍ଷତ୍ରରେ ଉପସ୍ଥିତ ହେଲା । ଏହି ସମୟରେ ପୃଥିବୀ କେବଳ ଅନ୍ଧକାରାବୃତ ଥିଲା ।

**(୨) ଭରଣୀ ଗର୍ଭାନ୍ତର୍ଯୁଗ :** ଭୃ ଧାତୁରୁ ଅର୍ଥ ପୋଷଣ କରିବା । ଏହି ନକ୍ଷତ୍ରେ ଭ୍ରମଣକାଳେ ଧରା ପୋଷିତ ହୋଇଅଛି । ଅତଏବ ଏହାର ନାମ ଭରଣୀ । ଏ ସମୟେ ଚନ୍ଦ୍ରର ଆକର୍ଷଣରେ ଧରାରେ ଜୁଆର ଭଙ୍ଗା ଆରମ୍ଭ ହେଲା । ଧରା ଅଦ୍ୟାପି ତରଳ । ଏହି ତରଳ ପୃଥିବୀକୁ ଜୁଆର ଭଙ୍ଗା ଆପ୍ଲୁତ କରିବା ଯୋଗୁଁ ଶୀତଳ ହୋଇଆସିଲା । ଚନ୍ଦ୍ର ପୋଷଣ କଲେ ପୃଥିବୀ କେନ୍ଦ୍ରାତିଗ ଗତିଯୋଗୁଁ ସୂର୍ଯ୍ୟଙ୍କଠାରୁ ଆହରି ଦୂରକୁ ଗଲା । ସୃଷ୍ଟ୍ୟାବ୍ଦ ୮୪୬୫୦୮ ଦିନ ବା ଖ୍ରୀଷ୍ଟପୂର୍ବ ୪୬୦୬୦,୧୧,୨୨ ଦିନ ପର୍ଯ୍ୟନ୍ତ ପୃଥିବୀ ଏହି ନକ୍ଷତ୍ରରେ ଭ୍ରମଣ କରି ତୃତୀୟ ନକ୍ଷତ୍ରରେ ଉପସ୍ଥିତ ହେଲା ।

**(୩) କୃତ୍ତିକା ଗର୍ଭାନ୍ତର୍ଯୁଗ :** କୃତ୍ତି ଅର୍ଥ ତ୍ୱକ୍ ଏଥିରୁ କୃତ୍ତିକା ନାମ ଖ୍ୟାତ । ଏହି ନକ୍ଷତ୍ରରେ ଭ୍ରମଣ କାଳେ ପୃଥିବୀର ସ୍ଥାନେ ସ୍ଥାନେ କ୍ରମେ ଅର୍ଦ୍ଧ ତରଳ ଅବସ୍ଥାପନ୍ନ ପଦାର୍ଥ ରାଶି ଜମାଟ ହୋଇ ଭାସିଲା । ଏ ଅବସ୍ଥାରେ ୧୦୫୮,୧,୨୬ ଦିନ ପରେ ସୃଷ୍ଟ୍ୟାବ୍ଦ ୯୫୨୩,୧,୨୪ ଦିନ ବା ଖ୍ରୀଷ୍ଟପୂର୍ବ ୪୫୦୦୨,୨୦,୬ ପର୍ଯ୍ୟନ୍ତ ଏହି ରାଶିରେ ଭ୍ରମଣ କଲା ।

ମେଷରାଶି ନାମ ହେଲା କାହିଁକି ? ଆଧୁନିକ କେତେକ ପଣ୍ଡିତ କହନ୍ତି ଏହି ରାଶିର ନାମ ଅର୍ଥଶୂନ୍ୟ । ନାନା କାରଣ ଦର୍ଶାଇଲେ ସୁଦ୍ଧା ପ୍ରକୃତାର୍ଥ ଏହି କି ମିଷ୍ ଅର୍ଥ ବିକଶିତ । ପୃଥିବୀ ଗାଢ଼ ବାଷ୍ପାବରଣେ ଆବୃତ ଥିଲା; ଏହି ଆବରଣ ଭେଦକରି ଧରାପୃଷ୍ଠରେ ସୂର୍ଯ୍ୟ କିରଣ ବିକଶିତ ହେଲା । ଏହି ସମୟରେ ସୂର୍ଯ୍ୟ ମେଷପରି ନିରୀହ ଥିଲେ ଅର୍ଥାତ୍ ପ୍ରଖର କିରଣ ନଥିଲା । ଏହି ହେତୁ ଏହା ବ୍ୟାକରଣ ଯୋଗେ ମେଷ ନାମେ ଅଭିହିତ ।

---

* ମହାଭାରତ ଶାନ୍ତିପର୍ବ, ୧୮୩ ଅଃ ମାର୍କଣ୍ଡେୟ ପୁରାଣ ,୮୭ ଅଃ

## ବୃଷରାଶି ବା ବୃଷ ଅନ୍ତର୍ଯୁଗ

ଏହି କୃତ୍ତିକା ଗର୍ଭାନ୍ତ ଯୁଗରେ କ୍ରମେ ତରଳ ପୃଥିବୀର ପୃଷ୍ଠଦେଶ ସର୍ବତ୍ର କଠିନ ପଦାର୍ଥରେ ଆବୃତ ହେଲା । ଏହି ଆବରଣ ଧରାର କୃତ୍ତି ବା ତ୍ୱକ୍ କହିବାକୁ ହେବ । ଏହି ତ୍ୱକ୍ ସ୍ଫଟିକବତ୍ ସ୍ୱଚ୍ଛ ଓ ଉଜ୍ଜ୍ୱଳ । ଖ୍ରୀଷ୍ଟପୂର୍ବ ୪୧୮୨୮,୫,୧୮ ଦିନ ପର୍ଯ୍ୟନ୍ତ ପୃଥିବୀ ଏହି ନକ୍ଷତ୍ରେ ଭ୍ରମି ଚତୁର୍ଥ ନକ୍ଷତ୍ରରେ ଉପସ୍ଥିତ ହେଲା ।

**(୪) ରୋହିଣୀ ଗର୍ଭାନ୍ତର୍ଯୁଗ :-** ରୁହ ଧାତୁର ଅର୍ଥ ଆରୋହଣ । ପୃଥିବୀ ଏହି ରୋହିଣୀ ନକ୍ଷତ୍ରେ ଭ୍ରମଣ କଲାକାଳେ କ୍ରମେ ଭୟାନକ ନୈସର୍ଗିକ ବ୍ୟାପାର ଆରମ୍ଭ ହେଲା । ସ୍ଥାନେ ସ୍ଥାନେ ତରଳ ଦ୍ରବ୍ୟ ଆବରଣ ଭେଦକରି ଉପରକୁ ଉଠିବାକୁ ଲାଗିଲା । ଉତ୍କ୍ଷିପ୍ତ ପଦାର୍ଥ ସ୍ତୂପ ଆକାରରେ ସ୍ଥାନେ ସ୍ଥାନେ ନିର୍ମାଣ କଲା । ଏହି ସ୍ତୂପଗୁଡ଼ିକ କ୍ରମଶଃ କଠିନ ହୋଇ ପର୍ବତ ନାମ ଧାରଣ କଲା । ପୃଥିବୀ ତାଦୃଶ ଦୃଢ଼ ହୋଇ ନଥିବାରୁ ଜୁଆର ଓ ଭଟାର ଦାଉରେ ସ୍ତୂପଗୁଡ଼ିକ ଏଣେତେଣେ ଚଳପ୍ରଚଳ ହୁଏ । ଏହାହିଁ ପୁରାଣରେ ପର୍ବତର ପକ୍ଷ ଥିବା ଲେଖା ହୋଇଅଛି । କ୍ରମେ ପୃଥିବୀର ତରଳ ଅବସ୍ଥା ଦୂରହୋଇ ସୁକଠିନ ହେବାରୁ ପର୍ବତଗୁଡ଼ିକର ନଗ, ଅଚଳ ଆଖ୍ୟା ହେଲା । ପକ୍ଷ କଟାହେବା ପୁରାଣ ଲେଖକଙ୍କ କଳ୍ପନା ମାତ୍ର । ଏ ସମୟେ ଧରାରେ ପର୍ବତ ଆରୋହଣ କରିବାରୁ ଏହି ନକ୍ଷତ୍ରର ନାମ ରୋହିଣୀ । ଖ୍ରୀଷ୍ଟପୂର୍ବ ୩୭୮୯୫,୧୧,୧୮ ପର୍ଯ୍ୟନ୍ତ ଏ ନକ୍ଷତ୍ରେ ଧରା ଭ୍ରମଣ କଲା ।

**(୫) ମୃଗଶିରା ଗର୍ଭାନ୍ତର୍ଯୁଗ :-** ଏ ଯୁଗରେ ପୃଥିବୀ ନିମ୍ନୋନ୍ନତ, ଜଳ ନାହିଁ, ବୃଷ୍ଟି ଜଳ ପଡ଼ିଲେ ମଧ୍ୟ ଧରାବକ୍ଷେ ରହେ ନାହିଁ । ପୃଥିବୀର ପ୍ରଚଣ୍ଡ ଉତ୍ତାପେ ବାଷ୍ପହୋଇ ଊର୍ଦ୍ଧ୍ୱକୁ ଉଠେ । ସମ୍ପ୍ରତି ବୃଷ୍ଟି ପଡ଼ିବା ମାତ୍ରେ ଶୁଷ୍କହୋଇ ବାଷ୍ପାକାରେ ଉପରକୁ ଯାଇ ଶୀତଳ ବାୟୁସ୍ପର୍ଶେ ପୁଣି ବୃଷ୍ଟିରେ ପରିଣତ ହୁଏ । ସମ୍ପ୍ରତି ପୃଥିବୀ ମୃତା ଅଥଚ ସଚଳା । ମୃ ଅର୍ଥ ମରିବା, ଗ ଅର୍ଥ ଗମନ । ଧରାରେ ଜଳ ନାହିଁ, ବୃକ୍ଷ ନାହିଁ, ପ୍ରାଣୀ ନାହିଁ, ସୂର୍ଯ୍ୟଙ୍କୁ ଭ୍ରମଣ କରୁଛି ମାତ୍ର । ଏ ହେତୁ ନକ୍ଷତ୍ରର ନାମ ମୃଗ । ପରେ ମୃଗ ନକ୍ଷତ୍ରର ଶିରୋଭାଗରେ ନକ୍ଷତ୍ର ଚକ୍ରଭୁକ୍ତ ହୋଇଥିବାରୁ ମୃଗଶିରା ନାମ ଖ୍ୟାତ । ଏହି ଜୀବରହିତ ଧରା ଖ୍ରୀଷ୍ଟପୂର୍ବ ୩୫୮୭୯,୮,୧୨ ଦିନ ପର୍ଯ୍ୟନ୍ତ ଭ୍ରମି ମିଥୁନ ରାଶିରେ ମୃଗଶିରାର ତୃତୀୟ ପାଦେ ଉପସ୍ଥିତ ହେଲା ।

**ବୃଷରାଶି** - ବୃଷ ଧାତୁର ଅର୍ଥ ଏଠାରେ ବର୍ଷଣ, ବୃଷ୍ଟି ହେବାରୁ ଏହି ନାମ ଦିଆଗଲା । ଏ ସମୟରେ ପୃଥିବୀ ବାସୋପଯୋଗୀ ହୋଇଅଛି, କିନ୍ତୁ ବାସ କରିବ କିଏ ? ପୃଥିବୀ ଅତ୍ୟନ୍ତ ଉତ୍ତପ୍ତ, ଜଳ ପର୍ଯ୍ୟନ୍ତ ରହୁନାହିଁ, କିନ୍ତୁ ପୂର୍ବପରି ସୂର୍ଯ୍ୟ ନିରୀହ ନୁହନ୍ତି । କ୍ରମେ କିରଣ ଜାଳ ପଡ଼ୁଅଛି । ବୃଷପରି ସୂର୍ଯ୍ୟଙ୍କର ତେଜ ଓ ବଳ ଦେଖାଯାଉଅଛି । ଏହି କାଳୀନ ମୃତ୍ତିକା ମେରୁ ପ୍ରଦେଶରେ ଏବଂ ଇଉରୋପ ଓ ଏସିଆରେ ଦେଖାଯାଏ । ଆଲପସ୍, ହିମାଚଳ, ସୁମେରୁ ପ୍ରଭୃତି ନାନାସ୍ଥାନରେ ମଧ୍ୟ ଏହା ମିଳେ । ଏହି ସ୍ଫଟିକୋଜ୍ଜ୍ୱଳ ମୃତ୍ତିକା ପୃଥିବୀ

ତ୍ୱକ୍‌ର ସର୍ବନିମ୍ନସ୍ତର ବୋଲି ଭୂତତ୍ତ୍ୱବିଦ୍‌ଙ୍କ ମତ । ତାହାଙ୍କ ମତେ ଏହାର ନାମ Tre Camborianu । ଏହି ସମୟକୁ ଜୀବଶୂନ୍ୟ ବା Azoic ଯୁଗ କୁହାଯାଏ । ପୁଣି ଏହି ସ୍ତରକୁ ପୌରାଣିକଗଣ 'ପାତାଳ ଖଣ୍ଡ' ନାମ ଦେଇଅଛନ୍ତି । ତାଙ୍କ ମତେ ପୃଥିବୀର ସ୍ତରସମୂହ ସାତଖଣ୍ଡେ ବିଭକ୍ତ । ଯଥାଃ- ପାତାଳ, ସୁତଳ, ମହାତଳ, ଗର୍ଭସ୍ତିମିତ୍‌, ନିତଳ, ବିତଳ, ଅତଳ । ଏହିପରି ନର୍ଜୀବ ଅବସ୍ଥାରେ ପୃଥିବୀ ମୃଗଶିରା ନକ୍ଷତ୍ରେ ଭ୍ରମଣ ଶେଷକରି ଷଷ୍ଠ ନକ୍ଷତ୍ରେ ଉପସ୍ଥିତ ହେଲା ।

## ଆର୍ଦ୍ରା ଗର୍ଭାନ୍ତର୍ଯୁଗ ଏବଂ ମିଥୁନରାଶି ବା ମିଥୁନ ଅନ୍ତର୍ଯୁଗ

ଆର୍ଦ୍ରା ଅର୍ଥ ସିକ୍ତ । ଓଦାହେବା ସମୟକୁ ପୃଥିବୀ ଜଳେ ସିକ୍ତ, ଆର୍ଦ୍ରା ହୋଇଅଛି । ବୃଷ୍ଟି ଜଳ କିଛି କିଛି ସଞ୍ଚିତ ରହୁଅଛି; ଚତୁର୍ଦିଗରୁ ବାଷ୍ପରାଶି ଉଠି ମେଘରେ ପରିଣତ ହୋଇ ବୃଷ୍ଟି ହେଉଛି । ବଜ୍ରପାତ ଓ ବିଦ୍ୟୁତ୍ ଚମକ ଦେଖାଯାଉଛି । ଏହି କାଳକୁ ଦୁଇଭାଗେ ବିଭକ୍ତ କରାଯାଏ । କେମ୍ବ୍ରିୟନ୍ (Cambrian) ଓ ସିଲୁରୀୟନ୍ (Silurian) ।

ଆର୍ଦ୍ରା ଗର୍ଭାନ୍ତର୍ଯୁଗର ପ୍ରଥମାର୍ଦ୍ଧେ ଘୋରତର ବୃଷ୍ଟି ଯୋଗୁଁ ପୃଥିବୀ ଜଳମଗ୍ନ ହୋଇଅଛି । ମୃତ୍ତିକା ଉପରେ ମୃତ୍ତିକା ପଡୁଅଛି । କିନ୍ତୁ ସମୁଦ୍ର ଗଭୀର ନୁହେଁ, ବିପ୍ଲବ ନିର୍ମିତ ଖାତ ସମୂହ ମାତ୍ର ଗଭୀର ଅଟେ । ଏ ସମୟରେ ଏକପ୍ରକାର ଜଳକ 'ତ୍ରିଲୋକୀ' (Trilobites) ବା ତ୍ରିଦଳକ କୀଟର ଚିହ୍ନ ଦେଖାଗଲା । କଠିନ ଆବରଣଯୁକ୍ତ ଏକପ୍ରକାର ଜୀବ । ଏହାର ଦେହ ତିନିଭାଗେ ବିଭକ୍ତ । କଠିନ ଆବରଣଯୁକ୍ତ ମସ୍ତକ, କଠିନ ଢାଲପରି ଆବରଣଯୁକ୍ତ ଲାଞ୍ଜ । ମସ୍ତକ ଓ ଲାଞ୍ଜ ସଂଲଗ୍ନ କରି ରହିଲାବେଳେ ମଧ୍ୟ ଶରୀରେ ଆଚ୍ଛନ୍ନ ହୋଇଥାଏ । ପୁଣି କୋମଳ ଜୀବର ଚିହ୍ନ ମଧ୍ୟ ଦେଖାଗଲା । କିନ୍ତୁ ଜନ୍ତୁ ଧରାଗଲା ନାହିଁ, ମାତ୍ର ତାହାର ଗମନାଗମନ ଚିହ୍ନ ଜଣାଯାଏ ।

ଏହି ସମୟରେ ତିର୍ଯ୍ୟକ୍ ସ୍ରୋତା ନାମକ ପଞ୍ଚମ ସୃଷ୍ଟି ଆରମ୍ଭ ହୋଇଅଛି । ଏ ସକଳ ଜୀବ ଜଳରେ ବାସ କରନ୍ତି, ସୁତରାଂ ଏମାନେ 'ମଦ୍' ବା ଜଳରୁ ଜାତ ବୋଲି ମତ୍ସ୍ୟ ନାମେ ଅଭିହିତ । ଏଣୁ ପ୍ରଥମ ଅବତାର ମତ୍ସ୍ୟ । ମତ୍ସ୍ୟର ଅନ୍ୟ ଅର୍ଥ 'ମଦ୍' ମନ୍ଦ ବା ମୃଦୁ, 'ସ୍ୟନ୍' ଗମନ । ମୃଦୁଗାମୀ ବୋଲି ମତ୍ସ୍ୟ ନାମ ହେଲା । ଏହି ସକଳ ଜୀବ ତିର୍ଯ୍ୟକ୍ ଭାବେ ଚଳନ୍ତି ବୋଲି ଏହାକୁ ତିର୍ଯ୍ୟକ୍ ସ୍ରୋତା କୁହାଗଲା ।

ସାମୁଦ୍ରିକ ଅବ୍ୟବହାର୍ଯ୍ୟ ବୃକ୍ଷ ଓ ପୁରୁଭୁଜର ଚିହ୍ନ ଏ ଯୁଗେ ଦେଖାଗଲା । କାଶ୍ମୀରର ଉତ୍ତରସ୍ଥ 'ପୀରପଞ୍ଜାଲ' ଏହି ସମୟରେ ଉତ୍ପନ୍ନ ହୋଇଅଛି । ଚୀନ୍ ଓ ପାଶ୍ଚାତ୍ୟ ପ୍ରଦେଶରେ ଏହି ସମୟର ମୃତ୍ତିକା ମିଳେ । ପାଶ୍ଚାତ୍ୟ ଭୂତତ୍ତ୍ୱବିଦ୍‌ଗଣ ଏହି ସ୍ତରକୁ କେମ୍ବ୍ରିୟନ୍ (Cambrian) ନାମ ଦେଇଅଛନ୍ତି ।

ପୃଥିବୀ ଆର୍ଦ୍ରାନକ୍ଷତ୍ରର ପ୍ରଥମାର୍ଦ୍ଧେ ଭ୍ରମଣ କଲାକାଳେ କ୍ରମଶଃ ସର୍ବତ୍ର ଓଷଧୀ ସମୁହ ଓ ବୃକ୍ଷ ଜନ୍ମିଲା ।*

ଆର୍ଦ୍ରାନକ୍ଷତ୍ରର ଦ୍ୱିତୀୟାର୍ଦ୍ଧରେ ଅନବରତ ବୃଷ୍ଟି ହେଲା; ବାଷ୍ପାବରଣ ଭେଦକରି ସୂର୍ଯ୍ୟ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇନାହାନ୍ତି; ଅଦ୍ୟାପି ଜଗତ ଅନ୍ଧକାରାବୃତ, ତଥାପି କିଛି ପରିଷ୍କାର ହେଉଅଛି । ସମ୍ପ୍ରତି ଅତି ବିସ୍ତୃତ ସମୁଦ୍ର ମଧ୍ୟେ ସ୍ଥାନେ ସ୍ଥାନେ ଅନୁର୍ବର, କେଉଁଠାରେ ବା ଜଳଜ ଉଦ୍ଭିଦପୂର୍ଣ୍ଣ ଭୂଖଣ୍ଡ, କେଉଁଠାରେ ଅନୁଚ୍ଚ ପାହାଡ଼ଗୁଡ଼ିକ ଅଳ୍ପଜଳର ନିମ୍ନରେ ବିଦ୍ୟମାନ । ନାନା ଜାତୀୟ ଶମ୍ବୁକ ଓ ସ୍ଥୁଟାଙ୍ଗ, (Articulated) ଜଳଜୀବ, ତାରକାକୃତି ଏକପ୍ରକାର ମତ୍ସ୍ୟ (Star fish), ତ୍ରିଲୋବୀ, ବୃହତ୍‌କାୟ ଚିଙ୍ଗୁଡ଼ି ମାଛ ଦେଖାଦେଲେ । ତେଡ଼େ ବଡ଼ ଚିଙ୍ଗୁଡ଼ି ଆଜିକାଲି ବିରଳ । ସେ ଯୁଗର ବୃହତ୍‌କାୟ ମତ୍ସ୍ୟର ଦେହାବଶେଷ ଏବେ ସୁଦ୍ଧା ମିଳୁଅଛି । ଏହାହିଁ ଆଦିମତ୍ସ୍ୟ । ପୁଷ୍ପହୀନ ଉଦ୍ଭିଦ, ପ୍ରବାଳ, ଶୈବାଳ (Lycpodiacia) ଓ ଅସଂଖ୍ୟ ଜୀବ ଦେଖାଗଲା । ଏ ଯୁଗକୁ ପାଶ୍ଚାତ୍ୟ ପଣ୍ଡିତଗଣ ସିଲୁରୀୟନ୍ (Silurian) କହନ୍ତି । ଏହି ଯୁଗର ମୃତ୍ତିକାରେ ପଶ୍ଚିମାଞ୍ଚଳ, ବ୍ରିଟିଶ୍ ଦ୍ୱୀପପୁଞ୍ଜ, ଅଧିକାଂଶରେ ବାଲଟିକ୍ ସମୁଦ୍ର, ସ୍ପେନ୍‌ର ୟୁରାଲ ପର୍ବତ, ଦକ୍ଷିଣ ଆମେରିକାସ୍ଥ ପର୍ବତ, ଆଲପ୍ସ ପର୍ବତ, ହିମାଳୟ ପର୍ବତର ଅଂଶବିଶେଷ ନିର୍ମିତ । ଇଉରୋପ, ଅଷ୍ଟ୍ରେଲିୟା, ଏସିଆ ଓ ଆମେରିକା ଏହି ଯୁଗର ମୃତ୍ତିକାରେ ପରିପୂରିତ ।

ଭାରତବର୍ଷରେ ବଙ୍ଗପ୍ରଦେଶର କେତେକାଂଶ, ବୁନ୍ଦେଲଖଣ୍ଡ, ଆରାବଳି ପର୍ବତ, ପଞ୍ଜାବ, ଛୋଟନାଗପୁର ପ୍ରଭୃତି ଏହି ସମୟେ ଥିଲା କିନ୍ତୁ ସମସ୍ତ ଜଳରେ ମଗ୍ନ ଥିଲା । ଏହି ସମୟରେ କଠିନ ଓ କୋମଳ ଚର୍ମାବୃତ ଦୁଇପ୍ରକାର ଜୀବ ଦେଖାଗଲେ ।

ଏହିପରି ପରିବର୍ତ୍ତନ ହୋଇ ହୋଇ ଖ୍ରୀଷ୍ଟପୂର୍ବ ୨୯୧୩୦,୧୧,୬ ଅବ୍ଦେ ପୃଥିବୀ ସପ୍ତମ ନକ୍ଷତ୍ରେ ଉପନୀତ ହେଲା । ଆର୍ଦ୍ରାନକ୍ଷତ୍ରେ ପୃଥିବୀର ଭ୍ରମଣ କାଳେ ଦୈନନ୍ଦିନ ପ୍ରଳୟ ଆରମ୍ଭ ହେଲା । ଏହି ସମୟରେ ମଧୁକୈଟଭର ଭୟଙ୍କର ଯୁଦ୍ଧ ଆରବ୍ଧ । ମଧୁ ଅର୍ଥ ଜଳ, କୈଟଭ ଅର୍ଥ କୀଟବତ୍, ଭା ଅର୍ଥାତ୍ କାନ୍ତି ବା ଆକାର ବିଶିଷ୍ଟ । ଜଳ ଓ ମୃତକୀଟ ପଚିଯାଇ ଆକରିକ ପଦାର୍ଥ ସହିତ ମିଶ୍ରିତ ହୋଇ ମୃତ୍ତିକା ନିର୍ମିତ ହେଲା । ଏହି ସମୟରେ ଜଳ ଓ ଜଳଜ କୀଟ ସହିତ (ବିଷ୍ଣୁ) ପ୍ରକୃତିର ଘୋରତର ଯୁଦ୍ଧ ଆରମ୍ଭ ହେଲା । ଜୀବଗଣ ବିପ୍ଳବର ତାଡ଼ନାରେ ନିଜନିଜ ଶରୀରଦ୍ୱାରା ପୃଥିବୀର କଳେବର ବୃଦ୍ଧି କରିଅଛନ୍ତି । ଏହି କୀଟକୁଳର ମେଦରେ ପୃଥିବୀ ନିର୍ମିତ ହୋଇଥିବା ଯୋଗୁଁ ମେଦିନୀ ନାମେ ଅଭିହିତ ।

---

*ମତ୍ସ୍ୟପୁରାଣ, ୧୪୩ ଅଃ

ଏହି ମଧୁକୈଟଭ ଯୁଦ୍ଧ *ସହସ୍ର ଯୁଗ ବ୍ୟାପୀ ବୋଲି ପୁରାଣ କହେ, କିନ୍ତୁ ତାହା ଠିକ୍ ନୁହେଁ । ୫୪ ବିକଳା ଗତି ଅନୁସାରେ ପାଞ୍ଚହଜାର ବତ୍ସର ହେଲେ, କକ୍ଷା ପରିବର୍ତ୍ତନ ଗତି ଅନୁସାରେ ୨୫ ହଜାର ବର୍ଷ ଯୁଦ୍ଧ ହେଲା । ଆର୍ଯ୍ୟମହର୍ଷିଗଣ ଏହି ସ୍ତରକୁ ସୁତଳ ଖଣ୍ଡ ବୋଲି ନାମ ଦେଇଅଛନ୍ତି ।

**(୭) ପୁନର୍ବସୁ ଗର୍ଭାନ୍ତର୍ଯୁଗ :** ଭୂତତ୍ତ୍ୱାନୁସାରେ ଏହି ଗର୍ଭାନ୍ତର୍ଯୁଗ ଦୁଇଭାଗେ ବିଭକ୍ତ । ଯଥା- ଡିବୋନିୟନ୍ (Devonian) ଓ କାର୍ବନିଫେରାସ୍ (Carboniferous) । ଏହି ସମୟରେ ମେରୁ ନିକଟେ ଜଳ ଉପରେ ସ୍ଥଳଭାଗ ଦେଖାଦେଇଅଛି । ଉତ୍ତରରୁ ନଦୀରେ ବାଲିମାଟି ଭାସିଆସି ହ୍ରଦରେ ପଡ଼ିଲା । କ୍ରମେ କ୍ରମେ ଜୀବ ବୃଦ୍ଧି ହେଲା । ୫ ଇଞ୍ଚ ପକ୍ଷ ବିଶିଷ୍ଟ ଏକପ୍ରକାର ମଶା ଏବଂ ୪ ଗୋଟି ପକ୍ଷ ବିଶିଷ୍ଟ ଏକପ୍ରକାର ପତଙ୍ଗ ଦେଖାଗଲେ । ଏ ସମୟେ ଶଙ୍ଖଜାତୀୟ ଜୀବ ବିଶେଷ ଓ ପ୍ରାୟ ୧୧୦୦ ବିଭିନ୍ନ ପ୍ରାଣୀର ଚିହ୍ନ ଦେଖାଗଲା । ବୃଶ୍ଚିକ (Pterygotus) ଦେଖାଗଲା । ଏହା ୫।୬ ଫୁଟ ଦୀର୍ଘ ଥିଲା । ଉଭୟଚରଜୀବ ଅଳ୍ପ କିନ୍ତୁ ବୃଶ୍ଚିକ, କର୍କଟ, ଶଙ୍ଖ ଇତ୍ୟାଦି ବିଶେଷ ଥିଲେ । ଅଳ୍ପଜଳ ବିଶିଷ୍ଟ ସମୁଦ୍ର ଭାଗ ବିଶେଷ ଓ ସ୍ଥଳ ଅଳ୍ପ ଥିଲା । କ୍ରମେ ବସୁମତୀ ଭ୍ରମି ଭ୍ରମି ପୁନର୍ବସୁର ଦ୍ୱିତୀୟ ଭାଗରେ ଉପସ୍ଥିତ ହେଲା ।

ଏହି ପୁନର୍ବସୁ ଗର୍ଭାନ୍ତର୍ଯୁଗର ଦ୍ୱିତୀୟାର୍ଦ୍ଧରେ ମହାବିପ୍ଳବ ଘଟିଅଛି । ଏପରି ବିପ୍ଳବ କୌଣସି ଯୁଗେ ଘଟିନାହିଁ । ଅନେକ ସ୍ଥଳ ଉଚ୍ଚ ହୋଇଅଛି । ଏହି ଘୋରତର ବିପ୍ଳବ ଦେଖିଲେ ପୃଥିବୀର ପ୍ରସବ-ବେଦନାର ସମୟ ବୋଲି ବୋଧହୁଏ, ଯେହେତୁ ପୃଥିବୀର ଉତ୍ତରାଂଶ, ମେରୁପ୍ରଦେଶ ଓ ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ବହୁତ ସ୍ଥଳ ପ୍ରସୂତ ହୋଇଅଛି । ପୂର୍ବରେ ଧର ବାସଯୋଗ୍ୟା ନଥିଲା । ଅଧୁନା ବାସୋପଯୋଗୀ ହୋଇଅଛି । ପୁନଃ ପୁନଃ ବସୁ ବାସସ୍ଥାନ ଅର୍ଥେ ପୁନର୍ବସୁ ନାମ ହୋଇଅଛି । ସମ୍ପ୍ରତି ସ୍ଥଳଭାଗ ଅଧିକ ପରିମାଣେ ଦେଖା ଯାଉଅଛି । ଖ୍ରୀଷ୍ଟପୂର୍ବ ୨୫୯୫୬,୬,୨୮ ଅବ୍ଦେ ପୃଥିବୀ କର୍କଟ ରାଶିରେ ପୁନର୍ବସୁ ଚତୁର୍ଥ ପାଦେ ଉପନୀତ ହେଲା ।

**ମିଥୁନ ରାଶି:** ମିଥୁନର ଅର୍ଥ ସ୍ତ୍ରୀ, ପୁରୁଷ ଜୀବର ପରସ୍ପର ସଂଯୋଗ ଓ ତାହାରି ଫଳେ ଜୀବୋତ୍ପତ୍ତି । ଏହି ସମୟରେ ହିଁ ଜୀବର ପ୍ରଥମ ଅବତାର ମତ୍ସ୍ୟ ଅବତାର । ବୃଷ ଅପେକ୍ଷା ସୂର୍ଯ୍ୟର ତେଜ ଅଧିକ କିନ୍ତୁ କଷ୍ଟପ୍ରଦ ନୁହେଁ । ମିଥୁନ ପରି ଶୀତୋଷ୍ଣ ସମାନ ।

## କର୍କଟ ରାଶି ବା କର୍କଟ ଅନ୍ତର୍ଯୁଗ

ଏହି ପୁନର୍ବସୁର ଦ୍ୱିତୀୟାର୍ଦ୍ଧରେ ପୃଥିବୀର ସ୍ଥାନେ ସ୍ଥାନେ ଜଳ ଉପରେ ମୃତ୍ତିକା ଉଠିଅଛି । ଉକ୍ତ ଦ୍ୱୀପଗୁଡ଼ିକରେ ଅସଂଖ୍ୟ ଅଙ୍ଗାରଜନକ ଉଦ୍ଭିଦ ଜନ୍ମିଅଛି । ଅପେକ୍ଷାକୃତ ଉଚ୍ଚ ଓ ଶୁଷ୍କ ସ୍ଥାନେ ଦେବଦାରୁ ବୃକ୍ଷ ଦେଖାଗଲା । ଏହି ଯୁଗେ ଅଙ୍ଗାରକାମ୍ଳ ବିଶେଷ ଥିବା ଯୋଗୁଁ ବିଶେଷ

*କାଳିକା ପୁରାଣ

ଉଭିଦ ଜନ୍ମି ଅତିରିକ୍ତ ବୃଦ୍ଧି ପାଇଅଛି । ୮୦।୯୦ ଫୁଟ ଉଚ୍ଚର ଖାଦ୍ୟ ଉପଯୋଗୀ ଉଭିଦ (Fern) ସାମାନ୍ୟ ଉଚ୍ଚ ବୋଲି ପରିଗଣିତ । ୨୦ ବା ୩୦ ଫୁଟ ଉଚ୍ଚ ଓ ୨ ଫୁଟ ବେଢ଼ର ଶରଗଛ ଦେଖାଯାଏ । ଏହିପରି ଅନେକ ଉଭିଦରେ ଅରଣ୍ୟପୂର୍ଣ୍ଣ ଥିଲା । କିନ୍ତୁ ଏ ସକଳ ବୃକ୍ଷ ଦୀର୍ଘଜୀବୀ ନୁହନ୍ତି; ପ୍ରତିବର୍ଷ ମରିଭୂମି ପୁଷ୍ଟ ହୁଏ । କୌଣସି କୌଣସି ସ୍ଥାନରେ ବିପ୍ଳବ ଯୋଗୁଁ ବୃକ୍ଷରାଜି ନିମ୍ନକୁ ଯାଇ କାଳକ୍ରମେ କୋଇଲାରେ ପରିଣତ ହୋଇଅଛି । ଏହି ଯୁଗେ ଚୂନପଥରର ସ୍ତର ଦେଖାଯାଏ । ବିପ୍ଳବ ଯୋଗୁଁ ଯେତେ ପୁରୁଭୁଜ, ପ୍ରବାଳ, ଶଙ୍ଖ, ଶମ୍ବୁକାଦି କଠିନ ଖୋଳର ଜୀବ ମରନ୍ତି ତାଙ୍କ ଅସ୍ଥିରେ ହିଁ ଏହି ଚୂନପଥର ସ୍ତର ନିର୍ମିତ ହୋଇଅଛି ।

ଲାଙ୍କାଶାୟାରରେ ୬୦୦୦ ଘନଫୁଟ ଚୂନପଥରର ସ୍ତର ମିଳିଅଛି । ଏ ସମୟେ ମଧୁକୈଟଭ ଯୁଦ୍ଧ ସଂଘଟିତ । ମଧୁକୈଟଭ ବଧ ବ୍ୟାପାର କିପରି ପ୍ରକୃତି (ବିଷ୍ଣୁ) ଦ୍ୱାରା ଘଟିଥିଲା ତାହା ସହଜେ ଅନୁମେୟ । ଏ ଯୁଗରେ ଏକପ୍ରକାର ସରୀସୃପ ଦେଖାଗଲା । ଅଧୁନା ଦକ୍ଷିଣରେ ସମୁଦ୍ର ଯେତେ ଗଭୀର ହେଲା, ଉତ୍ତରରେ ତେତେ ବାଲି, କାଦ ଓ ବୃକ୍ଷାଦି ମିଶ୍ରିତ ମାଟି ପଡ଼ି ଉଚ୍ଚ ହେଲା । ସମ୍ପ୍ରତି ଋତୁର ପରିବର୍ତ୍ତନ ନାହିଁ । ଏଥିଲାଗି ନିରକ୍ଷ ବୃତ୍ତଠାରୁ ମେରୁ ପର୍ଯ୍ୟନ୍ତ ସର୍ବତ୍ର ମୃଦଙ୍ଗାରଜନକ ପୁଷ୍ପହୀନ * ବୃକ୍ଷ ଦେଖାଯାଏ । ସରୀସୃପ ମଧ୍ୟ ଜନ୍ମିଲା । କୁ ମନ୍ଦ, ଊର୍ମୀ ବେଗ ବା ଗତି, ଅର୍ଥାତ୍ କୁତ୍ସିତ ଗତିବିଶିଷ୍ଟ ଜୀବ । କୂର୍ମ-କୂର୍ମାବତାର ସରୀସୃପର ପ୍ରଥମ ଅବତରଣ । ସ୍ଥଳଚର ଜୀବ ମଧ୍ୟେ ବୃଶ୍ଚିକ, ବହୁପଦୀ ଭେକ ଓ ତଦ୍‌ଜାତୀୟ ସରୀସୃପ ଦେଖାଯାଏ । ଉଭୟଚର କୂର୍ମ ପ୍ରଭୃତି ମଧ୍ୟ ଜନ୍ମିଲେ । ଭୂତତ୍ତ୍ୱବିଦ୍‌ଗଣ ଏ ଯୁଗକୁ ଅଙ୍ଗାରଜନକ (Carboniforous) ନାମ ଦେଇଅଛନ୍ତି । ଖ୍ରୀଷ୍ଟପୂର୍ବ ୨୪୮୯୬,୫,୨ ଅବ୍ଦେ ପୃଥିବୀ ଅଷ୍ଟମ ନକ୍ଷତ୍ରେ ପଦାର୍ପଣ କଲା । ପୁରାଣରେ ଏହାର ନାମ ମହାତଳ ଖଣ୍ଡ ।

(୮) **ପୁଷ୍ୟା ଗର୍ଭାନ୍ତର୍ଯୁଗ** : ଏହା ଦୁଇଭାଗେ ବିଭକ୍ତ । ଯଥା- ପାର୍ମୀୟନ୍ ଓ ଟ୍ରିୟାସିକ (Permian and Triassic) । ଏହାର ପ୍ରଥମଭାଗ ମୃଦଙ୍ଗାର ଯୁଗ । ଏହିଯୁଗେ ପୂର୍ବସ୍ଥ ହ୍ରଦରେ ମୃଦଙ୍ଗାରଜନକ ବୃକ୍ଷ ଥିଲା । ପାର୍ଥିବ ଉତ୍ପାତ ଯୋଗୁଁ ସେ ସକଳ ଅଦୃଶ୍ୟ ହୋଇଯାଇଛି । ସ୍ଥାନେ ସ୍ଥାନେ ମୃତ୍ତିକା ନିରାଟ ହୋଇ ପ୍ରସ୍ତର ଓ ଚୂନପ୍ରସ୍ତରରେ ପରିଣତ ହୋଇଅଛି । ବେଳେବେଳେ ଅଗ୍ନିଉତ୍ପାତ ବିସ୍ତର ହୋଇଥିଲା; ସେତେବେଳେ କୁମ୍ଭୀରର ପ୍ରଥମ ଆବିର୍ଭାବ । ଖ୍ରୀଷ୍ଟପୂର୍ବ ୨୨୭୮୨, ୨ ପରେ ପୁଷ୍ୟାର ଦ୍ୱିତୀୟାର୍ଦ୍ଧେ ପୃଥିବୀ ଉପନୀତ ହେଲା । ପୂର୍ବଦର୍ଶିତ ମୃଦଙ୍ଗାର ଜନିତ ବୃକ୍ଷ ଏ ଯୁଗେ ଲୁପ୍ତ ହେଲା । ଝାଡ଼ ଜାତୀୟ ଗଛ ଜନ୍ମିଲା । ଉଭୟଚର ଜୀବ ଏ ସମୟେ ପ୍ରଚୁର ଭାବେ ଦେଖାଗଲେ । ଏ ସମୟେ 'ଡାଇନୋସୋର୍‌ସ' ନାମକ ଜୀବ ଦେଖାଗଲା । ଏହାର ଆକାର ସରୀସୃପ ଓ ପକ୍ଷୀର ମଧ୍ୟବର୍ତ୍ତୀ, ଦେଖିବାକୁ ହସ୍ତୀ ବା ଗଣ୍ଡାର ପରି । ପ୍ଲିନିଓସରସ୍ ନାମ ସରୀସୃପ ଜାତି ଜନ୍ମିଲା । ଏହାର ଦୈର୍ଘ୍ୟ ୪୦ ଫୁଟ, ମୁଖ

---

*ମତ୍ସ୍ୟପୁରାଣ, ୧୪୩ ଅଃ

ଗୋଧିସାପର ମୁଖ ପରି, ଦାନ୍ତ କୁମ୍ଭୀରର ପରି, ବେଣା ତିମିରର ପରି, ଗଳା ରାଜହଂସର ପରି, ଦେହ ଓ ଲାଞ୍ଜ ଛୋଟ, ଦେଖିବାକୁ କୂର୍ମ ଆକାର । ଏହା କଚ୍ଛପର ଆଦିପୁରୁଷ । ଭୂମିରେ ଏହାର ଗତି ମନ୍ଦ, ସେ ଗଭୀର ଜଳକୁ ଯାଏ ନାହିଁ । ତେଣୁ ଏହାକୁ କୂର୍ମ ବୋଲାଯାଇପାରେ । ୪୦ ଫୁଟ ଦୀର୍ଘକାର କୂର୍ମକୁ କୂର୍ମାବତାର କୁହାଯାଇପାରେ । ଏ ସମୟରେ ନାନାପ୍ରକାର ସରୀସୃପ ଓ ତିନୋଟି ପଦାଙ୍ଗୁଳି ଯୁକ୍ତ ଉଷ୍ଟ୍ର ପକ୍ଷୀପରି ବୃହତ୍‌କାୟ ପକ୍ଷୀ ଦେଖାଗଲେ । ତଦବଧି ପକ୍ଷୀର ସୃଷ୍ଟି ହେଲା । ପୁରାଣରେ ସୁଦ୍ଧା ତିର୍ଯ୍ୟକ୍‌ସ୍ରୋତା ପରେ ଉର୍ଦ୍ଧ୍ୱସ୍ରୋତା ନାମକ ସୃଷ୍ଟି ନିର୍ଣ୍ଣିତ । ଏହି ସୃଷ୍ଟି ଦେବସର୍ଗ ନାମେ ଖ୍ୟତେ । ଦିବ୍ୟ ସ୍ୱର୍ଗେ ବା ଅନ୍ତରୀକ୍ଷେ କ୍ରୀଡ଼ା କରିବା ଯୋଗୁଁ ଏହାକୁ ଦେବସର୍ଗ କହି ଏ ସମୟେ ସମୁଦ୍ର ଆୟର୍ଲାଣ୍ଡଠାରୁ ୟୁରାଲ ପର୍ବତ ଯାଏ, ଏସିଆ ଠାରୁ ସାଇବେରିଆ ଦକ୍ଷିଣେ, ଆଲଟାଇ ପର୍ବତ ପର୍ଯ୍ୟନ୍ତ ଏବଂ ୟୁରାଲ ପର୍ବତଠାରୁ ପୂର୍ବସୀମା ପର୍ଯ୍ୟନ୍ତ ସମୁଦ୍ର ବିସ୍ତୃତ ଥିଲା । ମାଙ୍ଗୋଲିଆ ସମୁଦ୍ର ଗର୍ଭେ ଥିଲା । ତିବ୍ବତ ଏତେ ଉଚ୍ଚ ନଥିଲା । ଏପର୍ଯ୍ୟନ୍ତ ହିମାଳୟ ପର୍ବତ ହୋଇନାହିଁ । ପାଶ୍ଚାତ୍ୟ ଦେଶ ଦେଖା ଦେଇଅଛି । ଭୂତତ୍ତ୍ୱବିଦ୍‌ଗଣ ଏ ଅବସ୍ଥାକୁ ଟ୍ରିୟାସିକ୍ (Triassice) ନାମ ଦେଇଛନ୍ତି ।

ପୁଷ୍ ଅର୍ଥ ପୋଷଣ କରିବା । ଏହି ସମୟେ ଜୀବସୃଷ୍ଟିର ଅନେକ ଉନ୍ନତି ହୋଇଅଛି । ପୌରାଣିକଗଣ ଏହି ଖଣ୍ଡକୁ ଗଭସ୍ତିମତ୍ ଖଣ୍ଡ କହନ୍ତି । ଗଭସ୍ତି ଅର୍ଥ ସୂର୍ଯ୍ୟ କିରଣ । ଏ ସ୍ତରରେ ବିଶେଷ ଭାବେ ସୂର୍ଯ୍ୟକିରଣ ପଡ଼ିଅଛି । ଖ୍ରୀଷ୍ଟପୂର୍ବ ୧୦୬୬୫,୨୦,୨୮ ପର୍ଯ୍ୟନ୍ତ ଏ ନକ୍ଷତ୍ରେ ପୃଥିବୀ ଭ୍ରମି ନବମ ଋକ୍ଷେ ପ୍ରବେଶ ହେଲା ।

**(୯) ଅଶ୍ଳେଷା ଗର୍ଭାନ୍ତର୍ଯୁଗ** : ଅଶ୍ ଅର୍ଥ ବ୍ୟାପ୍ତି, ଲେଶ ଅର୍ଥ ଅଳ୍ପ । ଏ ସମୟେ ଧରା ଅଳ୍ପ ବ୍ୟାପ୍ତ ହେଲା । ଅ ଅଭାବ, ଶ୍ଳିଷ ଆଲିଙ୍ଗନ, ଅର୍ଥାତ୍ ପରସ୍ପର ସଦ୍‌ଭାବର ଅଭାବ । ଏ ଯୁଗରେ ଜୀବମାତ୍ରେ ହିଂସ୍ରକ ଥିଲେ । ମନୁଷ୍ୟ ଏପର୍ଯ୍ୟନ୍ତ ଜନ୍ମି ନାହାନ୍ତି । ଏହି ଯୁଗ ଜୁରାସିକ୍ ଓ ଚାକ୍‌ଖଡ଼ି (ସୁଧାଖଡ଼ି) (Jurassic Cretacious) ନାମେ ଦୁଇଭାଗେ ବିଭକ୍ତ । ଏ ସମୟେ ନୂତନରେ ଅନେକ ଜାତିର ଜୀବ ଦେଖାଦେଲେ । ନାନାପ୍ରକାର ଚିଙ୍ଗୁଡ଼ି, କଙ୍କଡ଼ା କଇଁଛ ଜାତ ହେଲେ । ଭୀଷଣ ଦନ୍ତନଖଯୁକ୍ତ କୁମ୍ଭୀର ଆକୃତି ଜୀବ ଜନ୍ମିଲେ । ଏହାଙ୍କର ଡେଇଁବା, ଧାଇଁବା ଶକ୍ତି ଅସାଧାରଣ । ଏହାର ପାଶ୍ଚାତ୍ୟ ନାମ 'ମିଗାଲୋସରସ' । ଏହା ହାତୀ ପରି ବୃହତ୍‌କାୟ, ବ୍ୟାଘ୍ର ପରି ହିଂସ୍ରକ । ଏହାହିଁ କୈଟଭ କୀଟ । ଏ ସମୟେ ଅନ୍ୟ ଗୋଟିଏ ବୃହତ୍‌କାୟ କୀଟ ଜନ୍ମିଲା । ଏହା ଦୈର୍ଘ୍ୟରେ ୧୫୬ ଫୁଟ । ଏହାର ଗୋଟିଏ କଙ୍କାଳ ମିଳିଅଛି । ଏହି କଙ୍କାଳଟିର ଓଜନ ୫୭୫ ମଡ଼ଙ୍ଗ । ଜନ୍ତୁଟି କେଡ଼େ ବଡ଼, କେତେ ଭାରି ଥିଲା ଭାବିଲେ ଆଶ୍ଚର୍ଯ୍ୟ ବୋଧହୁଏ । ଏହାର ନାମ ବ୍ରଷ୍ଟୋସୋରସ୍ । ଏ ବସିଲେ ୧୦୦ ଫୁଟ ଉଚ୍ଚ ହୁଏ । ଏହାର କ୍ଷୁଦ୍ର ମୁଣ୍ଡ ସାପର ପରି, ବେକ ଓଟବେକ ଅପେକ୍ଷା ଲମ୍ବ, ବଡ଼ ଲମ୍ବ ଲାଞ୍ଜ, ପଛପାଦରେ ଏକ ଗଜ ଲମ୍ବରେ ଚିହ୍ନ ରହେ । ଏ କ୍ରୋଧୀ କିନ୍ତୁ ମାଂସାଶୀ ନୁହେଁ; ପତ୍ର ଖାଇ ବଞ୍ଚେ । ବୋଧହୁଏ ଏହାହିଁ କୈଟଭ ଦୈତ୍ୟ । ଏ ମେଦିନୀର ଯଥେଷ୍ଟ

ସହାୟ ହୋଇଥିଲେ । ସେତେବେଳେ ନାନା ଶ୍ରେଣୀର ପକ୍ଷୀ ମଧ୍ୟେ ବାଦୁଡ଼ି ପରି ପକ୍ଷରୀ ଦୃଶ୍ୟ ହେଲା । ଏହାର ପ୍ରସାରିତ ଡେଣା ୨୫ ଫୁଟ । ଏ ସମୟେ ସାମାନ୍ୟ ସ୍ତନ୍ୟପାୟୀ ଜୀବ ଦେଖାଗଲା । ଶାବକ ବହନ ଲାଗି ପୃଥକ୍ ଥଳୀଟିଏ ଏହାର ଦେହରେ ଥାଏ । ପୁରାଣମତେ ଅର୍ବାକ୍‌ସ୍ରୋତା ନାମକ ସପ୍ତମ ସୃଷ୍ଟି ଏହି ଯୁଗେ ହିଁ ହୋଇଥିଲା । ଏହି ସ୍ତନ୍ୟପାୟୀ କ୍ଷୁଦ୍ରଜୀବ ଭୂଗର୍ତ୍ତରେ ବାସକରେ । ଏହା ଜାତ ହେଲାବେଳେ ପ୍ରାୟଏକ ଅଙ୍ଗୁଷ୍ଠ ପରିମାଣ ଥାଇ କ୍ରମେ ବୃଦ୍ଧି ହୁଏ । ଖ୍ରୀଷ୍ଟପୂର୍ବ ୧୮୫୪୯,୭,୨୬ ପରେ ଅଶ୍ଳେଷାର ଦ୍ୱିତୀୟାର୍ଦ୍ଧେ ପୃଥିବୀ ଉପଗତ ହେଲା ।

ଅଶ୍ଳେଷାର ଦ୍ୱିତୀୟାର୍ଦ୍ଧେ ମୃତ୍ତିକା ଚାକ୍‌ଖଡ଼ି ପରି ଥିଲା । ଏହେତୁ ଏହାକୁ କ୍ରିଟାସିୟସ୍ (Cretacious) ଯୁଗ କୁହାଯାଏ । ପୃଥିବୀର ଅଧିକାଂଶ ସମୁଦ୍ର ତଳ ଏହି ମୃତ୍ତିକାବୃତ । ଭୂମଧ୍ୟସାଗରର ତଳଦେଶ, ଆଫ୍ରିକାର ଉତ୍ତରାଂଶ, ଗ୍ରୀସ୍, ତୁରସ୍କ, ଏସିଆଇନର ଓ ଏସିୟାମହାଦେଶ ଏହି ମୃତ୍ତିକାସ୍ତରେ ଆବୃତ ।

ଏହି ସମସ୍ତ ଭୂଭାଗର ସ୍ଥାନେ ସ୍ଥାନେ ୧୧୦୦୦ ଠାରୁ ୧୩୦୦୦ ଫୁଟ ପର୍ଯ୍ୟନ୍ତ ସ୍ତର ଜମିଥିଲା । ଏତଦ୍ୱାରା ବୁଝିବାକୁ ହେବ ଯେ ଏ ସମୟେ ଶମ୍ବୁକ, ଶଙ୍ଖ, କଉଡ଼ି ପ୍ରଭୃତି ଜାତୀୟ ଜୀବର ବଂଶ ଅତ୍ୟନ୍ତ ଦ୍ରୁତଗତିରେ ବୃଦ୍ଧି ପାଇଲା ଏହି ବୃଦ୍ଧି କ୍ଷୟ ନିମନ୍ତେ ବୃଦ୍ଧି ସଙ୍ଗେ ସଙ୍ଗେ ମହାମାରୀ ବ୍ୟାପିଗଲା । ବୋଧହୁଏ ଏହାହିଁ ପୁରାଣ କଥିତ ଶଙ୍ଖାସୁର ବଧ । ମଧୁକୈଟଭ ଯୁଦ୍ଧର ବିରାମ ନାହିଁ । ବରାହ ସମ୍ପ୍ରତି ବଡ଼ ହୋଇଅଛି । ହିରଣ୍ୟ ଅର୍ଥ କଉଡ଼ି ଓ ଶାମୁକା ପ୍ରଭୃତି, ଅକ୍ଷ ଅର୍ଥ ବ୍ୟାପ୍ତ ଅର୍ଥାତ୍ ବହୁସ୍ଥଳବ୍ୟାପୀ କପର୍ଦିକାଦି ନଷ୍ଟ ହୋଇଅଛି । ତାହାର ଖୋଳରେ ଏ ସ୍ତର ନିର୍ମିତ ।

ପୁରାଣରେ ଲେଖାଅଛି, ବ୍ରହ୍ମା ମନୁଙ୍କଠାରୁ ପୃଥିବୀର ଜଳମଗ୍ନାବସ୍ଥା ଶୁଣି ଭାବିଲେ ଯେ, ଏହି ଭୂଦେବୀକି ଉଦ୍ଧାର କରିବ କିଏ ? ବ୍ରହ୍ମା ଏହି ଚିନ୍ତା କରିବା କାଳେ ତାଙ୍କର ନାସାରନ୍ଧ୍ରରୁ ଗୋଟିଏ ଅଙ୍ଗୁଷ୍ଠ ପ୍ରମାଣ ବରାହ ବହିର୍ଗତ ହେଲା । ଏହି ବରାହ କ୍ଷଣକାଳ ପରେ ବୃହତ୍ ହସ୍ତୀସଦୃଶ ବୃଦ୍ଧି ପାଇଲା । ବ୍ରହ୍ମାଙ୍କ ଆଦେଶେ ବରାହ ହିରଣ୍ୟାକ୍ଷ ବଧ କରି ଭୂଦେବୀଙ୍କି ଜଳରୁ ଉଦ୍ଧାର କଲା ।

ଭୂତତ୍ତ୍ୱବିଦ୍‌ଗଣଙ୍କମତେ ପ୍ରାଗୁକ୍ତ ପ୍ରଥମ ସ୍ତନ୍ୟପାୟୀ ଜୀବର ଦେହ ଅଙ୍ଗୁଷ୍ଠ ପ୍ରମାଣ କ୍ଷୁଦ୍ର ଥିଲା । ସେ ଗର୍ତ୍ତରେ ବାସ କରୁଥିଲା । ଏହି ଗର୍ତ୍ତ ହିଁ ବ୍ରହ୍ମାର ନାସାରନ୍ଧ୍ର । କୂର୍ମ ଅବତାର ଅର୍ଥାତ୍ ସରୀସୃପ ସୃଷ୍ଟିର ପରେ ଏହି ବରାହ ବା ସ୍ତନ୍ୟପାୟୀ ଜୀବ ସୃଷ୍ଟି ହୋଇଛି । ଚାକ୍‌ଖଡ଼ି ଯୁଗେ ଏହି ବରାହ ବା ସ୍ତନ୍ୟପାୟୀ ଜୀବ ଏବେ ହିରଣ୍ୟାକ୍ଷ ଅର୍ଥାତ୍ ଶମ୍ବୁକ ଓ ଶଙ୍ଖ ବଧକରି ଅଛି ଯେ ତଦ୍ୱାରା ଏହି ବିଶାଳ ଚାକ୍‌ଖଡ଼ି ସ୍ତରନିର୍ମିତ ହୋଇଅଛି । ତହିଁରୁ ଜଳମଗ୍ନ ପୃଥିବୀ ଉଚ୍ଚ ହୋଇ ଜଳର ଉପରକୁ ଉଠିଅଛି । ଏହାହିଁ ଜଳମଗ୍ନ ପୃଥିବୀର ଉଦ୍ଧାର । ଏହି ଯୁଗର ଶେଷଭାଗେ ବ୍ରିଟିଶ ଦ୍ୱୀପପୁଞ୍ଜ ପ୍ରଭୃତିର ବିଶେଷ ଉନ୍ନତି ହୋଇଅଛି । ଦକ୍ଷିଣ ଭାରତର ପ୍ରାୟ ୨୦୦୦୦୦ ବର୍ଗମାଇଲ ସ୍ଥାନ ୪୦୦୦ ଠାରୁ ୫୦୦୦ ଫୁଟ ଆଗ୍ନେୟଗିରିର ଗଳିତ

ଘନ ପଦାର୍ଥଦ୍ୱାରା ଆବୃତ ଥିଲା । ଏହି ଯୁଗର ଶେଷଭାଗେ ପୁଷ୍ପିତ ବୃକ୍ଷ ପ୍ରଚୁର ଭାବେ ଦେଖାଗଲା । ଇତିପୂର୍ବେ ଦେବଦାରୁ, ଦାରୁଚେନୀ, ଓକ୍, ଆଖରୋଟ୍, ଚିନାର୍, ଡିମିରି, ବର ପ୍ରଭୃତି ଗଛ ଜନ୍ମିଥିଲା, ମାତ୍ର ଫୁଲଗଛ ନଥିଲା । ଏଯୁଗେ ସରୀସୃପ ବିଶେଷ ଇଗୁୟାନା ଓ ଗୋସାପର ଲମ୍ବ ୭୦ ଫୁଟ, ମୋସାମୋରସ ନାମକ ସରୀସୃପର ଦେହ ୭୫ ଫୁଟ ଦୀର୍ଘ, ଏଟ୍ଲାଣ୍ଟି ସରସର ଦେହ ୨୦୦ ଫୁଟ ଦୀର୍ଘ ଓ ୩୦ ଫୁଟ ଉଚ୍ଚ । ଆଷ୍ଟ୍ରିଚ୍ ପରି ଏକ ପକ୍ଷୀ ଦେଖା ଦେଇଅଛି । ଅଧୁନା ପୃଥିବୀର ଉତ୍ତାପ ହ୍ରାସହୋଇ ସୂର୍ଯ୍ୟଙ୍କ ଉତ୍ତାପ ବୃଦ୍ଧି ପାଇଅଛି । ଖ୍ରୀଷ୍ଟପୂର୍ବ ·୧୬୪୩୩,୪,୨୮, ଦିନ ପର୍ଯ୍ୟନ୍ତ ପୃଥିବୀ ଅଶ୍ଳେଷାରେ ଭ୍ରମଣ ଶେଷକରି ସିଂହରାଶିରେ ଦଶମ ନକ୍ଷତ୍ରରେ ଉପସ୍ଥିତ ହେଲା ।

**କର୍କଟ ରାଶି :** ଋଗ୍‌ବେଦେ କର୍କଟର ନାମ 'କୁଚର' । କୁ କୁତ୍ସିତଚର ବା ଗମନ ଅର୍ଥାତ୍ ମନ୍ଦଗାମୀ ସରୀସୃପ । ଏ ଯୁଗେ ସାରୀସୃପର ହିଁ ପ୍ରାଧାନ୍ୟ ଓ ବାହୁଲ୍ୟ ହେତୁ ରାଶିର ନାମ କର୍କଟ ହେଲା । ଅପିଚ କର୍କ ଅର୍ଥ ଶୁଭ୍ର ବର୍ଣ୍ଣ, ସୌନ୍ଦର୍ଯ୍ୟ; ଅଟ, ଭ୍ରମଣ, ବା ଗମନ; ଯେ ଶୁଭ୍ରବର୍ଣ୍ଣେ ବା ସୁନ୍ଦରଭାବେ ଗମନ କରେ । ସୁତରାଂ ଏ ସମୟେ ସୂର୍ଯ୍ୟ ସମ୍ପୂର୍ଣ୍ଣ ପ୍ରକାଶିତ ହୋଇ ଶୁଭ୍ରଭାବେ କର ପ୍ରସାରିଥିଲେ । ଅତଏବ ଏ ରାଶିର ନାମ କର୍କଟ । ଆର୍ଯ୍ୟଗଣ ଏହି ଯୁଗକୁ ନିଢ଼ଳଖଣ୍ଡ ନାମ ଦେଇଅଛନ୍ତି ।

## ସିଂହରାଶି ବା ସିଂହ ଅନ୍ତର୍ଯ୍ୟୁଗ

**(୧୦)ମଘା ଗର୍ଭାନ୍ତ ଯୁଗ :** ମଘ ଅର୍ଥ ଭୂଷଣ, ମଘା ଅର୍ଥ ଭୂଷିତ । ପୃଥିବୀ ତିର୍ଯ୍ୟକସ୍ରୋତା, ଦେବସ୍ରୋତା, ସର୍ବପ୍ରକାର ବୀବଜନ୍ତୁ ଓ ପୁଷ୍ପଭୂଷିତ ପାଦପ ଦ୍ୱାରା ଭୂଷିତା ହୋଇଅଛି ଏବଂ ଅନେକ ବୃଦ୍ଧି ପାଇଛି ।

ଋଗ୍‌ବେଦେ ମଘାର ନାମ ଅଘା,(*)ଅଘର ଅର୍ଥ ପାପ । ଏ ଯୁଗେ ସର୍ବତ୍ରଜୀବ ହିଂସା, ଅର୍ଥାତ ଜୀବହିଁ ଏକମାତ୍ର ଆହାର୍ଯ୍ୟ ବସ୍ତୁ, ଏହେତୁ ଏହା ପାପର ଯୁଗ । ପାପ ବା ପୁଣ୍ୟ ବୁଝିବାକୁ ଥିଲା କିଏ ? ଜ୍ଞାନହିଁ ପୁରାଣତ୍ୱ ବାହାର କଲା । ବୈଜ୍ଞାନିକଗଣ ଏ ଯୁଗକୁ ଦୁଇଭାଗେ ବିଭକ୍ତ କରିଅଛନ୍ତି, ଯଥାଃ ଇଓସିନ୍‌ଓଲି ଓ ଜେସିନ୍ (Euocen and Oliogessin) । ପୂର୍ବସ୍ଥିତ ଚାକ୍‌ଖଡ଼ି ସ୍ତରେ ବାଲି କାଦ ଜମି ନଦୀ ଓ ହ୍ରଦରେ ପରିଣତ ହୋଇଅଛି । ଏ ଯୁଗର ନାମ ଇଉସନ୍ । ଏସମୟେ ପ୍ରଧାନତଃ ସରୀସୃପ ଓ ସ୍ତନ୍ୟପାୟୀ ଜନ୍ତୁ ଜାତହେଲେ । ହ୍ରସ୍ୱଶୁଣ୍ଢ ସ୍ତନ୍ୟପାୟୀ ଜୀବ ମୂଷିକ, ମୟା ନାମକ ବୃହତ୍‌କାୟ ପକ୍ଷୀ, ବାଦୁଡ଼ି, ସଜାରୁ, ବାନର, (Lemer), ଘୋଡ଼ାର ମଧ୍ୟବର୍ତ୍ତୀ ଜୀବ, ଗଧିଆବାଘ, ଶୃଗାଳ, ଶୃଙ୍ଗହୀନ ହରିଣ, ବରାହସଦୃଶ ଜନ୍ତୁ ପ୍ରଭୃତି ଅନେକର ସୃଷ୍ଟି ହୋଇଅଛି ।

ଏହି ଯୁଗରେ ହିଁ ମାନବର ଆଦିପୁରୁଷ ନରସିଂହ ଅବତାର ହୋଇଅଛି । ଯେ ସକଳ ବାନରାକୃତି ଜୀବର ଅସ୍ଥି ମିଳିଅଛି ସେ ସକଳ ପ୍ରକୃତ ପକ୍ଷେ ଆଧୁନିକ ବାନରର ଅସ୍ଥି ପରି

ନୁହେଁ । ସେଗୁଡ଼ିକ ପଶୁ ଓ ମାନବ ଏହି ଉଭୟ ଜୀବର ମଧ୍ୟବର୍ତ୍ତୀ ଆକୃତି ବିଶିଷ୍ଟ ଜୀବର ଅସ୍ତି ଅଟେ ।

ପୁରାଣମତେ ଏହା ସୃଷ୍ଟିର ଅଷ୍ଟମ ସର୍ଗ ଏବଂ ଅନୁଗ୍ରହ ନାମେ ଅଭିହିତ । ଅନୁ ସାଦୃଶ, ଗ୍ରହ ଗ୍ରହଣ କରିବା । ଅର୍ଥାତ୍ ଏହି ସୃଷ୍ଟିର ଜୀବ ପୂର୍ବବର୍ତ୍ତୀ ସୃଷ୍ଟିର ଜୀବ ସଦୃଶ । କିନ୍ତୁ ହସ୍ତଦ୍ୱାରା ଗ୍ରହଣ କରି ଆହାର କରେ । ଏହି ଜୀବଗଣ ଇଚ୍ଛାମତେ ଦ୍ରବ୍ୟାଦି ଗ୍ରହଣ କରି ପାରନ୍ତି । ଏହି ଯୁଗର ସାତ୍ତ୍ୱିକସୃଷ୍ଟି ନିରାମିଷଭୋଜୀ ବାନରଏବଂ ତାମସସୃଷ୍ଟି ମାଂସାଶୀ ଦୈତ୍ୟ । ଦୈତ୍ୟ ହିଁ ନରସିଂହ ଅବତାର । ଏମାନେ ହିରଣ୍ୟ କଶିପୁ, ହିରଣ୍ୟ (କପର୍ଦ୍ଦକାଦି), କଶିପୁ (ନକୁଳାଦି) ଅଥଚ କଚ୍ଛପ, ମତ୍ସ୍ୟ ବା ମୃଗଭେଦ ଇତ୍ୟାଦି ବଧକରି ଆହାର କରନ୍ତି । ଏହି ଯୁଗରେ ଏମାନେ ହିଁ ପ୍ରଥମ ମନୁଷ୍ୟ । ଏମାନଙ୍କ ମଧ୍ୟରୁ କାହାର ମୁଖ ସିଂହର ପରି, କାହାର ବରାହର ପରି, କାହାର ଅଶ୍ୱର ପରି, କାହାର ଗର୍ଦ୍ଦଭର ପରି, ଓ କାହାର ବା କୁକ୍କୁରର ପରି । ସୃଷ୍ଟିର ପ୍ରାରମ୍ଭରୁ ପ୍ରଧାନତଃ ଦୁଇ ଶ୍ରେଣୀର ଜୀବ ଦେଖିବାକୁ ମିଳନ୍ତି ।

ଆବରଣ ଶୂନ୍ୟ କୀଟ, କଠିନ ଆବରଣ ଯୁକ୍ତ ଶମ୍ବୁକାଦି ।
କାତିଶୂନ୍ୟ ମତ୍ସ୍ୟ, କାତିଯୁକ୍ତ ମତ୍ସ୍ୟ ।
ଶଲ୍କଶୂନ୍ୟ ସରୀସୃପ, ଶଲ୍କଯୁକ୍ତ ସରୀସୃପ ।
ପାଳକଶୂନ୍ୟ ପକ୍ଷୀ 'ଯଥା ବାଦୁଡ଼ି', ପାଳକଯୁକ୍ତ ପକ୍ଷୀ ।
ବିରଳଲୋମା ସ୍ତନ୍ୟପାୟୀ, ଯଥା- ଗଣ୍ଡାର, ହସ୍ତୀ, ମହିଷ ଓ ଶୂକର ।
ଲୋମଶ ସ୍ତନ୍ୟପାୟୀ, ଯଥା- ଗୋ, ଲୋମଶ ହସ୍ତୀ ଓ ଗଣ୍ଡାର ।

ଅନୁଗ୍ରହ ସୃଷ୍ଟି ମଧ୍ୟ ଦୁଇ ପ୍ରକାର; ଯଥା - ବିରଳ ଲୋମା ନରସିଂହ, ଲୋମଶ ବାନର । ସୁତରାଂ ବାନରଠାରୁ ଯେ ମନୁଷ୍ୟ ଉତ୍ପନ୍ନ ହୁଏ, ଏହି ମତ ଠିକ୍ ନୁହେଁ । ଯେହେତୁ ବାନର ଓ ନରସିଂହ ଏକ ସମୟରେ ସୃଷ୍ଟ ହୋଇଅଛନ୍ତି । ଯେପରି ଲୋମଶ ହସ୍ତୀ (ସ୍ୱାମଥ) ବର୍ତ୍ତମାନ ନାହିଁ । ବିରଳ ଲୋମା ହସ୍ତୀ ଆମ୍ଭର ବାହନ । ଏହି ବିରଳଲୋମା ଜାତିର ଶ୍ରେଷ୍ଠ ସଂସ୍କରଣ ବିରଳ ଲୋମା ନରସିଂହ । ଏହାକୁ ମନୁଷ୍ୟର ଆଦିପୁରୁଷ କୁହାଯାଇପାରେ । ଲୋମଶ ଜାତିର ଶ୍ରେଷ୍ଠ ସଂସ୍କରଣ ବନମନୁଷ୍ୟ, କିନ୍ତୁ ଏହାଠାରେ ମନୁଷ୍ୟର କେତେକ ସାଦୃଶ୍ୟ ଥିବାରୁ ବାନର ସ୍ଥଳେ ବିକଳ୍ପରେ ନର ବୋଲି ନାମ ଦିଆଯାଇଅଛି । ନରସିଂହ ଜାତିର ଶ୍ରେଷ୍ଠ ସଂସ୍କରଣ ସଭ୍ୟ ମନୁଷ୍ୟ, ବନ ମନୁଷ୍ୟର ଶ୍ରେଷ୍ଠ ସଂସ୍କରଣ ଲୋମଶ ମନୁଷ୍ୟ । ସାଫେଲିୟାନ ଦ୍ୱୀପର ଉତ୍ତରାଂଶେ ଅଦ୍ୟାପି ଏହି ଲୋମଶ ମନୁଷ୍ୟ ଦେଖାଯା'ନ୍ତି । ଏମାନେ କିଉରାଇଲ୍ ନାମେ ଖ୍ୟାତ । ଏହି ଜାତି ଲୋମଶ ଓ ଅଶିକ୍ଷିତ ।

ଯେଉଁ ଯୁଗେ ୩୦ ବା ୪୦ ହାତ ଲମ୍ବର ଗୋଧିସାପ ଥିଲା ସେ ଯୁଗେ ଏହି ନରସିଂହଗଣ (ଅସୁରଗଣ) ବୃହତ୍‌କାୟ ଥିବାରେ ସନ୍ଦେହ କି? ସମ୍ପ୍ରତି ପୁରାଣାଦିରେ ବିରାଟ ଦାନବର ଯେଉଁ ଇତିହାସ ବର୍ଣ୍ଣିତ ଅଛି ତାହା ଏହି ସମୟର ମାନୁଷ ନରସିଂହ, ଏହା ନିଃସନ୍ଦେହ ।

## ଅଭିବ୍ୟକ୍ତିବାଦ

ବର୍ତ୍ତମାନ ଯୁଗେ ପାଶ୍ଚାତ୍ୟ ପ୍ରଦେଶେ ଲାମାର୍କ, ଡାରୁଉଇନ୍, ଓୟାଲେସ୍ ପ୍ରଭୃତି ପଣ୍ଡିତଗଣ ପ୍ରଥମେ ଅଭିବ୍ୟକ୍ତିବାଦ ବିସ୍ତର ଆଲୋଚନା କରିଅଛନ୍ତି । ଭାରତୀୟ ଆର୍ଯ୍ୟଗଣ ମଧ୍ୟ ଅତି ପ୍ରାଚୀନ କାଳେ ଏହି ତତ୍ତ୍ୱ ଆଲୋଚନା କରିଥିଲେ । ସେମାନଙ୍କର ଜନ୍ମାନ୍ତରବାଦ ଓ ଅବତାରବାଦ ଉପରେଏହି ଅଭିବ୍ୟକ୍ତିବାଦ ସମ୍ପୂର୍ଣ୍ଣ ନିର୍ଭର କରେ । ସେମାନଙ୍କ ମତେ ସୃଷ୍ଟିର ପ୍ରାରମ୍ଭରୁ କ୍ରମଶଃ କୃମି, କୀଟ, ମତ୍ସ୍ୟାଦି, ସରୀସୃପ, ପକ୍ଷୀ, ପଶୁ, ନର ଓ ତା'ପରେ ଧାର୍ମିକ ମନୁଷ୍ୟ ଜନ୍ମଗ୍ରହଣ କରନ୍ତି । * ମନୁଷ୍ୟ ପାପକର୍ମ କଲେ ନରକ ଭୋଗ କରି ଯଥାକ୍ରମେ ଏ ସକଳ ଯୋନି ଭ୍ରମଣାନ୍ତେ ପରିଶେଷରେ ଧାର୍ମିକ ମନୁଷ୍ୟ ଜନ୍ମପାଏ । ପ୍ରଥମେ ତିର୍ଯ୍ୟକ୍‌ସ୍ରୋତା ମତ୍ସ୍ୟ ଓ କୂର୍ମ ଅବତାର । ତତ୍ପରେ ଉର୍ଦ୍ଧ୍ୱସ୍ରୋତା ପକ୍ଷୀ, ଅର୍ବାକ୍‌ସ୍ରୋତା ପଶୁ ବରାହ ଅବତାର, ଅନୁଗ୍ରହ ସ୍ରୋତା ନର ନରସିଂହ ଅବତାର, ପରିଶେଷେ ଧାର୍ମିକ ପୁରୁଷ କୌମାର ବା ବାମନ ଅବତାର ସୃଷ୍ଟି ହୋଇଅଛି । ଏହାହିଁ ଅଭିବ୍ୟକ୍ତିବାଦର ମୂଳ ସିଦ୍ଧାନ୍ତ, ଯେହେତୁ ଏକମାତ୍ର ଜୀବ ଯଥାକ୍ରମେ ଏହି ସମସ୍ତ ଯୋନି ଭ୍ରମଣ କରି ପରିଶେଷେ ଧାର୍ମିକ ପୁରୁଷ ବା ଆର୍ଯ୍ୟବଂଶରେ ଜନ୍ମଗ୍ରହଣ କରେ । ପୃଥିବୀର ସ୍ତର ପରୀକ୍ଷା କରି ପାଶ୍ଚାତ୍ୟ ଭୂତତ୍ତ୍ୱବିଦ୍ ପଣ୍ଡିତଗଣ ମଧ୍ୟ ଏହିପରି ସୃଷ୍ଟିର କ୍ରମବିକାଶ (ଅଭିବ୍ୟକ୍ତି)ର ପରିଚୟ ପାଇଅଛନ୍ତି ।

କେଉଁ ଯୁକ୍ତିବଳେ ଆର୍ଯ୍ୟ ମନୀଷୀଗଣ ଏହି ସିଦ୍ଧାନ୍ତରେ ଉପନୀତ ହୋଇଥିଲେ ତାହାର ବିଶେଷ ବିବରଣ ଶାସ୍ତ୍ରରେ ଦେଖା ନ ଯାଉଥିଲେ ସୁଦ୍ଧା ସେଥିର ଆଭାସ ମିଳୁଅଛି । ଯାହାହେଉ ସେହି ଆଦିମ ଆର୍ଯ୍ୟସିଦ୍ଧାନ୍ତ ସଙ୍ଗେ ଆଜି ପାଶ୍ଚାତ୍ୟ ବୈଜ୍ଞାନିକ ସିଦ୍ଧାନ୍ତଏକମତ ହେବା ଦେଖି ସେହି ପୂର୍ବାଚାର୍ଯ୍ୟଙ୍କ ପ୍ରତି ସ୍ୱତଃ ହୃଦୟେ ଭକ୍ତି ଉଦୟ ହୁଏ ।

ପ୍ରୟୋଜନ ହେତୁ କୋଟି କୋଟି ଜନ୍ମଗ୍ରହଣ ପରେ ମନୁଷ୍ୟର ଅବୟବ ଏତାଦୃଶ ଉନ୍ନତି ଲଭିଅଛି ବୋଲି ଆଧୁନିକ ବୈଜ୍ଞାନିକମାନେ କହନ୍ତି । ସୁତରାଂ ଶାରୀରିକ ଗଠନର ଆବଶ୍ୟକତା ଓ ଅନାବଶ୍ୟକତାର ମୂଳରେ ପ୍ରୟୋଜନୀୟତା ବିଦ୍ୟମାନ । ଯେଉଁ କାର୍ଯ୍ୟଲାଗି ଏ ଜୀବର ସୃଷ୍ଟି ତାହାର ଅଙ୍ଗପ୍ରତ୍ୟଙ୍ଗ ସେହି କାର୍ଯ୍ୟୋପଯୋଗୀ ହୁଏ, ଅତଏବ ସକଳ ଦେହୀର ସାଧାରଣ କେତେକାଂଶ ଏକପ୍ରକାର; କିନ୍ତୁ କ୍ରମୋନ୍ନତି, ସୃଷ୍ଟି ବୈଚିତ୍ର୍ୟ ଓ ପ୍ରୟୋଜନୀୟତା ହିଁ ଅଭିବ୍ୟକ୍ତିବାଦର ମୂଳ କାରଣ । ସମ୍ଭବତଃ ଆର୍ଯ୍ୟଗଣ ସୁଦ୍ଧା ଏହିପରି ବିଚାରଦ୍ୱାରା ଅଭିବ୍ୟକ୍ତିବାଦର ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ଖ୍ରୀଷ୍ଟପୂର୍ବ ୧୪୫୨୮,୯,୭,୧୨ ଅବ୍ଦେ ମଘା ଗର୍ଭାନ୍ତର୍ଯୁଗର ଦ୍ୱିତୀୟାର୍ଦ୍ଧେ ପୃଥିବୀ ଭ୍ରମଣ କରିବାକୁ ଲାଗିଲା । ଏହି ଯୁଗର ମୃତ୍ତିକାସ୍ତର ପୂର୍ବ ଯୁଗର ପରି ନୁହେଁ । ଏ ଯୁଗେ ତାଳଜାତୀୟ ଓ ସୂକ୍ଷ୍ମପତ୍ର ବିଶିଷ୍ଟ ବୃକ୍ଷ, ଶୁକ, ଚିଲ ଓ ସାରସ ଜାତୀୟ ଜଳଚର ପକ୍ଷୀ ଏବଂ ସ୍ତନ୍ୟପାୟୀ ଜୀବ, ପ୍ରାଣୀ ଜନ୍ମିଲେ ।

---

*ବିଷ୍ଣୁ ପୁରାଣ, ୨୬ ଅଃ

ଏହି ଯୁଗେ ଉଷ୍ଣତାର ହ୍ରାସ ସଙ୍ଗେ ସଙ୍ଗେ ନରସିଂହ ମୂର୍ତ୍ତିର କିଞ୍ଚିତ୍ ଉନ୍ନତି ହୋଇଅଛି । ଏହି ଉନ୍ନତି ମୂର୍ତ୍ତି ହିଁ ଆଦିମାନବ ମୂର୍ତ୍ତି । ଏ ସମସ୍ତ ମନୁଷ୍ୟ କୃଷ୍ଣବର୍ଣ୍ଣ, ଏମାନଙ୍କ ମୁଖ ପ୍ରାୟ ପଶୁର ପରି । ପ୍ରକୃତି ମଧ୍ୟ ପ୍ରାୟ ତଦ୍ରୂପ । ନାସିକା ଚେପଟା, କପୋଳ ସ୍ଫୀତ, ଚକ୍ଷୁ କୁଟିଳ ଓ ଓଷ୍ଠ ମୋଟା । ଏମାନଙ୍କର ଗୃହ ନାହିଁ, ଅନାବୃତ ସ୍ଥାନେ ବାସ କରନ୍ତି । ଅନାବୃତାବସ୍ଥାରେ ମୃଗୟା ଲବ୍ଧ ମାଂସ ଆହାର କରି ପ୍ରକୃତି କୋଳେ ପ୍ରତିପାଳିତ । ଏ ସମୟରେ ବୃକ୍ଷରେ ଫଳ ନାହିଁ; ଋତୁର ବାଧା ନାହିଁ । ଏମାନେ ମେରୁ ପ୍ରଦେଶରେ ନିବାସ କରନ୍ତି । ଏହି ଯୁଗକୁ ପାଶ୍ଚାତ୍ୟ ତତ୍ତ୍ୱବିଦ୍‌ଗଣ (Oliogessir) ନାମ ଦେଇଅଛନ୍ତି । ପୃଥିବୀର ସ୍ତର ସମୂହର ଏହି ଅଂଶକୁ ଆର୍ଯ୍ୟଗଣ ବିତଳଖଣ୍ଡ ନାମ ଦେଇଛନ୍ତି । ଖ୍ରୀଷ୍ଟପୂର୍ବ ୧୨୨୦୦,୧୦,୨୦ ଅବ୍ଦେ ପୃଥିବୀ ୧୧ଶ ନକ୍ଷତ୍ରକୁ ଗଲା ।

**(୧୧) ପୂର୍ବଫାଲଗୁନୀ ଗର୍ଭାନ୍ତର୍ଯୁଗ :** ଏହି ଯୁଗର ପ୍ରାରମ୍ଭରେ ବୃକ୍ଷରେ ଫଳ ଦେଖାଦେଇଅଛି । ବରାହଗଣ ପୃଥିବୀ ବିଦୀର୍ଣ୍ଣ କରୁଛନ୍ତି; ନୃସିଂହ ପୁରୁଷ ଉନ୍ନତି ପଥେ ଅଗ୍ରସର ହେଉଅଛି; ବାମନ ସମ୍ପ୍ରତି ବାଳକ । ପୂର୍ବ ଯୁଗପରି ଏ ଯୁଗରେ ମଧ୍ୟ ଦୁଇଟି ନାମ ଅଛି । ଯଥା :-ମାଇଓସୀନ୍ ଓ ପ୍ଲାଇଓସୀନ୍ (Myocene and Pliocene) । ବ୍ରିଟିଶ ଦ୍ୱୀପପୁଞ୍ଜ ବ୍ୟତୀତ ବେଲଜିୟମ୍, ଫ୍ରାନ୍‌ସ, ଇନ୍ଦାର ଦେଶର ଅବବାହିକା, ଦକ୍ଷିଣ ଫ୍ରାନ୍‌ସ, ଆଲ୍‌ପସ୍ ପର୍ବତ, ସୁଇଜରଲ୍ୟାଣ୍ଡର ଉତ୍ତରପ୍ରଦେଶ ପର୍ଯ୍ୟନ୍ତ ସମୁଦ୍ର ବିସ୍ତୃତ ଥିଲା ।

ସ୍ପେନ୍ ପ୍ରଭୃତି ଅନେକ ଦେଶ ଦିଶିଲା, ଆଲ୍‌ପସ୍ ଓ ହିମାଳୟ ଉଚ୍ଚତର ହୋଇଅଛି । ବିନ୍ଧ୍ୟ ଓ ହିମାଳୟର ମଧ୍ୟବର୍ତ୍ତୀ, ଆସାମ, ତ୍ରିପୁରା, ପର୍ବତ, ଆଫଗାନିସ୍ଥାନ, ବେଲୁଚିସ୍ଥାନ, ସୁଲେମାନ୍ ପର୍ବତ ପର୍ଯ୍ୟନ୍ତ ଜଳମଗ୍ନ ଥିଲା, ସମ୍ପ୍ରତି ଦିଶୁଅଛି । ଦେଶର ଶୀତୋଷ୍ଣ ନ୍ୟୂନାଧିକ ଭାବରେ ଜଣାଗଲାଣି । ଆପିଲ୍, ଆଖ୍ରୋଟ୍, ପୀଚ, ଲୀଚ, ତାଳ, ଡିମିରି, ବଟ ବଂଶାଦି ଅନେକ ବୃକ୍ଷରେ ଫଳ ଫଳିଲାଣି । ଅଙ୍ଗୁଳି ବିଶିଷ୍ଟ ଘୋଟକ, ଗଣ୍ଡା ସଦୃଶ ଶୂକର, ହସ୍ତୀ ସଦୃଶ ଡାଇନୋସାରସ, ସିଂହ, ଭଲ୍ଲୁକ, ଉଷ୍ଟ୍ର ଓ ହରିଣ ପ୍ରଭୃତି ଜୀବରେ କାନନ ପରିପୂର୍ଣ୍ଣ । ମେରୁ ପ୍ରଦେଶସ୍ଥିତ କୃଷ୍ଣବର୍ଣ୍ଣ ପୁରୁଷର ନିବାସ ସ୍ଥାନେ ପୁଣି ଏକ ଜାତୀୟ ମାନୁଷର ଆବିର୍ଭାବ ହୋଇଅଛି । ଏମାନେ କୃଷ୍ଣକାୟଙ୍କର ଅଧସ୍ତନ ପୁରୁଷ । ମେରୁ ପ୍ରଦେଶରେ ଶୀତର ଆବିର୍ଭାବରୁ ପ୍ରଚଣ୍ଡ ଗ୍ରୀଷ୍ମ ହ୍ରାସ ହୋଇଯାଇଅଛି । ନବାବିର୍ଭୂତ ପୁରୁଷଙ୍କର ବର୍ଣ୍ଣ ତାମ୍ରାଭ ବା ରକ୍ତ, କେଶ କଳା, ସୂକ୍ଷ୍ମାଗ୍ର ନାସିକା, ମୁଖ ବୃହତ୍, ଓଷ୍ଠ ମୋଟା ଏବଂ ଶିକ୍ଷାଶକ୍ତି ଅତ୍ୟଳ୍ପ । ଏମାନେ ପ୍ରତିହିଂସାପରାୟଣ ଓ ଯୁଦ୍ଧପ୍ରିୟ । ଏ ସମୟେ ମେରୁ ପ୍ରଦେଶରେ କେବଳ ଏହି ମାନବଜାତି ବାସ କରନ୍ତି । ଏ ଅବସ୍ଥାରେ ଅନେକ ଦିନ ବିତିଗଲା । ଖ୍ରୀଷ୍ଟପୂର୍ବ ୧୧୩୨୫୦ରୁ ବ୍ରହ୍ମଚକ୍ର ବତ୍ସର ଗଣନାରେ ସତ୍ୟ ଯୁଗର ଆରମ୍ଭ ହୋଇଅଛି । ଏହି ପୂର୍ବଫାଲ୍‌ଗୁନୀ ଗର୍ଭାନ୍ତର୍ଯୁଗର ଦ୍ୱିତୀୟାର୍ଦ୍ଧକୁ ପାଶ୍ଚାତ୍ୟଗଣ ପ୍ଲିୟୋସୀନ ନାମ ଦେଇଅଛନ୍ତି ।

ଏହି ଯୁଗର ବିଷମ ବିପ୍ଳବର ଚିହ୍ନ ମିଳେ । ଭୂଗର୍ଭ ଶୀତଳ ହୋଇ ଏତେ ସଙ୍କୋଚିତ

ହେଲା ଯେ, କଠିନ ଭୂପୃଷ୍ଠ ନିମ୍ନକୁ ଯାଇ ଉଚ୍ଚ ନୀଚ ହେବାକୁ ଲାଗିଲା । କୌଣସି ସ୍ଥାନେ ଭୂ-ବିଦୀର୍ଣ୍ଣ ହୋଇ ସେହି ଗହ୍ୱରନିସୃତ ଦ୍ରବପଦାର୍ଥ ପର୍ବତମାଳାରେ ପରିଣତ ହେଲା । ଅଧୁନା ପର୍ବତଚୂଡ଼ା ତୁଷାରାଚ୍ଛନ୍ନ । ଦେଶ ମହାଦେଶ ଏହି ସମୟଠାରୁ ବର୍ତ୍ତମାନ ସ୍ଥିତିରେ ପରିଣତ ହୋଇଅଛି ।

ଶୀତାତପର ବୈଷମ୍ୟ ହେତୁ ଅଧୁନା ବିଭିନ୍ନ ଦେଶେ ବିଭିନ୍ନ ଉଦ୍ଭିଦ ଜାତ ହୋଇଅଛି । ମେରୁପ୍ରଦେଶେ ବରଫ ଜମିଅଛି । ଏହି ସମୟେ ସ୍ତନ୍ୟପାୟୀ ଜୀବର ପ୍ରାବଲ୍ୟ ଦେଖାଯାଏ । ଶୀତ ଯେତିକି ପ୍ରବଳ ହେଉଛି ମାନବର ଦେହ ତେତିକି ପରିଷ୍କାର ଦିଶୁଅଛି । କ୍ରମେ ପୀତ ବର୍ଣ୍ଣର ମନୁଷ୍ୟ ଦେଖା ଦେଇଅଛନ୍ତି । ଏମାନଙ୍କର କେଶ କୃଷ୍ଣ, ନାସା ସ୍ଥୂଳ, ଓଷ୍ଠ ମୋଟା, ମସ୍ତକ ଆୟତାକାର ଓ ଶ୍ମଶ୍ରୁ ସ୍ୱଳ୍ପ । ଏମାନେ ନୀତିଜ୍ଞାନଶୂନ୍ୟ, ପୂର୍ବଲୋକଙ୍କ ପରି ପ୍ରକୃତିଚାଳିତ ନହୋଇ ବିରୁଦ୍ଧାଚରଣ କରନ୍ତି । ମାର୍କଣ୍ଡେୟ ଋଷି କହିଛନ୍ତି, ଏମାନେ ବୃଷ୍ଟି ବାଧାରୁ ବଞ୍ଚିବା ଲାଗି ବୃକ୍ଷର ଶାଖାଦ୍ୱାରା ଗୃହ ନିର୍ମାଣ କରନ୍ତି । ବୃକ୍ଷର ବଲ୍କଳ ବସ୍ତ୍ରରୂପେ ବ୍ୟବହାର କରନ୍ତି । କଳ୍ପତରୁତୁଲ୍ୟ ବୃକ୍ଷରାଜି ଏମାନଙ୍କୁ ଅଶନ, ବସନ, ବାସ ଯୋଗାନ୍ତି । ଏହି ଅବସରରେ ମାନବର ଅବସ୍ଥାର ସାମାନ୍ୟ ପରିବର୍ତ୍ତନ ଘଟିଲା । ଏହାଙ୍କ ବର୍ଣ୍ଣ ପୀତାଭ, କେଶ କୃଷ୍ଣ, ଘନ ଶ୍ମଶ୍ରୁ, ଚକ୍ଷୁକୋଟରଗତ, କପାଳ ଉଚ୍ଚ, ଚିବୁକ ହ୍ରସ୍ୱ, ଓଷ୍ଠ ମୋଟା ଓ ଲମ୍ବା । ଏମାନେ ଶାଖାଗୃହ ନିର୍ମାଣ କରି ବାସ କରନ୍ତି ଏବଂ ଆଖେଟାମୋଦରେ ଦିନଯାପନ କରନ୍ତି । ଏମାନେ ମେରୁ ପ୍ରଦେଶରୁ ଅବତରଣ କରି ଉଗାଣ୍ଡା ପ୍ରଦେଶେ ବାସ କରିଅଛନ୍ତି । ଉଗାଣ୍ଡା ପ୍ରଦେଶ ସର୍ବାପେକ୍ଷା ଉଚ୍ଚ ଓ ପ୍ରାଚୀନ । ଅଦ୍ୟାପି ଏମାନେ ରେଡ଼ ଇଣ୍ଡିୟାନ୍ ନାମେ ଖ୍ୟାତ । କଲମ୍ବସ୍ ୧୪୯୨ ଖ୍ରୀଷ୍ଟାବ୍ଦରେ ଆମେରିକା ଯାଇ ଦେଖିଛନ୍ତି ଏମାନେ ସର୍ବେ ବିନୟୀ, ଭୟାଳୁ, ଶିଶୁମତି, ସଦାପ୍ରଫୁଲ୍ଲ ଓ ଉଲଗ୍ନ ଥାନ୍ତି । ଏମାନଙ୍କର ଅସ୍ତ୍ରଶସ୍ତ୍ର ନଥିଲା । ବେତ ଅଗରେ ମାଛକଣ୍ଟା ଗୁଞ୍ଜି ଶର ପ୍ରସ୍ତୁତ କରୁଥିଲେ । ସମସ୍ତେ ସୂର୍ଯ୍ୟ ଉପାସକ । ଏମାନେ ମେରୁପ୍ରଦେଶବାସୀଙ୍କ ବଂଶଧର । କ୍ରମେ ଏହି ରକ୍ତବର୍ଣ୍ଣର ମନୁଷ୍ୟ ଲୋପ ପାଇଲେ । ଏହାଙ୍କ ପରିବର୍ତ୍ତେ ପୀତବର୍ଣ୍ଣ ଜାତି ମେରୁପ୍ରଦେଶର ଅଧିବାସୀ ହେଲେ ।

ଖ୍ରୀଷ୍ଟପୂର୍ବ ୧୯୬୮,୧୬ ଦିନ ପର୍ଯ୍ୟନ୍ତ ପୃଥିବୀ ପୂର୍ବଫାଲ୍‌ଗୁନୀ ନକ୍ଷତ୍ରେ ଭ୍ରମଣ କରି ଦ୍ୱାଦଶ ନକ୍ଷତ୍ରେ ଉପନୀତ ହେଲା ।

**(୧୨) ଉତ୍ତରଫାଲ୍‌ଗୁନୀ ଗର୍ଭାନ୍ତର୍ଯୁଗ** :- ଏହି ଯୁଗେ ପୃଥିବୀର ସର୍ବୋପରି ସ୍ତର ନ୍ୟସ୍ତ ହୋଇଅଛି । ଏହିସ୍ତର ମଧ୍ୟ ଦୁଇଭାଗେ ବିଭକ୍ତ, ଯଥା : ପ୍ଲିଷ୍ଟୋସିନ୍ ଓ ଆଧୁନିକ (Pleestocene & Recent) । ଏହି ସ୍ତରର ଅନେକ ସ୍ତନ୍ୟପାୟୀ ଜୀବର କଙ୍କାଳ ମିଳିଅଛି । କିନ୍ତୁ ସେ ସକଳର ଅସ୍ତିତ୍ୱ ଆଧୁନିକ ସ୍ତରେ ଦେଖାଯାଏ ନାହିଁ ।

ଏ ସମୟରେ ବିଶେଷ ଶୀତ ହେଲା । ମେରୁ ପ୍ରଦେଶଠାରୁ ୟୁରୋପ ଓ ଉତ୍ତର ଆମେରିକା ପର୍ଯ୍ୟନ୍ତ ତୁଷାରାବୃତ । ଅନେକ ସ୍ଥଳଚର ଓ ଜଳଚର ଜୀବ ନିର୍ମୂଳ ହେଲେ । ଏହାଙ୍କ ସ୍ଥାନେ ଉତ୍ତରକୁ ବିବିଧ ଜୀବ ଆସି ବାସ କରନ୍ତି ।

ଏହି ସମୟରେ ଏକଶ୍ରେଣୀର ଶ୍ୱେତବର୍ଣ୍ଣ ମାନବ ଦେଖାଦେଇ ଅଛନ୍ତି । ଏହାଙ୍କ ଆଦିପୁରୁଷଙ୍କ ନାମ ବ୍ରହ୍ମା । ଖ୍ରୀଷ୍ଟପୂର୍ବ ୭୦୬୪ ମଧ୍ୟରେ ଏହାଙ୍କର ଜନ୍ମ ହୋଇଅଛି । ଏ ବ୍ୟକ୍ତି ହିଁ ପୌରାଣିକ ମତର କୌମାରସୃଷ୍ଟି ନାମକ ନବମ ସର୍ଗ ଅନ୍ତର୍ଯୁଗର ପ୍ରଥମ ସୃଷ୍ଟି । ଏହାଙ୍କ ସନ୍ତାନ ସନ୍ତତି ହିଁ ଆର୍ଯ୍ୟ ନାମେ କଥିତ । ଏହାଙ୍କର ଅନ୍ୟତମ ନାମ ସ୍ୱୟମ୍ଭୂ । ଏହାଙ୍କ ପୁତ୍ର ସ୍ୱୟମ୍ଭୂବ । ସ୍ୱୟମ୍ଭୂବଙ୍କ ପୁତ୍ର ସ୍ୱାୟମ୍ଭୁବମନୁ । ଏ ମହାତ୍ମା ସ୍ୱୟମ୍ଭୂଙ୍କ ପୌତ୍ର ଅଟନ୍ତି । ଏ ପ୍ରକୃତିର ଅନୁଗ୍ରହ ଉପରେ ନିର୍ଭର କରନ୍ତି ନାହିଁ ।

ସୂର୍ଯ୍ୟ ସିଦ୍ଧାନ୍ତରେ ଲିଖିତ ଅଛି ୪୭୪୦୦ ବତ୍ସର ପର୍ଯ୍ୟନ୍ତ ଗ୍ରହ. ନକ୍ଷତ୍ର, ଦେବ ଓ ଦୈତ୍ୟ ସକଳ ସୃଷ୍ଟିହୋଇ ତା'ପରେ ସଭ୍ୟମାନବ ଜାତିର ସୃଷ୍ଟି ହୋଇଅଛି । ଏହି ଯୁଗଠାରୁ ଭାରତବର୍ଷରେ ଆର୍ଯ୍ୟଗଣ ଜନ୍ମଗ୍ରହଣ କରି ବହୁ ଗବେଷଣା ପୂର୍ବକ ଶ୍ରୁତି, ସ୍ମୃତି, ପୁରାଣ, ଇତିହାସ ପ୍ରଭୃତି ବହୁ ଉପାଦେୟ ଗ୍ରନ୍ଥମାନ ରଚନା କରି ମାନବ ଜାତିର ଅସୀମ କଲ୍ୟାଣ ସାଧନ କରିଅଛନ୍ତି । ବର୍ତ୍ତମାନ ଆଦିମ ଅନ୍ଧକାର ତିରୋହିତ ହୋଇ ଅତ୍ୟୁଜ୍ଜ୍ୱଳ ଆଲୋକରେ ଜଗତ ଉଦ୍ଭାସିତ । ଅତଃପର ପୃଥିବୀ ଖ୍ରୀଷ୍ଟପୂର୍ବ ୬୯୧୦୩ ଅବ୍ଦେ ସିଂହ ରାଶିଭୁକ୍ତ ଉତ୍ତରଫାଲ୍‌ଗୁନୀର ପ୍ରଥମ ପାଦେ ଭ୍ରମଣ ଶେଷକରି କନ୍ୟା ରାଶିଭୁକ୍ତ ଦ୍ୱିତୀୟପାଦେ ଉପସ୍ଥିତ ହେଲା ।

**(୧୩) କନ୍ୟାରାଶି ବା କନ୍ୟାଗର୍ଭାନ୍ତର୍ଯୁଗ :** ଏହି ସମୟେ ଶତରୂପା କନ୍ୟାର ସହିତ ବ୍ରହ୍ମାଙ୍କର ପୌତ୍ର ସ୍ୱାୟମ୍ଭୁବମନୁଙ୍କର ପ୍ରଥମ ବିବାଦ ହୋଇଥିଲା । ଏହି ସ୍ୱାୟମ୍ଭୁବମନୁ ଓ ଶତରୂପା ହିଁ ପ୍ରଥମ ବିବାହିତ ଦମ୍ପତି । ଏମାନେ ହିଁ ବାଇବେଲ୍ ଏ କୋରାନ୍ ଲିଖିତ ଆଦମ ଏବଂ ଇଭ୍ ବା ହାବା । ଏହିପରି ରାଶିନକ୍ଷତ୍ରର ନାମକୁ ନେଇ ବ୍ୟୁତ୍ପତ୍ତି କ୍ରମେ ନାନା ପ୍ରମାଣ ଅବଲମ୍ବନ ପୂର୍ବକ ଗୋଟିଏ ସୁଚିନ୍ତିତ ସୃଷ୍ଟିତତ୍ତ୍ୱ ଲେଖାଯାଇଅଛି । ମଦୀୟ ଗ୍ରନ୍ଥର ଆଲୋଚ୍ୟ ବିଷୟ ପ୍ରଧାନତଃ ଧର୍ମପ୍ରସଙ୍ଗ ହେତୁ ସେ ସମସ୍ତର ବର୍ଣ୍ଣନାବାହୁଲ୍ୟରୁ ବିରତ ହେଲି । ଅଚିନ୍ତ୍ୟ ମହିମା ଭଗବାନଙ୍କର ସୃଷ୍ଟି ତତ୍ତ୍ୱର ମୂଳରେ ଏହିପରି କେତେ ଯେ ରହସ୍ୟ ବିଦ୍ୟମାନ ତାହାର ଇୟତ୍ତା ନାହିଁ ।

## ପ୍ରଳୟ

ପୂର୍ବ ପ୍ରବନ୍ଧରେ ସୃଷ୍ଟି ତତ୍ତ୍ୱ ସମ୍ବନ୍ଧେ ଶାସ୍ତ୍ରୀୟ ଅଭିମତ ଆଲୋଚନା କରାଯାଇଛି । ଅତଃପର ପ୍ରଳୟର ବିଷୟ ଆଲୋଚନା କରିବା ପୂର୍ବ ସ୍ଥିତି ସମ୍ବନ୍ଧେ ଦୁଇ ଚାରି ପଂକ୍ତି ଲେଖିବା ଉଚିତ ମନେକରୁଁ, ଯେହେତୁ ସୃଷ୍ଟି ସ୍ଥିତି ପ୍ରଳୟ ବୋଲି କ୍ରମାନ୍ୱୟରେ କୁହାଯାଇଥାଏ । ସ୍ଥିତି ଲାଗି ହିଁ ସୃଷ୍ଟିର ଏ ସୌନ୍ଦର୍ଯ୍ୟ । ସ୍ଥିତି ନଥିଲେ ସୃଷ୍ଟି ମହାପ୍ରାନ୍ତର ବା ମରୁଭୂମିରେ ପରିଣତ ହୋଇ ରହିଥା'ନ୍ତା । ସ୍ଥିତିର ସୌନ୍ଦର୍ଯ୍ୟରେ ଭଗବାନଙ୍କ ସତ୍ତା ଉପଲବ୍ଧି କରିବାକୁ ହୁଏ । ସ୍ଥିତି ଲାଗି ହିଁ ମହର୍ଷିମାନଙ୍କର ମହାମନ୍ତ୍ର ଓଁକାର ଧ୍ୱନିରେ ଗଗନ ଅନୁନାଦିତ । ନବ ଦମ୍ପତିର ଦାମ୍ପତ୍ୟ ପ୍ରେମ, ଜନନୀର ସନ୍ତାନ ବାତ୍ସଲ୍ୟ ଜୀବନକୁ ସରସ କରେ । ଭଗବାନଙ୍କର

ଲୀଳା ଅଜ୍ଞେୟ ଓ ଅସୀମ । ଏହି ବିଶ୍ୱବ୍ରହ୍ମାଣ୍ଡେ ଭଗବାନ ମାନବକୁ ଜ୍ଞାନବାନରୂପେ ସୃଷ୍ଟିକରି ତାହାର ଆନନ୍ଦ ଓ ସୌନ୍ଦର୍ଯ୍ୟ ଉପଭୋଗ ପାଇଁ ଶସ୍ୟଶ୍ୟାମଳା ଧରଣୀ, ପ୍ରସ୍ଫୁଟିତ କୁସୁମସମୂହର ସୁଗନ୍ଧ, ବିହଙ୍ଗକୁଳର ମଧୁର କଳକାକଳି ପ୍ରଭୃତି ଅସଂଖ୍ୟ ଶୋଭାର ଭଣ୍ଡାରମୁକ୍ତ କରିଥିଲେ ସୁଦ୍ଧା ଏହି ଭ୍ରାନ୍ତ ମାନବ ବିଶ୍ୱର ମହା କୋଳାହଳରେ ପଡ଼ି ସେହି ପରମେଶ୍ୱରଙ୍କର ଅଚିନ୍ତନୀୟ ମହିମା ଭୁଲି ଅହରହ ସାଂସାରିକ ଆପାତମଧୁର ସୁଖରେ ନିମଗ୍ନ । କିନ୍ତୁ ମାନବ ଜାତି ମଧ୍ୟରୁ କେହି କେହି ମହାତ୍ମା ସେହି ବିଚିତ୍ରକର୍ମାଙ୍କର ମହତ୍ତ୍ୱ ଉପଲବ୍ଧିପୂର୍ବକ ଅସୀମ ଜ୍ଞାନରାଜ୍ୟରେ ବିଚରଣ କରି ମାନବଜାତିର କଲ୍ୟାଣ ଲାଗି ଅମୂଲ୍ୟ ଶାସ୍ତ୍ର ରଚନା କରି ଯାଇଅଛନ୍ତି । ସେମାନଙ୍କର ଭୂୟୋଦର୍ଶୀତାର ଫଳରୁ ହିଁ ପୂର୍ବୋକ୍ତ ସୃଷ୍ଟି ସ୍ଥିତି ପ୍ରଳୟର ଯତ୍‌କିଞ୍ଚିତ୍ ଆଭାସ ମିଳେ ।

ଅତଃପର ପ୍ରଳୟର କଥା ବିଚାର କରାଯାଉ । ବ୍ରହ୍ମ ଭିନ୍ନ ଜଗତର କୌଣସି ବସ୍ତୁ ନିତ୍ୟ ନୁହେଁ । ଶାସ୍ତ୍ରକାରଗଣ ପ୍ରଳୟ ଶବ୍ଦର ବ୍ୟୁତ୍ପତ୍ତି କହିଯାଇଅଛନ୍ତି ଯେ, ''ପ୍ରଲୀୟନ୍ତେଽସ୍ମିନ୍ନିତି ପ୍ରଳୟଃ'' । ପ୍ରଳୟ ପଦର ଅର୍ଥ - ସକଳ ଭୂତର ଲୟାଧାର କାଳ । ପୌରାଣିକଙ୍କ ମତେ ଏହା ନିତ୍ୟ, ନୈମିତ୍ତିକ, ପ୍ରାକୃତ ଓ ଆତ୍ୟନ୍ତିକ ଭେଦେ ଚତୁର୍ବିଧ, ଯଥା -

ନିତ୍ୟଂ ନୈମିତ୍ତିକଂ ଚୈବ ପ୍ରାକୃତାତ୍ୟନ୍ତକୌତଥା
ନିତ୍ୟଂ ସଂକୀର୍ତ୍ତ୍ୟତେ ନାମ୍ନା ମୁନିଭିଃ ପ୍ରତିସଂଚରଃ ।।

ଉକ୍ତ ଚତୁର୍ବିଧ ପ୍ରଳୟ ମଧ୍ୟରୁ ପ୍ରତିନିୟତ ଲୋକରେ ଯେଉଁ କ୍ଷୟ ହୁଏ ତାହାହିଁ ନିତ୍ୟ ପ୍ରଳୟ ନାମେ ଅଭିହିତ । କଳ୍ପାବସାନେ ତ୍ରିଲୋକର ଯେଉଁ କ୍ଷୟ ହୁଏ ତାହାହିଁ ନୈମିତ୍ତିକ ବା ବ୍ରହ୍ମ ପ୍ରଳୟ ନାମେ କଥିତ । ଯେଉଁ ସମୟେ ମହଦାଦିବିଶେଷ ପର୍ଯ୍ୟନ୍ତ କ୍ଷୟ ହୋଇଯାଏ ତାହାହିଁ ପ୍ରାକୃତ ପ୍ରଳୟ ଏବଂ ଜ୍ଞାନବଶତଃ ଯୋଗୀଗଣର ପରମାତ୍ମାରେ ଯେଉଁ ଲୟ ହୁଏ ତାହାହିଁ ଆତ୍ୟନ୍ତିକ ପ୍ରଳୟ । ନୈମିତ୍ତିକ ପ୍ରଳୟରେ ଭାଗବାନ୍ ପ୍ରଜାପତି ପ୍ରଜାକୁ ଆତ୍ମସ୍ଥ କରନ୍ତି । ଶତବର୍ଷ ଦାରୁଣ ଅନାବୃଷ୍ଟି ହୁଏ । ଲୋକ ଓ ଶସ୍ୟ ମୃତ୍ତିକାରେ ପରିଣତ ହୁଅନ୍ତି । ସୂର୍ଯ୍ୟ ଅର୍ଣ୍ଣବରୁ ଜଳରାଶି ଶୋଷଣ ନକରି ବସୁନ୍ଧରାକୁ ଦଗ୍ଧ କରନ୍ତି । ସୂର୍ଯ୍ୟଙ୍କ ପ୍ରଦୀପ୍ତାଗ୍ନି ସମସ୍ତ ଭସ୍ମୀଭୂତ କରେ । ମହର୍ଲୋକ ପର୍ଯ୍ୟନ୍ତ ଦଗ୍ଧ ହୁଏ । ଅନ୍ୟ ଦିଗରେ ଭୟଙ୍କର ମେଘକାଳ ଚତୁର୍ଦ୍ଦିଗରୁ ଉଠି ଅଜସ୍ର ଧାରାରେ ବର୍ଷଣ କରେ । ବହୁ ବର୍ଷଣରେ ବିଶ୍ୱଗ୍ରାସୀ ବିଭାବସୁ ଶାନ୍ତ ହୁଏ । ଜଳପ୍ରବାହେ ଦ୍ୱୀପଶୈଳସମନ୍ୱିତା ଧରା ସାଗରରେ ପରିଣତ ହୁଏ । ଏହି ଏକାର୍ଣ୍ଣବୀଭୂତ ଜଳ ଉପରେ ଭଗବାନ ଯୋଗନିଦ୍ରାବଲମ୍ବନେ ଶୟନ କରନ୍ତି ।

ପ୍ରାକୃତିକ ପ୍ରଳୟର ଦ୍ୱିପରାର୍ଦ୍ଧ ଅତୀତ ହେଲେ ମହାଦେବ ଅଗ୍ନି ଓ ସୂର୍ଯ୍ୟ ରୂପେ ସମସ୍ତ ବିଶ୍ୱ ଦଗ୍ଧ କରନ୍ତି । ସମସ୍ତ ଦେବଗଣର ଶରୀର ଭସ୍ମୀଭୂତ ହେଲାପରେ ଏକମାତ୍ର ସାକ୍ଷୀରୂପିଣୀ ଭଗବତୀ ଶିବଙ୍କର ସମୀପବର୍ତ୍ତିନୀ ହୁଅନ୍ତି । ପରେ ଶିବମୂର୍ତ୍ତି ଐଶ୍ୱରିକ ଯୋଗାବଲମ୍ବନ କରି

ଦେବୀଙ୍କ ସଙ୍ଗେ ନୃତ୍ୟେ ରତ ହୋଇ ସ୍ୱୀୟ ଇଚ୍ଛାରେ ପ୍ରକୃତିସ୍ଥ ହୁଅନ୍ତି । ସମସ୍ତ ପୃଥିବୀ ଜଳେ ବିଲୀନ ହୁଏ । ଅଗ୍ନି ସେହି ଜଳତତ୍ତ୍ୱ ଗ୍ରାସକରେ । ଏହି ରୂପେ ସଗୁଣ ତେଜ ବାୟୁରେ, ସଗୁଣ ବାୟୁ ଆକାଶେ, ସଗୁଣ ଆକାଶ ଭୂତାଦିରେ, ଇନ୍ଦ୍ରିୟ ସକଳ ତୈଜସେ ବିଲୀନ ହୁଅନ୍ତି । ବୈକାରିକ ତୈଜସ, ଭୂତାଦି ତ୍ରିବିଧ ଅହଂକାର ମହତେ, ମହତ୍ ମଧ୍ୟ ଅହଂକାର ତ୍ରୟ ସଙ୍ଗେ ଧ୍ୱଂସପ୍ରାପ୍ତ ହୁଏ । ପ୍ରଧାନ ପୁରୁଷ ଜନ୍ମ ମରଣରହିତ; କିନ୍ତୁ ଉକ୍ତ ପ୍ରଳୟରେ ମହେଶ୍ୱରଙ୍କ ଇଚ୍ଛାରେ ତାହାଙ୍କର ମଧ୍ୟ ଲୟ ହୁଏ । ଅତଏବ ରୁଦ୍ର ସଂହାର ମୂର୍ତ୍ତି ନାମେ ଅଭିହିତ । ବିଷ୍ଣୁପୁରାଣ ନ୍ୟୂନାଧିକଭାବେ ପୂର୍ବମତର ଅନୁସରଣ କରି ଅନନ୍ତ ସମୁଦ୍ରେ ଶେଷ ଶଯ୍ୟାରେ ବିଷ୍ଣୁଙ୍କ ନିଦ୍ରା ବିଷୟକ ଗୋଟିଏ ସମୟର ନିର୍ଘଣ୍ଟ ଲିପିବଦ୍ଧ କରିଅଛନ୍ତି । ତାହାଙ୍କ ମତେ ମନୁଷ୍ୟଗଣର ଏକ ବତ୍ସରରେ ଦେବଗଣର ଏକ ଅହୋରାତ୍ର ହୁଏ । ତଦନୁଯାୟୀ ମନୁଷ୍ୟର ୩୬୦ ବର୍ଷରେ ଦେବଗଣର ଏକ ବତ୍ସର । ବାର ହଜାର ଦେବ ବତ୍ସରରେ ମନୁଷ୍ୟଗଣର ଚାରିଯୁଗ । ଏହି କ୍ରମେ ଚାରିଯୁଗ ସହସ୍ର ବତ୍ସର ପରିମିତ କାଳରେ ବ୍ରହ୍ମାଙ୍କର ଏକଦିନ ହୁଏ ଏବଂ ତତ୍ ପରିମିତ କାଳରେ ଏକରାତ୍ରି ହୁଏ । ଏହି ରାତ୍ରିକାଳ ପ୍ରଳୟ, ଦିବା ଭାଗ ସୃଷ୍ଟି ।

ପ୍ରାକୃତିକ ପ୍ରଳୟରେ ସମସ୍ତ ଜଗତ୍ ନିଜ ନିଜ ପ୍ରକୃତିରେ ବିଲୀନ ହୁଏ । ଏହି ପ୍ରକୃତି ତ୍ରିଗୁଣମୟୀ, ବ୍ୟକ୍ତାବ୍ୟକ୍ତରୂପିଣୀ । ଏତଦ୍‌ବ୍ୟତିରିକ୍ତ ସମସ୍ତର ଅଧିଷ୍ଠାତା ରୂପେ ଏକ ପୁରୁଷ ବିଦ୍ୟମାନ । ସେ ଜ୍ଞାନସ୍ୱରୂପ । ଅତଃପର ସମସ୍ତେ ତାହାଙ୍କଠାରେ ଲୀନ ହେବେ । ଏକ ଅଖଣ୍ଡ ନିତ୍ୟାନନ୍ଦ ବ୍ରହ୍ମବ୍ୟତୀତ ଅନ୍ୟକିଛି ରହିବ ନାହିଁ । ଏହି ପ୍ରାକୃତିକ ପ୍ରଳୟ ଦ୍ୱିପରାର୍ଦ୍ଧ ପର୍ଯ୍ୟନ୍ତ ରହେ ।

ନୈୟାୟିକଙ୍କ ମତେ ପ୍ରଳୟ ଦୁଇ ପ୍ରକାର, ଯଥା - ଖଣ୍ଡପ୍ରଳୟ ଓ ମହାପ୍ରଳୟ । ସାଂଖ୍ୟ କହେ ପ୍ରଳୟ ପ୍ରକୃତିର ପରିଣାମ ମାତ୍ର । ଯାହାହେଉ ସୃଷ୍ଟ ପଦାର୍ଥର ପ୍ରଳୟ ବା ଧ୍ୱଂସ ଅବଶ୍ୟମ୍ଭାବୀ । ଓଡ଼ିଶାର ଭୀଷଣ ବନ୍ୟା ଓ ବିହାରର ଭୂକମ୍ପ ପ୍ରଭୃତିର ଭୟାବହ ଦୃଶ୍ୟ ଖଣ୍ଡପ୍ରଳୟର ସୂଚନା ମାତ୍ର । ଅନେକ ବୈଜ୍ଞାନିକଗଣ ଓ ଭୂତତ୍ତ୍ୱବିତ୍‌ଗଣ ସୁଦ୍ଧା ଏହି ବିଶ୍ୱମଣ୍ଡଳରେ ଅନେକବାର ପ୍ରଳୟର ବିଭୀଷିକା ଘଟିଅଛି ବୋଲି କହନ୍ତି ।

"ପ୍ରଳୟପୟୋଧି ଜଳେ ଧୃତ ବାନସି ବେଦଂ" ପ୍ରଭୃତି ବାକ୍ୟଦ୍ୱାରା ଏ ଘଟଣାବଳୀ କାବ୍ୟଶାସ୍ତ୍ରରେ ବର୍ଣ୍ଣିତ ଅଛି ।

## ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ

ଶାସ୍ତ୍ରରେ ଅନେକ ଭୁବନର ନାମ ଲେଖାଥିଲେ ସୁଦ୍ଧା ବିଶେଷ ଭାବରେ ସ୍ୱର୍ଗ ମର୍ତ୍ତ୍ୟ ପାତାଳର ନାମ ହିଁ ଲୋକମୁଖରୁ ସମଧିକ ଭାବେ ଶୁଣାଯାଉଅଛି । ଅତଏବ କ୍ରମାନ୍ୱୟରେ ଏଠାରେ ଉକ୍ତ ବିଷୟର ବିଚାର କରାଯାଉ । ଶ୍ରୁତି କହେ "ସ୍ୱର୍ଗ କାମୋଯଜେତ", ସ୍ୱର୍ଗକାମୀ ଯାଗଯଜ୍ଞାନୁଷ୍ଠାନ ଫଳେ ସ୍ୱର୍ଗସୁଖ ପ୍ରାପ୍ତ ହୁଏ । ଏହି ଭୂଲୋକେ ନିରବଚ୍ଛିନ୍ନ ସୁଖଭୋଗ ଘଟେନାହିଁ,

ଯେହେତୁ ଏହା ଦୁଃଖ ମିଶ୍ରିତ । ଅତଏବ ସୁଖଭୋଗ ଲାଗି ସ୍ୱର୍ଗ ନିର୍ଦ୍ଦିଷ୍ଟ । ସ୍ୱର୍ଗରେ ଜରାମରଣ ଶୋକବ୍ୟାଧିଭୟ ନାହିଁ । ଶାସ୍ତ୍ର କହେ ପୁଣ୍ୟ କର୍ମାନୁଷ୍ଠାନଫଳେ ସ୍ୱର୍ଗସୁଖ ପ୍ରାପ୍ତିହୁଏ, କିନ୍ତୁ ତାହା ମୃତ୍ୟୁର ପରପାରେ ।

ଆର୍ଯ୍ୟ ଦାର୍ଶନିକଗଣ ସ୍ୱର୍ଗଶବ୍ଦର ଅର୍ଥ ଦୁଃଖରହିତ ସୁଖ ବିଶେଷ ବୋଲି ନିର୍ଦ୍ଦେଶ କରିଅଛନ୍ତି । କିନ୍ତୁ ସ୍ୱର୍ଗସୁଖ ସୁଦ୍ଧା ଚିରସ୍ଥାୟୀ ନୁହେଁ; ପୁଣ୍ୟକ୍ଷୟେ ତାହାର ଅବସାନ; ତହିଁରେ ଆତ୍ୟନ୍ତିକ ଦୁଃଖନିବୃତ୍ତ ହୁଏ ନାହିଁ । ବୈଦିକ ଯଜ୍ଞାନୁଷ୍ଠାନ ହିଂସାସାପେକ୍ଷ, ଏଣୁ ପୁଣ୍ୟ ସଙ୍ଗେ ସଙ୍ଗେ ଯତ୍‌କିଞ୍ଚିତ୍ ପାପ ମଧ୍ୟ ସଞ୍ଚିତ ହୋଇଥାଏ। ଅତଏବ ସ୍ୱୋପାର୍ଜିତ ପୁଣ୍ୟରାଶିର ଫଳସ୍ୱରୂପ ସ୍ୱର୍ଗସୁଖର ଉପଭୋଗ ସଙ୍ଗେ ସଙ୍ଗେ ହିଂସାଜନିତ ପାପାଂଶର ଫଳସ୍ୱରୂପ ଯତ୍‌କିଞ୍ଚିତ୍ ଦୁଃଖ ମଧ୍ୟ ଅନୁଭବ କରିବାକୁ ହୁଏ । କିନ୍ତୁ ସ୍ୱର୍ଗୀୟ ପୁରୁଷ ସୁଖର ମୋହରେ ପ୍ରମୁଗ୍ଧ ହୋଇ ସେହି ଦୁଃଖ କଣିକାକୁ ଗଣନା କରେ ନାହିଁ । କର୍ମର ତାରତମ୍ୟାନୁସାରେ ସ୍ୱର୍ଗରେ କର୍ମଫଳର ମଧ୍ୟ ଉତ୍କର୍ଷାପକର୍ଷ ବିଦ୍ୟମାନ । ସୁତରାଂ ସ୍ୱର୍ଗବାସୀ ସୁଦ୍ଧା ସମ୍ପୂର୍ଣ୍ଣ ଦୁଃଖବିନିର୍ମୁକ୍ତ ନୁହନ୍ତି । ଏବଂଚ ସ୍ୱର୍ଗସୁଖ ଧ୍ୱଂସଶୀଳ । ଏହା ଚିରସ୍ଥାୟୀ ନୁହେଁ ବୋଲି ଶ୍ରୀକୃଷ୍ଣ ଭଗବାନ୍ ଅର୍ଜୁନଙ୍କୁ ଉପଦେଶ ଛଳେ କହିଅଛନ୍ତି :-

''ତେ ତଂଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟ ଲୋକେ ବିଶନ୍ତି ।''

ଅର୍ଥାତ୍ ସେମାନେ ବିଶାଳ ସ୍ୱର୍ଗଲୋକ ଭୋଗ କରି ପୁଣ୍ୟକ୍ଷୟେ ମର୍ତ୍ତ୍ୟଲୋକରେ ପ୍ରବେଶ କରନ୍ତି । ସ୍ୱର୍ଗଲୋକ ବିଶ୍ୱାସଶୀଳ ପ୍ରତ୍ୟେକ ଆସ୍ତିକଙ୍କର ଦୃଢ଼ସିଦ୍ଧାନ୍ତ ଏହି ଯେ, ମାନବ ତାହାର ମୃତ୍ୟୁପରେ ଗୋଟିଏ ସୂକ୍ଷ୍ମ ଶରୀର ଧାରଣକରି ଉକ୍ତ ଶରୀରରେ ସ୍ୱର୍ଗସୁଖ ଅନୁଭବ କରେ । କିନ୍ତୁ ଚାର୍ବାକାଦି ନାସ୍ତିକମାନେ ସ୍ୱର୍ଗର ଅସ୍ତିତ୍ୱ ସ୍ୱୀକାର ନକରି ତାହା କବିକଳ୍ପନା ବୋଲି ଉପହାସ କରିଥାନ୍ତି ।

ମନୁ ଲେଖିଅଛନ୍ତି :-
ଯଦ୍ୟାଚରତି ଧର୍ମଂସଃ ପ୍ରାୟଶୋଽଧର୍ମମଳ୍ପଶଃ ।
ତୈରେବଚାବୃତୋଭୂତୈଃ ସ୍ୱର୍ଗେସୁଖମୁପାସ୍ନୁତେ ।।
ଯଦିତୁ ପ୍ରାୟଶୋଽଧର୍ମଂ ସେବତେ ଧର୍ମ ମଳ୍ପଶଃ ।
ତୈର୍ଭୂତୈଃ ସପରିତ୍ୟକ୍ତୋ ଯାମୀଃ ପ୍ରାପ୍ନୋତିଯାତନାଃ ।।

ଜୀବ ଯଦି ଅଧିକାଂଶ ଧର୍ମାନୁଷ୍ଠାନ ସଙ୍ଗେ ସଙ୍ଗେ ସ୍ୱଳ୍ପ ଅଧର୍ମାଚରଣ କରିଥାଏ, ତେବେ ସେ ପୃଥିବ୍ୟାଦି ସୂକ୍ଷ୍ମଭୂତଦ୍ୱାରା ଶରୀରୀ ହୋଇ ସ୍ୱର୍ଗସୁଖ ଭୋଗ କରେ । ଧର୍ମାପେକ୍ଷା ଅଧର୍ମ ପ୍ରବଳ ଥିଲେ, ତଦୀୟ ଦେହ ଭୂତାଂଶରେ ସଂଗଠିତ ହୋଇ ଯନ୍ତ୍ରଣାପ୍ରଦ ଦୁରନ୍ତ ନରକ ଭୋଗ କରେ । ଯେ ସର୍ବତ୍ର ସମଦର୍ଶୀ, ଦୟାଶୀଳ, ଅହିଂସ୍ରକ, କ୍ଷମାଶୀଳ, ସହନଶୀଳ, ସତ୍ୟବାଦୀ ତାହାର ସ୍ୱର୍ଗପ୍ରାପ୍ତି ହୁଏ । ପୌରାଣିକଗଣ ସ୍ୱର୍ଗରଗୋଟିଏ ରମଣୀୟ ଦୃଶ୍ୟ ବର୍ଣ୍ଣନା କରି

ଯାଇଅଛନ୍ତି । ସ୍ୱର୍ଗରେ ନନ୍ଦନାଦି ସୁରମ୍ୟ କାନନ ଦିବ୍ୟବିମାନ ଓ ନିତ୍ୟଯୌବନା ଅପ୍ସରାଗଣ ବିରାଜିତ । ସୁଗନ୍ଧ ପୁଷ୍ପାମୋଦରେ ଚତୁର୍ଦ୍ଦିଗ ଆମୋଦିତ । ସ୍ୱର୍ଗଙ୍ଗାର କଳଧ୍ୱନିରେ ଦିଗନ୍ତ ମୁଖରିତ । ନାସ୍ତିକ, ସ୍ତେୟ, ଅଜିତେନ୍ଦ୍ରିୟ, ନୃଶଂସ, ପିଶୁନ, କୃତଘ୍ନ ପ୍ରଭୃତି ପାପିଗଣର ତାହା ଅପ୍ରାପ୍ୟ । ଯଜ୍ଞାଦାନଶୀଳ ପ୍ରଭୃତି ସୁକୃତଙ୍କର ମାତ୍ର ସ୍ୱର୍ଗ ଉପଭୋଗ୍ୟ । ରୋଗ, ଜନ୍ମ, ଜରା, କ୍ଷୁତ୍ପିପାସାଦି ଗ୍ଲାନିରହିତ । ଅଥଚ ସ୍ୱର୍ଗ -

ତରୁଣାଦିତ୍ୟବର୍ଣ୍ଣାନି ମୁକ୍ତାଜାଳାନ୍ତରାଣିଚ ।
ଚନ୍ଦ୍ରମଣ୍ଡଳଶୁଭ୍ରାଣି ହେମଶଯ୍ୟାସନାନିତ ।।
ସର୍ବକାମସମୃଦ୍ଧ୍ୟାଶ୍ଚ ସୁଖଦୁଃଖବିବର୍ଜିତାଃ ।
ନରାଃସୁକୃତିନଃତେତୁ ବିଚରନ୍ତି ଯଥାସୁଖଃ'' ।। ଏବଂବିଧ ସୁଖ ବିଶିଷ୍ଟ ।।

ଭୂଃ, ଭୁବଃ, ସ୍ୱଃ ପ୍ରଭୃତି ସାତଗୋଟି ଲୋକ ବିଦ୍ୟମାନ । ଏହି ପୃଥିବୀକୁ ଭୂଲୋକ କହନ୍ତି । ପୃଥିବୀଠାରୁ ସୂର୍ଯ୍ୟ ପର୍ଯ୍ୟନ୍ତ ଭୁଃର୍ଲୋକ, ସୂର୍ଯ୍ୟଠାରୁ ଧ୍ରୁବଲୋକ ପର୍ଯ୍ୟନ୍ତ ସ୍ୱର୍ଲୋକ ନାମେ ଅଭିହିତ । ଅର୍ଥାତ୍ ସୂର୍ଯ୍ୟର ଉପରିଭାଗେ ଧ୍ରୁବର ସଂସ୍ଥାନ ପର୍ଯ୍ୟନ୍ତ ଯେ ସ୍ଥାନ ତାହାହିଁ ସ୍ୱର୍ଗଲୋକ । ଯଥା -

'ଆଦିତ୍ୟାତ୍‌ଧ୍ରୁବ ରାଜନ୍ ସ୍ୱର୍ଲୋକଃକଥ୍ୟତେବୁଧୈଃ',ଇତ୍ୟାଦି ।

କଳ୍ପନା ସ୍ରୋତରେ କିଏ କେତେଦୂର ଭାସି ଯାଇଅଛନ୍ତି ତାହାର ଇୟତ୍ତା ନାହିଁ । କେତେକ କହନ୍ତି, ''ପୃଥିବୀମଧ୍ୟେ ଅଦ୍ରିଶ୍ରେଷ୍ଠ ମେରୁ ନାମକ ଗୋଟିଏ ବିଶାଳ ପର୍ବତ ଅଛି । ତାହାର ତିନୋଟି ଶୃଙ୍ଗ ସ୍ୱର୍ଗନାମେ ଅଭିହିତ । ଏହି ଶୃଙ୍ଗତ୍ରୟ ମଧ୍ୟରୁ ମଧ୍ୟ ଶୃଙ୍ଗ ସ୍ଫଟିକମୟ ଓ ବୈଦୁର୍ଯ୍ୟଖଚିତ । ପୂର୍ବଶୃଙ୍ଗ ଇନ୍ଦ୍ରନୀଳମଣି ବିଶିଷ୍ଟ ଓ ମାଣିକ୍ୟମୟ ଇତ୍ୟାଦି । ଦେବୀଭାଗବତ କହେ, ସୁମେରୁର ଉପରିଭାଗେ ଅନ୍ୟ ଆଠଗୋଟି ସ୍ୱର୍ଣ୍ଣମୟୀ ପୁରୀ ଅଛି । ଏହି ସମସ୍ତ ପୁରୀ ସ୍ୱୀୟ ସ୍ୱୀୟ ଅଧିଷ୍ଠାତା ଲୋକପାଳ କର୍ତ୍ତୃକ ଉପଭୁକ୍ତ । ଏ ସମସ୍ତ ପୁରୀର ନାମ ମନୋବତୀ, ଅମରାବତୀ, ତେଜୋବତୀ, ସଂଯମିନୀ, କୃଷ୍ଣାଙ୍ଗନା, ଶ୍ରଦ୍ଧାବତୀ, ଗନ୍ଧବତୀ, ମହୋଦୟା ଏବଂ ଶୋଭାବତୀ । ଧର୍ମଗ୍ରନ୍ଥର ସାରମର୍ମ ଏହି ଯେ, ମୁମୁକ୍ଷୁଗଣ ସ୍ୱର୍ଗଭୋଗ କାମନା ନକରି ଅପୁନରାବୃତ୍ତ ସ୍ଥାନକୁ ହିଁ ଇଚ୍ଛା କରନ୍ତି । ପୁରାଣ କହେ, ମନ୍ୱନ୍ତର ବିଶେଷରେ ସ୍ୱର୍ଗରାଜ୍ୟର ଅଧିପତି ଇନ୍ଦ୍ରର ମଧ୍ୟ ପରିବର୍ତ୍ତନ ହୁଏ । ସମୟେ ସମୟେ ଦୈତ୍ୟଗଣ କର୍ତ୍ତୃକ ଦେବଗଣ ପରାଜିତ ହେଉଥା'ନ୍ତି । ଏତ ଗଲା ଆର୍ଯ୍ୟ ଶାସ୍ତ୍ରର କଥା । ଜଗତର ସକଳ ସଭ୍ୟ ଜାତିର ମଧ୍ୟ ସ୍ୱର୍ଗ ସମ୍ବନ୍ଧେ ଏକପ୍ରକାର ବିଶ୍ୱାସ ଅଛି । ବାଇବେଲ୍ ପାଠରୁ ଜଣାଯାଏ ଯେ, ପ୍ରାଚୀନ ହିବ୍ରୁ ଜାତି ବିଶ୍ୱାସ କରନ୍ତି ଯେ, ସୁଦୃଢ଼ ଭିତ୍ତି ଓ କାରୁକାର୍ଯ୍ୟମଣ୍ଡିତ ସ୍ତମ୍ଭ ଉପରେ ସ୍ୱର୍ଗ ପ୍ରତିଷ୍ଠିତ । ସ୍ୱର୍ଗ ଗୋଟିଏ ତମ୍ବୁର ଆବରଣ ପଦାର୍ଥ ପରି ବୋଲି ଅନ୍ୟ କେତେକଙ୍କର ଧାରଣା । ଇହୁଦିମାନେ ଅଧଃ, ମଧ୍ୟ ଓ ଉର୍ଦ୍ଧ୍ୱରେ ଯେତେ ସ୍ୱର୍ଗ କଳ୍ପନା କରିଥା'ନ୍ତି ତନ୍ମଧ୍ୟରୁ ଅଧଃ ସ୍ୱର୍ଗ ମେଘ ଓ ବାୟୁମଣ୍ଡଳ, ମଧ୍ୟ ସ୍ୱର୍ଗ ତାରକା ଓ ନକ୍ଷତ୍ର ମଣ୍ଡଳ ଏବଂ ଉର୍ଦ୍ଧ୍ୱ ବା ସ୍ୱର୍ଲୋକ ଈଶ୍ୱର ଓ

ତଦୀୟ ଦୂତଗଣର ଆବାସଭୂମି । ବୌଦ୍ଧ, ଖ୍ରୀଷ୍ଟିୟାନ୍, ମୁସଲମାନ ପ୍ରଭୃତି ଧର୍ମ ସମ୍ପ୍ରଦାୟଗଣ ସ୍ୱର୍ଗର ଏକ ଆଧ୍ୟାତ୍ମିକ ଅର୍ଥ ସ୍ୱୀକାର କରନ୍ତି । ଆଧୁନିକ ବୌଦ୍ଧଙ୍କ ମତେ ନିର୍ବାଣ ଅବସ୍ଥା ହିଁ ସ୍ୱର୍ଗ । ପ୍ରାଚୀନ ଗ୍ରୀକ୍ ଓ ରୋମନ୍‌ଗଣ କହନ୍ତି, ଲୋଦ୍ ନାମକ ନାରକୀୟ ସରୋବରର ଜଳପାନ କରି ସ୍ୱର୍ଗର ଅନନ୍ତ ଶାନ୍ତିମୟ ଅବସ୍ଥା ଭୁଲି ପ୍ରାଣୀମାନେ ପୁଣି ଏ ଜଗତକୁ ଆସନ୍ତି ।

ମୁସଲମାନଙ୍କ ମତରେ, ବିହସ୍ତି ବା ସ୍ୱର୍ଗ ଆଠଗୋଟି । ଏ ସମସ୍ତ ସ୍ୱର୍ଗ ବର୍ଣ୍ଣନା କରିବାକୁ ବସିଲେ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ହେବ ।

ଉପରୋକ୍ତ ବର୍ଣ୍ଣନାଗୁଡ଼ିକରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ମନୁଷ୍ୟ ପୁଣ୍ୟକର୍ମ କଲେ ଦେହାନ୍ତେ ସ୍ୱର୍ଗଗାମୀ ହୋଇ ଅପାର୍ଥିବ ସୁଖଭୋଗ କରେ । ଅନ୍ୟ କେତେକଙ୍କ ମତେ ସ୍ୱର୍ଗ ଅତିରଞ୍ଜିତ କବିକଳ୍ପନା ମାତ୍ର; ଏବଂ ସ୍ୱର୍ଗର ସୁଖବାହୁଲ୍ୟ ଶୁଣି ମାନବ ସୁଖର ପ୍ରଲୋଭନରେ ସେଥିପ୍ରତି ଆକୃଷ୍ଟ ହୋଇ ପୁଣ୍ୟ କର୍ମରେ ରତ ହେବ ବୋଲି ହିଁ ସେ ସକଳ ବର୍ଣ୍ଣିତ । ଏବଂବିଧ ମତବୈଷମ୍ୟ ପରିଲକ୍ଷିତ ହେଉଥିଲେ ସୁଦ୍ଧା ସକଳ ଯୁଗରେ ସକଳ ଧର୍ମଶାସ୍ତ୍ରରେ ସ୍ୱର୍ଗର ଅସ୍ତିତ୍ୱ ସ୍ୱୀକୃତ । ଅତଏବ ସ୍ୱର୍ଗସୁଖ କବି ବର୍ଣ୍ଣନାରେ ଅତିରଞ୍ଜିତ ହେଉ ଅବା କବିକଳ୍ପାତୀତ ହେଉ କିନ୍ତୁ ପୁଣ୍ୟକର୍ମାନୁଷ୍ଠାନରେ ମନୁଷ୍ୟ ଯେ ସ୍ୱର୍ଗୀୟ ସୁଖ ଶାନ୍ତି ଲାଭ କରେ ଏହା ସର୍ବବାଦୀ ସମ୍ମତ ।

## ମର୍ତ୍ତ୍ୟଲୋକ

ଶାସ୍ତ୍ର କହେ, "କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି" ଅର୍ଥାତ୍ ପୁଣ୍ୟ କ୍ଷୟ ହେଲେ ମାନବ ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରେ । ଆମ୍ଭମାନଙ୍କର ଆବାସଭୂମିକି ମର୍ତ୍ତ୍ୟଲୋକ ବା ଭୂଲୋକ କୁହାଯାଏ । ଭୌଗୋଳିକ କ୍ରମେ ଏହା ଦୁଇ ଭାଗରେ ବିଭକ୍ତ । ଯଥା - ପୂର୍ବ ଗୋଲାର୍ଦ୍ଧ ଓ ପଶ୍ଚିମ ଗୋଲାର୍ଦ୍ଧ । ଉଭୟ ଗୋଲ ମଧ୍ୟେ ନାନାଦେଶ, ନାନାଜାତିର ମନୁଷ୍ୟ, ପଶୁପକ୍ଷୀ, କୀଟପତଙ୍ଗ ପ୍ରଭୃତି ବିଦ୍ୟମାନ । ତନ୍ମଧ୍ୟରେ ଆର୍ଯ୍ୟଭୂମି ଭାରତବର୍ଷ ପୂର୍ବ ଗୋଲାର୍ଦ୍ଧ ଅନ୍ତର୍ଗତ ଏସିଆ ମହାଦେଶରେ ବିଦ୍ୟମାନ । ଏହା ଧର୍ମ କର୍ମ ସାଧନ ଓ ସିଦ୍ଧିର କ୍ଷେତ୍ର ବୋଲି ନାନା ଭାବେ ବାଖ୍ୟାତ । ଏହା ଦେଶବାସୀଙ୍କର ଜନ୍ମଭୂମିର ଉତ୍କର୍ଷ ପ୍ରକାଶକ ଓ ପ୍ରୀତିସୂଚକ ସିଦ୍ଧାନ୍ତ ବୋଲି କାହାରି କାହାରି ଅଭିମତ । ଶାସ୍ତ୍ରରୁ ବିଦିତ ହୁଏ ଯେ, ଏହି ମର୍ତ୍ତ୍ୟଲୋକରେ ଜୀବନ ଧର୍ମଭାବରେ ଗଢ଼ାହେଲେ ହେଁ ସେହି ପୁଣ୍ୟପ୍ରଭାବେ ସୁକୃତର ତାରତମ୍ୟାନୁରୂପେ ଅନ୍ୟାନ୍ୟ ଲୋକ ପ୍ରାପ୍ତହୁଏ । ଏତଦ୍ଦ୍ୱାରା ସ୍ପଷ୍ଟ ପ୍ରତୀତ ହେଉଅଛି ଯେ, ମର୍ତ୍ତ୍ୟଲୋକ ପ୍ରେରିତ ପୁଣ୍ୟଶୀଳ ଜୀବବିନା ଅନ୍ୟାନ୍ୟ ଲୋକରେ ଜୀବ ଜନ୍ମି ଜ୍ଞାତକର୍ମରେ ସିଦ୍ଧିପ୍ରାପ୍ତ ହୁଅନ୍ତି ନାହିଁ । ଶତକୋଟି ଜୀବରାଜ୍ୟର ଚରମଫଳ ସ୍ୱରୂପ ମର୍ତ୍ତ୍ୟଲୋକର ମାନବ ସାଧନାଦ୍ୱାରା ସିଦ୍ଧିଲଭି ସ୍ୱର୍ଗାଦିଲୋକ ପ୍ରାପ୍ତ ହୁଏ ବୋଲି ଶାସ୍ତ୍ରୀୟ ଅଭିମତ । ଏଠାରେ ଆଶଙ୍କା ହୁଏ ଯେ, ଅନ୍ୟାନ୍ୟ ଲୋକରେ କ'ଣ କୀଟ, ପତଙ୍ଗ, ପଶୁ, ପକ୍ଷୀ ପ୍ରଭୃତି ଜନ୍ମି ନାହାନ୍ତି ? ଅଥବା ଜନ୍ମିଥିଲେ ସୁଦ୍ଧା ସେଗୁଡ଼ିକ ମର୍ତ୍ତ୍ୟଲୋକବାସୀ ନହେବା ଯୋଗୁଁ କ'ଣ ମୃତ୍ୟୁମୁଖରେ ପତିତ ହୁଅନ୍ତି ନାହିଁ ? ବିଷମ ସମସ୍ୟା । ଭଗବାନ କ'ଣ ଆମ୍ଭର ଏ ମର୍ତ୍ତ୍ୟଲୋକ ପାଇଁ ଏଡ଼େ କଟକଣା କରିଅଛନ୍ତି?

ଅନ୍ୟାନ୍ୟ ଲୋକର ସୁଖାଧିକ୍ୟ ସକଳ ଶାସ୍ତ୍ରରେ ଉଦ୍‌ଘୋଷିତ କିନ୍ତୁ ଜନ୍ମଜରାବ୍ୟାଧିମରଣର ଜ୍ୱାଳାରେ ସର୍ବଦା ମର୍ତ୍ତ୍ୟଲୋକବାସୀ ଦଗ୍‌ଧୀଭୂତ ହୁଅନ୍ତି । ଏଠାରେ ଆଶଙ୍କା ହୋଇପାରେ ଯେ, ମଙ୍ଗଳମୟ ଭଗବାନଙ୍କର ଏହି ମର୍ତ୍ତ୍ୟଲୋକ ସୃଷ୍ଟିରେ କୌଣସି ଦୁରୁଦ୍ଦେଶ୍ୟ ନିହିତ ଥିବ, ବୃଥା ଆଶଙ୍କା । ଲୋକତ୍ରୟ ମଧ୍ୟେ ମର୍ତ୍ତ୍ୟଲୋକ ବା ମଧ୍ୟଲୋକର ବିଶେଷତ୍ୱ କୌଣସି ଲୋକ ଅପେକ୍ଷା ନ୍ୟୂନ ନୁହେଁ । ଜନ୍ମମରଣଜରାବ୍ୟାଧି ଅଛି ବୋଲି ହିଁ ଏ ଲୋକରେ ଜୀବନପ୍ରତି ଏତେ ମମତା, ସତ୍କର୍ମ ପ୍ରତି ଏତେ ଉତ୍କଣ୍ଠା । ପ୍ରତ୍ୟେକ ବସ୍ତୁର ଅଭାବ ହିଁ ସେହି ବସ୍ତୁର ମହତ୍ତ୍ୱ ଉପଲବ୍ଧିର ସୁବର୍ଣ୍ଣ ସୁଯୋଗ । ଧର୍ମ କର୍ମର ପୀଠରୂପୀ ଏହି ମର୍ତ୍ତ୍ୟଲୋକରେ ଜନ୍ମଗ୍ରହଣ କରି ସାଧନାବଳେ ସ୍ୱର୍ଗସୁଖ କାହିଁକି ଚିନ୍ମୟ ସଚ୍ଚିଦାନନ୍ଦ ବ୍ରହ୍ମରେ ଲୀନହେବା ଅଧିକାର ଏହି ମର୍ତ୍ତ୍ୟଲୋକବାସୀଙ୍କର ହିଁ ଅଛି; କିନ୍ତୁ ଅନ୍ୟାନ୍ୟ ଲୋକବାସୀଙ୍କ ଭାଗ୍ୟରେ ସେହି ସୁଯୋଗ ନାହିଁ । ଆଲୋଚନାର ସ୍ଥଳେ ଏ ବିଷୟରେ ଚର୍ଚ୍ଚା କରିବା ମନସ୍ଥ କରି ଆଉ ଅଧିକ ଅଗ୍ରସର ନହୋଇ ଅତଃପର ପାତାଳଲୋକର ଯତ୍‌କିଞ୍ଚିତ୍ ଆଲୋଚନା କରିବୁଁ ।

## ପାତାଳ

ସୁନାମଖ୍ୟାତ ଭୁବନ ବିଶେଷକୁ ପାତାଳ କହି । କେତେକ ପଣ୍ଡିତଙ୍କ ମତେ- "ପାଦସ୍ୟ ତଳେ ବର୍ତ୍ତତେତି ପାତାଳଃ" । ପାଦତଳେ ଥିବାରୁ ପାତାଳ କୁହାଯାଏ । ଆର୍ଯ୍ୟ ଋଷିମାନଙ୍କ ପାତାଳବର୍ଣ୍ଣନା ବିସ୍ମୟୋତ୍ପାଦକ । ଉକ୍ତ ପାତାଳର ପରିଚୟ ଦେବାକୁ ଯାଇ ପୌରାଣିକଙ୍କ ମଧ୍ୟରେ ସ୍ଥାନେ ସ୍ଥାନେ ଘୋର ମତଭେଦ ମଧ୍ୟ ଦେଖାଯାଏ । ଯାହାହେଉ ସେ ସମସ୍ତ ପୃଥକ୍ ବର୍ଣ୍ଣନ ନକରି କେବଳ ବିଷ୍ଣୁପୁରାଣୋକ୍ତ ବିଷୟ ଲିପିବଦ୍ଧ କରାଗଲା । ବିଷ୍ଣୁ ପୁରାଣ ମତେ -

ଦଶସାହସ୍ରମେକୈକଂ ପାତାଳଂ ମୁନିସତ୍ତମ
ଅତଳଂ ବିତଳଂ ଚୈବ ନିତଳଞ୍ଚ ଗଭସ୍ତିମତ୍
ମହାଖ୍ୟଂ ସୁତଳଂଚାଗ୍ର୍ୟଂ ପାତାଳଂ ଚାପି ସପ୍ତମଂ

ଅର୍ଥାତ୍ ଅତଳ, ବିତଳ, ନିତଳ, ଗଭସ୍ତିମତ୍, ମହାତଳ, ସୁତଳ ଓ ପାତାଳ ଏପରି ସପ୍ତପାତାଳ । ପ୍ରତ୍ୟେକ ପାତାଳର ବିସ୍ତୃତି ଦଶସହସ୍ର ଯୋଜନ ।

କୃଷ୍ଣାଶୁକ୍ଳାରୁଣାପୀତା ଶର୍କରାଃଶୈଳକାଞ୍ଚନାଃ ।
ଭୂମୟୋଯତ୍ରମୈତ୍ରେୟ ବରପ୍ରାସାଦଶୋଭିତାଃ ।।
ତେଷୁଦାନବଦୈତେୟ ଜାତୟଃ ଶତସଂଘଶଃ ।
ନିବସନ୍ତି ମହାଭାଗାଃ ଅହଷ୍ଟ ମହାମୁନେ ।।

ଅର୍ଥାତ୍ ହେ ମୈତ୍ରେୟ. ଏହି ପାତାଳ ଭୂମି ଯଥାକ୍ରମେ କୃଷ୍ଣ, ଶୁକ୍ଳ, ଅରୁଣ, ପୀତ, ଶର୍କରା, ଶୈଳ ଓ କାଞ୍ଚନମୟ । ଏହି ପାତାଳରେ ମହାଭାଗ ନାଗମାନେ ବାସ କରନ୍ତି ।

ସ୍ୱର୍ଲୋକାଦପିରମ୍ୟାଣି ପାତାଳାଦିନିନାରଦ ।

ଦିବାକରସ୍ମୟୋଯତ୍ର ପ୍ରଭାତଂନ୍ଵତିନାତପଂ ।।
ଶଶିନଷ୍ଟ ନଶୀତାୟ ନିଶି ଦ୍ୟୋତୟ କେବଳଂ ।
ପାତାଳାନାମଧଃଚାସ୍ତେ ବିଷ୍ଣୋର୍ଯ୍ୟା ତାମସୀ ତନୁଃ ।।
ଶେଷାଖ୍ୟା ଯତ୍ ଗୁଣାନ୍ ବକ୍ତୁଂ ନଶକ୍ତା ଦୈତ୍ୟ ଦାନବାଃ ।
ଯୋଽନନ୍ତଃ ପଠ୍ୟତେସିଦ୍ଧୈ ଦେବଦେବର୍ଷି ପୂଜିତଃ ।।
ଯସ୍ୟୈଷାସକଳା ପୃଥ୍ୱୀ ଫଣାମଣି ଶିଖାରୁଣା ।
ଆସ୍ତେ କୁସୁମ ମାଳେବ କସ୍ତତ୍‌ବାର୍ଯ୍ୟଂ ବଦିଷ୍ୟତି ।।
ଯଦାବିଜୃମ୍ଭତେଽନନ୍ତୋ ମହାଘୂର୍ଣ୍ଣିତ ଲୋଚନଃ ।
ତଦାଚଳତି ଭୂରେଷା ସାଦ୍ରିତୋୟାଭିକାନନା ।ଇତି।

ଏହି ପାତାଳ ସ୍ୱର୍ଗଲୋକାପେକ୍ଷା ରମଣୀୟ । ପାତାଳରେ ଦିବାଭାଗେ ସୂର୍ଯ୍ୟକିରଣ ଆଲୋକ ଦିଏ କିନ୍ତୁ ତାପ ନାହିଁ । ରାତ୍ରିକାଳେ ଚନ୍ଦ୍ର ଶୀତକିରଣ ପ୍ରଦାନ ନକରି କେବଳ ଆଲୋକ ପ୍ରଦାନ କରନ୍ତି । ଏହି ପାତାଳସମୂହର ଅଧୋଭାଗେ ଭଗବାନଙ୍କର, ଶେଷାଖ୍ୟା ତାମସୀ ତନୁ ବିଦ୍ୟମାନ । ତାହାହିଁ ପଣ୍ଡିତଗଣଙ୍କଦ୍ୱାରା ଅନନ୍ତ ନାମେ ଅଭିହିତ । ସେହି ଶେଷଦେବଙ୍କର ଫଣାମଣିର ଅଗ୍ରଭାଗରେ ସଶୈଳବନସାଗରାପୃଥ୍ୱୀ କୁସୁମ ମାଳାପରି ରହିଅଛି । ଅନନ୍ତଙ୍କର ଅନନ୍ତବାର୍ଯ୍ୟ ଓ ଅସୀମ ଶକ୍ତି ପ୍ରଭୃତି ବର୍ଣ୍ଣନାତୀତ । ଯେଉଁ ସମୟରେ ଶେଷଦେବ ମହାଘୂର୍ଣ୍ଣିତ ଲୋଚନରେ ବିଜୃମ୍ଭନ କରନ୍ତି ସେହି ସମୟରେ ପର୍ବତ ଓ ପୟୋନିଧି ପ୍ରଭୃତି ସହିତ ପୃଥିବୀ କମ୍ପିତ ହୁଏ ।

ପୁରାଣାନ୍ତରରେ ବର୍ଣ୍ଣିତ ଅଛି ଅତଳ ନାମକ ପାତାଳରେ ମୟଦୈତ୍ୟ ନିବାସ କରି ମହାମାୟା ବିସ୍ତାର କରିଥାଏ । କେଉଁଠାରେ ଭଗବାନ ହାଟକେଶ୍ୱର ବିରାଜିତ । କେଉଁ ଭବନରେ ସ୍ୱପାର୍ଷଦ୍ ପ୍ରଭୃତି ଭୂତଗଣ ସଙ୍ଗେ ସ୍ୱୟଂ ଭବାନୀ ବିରାଜମାନା । ପାତାଳ ବର୍ଣ୍ଣନ ଅତ୍ୟନ୍ତ ଚିତ୍ତାକର୍ଷକ । ସେଠାରେ ସମସ୍ତ ଋତୁ ଅତୁଳ ସୁଖପ୍ରଦ । ଏକଦା ମୟପ୍ରଦତ୍ତ ରାଜସଭାରେ ବସି ଯୁଧିଷ୍ଠିର ମହାରାଜ ନାରଦଙ୍କୁ ଉକ୍ତ ସଭାର ସୌନ୍ଦର୍ଯ୍ୟ ବର୍ଣ୍ଣନ ପାଇଁ ଅନୁରୋଧ କରନ୍ତେ ନାରଦ ପ୍ରତ୍ୟେକ ଦେବଗଣର ସଭା ବର୍ଣ୍ଣନ ସଙ୍ଗେ ପାତାଳପୁରରେ ଯମରାଜାଙ୍କର ଯେଉଁ ସଭା ବର୍ଣ୍ଣନ କରିଅଛନ୍ତି ତାହା ଅତ୍ୟନ୍ତ ମନୋରମ । ଉକ୍ତ ସଭାରେ ସୁକୃତୀ ଯାଜ୍ଞିକ ରାଜାମାନଙ୍କର ମଧ୍ୟ ସ୍ଥାନ ଅଛି; ଆହୁରି ମଧ୍ୟ କଥିତ ଅଛି ଯେ, ଭଗବାନ ତ୍ରିବିକ୍ରମମୂର୍ତ୍ତି ବାମନ ବଳିକି ନେଇ ଅନ୍ୟାନ୍ୟ ବିବରର ମଧ୍ୟେ ସର୍ବଶ୍ରେଷ୍ଠ ସୁତ୍ଵଳ ଲୋକରେ ସ୍ଥାନଦେଇ ନିଜେ ଦ୍ୱାରୀ ରୂପେ ସେଠାରେ ଦ୍ୱାରରକ୍ଷା କରନ୍ତି । ଏହି ପାତାଳ ପୁରୀରେ ବାସୁକୀଙ୍କ ସଙ୍ଗେ ଶଙ୍ଖ, କୁଳିନ, ଶ୍ୱେତ, ଧନଞ୍ଜୟ, ମହାଶଙ୍ଖ, ଧୃତରାଷ୍ଟ୍ର, ଶଙ୍ଖଚୂଡ଼, କଳମ୍ବ ପ୍ରଭୃତି ପରମ ଅମର୍ଷବିଶିଷ୍ଟ ସୁବିଶାଳ ପରମ୍ପରାସମ୍ପନ୍ନ ଓ ଅତ୍ୟୁତ୍କଟ ବିଷଧରଗଣ ବାସ କରନ୍ତି । ଅତଏବ ଏହାର ଅପର

ନାମ ନାଗଲୋକ । ଏମାନଙ୍କର ଅନବଦ୍ୟାଙ୍ଗୀ କନ୍ୟାଗଣଙ୍କୁ ମର୍ତ୍ତ୍ୟଲୋକର କେତେକ ରାଜା ମଧ୍ୟ ବିବାହ କରିଥିବା ବିଷୟ ପୁରାଣରେ ବର୍ଣ୍ଣିତ ଅଛି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହିକି ସ୍ୱର୍ଗସୁଖାଦପି ଗରୀୟସୀ ପାତାଳ ପ୍ରାପ୍ତି କାମନାରେ କୌଣସି ମହର୍ଷି ତପସ୍ୟା କରିଥିବା ଶୁଣାଯାଇ ନାହିଁ । ଶ୍ରୁତିରେ ମଧ୍ୟ ''ସ୍ୱର୍ଗକାମୋଯଜେତ'' ବୋଲି ଲେଖାଅଛି । କିନ୍ତୁ ''ପାତାଳକାମୋଯଜତେ'' କୁତ୍ରାପି ଦେଖାଯାଏ ନାହିଁ । କେହିକେହି ପ୍ରଶ୍ନ କରିପାରନ୍ତି ଯେ ସୃଷ୍ଟି ମଧ୍ୟରେ ସପ୍ତସ୍ତର ବିଶିଷ୍ଟ ପରମ ସୁଖାବହ ପୁରୀଗୁଡ଼ିକ ସତେ କ'ଣ ଅଛି? ତାହାର ଉତ୍ତରରେ କୁହାଯାଇ ପାରେ ଯେ, ସର୍ବଶକ୍ତିମାନ୍ ପରମେଶ୍ୱରଙ୍କ ଅତ୍ୟାଶ୍ଚର୍ଯ୍ୟମୟ ସୃଷ୍ଟି ମଧ୍ୟେ ଅନନ୍ତକୋଟି ବ୍ରହ୍ମାଣ୍ଡରେ ଲୋକଲୋଚନର ଅଗୋଚରରେ କେତେ କ'ଣ ରହିଥିବା ସୁଦ୍ଧା ବିଚିତ୍ର ନୁହେଁ ।

## ନରକର ବିଚାର

ସ୍ୱର୍ଗର ସୁଖ ଯେପରି ସୁଶ୍ରାବ୍ୟ ସେହିପରି ନରକର ବର୍ଣ୍ଣନା ଅତ୍ୟନ୍ତ ଭୀତିପ୍ରଦ । ନରକର ଅର୍ଥ ପାପଫଳ ଭୋଗସ୍ଥାନ । ମନ୍ୱାଦି ସମସ୍ତ ଧର୍ମଶାସ୍ତ୍ର ଏ ବିଷୟରେ ବିସ୍ତର ଆଲୋଚନା କରିଅଛନ୍ତି । ସ୍ୱର୍ଗାପେକ୍ଷା ନରକ ବିଷୟରେ ଅନେକ ମତଭେଦ ଦେଖାଯାଏ ।

ଦର୍ଶନ ଶାସ୍ତ୍ରବିଦ୍‌ଗଣ କହନ୍ତି, ଯେତେବେଳେ ଆମ୍ଭର ଏହି ଷାଟ୍‌କୋଷିକ ଦେହ ଭସ୍ମୀଭୂତ ହୋଇଯାଏ ସେତେବେଳେ ଆମ୍ଭମାନଙ୍କ ସୂକ୍ଷ୍ମଶରୀର ଆକାଶସ୍ଥ ବାୟୁଭୂତ ହୋଇ ଅବସ୍ଥାନ କରେ । ଏହି ସୂକ୍ଷ୍ମ ଶରୀରେ ହିଁ ସ୍ୱର୍ଗ ବା ନରକ ଭୋଗ ହୁଏ । ଏହି ସୂକ୍ଷ୍ମ ଶରୀର ଏପରି ଉପାଦାନରେ ଗଠିତ ଯେ ଜ୍ୱଳନ୍ତ ଅଗ୍ନିରେ ଦଗ୍ଧ ହେଲେ ସୁଦ୍ଧା ଯନ୍ତ୍ରଣାନୁଭବ ବ୍ୟତୀତ ତାହାର କୌଣସି ଅଂଶ ଧ୍ୱଂସପ୍ରାପ୍ତ ହୁଏ ନାହିଁ । ଅତଏବ ଏହାକୁ ଯନ୍ତ୍ରଣାମୟ ଶରୀର କହନ୍ତି ।

ସକଳ ଶାସ୍ତ୍ରରେ ଅଧର୍ମ ହିଁ ନରକର ହେତୁ ବୋଲି ପ୍ରମାଣିତ ହୋଇଅଛି । ''ଅଧର୍ମୋ ନରକାଦୀନାଂ ହେତୁର୍ନିନ୍ଦିତ କର୍ମଜଃ'' । ଅର୍ଥାତ୍ ନିନ୍ଦିତ କର୍ମଜ ଅଧର୍ମ ହିଁ ନରକର ହେତୁ । ଶ୍ରୀମଦଭାଗବତରେ ନରକ ବିଷୟରେ କଥିତ ଅଛି ଯେ, ପରୀକ୍ଷିତ ଶୁକଙ୍କୁ ପ୍ରଶ୍ନକଲେ- ''ଭଗବନ୍! ନରକ ସମସ୍ତ ପୃଥିବୀମଧ୍ୟସ୍ଥ କୌଣସି ଦେଶବିଶେଷ ବା ପୃଥିବୀର ବହିର୍ଭୂତ ଅନ୍ୟ କୌଣସି ଲୋକ ବିଶେଷ'' ? ଏହାର ଉତ୍ତରରେ ଶୁକଦେବ କହି ଅଛନ୍ତି - ''ଦକ୍ଷିଣାପଥର ଭୂମିର ନିମ୍ନେ ଓ ଜଳ ଉପରେ ଯେଉଁଠାରେ ଅଗ୍ନିସ୍ୱାତ୍ତାଦି ପିତୃଗଣ ଅବସ୍ଥାନ କରନ୍ତି ସେହିଠାରେ ସ୍ୱଗଣପରିବୃତ ଯମ ସମ୍ମୁଖରେ ମୃତବ୍ୟକ୍ତିର ଦୋଷଗୁଣର ବିଚାର ହୁଏ । ଯମପୁରୀରେ ନରକ ସକଳ ଅବସ୍ଥିତ । ଏହି ନରକର ସଂଖ୍ୟା ଏକବିଂଶତି, ଯଥା - ତାମିସ୍ର, ଅନ୍ଧତାମିସ୍ର, ରୌରବ, ମହାରୌରବ, କୁମ୍ଭିପାକ, କାଳସୂତ୍ର, ଅସିପତ୍ରବନ, ଶୂକରମୁଖ, ଅନ୍ଧକୂପ, କୃମିଭୋଜନ, ସନ୍ଦଂଶ, ତପ୍ତସ୍ୱର୍ମୀ, ବଜ୍ରକଣ୍ଟକ, ଶାଲ୍ମଳୀ, ବୈତରଣୀ, ପୂଜୋଦ, ପ୍ରାଣରୋଧ, ବିଶସନ, ଲାଳାଭକ୍ଷ, ସାରମେୟାଦନ, ଅବୀଚୀ ଓ ଆୟବପନ । ଏହାଛଡ଼ା ଅନ୍ୟ ସାତୋଟି ନରକ ମଧ୍ୟ ବିଦ୍ୟମାନ । ଯଥା- କ୍ଷାର ମର୍ଦ୍ଦନ, ରକ୍ଷୋଗଣ ଭୋଜନ, ଶୂଳପ୍ରୋତ, ଦ୍ୱନ୍ଦ୍ୱଶୂକ, ଅବଟ ନିରୋଧନ, ପର୍ଯ୍ୟାବର୍ତ୍ତନ

ଏବଂ ସୂଚୀମୁଖ । ପ୍ରାଣୀଙ୍କୁ ପାପର ତାରତମ୍ୟାନୁଯାୟୀ ନରକଦଣ୍ଡର ବ୍ୟବସ୍ଥା ହୁଏ । ପ୍ରାଣୀମାନେ ସେମାନଙ୍କର ଯନ୍ତ୍ରଣାପ୍ରଦ ପାପର କ୍ଷୟ ପରେ ଯନ୍ତ୍ରଣାରୁ ନିଷ୍କୃତ ଲଭନ୍ତି । ପାପ ଶେଷ ପର୍ଯ୍ୟନ୍ତ ପାପୀମାନଙ୍କୁ ନରକରେ ସଢ଼ିବାକୁ ହୁଏ ।

ବ୍ରହ୍ମପୁରାଣରେ ଲେଖାଅଛି -
ନରକାଣିଂଚ କୁଣ୍ଡାନି ସନ୍ତି ନାନା ବିଧାନି ଚ
ନାନାପୁରାଣ ଭୋଦେନ ନାନାଭେଦାନିତାନିଚ ।
ବିସ୍ତୃତାନି ଗଭୀରାଣି କ୍ଳେଶଦାନିଚ ଜୀବିନାଂ
ଭୟଙ୍କରାଣି ଘୋରାଣି ହେ ବସ୍ତ୍ର କୁତ୍ସିତାନିଚ ।
ଷଡଶୀତିଚ କୁଣ୍ଡାନି ସଂଯ ମନ୍ୟାଂଚ ସନ୍ତିତ
ନିବୋଧତେଷାଂ ନାମାନି ପ୍ରସିଦ୍ଧାନି ଶ୍ରୁତୌସତି ।

ଅର୍ଥାତ୍ ପୁରାଣ ଭେଦରେ ନରକର ନାମ ମଧ୍ୟ ଭିନ୍ନ ଭିନ୍ନ ଲେଖାଅଛି । ଏହି ସ୍ଥାନ ଜୀବର ଅତିଶୟ କ୍ଳେଶପ୍ରଦ । ଯମାଳୟରେ ୮୬ଟି ନରକ କୁଣ୍ଡଅଛି । ପାପୀସକଳ ପାପାନୁସାରେ ଭିନ୍ନ ଭିନ୍ନ ନରକ କୁଣ୍ଡରେ ନିକ୍ଷିପ୍ତ ହୁଅନ୍ତି । ଯଥା- ବ୍ରହ୍ମସ୍ୱାପହାରୀ ବିଟ୍‌କୁଣ୍ଡରେ, ପିତୃମାତୃଦ୍ୱେଷୀ, ବିଷକୁଣ୍ଡରେ, ପରସ୍ୱଗ ଓ ପରପୁରୁଷରତା ଶୁକ୍ରକୁଣ୍ଡରେ, ଖଳସ୍ୱଭାବୀ ଗାତ୍ରମଳକକୁଣ୍ଡରେ, ଏହିପରି ବିଭିନ୍ନ ଶ୍ରେଣୀର ପାପୀ ବିଭିନ୍ନ କୁଣ୍ଡରେ ନିକ୍ଷିପ୍ତ ହୁଅନ୍ତି । ଇଂରାଜୀରେ ନରକକୁ ହେଲ୍ (Hell) କହନ୍ତି । ଏହାର ମୌଳିକ ଅର୍ଥ ପର୍ବତ ଗୁହା । ଗଭୀର ଅନ୍ଧକାରାମୟ ବୃହଦ୍‌ଗର୍ତ୍ତ । ଖ୍ରୀଷ୍ଟିୟାନମାନେ କହନ୍ତି ଯେ, ପୃଥିବୀର ଅଭ୍ୟନ୍ତରେ ଚିରାନ୍ଧକାରପୂର୍ଣ୍ଣ ଗର୍ତ୍ତରାଶି ଅଥବା ଅନ୍ତରୀକ୍ଷ ଏବଂ ଭୂମି ମଧ୍ୟରେ ଗଭୀର ଅନ୍ଧକାରପୂର୍ଣ୍ଣ ଖାତ ସକଳ ହିଁ ନରକ । ରୋମାନ୍ କ୍ୟାଥ୍‌ଲିକ୍‌ଗଣ ନରକଯନ୍ତ୍ରଣାକୁ ମୁଖ୍ୟତଃ ଦୁଇପ୍ରକାର ବୋଲି କହନ୍ତି, ଯଥା- ଚିର ଶୋକଯନ୍ତ୍ରଣା ଓ ଚିର ଗ୍ଳାନିଯନ୍ତ୍ରଣା । ପ୍ରଥମଟିରେ ଈଶ୍ୱରାନୁଗ୍ରହ ଓ ସ୍ୱର୍ଗସୁଖରୁ ଚିର ବଞ୍ଚିତରୂପ ଚିରଶୋକ ଦ୍ୱିତୀୟଟିରେ ସ୍ୱକୃତ ପାପଲାଗି ଚିରଗ୍ଳାନି ।

ପ୍ରାଚୀନ ଖ୍ରୀଷ୍ଟିୟାନମାନଙ୍କ ମତରେ 'ମହାବିଚାରଦିନ' ନରକଦଣ୍ଡ ହେଲେ ତହିଁରୁ ଆଉ ନିଷ୍କୃତି ଲଭିବା ଉପାୟ ନାହିଁ । କେତେକଙ୍କ ମତରେ ନରକ ଭୋଗଦ୍ୱାରା ପାପ କ୍ରମଶଃ କ୍ଷୟହୋଇ ଜୀବାତ୍ମା ବିଶୁଦ୍ଧତା ଲାଭ କରେ । ଏମାନଙ୍କ ଅଭିପ୍ରାୟ ନରକରେ ଚିର ପ୍ରଜ୍ୱଳିତ ଭୀଷଣ ଅଗ୍ନିର ଦାହ ଓ ସର୍ପବତ୍ କୁମ୍ଭୀରାକୃତି ଶରଜିହ୍ୱ ଡ୍ରାଗନ୍ (Dragon) ନାମକ ଭୀଷଣ ପ୍ରାଣୀର ଦଂଶନ ଏବଂ ଦ୍ୱିଧାରତୀକ୍ଷ୍ଣ ଶୃଙ୍ଗବିଶିଷ୍ଟ ବିକଟ ଦନ୍ତଯୁକ୍ତ ଦୈତ୍ୟର ପୀଡ଼ନ ହିଁ ପ୍ରଧାନ ଦଣ୍ଡ । ମୁସଲମାନଗଣ ନରକକୁ ଜାହାନାଂ କହନ୍ତି । ଏମାନେ ନରକ ବିଷୟରେ ପ୍ରବଳ ଆସ୍ଥାବାନ୍ । ସ୍ୱର୍ଗଭୋଗ ଯେପରି ଚିତ୍ତାକର୍ଷକ, ନାକଯନ୍ତ୍ରଣା ସେପରି ଭୟାନକ । ପ୍ରାଣୀଗଣଙ୍କୁ ଧର୍ମରେ ପ୍ରବୃତ୍ତ ଓ ପାପରୁ ନିବୃତ୍ତ କରିବା ଲାଗି ଆଚାର୍ଯ୍ୟଗଣ ସ୍ୱର୍ଗନରକର ବର୍ଣ୍ଣନରେ ସବିଶେଷ

ଦୃଷ୍ଟି ଦେଇଥିବା ଅନୁମିତ ହୁଏ । ଗରୁଡ଼ପୁରାଣରେ ପ୍ରେତପୁର ଯାତ୍ରାର ଯେଉଁ ସବିଶେଷ ବିବରଣ ଅଛି ତାହା ପାଠ କଲାମାତ୍ରେ ହୃତ୍‌କମ୍ପ ଜାତ ହୁଏ ।

## ଦେବଯାନ ଓ ପିତୃଯାନ ମାର୍ଗ

ଦେବଯାନମାର୍ଗ ଅର୍ଥାତ୍ ବ୍ରହ୍ମଲୋକକୁ ଯିବା ମାର୍ଗକୁ ଅର୍ଚ୍ଚିରାଦି ପଥ କହନ୍ତି । ପୂର୍ବରେ ଯେଉଁ ସ୍ୱର୍ଗ ଓ ଯମଲୋକର ବିଷୟ କୁହାଗଲା, ପୁରାଣମାନଙ୍କରେ ଲେଖାଅଛି, ସେହି ସେହି ଲୋକକୁ ମାନ୍ଧାତା ଦୁଷ୍ମନ୍ତ ପ୍ରଭୃତି ସୁକୃତୀରାଜା, ନାରଦାଦି ମୁନିଗଣ ଓ କେତେକ ପ୍ରବଳ ପରାକ୍ରାନ୍ତ ଦୈତ୍ୟ ଯାତାୟାତ କରନ୍ତି କିନ୍ତୁ ସଶରୀରରେ ସତ୍ୟବାଦୀ ଯୁଧିଷ୍ଠିର ଯାଇଥିଲେ । ତୁଷାରାବୃତ ହିମାଳୟ ଶୈଳସ୍ଥ ସ୍ୱର୍ଗମାର୍ଗ ଯୁଧିଷ୍ଠିରଙ୍କ ଗନ୍ତବ୍ୟ ପଥ ବୋଲି ମହାଭାରତରେ ବର୍ଣ୍ଣିତ ଅଛି । ଉକ୍ତ ମାର୍ଗରେ ଅନ୍ୟ କେହି ଯିବା ଶୁଣାଯାଇ ନାହିଁ । ଅର୍ଚ୍ଚିରାଦିମାର୍ଗ ସମ୍ବନ୍ଧେ ଶାସ୍ତ୍ରରେ ଲେଖାଅଛି ଯେ, ଜୀବର ମୃତ୍ୟୁପରେ ତାହାର ପାପପୁଣ୍ୟ ଅନୁସାରେ ତାହାପାଇଁ ଯେଉଁ ଲୋକ ନିର୍ଦ୍ଦିଷ୍ଟ ହୁଏ ସେଠାକୁ ତାହାକୁ ନେବାଭାର ସେହି ସେହି ଲୋକର ପଥ ପ୍ରଦର୍ଶକଙ୍କ ଉପରେ ନ୍ୟସ୍ତ ଥାଏ । ବେଦାନ୍ତ ଦର୍ଶନରେ ମଧ୍ୟ ଉଲ୍ଲେଖ ଅଛି, ''ଅର୍ଚ୍ଚିରାଦିନାତତ୍ପ୍ରଥିତେଃ'' । ଜ୍ଞାନୀ ଓ ଅଜ୍ଞାନୀର ଶରୀର ତ୍ୟାଗରେ ଭିନ୍ନ ନାହିଁ କିନ୍ତୁ ପ୍ରଭେଦ ଏହିକି ଜ୍ଞାନୀର ଉତ୍କ୍ରମଣ ପଥ ଭିନ୍ନ । ସେ ଶାସ୍ତ୍ରୋକ୍ତ ନିର୍ଦ୍ଦିଷ୍ଟ ପଥରେ ଉତ୍କ୍ରାନ୍ତ ହୋଇ ଊର୍ଦ୍ଧ୍ୱ ଲୋକକୁ ଗମନ କରେ । ଅଜ୍ଞାନୀ ତାହା ପାରେନାହିଁ । ଶ୍ରୁତ୍ୟୁକ୍ତ ପଥସକଳ ନାନା ପ୍ରକାର ବିଶେଷଣେ ବିଶେଷିତ । ଛାନ୍ଦୋଗ୍ୟୋପନିଷଦର ପଞ୍ଚାଗ୍ନିବିଦ୍ୟା ପ୍ରକରଣରେ ଦେଖାଯାଏ ଯେ, ଯେଉଁମାନେ ଅରଣ୍ୟବାସୀ ହୋଇ ବ୍ରହ୍ମୋପାସନା କରନ୍ତି ସେମାନେ ହିଁ ଅର୍ଚ୍ଚିରାଦି ପଥର ପଥିକ ହୁଅନ୍ତି । ବ୍ରହ୍ମଲୋକଗାମୀ ଦେବଯାନ ପଥରେ ପଥିକ ହୋଇ ଯଥାକ୍ରମେ ଅଗ୍ନି ଲୋକ, ବାୟୁ ଲୋକ, ବରୁଣଲୋକ, ଇନ୍ଦ୍ରଲୋକ ଓ ପ୍ରଜାପତି ଲୋକରେ କିଛି ସମୟ ବିଶ୍ରାମ ନେଇ ବ୍ରହ୍ମଲୋକକୁ ଗମନ କରନ୍ତି । ଏଠାରେ ଜିଜ୍ଞାସା ଏହି ଯେ, ଶୁକ୍ଳପକ୍ଷ ଉତ୍ତରାୟଣ ସଂବତ୍ସର ଇତ୍ୟାଦି ମାର୍ଗର ଯେଉଁ ବିଶେଷଣମାନ ଅଛି ତାହା କ'ଣ ? ଦେବଯାନ ପଥର ଗୋଟିଏ ଗୋଟିଏ ଚିହ୍ନ ନା ଉପାସକଙ୍କର ଭୋଗସ୍ଥାନ ଅଥବା ବାହକ ବିଶେଷ ? ଏହାର ଉତ୍ତରରେ କେତେକ ଶ୍ରୁତି କହନ୍ତି, ଅର୍ଚ୍ଚି ପ୍ରଭୃତି ଦେବଯାନ ପଥର ଚିହ୍ନ ସ୍ୱରୂପ । ଯେପରି କୌଣସି ନବାଗତ ବ୍ୟକ୍ତି ନଗରାଭିମୁଖେ ଯାତ୍ରା କରୁଥିବା ସମୟରେ ପଥଜ୍ଞ ଉପଦେଷ୍ଟା ପ୍ରଥମେ ଅମୁକ ପର୍ବତ, ପରେ ନଦୀ ଓ ବିଶାଳ ବଟ, ତତ୍ପରେ ନଗର ବୋଲି ଗନ୍ତବ୍ୟ ପଥ ବର୍ଣ୍ଣନା କରେ ତଦ୍‌ବତ୍ ଅର୍ଚ୍ଚିରୁ ଦିବା ଦିବାରୁ ଶୁକ୍ଳପକ୍ଷ ପ୍ରଭୃତି ବର୍ଣ୍ଣିତ ହୋଇଅଛି । ଏହି ଅର୍ଚ୍ଚି ପ୍ରଭୃତି ଗୋଟିଏ ଗୋଟିଏ ଭୋଗସ୍ଥାନ । ଅନ୍ୟ ଶ୍ରୁତି କହେ, ''ଅଗ୍ନିଲୋକଂ ଆଗଚ୍ଛତି'', ଯେପରି ମନୁଷ୍ୟ ଲୋକ, ଦେବଲୋକ, ପିତୃଲୋକ ଇତ୍ୟାଦି ।

ଅର୍ଚ୍ଚି ପ୍ରଭୃତି ଭୋଗସ୍ଥାନ ବୋଲି ସ୍ଥିରୀକୃତ ହୋଇଅଛି, ଯେହେତୁ ଅର୍ଚ୍ଚି ପ୍ରଭୃତିର ଅର୍ଥ ଅଚେତ ନା ଅନ୍ୟ କେତେକ ଶ୍ରୁତିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ଅର୍ଚ୍ଚି ପ୍ରଭୃତି ପଥଚିହ୍ନ ଅବା

ଭୋଗସ୍ଥାନ ନୁହନ୍ତି । କିନ୍ତୁ ଏମାନେ ଆତିବାହିକ ଚେତନ ମାତ୍ର- ଯେପରି ଗୋଟିଏ ଜୀବ ରାଜା କର୍ତ୍ତୃକ ଆଦିଷ୍ଟ ହୋଇ ଅନ୍ୟ ଏକ ଜୀବକୁ ହିଁ ଅରଣ୍ୟମାର୍ଗରେ ବହିନିଏ ସେହିପରି ବାୟୁ ଅଗ୍ନି ଲୋକାଦି କ୍ରମେ ସେହି ଲୋକର ପଥିକମାନଙ୍କୁ ତତ୍ତତ୍‌ଲୋକସ୍ଥ ଅମାନୁଷ ବାହକ ରୂପେ ନିର୍ଦ୍ଦିଷ୍ଟ ଅଛନ୍ତି । ଅର୍ଥାତ୍ ଜୀବର ଅଗ୍ନିଲୋକ ପ୍ରାପ୍ତିମାତ୍ରେ ଅଗ୍ନି ତାହାକୁ ସେଠାରୁ ତାହାର ପରବର୍ତ୍ତୀ ସ୍ଥାନକୁ ଏବଂ ବାୟୁଲୋକ ପ୍ରାପ୍ତିମାତ୍ରେ ବାୟୁ ତାହାର ପରବର୍ତ୍ତୀ ସ୍ଥାନକୁ ନେଇଯାଏ । ଅନେକ ଶ୍ରୁତିରେ କଥିତ ଅଛି ଅମର୍ତ୍ତ୍ୟ ପୁରୁଷକର୍ତ୍ତୃକ ଉକ୍ତ କାର୍ଯ୍ୟ ସମ୍ପାଦିତ ହୁଏ । ବରୁଣ ପ୍ରଭୃତି କେହି ବାଧା ନ ଜନ୍ମାଇଁ ସାହାଯ୍ୟ କରନ୍ତି । ଯଥା- "ଅର୍ଚ୍ଚିରାଦିଭିସ୍ତଦଭିମାନି ଦେବୈଃ ଲକ୍ଷିତୋମାର୍ଗଃ" ଦେବତାଗଣର ଗମନାଗମନ ପଥ ।

ପିତୃଯାନ ବୋଲନ୍ତେ ପିତୃଗଣର ଚନ୍ଦ୍ରଲୋକ ଗମନ ମାର୍ଗ ବୁଝାଏ । ଛାନ୍ଦୋଗ୍ୟ ଉପନିଷଦରେ ଲେଖାଅଛି ଯେ, ଯେଉଁ ସକଳ ପୁରୁଷ ଇଷ୍ଟାପୂର୍ତ୍ତ ଓ ଦାନ ଅର୍ଥାତ୍ ଅଗ୍ନିହୋତ୍ରାଦି ବୈଦିକ କର୍ମାନୁଷ୍ଠାନ, ବାପୀକୂପ ଖନନ ଅବା ଦେବ ଉପାସନା ପ୍ରଭୃତି ସତ୍‌କର୍ମ କରନ୍ତି, ସେମାନେ ପ୍ରଥମେ ଧୂମାଭିମାନିନୀ ଦେବତାଙ୍କୁ ପ୍ରାପ୍ତ ହୁଅନ୍ତି । ପରେ କୃଷ୍ଣ ପକ୍ଷ ଓ ଦକ୍ଷିଣାୟନ ଷଣ୍ମାସାଭିମାନିନୀ ଦେବତାଙ୍କୁ ପ୍ରାପ୍ତହୋଇ ପିତୃଲୋକକୁ ଗମନ କରନ୍ତି । ପିତୃଲୋକରେ ଅବସ୍ଥାନ କରି ସେଠାରୁ ଆକାଶ, ଆକାଶରୁ ଚନ୍ଦ୍ରମାକୁ ପ୍ରାପ୍ତ ହୁଅନ୍ତି । ଚନ୍ଦ୍ର ଇନ୍ଦ୍ରାଦି ଦେବଗଣର ଅନ୍ନସ୍ୱରୂପ, ଅତଏବ କର୍ମୀଗଣ ଚନ୍ଦ୍ରସ୍ୱରୂପ ହେବାରୁ ଦେବତାଗଣର ଉପଭୋଗ୍ୟ ହୁଅନ୍ତି ଅର୍ଥାତ୍ ତାହାଙ୍କ ସହିତ ସୁଖେ ବିହାର କରନ୍ତି ।' 'ପନ୍ଥାନମନୁ ପ୍ରବିଦ୍ୱାନ ପିତୃଯାନଂ' ଋକ୍, "ପିତୃଯାନଃ ପିତରୋଯେନଗଚ୍ଛନ୍ତି" ଇତି 'ସାୟନଃ' ଅର୍ଥାତ୍ ପିତୃଗଣ ଯେଉଁ ପନ୍ଥାରେ ଗମନ କରନ୍ତି । "ଯେ ଦେବଯାନଃ ପିତୃଯାନସ୍ଚଲୋକାଃ" ଅର୍ଥାତ୍ ଦେବଯାନ ଓ ପିତୃଯାନ ଲୋକେ ପୁଣ୍ୟଶୀଳ ଅଟନ୍ତି । ଏହି ଦୁଇଗୋଟି ପନ୍ଥାର ବିଷୟ ଶାସ୍ତ୍ରରେ ନାନାଭାବେ ବର୍ଣ୍ଣିତ ହୋଇଅଛି ।

ସୃଷ୍ଟି ତତ୍ତ୍ୱବିତ୍ ପାଶ୍ଚାତ୍ୟ ବୈଜ୍ଞାନିକଗଣ ଏହି ତରଙ୍ଗ ସଂକଳିତ ସର୍ଜନା, ପ୍ରଳୟ, ସ୍ୱର୍ଗ, ନରକାଦି ବିଷୟର ତଥ୍ୟ ଉପଲବ୍ଧି କରିବା ବହୁପୂର୍ବରୁ ଅଜ୍ଞେୟ ବ୍ରହ୍ମରହସ୍ୟାନୁଶୀଳନଶୀଳା ଆର୍ଷ ପ୍ରତିଭା ଉକ୍ତ ଜଟିଳଗ୍ରନ୍ଥି ଶିଥିଳ କରି ଦେଇଅଛି । ଆର୍ଯ୍ୟମାନଙ୍କ ମଧ୍ୟରେ ଉକ୍ତ ବିଷୟରେ କିଞ୍ଚିତ୍ ମତଭେଦ ଦେଖାଯାଉଥିଲେ ସୁଦ୍ଧା ସେମାନେ ତତ୍ତ୍ୱାନୁସନ୍ଧାନପୂର୍ବକ ବେଦ ଶାସ୍ତ୍ରରେ ଯେଉଁ ବୀଜ ରୋପଣ କରିଥିଲେ ତାହା ଉପନିଷେଦାଦିରେ ପଲ୍ଲବିତ ହୋଇ ପୁରାଣରେ ରୂପକ ଛଳରେ ରୂପାନ୍ତର ଧାରଣ କରିଅଛି ।

ଶତ ଶତ ସଂହିତା ଓ ପୁରାଣ ଆଲୋଡ଼ନ କରି ଉକ୍ତ ତତ୍ତ୍ୱ ଲାଭ କରିବା ସହଜ ବ୍ୟାପାର ନୁହେଁ । ପ୍ରଖର ଧୀଶକ୍ତିସମ୍ପନ୍ନ ମହାମନୀଷୀଗଣଙ୍କ ମସ୍ତିଷ୍କପ୍ରସୂତ ବାକ୍ୟାବଳିର ଗାମ୍ଭୀର୍ଯ୍ୟ ସମ୍ୟକ୍ ପରିଶୀଳନଦ୍ୱାରା ଏହା ବୁଝାଯାଏ ଯେ, ସୃଷ୍ଟି ପ୍ରାରମ୍ଭରେ ପ୍ରଗାଢ଼ ଅନ୍ଧକାରମୟ ଓ କ୍ରିୟାଶୂନ୍ୟ ପ୍ରଶାନ୍ତ ଅବସ୍ଥା ଥିଲା । ଯଥାକାଳେ ଇଚ୍ଛାମୟଙ୍କ ଇଚ୍ଛାବଳେ ସେହି ଶକ୍ତିର ପ୍ରଥମ

ସ୍ପନ୍ଦନରୁ ଅନନ୍ତ ଅଣୁ ନାନା ଆକାରରେ ପରିଣତ ହୋଇ ପ୍ରଥମେ ଭୂତର ସୃଷ୍ଟି ହେଲା । ସର୍ବାଦୌ ଆକାଶ, ଆକାଶରୁ ବାୟୁ, ବାୟୁରୁ ତେଜ, ତେଜରୁ ଜଳ, ଜଳରୁ କ୍ଷିତି କ୍ରମଶଃ ସୃଷ୍ଟି ହେଲା । ଏହି ପୃଥିବୀରୁ ଜ୍ୟୋତିଷଗଣ ଅର୍ଥାତ୍ ସୂର୍ଯ୍ୟାଦିଗ୍ରହ ଓ ନକ୍ଷତ୍ର ମଣ୍ଡଳ ପ୍ରଭୃତି ଅନନ୍ତ କୋଟି ଲୋକର ସୃଷ୍ଟି ହୋଇଥିବା ବୃହସ୍ପତି ଋଷି କହନ୍ତି । ତାହାଙ୍କର ଏହି ମତ ସଙ୍ଗେ ଅଭିବ୍ୟକ୍ତିବାଦର ସାମଞ୍ଜସ୍ୟ ଅଛି । ପ୍ରାୟତଃ ବେଦାଦି ସକଳ ଗ୍ରନ୍ଥ ଏହା ସ୍ୱୀକାର କରନ୍ତି ।

ଏହି ସମଗ୍ର ଜଗତ ପ୍ରଥମେ ଜଳମଗ୍ନ ଥିଲା । ଏହି ଜଳରୁ ହିଁ ପ୍ରଥମେ ଜଳୀୟ ଜୀବର ସୃଷ୍ଟି ହେଲା । କାଳକ୍ରମେ ତେଜପ୍ରାବଲ୍ୟରୁ ପୃଥିବୀର ଆବିର୍ଭାବ । ତା'ପରେ ଆରଣ୍ୟକ ସୃଷ୍ଟି, କ୍ରମଶଃ ଉଭୟଚର ଜୀବ ଏବଂ ପଶୁ ଓ ପକ୍ଷୀର ବିକାଶ । ପରିଶେଷରେ ମାନବର ସୃଷ୍ଟି ହେଲା, ଏହାହିଁ ସର୍ଜନାର କ୍ରମବିକାଶ ।

ଅଦ୍ଭୁତ ଜ୍ଞାନସମ୍ପନ୍ନ ସୂକ୍ଷ୍ମଦର୍ଶୀ ଆର୍ଯ୍ୟମହର୍ଷିଗଣ ଆତ୍ମଜ୍ଞାନବଳେ ଅନନ୍ତ କୋଟି ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ସୂକ୍ଷ୍ମ ବସ୍ତୁରେ ପ୍ରତ୍ୟହ ପ୍ରତ୍ୟେକ ମୁହୂର୍ତ୍ତରେ ଜାଗ୍ରତ ସ୍ୱପ୍ନ ସୁଷୁପ୍ତିବତ ସୃଷ୍ଟି ସ୍ଥିତି ପ୍ରଳୟାତ୍ମକ ବ୍ୟାଶପାର ପ୍ରତ୍ୟକ୍ଷ କରିଏହି ଜଗତ ନଶ୍ୱର ବୋଲି ପ୍ରତିପାଦନ କରିଅଛନ୍ତି । ବର୍ତ୍ତମାନ ସୁଦ୍ଧା ଭୂକମ୍ପାଦି ଉତ୍ପାତରୁ ଖଣ୍ଡ ପ୍ରଳୟର ସୃଷ୍ଟି ହୋଇଥିବା ଆମ୍ଭେମାନେ ପ୍ରତ୍ୟେକ୍ଷରେ ଅନୁଭବ କରୁଁ । ଅଭିନିବେଶପୂର୍ବକ ଦେଖିଲେ ଜଣାଯାଏ ଯେ, ନିଜ ମନରେ ସୁଦ୍ଧା ପ୍ରତ୍ୟେକ ମୁହୂର୍ତ୍ତରେ ନାନା ସଂକଳ୍ପରୂପ ସୃଷ୍ଟି ସ୍ଥିତି ଲୟର ବିଚିତ୍ର ଲୀଳା ଅବିରାମ ଚାଲିଅଛି । ଏହି କ୍ଷଣଭଙ୍ଗୁର ନଶ୍ୱରତାର ଗୂଢ଼ ରହସ୍ୟ ବୁଝିପାରି ଜ୍ଞାନୀବୃନ୍ଦ ଏହି ଭ୍ରମାତ୍ମକ ସୁଖଦୁଃଖ ପ୍ରତି ଭ୍ରୂକ୍ଷେପ ନକରି ନିତ୍ୟ ସୁଖ ସମ୍ପାଦନେ ଯତ୍ନଶୀଳ ହୁଅନ୍ତି ।

ପ୍ରତ୍ୟେକ ଆର୍ଯ୍ୟଶାସ୍ତ୍ରରେ ସ୍ୱର୍ଗୀୟ ସୁଖର ପ୍ରଲୋଭନ ଓ ନରକର ଯନ୍ତ୍ରଣା ନାନା ଭାବରେ ବର୍ଣ୍ଣନ କରି ମାନବକୁ ସତ୍‌କର୍ମାନୁଷ୍ଠାନରେ ପ୍ରବର୍ତ୍ତାଇ ଅସତ୍ କର୍ମରୁ ନିବର୍ତ୍ତାଇବା ନିମନ୍ତେ ଲୋକହିତୈଷୀ ମହର୍ଷିଗଣ ବହୁ ଉପଦେଶ ଦେଇଅଛନ୍ତି । କୋରାନ୍ ଓ ବାଇବେଲ୍ ସୁଦ୍ଧା ଏହା ଶତମୁଖରେ ଘୋଷଣା କରୁଅଛି । ସ୍ୱର୍ଗର ଅତୁଳନୀୟ ମୋହନ ଛବି ଓ ଅପାର ସୁଖଭୋଗରେ ଆକୃଷ୍ଟ ହୋଇ ବହୁ ଅର୍ଥ ବ୍ୟୟ ଓ କାୟକ୍ଳେଶ ସହ୍ୟକରି ଅନେକ ସୁକୃତୀ ନାନାବିଧ ସଦନୁଷ୍ଠାନ କରିଥା'ନ୍ତି । ଅନେକ ଦୁଃଷ୍କୃତୀ ପାପକର୍ମରେ ରତହୋଇ ଅଶେଷ ନରକଯନ୍ତ୍ରଣା ଭୋଗିବା ଆଖ୍ୟାନ ମଧ୍ୟ ପୁରାଣରେ ବିରଳ ନୁହେଁ । ତେବେ ଆଲୋଚ୍ୟ ବିଷୟ ଏହି ଯେ, ଯଥାର୍ଥରେ ସ୍ୱର୍ଗ ନରକ ବୋଲି ଗୋଟିଏ ଗୋଟିଏ ଲୋକ ଅଛି ଅଥବା ପୁଣ୍ୟେକର୍ମରେ ପ୍ରବର୍ତ୍ତିବା ଓ ପାପକର୍ମରୁ ନିବର୍ତ୍ତିବା ଲାଗି ଏ ସକଳ ଉପଦେଶାତ୍ମକ କଳ୍ପିତସ୍ତୋତ୍ର ମାତ୍ର ?

ଉମେଶଚନ୍ଦ୍ର ବିଦ୍ୟାରତ୍ନ ପ୍ରଭୃତି କେତେକ ପାଶ୍ଚାତ୍ୟ ବିଦ୍ୟାବିଶାରଦଗଣ ନାନାଯୁକ୍ତିରେ ଅବତାରଣା କରି କହନ୍ତି ଯେ, ଆଧୁନିକ ମାଙ୍ଗୋଲିଆ ହିଁ ସ୍ୱର୍ଗଲୋକ । ତେବେ ଯେଉଁ

ପ୍ରାଚ୍ୟପ୍ରତିଭା ଅଜ୍ଞେୟ ବ୍ରହ୍ମତତ୍ତ୍ୱର ଅନନ୍ତ ଆଧ୍ୟାତ୍ମିକ ରହସ୍ୟ କରାମଳକ ପରି ବୁଝିଥିଲା ସେହି ଆର୍ଷପ୍ରଜ୍ଞା କି ମାଙ୍ଗୋଲିଆ ପ୍ରାପ୍ତି ଲାଗି ନିରୀହ ଧର୍ମବିଶ୍ୱାସୀଗଣଙ୍କୁ ବହୁ କଷ୍ଟସାଧ୍ୟ କାର୍ଯ୍ୟରେ ପ୍ରବର୍ତ୍ତାଇଥିଲା? ଏଥିଲାଗି ବି ପ୍ରାଣପଣେ ଚେଷ୍ଟା କରି ସୁଦୀର୍ଘକାଳ ବହୁ ପରିଶ୍ରମପୂର୍ବକ ଯାଗଯଜ୍ଞାଦି କରାଉଥିଲା । ପୁଣି ଏହି ଜଗତର ଘୃଣିତ ପାପରତ ବ୍ୟକ୍ତି ଧନର ସାହାଯ୍ୟରେ କ'ଣ ସେହି ମାଙ୍ଗୋଲିଆ ସ୍ୱର୍ଗାରୋହଣ କରିପାରିବ ନାହିଁ? ଇଚ୍ଛାକଲେ ଧନୀଲୋକ ସ୍ୱଦେହରେ ଅନାୟାସରେ ସେହି ସ୍ୱର୍ଗପୁରବାସୀ ହୋଇପାରେ । ପାପୀ ସ୍ୱର୍ଗଦ୍ୱାର ସ୍ପର୍ଶକରି ନପାରେ ବୋଲି ଜଗତର ସମସ୍ତ ଧର୍ମଶାସ୍ତ୍ର ସମସ୍ୱରରେ ଘୋଷଣା କରେ । ତେବେ ଏସକଳ ଶାସ୍ତ୍ରର କି କୌଣସି ମୂଲ୍ୟ ନାହିଁ ? ଅସମ୍ଭବ! ଅଦ୍ୟାପି କେବଳ ପରିଦୃଶ୍ୟମାନ ସୌରଜଗତର ଶେଷସୀମାରେ ପହଞ୍ଚି ନପାରି ଦୂରବୀକ୍ଷଣାଦି ବିବିଧଯନ୍ତ୍ର ଆବିଷ୍କର୍ତ୍ତା ବୈଜ୍ଞାନିକଗଣ ସୁଦ୍ଧା ମୁହ୍ୟମାନ ହେବା ସ୍ଥିତିରେ ପହଞ୍ଚିଲେଣି । ଅନନ୍ତକୌଶଳୀ ଭଗବାନଙ୍କର ଅନନ୍ତକୋଟି ବ୍ରହ୍ମାଣ୍ଡ ମଧ୍ୟରେ ସ୍ୱର୍ଗଲୋକ ଯେ ନାହିଁ ତାହା କିଏ କହିବାକୁ ସାହସୀ ହେବ ! ବୋଧହୁଏ ମଙ୍ଗଳ ବିଶିଷ୍ଟ ଶବ୍ଦକୁ ନେଇ ମଙ୍ଗୋଲିଆ ମଙ୍ଗଳମୟ ସ୍ୱର୍ଗସ୍ଥାନ ବୋଲି କେତେକ ଅନୁମାନ କରନ୍ତି ।

ଯାହାହେଉ ଆମ୍ଭର ଅଭ୍ରାନ୍ତ ଶାସ୍ତ୍ରୋକ୍ତିରେ ଆସ୍ଥା ରଖି ସ୍ୱର୍ଗ ନରକର ଅସ୍ତିତ୍ୱ ସ୍ୱୀକାର କରିବାକୁ ହେବ । ଭୌତିକ ସ୍ଥୂଳଶରୀର ତ୍ୟାଗକରି ଷାଟ୍‌କୋଷିକ ଦେହଧାରୀ ଜୀବ ଅନନ୍ତ ଅଖଣ୍ଡ ଆକାଶରେ ନିଜ ବାସନାକୁ ଅନୁସରି ସୁଖ ଓ ଦୁଃଖ ଭୋଗ କରିଥାଏ । ଜନ୍ମାନ୍ତର ଲାଗି ଉପଯୁକ୍ତ ଅବସ୍ଥାପ୍ରାପ୍ତ ହେବା ମାତ୍ରେ ମାତୃଗର୍ଭେ ସ୍ଥିତିଲଭି ଭୂମିଷ୍ଠ ହୋଇ ଇହଲୋକରେ ସୁଦ୍ଧା ପୂର୍ବଜନ୍ମକୃତ କର୍ମର ଅବଶିଷ୍ଟ ଫଳଭୋଗ କରେ; ଏବଂ ପୁନର୍ବାର ଏହି କର୍ମଭୂମିରେ ନିଜେ କର୍ମ ଆଚରଣ କରେ ।

ବିଷୟବାସନାକଳୁଷିତ ମାନବର ଷାଟ୍‌କୋଷିକ ଶରୀର ନାନା ପ୍ରକାର ଅନୁତପ୍ତାବସ୍ଥାରେ ଅସଂଖ୍ୟ ସ୍ତର ନିର୍ଦ୍ଦିଷ୍ଟ ଅନନ୍ତ ଆକାଶସ୍ଥିତ ନିଜଶ୍ରେଣୀ ଅନ୍ତର୍ଭୁକ୍ତ ହୋଇ ପୁନର୍ଜନ୍ମାବସ୍ଥାକୁ ନିରୀକ୍ଷଣ କରିଥାଏ । କଳୁଷ ବାସନାସକ୍ତ ଜୀବସକଳର ସଂସ୍ଥିତ ସ୍ଥାନ ହିଁ ନରକ ନାମେ ଅଭିହିତ ।

ଯେଉଁମାନେ ଜ୍ଞାନୀ, ଯାହାଙ୍କ ମନ ବିଷୟ ବାସନାରେ ଅନୁରକ୍ତ ନୁହେଁ, ସେମାନେ ଜ୍ଞାନମୟ ଆନନ୍ଦମୟାବସ୍ଥାରେ ନିଜ ଶ୍ରେଣୀ ଅନ୍ତର୍ଭୁକ୍ତ ହୋଇ ଅର୍ଥାତ୍ ପୁଣ୍ୟାତ୍ମାଙ୍କ ସଙ୍ଗେ ସେହି ସ୍ତରରେ ପୁନର୍ଜନ୍ମାବସ୍ଥା ପ୍ରାପ୍ତ ହେବା ପର୍ଯ୍ୟନ୍ତ ରହନ୍ତି । ଏହି ସ୍ଥାନ ହିଁ ସ୍ୱର୍ଗ ନାମରେ ଅଭିହିତ ହୋଇଅଛି । ଜ୍ଞାନ ଲାଭକରି ମୁକ୍ତି ଲଭିବା ପର୍ଯ୍ୟନ୍ତ ଏହିପରି ଜନ୍ମ ମରଣର ବିରାମ ନାହିଁ । ଜୀବ ଅବିନାଶୀ । ଏହାର କ୍ଷୟ ନାହିଁ, କେବଳ ପରିବର୍ତ୍ତନ ଅର୍ଥାତ୍ ଶରୀରାନ୍ତର ଗ୍ରହଣ ମାତ୍ର । ସଂସାରରେ ଜନ୍ମହେବା, ଏହି କର୍ମଭୂମିରେ କର୍ମ କରିବା, ମୃତ୍ୟୁ ଲଭିବା, ଏହାହିଁ ସୃଷ୍ଟି ସ୍ଥିତି ପ୍ରଳୟ । ଏହି ଜନ୍ମମରଣ ପ୍ରବାହରେ ଭାସମାନ ହୋଇ ଅନନ୍ତ କୋଟି

ଜନ୍ମାନ୍ତରେ ଭଗବତ୍‌ପ୍ରେମରୁ ଜ୍ଞାନଲାଭ କରି ଅନେକ ଜନ୍ମ ସଂସିଦ୍ଧି ବଶରୁ ବିଷୟ ଭୋଗାଦିରେ ନିସ୍ପୃହ ହୋଇ ଆଧ୍ୟାତ୍ମିକ ଭାବରେ ଅନୁପ୍ରାଣୀତ ହେଲେ ଜୀବ ମୁକ୍ତି ଲାଭ କରେ ଅର୍ଥାତ୍ ଏହି ଜନ୍ମମରଣ ପ୍ରବାହରୁ ଉତ୍ତୀର୍ଣ୍ଣ ହୁଏ । ତାବତ୍ପର୍ଯ୍ୟନ୍ତ ଜନ୍ମମରଣର ଅବସାନ ବା ସ୍ୱର୍ଗ ନରକ ନେଇ ଆସ୍ତିକ ଓ ନାସ୍ତିକମାନଙ୍କ ମଧ୍ୟରେ ତୁମୁଳ ତର୍କ ଚାଲୁଅଛି । ଏହାର ମୀମାଂସା ମାଦୃଶ କ୍ଷୀଣଶକ୍ତିସମ୍ପନ୍ନ ବ୍ୟକ୍ତିର ସାମର୍ଥ୍ୟ ବହିର୍ଭୂତ । ଏ ସମ୍ବନ୍ଧରେ ବିଶେଷ ବିବରଣ ସିଦ୍ଧାନ୍ତ ତରଙ୍ଗରେ ଦିଆଯିବ, ଏଣୁ ଏଠାରେ ଜନ୍ମ ମରଣରର ସୂଚନା ମାତ୍ର ଦେଇ କ୍ଷାନ୍ତ ହେଲୁ ।

ଆର୍ଯ୍ୟ ମହର୍ଷିବୃନ୍ଦଙ୍କ ମତେ ପାତାଳ ସପ୍ତଭାଗେ ବିଭକ୍ତ ଏବଂ ପ୍ରତ୍ୟେକ ଭିନ୍ନ ଭିନ୍ନ ନାମେ ଅଭିହିତ । ଏହା ପୃଥିବୀର ସ୍ତରବିଶେଷ ବିନା ଅନ୍ୟ କିଛି ନୁହେଁ । ଏ ସମ୍ବନ୍ଧେ ଏହି ତରଙ୍ଗଗତ ଅଭିବ୍ୟକ୍ତି ବା ପରିଣାମବାଦୀଙ୍କ ମତର ବିଶଦ ଆଲୋଚନା କରାଯାଇଛି ।

ଦେବଯାନ ଓ ପିତୃଯାନ ସମ୍ବନ୍ଧେ ଏତିକି କହିଲେ ଯଥେଷ୍ଟହେବ ଯେ, ପୁଣ୍ୟାତ୍ମା ଅର୍ଥାତ୍ ସଂସାର ନିଃସ୍ପୃହ ବ୍ୟକ୍ତି ଆଲୋକମୟ ମାର୍ଗରେ ନିର୍ଦ୍ଦିଷ୍ଟ ସ୍ତରକୁ ଗମନ କଲାବେଳେ ମାର୍ଗସ୍ଥ ସ୍ତରସଞ୍ଚାରୀ ବ୍ୟକ୍ତିମାନେ ବା ସେହି ଲୋକସ୍ଥ ଅଧିଦେବତାମାନେ ସାହାଯ୍ୟ କରନ୍ତି ।

ଭୋଗଲିପ୍ସୁ ପ୍ରବଳ ଲାଳସାରେ ଆବଦ୍ଧ ରହି ନାନା ବୈଷୟିକ ଜ୍ୱାଳାରେ ଅନୁତପ୍ତହୋଇ ଅନ୍ଧକାରମୟ ମାର୍ଗରେ ନିଜ ନିର୍ଦ୍ଦିଷ୍ଟ ସ୍ତରକୁ ଅସହାୟାବସ୍ଥାରେ ଗମନ କରେ ।

ଯାହାହେଉ ମଙ୍ଗଳମୟଙ୍କ ଅଲଂଘନୀୟ ନିୟମସକଳ ପ୍ରାଣୀର ଜ୍ଞାନାଗମ୍ୟ ସେହି ବୈଚିତ୍ର୍ୟରୁ ହିଁ ସୃଷ୍ଟିର ସଙ୍କୋଚବିକାଶ, ପ୍ରଳୟୋଦୟ, ନିବୃତ୍ତି ଓ ପ୍ରବୃତ୍ତି ସଂଘଟିତ ହୁଏ ଏବଂ ତାହା କାର୍ଯ୍ୟକାରଣର ଧର୍ମକୁ ଅନୁସରିଥାଏ; ଏହି ନିୟମରେ ଜଗତ ଆବଦ୍ଧ ।



ବୀଜଂ ଜଗସ୍ସୁନନ୍ନୁ ପଞ୍ଚକମାତ୍ରମେବ
ବୀଜଂ ପରବ୍ୟବହିତ ସ୍ଥିତିଶକ୍ତିରାଦ୍ୟା ।
ବୀଜଂ ତଦେବ ଭବତୀତି ସଦାନୁଭୂତଂ
ଚିନ୍ମାତ୍ରମେବ ମଜମାଦ୍ୟମତୋ ଜଗତ୍‌ଶ୍ରୀଃ । (ଯୋଗବାଶିଷ୍ଠ)

ଏହି ନିଖିଳ ଜଗତର ଉପାଦାନ ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ । ଏହି ଭୂତ ପଞ୍ଚକର ସୂକ୍ଷ୍ମାବସ୍ଥା ପଞ୍ଚତନ୍ମାତ୍ର ଏବଂ ପଞ୍ଚତନ୍ମାତ୍ରର କାରଣ ଆଦ୍ୟାଶକ୍ତି; ଏହାକୁ ହିଁ ମାୟା ବା ପ୍ରକୃତି କୁହାଯାଏ । ଉକ୍ତ ପ୍ରକୃତିର ସ୍ୱରୂପାବସ୍ଥାକୁ ଅବ୍ୟକ୍ତାବସ୍ଥା, ବିକାରାବସ୍ଥାକୁ ବ୍ୟକ୍ତାବସ୍ଥା କୁହାଯାଏ । ଆଦ୍ୟାଶକ୍ତିର ଅବ୍ୟକ୍ତାବସ୍ଥାରେ ସୃଷ୍ଟିର ଅଭାବ, ବ୍ୟକ୍ତାବସ୍ଥାରେ ସୃଷ୍ଟିର ଆବିର୍ଭାବ ହୁଏ । ପରଂବ୍ରହ୍ମଙ୍କ ସହିତ ଆଦ୍ୟାଶକ୍ତିର ନିତ୍ୟ ସମ୍ବନ୍ଧ ବିଦ୍ୟମାନ । ଏକମାତ୍ର ଚିନ୍ମୟ ପରଂବ୍ରହ୍ମ ହିଁ ସେହି ପ୍ରକୃତିର ଆଧାର ।

ପୂର୍ବ ତରଙ୍ଗରେ ସୃଷ୍ଟି ପ୍ରକ୍ରିୟାର ଅବତାରଣାରେ ଭୌତିକ ସୃଷ୍ଟିର ପ୍ରଧାନ ଉପାଦାନ ସ୍ୱରୂପ ପଞ୍ଚମହାଭୂତର ସ୍ଥୂଳ ପରିଚୟ ମାତ୍ର ଦିଆଯାଇଅଛି । ତନ୍ମଧ୍ୟରୁ ଗୋଟିଏ ଗୋଟିଏ ମହାଭୂତର ଆଂଶିକଶକ୍ତି ନେଇ ଆମରଣ ଚେଷ୍ଟାଦ୍ୱାରା ବିଶ୍ୱରହସ୍ୟର ପରିଚୟ କିୟତ୍ ପରିମାଣରେ ଦେଇଥିବା ଯୋଗୁଁ ଆଜି ବିରାଟ ମାନବସମାଜରେ ଦାର୍ଶନିକଙ୍କର ଏଡ଼େ ପ୍ରତିପତ୍ତି, ଜ୍ୟୋତିଷୀଙ୍କରଏତେ ଆଦର, ବେଦାନ୍ତିଙ୍କର ଏଡ଼େ ଉଚ୍ଚ ଆସନ । ପ୍ରକୃତିରାଣୀ ନବୀନୋଲ୍ଲାସେ ନିତ୍ୟ ନୂତନ ବେଶେ ପକ୍ଷୀର ମଧୁର କଳକଣ୍ଠେ ଯେଉଁ ବିଶ୍ୱରହସ୍ୟାତ୍ମକ ମଧୁମୟ ସଙ୍ଗୀତ ଗାନକରେ, ତଦୀୟ ମୂର୍ଚ୍ଛନାର ମାଧୁର୍ଯ୍ୟ ଓ ଭାବର ଗାମ୍ଭୀର୍ଯ୍ୟ ମହା ବିସ୍ମୟୋତ୍ପାଦକ । ଯାହାର କ୍ଷଣଇକ ବିଶୃଙ୍ଖଳାରେ ବିରାଟ ଜଗତ୍‌ବ୍ୟାପାର ଅଚଳ, କର୍ମ କୋଳାହଳ ନିର୍ମୂଳ ଓ ବିଶ୍ୱଚିତ୍ର ମଳିନ ହୋଇଯିବ ସେ କଳର ଗୂଢ଼ ତାତ୍ପର୍ଯ୍ୟ କିୟତ୍‌ଗ୍ରନ୍ଥର ବିଶାଳ ପୃଷ୍ଠାରେ ତାରକାକ୍ଷରେ ସୁସଂଯତ ଭାବେ ଉଲ୍ଲିଖିତ । ଅତଏବ ବିଦ୍ଭୁଦତ୍ତ ପ୍ରତିଭାବଳେ ଗଭୀର ଅନ୍ତର୍ଦୃଷ୍ଟି ଦ୍ୱାରା ବିଭିନ୍ନ ଯୁଗର ମନୀଷୀବୃନ୍ଦ ସେହି ସମସ୍ତ ପୁଙ୍ଖାନୁପୁଙ୍ଖ ରୂପ ଆଲୋଚନା କରି ଯେଉଁ ନିଗୂଢ଼ ତଥ୍ୟ ଆବିଷ୍କାର କରିଯାଇଅଛନ୍ତି, ସେ ସକଳର ବିସ୍ତୃତ ବିବରଣ ଏହି ପ୍ରବନ୍ଧରେ ପାଠକପାଠିକାଙ୍କୁ ଉପହାର ଦେବୁ । ଅନେକେ ଆଶଙ୍କା କରି ପାରନ୍ତି ଯେ, 'ପରମାର୍ଥ ପୟୋଧି' ଗ୍ରନ୍ଥରେ ଏ ସକଳ ନୀରସ ଦାର୍ଶନିକ ବିଷୟର ଅବତାରଣାର ପ୍ରୟୋଜନ କି ? ପରମାର୍ଥ ଶବ୍ଦଦ୍ୱାରା ଭଗବାନଙ୍କର ଲୌକିକ ଲୀଳା ପ୍ରସଙ୍ଗ ବା ଭଜନସ୍ମରଣ

କିମ୍ବା କୀର୍ତ୍ତନ କେବଳ ବୁଝାଏ ନାହିଁ । ତାହାର ପ୍ରକୃତ ଅର୍ଥ - ଯଥାର୍ଥ ଧର୍ମ ବା ତତ୍ତ୍ୱବିଷୟକ ଜ୍ଞାନ ମାତ୍ର । ତାତ୍ତ୍ୱିକ ସୂତ୍ରେ ବୁଝିବାକୁ ଗଲେ ସୂକ୍ଷ୍ମତର ପରମାଣୁ ପୁଞ୍ଜଠାରୁ ବିଶାଳ ବିଶ୍ୱବ୍ରହ୍ମାଣ୍ଡର ପ୍ରତ୍ୟେକ ପଦାର୍ଥ ପର୍ଯ୍ୟନ୍ତ ପରମାର୍ଥ ମହିମାମଣ୍ଡିତ । ଯୁଗଯୁଗାନ୍ତରରେ କୋଟିସାଧନା, ଶତ ଧାରଣା ଓ ଲକ୍ଷ ପ୍ରଣିଧାନ ସତ୍ତ୍ୱେ ଅଦ୍ୟାପି ସେହି ଅଖଣ୍ଡ ଚିନ୍ମୟୀ ସତ୍ତା ମାନବର ସମ୍ପୂର୍ଣ୍ଣ ଅଜ୍ଞେୟ କହିଲେ ଚଳେ । ତାହାର ପ୍ରଭାବ ପ୍ରଜ୍ଞାର ବହୁ ଉର୍ଦ୍ଧ୍ୱେ । ଆମ୍ଭେ ଭୌତିକ ଶରୀର ବହି ମହିଭୂତଗଣର ଅତୁଳ ଅନୁଗ୍ରହେ ପ୍ରାଣୀ ରାଜ୍ୟରେ ଶ୍ରେଷ୍ଠ ବୋଲି ଏତେ ଗର୍ବ, ଏତେ ଆସ୍ଫାଳନ କରୁଥାଇଁ । ଆକାଶର ବିଭୁତ୍ୱ, ବାୟୁରାଶିର ଆଲୋକ ପ୍ରେରଣା, ରାସାୟନିକ ତତ୍ତ୍ୱର ଗୁରୁତ୍ୱ ଓ ବିକୀରଣ ଶକ୍ତି, ତାପର ଉତ୍ପତ୍ତି, ଅଗ୍ନିର ଶିଖା, ତଡ଼ିତ୍‌ର ପ୍ରକ୍ରିୟା, ବଜ୍ରର ତତ୍ତ୍ୱ, ମେଘର ଜଳୀୟବିକାର, ନୀହାରିକାର ସ୍ଥିତି, ପୃଥିବୀର ଉତ୍ପତ୍ତି ଓ ଗତିବିଧି, ଉତ୍ତାପ, ଗୋଲତ୍ୱ ଓ ଆକର୍ଷଣର ଶକ୍ତି ସମ୍ବନ୍ଧେ କେତେଦୂର ଜ୍ଞାନ ସଞ୍ଚୟ କରିଅଛେ । ପ୍ରାଚୀନ ଆର୍ଯ୍ୟଗଣକର୍ତ୍ତୃକ ବିଶ୍ଳେଷିତ ଓ ପାଶ୍ଚାତ୍ୟ ବୈଜ୍ଞାନିକଙ୍କଦ୍ୱାରା ଆବିଷ୍କୃତ ସେହି ବିସ୍ମୟୋତ୍ପାଦକ ଭୌତିକ କ୍ରିୟାକଳାପାଦିରେଆମ୍ଭେମାନେ ତନ୍ମୟ ହୋଇ ନିର୍ନିମେଷ ନେତ୍ରରେ ଚାହିଁ ରହିବା ବିନା ଅନନ୍ତକୌଶଳୀ ବିଶ୍ୱସ୍ରଷ୍ଟା କୋଟିବ୍ରହ୍ମାଣ୍ଡନାଥଙ୍କର ଅଚିନ୍ତ୍ୟ ମହିମା ବୁଝିବାପାଇଁ ଆମ୍ଭର ସେ ଉଦ୍ୟମ ବା ଆତୁରତା କାହିଁ? ଅତଏବ ଯଥାର୍ଥ ପାରମାର୍ଥିକ ତତ୍ତ୍ୱପୂର୍ଣ୍ଣ ଭୌତିକ ରହସ୍ୟ କେଉଁ ପ୍ରଣାଳୀରେ ଆଲୋଚିତ ହୋଇଅଛି, ତାହା ଥରେ ପାଠକରିବା ବିଶେଷ ପ୍ରୟୋଜନ ବୋଲି ମନେକରୁଁ । ପାଶ୍ଚାତ୍ୟ ବିଦ୍ୟାବିତ୍‌ଗଣଙ୍କ ବ୍ୟତୀତ ଏ ସକଳ ଅନେକଙ୍କ ଧାରଣାର ଅତୀତ । ଆମ୍ଭେ ନାନା ଶାସ୍ତ୍ରରୁ ଏହି ସମସ୍ତ ବିଷୟ ସଂକଳନ କରି ଉପହାର ଦେବା ଉଦ୍ଦେଶ୍ୟ ଏହି ଯେ, ଏହା ପାଠକପାଠିକାଙ୍କ ପକ୍ଷେ ସମଧିକ କୌତୂହଳଜନକ ହେବ ଏବଂ ସେମାନେ ନିତ୍ୟ ପ୍ରତ୍ୟକ୍ଷୀଭୂତ ଭୂତନିବହର ମୂଳରେ ଯେଉଁ ଅସାଧାରଣ ଶକ୍ତି ନିହିତ ଅଛି ତାହାର କିଞ୍ଚିତ୍ ଆଭାସ ପାଇପାରିବେ । କିନ୍ତୁ ଏତାବନ୍ମାତ୍ର ସ୍ମରଣ ରଖିବାକୁ ହେବ ଯେ, ଏ ସମସ୍ତଭୌତିକ ବ୍ରହ୍ମାଣ୍ଡ ବ୍ରହ୍ମରୁ ପୃଥକ୍ ନୁହେଁ । ଯୋଗବାଶିଷ୍ଠରେ ଲେଖାଅଛି :-

କଜ୍ଜଳାନ୍ନ ଯଥା କାର୍ଷ୍ଣ୍ୟଂ ଶୈତ୍ୟଂଚ ନ ଯଥା ହିମାତ୍
ପୃଥଗେବଂ ଭବେତ୍‌ବୁଦ୍ଧ ଜଗନ୍ନାସ୍ତି ପରେପଦେ ।

ଅର୍ଥାତ୍ ଯେପରି କଜ୍ଜଳଠାରୁ କାଳିମା, ହିମଠାରୁ ଶୈତ୍ୟ ପୃଥକ୍ ନୁହେଁ, ସେହିପରି ବ୍ରହ୍ମରୁ ଜଗତ୍ ପୃଥକ୍ ନୁହେଁ । ଆର୍ଯ୍ୟଗଣ ଏହାକୁ ହିଁ ପାରମାର୍ଥିକ ତତ୍ତ୍ୱ ବୋଲି ଅଭିବ୍ୟକ୍ତି କରିଅଛନ୍ତି ।

## ଆକାଶ

ଏହାପୂର୍ବେ କୁହାଯାଇଅଛି ଯେ, ପଞ୍ଚମହାଭୂତ ପରସ୍ପର ସମ୍ମିଳିତ, ତନ୍ମଧ୍ୟରୁ ଆକାଶ ଶୂନ୍ୟ । ଯେଉଁ ସ୍ଥାନରେ କିଛି ନାହିଁ ତାହା ଆକାଶ । ସାଧାରଣତଃ ଆମ୍ଭର ଉର୍ଦ୍ଧ୍ୱରେ ଯେଉଁ ଅନନ୍ତ ନୀଳିମା ଦୃଷ୍ଟିଗୋଚର ହୁଏ ତାହାକୁ ଆକାଶ କୁହାଯାଏ ।

ଆକାଶର ଖ, ବ୍ୟୋମ ପ୍ରଭୃତି ୨୫ ଗୋଟି ନାମ ଅଛି; ତନ୍ମଧ୍ୟରୁ ବିଷ୍ଣୁପଦ, ସୁରବର୍ତ୍ମ, ମରୁଦ୍‌ବର୍ତ୍ମ, ମେଘବେଶ୍ମା ପ୍ରଭୃତି ନାମ ପ୍ରଧାନ । ଏହି ଅନ୍ତରୀକ୍ଷ ଲୋକତ୍ରୟ ମଧ୍ୟେ ପରିଗଣିତ ।

ନ୍ୟାୟମତେ ଏହା ନିତ୍ୟ, ଅସୀମ ଏବଂ ଅଶରୀରୀ; ଶବ୍ଦ ଏହାର ବିଶେଷ ଗୁଣ । ସଂଖ୍ୟା, ପରିମାଣ, ପୃଥକତ୍ୱ, ସଂଯୋଗ ଓ ବିଯୋଗ ଏହି ୫ଟି ଆକାଶର ସାମାନ୍ୟ ଗୁଣ । ଏହା ଶ୍ରବଣେନ୍ଦ୍ରିୟର ଆଧାର । ଆକାଶ ଏକ କିନ୍ତୁ ଉପାଧି ଭେଦେ ନାନାରୂପ ଧାରଣା କରିଥାଏ, ଯଥା - ଘଟାକାଶ, ପଟାକାଶ ଇତ୍ୟାଦି । ଏହାର ବିସ୍ତୃତ ବିବରଣ ନ୍ୟାୟ ଦର୍ଶନେ ଦ୍ରଷ୍ଟବ୍ୟ ।

ଗଣିତଶାସ୍ତ୍ରମତେ ଆକାଶ ଶବ୍ଦର ଅର୍ଥ ଶୂନ୍ୟ । ତୈତ୍ତରୀୟ ଉପନିଷଦ୍ କହେ, ପରଂବ୍ରହ୍ମଠାରୁ ପ୍ରଥମେ ଆକାଶ ଉତ୍ପନ୍ନ ହୋଇଥିଲା । ଆକାଶଠାରୁ ବାୟୁ ଏବଂ ଏହିପରି କ୍ରମଶଃ ଅନ୍ୟାନ୍ୟ ଭୂତର ସୃଷ୍ଟି ହୋଇଅଛି ।

ବାଇବେଲ୍‌ରେ ଲେଖାଅଛି, ଈଶ୍ୱର ପ୍ରଥମେ ଆକାଶ ସୃଷ୍ଟି କଲେ । ଆକାଶର କର୍ମସ୍ଥାନ ଦାନ କରିବା, ଅର୍ଥାତ୍ ଯେଉଁଠାରେ ଆକାଶ ରହି ନପାରେ, ସେଠାରେ ଅନ୍ୟ କିଛି ରହିପାରିବ ନାହିଁ । ଭୂମି ଓ ଆକାଶ ବହୁ ଦୂରରେ ମିଶି ଯାଇଥିଲା ପରି ଦୃଶ୍ୟ ହୁଏ । ପୃଥିବୀର ଗୋଲତ୍ୱ ନିରୂପଣକରଣେ ଏହା ଗୋଟିଏ ପ୍ରଧାନ କାରଣ । କୌଣସି ସ୍ଥାନରେ ଦଣ୍ଡାୟମାନ ହୋଇ ଦୃଷ୍ଟି ସଞ୍ଚାରଣ କଲେ ଯେଉଁଠାରେ ଆକାଶ ଓ ପୃଥିବୀ ମିଳିତ ହେଲାପରି ପ୍ରତୀତ ହୁଏ, ତାହାକୁ ଗଗନାନ୍ତରାଳ ବା ଦିଗନ୍ତରାଳ ବା ଚକ୍ରବାଳ (Horizon) କୁହାଯାଏ ।

ପୃଥିବୀର ପ୍ରାନ୍ତରୁ ଆକାଶ ପର୍ଯ୍ୟନ୍ତ ଯେଉଁ ଗୋଲ ପରିଧି କଳ୍ପନା କରାଯାଏ, ତାହାର ପରିମାଣ ଆର୍ଯ୍ୟଜ୍ୟୋତିଃଶାସ୍ତ୍ରରେ ୧୮୭୧୨୦୬୯୨୦୬୯୨୦୦୦୦୦୦୦୦ ଯୋଜନ ବୋଲି ନିରୂପଣ କରାଯାଇଅଛି । ବୈଜ୍ଞାନିକଗଣ ଆକାଶକୁ ସର୍ବବ୍ୟାପୀ ଓ ନିତ୍ୟ ବୋଲି (Eather) ନାମ ଦେଇଅଛନ୍ତି ।

## ବାୟୁ

ପଞ୍ଚଭୂତ ମଧ୍ୟେ ବାୟୁ ଦ୍ୱିତୀୟ ଏବଂ ଆକାଶରୁ ଏହାର ଉଦ୍ଭବ । ଏଥିଲାଗି ଏହାର ଶବ୍ଦ ଓ ସ୍ପର୍ଶ ଏହି ଦୁଇଟି ଗୁଣ ଅଛି ।

ପ୍ରାଣ, ଅପାନ, ସମାନ, ଉଦାନ ଓ ବ୍ୟାନ ଏହି ପଞ୍ଚବାୟୁ । ଊର୍ଦ୍ଧ୍ୱଗମନଶୀଳ ନାସାଗ୍ରସ୍ଥିତ ବାୟୁର ନାମ ପ୍ରାଣ । ଅଧୋଗମନଶୀଳ ଆଦିସ୍ଥାନସ୍ଥିତ ବାୟୁର ନାମ ଅପାନ । ସକଳ ନାଡ଼ୀରେ ଗମନଶୀଳ ସମସ୍ତ ଶରୀରସ୍ଥ ବାୟୁର ନାମ ବ୍ୟାନ । ଊର୍ଦ୍ଧ୍ୱଗମନଶୀଳ କଣ୍ଠସ୍ଥ ଉତ୍‌କ୍ରମଣଶୀଳ ବାୟୁର ନାମ ଉଦାନ । ଭୁକ୍ତପୀତ ଅନ୍ନଜଳାଦିର ସମୀକରଣକାରୀ ବାୟୁର ନାମ ସମାନ । ସମୀକରଣ ଅର୍ଥାତ୍ ପରିପାକକରଣ ।

ଆମ୍ଭେ ଯେଉଁ ସକଳ ଦ୍ରବ୍ୟ ଭୋଜନ କରୁ ସେହି ସମସ୍ତ ଦ୍ରବ୍ୟ ଏକମାତ୍ର ସମାନ ବାୟୁ ହିଁ ପରିପାକ କରି ରସ, ରୁଧିର, ଶୁକ୍ର ଓ ପୁରୀଷାଦିରେ ପରିଣତ କରେ ।

ସାଂଖ୍ୟାଚାର୍ଯ୍ୟଗଣ ଉପରୋକ୍ତ ପଞ୍ଚବାୟୁ ସଙ୍ଗେ ନାଗ, କୂର୍ମ, କୃକର,ଦେବଦତ୍ତ ଓ ଧନଞ୍ଜୟ ନାମକ ଅଧିକ ୫ଟି ବାୟୁ ସ୍ୱୀକାର କରିଛନ୍ତି । ଉଦ୍ଗୀରଣକାରୀ ବାୟୁକୁ ନାଗ, ଚକ୍ଷୁ ଉନ୍ମୀଳନକାରୀ ବାୟୁକୁ କୂର୍ମ, କ୍ଷୁଧାଜନନ ବାୟୁକୁ କୃକର, ଜୃମ୍ଭନକାରୀ ବାୟୁକୁ ଦେବଦତ୍ତ ଓ ପୋଷଣକାରୀ ବାୟୁକୁ ଧନଞ୍ଜୟ କୁହାଯାଏ । ବେଦାନ୍ତ ଆଚାର୍ଯ୍ୟଗଣ ପ୍ରାଣାଦି ଯେଉଁ ପଞ୍ଚବାୟୁ ସ୍ୱୀକାର କରିଛନ୍ତି ତହିଁରେ ହିଁ ଉକ୍ତ ନାଗାଦି ପଞ୍ଚବାୟୁର ପ୍ରକ୍ରିୟା ଅନ୍ତର୍ନିହିତ ।

ଏହି ପ୍ରାଣାଦି ପଞ୍ଚବାୟୁ ଆକାଶାଦି ପଞ୍ଚଭୂତର ରଜୋଅଂଶରୁ ସମୁତ୍ପନ୍ନ । ପ୍ରାଣାଦି ପଞ୍ଚବାୟୁ ପଞ୍ଚ କର୍ମେନ୍ଦ୍ରିୟ ସହିତ ମିଳିତ ହୋଇ ପ୍ରାଣମୟ କୋଷ ହୋଇଅଛି । ଗମନାଗମନ କ୍ରିୟାଶୀଳ ହେତୁ ଏହି ପଞ୍ଚ ବାୟୁକୁ ରଜୋଅଂଶୀ ବୋଲାଯାଏ ।

ଯେଉଁ ଦ୍ରବ୍ୟର ରୂପ ନାହିଁ କିନ୍ତୁ ସ୍ପର୍ଶ ଅଛି, ତାହାର ନାମ ବାୟୁ । ପୃଥିବୀ ଜଳ ଓ ତେଜର ରୂପ ଓ ସ୍ପର୍ଶ ଅଛି । ଏଣୁ ଏଗୁଡ଼ିକ ବାୟୁ ନୁହନ୍ତି; ଆକାଶର ସ୍ପର୍ଶ ନାହିଁ କିମ୍ବା ରୂପ ନାହିଁ ଏଣୁ ଏହା ସୁଦ୍ଧା ବାୟୁ ନୁହେଁ । ଅତଏବ ଉପରୋକ୍ତ ରୂପହୀନ ସ୍ପର୍ଶସମ୍ପନ୍ନ ମହାଭୂତ ହିଁ ବାୟୁ । ବାୟୁ ଦୁଇପ୍ରକାର - ନିତ୍ୟ ଓ ଅନିତ୍ୟ । ବାୟବୀୟ ପରମାଣୁ ନିତ୍ୟ, ତଦ୍‌ଭିନ୍ନ ବାୟୁ ଅନିତ୍ୟ । ଅନିତ୍ୟ ବାୟୁ ତିନି ପ୍ରକାର, ଯଥାଃ- ଶରୀର, ଇନ୍ଦ୍ରିୟ ଓ ବିଷୟ । ବାୟୁଲୋକସ୍ଥ ଜୀବମାନଙ୍କର ଶରୀର ବାୟବୀୟ । ବ୍ୟଜନ ବାୟୁ ଅଙ୍ଗସଙ୍ଗୀ ଜଳର ଶୈତ୍ୟ ଅଭିବ୍ୟକ୍ତ କରେ । ତ୍ୱଗେନ୍ଦ୍ରିୟ ସ୍ପର୍ଶ ଅଭିବ୍ୟଞ୍ଜକ ମାତ୍ର, ଅତଏବ ଏହା ବାୟବୀୟ ।

ଶରୀର ଓ ଇନ୍ଦ୍ରିୟ ଭିନ୍ନ ସମସ୍ତ ବାୟୁର ସାଧାରଣ ନାମ ବିଷୟ । ଜନ୍ୟ ଦ୍ରବ୍ୟ ମାତ୍ରକେ ପୃଥିବୀ, ଜଳ, ତେଜ ଓ ବାୟୁ, ଏହି ଭୂତ ଚତୁଷ୍ଟୟର ଅଳ୍ପାଧିକ ପରିମାଣେ ସମ୍ବନ୍ଧ ଅଛି ଏବଂ ଏହି ଭୂତ ଚତୁଷ୍ଟୟ ଜନ୍ୟଦ୍ରବ୍ୟର ଆରମ୍ଭକ ବା ସମବାୟକାରକ । ଶବ୍ଦର ଆଶ୍ରୟ ଦ୍ରବ୍ୟର ନାମ ଆକାଶ । ଶବ୍ଦର ଗୋଟିଏ ଅଧିକରଣ ବା ଆଶ୍ରୟ ଅଛି, ତାହାହିଁ ଆକାଶ । ଶବ୍ଦ ଉତ୍ପନ୍ନ ହେବାପାଇଁ ବାୟୁକୁ ଅପେକ୍ଷା କରୁଥିଲେ ସୁଦ୍ଧା ବାୟୁ ଶବ୍ଦର ଆଶ୍ରୟ ନୁହେଁ । କାରଣ ବାୟୁର କେବଳ ଗୋଟିଏ ବିଶେଷ ଗୁଣ ସ୍ପର୍ଶ । ଏହି ସ୍ପର୍ଶ ଯାବଦ୍‌ଦ୍ରବ୍ୟଭାବୀ ଅର୍ଥାତ୍ ବାୟୁ ଥିବାଯାଏ ସ୍ପର୍ଶ ଗୁଣମଧ୍ୟ ଥାଏ, କିନ୍ତୁ ଶବ୍ଦର ସେପରି ନୁହେଁ । ବାୟୁ ଥିଲେ ମଧ୍ୟ ଶବ୍ଦ ନଷ୍ଟ ହୋଇଯାଏ । ଏହିପରି ବୈଲକ୍ଷଣ୍ୟ ଥିବା ଯୋଗୁଁ ଶବ୍ଦ ବାୟୁର ବିଶେଷ ଗୁଣ ନୁହେଁ । ଶବ୍ଦ ବାୟୁର ବିଶେଷ ଗୁଣ ହୋଇଥିଲେ ସ୍ପର୍ଶପରି ତାହା ମଧ୍ୟ ଯାବଦ୍‌ଦ୍ରବ୍ୟଭାବୀ ହୋଇଥା'ନ୍ତା ।

ପରମାଣୁ ରୂପ ବାୟୁ ନିତ୍ୟ ବୋଲି ଏଥିପୂର୍ବେ କୁହାଯାଇଅଛି । ଅଦୃଷ୍ଟଯୁକ୍ତ ଆତ୍ମାର ସଂଯୋଗରେ ପ୍ରଥମେ ପବନ ପରମାଣୁରେ କର୍ମରେ ଉତ୍ପତ୍ତି ହୁଏ; ପବନ ପରମାଣୁଗୁଡ଼ିକର ପରସ୍ପରସଂଯୋଗରେ ଦ୍ୟଣୁକାଦି କ୍ରମେ ମହାନ୍ ବାୟୁ ଉତ୍ପନ୍ନ ହୁଏଏବଂ ଅନବରତ କମ୍ପମାନ

ହୋଇ ଆକାଶରେ ଅବସ୍ଥାନ କରେ । ତିର୍ଯ୍ୟକ୍ ଗତି ହିଁ ବାୟୁର ସ୍ୱଭାବ । ବାୟୁର ସୃଷ୍ଟି ପରେ ଏହିପରି ଆପ୍ ବା ଜଳୀୟ ପରମାଣୁରେ କର୍ମର ଉତ୍ପତ୍ତି ହୋଇ ଦ୍ୟଣୁକାଦି କ୍ରମେ ସଲିଳରାଶି ଉତ୍ପନ୍ନ ହୁଏ ଏବଂ ବାୟୁ ବେଗରେ କମ୍ପମାନ ହୋଇ ବାୟୁରେ ଅବସ୍ଥାନ କରେ । (ନ୍ୟାୟଦର୍ଶନ)

ମହର୍ଷି କଣାଦ କେବଳ ସ୍ପର୍ଶ ଗୁଣଦ୍ୱାରା ହିଁ ବାୟୁର ଲକ୍ଷଣ ସିଦ୍ଧ କରିଅଛନ୍ତି । ସେ "ବାୟୁସାଧନ" ପ୍ରକରଣରେ କହିଅଛନ୍ତି - "ସ୍ପର୍ଶଶ୍ଚ ବାୟୋଃ"- ୯,୨,୧ ।

ଏବଂଚ ଶଙ୍କର ମିଶ୍ର ବୈଶେଷିକ ସୂତ୍ରର ଉପସ୍କାରରେ ଲେଖିଅଛନ୍ତି -

"ଚ କାରାତ୍ "ଶବ୍ଦ ଧୃତିକମ୍ପସମୁଚ୍ଚୀୟନ୍ତେ" ।

ଅର୍ଥାତ୍ ସ୍ପର୍ଶଃ ଶବ୍ଦର ଅନ୍ତରେ ଯେ ଚକାର ଅଛି ସେହି ଚକାର ସମୁଚ୍ଚୟ ଅର୍ଥରେ ବ୍ୟବହୃତ ହୋଇଅଛି । ଏଥିରୁ ଶବ୍ଦ, କମ୍ପ ଓ ଧୃତି ଏହି ତିନୋଟି ମଧ୍ୟ ବାୟୁର ଲକ୍ଷଣାନ୍ତର୍ଭୁକ୍ତ ବୋଲି ଜଣାଯାଏ ।

ଶବ୍ଦ ସ୍ପର୍ଶବତ୍, ବେଗବତ୍ ଦ୍ରବ୍ୟଭିଘାତ ନିମିତ୍ତକ । ଶବ୍ଦସନ୍ତତି ବାୟୁର ଗୋଟିଏ ଲକ୍ଷଣ । ଦଣ୍ଡାଭିଘାତରେ ଭେରିରୁ ଯେଉଁ ଶବ୍ଦ ସମୁଦ୍ଭୁତ ହୁଏ ସେହି ଶବ୍ଦ ସନ୍ତାନ ବାୟୁର ରୂପାନ୍ତର ମାତ୍ର ।

ଆକାଶରେ ତୃଣ ତୁଳାଦି ବିଧୃତ ଅବସ୍ଥାରେ ରହିବା ମଧ୍ୟ ବାୟୁର ଅସ୍ତିତ୍ୱର ପରିଚାୟକ । ଏହାହିଁ ଧୃତିର ଉଦାହରଣ । ଏହିପରି ବାୟୁର ଅସ୍ତିତ୍ୱ ସମ୍ବନ୍ଧେ କମ୍ପ ମଧ୍ୟ ଗୋଟିଏ ଲକ୍ଷଣ । ବାୟୁ ସମ୍ବନ୍ଧେ ବୈଶେଷିକ ଦର୍ଶନର ଦ୍ୱିତୀୟୋଧ୍ୟାୟର ପ୍ରଥମ ଆହ୍ନିକରେ ବିସ୍ତର ଆଲୋଚନା କରାଯାଇଅଛି ।

ସାଂଖ୍ୟମତେ ଶବ୍ଦତନ୍ମାତ୍ରରୁ ବାୟୁର ଉତ୍ପତ୍ତି । ଏଥିନିମନ୍ତେ ବାୟୁର ଦୁଇଟି ଗୁଣ ଶବ୍ଦ ଓ ସ୍ପର୍ଶ । ଯେ ଯାହାଠାରୁ ଜାତ ହୁଏ ସେ ତାହାର ଗୁଣ ଲାଭ କରିଥାଏ ଏବଂ ନିଜର ମଧ୍ୟ କୌଣସି ବିଶେଷ ଗୁଣ ଥାଏ । ବାୟୁର ବିଶେଷ ଗୁଣ ସ୍ପର୍ଶ ଏବଂ ଶବ୍ଦ ତନ୍ମାତ୍ରରୁ ଜାତ ହୋଇଥିବା ଯୋଗୁଁ ବାୟୁର ଅପର ଗୁଣ ଶବ୍ଦ । ସାଂଖ୍ୟ କାରିକାର ଭାଷ୍ୟକାର ଗୌଡ଼ପାଦ ଲେଖିଅଛନ୍ତି -

"ଶବ୍ଦ ତନ୍ମାତ୍ରାଦାକାଶଂ ସ୍ପର୍ଶତନ୍ମାତ୍ରାଦାକାଶଂ ସ୍ପର୍ଶତନ୍ମାତ୍ରାଦ୍‌ବାୟୁଃ
ରୂପତନ୍ମାତ୍ରାତ୍ତେଜଃ ରସତନ୍ମାତ୍ରାଦାପଃ
ଗନ୍ଧତନ୍ମାତ୍ରାତ୍ ପୃଥିବୀ ଏବଂ ପଞ୍ଚଭ୍ୟଃ
ପରମାଣୁଭ୍ୟଃ ପଞ୍ଚଭୂତାନ୍ୟୁତ୍ପଦ୍ୟନ୍ତେ" ।

କିନ୍ତୁ ବାଚସ୍ପତି ମିଶ୍ର ସେଥିରେ ଟୀକା କରିଅଛନ୍ତି -

"ଶବ୍ଦତନ୍ମାତ୍ର ସହିତାତ୍ ସ୍ପର୍ଶତନ୍ମାତ୍ରାଦ୍ ବାୟୁଃ- ଶବ୍ଦସ୍ପର୍ଶଗୁଣଃ"

"ସାମାନ୍ୟ କରଣ ବୃତ୍ତି ପ୍ରାଣାଦ୍ୟାଃ ବାୟବଃ ପଞ୍ଚ" (ସାଂଖ୍ୟଦର୍ଶନ-୨୯ ସୂତ୍ର)

ଏହି ସୂତ୍ରର ଭାଷ୍ୟରେ ଗୌଡ଼ପାଦ ମୁନି ପଞ୍ଚ ବାୟୁର କ୍ରିୟା ସମ୍ବନ୍ଧେ ସଂକ୍ଷେପରେ ବହୁ ଅର୍ଥ ପ୍ରକାଶକ ଅନେକ କଥା ଲେଖିଅଛନ୍ତି ।

ପୁରାଣରେ ଲେଖାଅଛି, ବାୟୁ ଊନପଞ୍ଚାଶତ । ଏମାନେ ସମସ୍ତେ ଅଦିତିର ପୁତ୍ର । ଇନ୍ଦ୍ର ଏମାନଙ୍କୁ ଦେବତ୍ୱ ପ୍ରଦାନ କଲେ । ଏହି ବାୟୁ ଦେହର ବାହ୍ୟାନ୍ତର୍ଭେଦେ ଦଶ ପ୍ରକାର ।

ଭାବ ପ୍ରକାଶରେ ଲେଖାଅଛି, ବାୟୁର ବାତ, ପିତ୍ତ ଓ କଫ ଏହି ତିନୋଟି ଦୋଷ ଅଛି । ଏମାନେ ବିକୃତ ହେଲେ ଦେହ ନଷ୍ଟ ହୋଇଯାଏ ଏବଂ ଅବିକୃତ ଅବସ୍ଥାରେ ଥିଲେ ଶରୀର ସୁସ୍ଥ ଥାଏ । ମାନବର ଦେହରେ ବାୟୁ ହିଁ ସ୍ଥାନ ବିଶେଷରେ ରହି ବିଭିନ୍ନ ଗତିରେ ବିଭିନ୍ନ ରୂପ ଧାରଣକରି ଶରୀର ସୁସ୍ଥ ରଖିଥାଏ । ନିୟମର ବ୍ୟତ୍ୟୟ, ଇନ୍ଦ୍ରିୟର ଉଚ୍ଛୃଙ୍ଖଳତା, ଅତିରିକ୍ତ ଆହାର ଅବା ମାଦକଦ୍ରବ୍ୟ ସେବନାଦିରେ ଏହି ବାୟୁ ପ୍ରକୁପିତ ହୋଇ ଶରୀରକୁ ବିନଷ୍ଟ କରେ । ଏ ସମ୍ବନ୍ଧେ ଆୟୁର୍ବେଦ ଗ୍ରନ୍ଥ ଦ୍ରଷ୍ଟବ୍ୟ ।

## ବାୟୁ ସମ୍ବନ୍ଧେ ଦାର୍ଶନିକ ବିଚାର

ନିରୁକ୍ତ କହେ, "ବାୟୁର୍ବାତେ ର୍ବେତେର୍ବା ସ୍ୟାଦ୍ଗତି କର୍ମଣଃ" । ନିରୁକ୍ତ ଭାଷ୍ୟକାରଙ୍କମତେ "ସତତମସୌ ବାତି ଗଚ୍ଛତି" । ଏତଦ୍ଦ୍ୱାରା ଜଣାଯାଏ ଯେ ଯାହା ସତତ ଗତିଶୀଳ ତାହା ବାୟୁ ନାମେ ଖ୍ୟାତ ।

ଆକାଶଠାରୁ ହିଁ ବାୟୁର ଉତ୍ପତ୍ତି । ଯେଉଁ ସ୍ଥାନରେ କ୍ରିୟା ସେହି ସ୍ଥାନରେ ହିଁ ଗତି (Motion), କାରଣ କ୍ରିୟାର ଶବ୍ଦ ହେତୁ କମ୍ପନ (Vibration) ଉତ୍ପନ୍ନ ହୋଇଥାଏ । କମ୍ପନର ପ୍ରତିରୂପ ହିଁ ଗତି; ଗତି ହେତୁ ସ୍ପର୍ଶ । ସେହି ଅନନ୍ତ ଅବ୍ୟକ୍ତ ପଦାର୍ଥ ସକ୍ରିୟ ହେଲେ ଶବ୍ଦ ଓ ସ୍ପର୍ଶଯୁକ୍ତ ହୁଏ । ଏହାଠାରେ ଶବ୍ଦ ଓ ସ୍ପର୍ଶ ଉଭୟ ଅଛି । ଯେଉଁଠାରେ ଆକାଶ (Space) ଅଛି ସେ ସେହିଠାରେ ଜ୍ଞାନସତ୍ତାର କ୍ରିୟାଜନିତ ଶବ୍ଦ ଓ ସ୍ପର୍ଶ ମଧ୍ୟ ଅଛି ।

ଶ୍ରୁତି କହେ - 'ଆକାଶାତ୍‌ବାୟୁଃ' । ଏହି ଉକ୍ତିର ତାତ୍ପର୍ଯ୍ୟ ଏହା ନୁହେଁ ଯେ, ବାୟୁର ଗତି (Motion) ପୂର୍ବେ ନଥିଲା; ଏହା ଅନ୍ୟ ପଦାର୍ଥ, ଆକାଶ ଏହାର ସମୁତ୍ପା ଏହା ମଧ୍ୟ କୁହାଯାଇ ନପାରେ । ସମସ୍ତ ହିଁ ଅବ୍ୟକ୍ତ ତତ୍ତ୍ୱେ ଲୀନ ଥିଲା, ଏହି ଅବ୍ୟକ୍ତଠାରୁ ହିଁ ଜଗତ ବ୍ୟକ୍ତ ହୋଇଅଛି । ବେଦାନ୍ତ ତଥା ସାଂଖ୍ୟଦର୍ଶନରେ ଏହାର ମଧ୍ୟ ଉଲ୍ଲେଖ ଅଛି । ଭଗବଦ୍ ଗୀତା ସ୍ପଷ୍ଟ ଭାବେ କହେ -

ଅବ୍ୟକ୍ତ୍ୟାଦୀନି ଭୂତାନି ବ୍ୟକ୍ତ ମଧ୍ୟାନି ଭାରତ ।
ଅବ୍ୟକ୍ତ ନିଧନାନ୍ୟେବ ତତ୍ର କା ପରିଦେବନା ।

ପାଶ୍ଚାତ୍ୟ ବିଜ୍ଞାନ ମଧ୍ୟ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛି । ପଣ୍ଡିତବର ହାର୍ବାଟସ୍ପେନେସର୍ ନିଜର First Principle ନାମକ ଗ୍ରନ୍ଥରେ ଲେଖିଅଛନ୍ତି- "An entire history of any thing must include its appearance out of the Imperceptible."

ଏହି ଅବ୍ୟକ୍ତ ପଦାର୍ଥ ନିୟତ ପରିଣାମଶୀଳ ହେତୁ ବେଦାନ୍ତରେ ଏହା ମାୟାନାମେ ଏବଂ ଏହାର ପରିଣାମପ୍ରବାହ ନିତ୍ୟ ବୋଲି ଏହା ସାଂଖ୍ୟରେ ସତ୍‌ନାମେ ଅଭିହିତ । ଅତଏବ ବାୟୁ ଯେ ଜନ୍ୟ ପଦାର୍ଥ କୁହାଯାଇ ନପାରେ । ଯେଉଁ ସ୍ଥାନରେ କ୍ରିୟାଶାଳିନୀ ଶକ୍ତି ସେହି ସ୍ଥାନରେ ହିଁ ଗତି । ଶକ୍ତି ଯେପରି ଅନନ୍ତ ଗତି ସୁଦ୍ଧା ସେପରି ଅନନ୍ତ । ଅନାଦି କାଳରୁ କୌଣସି କାଳେ କମ୍ପନର ବିରାମ ନାହିଁ । ଅବ୍ୟକ୍ତ ପ୍ରକୃତିର ନିହିତାବସ୍ଥାରେ ଯାହା ସୁପ୍ତ ଶକ୍ତି (Potential Energy) ରୂପେ ନିଷ୍କ୍ରିୟ ଭାବେ ଥିଲା ତାହାହିଁ କ୍ରିୟାର ଉଦ୍ରେକରେ କର୍ମ ଶକ୍ତିରୂପେ Kinetic Energy) ପ୍ରକାଶ ପାଇଲା । ଏହି ଅବସ୍ଥାରେ ଗତି ବା କମ୍ପନ ବା ସ୍ପର୍ଶର ଉତ୍ପତ୍ତି । ଆକାଶ (Atmosphere) ଅନନ୍ତ ହୋଇଥିଲେ ସୁଦ୍ଧା ଏହି ଗତିର ଅବସ୍ଥାନ ଓ ପ୍ରବାହ ତହିଁରେ ବିଦ୍ୟମାନ ।

ପାଶ୍ଚାତ୍ୟ ବିଜ୍ଞାନବିଦ୍ ପଣ୍ଡିତମାନେ କହନ୍ତି ଯେ, ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରାଦିର ଭିନ୍ନ ଭିନ୍ନ ଲୋକରେ ମଧ୍ୟ ଏହି ପ୍ରକାର କୌଣସି ପଦାର୍ଥ ଅଛି ଯହିଁରେ କି ପ୍ରତି ପ୍ରବାହରେ, ପ୍ରତି କମ୍ପନରେ ତାନର ପ୍ରଭାବ (Rhythm) ଅବଶ୍ୟ ସ୍ୱୀକାର୍ଯ୍ୟ ।

ପ୍ରତି ତାନରେ ଏହି କମ୍ପନର ଚିର ପ୍ରବାହ ବର୍ତ୍ତମାନ । ଏଣୁ ଶ୍ରୁତି କହେ -

''ଛନ୍ଦାଂସି ବୈ ବିଶ୍ୱରୂପିଣୀ'' (ଶତପଥ ବ୍ରାହ୍ମଣ)

ଏହି ବିଶ୍ୱ ସକଳ ହିଁ ଛନ୍ଦ, ଏହି ଛନ୍ଦ ହିଁ ଭୂଲୋକ, ଅନ୍ତରୀକ୍ଷ ଓ ସ୍ୱର୍ଗଲୋକ ।

''ମାଛନ୍ଦଃ । ଭ୍ରମାଛନ୍ଦଃ । ପ୍ରତିମାଚ୍ଛନ୍ଦଃ'' । (ଶୁକ୍ଳ ଯଜୁର୍ବେଦ ସଂହିତା)

ପରିଦୃଶ୍ୟମାନ ଭୂଲୋକ ମିତଚ୍ଛନ୍ଦଃ, ଅନ୍ତରୀକ୍ଷ ଲୋକ ପ୍ରତିମଚ୍ଛନ୍ଦଃ ଏବଂ ଦ୍ୟୁଲୋକ୍ ପ୍ରତିମିତଚ୍ଛନ୍ଦଃ । ''ଛନ୍ଦୋଭ୍ୟଏବ ପ୍ରଥମ ମେତଦ୍‌ବିଶ୍ୱଂ ବ୍ୟବର୍ତ୍ତତ'' ଅର୍ଥାତ୍ ଏହି ବିଶ୍ୱ ପ୍ରଥମେ ଛନ୍ଦ ହୋଇ ବିବର୍ତ୍ତିତ ହୋଇଅଛି (ବାକ୍ୟପଦୀୟ) । ଯେଉଁ ଗତି ତାଳେ ତାଳେ ନୃତ୍ୟ କରେ ତାହାହିଁ ଛନ୍ଦ ।ଏହି ଛନ୍ଦହିଁ ବିଶ୍ୱବିବର୍ତ୍ତନର କାରଣ । ସ୍ପେନ୍‌ସର୍‌ଙ୍କଦ୍ୱାରାଏହା (Rhythm of motion) ନାମେ ଅଭିହିତ ।ଏହା ବାୟୁର ପରିଚାୟକ । ଶ୍ରୁତିରେ ଦେଖାଯାଏ -

''ବାୟୁନାବୈ ଗୌତମସୂତ୍ରେଣାହୟଞ୍ଚ ଲୋକଃ

ପରଶ୍ଚ ଲୋକଃ ସର୍ବାଣିଚ ଭୂତାନି ସମ୍ବନ୍ଧାନି ଭୁବନ୍ତି'' ।

ଅର୍ଥ - ହେ ଗୌତମ ଏହି ବାୟୁ ସୂତ୍ର ସ୍ୱରୂପ; ମଣିଗଣ ଯେପରି ସୂତ୍ରରେ ଗ୍ରଥିତ ସେପରି ସମସ୍ତଭୂତ ବାୟୁ ସୂତ୍ରରେ ଗ୍ରଥିତ ।

ବାୟୁର ଏହି ଗତିସୂତ୍ର ପର୍ବ ଜୀବର ଆଶ୍ରୟ ସ୍ୱରୂପ ରହିଅଛି ।

''ଯଦିଦଂ କିଞ୍ଚ ଜଗତ୍ ସର୍ବଂ ପ୍ରାଣ ଏଜତି ନିଃସୃତମ୍'' ।

ମହଭୟଂ ବଜ୍ର ମୁଦ୍ୟତଂ ଯଯେତ ଦ୍ୱିଦୁରମୃତାସ୍ତେ ଭବନ୍ତି'' (କଠ-ଷଷ୍ଠ ବଲ୍ଲି)

ଅର୍ଥାତ୍- ଏହି ସକଳ ଜଗତ ପ୍ରାଣସ୍ୱରୂପ ବ୍ରହ୍ମଙ୍କଠାରୁ ନିସୃତ ଓ କମ୍ପିତ । ସେହି ବ୍ରହ୍ମ

କଠୋର ବଜ୍ର ପରି ଭୟାନକ; ତାହାଙ୍କୁ ସେପରି ଯେଉଁମାନେ ଜାଣନ୍ତି ସେମାନେ ଅମୃତ ହୁଅନ୍ତି । ଏ ସ୍ଥଳେ 'ଏଜତି' ଶବ୍ଦର ଅର୍ଥ କମ୍ପିତ ।

ବେଦାନ୍ତ ଦର୍ଶନମତେ ବାୟୁ ବିଜ୍ଞାନରଏହି କମ୍ପନାତ୍ମକ (Vibratory) ବ୍ରହ୍ମ ଅତି ଭୟାନକ । ଜଗତର ସମସ୍ତ କମ୍ପନରେ ଅବସ୍ଥିତ । ଏହି କମ୍ପନରୁ କମ୍ପନର ଆତ୍ମସ୍ୱରୂପ ବ୍ରହ୍ମୋପଲବ୍ଧି ହୁଏ ବୋଲି ମହର୍ଷି ବାଦରାୟଣ ବେଦାନ୍ତ ସୂତ୍ରରେ ଲେଖିଅଛନ୍ତି ।

"କମ୍ପନାତ୍" (ବେଦାନ୍ତ ଦର୍ଶନ, ୧,୩,୩୪) ଏହି ବାୟୁ ବା କମ୍ପନ ବା ଶକ୍ତିଠାରୁ ହିଁ ଜୀବ ସକଳ ପରିଣାମ ପ୍ରାପ୍ତ ହୁଅନ୍ତି । ଏହି ସିଦ୍ଧାନ୍ତ ସହିତ ହାର୍ବାର୍ଟ ସ୍ପେନ୍ସର ଏକମତ ହେଉଥିବା କଥା ତାହାଙ୍କର ନିମ୍ନ ପ୍ରଦତ୍ତ ବଚନରୁ ଜଣାଯାଏ । "Absolute rest and permenance do not exist. Every object, no less than the aggregate of all object undergoes from instant to instant some alteration of state gradually or quickly it is receiving motion or losing motion."

ଏହି ବିଶ୍ୱବିସ୍ତାରୀ ବାୟୁ ବା କମ୍ପନ ହିଁ vibration ସୃଷ୍ଟି ବା (Evolution) ବା ବସ୍ତୁଲୟର (Involution) ହେତୁ । ଏହି ଜଗତ ଆବିର୍ଭାବ ଓ ତିରୋଭାବର ନିତ୍ୟ ପ୍ରତିମା ।

ଏହି ଆବିର୍ଭାବ ଓ ତିରୋଭାବ ଯେଉଁ ଦେବତତ୍ତ୍ୱଦ୍ୱାରା ସଂଘଟିତ ତାହାହିଁ ବେଦର ବାୟୁ ଦେବତା । ଶ୍ରୁତି କହେ -

"ବାୟୁର୍ଯ୍ୟେମେକୋ ଭୁବନଂ ପ୍ରବିଷ୍ଟୋ ରୂପଂ ରୂପଂ ପ୍ରତିରୂପୋ ବଭୂବ ।
ଏକସ୍ତଥା ସର୍ବଭୂତାନ୍ତରାତ୍ମା ରୂପଂ ରୂପଂ ପ୍ରତିରୂପୋ ବହିଶ୍ଚ ।" (କଠ୫ମ । ୧୦ ।)

ଅର୍ଥ - ଯେପରି ଏକହିଁ ବାୟୁ ଭୁବନରେ ପ୍ରବିଷ୍ଟ ହୋଇ ନାନା ବସ୍ତୁଭେଦରେ ତତ୍ତ୍ୱତ୍ ରୂପ ଧାରଣ କରିଅଛି, ସେପରି ସର୍ବଭୂତର ଏକ ଅନ୍ତରାତ୍ମେ ନାନା ବସ୍ତୁ ଭେଦରେ ତଦ୍‌ବସ୍ତୁ ରୂପ ଧାରଣ କରିଅଛି ଏବଂ ସମୁଦାୟ ପଦାର୍ଥର ବାହାରେ ମଧ୍ୟ ଅଛି । ଏତଦ୍ୱାରା ବାୟୁର ବିଶ୍ୱବିସ୍ତାରୀତ୍ୱ ପ୍ରମାଣିତ ହେଉଅଛି ।

ଏହି ବାୟୁଠାରୁ ଅଗ୍ନିର ଉତ୍ପତ୍ତି । ଶ୍ରୁତି କହେ, "ବାୟୋରଗ୍ନି" (ତୈତ୍ତରୀୟ-ଉପନିଷତ୍ ବ୍ରହ୍ମାନନ୍ଦବଲ୍ଲି, ୧,୩,) । ବୈଜ୍ଞାନିକ କାରଣଦ୍ୱାରା ମଧ୍ୟ ଏହା ପ୍ରମାଣିତ ହୋଇପାରେ । ଅକ୍ସିଜେନ୍ ଭିନ୍ନ ଦହନ କ୍ରିୟା ଅସମ୍ଭବ । ପାଶ୍ଚାତ୍ୟ ବିଜ୍ଞାନମତେ ଅକ୍ସିଜେନ୍ ବାୟୁର ଗୋଟିଏ ପ୍ରଧାନ ଉପାଦାନ । ଏତଦ୍‌ବ୍ୟତୀତ ବାୟୁ ଗତିଶୀଳ ବୋଲି ଧରାଗଲେ ମଧ୍ୟ ଏହାଠାରୁ ଅଗ୍ନିର ଉତ୍ପତ୍ତିର ପ୍ରମାଣ ମିଳେ । ହାର୍ବାର୍ଟ ସ୍ପେନ୍ସରେ ଲେଖିଛନ୍ତି- Conversely motion that is arrested producess under different circumstances heat, electricity, magnetism and light where abundant instances in which arises as motion ceases. First Principle, P,198 । ଏହି ବାୟୁ ଅଗ୍ନି ସହିତ ନିୟତ ସଂଯୁକ୍ତ ଥାଏ । ଯଥାଃ-

ସତ୍ତ୍ରୋଧାତ୍ମାନଂ ଧ୍ୟାକୁରୁତାଦିତ୍ୟଂ ଦ୍ୱିତୀୟଂ ବାୟୁଂ ତୃତୀୟମ୍ (ବୃହଦାରଣ୍ୟକ ଉପନିଷଦ୍) ।
ଅର୍ଥ - ଅଗ୍ନି, ବାୟୁ ଓ ଆଦିତ୍ୟ ଏକ ପଦାର୍ଥ ତ୍ରିବିଧ ହୋଇ ପୃଥିବୀ, ଅନ୍ତରୀକ୍ଷ ଓ ଦ୍ୟୁଲୋକରେ ଅଧିଷ୍ଠିତ । ବାୟୁ ଯେ ଅଗ୍ନିର ତେଜ ତାହାର ପ୍ରତ୍ୟକ୍ଷ ପ୍ରମାଣ ମିଳେ । ଯଥା- "ବାୟୋର୍ବା ଅଗ୍ନେସ୍ତେଜ ତସ୍ମାଦ୍‌ବାୟୁରଗ୍ନି ମନ୍ୱେତି" । ଏଥିରୁ ପ୍ରତିପନ୍ନ ହୁଏ ବାୟୁ ଓ ତେଜ ଏହି ଉଭୟ କାରଣ ଶକ୍ତି ସର୍ବଦା ଏକତ୍ର ସଂଯୁକ୍ତ । ଏହି ବାୟୁ ଓ ଅଗ୍ନି ଆକାଶରେ ହିଁ ପ୍ରତିଷ୍ଠିତ । ଛାନ୍ଦୋଗ୍ୟ ଶ୍ରୁତିରେ ଲେଖାଅଛି -

"ସର୍ବାଣିହବା ଇମାନି ଭୂତାନ୍ୟାକାଶାଦେବ ସମୁତ୍ପାଦ୍ୟନ୍ତିଆକାଶଂ ପ୍ରତ୍ୟସ୍ତଂ
ଯନ୍ତାକାଶୋହ୍ୟେବୈଭ୍ୟୋ ଜ୍ୟାୟାନାକାଶଃ ପରାୟଣଂ" ।

ଅର୍ଥାତ୍ ଆକାଶଠାରୁ ସକଳ ଭୂତର ଉତ୍ପତ୍ତି ହୋଇଅଛି । ଏଥିସହିତ ପାଶ୍ଚାତ୍ୟ ବିଜ୍ଞାନର ମତଦ୍ୱୈଧ ଘଟେନାହିଁ ।

## ବାୟୁ ବିଜ୍ଞାନ

ନଦନଦୀ, ନଗନଗର, ଅରଣ୍ୟାନିସମାକୀର୍ଣ୍ଣ ଭୂତ-ଧରିତ୍ରୀ ଧରଣୀର ପୃଷ୍ଠଦେଶଠାରୁ ଚନ୍ଦ୍ର, ସୂର୍ଯ୍ୟ, ଗ୍ରହ, ନକ୍ଷତ୍ରାଦି ଖଚିତ ଅନନ୍ତ ଆକାଶ ପର୍ଯ୍ୟନ୍ତ ଯେଉଁ ମହାଶୂନ୍ୟ ଦେଖିବାକୁ ପାଉ ତାହା କି ପ୍ରକୃତରେ ମହାଶୂନ୍ୟ? ଆମ୍ଭର ସ୍ଥୂଳପଦାର୍ଥ ଦର୍ଶନକ୍ଷମ ଚର୍ମଚକ୍ଷୁ ଯାହା ଦେଖି ନପାରେ ତାହା ସୂକ୍ଷ୍ମପଦାର୍ଥ ଦର୍ଶନକ୍ଷମ ବିଜ୍ଞାନଚକ୍ଷୁ ଯନ୍ତ୍ରାବଲମ୍ବନେ ଦେଖି ପ୍ରମାଣ ସହିତ ବୁଝାଏ ଯେ ଜଗତରେ ଶୂନ୍ୟ ହୋଇ କୌଣସି ସ୍ଥାନ ନାହିଁ । ପ୍ରକୃତି କୌଣସି ସ୍ଥାନ ଶୂନ୍ୟ ରଖିନାହିଁ । ପ୍ରକୃତି ଶୂନ୍ୟର ଚିର ବିଦ୍ୱେଷିଣୀ । ନଗ୍ନଚକ୍ଷୁରେ ଯାହା ଆପାତତଃ ଶୂନ୍ୟ ପ୍ରତୀତ ହୁଏ ତାହା ବାୟୁଦ୍ୱାରା ପୂର୍ଣ୍ଣ ହୋଇଥାଏ । ଉଦାହରଣସ୍ୱରୂପ ଧରାଯାଉ ଗୋଟିଏ କାଚନଳି (Glass tube) ଆପାତତଃ ଶୂନ୍ୟ ବୋଧହୁଏ କିନ୍ତୁ ଯେତେବେଳେ ତା' ଭିତରେ ଜଳ ପୂର୍ଣ୍ଣ କରାଯାଏ ସେତେବେଳେ ତହିଁରେ ଥିବା ବାୟୁ ବାହାର ହୋଇଯାଏ । ଉକ୍ତ ବାୟୁ କାଚନଳିରୁ ବହିର୍ଗତ ହେବା ବିଷୟ ବିଜ୍ଞାନଯନ୍ତ୍ର ସାହାଯ୍ୟରେ ପ୍ରତ୍ୟକ୍ଷ କରାଯାଏ । ଆମର ଦୃଷ୍ଟି ଯେତେଦୂର ପର୍ଯ୍ୟନ୍ତ ଯାଏ ତାହାଠାରୁ ଦୂରନ୍ତବ୍ୟାପୀ ନଭୋମଣ୍ଡଳ ବାୟୁମଣ୍ଡଳଦ୍ୱାରା ପରିପୂର୍ଣ୍ଣ ହୋଇଥାଏ । ବାୟୁମଣ୍ଡଳ ସାଧାରଣତଃ ଦୁଇଭାଗରେ ବିଭକ୍ତ । ଯଥା - ଅପରିବର୍ତ୍ତନୀୟ ଓ ପରିବର୍ତ୍ତନଶୀଳ । ଉର୍ଦ୍ଧ୍ୱଭାଗର ବାୟୁ ସ୍ଥିର । ଉତ୍ତାପର ହ୍ରାସାଧିକ୍ୟରେ ଏହି ଅଂଶର କୌଣସି ପରିବର୍ତ୍ତନ ଘଟୁ ନଥିବାରୁ ଏହାକୁ ଅପରିବର୍ତ୍ତନୀୟ ବାୟୁ କହି । ନିମ୍ନ ଭାଗର ବାୟୁ ଅସ୍ଥିର । ଉତ୍ତାପର ପରିବର୍ତ୍ତନରେ ଏହି ବାୟୁମଣ୍ଡଳର ବିବିଧ ପରିବର୍ତ୍ତନ ପରିଲକ୍ଷିତ ହୁଏ । ଏହି ବାୟୁମଣ୍ଡଳର ପରିବର୍ତ୍ତନଶୀଳ ଅଂଶାପେକ୍ଷା ଅପରିବର୍ତ୍ତନୀୟ ଅଂଶର ପରିମାଣ ଅନେକ ଅଧିକ । ଏହି ବିଶାଳ ବାୟୁମଣ୍ଡଳ ପରେ ମଧ୍ୟ ଶୂନ୍ୟ ହୋଇ କୌଣସି ସ୍ଥାନ ନାହିଁ ।

ବିଶ୍ୱବ୍ୟାପୀ 'ଇଥର୍' (Ether) ଅନନ୍ତ ଆକାଶରେ ମଧ୍ୟ ବ୍ୟାପୀ ରହିଅଛି । ଇଥର ଥିବା ଯୋଗୁଁ ହିଁ ଜଗତ ସୂର୍ଯ୍ୟାଲୋକଦ୍ୱାରା ଉଦ୍ଭାସିତ ହେଉଅଛି ।

ଯାହାହେଉ ବାୟୁ ବିଜ୍ଞାନ ହିଁ ଆମର ଆଲୋଚ୍ୟ ବିଷୟ । ପାଶ୍ଚାତ୍ୟ ବିଜ୍ଞାନର ବିବିଧ ବିଭାଗରେ ବାୟୁବିଜ୍ଞାନର ଆଲୋଚନା ଓତଃପ୍ରୋତ ଭାବେ ବିଜଡ଼ିତ ହୋଇ ରହିଅଛି । ଜ୍ୟୋତିର୍ବିଜ୍ଞାନ, ରସାୟନବିଜ୍ଞାନ, ଶବ୍ଦବିଜ୍ଞାନ, ଉନ୍ନୀତାବିଜ୍ଞାନ, ବାୟୁପ୍ରଚାପାଦି ବିଜ୍ଞାନ, ବୃଷ୍ଟି ଋଷ୍ଟିକାଦିବିଜ୍ଞାନ, ଶରୀର ବିଚାରବିଜ୍ଞାନ, ସ୍ୱାସ୍ଥ୍ୟବିଜ୍ଞାନ ଓ ତାପବିଜ୍ଞାନ ପ୍ରଭୃତି ବହୁବିଧ ବିଜ୍ଞାନରେ ବାୟୁବିଜ୍ଞାନର ତତ୍ତ୍ୱ ନ୍ୟୁନାଧିକ ପରିମାଣେ ବିବୃତ ହୋଇଅଛି । ଏ ସ୍ଥଳରେ ସେ ସମ୍ବନ୍ଧେ ଯତ୍‌କିଞ୍ଚିତ ଆଲୋଚନା କରାଯିବ । ବୈଜ୍ଞାନିକଗଣ ଏହି ବାୟୁମଣ୍ଡଳର ଉଚ୍ଚତା ନିରୂପଣ କରିବା ନିମନ୍ତେ ଯତ୍ପରୋନାସ୍ତି ଯତ୍ନ କରିଯାଇଅଛନ୍ତି ।

### ବାୟୁମଣ୍ଡଳର ଉଚ୍ଚତା

ବାୟୁମଣ୍ଡଳର ଉଚ୍ଚତା ବର୍ତ୍ତମାନ ୧୨୦ ମାଇଲ ବୋଲି ସ୍ଥିରୀକୃତ ହୋଇଅଛି । ପରନ୍ତୁ ବିଷୁବ ପ୍ରଦେଶର ଉର୍ଦ୍ଧ୍ୱଭାଗର ଲଘୁସ୍ଥିରବାୟୁ ଏହା ଅପେକ୍ଷା ଅଧିକତର ଉଚ୍ଚ ଦେଶକୁ ପ୍ରସାରିତ ହୋଇଅଛି । ସେହି ସ୍ଥାନରେ ଏହାର ପ୍ରସାରର ଉଚ୍ଚତା ଦୁଇଶତ ମାଇଲରୁ ନ୍ୟୂନ ହେବନାହିଁ । ଆଧୁନିକ ଜ୍ୟୋତିର୍ବିଦ୍‌ମାନେ ବାୟୁମଣ୍ଡଳ ଉଚ୍ଚତା ନିର୍ଣ୍ଣୟ କରିବା ପାଇଁ ବିଜ୍ଞାନରୁ ଯଥେଷ୍ଟ ସାହାଯ୍ୟ ପାଇଛନ୍ତି ।

### ବାୟୁର ଗୁରୁତ୍ୱ

ବାୟୁର ଯେ ଗୁରୁତ୍ୱ ରହିଛି ତାହା ମଧ୍ୟ ପରୀକ୍ଷାଦ୍ୱାରା ବୁଝାଯାଏ । ଗୋଟିଏ କାଚ ଗୋଳାରୁ ବାୟୁ ନିଷ୍କାସନ ଯନ୍ତ୍ର ସାହାଯ୍ୟରେ ବାୟୁ ନିଃସାରଣ କଲେ ତାହାର ଯେଉଁ ଗୁରୁତା ରହେ ପୁନଶ୍ଚ ତହିଁରେ ବାୟୁ ପୂର୍ଣ୍ଣକରି ଓଜନ କଲେ ଓଜନର ପରିମାଣ ତଦପେକ୍ଷା ଅଧିକ ହେବ । ମତ୍ସ୍ୟ ଯେପରି ଜଳରାଶି ମଧ୍ୟରେ ସନ୍ତରଣ କରୁଥିବାରୁ ତାହାର ଉପରିସ୍ଥ ବିଶାଳ ଜଳରାଶିର ପ୍ରଚାପଜନିତ ଗୁରୁଭାର ଅନୁଭବକରଣେ ଅସମର୍ଥ, ଆମ୍ଭେମାନେ ମଧ୍ୟ ସେହିପରି ବାୟୁରାଶି ମଧ୍ୟରେ ଅବସ୍ଥାନ କରିଅଛେ ବୋଲି ଏହାର ଗୁରୁଭାର ଅନୁଭବ କରଣେ ଅସମର୍ଥ ।

### ବାୟୁର ବର୍ଣ୍ଣ

କବିଗଣ ଆକାଶର ଯେଉଁ ଅନନ୍ତ ନୀଳିମାର ଶୋଭା ଓ ମାଧୁର୍ଯ୍ୟ ବର୍ଣ୍ଣନା କରନ୍ତି ତାହା ଏହି ବାୟୁରେ ହିଁ ବର୍ଣ୍ଣ ।

ଦୂରସ୍ଥ ପର୍ବତରେ ଯେଉଁ ଘନ ନୀଳିମା ପରିଦୃଷ୍ଟ ହୁଏ ତାହା ମଧ୍ୟ ବାୟୁର ବର୍ଣ୍ଣ । କୌଣସି ସ୍ଥାନରେ ଦଣ୍ଡାୟମାନ ହୋଇ ଦକ୍ଷିଣେ ବା ବାମେ, ସମ୍ମୁଖେ ବା ପଶ୍ଚାତେ ଯେକୌଣସି ଦିଗରେ ଦୃଷ୍ଟି ସଂଚାର କର ଦେଖିବ କେବଳ ଘନ ନୀଳିମାର ମାଧୁରୀ ହିଁ ନିଜ ନେତ୍ରରେ ପ୍ରତିଭାତ

ହେବ, ତାହା ବାୟୁର ହିଁ ବର୍ଣ୍ଣ । ଏଥିଯୋଗୁଁ କେହି କେହି କହନ୍ତି ଯେ, ବାୟୁର ବର୍ଣ୍ଣ ନୀଳ । କିନ୍ତୁ ଏ ସମ୍ବନ୍ଧେ ଅନେକ ବୈଜ୍ଞାନିକ ନାନାପ୍ରକାର କଳ୍ପନା କରନ୍ତି । କେହିକେହି କହନ୍ତି, ଆକାଶର ଆଦୌ ବର୍ଣ୍ଣ ନାହିଁ; ଏହା ଘୋର ଅନ୍ଧକାରମୟ । ବ୍ୟୋମଯାନରେ ଯେଉଁମାନେ ଅତି ଉର୍ଦ୍ଧ୍ୱରେ ବିଚରଣ କରନ୍ତି ସେମାନେ ସୁଦୂର ଆକାଶରେ କୃଷ୍ଣବର୍ଣ୍ଣ ଦେଖନ୍ତି । ତଦ୍ୱାରା କେତେକ ବୈଜ୍ଞାନିକ ଅନୁମାନ କରନ୍ତି ଯେ, ବାୟବୀୟ ପରମାଣୁର ଅବିଚଳନରେ ସକଳ ବର୍ଣ୍ଣର ଅଭାବ ପରିଲକ୍ଷିତ ହୁଏ । ଏଥିଲାଗି ଲଘୁତମ ସ୍ଥିର ବାୟୁ ପ୍ରଦେଶରେ ସର୍ବବର୍ଣ୍ଣାଭାବ ସ୍ୱରୂପ କୃଷ୍ଣବର୍ଣ୍ଣ ହିଁ ଦେଖାଯାଏ ।

ଆକାଶରେ ଯେଉଁ ନୀଳିମା ଦୃଷ୍ଟିଗୋଚର ହୁଏ ତାହା ସୌରକିରଣ ପ୍ରତିଫଳିତ ଘନୀଭୂତ ବାୟୁର ବର୍ଣ୍ଣ ମାତ୍ର । ସୌରକିରଣ ଯେତେବେଳେ ଘନ ବାୟୁସ୍ତର ଭେଦକରି ପୃଥିବୀ ପ୍ରତି ଅଗ୍ରସର ହୁଏ ସେତେବେଳେ ତାହାର ଜ୍ୟୋତିଃ ବାୟୁସ୍ତରେ ନୀଳବର୍ଣ୍ଣ ପ୍ରତିଫଳିତ ହୁଏ । କେହି କେହି ବିଶ୍ଳେଷଣୀ ପ୍ରଣାଳୀ (Spectrumanalysis) ଦ୍ୱାରା ଏ ସମ୍ବନ୍ଧେ ଅନେକ ତଥ୍ୟ ଆବିଷ୍କାର କରି ଯାଇଛନ୍ତି ।

ବାୟୁରେ ବିମିଶ୍ରିତ ଜଳୀୟବାଷ୍ପର ମଧ୍ୟଦେଇ ସୌର କିରଣସମ୍ପାତରୁ ବାୟୁମଣ୍ଡଳରେ ବର୍ଣ୍ଣବୈଚିତ୍ର୍ୟ ପ୍ରତିଭାତ ହୋଇଥାଏ । ମେଘାନ୍ତରାଳରେ ସୂର୍ଯ୍ୟ ବା ଚନ୍ଦ୍ରମଣ୍ଡଳକୁ ନିରୀକ୍ଷଣ କଲେ ପୀତବର୍ଣ୍ଣ ଦେଖାଯାଏ । ଜଳୀୟବାଷ୍ପଜନିତ ବର୍ଣ୍ଣବୈଚିତ୍ର୍ୟ ହିଁ ଏହାର ପ୍ରଧାନ ହେତୁ । ସମୁଦ୍ର ଓ ଆକାଶର ନୀଳିମାସମ୍ବନ୍ଧେ ବୈଜ୍ଞାନିକଗଣ ଦୁଇଟି ବର୍ଣ୍ଣ ନିର୍ଦ୍ଦେଶ କରିଅଛନ୍ତି । ଗୋଟିଏ ନୀଳବର୍ଣ୍ଣ ଅନ୍ୟଟି ଚକ୍ରବାଳ ରେଖା ପ୍ରାନ୍ତସ୍ଥ ପୀତାଭବର୍ଣ୍ଣ । ବାୟବୀୟ ପଦାର୍ଥର ନୀଳ କିରଣର ପ୍ରତିବିମ୍ବ ହିଁ (Reflection) ଆକାଶର ନୀଳିମାର କାରଣ ।

ବାୟୁରାଶିର ଆଲୋକ ପ୍ରେରଣ (Transmission of rays) ପୀତାଭ ବର୍ଣ୍ଣର କାରଣ । 'ସସିଓର' (Saussure) ନାମକ ଜଣେ ବିଶିଷ୍ଟ ବୈଜ୍ଞାନିକ 'ସାଇଏନୋମିଟର' (Cyanometer) ଏବଂ ଡାୟଫୋନୋମିଟର (Diaphonometer) ନାମକ ଦୁଇଗୋଟି ବାୟୁର ବର୍ଣ୍ଣ ପରିମାପକ ଯନ୍ତ୍ର ଆବିଷ୍କାର କରିଅଛନ୍ତି । ଏଥିଦ୍ୱାରା ବାୟୁର ବର୍ଣ୍ଣ ମାପ କରାଯାଏ । ବାୟୁର ନୀଳିମା ସମ୍ବନ୍ଧେ ବୈଶେଷିକମାନେ ଯଥେଷ୍ଟ ଗବେଷଣା କରିଅଛନ୍ତି । ଶ୍ରୀପାଦ ଶଙ୍କର ମିଶ୍ର ବୈଶେଷିକ ଦର୍ଶନର ଉପସ୍କାରରେ ଲେଖିଅଛନ୍ତି -

"ନନୁ ଦଧି ଧବଳମାକାଶମିତି କଥଂ ପ୍ରତୀତିରିତିଉଚେନ୍ନ ମିହିର ମହସାଂ ବିଶଦରୂପାଣାମୁପଲମ୍ଭାଇତ୍ତଥାଭିମାନାତ୍ । କଥଂ ତର୍ହି ନୀଳନଭତି ପ୍ରତୀତିତିଚେନ୍ନ, ସୁମେରୋର୍ଦକ୍ଷିଣ ଦିଶ ମାକ୍ରମ୍ୟସ୍ଥିତ ସେନ୍ଦ୍ରନୀଳମୟ ଶିଖରସ୍ୟ ପ୍ରଭାମାଲୋକୟତାଂ । ତଥାଭିମାନାତ୍ ।। ଯତ୍ତୁସୁଦୂରଂ ଗଛ ଚକ୍ଷୁଃ ପରାବର୍ତ୍ତମାନଂ ସ୍ୱଚକ୍ଷୁ କଣୀନିକାକଳୟ ତଥାଭିମାନଂ ଜନୟତୀତି ମତଂ ତଦଯୁକ୍ତଂ ।। ପିଙ୍ଗଳ ସାରନୟନାନାମପି ତଥାଭିମାନାତ୍ । ଇହେଦାନୀଂ ଘଟାଦିକମିତି ପ୍ରତ୍ୟୟାତ୍ ଦିକ୍କାଳୟୋରପି ଘଟାଦି ଚତୁଷ୍ଟମିତିଚେନ୍ନ, ସମବାୟେନ ପୃଥିବ୍ୟାଦୀନାଂ

ତଲ୍ଲକ୍ଷଣେଯୋଲ୍ଲାଦ୍ଧାତ୍ । ନତୁ ସ ମଦ୍ଧାନ୍ତରେଣୋପି ଇଦ୍ଧେଦାନୀଂ ରୂପାତ୍ୟନ୍ତଭାବ ଇତ୍ୟପି ପ୍ରତୀତେଃ ସର୍ବଧାରତୈ ଦିକ୍କାଳୟୋ'' (୫ମ, ୧ମ, ଆହ୍ନିକ ଦ୍ୱିତୀୟ ଅଧ୍ୟାୟ)

ବାୟୁର ନୀଳିମା ସମ୍ବନ୍ଧେ ବୈଶେଷିକ ଦର୍ଶନର ଉପସ୍କାରରେ ପ୍ରଶ୍ନ ଉଠିବା କାରଣ ଏହି ଯେ, ବାୟୁରାଶି ଦର୍ଶନର ପ୍ରଧାନ ଆଲୋଚ୍ୟ ବିଷୟ ନୁହେଁ । ଯଦି ବାୟୁ 'ନୀଳବର୍ଣ୍ଣ' ବୋଲି ନିର୍ଣ୍ଣୟ କରାଯାଏ ତାହାହେଲେ ତାହା ଦର୍ଶନର ମୁଖ୍ୟ ଆଲୋଚ୍ୟ ବିଷୟ ହୋଇ ଉଠିବ । ତାହାହିଁ ଉକ୍ତ ଗ୍ରନ୍ଥର ଉପସ୍କାରରେ ସିଦ୍ଧାନ୍ତ କରାଯାଇଛି ।

ଆକାଶ ଯେ ନୀଳବର୍ଣ୍ଣ ରୂପେ ପ୍ରତୀତ ହୁଏ, ତାହା ବାସ୍ତବରେ ଆକାଶର ବର୍ଣ୍ଣ ନୁହେଁ । ନିୟୋଗତଃ ସମୁଚ୍ଚୟତଃ ବା ବିକଳ୍ପତଃ ଯେକୌଣସି ପ୍ରକାରେ ହେଉ ନଭଃ ପ୍ରଭୃତି ଦ୍ରବ୍ୟର ରୂପାଦି ଥାଇ ନପାରେ । ତେବେ ଯେଉଁ ବର୍ଣ୍ଣ ଉପଲବ୍ଧି ହୁଏ ତାହା ଭ୍ରାନ୍ତ ପ୍ରତୀତି ମାତ୍ର । ଶଙ୍କର ମିଶ୍ର ଉକ୍ତ ଭ୍ରାନ୍ତିର ନିରସନ ନିମିତ୍ତ ବହୁଳ ଯୁକ୍ତିର ଅବତାରଣା କରିଛନ୍ତି । ସମୁଦ୍ରରେ ଓ ବାୟୁ ରାଶିରେ ଆମ୍ଭେ ଯେଉଁ ନୀଳିମା ଦେଖୁଁ ତାହା ସେଗୁଡ଼ିକର ବାସ୍ତବ ବର୍ଣ୍ଣ ନୁହେଁ, ତାହା ଉକ୍ତ ପଦାର୍ଥ ଦ୍ୱୟରେ ସୌର କିରଣର ପ୍ରତିଫଳନ ସମ୍ଭୁତବର୍ଣ୍ଣ ମାତ୍ର । ଏହା ଯଦି ଉକ୍ତ ପଦାର୍ଥ ଦ୍ୱୟର ବାସ୍ତବ ବର୍ଣ୍ଣ ହୁଅନ୍ତା, ତାହାହେଲେ ଗୃହାଭ୍ୟନ୍ତରସ୍ଥ ବାୟୁରାଶି ଏବଂ ଭାଣ୍ଡଗତ ସମୁଦ୍ରଜଳ ନୀଳବର୍ଣ୍ଣ ଦେଖାଯା'ନ୍ତା । ଆକାଶର ନୀଳିମା କବିର କଳ୍ପନା ଚକ୍ଷୁରେ ଅପରୂପ ସୌନ୍ଦର୍ଯ୍ୟ ରୂପେ ପ୍ରତୀତ ହୋଇଥାଏ । କିନ୍ତୁ ଦାର୍ଶନିକ ଓ ବୈଜ୍ଞାନିକର ସୂକ୍ଷ୍ମ ଦୃଷ୍ଟିରେସେହି ଶୋଭାରାଶିବିମଣ୍ଡିତ କଳ୍ପନା କୁଞ୍ଜ ଅପସାରିତ ହୋଇ ଘୋର ଜଟିଳ ସମସ୍ୟାର ନୀରସ ମରୁ ପ୍ରାନ୍ତରରେ ପରିଣତ ହୁଏ ।

## ବାୟୁର ରାସାୟନିକ ତତ୍ତ୍ୱ

ପ୍ରାଚ୍ୟ ପଣ୍ଡିତମଣ୍ଡଳୀ ବାୟୁକୁ ପଞ୍ଚଭୂତାନ୍ତର୍ଗତ ଗୋଟିଏ ଭୂତ ରୂପେ ନେଇଛନ୍ତି । ପାଶ୍ଚାତ୍ୟ ପଣ୍ଡିତଗଣ ଅନେକ ଦିନଯାଏ ଏହାକୁ ଭୂତ ବୋଲି ସ୍ୱୀକାର କରୁଥିଲେ, କିନ୍ତୁ କହିବାକୁ ଗଲେ ଆର୍ଯ୍ୟଶାସ୍ତ୍ରର 'ଭୂତ' ଏବଂ ପାଶ୍ଚାତ୍ୟ ପଣ୍ଡିତଙ୍କ ଅଭିହିତ ''ମୂଳ ପଦାର୍ଥ'' (Element) ଏକ ବିଷୟ ନୁହେଁ । ପାଶ୍ଚାତ୍ୟ ପ୍ରଦେଶରେ ବହୁକାଳ ପର୍ଯ୍ୟନ୍ତ ଏହି ପଞ୍ଚମହାଭୂତ (Element) ନାମରେ ଅଭିହିତ ହେଉଥିଲା । କିନ୍ତୁ ପାଶ୍ଚାତ୍ୟ ରସାୟନ ଶାସ୍ତ୍ରରେ ଆଜି ପ୍ରମାଣିତ ହେଉଅଛି ଯେ, କ୍ଷିତି, ଅପ୍, ତେଜଃ, ବାୟୁ ଓ ବ୍ୟୋମ ଏଗୁଡ଼ିକ ମୂଳପଦାର୍ଥ ବା Element ନୁହେଁ । ଏତଦ୍ୱାରା ଆମ୍ଭମାନଙ୍କର ପ୍ରୋକ୍ତ ଭୂତ ଶବ୍ଦ ପରିପବର୍ତ୍ତନର ପ୍ରୟୋଜନ ନାହିଁ; ଯେହେତୁ ପାଶ୍ଚାତ୍ୟ ପଣ୍ଡିତଙ୍କ 'ଏଲିମେଣ୍ଟ' ଶବ୍ଦରୁ ଯାହା ବୁଝାଯାଏ, ଆମ୍ଭମାନଙ୍କର ଭୂତ ଶବ୍ଦର ଅର୍ଥ ତଦ୍ରୂପ ନୁହେଁ । ଆଧୁନିକ ପାଶ୍ଚାତ୍ୟ ରସାୟନବିଦ୍ ପଣ୍ଡିତଗଣ କହନ୍ତି, ବାୟୁ, ଜଳ ଓ ପୃଥିବୀ ମୂଳ ପଦାର୍ଥ ନୁହେଁ; ଏଗୁଡ଼ିକ ମୂଳ ପଦାର୍ଥର ସଂଯୋଗରେ ମାତ୍ର ପ୍ରସ୍ତୁତ ହୋଇଅଛି । ଅଗ୍ନି ଆଦୌ ପଦାର୍ଥ ନୁହେଁ; ଏହା ରାସାୟନିକ ମୂଳ ପଦାର୍ଥର କ୍ରିୟାଫଳ ବିଶେଷ । ବିଶ୍ଳେଷଣୀ କ୍ରିୟାର ଅତିସୂକ୍ଷ୍ମ ପ୍ରଣାଳୀଦ୍ୱାରା ଯେଉଁ ପଦାର୍ଥକୁ ଅପର ଜାତୀୟ ପଦାର୍ଥଦ୍ୱାରା କୌଣସି

ପ୍ରକାରେ ବିଶ୍ଳେଷଣ କରାଯାଇ ନପାରେ, ସେହି ପଦାର୍ଥକୁ ହିଁ ମୂଳ ପଦାର୍ଥ କୁହାଯାଏ । ସମ୍ପ୍ରତି ଏହି ମୂଳପଦାର୍ଥର (Element) ସଂଖ୍ୟା ସତୁରିରୁ ଅଧିକ ହେଲାଣି ।

ନିତାନ୍ତ ଆଧୁନିକ ରସାୟନବିଦ୍ ପଣ୍ଡିତଗଣ ପରମାଣୁ ତତ୍ତ୍ୱର ଯୁଗାନ୍ତର ଆନୟନ କରି ବର୍ତ୍ତମାନ ରସାୟନ ବିଜ୍ଞାନର ମୂଳ ପଦାର୍ଥ ନିର୍ଣ୍ଣୟ କରଣେ ମହାବିପ୍ଳବ ଘଟାଇ ଅଛନ୍ତି । ଏହି ବିଭିନ୍ନ ମୂଳ ପଦାର୍ଥ ଯେ କେବଳ ଗୋଟିଏ ମୂଳ ପଦାର୍ଥର ଅବସ୍ଥାନ୍ତର ମାତ୍ର, ବର୍ତ୍ତମାନ ବିଜ୍ଞାନ ଏହି ଦିଗରେ ଅଗ୍ରସର ହେଉଅଛି ।

ଯାହାହେଉ ଯେତେଦିନ ପର୍ଯ୍ୟନ୍ତ ସେହି ସିଦ୍ଧାନ୍ତ ସ୍ଥିରୀକୃତ ହୋଇନାହିଁ ସେପର୍ଯ୍ୟନ୍ତ ପ୍ରାଚୀନ ରସାୟନ ବିଜ୍ଞାନ ସିଦ୍ଧାନ୍ତରେ ଆସ୍ଥା ରଖିବା ବିଧେୟ । ୟୁରୋପରେ ବୈଜ୍ଞାନିକ ଯୁଗର ଆରମ୍ଭରୁ ଏପର୍ଯ୍ୟନ୍ତ ବାୟୁର ରାସାୟନିକ ତତ୍ତ୍ୱ ସମ୍ବନ୍ଧେ ଯାହା ଆଲୋଚିତ ହୋଇଅଛି ତାହାର ସଂକ୍ଷିପ୍ତ ବିବରଣ ନିମ୍ନରେ ପ୍ରଦତ୍ତ ହେଲା ।

ପୂର୍ବେ ୟୁରୋପରେ ମଧ୍ୟ ବାୟୁ ଗୋଟିଏ ମୂଳ ପଦାର୍ଥ ରୂପେ ପରିଗଣିତ ହେଉଥିଲା । ୧୬୩୦ ଖ୍ରୀଷ୍ଟାବ୍ଦରେ ଫରାସୀ ରାସାୟନିକ ପଣ୍ଡିତ ଜୋନ୍ ରେ (Joan Ray) ଅନୁସନ୍ଧାନଦ୍ୱାରା ସ୍ଥିର କଲେ ଯେ, ଟିନ୍ ଓ ସୀସାଧାତୁ ଉନ୍ମୁକ୍ତ ସ୍ଥାନରେ ଦଗ୍ଧ କଲେ ସେ ସ୍ଥାନରେ ବାୟୁର ଗୁରୁତ୍ୱ ବୃଦ୍ଧି ହୁଏ ।

ବାୟୁର ଉପାଦାନ ବିଶ୍ଳେଷଣର ଇତିହାସ ଲେଖିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ନୁହେଁ । କିନ୍ତୁ ବାୟୁର ଉପାଦାନ ସମ୍ବନ୍ଧେ ଆଧୁନିକ ପାଶ୍ଚାତ୍ୟ ସିଦ୍ଧାନ୍ତ ସଂକ୍ଷିପ୍ତରେ ପ୍ରକାଶ କରାଯିବ । ରସାୟନବିଦ୍ ପଣ୍ଡିତଗଣ ନାନାବିଧ ଉପାୟରେ ବାୟୁରାଶିର ଉପାଦାନ ବିଶ୍ଳେଷଣ କରି ତାହାର ପରିମାଣ ସ୍ଥିର କରିଅଛନ୍ତି । ସେହି ଉପାଦାନ ପରିମାଣର ତାଲିକା ନିମ୍ନରେ ଦିଆଗଲା ।

| | |
|---|---|
| (୧)ଅକ୍ସିଜେନ୍ | ୨୦.୬୧ |
| (୨)ନାଇଟ୍ରୋଜେନ୍ | ୭୭.୯୫ |
| (୩)ଜଳୀୟବାଷ୍ପ | ୧.୪୦ |
| (୪)କାର୍ବୋନିକ୍ ୟାନୋହାଇଡ୍ରାଇଡ୍ | ୦.୦୪ |

ଏତଦ୍‌ବ୍ୟତୀତ ଓଜୋନ୍ (Ozone), ନାଇଟ୍ରିକ୍ ଏସିଡ୍, ଆମୋନିୟା, କାର୍ବାରେଟଡ୍, ହାଇଡ୍ରୋଜନ ଏବଂ ଜନାକୀର୍ଣ୍ଣ ସହରର ବାୟୁରେ ସାଲଫ୍ୟୁରେଟଡ୍ ଏସିଡ୍ ଦେଖାଯାଏ । ଏହାଛଡ଼ା ନାନାବିଧ ଉଦ୍‌ବାୟୁ ଯାନ୍ତ୍ରିକ ପଦାର୍ଥ (Valatile organic matter) ରୋଗୋତ୍ପାଦକ ବୀଜ (Pathogenic Germs) ଓ ମାଇକ୍ରୋବ୍ (microbe) ବାୟୁରାଶିରେ ଭାସୁଥାଏ। ଏତଦ୍‌ବ୍ୟତୀତ ବିଶୁଦ୍ଧ ବାୟୁରାଶିରେ ଆହୁରି କେତେକ ମୂଳ ପଦାର୍ଥ ମିଶିଥିବା ଅଧୁନା ଧରାଯାଇଅଛି । ସୁପ୍ରସିଦ୍ଧ ବିଜ୍ଞାନବିଦ୍ 'ଲଡ଼ିଗଲେ' ଏବଂ ୟୁନିଭରସିଟି କଲେଜର

ରସାୟନଶାସ୍ତ୍ର ଅଧ୍ୟାପକ ଉଇଲିୟମ୍ ରାମଜେ ଏହି ମନୀଷୀଦ୍ୱୟ ପ୍ରଚୁର ଅର୍ଥ ବ୍ୟୟ ଓ ଗଭୀର ଗବେଷଣାଦ୍ୱାରା ବାୟୁର ୫ଟି ମୂଳ ପଦାର୍ଥ ଥିବା ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା ଦର୍ଶାଇଅଛନ୍ତି ତାହା- ଆର୍ଗନ୍(Argon), ହିଲିୟମ(Helium), ନୀୟନ୍(Neon), କ୍ରିପ୍ଟନ୍(Krypton) ଓ ଜେନନ୍ (Xenon)।

**ବାୟୁରେ ହାଇଡ୍ରୋଜେନ୍** - ବାୟୁ ମଧ୍ୟରେ ହାଇଡ୍ରୋଜେନ୍ ମିଶ୍ରିତ ଥିବା ଅଷ୍ଟାଦଶ ଶତାବ୍ଦୀର ରାସାୟନିକ ପଣ୍ଡିତମାନେ ଜାଣିଥିଲେ, କିନ୍ତୁ ନାମ ଜଣାନଥିଲା । ସୁବିଖ୍ୟାତ ଫରାସୀ ପଣ୍ଡିତ ଗାଉଟିୟର୍ ବିବିଧ ପରୀକ୍ଷାଦ୍ୱାରା ସ୍ଥିର କଲେ ଯେ ହାଇଡ୍ରୋଜେନ୍ ନାମକ ମୂଳ ପଦାର୍ଥ ବିଶୁଦ୍ଧାବସ୍ଥାରେ ସର୍ବଦା ବାୟୁରେ ଥାଏ । ପ୍ରତି ଦଶହଜାର ଭାଗ ବାୟୁରେ ଦୁଇଭାଗ ହାଇଡ୍ରୋଜେନ୍ ଥାଏ । ଅଧ୍ୟାପକ ଡେଉରାର ଏହି ସିଦ୍ଧାନ୍ତ ସମର୍ଥନ କରିଛନ୍ତି ।

ଉପରୋକ୍ତ ତାଲିକାରୁ ଜଣାଯାଏ ଯେ ଅକ୍ସିଜେନ୍ ଓ ନାଇଟ୍ରୋଜେନ୍, ଏହି ଦୁଇଟି ପଦାର୍ଥ ହିଁ ବାୟୁର ପ୍ରଧାନ ଉପାଦାନ । କାର୍ବୋନିକ୍ ଏସିଡ୍ ଓ ଜଳୀୟବାଷ୍ପ ପ୍ରଭୃତିର ପରିମାଣ ଦେଶ ଭେଦରେ ଓ ସମୟ ଭେଦରେ ନ୍ୟୁନାଧିକ ହୋଇଥାଏ । ଏମୋନିଆ, ସଲ୍‌ଫରାଟେଡ୍, ହାଇଡ୍ରୋଜେନ୍ ଓ ସଲ୍‌ଫ୍ୟୁରସ୍ ଏସିଡ୍ ପ୍ରଭୃତିର ପରିମାଣ ମଧ୍ୟ ଦେଶଭେଦରେ କାଳଭେଦରେ ପରିବର୍ତ୍ତିତ ହୋଇଥାଏ କିନ୍ତୁ ଅକ୍ସିଜେନ୍ ଓ ହାଇଡ୍ରୋଜନ୍‌ର ପରିମାଣ ଅନୁପାତରେ ତାଦୃଶ କୌଣସି ବ୍ୟତିକ୍ରମ ଘଟେ ନାହିଁ ।

## ବିଶୁଦ୍ଧ ବାୟୁର ଗୁରୁତ୍ୱ

ବିଜ୍ଞାନବିଦ୍ ପଣ୍ଡିତ ବାୟଟ୍ (Biot) ଏବଂ ଆରାଗୋ (Arago)ଗବେଷଣାଦ୍ୱାରା ସ୍ଥିର କରିଅଛନ୍ତି ଯେ ମଧ୍ୟବିଧ ଉଷ୍ଣତା ବିଶିଷ୍ଟ (Temperature) ଶୁଦ୍ଧ ବାୟୁର ଗୁରୁତ୍ୱ ଏକଶତ ଘନ ଇଞ୍ଚ । ମଧ୍ୟବିଧ ଉଷ୍ଣତା(Temperature) ବିଶିଷ୍ଟ ଶୁଷ୍କ ବାୟୁର ଓଜନ ୩୧ ଗ୍ରେନରୁ ଅଳ୍ପ ଅଧିକ ଜଳ ଏହା ଅପେକ୍ଷା ୮ ୨ ୬ଗୁଣ ଭାରି ।

ବୃଷ୍ଟିଜଳରେ ଆକ୍ସିଜେନ୍ ଅଧିକ ମାତ୍ରାରେ ଦେଖାଯାଏ । ବାୟୁରାଶିରେ ଆକ୍ସିଜେନ୍ ଓ ନାଇଟ୍ରୋଜନ୍ ସମ୍ମିଶ୍ରିତ ଭାବେ ରହେ; ଏହାକୁ ରାସାୟନିକ ସମ୍ମିଶ୍ରଣ (Chemical combination) କୁହାଯାଏ । ବାୟୁସ୍ଥ ଅକ୍ସିଜେନ୍ ଓ ନାଇଟ୍ରୋଜେନ୍ ସମ୍ବନ୍ଧ ସେପରି ଦୃଢ଼ ନୁହେ; ପ୍ରୟୋଜନ ହେଲେ ସହସା ଗୋଟିଏ ପଦାର୍ଥ ଅପର ପଦାର୍ଥଠାରୁ ବିଶ୍ଲିଷ୍ଟ ହୋଇପାରେ । ଏହିପରି ସହଜ ଓ ଆକସ୍ମିକ ବିଶ୍ଳେଷଣ ପ୍ରକ୍ରିୟା ସମ୍ଭାବିତ । ନହେଲେ ବାୟୁଦ୍ୱାରା ସେ ଜଗତର ଅନେକ ଅତ୍ୟାବଶ୍ୟକୀୟ ପ୍ରୟୋଜନୀୟତା ସିଦ୍ଧ ହେଉଅଛି ତାହା ହୁଅନ୍ତା ନାହିଁ ।

ବାୟୁମଣ୍ଡଳରେ ଅକ୍ସିଜେନ୍ ଓ ନାଇଟ୍ରୋଜେନ୍ ହିଁ ପ୍ରଧାନତମ ଉପାଦାନ । ଏ ଦୁଇଟି ଉପାଦାନ ପୃଥକ୍ କରିବା ଓ ଏହାର ପରିମାଣ ନିର୍ଦ୍ଦେଶ କରିବା ଲାଗି ଇଉଡ଼ିଓମିଟର (Eudiometer) ନାମକ ନଳିକା ଯନ୍ତ୍ର ପ୍ରଧାନ ସହାୟକ; ଏଥିଲାଗି ହିଁ ଏ ଯନ୍ତ୍ରର ସୃଷ୍ଟି । ବାୟୁର ଏହି ସକଳ ପରୀକ୍ଷାପ୍ରଣାଳୀ ଏବଂ ବାୟୁମଣ୍ଡଳସ୍ଥ ଉପାଦାନ ସକଳର ବିଶ୍ଳେଷଣ, ଶରୀରସ୍ଥ ବାୟୁର

ପ୍ରକ୍ରିୟା, କେଉଁ ବାୟୁ ଶରୀରରେ କି କାର୍ଯ୍ୟ କରେ ଇତ୍ୟାଦିର ବିସ୍ତୃତ ବିବରଣ ଉଲ୍ଲେଖ କରିବାକୁ ଗଲେ ଗୋଟିଏ ସ୍ୱତନ୍ତ୍ର ବୃହଦାକାର ପୁସ୍ତକ ହୋଇଯିବ । ଅତଏବ ବାୟୁର ଉପାଦେୟତା ସମ୍ବନ୍ଧେ କେତେକ ବିଷୟର ସାରାଂଶ ମାତ୍ର ଉଲ୍ଲେଖ କରାଯିବ ।

## ଶ୍ୱାସ ପ୍ରକ୍ରିୟା

ଫୁସ୍‌ଫୁସ୍‌ରେ ବାୟୁ ଗ୍ରହଣ କରିବା କ୍ରିୟାକୁ ନିଶ୍ୱାସ ଏବଂ ଫୁସ୍‌ଫୁସ୍‌ଠାରୁ ବାୟୁ ପରିତ୍ୟାଗ କରିବା କ୍ରିୟାକୁ ପ୍ରଶ୍ୱାସ କୁହାଯାଏ ।

ନାସାରନ୍ଧ୍ର ବା ମୁଖ ଏହି ଦୁଇଟି ହିଁ ବାୟୁ ଗ୍ରହଣ ବା ତ୍ୟାଗର ପଥସ୍ୱରୂପ । ଏଥିରୁ ଗୋଟିଏ ରୁଦ୍ଧ ହେଲେ ଅପରଟିରେ ଶ୍ୱାସକ୍ରିୟା ଚଳିପାରେ । ଶରୀରତତ୍ତ୍ୱବିତ୍‌ଗଣ ବୈଜ୍ଞାନିକ ପ୍ରଣାଳୀଦ୍ୱାରା ଫୁସ୍‌ଫୁସ୍ ସମ୍ବନ୍ଧୀୟ ବାୟୁର ପ୍ରକାରଭେଦ କରିଅଛନ୍ତି । ଫୁସ୍‌ଫୁସୀୟ ବାୟୁର ପରିମାଣ ଭେଦରେ ହିଁ ଏହି ପ୍ରକାର ଭେଦ ନିର୍ଣ୍ଣୀତ ହୋଇଅଛି । ଡାକ୍ତର 'ହାଚିନ୍‌ସନ୍'ଙ୍କ ଦ୍ୱାରା ଯେଉଁ ନାମକରଣ ହୋଇଅଛି, ତାହା ନିମ୍ନରେ ପ୍ରଦତ୍ତ ହେଲା ।

**ରେସିଡୁଏଲ୍** (Residual air) - ପ୍ରଶ୍ୱାସ ଦ୍ୱାରା ଫୁ ସ୍‌ଫୁ ସ୍‌ର ସକଳ ବାୟୁ ବାହାର କରିବା ନିମନ୍ତେ ଅତି ପ୍ରବଳ ବେଗେ ପ୍ରଶ୍ୱାସ ତ୍ୟାଗକଲେ ସୁଦ୍ଧା ବାୟୁରାଶିର ଯେଉଁ ଅବଶିଷ୍ଟ ଫୁସ୍‌ଫୁସ୍‌ରେ ରହିଯାଏ ଏହାର ନାମ ହିଁ ରେସିଡୁଆଲ ଏୟାର ।

ବକ୍ଷର ଆୟତନ ଅନୁସାରେଏହାର ପରିମାଣ ନିର୍ଣ୍ଣୀତ ହୋଇଥାଏ । ସାଧାରଣତଃ ଏହାର ପରିମାଣ ୧୦୦ଠାରୁ ୧୩୦ ଘନଫୁଟ ଅଥବା ୧୬୦୦ ସେଣ୍ଟିମିଟର, ହାକସିଲରଙ୍କ ମତେ ୧୫୦୦ ମାତ୍ର ।

**ରିଜର୍ଭ ବା ସପ୍ଲିମେଣ୍ଟାଲ୍ ଏୟାର** (Reserve or supplemental air) - ସାଧାରଣ ପ୍ରଶ୍ୱାସରେ ଯେଉଁ ବାୟୁ ଫୁସ୍‌ଫୁସ୍‌ରୁ ବହିଷ୍କୃତ ନହୋଇ କେବଳ ପ୍ରବଳ ପ୍ରଶ୍ୱାସରେ ବହିର୍ଗତ ହୁଏ ତାହାର ନାମ ହିଁ ରିଜର୍ଭ ବା ସପ୍ଲିମେଣ୍ଟାଲ ବାୟୁ । ଏହାର ପରିମାଣ ୧୬୦୦ ସେଣ୍ଟିମିଟର ।

**ଟାଇଡାଲ ବା ବ୍ରିଦିଂ ଏୟାର** (Tidal or Breathing air) - ପ୍ରତ୍ୟେକ ସ୍ୱାଭାବିକ ନିଶ୍ୱାସ ପ୍ରଶ୍ୱାସରେ ଯେଉଁ ବାୟୁ ଯେଉଁ ପରିମାଣରେ ଫୁସ୍‌ଫୁସ୍‌ରେ ଗୃହୀତ ହୁଏ, ଏବଂ ସେହିଠାରୁ ବହିର୍ଗତ ହୁଏ ତାହାହିଁ ଟାଇଡାଲ ବାୟୁ ବା ସତତ ସହଜ ସଞ୍ଚରଣଶୀଳ ଶ୍ୱାସବାୟୁ ନାମେ ଅଭିହିତ । ଏହାର ପରିମାଣ ପ୍ରାୟ ୨୦ ଘନଇଞ୍ଚ ବା ୩୦୦ ସେଣ୍ଟିମିଟର ।

**କମ୍ପ୍ଲିମେଣ୍ଟାଲ୍** (Complemental air) :- ସ୍ୱାଭାବିକ ନିଶ୍ୱାସ ଅତ୍ୟଧିକ ଜୋରରେ ନିଶ୍ୱାସ ଗ୍ରହଣ କଲେ ଯେଉଁ ବାୟୁ ଯେଉଁ ପରିମାଣରେ ଫୁସ୍‌ଫୁସ୍‌ରେ ଗୃହୀତ ହୁଏ, ତାହାହିଁ ଉକ୍ତ ନାମେ ଖ୍ୟାତ । ଏହାର ପରିମାଣ ୧୦୦ ଘନ ଇଞ୍ଚ ଅବା ୧୬୦୦ ସେଣ୍ଟିମିଟର ।

**ଭିଟାଲ ବା ରେସପିରେଟାରୀ କ୍ୟାପାସିଟି** (Vaital or respiratary capacity) :- ସାମର୍ଥ୍ୟାନୁଯାୟୀ ନିଶ୍ୱାସ ଗ୍ରହଣାନ୍ତର ତଦନୁଯାୟୀ ପ୍ରଶ୍ୱାସ ବାୟୁ ଯେଉଁ ପରିମାଣରେ ପରିତ୍ୟାଗ କରାଯାଏ ସେହି ପରିମିତ ବାୟୁ ଭିଟାଲ୍ କ୍ୟାପାସିଟି ନାମେ ଅଭିହିତ । ସୁତରାଂ ଏହି ବାୟୁ ହିଁ 'କଂସପ୍ଲିମେଣ୍ଟାଲ୍ ଭିଟାଲ୍' ଓ 'ରିଜର୍ଭ' ବାୟୁର ସମଷ୍ଟି ମାତ୍ର । ଏହାର ପରିମାଣ ୨୩୦ ଘନ ଇଞ୍ଚ ଅଥବା ୩୫୦୦ ଠାରୁ ୪୦୦୦ ସେଣ୍ଟିମିଟର । ପାଞ୍ଚଫୁଟ ଆଠଇଞ୍ଚ ଦୈର୍ଘ୍ୟ ବିଶିଷ୍ଟ ବ୍ୟକ୍ତିଠାରୁଏହି ବାୟୁର ପରିମାଣ ଗୃହୀତ ହୋଇଅଛି । ଦେହର ଦୈର୍ଘ୍ୟ, ଗୁରୁତ୍ୱ, ବୟସ ଓ ସ୍ତ୍ରୀ ପୁଂସ ଭେଦ ଏବଂ ସ୍ୱାସ୍ଥ୍ୟର ଅବସ୍ଥା ଅନୁସାରେଏହାର ପରିମାଣରେ ପରିବର୍ତ୍ତନ ହୋଇଥାଏ । ସ୍ପିରୋମିଟର (Spirometer) ନାମକ ଯନ୍ତ୍ରର ସାହାଯ୍ୟରେ ଏହାର ପରିମାଣ ନିର୍ଦ୍ଧାରିତ ହୋଇଥାଏ ।

ରେସିଡ୍ୟୁଆଲ ଏୟାର୍ ବା ନିତ୍ୟାବସ୍ଥିତ ବାୟୁର ପରିମାଣ ନିରୂପଣ କରିବା ସହଜସାଧ୍ୟ ନୁହେଁ । କିନ୍ତୁ ଉତ୍ସାହଶୀଳ ପାଶ୍ଚାତ୍ୟ ବୈଜ୍ଞାନିକଗଣ ଏହି ବାୟୁର ପରିମାଣ ନିରୂପଣର ଗୋଟିଏ ଉପାୟ ଆବିଷ୍କାର କରିଅଛନ୍ତି । ସହଜ ପ୍ରଶ୍ୱାସର ପରକ୍ଷଣରେ ବିଶୁଦ୍ଧ ହାଇଡ୍ରୋଜେନପୂର୍ଣ୍ଣ ଗୋଟିଏ ଖୋଲା ବୋତଲର ମୁଖରେ ମୁଖ ଦେଇ ଛ ଥର ପ୍ରଶ୍ୱାସ ତ୍ୟାଗକରି ଛ ଥର ନିଶ୍ୱାସ ଗ୍ରହଣ କଲେ ଜଣାଯିବ ଯେ, ପ୍ରଶ୍ୱାସ ବାୟୁରେ କେତେ ପରିମାଣରେ ଅକ୍ସିଜେନ୍ ମିଶିଅଛି । ନିମ୍ନଲିଖିତ ବୀଜାଙ୍କ ଅନୁସାରେ ଫୁସ୍‌ଫୁସ୍‌ରେ ଅଭ୍ୟନ୍ତରସ୍ଥ ବାୟୁର ପରିମାଣ ନିର୍ଣ୍ଣୟ କରାଯାଇପାରେ ।

$$ଉ'' : ଉ' + ଉ'' :: ପ : ୧୦୦$$

$$ଉ = \frac{ଉ''(୧୦୦-ପ)}{ପ}$$

ଏ ସ୍ଥଳେ ଉ' = ପରୀକ୍ଷା ସମୟେ ଫୁସ୍‌ଫୁସ୍‌ସ୍ଥିତ ଆୟତନ ।

ଉ'' = ହାଇଡ୍ରୋଜେନ୍‌ଧୃତ ପାତ୍ରର ଆୟତନ ।

ପ= ପରୀକ୍ଷାର ଶେଷ ପାତ୍ରସ୍ଥିତ ହାଇଡ୍ରୋଜେନ୍‌ର ସହିତ ବାୟୁର ଅନୁପାତ । ତାହାହେଲେ ଉ= ସହଜ ପ୍ରଶ୍ୱାସର ପରେ ଫୁସ୍‌ଫୁସୀୟ ବାୟୁର ଆୟତନ; ଅର୍ଥାତ୍ ଏହା 'ରେସିଡୁଆଲ୍' ଓ ରିଜର୍ଭ ବାୟୁ ବିଯୋଗ କଲେ ଆମ୍ଭେମାନେ ୧୦୦ ଠାରୁ ୧୩୦ ଘନ ଫୁଟ ବାୟୁ ପ୍ରାପ୍ତ ହେବୁଁ; ଏହାହିଁ ରେସିଡୁଆଲ ବାୟୁର ପରିମାଣ ।

ଡାକ୍ତର ହାଚିନ୍‌ସନ୍ କୋମଳ ଶରୀର ପରୀକ୍ଷା କରିଏହି ପରିମାଣ ନିରୂପଣ କରିଅଛନ୍ତି । ପ୍ରାପ୍ତ ବୟସ୍କ ଲୋକର ଫୁସ୍‌ଫୁସ୍‌ରେ ଚବିଶ ଘଣ୍ଟାରେ ଯେଉଁ ବାୟୁରାଶି ଯାତାୟାତ କରେ ତାହାର ସମଷ୍ଟି ହାଚିନ୍ ସାହେବଙ୍କ ମତେ ଛ ଲକ୍ଷ ଅଶି ହଜାର ଘନ ଇଞ୍ଚ; ମର୍ସେଟଙ୍କ ମତେ ଚାରିଲକ୍ଷ ଘନଇଞ୍ଚ । ଆମେରିକାର ବିଶିଷ୍ଟ ବୈଜ୍ଞାନିକ ଡାକ୍ତର

ହେରଙ୍କ ମତେ ଛ ଲକ୍ଷ ଛୟାଅଶି ହଜାର କିନ୍ତୁ ପରିଶ୍ରମଦ୍ୱାରା ଏହାର ପରିମାଣ ଦ୍ୱିଗୁଣ ହୋଇଯାଏ । ଆହୁରି ମଧ୍ୟ ଶ୍ରମଜୀବୀମାନଙ୍କର ଫୁସ୍‌ଫୁସ୍‌ରେ ଚବିଶ ଘଣ୍ଟା ମଧ୍ୟରେ ଏକକୋଟି ଛପନ ଲକ୍ଷ ଅଠାଅଶି ହଜାର ତିନି ଶହ ଘନ ଇଞ୍ଚ ବାୟୁ ଯାତାୟତ କରେ ।

ବିଶ୍ରାମ ଅବସ୍ଥାର ପ୍ରତି ମିନଟରେ ୧୬ଠାରୁ ୨୮ ଥର ଶ୍ୱାସବାୟୁ ବହିଥାଏ । ହୃତ୍‌ପିଣ୍ଡର ସ୍ପନ୍ଦନ ସହିତ ଏହାର ଗୋଟିଏ ଆନୁପାତିକ ସମ୍ବନ୍ଧ ଅଛି । ଏକଥର ଶ୍ୱାସକ୍ରିୟାରେ ଚାରିଥର ହୃତ୍‌ସ୍ପନ୍ଦନ ହୁଏ । ଶ୍ୱାସବାୟୁର ଗତି ସ୍ଥିର ହୋଇ ସତତ ସମାନ ରହେନାହିଁ । ଡାକ୍ତର କୋୟେଲେଟ୍ (Quetelet) ନିମ୍ନଲିଖିତ ମତେ ଏହାର ଗତିର ସଂଖ୍ୟା ନିରୂପଣ କରିଅଛନ୍ତ ।

୧ ବର୍ଷ ବୟସରଏକମିନଟ୍‌କୁ ୪୪ ଥର
୫ ବର୍ଷ ବୟସରଏକମିନଟ୍‌କୁ ୨୬ ଥର
୧୫ଠାରୁ ୨୦ ପର୍ଯ୍ୟନ୍ତ ଏକମିନିଟ୍‌କୁ ୨୦ ଥର
୨୦ ଠାରୁ୩୦ ପର୍ଯ୍ୟନ୍ତଏକମିଟ୍‌କୁ ୧୬ ଥର
୩୦ ଠାରୁ୬୫୦ ପର୍ଯ୍ୟନ୍ତ ଏକ ମିନିଟ୍‌କୁ ୮ ଥର

ପରିଶ୍ରମଦ୍ୱାରା ଘନ ଥିବା ତାପ ବୃଦ୍ଧି ହେଲେ ଶ୍ୱାସବାୟୁ ଘନ ଘନ ଗତି କରେ । ବୈଜ୍ଞାନିକ ପଣ୍ଡିତ ବାଟି ନିରୂପଣ କରିଛନ୍ତି ଯେ ଭୂବାୟୁର ପ୍ରଚାପ ଯେତେ ବୃଦ୍ଧି ହେବ ଶ୍ୱାସପ୍ରକ୍ରିୟାର ଦୃଢ଼ତ୍ୱ ତେତେ ହ୍ରାସ ହୋଇଯିବ । କିନ୍ତୁ ତଦ୍ୱାରା ନିଶ୍ୱାସର ଗଭୀରତା (Depth) ବୃଦ୍ଧି ପାଇବ ।

କ୍ଷୁଧାନୁଭବର ପ୍ରାରମ୍ଭରେ ଶ୍ୱାସକ୍ରିୟା ହ୍ରାସ ହୁଏ । ଆହାର ଗ୍ରହଣ ସମୟରେ ଏବଂ ଆହାର ଗ୍ରହଣ ପରେ ମଧ୍ୟ ପ୍ରାୟଏକ ଘଣ୍ଟା ପର୍ଯ୍ୟନ୍ତ ଶ୍ୱାସକ୍ରିୟା ବୃଦ୍ଧି ହୋଇ ତାପରେ ପୁଣି ନ୍ୟୂନ ହୋଇଯାଏ । ଆହାର ନକଲେ ଶ୍ୱାସକ୍ରିୟା ବୃଦ୍ଧି ହୁଏ । ଶ୍ୱାସବାୟୁର ଗତି କ୍ଷଣକ ଲାଗି ଇଚ୍ଛାନୁସାରେ ନାନାପ୍ରକାର ପରିବର୍ତ୍ତନ କରାଯାଇପାରେ ।

ଅକ୍ସିଜେନ୍ ଥିବା ବାୟୁ ସେବନ କଲେ ଶ୍ୱାସରୁଦ୍ଧ ହୁଏ; କାର୍ବୋନିକ୍ ଏସିଡ୍‌ର ମାତ୍ରା ବୃଦ୍ଧି ପାଇଲେ ବାୟୁ ବିଷବତ୍ କାର୍ଯ୍ୟକରେ । ଏହାର ସେବନରେ ମାଦକତା-ଉତ୍ପାଦକ ବିଷର କ୍ରିୟା ପ୍ରକାଶ ପାଏ । କିନ୍ତୁ ଅକ୍ସିଜେନର ଅଭାବ ନଥିଲେ ଏହାଦ୍ୱାରା ଶ୍ୱାସରୁଦ୍ଧ ହୋଇପାରେ ନାହିଁ । କାର୍ବୋନିକ୍ ଅକ୍ସାଇଡ୍ ଭୟଙ୍କର ବିଷ । ପଥରକୋଇଲାର ବାଷ୍ପରେ ଏହି ବିଷ ପ୍ରଚୁର ପରିମାଣରେ ପରିଲକ୍ଷିତ ହୋଇଥାଏ । ଦ୍ୱାରାଦି ବନ୍ଦଥାଇ ବାୟୁର ଯାତାୟାତ ପଥ ରୁଦ୍ଧ ହୋଇଥିବା ପ୍ରକୋଷ୍ଠରେ ଯଦି ପଥରକୋଇଲା ଜଳୁଥାଏ, ତାହାହେଲେ ତଜ୍ଜନିତ ଧୂମ୍ରନିହିତ କାର୍ବାନିକ୍ ଅକ୍ସାଇଡ୍ ବିଷମିଶ୍ରିତ ବାୟୁ ସେହି ପ୍ରକୋଷ୍ଠବାସୀଙ୍କ ପକ୍ଷେ ଭୟଙ୍କର ବିପଦ ଘଟାଇ ଥାଏ । ଏହି ବିଷ ଦେହରେ ପ୍ରବେଶ କରି ରକ୍ତର ହିମୋଗ୍ଲୋବିନ୍‌ମିଶ୍ରିତ ଅକ୍ସିଜେନ୍‌ଗୁଡ଼ିକୁ ଆତ୍ମସାତ୍

କରେ । ସୁତରାଂ ଅକ୍ସିଜେନ୍ ଅଭାବରେ ଦୈହିକ କ୍ରିୟାରେ ବ୍ୟାଘାତ ଘଟେ । ଏକ ଦିଗରେ କାର୍ବୋନିକ୍ ଏସିଡ୍‌ର ବୃଦ୍ଧି, ଅନ୍ୟଦିଗରେ ଅକ୍ସିଜେନ୍‌ର ହ୍ରାସ, ଏ ଉଭୟ ଶରୀରର ଭୟଙ୍କର ଅନିଷ୍ଟ କରେ ଏବଂ ଜୀବନୀଶକ୍ତି ବିତାଡ଼ିତ ହୁଏ ।

ବାୟୁସ୍ଥ ନାଇଟ୍ରୋଜେନ୍ ଅଭାବ ଯଦି ହାଇଡ୍ରେଜେନ୍‌ଦ୍ୱାରା ପୂରଣ କରାଯାଏ ଏବଂ ଅକ୍ସିଜେନ୍ ନିର୍ଦ୍ଦିଷ୍ଟ ପରିମାଣରେ ଥାଏ ତାହାହେଲେ ଦୈହିକ କାର୍ଯ୍ୟ ନିର୍ବାହିତ ହୋଇପାରେ । ସାଲଫରାଟେଡ୍ ହାଇଡ୍ରୋଜନ ଅହିତକର ପଦାର୍ଥ । ଏହା ରକ୍ତଶୋଧନ ପ୍ରକ୍ରିୟାରେ ବ୍ୟାଘାତ ଘଟାଏ । ନାଇଟ୍ରାସ୍ ଅକ୍ସାଇଡ୍ ଭୟଙ୍କର ବିଷାକ୍ତ ମାଦକ ।

## ସ୍ୱାସ୍ଥ୍ୟ ଓ ବାୟୁ

ସ୍ୱାସ୍ଥ୍ୟର ବାୟୁ ସହିତ ଯେପରି ଘନିଷ୍ଠ ସମ୍ବନ୍ଧ ଅଛି ଅନ୍ୟ କୌଣସି ପଦାର୍ଥ ସହିତ ସେପରି ଦେଖାଯାଏ ନାହିଁ । ଜୀବନରକ୍ଷା ଲାଗି ବାୟୁ ଯେ କେତେଦୂର ଆବଶ୍ୟକ ତାହା ଇତିପୂର୍ବେ କୁହାଯାଇଅଛି । ଏହି ବାୟୁ ସ୍ୱଚ୍ଛ ଓ ବିଶୁଦ୍ଧ ଥିଲେ ଜୀବନର ଯେତେଦୂର ଅଭିବୃଦ୍ଧି ହୁଏ ଦୂଷିତ ହେଲେ ତେତେ ଦୂର କ୍ଷତି ହୋଇଥାଏ । ନାନାବିଧ କାରଣରୁ ବାୟୁ ଦୂଷିତ ହୁଏ । ବାୟବୀୟ ଉପାଦାନ ମଧ୍ୟରୁ ଡାଇଅକ୍ସାଇଡ୍, କାର୍ବନ୍, ଜଳୀୟବାଷ୍ପ, ଆମୋନିଆ, ସାଲ୍‌ଫୀରାଟେଡ୍ ହାଇଡ୍ରୋଜେନ୍ ପ୍ରଭୃତି ବାୟୁରେ ଅଧିକ ମାତ୍ରାରେ ମିଶ୍ରିତ ଥିଲେ ସେହି ବାୟୁ ଏକାନ୍ତ ଅନୁପଯୋଗୀ ହୋଇଯାଏ । ଆମ୍ଭେ ପ୍ରଶ୍ୱାସରେ ଯେଉଁ ବାୟୁ ପରିତ୍ୟାଗ କରୁଁ ତାହା ବିଶେଷତଃ କାର୍ବୋନ୍-ଡାଇଅକ୍ସାଇଡ୍ (ଅଙ୍ଗାରକାମ୍ଳ) ଦ୍ୱାରା ଦୂଷିତ ହୋଇଯାଏ । ସ୍ୱାଭାବିକ ବାୟୁ ରାଶିରେ ୧୦୦୦୦ ଭାଗରୁ ୪ ଭାଗ ମାତ୍ର କାର୍ବୋନିକ୍ ଏସିଡ୍ (ଅଙ୍ଗାରକାମ୍ଳ) ଥାଏ କିନ୍ତୁ ପ୍ରଶ୍ୱାସତ୍ୟକ୍ତ ବାୟୁରେ କାର୍ବୋନିକ୍ ଏସିଡ୍‌ର ପରିମାଣ ଦଶ ହଜାର ଭାଗରେ ତିନିଶତଠାରୁ ଚାରିଶତ ଭାଗ ପର୍ଯ୍ୟନ୍ତ ଥାଏ । ଏହିପରି ପ୍ରାଣୀଜଗତ ପ୍ରତି ନିୟତ ବାୟୁମଣ୍ଡଳକୁ କାର୍ବୋନିକ୍ ଏସିଡ୍‌ଦ୍ୱାରା ଦୂଷିତ କରେ । କିନ୍ତୁ ପ୍ରକୃତିର ବି ବିଚିତ୍ର ବିଧାନ । ପ୍ରାଣୀରାଜ୍ୟର ଯାହା ଅସାର ଉଦ୍ଭିଦ ରାଜ୍ୟର ତାହା ସାର । ଜଣକର ଖାଦ୍ୟ ଅପରପକ୍ଷେ ବିଷ । One man's food is another man's poison. ମନୁଷ୍ୟ ତାହାର ଜୀବନୋପଯୋଗୀ ସାରପଦାର୍ଥ ବାୟୁରୁ ଗ୍ରହଣ କରି ଅସାର ପଦାର୍ଥ ରୂପେ କାର୍ବୋନିକ୍ ଏସିଡ୍ ବା ଅଙ୍ଗାରକାମ୍ଳ ତ୍ୟାଗ କରି ବାୟୁମଣ୍ଡଳକୁ ଦୂଷିତ କରିଥାଏ । କିନ୍ତୁ ତାହାହିଁ ଉଦ୍ଭିଦ ସାର ରୂପେ ଗ୍ରହଣ କରି ବାୟୁମଣ୍ଡଳକୁ ବିଶୁଦ୍ଧ କରେ । ନିଜେ ପଲ୍ଲବିତ ହୁଏ ଏବଂ ତାର ବିନିମୟରେ ମନୁଷ୍ୟର ଜୀବନୋପଯୋଗୀ ଅମ୍ଳଜାନ ନିଜ ଜୀବନର ଅସାର ବସ୍ତୁ ରୂପେ ତ୍ୟାଗ କରିଥାଏ । କାର୍ବୋନିକ୍ ଏସିଡ୍‌ର ଅପକାରିତା ସମ୍ବନ୍ଧେ ପୂର୍ବେ ଯଥେଷ୍ଟ କୁହାଯାଇଅଛି । ଅତଏବ ସର୍ବଦା ଗୋଷ୍ଠୀରେ ରହିବା ସ୍ୱାସ୍ଥ୍ୟର ଅନୁକୂଳ ନୁହେଁ । ଗୃହ ମଧ୍ୟରେ ଏହି ବାୟୁ ରହିଲେ ଗୃହ ଦୁର୍ଗନ୍ଧ ହୋଇଉଠେ । ଉକ୍ତ ଗୃହବାସୀ ଅଭ୍ୟାସବଶତଃ ତାହା ସହଜେ ଅନୁଭବ କରି ନପାରିଲେ ସୁଦ୍ଧା କୌଣସି ନବାଗତ ବ୍ୟକ୍ତି ପ୍ରବେଶ ମାତ୍ରେ ତାହା ସହଜେ ଅନୁଭବ କରିପାରିବେ । ଉପରୋକ୍ତ ଦୂଷିତ

ବାୟୁ ମଳିନବସ୍ତ୍ର, ପୂତିପର୍ଯ୍ୟୁଷିତ ଆହାର୍ଯ୍ୟ ଦ୍ରବ୍ୟ, ମୂଷିକ କୀଟପତଙ୍ଗାଦିର ମୃତଶରୀର, ଧୂଳି, ଅଳନ୍ଧୁ, ଧୂମ୍ରପାନର ଧୂମ୍ର, ଯତ୍ରତତ୍ର ମଳମୂତ୍ର ବିସର୍ଜନ ଓ ନିଷ୍ଠୀବନ ଏବଂ ଗୃହର ଅସମାର୍ଜନରୁ ଏକତ୍ରିତ ଆବର୍ଜନା ଦ୍ୱାରା ଗୃହ ଦୂଷିତ ହୋଇ ନାନାବିଧ ରୋଗ ଜନ୍ମିଥାଏ; ଏତଦ୍‌ବ୍ୟତୀତ ବାୟୁ ସଞ୍ଚାରଣ ଓ ଆଲୋକ ପ୍ରବେଶର ଅଭାବରୁ ଗୃହ ସ୍ୱାସ୍ଥ୍ୟର ପ୍ରତିକୂଳ ହୁଏ । ଅତଏବ ଯେପରି ଗୃହ ମଧ୍ୟରେ ବାୟୁ ସ୍ୱଚ୍ଛଭାବେ ସଞ୍ଚାରିତ ହେବ ଓ ଯଥେଷ୍ଟ ଆଲୋକ ପ୍ରବେଶ କରିବ ସେପରି ଗୃହ ନିର୍ମାଣ କରିବା ଉଚିତ । ଗୃହସ୍ଥ ଓ ଗୃହିଣୀ ସର୍ବଦା ଗୃହ ନିର୍ମଳ ରଖିବା ଲାଗି ତୀବ୍ର ଦୃଷ୍ଟି ଦେବା ନିତାନ୍ତ ବାଞ୍ଛନୀୟ । ସର୍ବଦା ମନେ ରଖିବା ଉଚିତ ଯେ cleanliness is next to Godliness ଅର୍ଥାତ୍ ପରିଶୁଭ୍ରତା ଈଶ୍ୱର ଲାଭର ସୋପାନ ସ୍ୱରୂପ । ପଲ୍ଲୀ ଅପେକ୍ଷା ସହରର ବାୟୁ ଅତି ଦୂଷିତ । ସର୍ବଦା ଯାନବାହନ ଗମନାଗମନରୁ ଧୂଳି ପଟଳରେ ଆକାଶମଣ୍ଡଳ ପରିବ୍ୟାପ୍ତ, ତା'ପରେ କଳକାରଖାନାର ଯନ୍ତ୍ର ନିଃସୃତ ଧୂମ୍ର, ନିର୍ଗମନ ପୟଃପ୍ରଣାଳୀ (Drainage) ଅଭାବରୁ କର୍ଦ୍ଦମିତ ସ୍ଥଳରୁ ବହିର୍ଗତ ଦୂଷିତ ବାୟୁ, ସରୋବରର ଉପରିଭାଗରେ ପୁରୁଷାଦି ବର୍ଜନଜନିତ ଅପରିଶୁଦ୍ଧ ବାୟୁଦ୍ୱାରା ଚତୁର୍ଦ୍ଦିଗ ତଥା ଆକାଶର ବାୟୁମଣ୍ଡଳ ଦୂଷିତ ହୋଇଥାଏ । ଯାନବାହୀ ନାନାବିଧ ପଶୁମାନଙ୍କ ମଳମୂତ୍ର, ଅଶ୍ୱଶାଳ, ଗୋଶାଳା, ମତ୍ସ୍ୟମାଂସ ବିକ୍ରୟସ୍ଥାନ ଓ ବିପଣୀର ପଚାସଢ଼ା ଫଳ ପ୍ରଭୃତିରୁ ସଂକ୍ରାମକ ରୋଗୀଙ୍କ ସଂସ୍ରବରୁ ଦୁଷ୍ଟ ଜୀବାଣୁ ଜନ୍ମେ । ଚମଡ଼ା କାରଖାନା ଓ ସିମେଣ୍ଟ କାରଖାନାରୁ କାର୍ବୋନ୍‌ମନୋକ୍ସାଇଡ୍, ତମ୍ବା କାରଖାନାରୁ ସାଲ୍‌ଫିଉରିକ୍ ଓ ସାଲ୍‌ଫିଉରସ୍ ଏସିଡ୍ ଏହିପରି ବହୁ ପରିମାଣରେ ନାନାବିଧ ଦ୍ରବ୍ୟରୁ ନାନାପ୍ରକାର ରୋଗବୀଜ ଜନ୍ମେ । ବିଶେଷତଃ ଗିଲ୍‌ଟି କରା ସ୍ଥାନ, ପର୍ଯ୍ୟୁଷିତ ଦ୍ରବ୍ୟ, ଗୋରସ ବିକାର ଦ୍ରବ୍ୟ ଅର୍ଥାତ କ୍ଷୀର, ଘୃତ, ନବନୀତ, ଦଧି ଆଦି ପର୍ଯ୍ୟୁଷିତ ହେଲେ ତଜ୍ଜନିତ ଦୂଷିତ ବାୟୁଯୋଗେ ପ୍ରକୃତିର ମାନବଶରୀର ପରିବର୍ଦ୍ଧନଶୀଳ ନୈସର୍ଗିକ ଉପାଦାନ ନଷ୍ଟ ହୋଇ କାଲା ଜ୍ୱର, କାଶ, କ୍ଷୟ ପ୍ରଭୃତି ଦୁଷ୍ଟଓ ଭୟଙ୍କର ରୋଗସମୂହ ଜାତ ହୁଏ । ଏହେତୁ ସହରରେ ନିବାସ କରିବା ବ୍ୟକ୍ତି ପକ୍ଷେ ସର୍ବଦା ପରିଷ୍କାର ଓ ପରିଚ୍ଛନ୍ନ ରହି ସତର୍କ ଭାବେ ଚଳିବା ଉଚିତ । ଖାଦ୍ୟଦ୍ରବ୍ୟ ପ୍ରତି ବିଶେଷ ଦୃଷ୍ଟିଦେବା ବାଞ୍ଛନୀୟ । ସହରରେ ସଦ୍ୟ ଓ ଶୁଦ୍ଧଦ୍ରବ୍ୟ ପ୍ରାୟ ମିଳେ ନାହିଁ । ବିଶେଷତଃ ବାୟୁ ଦୂଷିତ ହେବାରୁ ଖାଦ୍ୟଦ୍ରବ୍ୟରେ ତଜ୍ଜନିତ କୀଟାଣୁ ବିପଣୀ ଅନ୍ନରେ ଓ ଅନ୍ୟାନ୍ୟ ବାହାରେ ବିକ୍ରି ହେଉଥିବା ଖାଦ୍ୟପେୟରେ ସଞ୍ଚରିଥାଏ । ଅତଏବ ବିଶେଷ ସାବଧାନତା ସହିତ ନାଗରିକ ଜୀବନଯାପନ କରିବାକୁ ହେବ ।

## ଜଳୀୟ ବାଷ୍ପ

ବାୟୁ ବୋଲି ଆମ୍ଭେ ଯେଉଁ ମିଶ୍ରିପଦାର୍ଥର ଅସ୍ତିତ୍ୱ ଅନୁଭବ କରୁଁ ତାହାର ରାସାୟନିକ ଉପାଦାନ ଅକ୍ସିଜେନ୍, ନାଇଟ୍ରୋଜେନ୍ ଓ କାର୍ବୋନ୍‌ଡାଇଅକ୍ସାଇଡ୍‌ର ବିଶେଷ ବିବରଣ ଓ ଶରୀର କ୍ରିୟାଦି ସମ୍ବନ୍ଧେ ବିଶେଷ ଆଲୋଚନା କରାଯାଇଅଛି । ସମ୍ପ୍ରତି ଜଳୀୟବାଷ୍ପ ସମ୍ବନ୍ଧେ ଆଲୋଚନା

କରାଯିବ । ସ୍ଥାନକାଳ ଭେଦରେ ବାୟୁରେ ଏହି ବାଷ୍ପ ଅଳ୍ପାଧିକ ପରିମାଣେ ମିଶ୍ରିତ ହେଉଥାଏ । ସୂର୍ଯ୍ୟତାପଦ୍ୱାରା ଜଳ ବାଷ୍ପରେ ପରିଣତ ହୋଇ ବାୟୁ ରାଶିରେ ମିଶିଯାଏ ।

ଡାକ୍ତର ଡାଟଲନ୍ କହନ୍ତି, ଫାରେନ୍‌ହିଟ୍‌ର ୨୧୨ ଡିଗ୍ରୀ ତାପରେ ପ୍ରତି ମିନଟରେ ୪,୨୪୪ ଗ୍ରେନ୍ ହିସାବରେ ଜଳ ବାଷ୍ପାକାରେ ପରିଣତ ହୁଏ । ଏହାର ପରୀକ୍ଷା ଅତି ସହଜ । ପ୍ରତ୍ୟୁଷରୁ ଓସାରିଆ ପାତ୍ରରେ ଜଳଭରି ରଖି ମଧ୍ୟାହ୍ନରେ ତୁଳିଲ ଜଳ ନ୍ୟୂନ ହୁଏ । ଅଦୃଶ୍ୟ ଜଳ ବାଷ୍ପାକାରରେ ପରିଣତ ହୋଇଥାଏ । ଆର୍ଦ୍ରବସ୍ତ୍ର ଶୁଷ୍କହେବା କାରଣ ବସ୍ତ୍ରଗତ ଜଳ ବାଷ୍ପରେ ପରିଣତ ହୁଏ । ଆମ୍ଭର ପ୍ରଶ୍ୱାସରେ ସୁଦ୍ଧା ଜଳୀୟବାଷ୍ପ ମିଶିଥାଏ । ଉଦାହରଣ ସ୍ୱରୂପ ଯଦି ଗୋଟିଏ ଦର୍ପଣରେ ମୁଖ ନିଃସୃତ ବାୟୁ ତ୍ୟାଗ କରାଯାଏ, ତେବେ ଉକ୍ତ ପ୍ରଶ୍ୱାସ ବାୟୁ ଦର୍ପଣର ସ୍ୱଚ୍ଛତା ନଷ୍ଟ କରିଦେବ; ଦର୍ପଣର ଶୀତଳଗାତ୍ର ସ୍ପର୍ଶରେ ହିଁ ଜଳୀୟବାଷ୍ପ ଏହିପରି ଘନୀଭୂତ ହୋଇଯାଏ ।

ଦୃଷ୍ଟାନ୍ତସ୍ୱରୂପ - ଗୋଟିଏ ଶୁଷ୍କ କାଚପାତ୍ରରେ ଖଣ୍ଡେ ବରଫ ରଖିଲେ ପାତ୍ରର ବହିର୍ଭାଗରେ ଜଳକଣା ସଞ୍ଚିତ ହୁଏ । ଅନେକେ ମନେ କରନ୍ତି ଯେ, ଏହା ବରଫରୁ ଜାତ କିନ୍ତୁ ତାହା ନୁହେଁ । ବରଫର ସ୍ପର୍ଶରୁ ଅତି ଶୀତଳତା ଯୋଗୁଁ ଗ୍ଲାସର ଚତୁଃପାର୍ଶ୍ୱସ୍ଥ ବାୟୁରେ ଯେଉଁ ଜଳୀୟବାଷ୍ପ ଥାଏ, ସେ ସକଳ ବାଷ୍ପ ଘନୀଭୂତ ହୋଇ ଜଳବିନ୍ଦୁରେ ପରିଣତ ହୁଏ । ଏ ସମ୍ବନ୍ଧେ ବହୁ ପ୍ରମାଣ ଚକ୍ଷୁ ସମକ୍ଷେ ଉପସ୍ଥାପିତ କରାଯାଇପାରେ ।

ଜଳ ସହିତ ତା'ପରେ ସଂଯୋଗ ହିଁ ଏହି ବାଷ୍ପ ଉତ୍ପତ୍ତିର ଏକମାତ୍ର କାରଣ । ଅଗ୍ନିର ତାପ, ସୂର୍ଯ୍ୟଙ୍କ ତାପ, ଦୈହିକ ତାପ ଓ ଭୂମିର ଅଭ୍ୟନ୍ତରୀଣ ତାପ ପ୍ରଭୃତିଦ୍ୱାରା ବିବିଧପ୍ରକାରେ ଜଳୀୟପଦାର୍ଥ ଉତ୍ତପ୍ତ ହୋଇ ବାଷ୍ପରେ ପରିଣତ ହୁଏ । ପ୍ରଶ୍ୱାସଦ୍ୱାରା ଜଳୀୟବାଷ୍ପ ବୃଦ୍ଧି ହୁଏ । ତ୍ୱକ୍‌ର ଦୈହିକ ଜଳୀୟ ପଦାର୍ଥ ବାଷ୍ପରେ ପରିଣତ ହୁଏ । କାଷ୍ଠ କୋଇଲା ଓ ଦୀପରୁ ମଧ୍ୟ ବାଷ୍ପ ଜନ୍ମେ । ସମୁଦ୍ରାଦି ଜଳାଶୟରୁ ଏହିପରି ପ୍ରତ୍ୟହ ଯେଉଁ ପରିମାଣରେ ଜଳ ବାଷ୍ପରେ ପରିଣତ ହୋଇ ଆକାଶକୁ ଉତ୍‌ଥିତ ହୁଏ, ତାହା ଆଲୋଚନା କରି ବୈଜ୍ଞାନିକଗଣ ଆନୁମାନିକ ଗଣନାଦ୍ୱାରା ନିର୍ଣ୍ଣୟ କରିଅଛନ୍ତି ଯେ, ୨୦୫,୨୦,୦୦,୦୦,୦୦,୦୦,୦ ଦୁଇଶଙ୍ଖ ପଞ୍ଚଖର୍ବ ମହଣ ଜଳ ଆକାଶରୁ ବାଷ୍ପ ବିଗଳିତ ହୋଇ ପୃଥିବୀରେ ପଡ଼େ, ଏତଦ୍‌ବ୍ୟତୀତ କୋଟିକୋଟି ମହଣ ଜଳ ଶିଶିର, ତୁଷାର, କୁଜ୍ଝଟିକା, କରକା ପ୍ରଭୃତିରେ ପରିଣତ ହୋଇଥାଏ । ବିଶାଳ ଆକାଶର ବାୟୁରାଶିରେ ଜଳୀୟବାଷ୍ପ ରୂପେ ଯେତେ ଜଳ ଥାଏ, ସେଥିରୁ ସ୍ପଷ୍ଟ ପ୍ରତୀତ ହେଉଅଛି ଯେ, ପ୍ରତ୍ୟହ ପୃଥିବୀଠାରୁ ଏକ ନିଖର୍ବ ମହଣଜଳ ଅର୍ଥାତ୍ ପ୍ରତି ଘଣ୍ଟାରେ ଚାରି ଅଦ୍ଧ ଷୋଳ କୋଟି ଛଷଠି ଲକ୍ଷ ଛଷଠି ସହସ୍ର ଛଷଠି ମହଣ ଜଳ ବାଷ୍ପରାଶି ସହିତ ବାଷ୍ପାକାରରେ ମିଶ୍ରିତ ହୋଇଥାଏ । ସୂର୍ଯ୍ୟକିରଣ ଏହି ଜଳକର୍ଷଣର ପ୍ରଧାନ ହେତୁ । ବୃଷ୍ଟି, ତୁଷାର, ଶିଶିର, କରକା, କୁଜ୍ଝଟିକା ପ୍ରଭୃତି ଉତ୍ପତ୍ତିର ମୂଳ କାରଣ ଏଇ ଜଳୀୟବାଷ୍ପ ।

ଗଭୀରପାତ୍ର ଅପେକ୍ଷା ଅଗଭୀର ପାତ୍ରରେ ଅନାବୃତ ସ୍ଥାନରେ ଥିବା ଜଳରୁ ବାଷ୍ପ ଶୀଘ୍ର ଉତ୍ପନ୍ନ ହୁଏ । ପାତ୍ରର ଚତୁଃପାର୍ଶ୍ୱସ୍ଥିତ ବାୟୁ ଉଷ୍ଣ ଥିଲେ ଅଧିକ ବାଷ୍ପ ଜନ୍ମେ । ବାୟୁର ସାହାଯ୍ୟରେ ବାଷ୍ପ ଉତ୍ପନ୍ନ ହୁଏ । ଜଳ ଓ ବାଷ୍ପ ସମୋଷ୍ଣ ଥିଲେ, ଜଳ ଅପେକ୍ଷା ବାୟୁର ତାପାଂଶ ୧୫ ଗୁଣ ରହେ; ଶୀତଳ ଥିଲେ ବାଷ୍ପୋଦ୍ଗମରେ ଯଥେଷ୍ଟ ବ୍ୟାଘାତ ଘଟେ । ବାୟୁ ବାଷ୍ପରେ ପୂର୍ଣ୍ଣ ରୂପେ ସିକ୍ତ ହୋଇଥିଲେ ସୁଦ୍ଧା, ବାଷ୍ପୋହମରେ ବ୍ୟାଘାତ ଘଟେ ।

ଶୀତକାଳରେ ବାଷ୍ପ ଅତ୍ୟନ୍ତ ଶୁଷ୍କ ଥାଏ, ଏଣୁ ଏହି ସମୟରେ ପ୍ରଚୁର ବାଷ୍ପ ଉତ୍ପନ୍ନ ହୁଏ । ଗ୍ରୀଷ୍ମକାଳୀନ ବାୟୁର ଉଷ୍ଣତା ହିଁ ଅଧିକ ପରିମାଣରେ ବାଷ୍ପ ଉଦ୍ଗମର ହେତୁ; କିନ୍ତୁ ଏ ଋତୁର ବାଷ୍ପରାଶି ଶୀତ ଋତୁରେ ଉଥିତ ବାଷ୍ପରାଶିଦ୍ୱାରା ସିକ୍ତ ଥାଏ । ସୁତରାଂ ବାୟୁରେ ଅଧିକ ବାଷ୍ପ ମିଶିପାରେ ନାହିଁ । ଏ ହେତୁ ଶୀତଋତୁରେ ଜଳାଶୟାଦିର ଜଳ ଯେତେ ପରିମାଣରେ ଶୁଷ୍କ ହୁଏ ଗ୍ରୀଷ୍ମ ଋତୁରେ ତେତେ ହୁଏ ନାହିଁ । ଏହିପରି ଶୀତ ଓ ଗ୍ରୀଷ୍ମ ଋତୁରେ ଜାତ ହୋଇଥିବା ବାଷ୍ପ ବର୍ଷାଋତୁରେ ବୃଷ୍ଟି ରୂପେ ପତିତ ହୁଏ । ଏହି ଜଳୀୟ ବାଷ୍ପ ଆକାଶରେ କୁଜ୍ଝଟିକା, ମେଘ, ଶିଶିର ଓ କରକା ପ୍ରଭୃତି ରୂପେ ଥାଏ ।

## ପ୍ରାକୃତିକ ବିଜ୍ଞାନ ଓ ବାୟୁ

ଆମେ ବାୟୁ ସମ୍ବନ୍ଧେ ବିଚାର କରିବାକୁ ଯାଇ ରାସାୟନିକ ଓ ଶାରୀର ବିଜ୍ଞାନର ଆଲୋଚନା କରିଅଛୁଁ । ପ୍ରାକୃତିକ ବିଜ୍ଞାନରେ ବାୟୁ ବିଷୟ ଆଲୋଚନା କରିବା ପାଇଁ ଯଥେଷ୍ଟ ଉପାଦାନ ରହିଅଛି । ସେହି ସକଳ ବିଷୟ ଅତୀବ ଜଟିଳ ଓ ଉଚ୍ଚ ବିଜ୍ଞାନଜ୍ଞାନସାପେକ୍ଷ । ବିଶେଷତଃ ଏହାର ଅନେକାଂଶ ସାଧାରଣ ପାଠକଙ୍କ ହୃଦୟଙ୍ଗମ ହେବ କି ନା ସନ୍ଦେହ, ଏ ହେତୁ ସଂକ୍ଷେପରେଏହି ବିଷୟର ଅବତାରଣା କରୁଅଛୁଁ ।

ଏଥିପୂର୍ବେ ବାୟୁମଣ୍ଡଳର ସୀମା ସମ୍ବନ୍ଧେ ଉଲ୍ଲେଖ କରିଅଛୁଁ । ଉକ୍ତ ବିଷୟରେ ସୂକ୍ଷ୍ମ ଚିନ୍ତାଶୀଳ ବୈଜ୍ଞାନିକଙ୍କ ସିଦ୍ଧାନ୍ତ ଏହି ଯେ, ସୂର୍ଯ୍ୟ ଚନ୍ଦ୍ର ଓ ବହୁ ଦୂରବର୍ତ୍ତୀ ନକ୍ଷତ୍ରମଣ୍ଡଳରେ ମଧ୍ୟ ବାୟବୀୟ ପଦାର୍ଥର ଗତିବିଧି ବିଦ୍ୟମାନ । କିନ୍ତୁ ଆମ୍ଭର ଉପଭୋଗ୍ୟ ବାୟୁମଣ୍ଡଳର ଉପାଦାନଠାରୁ ଅନ୍ୟାନ୍ୟ ଗ୍ରହାଦିସ୍ଥ ବାୟୁମଣ୍ଡଳର ଉପାଦାନ ପୃଥକ୍ । ଆମ୍ଭମାନଙ୍କର ସମ୍ଭୋଗ୍ୟ ବାୟୁମଣ୍ଡଳ ଏକଶତ ମାଇଲରୁ ଅଧିକ ଉର୍ଦ୍ଧ୍ୱରେ ବ୍ୟାପିଥିବା ପ୍ରମାଣ ଯଥେଷ୍ଟ ମିଳେ । ସୁଦୂରସ୍ଥ ନକ୍ଷତ୍ରାଲୋକର ପ୍ରତିଫଳନ, ଅରୁଣାଲୋକ, ପ୍ରଦୋଷାଲୋକ ଓ ଉଲ୍କାପାତର ଜାଜ୍ଜ୍ୱଲ୍ୟମାନ ଆଲୋକ ଦେଖି ବୈଜ୍ଞାନିକ ତଥା ଜ୍ୟୋତିର୍ବିଦଗଣ ସ୍ଥିର କରିଅଛନ୍ତି ଯେ, ଉର୍ଦ୍ଧ୍ୱରେ ଶତାଧିକ ମାଇଲ ଯାଏ ଏହି ବାୟୁମଣ୍ଡଳ ବ୍ୟାପି ରହିଅଛି । ଏହାର ଉପରେ ମଧ୍ୟ ଅତି ସୂକ୍ଷ୍ମ ବାୟୁମଣ୍ଡଳ ରହିଅଛି । ଏ ସମ୍ବନ୍ଧେ ପ୍ରଫେସର ଆର.ଏସ୍. ଇୟୁୟାର୍ଡ଼ ୧୯୦୦ ଖ୍ରୀଷ୍ଟାବ୍ଦ ଜାନୁଆରୀ ମାସର 'ସାଇନ୍ସ' ନାମକ ମାସିକ ପତ୍ରିକାରେ କେତେକ ବୈଜ୍ଞାନିକ ଆଭାସ ଦେଇଅଛନ୍ତି ।

ବାୟୁର ଗୁରୁତ୍ୱ ଅଛି, କିନ୍ତୁ ଉକ୍ତ ଗୁରୁତ୍ୱ ଭୂପୃଷ୍ଠରେ ଅନୁଭୂତ ହୁଏନାହିଁ; ଏହା ସୂକ୍ଷ୍ମ ସ୍ଥିତିସାମ୍ୟେ (Dynamical equalibrium) ଅବସ୍ଥିତ ।

## ବାୟୁ ମଣ୍ଡଳର ଧର୍ମ

ଇତିପୂର୍ବେ ବାୟୁର ରାସାୟନିକ ତତ୍ତ୍ୱ ସମ୍ବନ୍ଧେ ବିଚାର କରିଅଛୁଁ, ସମ୍ପ୍ରତି ବାୟୁମଣ୍ଡଳର ଧର୍ମ ବିଷୟରେ ଦୁଇଚାରି ପଙ୍କ୍ତି ଆଲୋଚନା କରାଯିବ ।

**(୧)ବାୟୁର ପରିଚାଳିକା ଶକ୍ତି** (Conductive power) ଶୁଷ୍କବାୟୁର ପରିଚାଳିକା ଶକ୍ତି ଅତି ଅଳ୍ପ, ଆର୍ଦ୍ର ବାୟୁର ପରିଚାଳିକା ଶକ୍ତି ଅପେକ୍ଷାକୃତ ଅଧିକ ।

**(୨) ତେଜଃ ପ୍ରେରଣା ଶକ୍ତି** (Diathermance) :- ବିକିରଣୋନ୍ମୁଖ ତେଜର ପରିଚାଳନ କ୍ରିୟା (Transmission of radiant heat) ବାୟୁରେ ଯଥେଷ୍ଟ ପରିଲକ୍ଷିତ ହୁଏ । ତାପ ତରଙ୍ଗ ଯେତେ ଦୀର୍ଘ ହୁଏ ତାହାର ଗତିଶକ୍ତି ବାୟୁରାଶିରେ ଭେଦକରି ତେତେ ଅଧିକ ବୃଦ୍ଧି ପାଏ । କିନ୍ତୁ କୌଣସି କୌଣସି ତରଙ୍ଗସ୍ରୋତ ବାୟୁରାଶିଦ୍ୱାରା ପରିଶୁଷ୍କ ହୋଇଯାଏ । ଏହିପରି ଶୋଷଣ ଫଳରେ କୌଣସି ଦୀର୍ଘତାପତରଙ୍ଗ ପ୍ରବାହ (Wave length) ଜଳୀୟବାଷ୍ପଦ୍ୱାରା କୌଣସିଟି କାର୍ବାନିକ୍ ଏସିଡ୍‌ଦ୍ୱାରା ବିଚ୍ଛିନ୍ନ ହୋଇଯାଏ । ସୁତରାଂ ସୁଦୀର୍ଘ ତାପତରଙ୍ଗପ୍ରବାହ ଅପେକ୍ଷା କ୍ଷୁଦ୍ର କ୍ଷୁଦ୍ର ତରଙ୍ଗ ପ୍ରବାହଗୁଡ଼ିକ ଅଧିକ ସଂଖ୍ୟାରେ ବାୟୁମଣ୍ଡଳ ଭେଦକରି ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହୋଇ ଭୂପୃଷ୍ଠରେ ପତିତ ହୋଇଥାଏ ।

ଧୂଳି, ମେଘ ଓ କୁହୁଡ଼ି ପରି ବାଷ୍ପରାଶି ବାୟୁମଣ୍ଡଳରେ ତାପ ପ୍ରେରଣା ଶକ୍ତିର ଅତୀବ ପ୍ରତିବନ୍ଧକ । ବାୟୁମଣ୍ଡଳଦ୍ୱାରା ସୂର୍ଯ୍ୟଙ୍କର ପ୍ରାୟ ଅର୍ଦ୍ଧେକ ତାପ ଶୋଷିତ ହୋଇଥାଏ; ଅବଶିଷ୍ଟ ଅର୍ଦ୍ଧେକ ବକ୍ରଭାବରେ ଭୂପୃଷ୍ଠରେ ପତିତ ହୋଇପାରେ; କିନ୍ତୁ ସେଥିରେ ମଧ୍ୟ ପ୍ରଚୁର ପ୍ରତିବନ୍ଧକ ସର୍ବଦା ରହିଅଛି ।

**(୩) ଆପେକ୍ଷିକ ତାପ** (Specific heart) ବାୟୁର ତାପଧାରିଣୀ ଶକ୍ତି ଅପେକ୍ଷିକ । ନିୟତ ପ୍ରଚାପରେ ଅଥବା କୌଣସି ନିତ୍ୟ ଆୟତନସ୍ଥ ପ୍ରଚାପରେ ସ୍ଥିତ ବାୟୁରାଶି ତାପପ୍ରାପ୍ତ ହୋଇ ଯେଉଁ ପରିମାଣରେ ଚତୁର୍ଦ୍ଦିଗରେ ବ୍ୟାପ୍ତହୁଏ, ସେହି ପରିମାଣେ ତାହାର ତାପହାରିଣୀ ଶକ୍ତି ବୃଦ୍ଧି ପାଇଥାଏ; ଏଥି ସମ୍ବନ୍ଧେ ଗଣିତଦ୍ୱାରା ସୂକ୍ଷ୍ମ ନିୟମ ପ୍ରଦର୍ଶିତ ହୋଇଅଛି ।

**(୪) ବିକିରଣଶକ୍ତି** (Radiating power) ଶୁଷ୍କ ବାୟୁର ବିକିରଣ ଶକ୍ତି ଅତି ଅଳ୍ପ । ଏହାର ପରିମାଣ ସହଜେ ସ୍ଥିର କରାଯାଇ ନପାରେ । (Spectroscope) ଓ (Bolometer) ଯନ୍ତ୍ର ଏଥିପାଇଁ ଆବିଷ୍କୃତ ହୋଇଅଛି । ୧୮୬୫ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକ ପଣ୍ଡିତ ପରାର୍ ଟ୍ରେବାର୍ଟ, ହାଚିନ୍‌ସ ଓ ପ୍ରଫେସର ଏସ୍.ଡବଲ୍ୟୁ. ଭେରୀ ବହୁ ପ୍ରୟାସରେ ଏହା ସ୍ଥିର କରିଅଛନ୍ତି ।

**(୫) ଘନତ୍ୱ** (Density) ବାୟୁର ଘନତ୍ୱ ୭୬୦ ମିଲିମିଟର ଅବା ଏକ ଘନଫୁଟର ଓଜନ. ୦୮୦୭୧ ମହଣ ।

**(୬) ବିସ୍ତୃତି** (Expansion) ତାପଦ୍ୱାରା ବାୟୁ ବିସ୍ତୃତ ହୁଏ । ଶୁଷ୍କ ବାୟୁ ଏବଂ ଜଳୀୟବାଷ୍ପର ବିସ୍ତୃତି ପ୍ରାୟ ସମାନ ।

**(୭) ସ୍ଥିତିସ୍ଥାପକତା** (Elasticity) ଯେଉଁ ପ୍ରଚାପଦ୍ୱାରା ବାୟୁ ଯେତେ ପରିମାଣରେ ଅବରୁଦ୍ଧ ହୁଏ ତଦନୁପାତରେ ବାୟୁ ସଙ୍କୋଚିତ ହୋଇଥାଏ । ଶୀତତାପର ଅବସ୍ଥା ଏବଂ ପ୍ରକୃତ ବାଷ୍ପର ଆୟତନ ପ୍ରଭୃତିଦ୍ୱାରା ସ୍ଥିତିସ୍ଥାପକତାର ପରିମାଣ ସ୍ଥିରୀକୃତ ହୋଇଥାଏ । ଏସବୁ ଗଣିତ ସିଦ୍ଧାନ୍ତଦ୍ୱାରା ନିରୂପଣ କରାଯାଏ ।

**(୮) ଅଣୁପ୍ରସାରଣ** (Diffusion) ବାୟୁ ପ୍ରବାହର ତୁଳନାରେ ବାୟୁ ମଣ୍ଡଳରେ ଜଳୀୟବାଷ୍ପର ପ୍ରସାରଣ ସହଜ ବ୍ୟାପାର ନୁହେଁ । ବାଷ୍ପ ଉଦ୍‌ଗମ ସମୟରୁ ବାୟୁରେ ଜଳୀୟବାଷ୍ପର ଅଣୁପ୍ରସାରଣକ୍ରିୟା ଆରମ୍ଭ ହୁଏ । ଶୀତାତପର ଅବସ୍ଥାନୁଯାୟୀ ଅଣୁପ୍ରସାରଣ କ୍ରିୟା ନ୍ୟୂନାଧିକ ହୁଏ ।

**(୯) ସଂଘର୍ଷଶକ୍ତି** (Viscosity) ବାୟୁମଣ୍ଡଳର ଗତିକ୍ରିୟା ଆରମ୍ଭ ହେଲେ ତାହାର ପ୍ରତ୍ୟେକ ସ୍ତର ପାର୍ଶ୍ୱବର୍ତ୍ତୀ ଦ୍ରୁତଗତିଶୀଳ ସ୍ତରର ଗତିର ପ୍ରତିବନ୍ଧକ ହୋଇଉଠେ । ଏହି ପ୍ରତିବନ୍ଧକତା ଗତିଶୀଳ ବାୟୁର ଆଣବିକ ବା ଆଭ୍ୟନ୍ତରୀଣ ସଂଘର୍ଷଣ ବ୍ୟତୀତ ଅନ୍ୟ କିଛି ନୁହେଁ । ତାପର ପ୍ରଭାବରେ ଭିନ୍ନ ଗତିର ଉଦ୍ରେକ ହୁଏ ନାହିଁ; ସୁତରାଂ ବାୟୁରାଶିର ଉତ୍ତାପ ତାପମାନ ଶୂନ୍ୟ ଡିଗ୍ରୀରୁ ନଇଁପଡ଼ିଲେ ବାୟୁରେ ଏ ଧର୍ମ ଆଦୌ ପରିଲକ୍ଷିତ ହୁଏନାହିଁ ।

ବାୟୁର ସଂଘର୍ଷଣ ଏହାର ଆଭ୍ୟନ୍ତରୀଣ ଗତିର ପ୍ରତିବନ୍ଧକତାର (Resistance) ନାମାନ୍ତର ମାତ୍ର । ନାନାବିଧ କାରଣରୁ ବାୟୁରାଶିରେ ଏହି ଆଭ୍ୟନ୍ତରୀଣ ପ୍ରତିବନ୍ଧକତା ଘଟିଥାଏ । ବାୟୁରାଶି ଆନ୍ଦୋଳିତ ହେଲେ ଏହାର ସ୍ତରେ ସ୍ତରେ ଯେ ସଂଘର୍ଷ ଉପସ୍ଥିତ ହୁଏ ସେହି ସଂଘର୍ଷ ନିମନ୍ତେ ଏହାର ଯେ ଗତି ଶକ୍ତିର କ୍ଷତି (Convective loss of Energy) ହୁଏ ତାହା ସଂଘର୍ଷଣୀ ଧର୍ମର ପରିଚାୟକ ।

**(୧୦) ଗୁରୁତ୍ୱ** (Gravity) ବାୟୁମଣ୍ଡଳର ଗୁରୁତ୍ୱ ବା ଭାର ଗୁରୁତ୍ୱଧର୍ମ ଉପରେ ନିର୍ଭର କରେ । ଗୁରୁତ୍ୱ ପ୍ରତ୍ୟେକ ପଦାର୍ଥକୁ ନିମ୍ନାଭିମୁଖରେ ଚାପ ଦେଇଥାଏ । ଏହି ସ୍ଥିତିସ୍ଥାପକ ଗୁଣବିଶିଷ୍ଟ ସଙ୍କୋଚନଶୀଳତା ନିମନ୍ତେ ଗୁରୁତ୍ୱର ପ୍ରତାପ ଚତୁର୍ଦ୍ଦିଗରେ ପ୍ରଭାବ ବିସ୍ତାର କରେ ।

**ବାୟୁମଣ୍ଡଳର ଶୈତୋଷ୍ଣମାନର ବିବରଣ-** ଏ ସମ୍ବନ୍ଧେ ବୁଚାନ୍ (Buchan) ପ୍ରଭୃତି ପାଶ୍ଚାତ୍ୟ ବୈଜ୍ଞାନିକଗଣ ବହୁ ଗବେଷଣାପୂର୍ବକ ଜଗତର ପ୍ରତ୍ୟେକ ଭୂଖଣ୍ଡର ବିବରଣ ସଂଗ୍ରହ କରି ମାନଚିତ୍ର ସହ ସେସକଳ ପ୍ରକାଶ କରିଅଛନ୍ତି । ବ୍ୟୋମଯାନ ସାହାଯ୍ୟରେ ଏ ସକଳ ବିଷୟ ନିରୂପିତ ହୋଇଅଛି ।

ଜଳୀୟବାଷ୍ପ ପ୍ରଚାର ସମ୍ବନ୍ଧେ ମଧ୍ୟଏହିପରି ନାନାସ୍ଥାନର ତାଲିକା ଓ ମାନଚିତ୍ରାଦି ସହିତ ବିବରଣୀ ପ୍ରକାଶିତ ହୋଇଅଛି । ବ୍ୟାରୋମିଟାର ଯନ୍ତ୍ର ସାହାଯ୍ୟରେ ଜଗତର ବିଭିନ୍ନ ଅଂଶର ବାୟୁର ଗୁରୁତ୍ୱ ସମ୍ବନ୍ଧେ ବହୁଳ, ବିବରଣ ସଂଗୃହୀତ ହୋଇଅଛି । ଏଥିଦ୍ୱାରା ବୃଷ୍ଟିପାତ, ଝଡ଼ ଏବଂ ତଦ୍‌ବୈପରୀତ ଆକାଶର ନିର୍ମଳତା ପ୍ରଭୃତି ବିଷୟ ନିରୂପଣର ସୁବିଧା ହୋଇଅଛି ।

**ବାୟୁର ପ୍ରଚାପ-** ବାୟୁମଣ୍ଡଳର ପ୍ରଚପେ ଚାରିଦିଗରେ ସମଭାବରେ ରହିଛି । ଊର୍ଦ୍ଧ୍ୱରୁ ଯେପରି ବାୟୁର ପ୍ରଚାପ ପଡ଼ିଅଛି, ନିମ୍ନରୁ ମଧ୍ୟ ତାହାର ଚାପ ସେପରି ଉପରକୁ ଉଠିଅଛି । ନିମ୍ନମୁଖ ଚାପକୁ ଅବକ୍ଷେପକ ଓ ଊର୍ଦ୍ଧ୍ୱମୁଖ ଚାପକୁ ଉତ୍କ୍ଷେପକ କୁହାଯାଏ । ଏହି ଚାପର ଅସ୍ତିତ୍ୱ ପରୀକ୍ଷାଦ୍ୱାରା ସ୍ଥିର କରାଯାଇଅଛି ଯେ, ବାୟୁର ଚାପ ସମସଂସ୍ଥିତ ଭାବେ ବିଦ୍ୟମାନ ।

**ବାୟୁ ତରଳୀକରଣ-** ବାୟୁକୁ ତରଳାଇବା ନିମନ୍ତେ ବହୁକାଳରୁ ଚେଷ୍ଟା କରାଯାଉଅଛି । କିନ୍ତୁ ଅକ୍ସିଜେନ୍, ନାଇଟ୍ରୋଜନ୍ ଓ ହାଇଡ୍ରୋଜେନ୍‌କୁ ପ୍ରାଚୀନ ପାଶ୍ଚାତ୍ୟ ବୈଜ୍ଞାନିକଗଣ କୌଣସି ପ୍ରକାରେ ଏହି ଅବସ୍ଥାକୁ ଆଣିପାରି ନଥିଲେ । ଏଥିଲାଗି ଏହାକୁ ନିତ୍ୟ ବାଷ୍ପ ବୋଲାଯାଏ । ସୁବିଖ୍ୟାତ ବୈଜ୍ଞାନିକ ଫାରାଡ଼େ (Faraday) ପ୍ରମାଣିତ କରନ୍ତି ଯେ, ବାୟୁମଣ୍ଡଳର ୨୭ ପରିମାଣ ପ୍ରଚାପରେଏବଂ ୧୧୦ ଡିଗ୍ରୀ ତାପମାନରେ ସୁଦ୍ଧା ଏହି ତିନୋଟି ବାଷ୍ପୀୟ ପଦାର୍ଥ ତରଳେ ନାହିଁ । ବୈଜ୍ଞାନିକ ପଣ୍ଡିତ ନ୍ୟାଟାରାର (Netterer) ବାୟୁମଣ୍ଡଳର ୩୦୦୦ ପରିମିତ ପ୍ରଚାପରେ ମଧ୍ୟ କୃତକାର୍ଯ୍ୟ ହୋଇପାରି ନାହାନ୍ତି । ବହୁ ବିଚାର ପରେ Vonwnoblewsky ଓ Ouzewosky ଅନେକ ଉପାଦାନ ଗ୍ୟାସଦ୍ୱାରା ତରଳାଇ ଅଛନ୍ତି । ତରଳୀକୃତ ବାୟୁ ଜଳବତ୍ ତରଳ ଓ ସ୍ୱଚ୍ଛ ଏବଂ ଏହାକୁ ଜଳପରି ଏକ ପାତ୍ରରୁ ଅନ୍ୟ ପାତ୍ରକୁ ଢଳାଯାଇ ପାରେ । ଏହା ବରଫଠାରୁ ୦.୪୪° ସେଲ୍‌ସିଅସ୍ ପରିମାଣରେ ଅଧିକତର ଶୀତଳ । ଏହା ଏତେ ଶୀତଳ ଯେ, ବରଫରେ ଥିବା ଉଷ୍ଣତାଟିକକ ମଧ୍ୟ ତରଳବାୟୁ ସହ୍ୟ କରିପାରେ ନାହିଁ । ଏହି ବାୟୁ ବରଫରେ ସଂରକ୍ଷିତ ହେଲେ ମଧ୍ୟ ବିନ୍ଦୁ ବିନ୍ଦୁ ହୋଇ ଦ୍ରବିଯାଏ ।

ଏଥିରେ ଆଲ୍‌କହଲ୍ ପ୍ରଭୃତି ତରଳ ପଦାର୍ଥ କୌଣସି ପ୍ରକାରେ କଠିନ କର ହେଉ ନଥିଲା । କିନ୍ତୁ ବର୍ତ୍ତମାନ ଏହି ତରଳ ବାୟୁର ସ୍ପର୍ଶରେ ତାହା କରି ହେଉଅଛି । ଏହାର ଶୈତ୍ୟ ମନୁଷ୍ୟ ପକ୍ଷେ ନିତାନ୍ତ ଅସହ୍ୟ । ତରଳବାୟୁ ସଂସ୍ପୃଷ୍ଟ ସ୍ଥାନ ଅଗ୍ନିବତ୍ ଝଲସି ଉଠେ । ବାୟୁର ତରଳୀକରଣ କ୍ରିୟା ଆଧୁନିକ ବୈଜ୍ଞାନିକଙ୍କର ଅଦ୍ଭୁତ ଆବିଷ୍କାର । ପୂର୍ବେ ବାୟୁ ତରଳୀକରଣ କାର୍ଯ୍ୟରେ ଅନେକ ବ୍ୟୟ ହେଉଥିଲା, ସମ୍ପ୍ରତି ତାହା ଅଳ୍ପ ବ୍ୟୟରେ ସାଧିତ ହେଉଅଛି । ଏଥିଦ୍ୱାରା ମାନବର ଅନେକ ପ୍ରୟୋଜନୀୟ କାର୍ଯ୍ୟ ସାଧିତ ହେବ ବୋଲି ଆଶା କରାଯାଏ ।

**ବାୟୁର ଧୂଳି :** ବାୟୁମଣ୍ଡଳର ଅନେକ ଉଚ୍ଚ ପ୍ରଦେଶ ପର୍ଯ୍ୟନ୍ତ ଧୂଳିରାଶି ପରିଲକ୍ଷିତ ହୁଏ । ଆଧୁନିକ ବୈଜ୍ଞାନିଗଣ ପରୀକ୍ଷାଦ୍ୱାରା ସ୍ଥିର କରିଛନ୍ତି ଯେ, ବାୟୁରେ ଧୂଳିକଣାସମୂହ ଥିବା ଯୋଗୁଁ ସେଥିରେ ଜଳୀୟବାଷ୍ପ ସଞ୍ଚିତ ହୋଇ ମେଘ ଉତ୍ପନ୍ନ ହୁଏ । ବାୟୁରାଶିରେ ଭାସମାନ

ଧୂଳିକଣା ହିଁ ଜଳୀୟବାଷ୍ପବିନ୍ଦୁର ବିଶ୍ରାମାଧାର । ଏହି ବିଶ୍ରାମାଧାରା ନଥିଲେ ମେଘୋତ୍ପତ୍ତି ଅସମ୍ଭବ ହୋଇ ପଡ଼ନ୍ତା । ବୃଷ୍ଟି ସଙ୍ଗେ ସଙ୍ଗେ ଗଗନମଣ୍ଡଳରୁ ଓ ଧୂଳିକଣା ତଳେ ଜମିଯାଏ । ଏହେତୁ ବାୟୁରାଶି ଧୂଳି ନିର୍ମୁକ୍ତ ହୋଇ ଅତି ନିର୍ମଳ ହୋଇଯାଏ ।

**ବାୟୁ ଓ ଶବ୍ଦ ବିଜ୍ଞାନ (Acoustics)**: ଶବ୍ଦର ଗତି ବାୟୁଦ୍ୱାରା ସାଧିତ ହୁଏ; ବାୟୁ ଶବ୍ଦର ପରିଚାଳକ । ବାୟୁ ନଥିଲେଆମ୍ଭେମାନେ କୌଣସି ଶବ୍ଦ ଶୁଣିପାରନ୍ତେ ନାହିଁ । ୧୭୦୫ ଖ୍ରୀଷ୍ଟାବ୍ଦରେ ବୈଜ୍ଞାନିକ ପଣ୍ଡିତ ହାକ୍‌ସାବ୍ (Hawksbee) କେତେକ ଯନ୍ତ୍ରର ସାହାଯ୍ୟରେ ବାୟୁ ସହିତ ଶବ୍ଦର ପରୀକ୍ଷା କରି ଶେଷ ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି । ଏହି ଯନ୍ତ୍ର ସହିତ ଗୋଟିଏ ଘଣ୍ଟା ଘଟିକାଯନ୍ତ୍ର ଘଣ୍ଟାପରି ନ୍ୟସ୍ତ ଥିଲା; ଏ ଯନ୍ତ୍ର ସହିତ ଗୋଟିଏ ଧାତବ ନଳା ସଂଯୁକ୍ତ ଥାଏ । ସେ ନଳା କାନରେ ବାହ୍ୟ ବାୟୁ ପ୍ରବେଶ ନ କରିବା ଭଳି ଯୁକ୍ତ କରାଯାଏ । ତାପରେ ବାୟୁ ନିଷ୍କାସନ ଯନ୍ତ୍ରଦ୍ୱାରା ବାୟୁ ନିଷ୍କାସିତ କରାଯାଇ, ସେହି ଘଣ୍ଟାରେ ଶବ୍ଦ କଲେ ଆଦୌ ଶବ୍ଦ ଶୁଣାଯାଏ ନାହିଁ ।

ଯେତେ ଉର୍ଦ୍ଧ୍ୱକୁ ଗମନ କରାଯାଏ ବାୟୁର ପ୍ରଚାପ ତେତେ ଲଘୁତର ହୋଇପଡ଼େ; ପ୍ରଚାପର ଲଘୁତା ଅନୁପାତରେ ଶବ୍ଦ ସ୍ଫୁଟତା ହ୍ରାସ ହୋଇଯାଏ ।

ଯନ୍ତ୍ର ବିଶେଷରେ ସଂରୁଦ୍ଧ ବାୟୁର କମ୍ପନଦ୍ୱାରା ନାନା ପ୍ରକାର ବାଦ୍ୟଯନ୍ତ୍ର ଆବିଷ୍କାର ହୁଏ । ଏହିପରି ବଂଶୀ, ବେହେଲା, ବୀଣା ପ୍ରଭୃତି ବହୁବିଧ ଯନ୍ତ୍ରର ସୃଷ୍ଟି ହୋଇଅଛି । ଅଧୁନା ଗ୍ୟାସ ହାର୍ମନିୟମ ନାମକ ଗୋଟିଏ ଯନ୍ତ୍ର ଆବିଷ୍କୃତ ହୋଇଅଛି । ହାଇଡ୍ରୋଜେନ୍ ଗ୍ୟାସ୍ ଏହି ଯନ୍ତ୍ରର ବାଦକ । ଯନ୍ତ୍ରଟି ଏପରି ନିର୍ମିତ ହୋଇଅଛି ଯେ, ଏହାର ଗ୍ୟାସ୍ ନଳିକାରେ ଗ୍ୟାସ୍ ପ୍ରଜ୍ୱଳିତ ହେଲେ ଏଥିରୁ ଯେଉଁ ବାୟୁ ସ୍ରୋତ ପ୍ରବାହିତ ହୁଏ, ସେଥିରୁ ଅଦ୍ଭୁତ ଗୀତଧ୍ୱନି ଶୁଣାଯାଏ; ଏହାକୁ ଇଂରାଜୀରେ "Singing flames" କୁହାଯାଏ । ଏହାଛଡ଼ା ଅନ୍ୟାନ୍ୟ ଅନେକ କାର୍ଯ୍ୟ ବାୟୁଦ୍ୱାରା ସାଧିତ ହେଉଅଛି ।

**ବାୟୁର ଅସ୍ତିତ୍ୱ ଅନୁଭବ ଓ ପ୍ରଭାବ** : ଆମ୍ଭେମାନେ ବୁଝିପାରୁଅଛୁ ଯେ, ବାୟୁର ଅସ୍ତିତ୍ୱ ପ୍ରତ୍ୟକ୍ଷ ଜ୍ଞାନର ବିଷୟୀଭୂତ ଅଟେ । ସରୋବରରେ ମୃଦୁ ବୀଚିମାଳା, ସମୁଦ୍ରର ଉତ୍ତାଳ ତରଙ୍ଗ, କୁସୁମକାନନର ସୁକୋମଳ ସଲାସ୍ୟ ବଲ୍ଲୀର ସ୍ନିଗ୍ଧ ଆହ୍ୱାନ, ପ୍ରଳୟଙ୍କର ପ୍ରଭଞ୍ଜନର ଭୀକର ସୃଷ୍ଟି ସଂହାରକ ଆସ୍ଫାଳନବଶତଃ ସର୍ବତ୍ର ବାୟୁର ଅସ୍ତିତ୍ୱ ପରିଲକ୍ଷିତ ହୁଏ । ଅନ୍ୟାନ୍ୟ ଜଡ଼ ପଦାର୍ଥ ପରି ବାୟୁ ଲଘୁ ହେଲେ ମଧ୍ୟ ତାହାର ପ୍ରତିରୋଧିକା ଶକ୍ତି ଅଛି । ବାୟୁ ଯେପରି ଅନନ୍ତ ଶକ୍ତିଶାଳୀ ତାହାର ଗୁଣ ମଧ୍ୟ ତଦ୍ରୂପ । ଏହା ମାନବର ବିଜ୍ଞାନର ଅତୀତ ।

**ବାୟୁର ପ୍ରବାହ** : ବାୟୁରେ ତରଳ ପଦାର୍ଥର ସକଳ ପ୍ରକାର ଧର୍ମ ବିଦ୍ୟମାନ; ଏଥିଲାଗି ଏହା ତରଳ ପଦାର୍ଥ ରୂପେ ଗଣ୍ୟ ହୁଏ । ଯେଉଁ ନିୟମରେ ତରଳ ପଦାର୍ଥର ଗତି ନିଷ୍ପନ୍ନ ହୁଏ, ବାୟୁ ମଧ୍ୟ ଅନେକାଂଶରେ ସେହି ନିୟମର ଅଧୀନ; ପ୍ରଭେଦ ଏତିକି ଯେ, ଅନ୍ୟାନ୍ୟ ତରଳ

ପଦାର୍ଥରେ ଅନ୍ତରାକର୍ଷଣ ଅପେକ୍ଷାକୃତ ଦୃଢ଼, କିନ୍ତୁ ବାୟୁରେ ସେହି ଅନ୍ତରାକର୍ଷଣ ଶକ୍ତି ଅତ୍ୟନ୍ତ ଲଘୁ । ଏହି କାରଣରୁ ବାୟୁ ଅନ୍ୟ ତରଳ ପଦାର୍ଥ ଅପେକ୍ଷା ସହଜେ ସ୍ଫୀତ ହୋଇଥାଏ ।

ତରଳ ଦ୍ରବ୍ୟର ସାଧାରଣଧର୍ମ ସର୍ବତ୍ର ସମୋଚ୍ଚତା ସମ୍ପାଦନ କରିବା । କୌଣସି କାରଣରୁ ଏଥିରେ ବିଘ୍ନ ଘଟିଲେ ସ୍ୱାଭାବିକ ଧର୍ମବଶତଃ ଆନ୍ଦୋଳିତ ହୋଇ ପୁନର୍ବାର ସମୋଚ୍ଚତା କରଣେ ଯତ୍ନଶୀଳ ହୁଏ । ବାୟୁ ଶୀତରେ ସଙ୍କୋଚ ଗ୍ରୀଷ୍ମରେ ସ୍ଫୀତ ବା ବର୍ଦ୍ଧିତ ହୁଏ ।

ଧାତବ ଦୃଢ଼ ପଦାର୍ଥ ଅପେକ୍ଷା ତରଳ ପଦାର୍ଥ ଉଷ୍ଣତାଦ୍ୱାରା ସହଜେ ବୃଦ୍ଧି ପାଇବା ଦେଖାଯାଏ । ବାୟୁ ତରଳ ପଦାର୍ଥ ମଧ୍ୟରେ ଅତି ସୂକ୍ଷ୍ମ; ଏ ହେତୁ ଗ୍ରୀଷ୍ମରେ ଅତିଶୟ ସ୍ଫୀତ ହୁଏ ।

ବାୟୁ ସ୍ଥିର ଭାବରେ ପୃଥିବୀର ସକଳ ସ୍ଥାନରେ ବ୍ୟାପି ରହିଅଛି । ପ୍ରଖର ସୂର୍ଯ୍ୟ ରଶ୍ମି ଅବା ଦାବାନଳରେ ବାୟୁ ଯେତେବେଳେ ସମଧିକ ଉତ୍ତପ୍ତହୋଇଯାଏ, ତେତେବେଳେ ପାର୍ଶ୍ୱବର୍ତ୍ତୀ ବାୟୁ ଅପେକ୍ଷାକୃତ ଲଘୁ ହୋଇ ଉପରକୁ ଉଠେ । ଏହି ଊର୍ଦ୍ଧ୍ୱଗତ ତପ୍ତ ବାୟୁର ସ୍ଥାନ ପୂରଣ ଲାଗି ଅପର ଦିଗସ୍ଥ ସ୍ଥୂଳ ଶୀତଳ ବାୟୁ ଧାବିତ ହୁଏ । ଏହିପରି ବାୟୁର ନିରନ୍ତର ସଂଚାଳନଦ୍ୱାରା ମନ୍ଦବାୟୁ, ପ୍ରବଳ ବାୟୁ, ଘୂର୍ଣ୍ଣିବାୟୁ ଓ ଝଟିକା ପ୍ରଭୃତି ଉତ୍ପନ୍ନ ହୁଏ ।

ସାଧାରଣତଃ ବାୟୁର ଗତି ଘଣ୍ଟାକେ ଅର୍ଦ୍ଧକ୍ରୋଶ; ଏହା ଦୁର୍ନିଗ୍ରହ । ଯେଉଁ ବାୟୁର ଗତି ଘଣ୍ଟାକେ ୨ ବା ଅଢ଼େଇ କ୍ରୋଶ ତାହାକୁ ମନ୍ଦବାୟୁ କୁହାଯାଏ । ଚତୁରସ୍ର ଏକହସ୍ତ ପରିମିତ ସ୍ଥାନ ଏହି ଗତିଶୀଳ ଆହତ ବାୟୁର ଓଜନ ଏକ ଛଟାଙ୍କ । ଘଣ୍ଟାକେ ୫, ୬ କ୍ରୋଶ ଗତି କରିବା ବାୟୁକୁ ତେଜୋବାୟୁ କହି । ଏହି ବାୟୁ ଅଧିକ ତେଜଯୁକ୍ତ ହେଲେ ଏହାର ବେଗ ଘଣ୍ଟାକେ ୧୦ ବା ୧୫ କ୍ରୋଶ ହୁଏ । ସେତେବେଳେ ତାହାର ପ୍ରମିଣାଣ ପ୍ରତି ଚତୁରସ୍ର ହସ୍ତରେଣୀ ବା ୪ ସେର ମାତ୍ର । ସାମାନ୍ୟ ଝଡ଼ରେ ବାୟୁର ବେଗ ଘଣ୍ଟାକେ ୨୫ ବା ୩୦ କ୍ରୋଶ ହୁଏ । ଏ ସମୟରେ ଏହାର ପରିମାଣ ୧୦ ବା ୧୨ ସେର ଥାଏ । ବର୍ତ୍ତମାନ ସାଧାରଣ ବାୟୁର ବିଷୟ କୁହାଗଲା ।

ପୃଥିବୀର ସୁମେରୁ ଓ କୁମେରୁ (North and South Pole) କେନ୍ଦ୍ର ଅତିଶୟ ଶୀତଳ । ଉକ୍ତ ସ୍ଥାନଦ୍ୱୟ ଯେତିକି ନକ୍ଷତ୍ରବୃତ୍ତ ବା ବିଷୁବରେଖାର ସମୀପବର୍ତ୍ତୀ ହେବ ତେତିକି ଗ୍ରୀଷ୍ମର ଆଧିକ୍ୟ ଉପଲବ୍ଧି ହେବ । ଏଥିରୁ ଜଣାଯାଏ ଯେ, ଉଭୟ କେନ୍ଦ୍ରଠାରୁ ନିରକ୍ଷ ବୃତ୍ତାଭିମୁଖେ ନିୟତ ବାୟୁ ପ୍ରବାହ ପ୍ରଧାବିତ ହେଉଅଛି ।

ପ୍ରବଳ ଝଞ୍ଜା ନିଜର ବେଗ କୌଣସିକାଳେ ୧୧୦ ବା ୧୨୫ କ୍ରୋଶରୁ ଊର୍ଦ୍ଧ୍ୱ ହୁଏନାହିଁ ଏବଂ ଏହାର ଗତି ପୃଥିବୀରେ ଋଜୁ ହୋଇ ରହେନାହିଁ ।

ସୂର୍ଯ୍ୟର ଉତ୍ତାପରେ ଜଳ ଅପେକ୍ଷା ସ୍ଥଳଭାଗ ଅଧିକ ଉତ୍ତପ୍ତ ହୁଏ । ସୁତରାଂ ପୃଥିବୀର ଜଳଭାଗ ଅପେକ୍ଷା ସ୍ଥଳଭାଗରେ ଅଧିକ ଉଷ୍ଣ ଅନୁଭୂତ ହୁଏ ।

ନିରକ୍ଷ ବୃତ୍ତର ଦକ୍ଷିଣାଂଶ ଅପେକ୍ଷା ଉତ୍ତରାଂଶରେ ସ୍ଥଳଭାଗ ଅଧିକ ଥିବା ଯୋଗୁ ନିରକ୍ଷ ବୃତ୍ତର ଉତ୍ତରାଂଶରେ ଅଧିକ ଉଷ୍ଣ ବୋଧହୁଏ ନାହିଁ । ଉତ୍ତରାଂଶର ଉଷ୍ଣ ଦକ୍ଷିଣାଂଶର ସାତ ଭାଗରୁ ଭାଗେ ସୁଦ୍ଧା ହେବ ନାହିଁ ।

ପୂର୍ବବର୍ଣ୍ଣିତ ନିୟତ ବାୟୁର ବେଗ ଝଞ୍ଜାନିଳର ବେଗ ଅପେକ୍ଷା ଖୁବ୍ ନ୍ୟୂନ । ସୁତରାଂ ତାହା ପୃଥିବୀର ଅବସ୍ଥା ଓ ଗତି ଅନୁସାରେ ଐଶାନ୍ୟ ବା ଅଗ୍ନି କୋଣଗତ ହୁଏ । ଏହି ବାୟୁ ନୌବାଣିଜ୍ୟର ଅନୁକୂଳ ହେବା ଯୋଗୁଁ ନାବିକମାନେ ଏହାକୁ ବାଣିଜ୍ୟ-ବାୟୁ (Trade-wind) କହନ୍ତି । ପୂର୍ବୋକ୍ତ ବାୟୁମଣ୍ଡଳର ମଧ୍ୟବର୍ତ୍ତୀ ବାୟୁ ନିୟତ ଊର୍ଦ୍ଧ୍ୱଗମନଶୀଳ । ଏହି ସକଳସ୍ଥାନ ସର୍ବଦା ନିର୍ବାତ ଥିଲାପରି ବୋଧହୁଏ । ମଧ୍ୟେ ମଧ୍ୟେ ଏ ସ୍ଥାନରେ ଭୟାନକ ଝଡ଼ (Cyclone) ଦେଖାଦିଏ । ନାବିକମାନେ ଏ ସ୍ଥାନକୁ ନିର୍ବାତ ବା ସ୍ଥିର ବାୟୁମଣ୍ଡଳ (Belt of calms) କହନ୍ତି । ଆଟଲାଣ୍ଟିକ୍ ମହାସାଗରବକ୍ଷସ୍ଥ ଏହି ସ୍ଥାନ Daldrums ନାମେ ଖ୍ୟାତ ।

ଭୂ-ଭାଗର ଉଷ୍ଣତା ଓ ପର୍ବତାଦିର ଗତିରୋଧ ଯୋଗୁଁ ବାଣିଜ୍ୟ ବାୟୁର ପ୍ରବାହ ସର୍ବତ୍ର ସମଭାବେ ଅନୁଭୂତ ହୁଏନାହିଁ । କେବଳ ମହାସମୁଦ୍ର ଗର୍ଭରେ ତାହା ପରିଲକ୍ଷିତ ହୋଇଥାଏ ।

ଭାରତ ମହାସାଗରର ଉତ୍ତର, ପଶ୍ଚିମ ଓ ପୂର୍ବଭାଗ ଭୂ-ଭାଗ ଦ୍ୱାରା ପରିବେଷ୍ଟିତ । ବିଶେଷତଃ ହିମାଳୟ ପର୍ବତଶ୍ରେଣୀ ଉନ୍ନତ ପ୍ରାଚୀର ରୂପେ ଉତ୍ତର ଦିଗରେ ବେଷ୍ଟିତ ଥିବାରୁ ଉତ୍ତର ଦିଗରୁ ବାଣିଜ୍ୟ-ବାୟୁ ଉକ୍ତ ପ୍ରାଚୀର ଉଲ୍ଲଂଘନ କରି ପ୍ରବାହିତ ହୋଇପାରେ ନାହିଁ । ଅତଏବ ଭାରତ ମହାସରାଗରରେ ଉକ୍ତ ବାୟୁର ଆଦୌ ପ୍ରବାହ ନାହିଁ; କିନ୍ତୁ ତତ୍ପରିବର୍ତ୍ତେ ଅନ୍ୟ ଏକପ୍ରକାର ବାୟୁ ପ୍ରବାହିତ ହୋଇ ତାହାର ଅଭାବ ପୂରଣ କରେ । ଏହା ବର୍ଷର ପ୍ରଥମ ଛମାସ ଅଗ୍ନିକୋଣରୁ, ଦ୍ୱିତୀୟ ଛମାସ ବାୟବ୍ୟ କୋଣରୁ ସଞ୍ଚରେ । ଏହାକୁ ମୌସୁମୀ ବାୟୁ (Monsoon) କୁହାଯାଏ । କାର୍ତ୍ତିକଠାରୁ ଚୈତ୍ର ପର୍ଯ୍ୟନ୍ତ ପ୍ରବାହିତ ବାୟୁକୁ ଆଗ୍ନେୟ ବାୟୁ (North West Monsoon) ଏବଂ ବୈଶାଖଠାରୁ ଆଶ୍ୱିନ ପର୍ଯ୍ୟନ୍ତ ପ୍ରବାହିତ ବାୟୁକୁ ବାୟବ୍ୟ ବାୟୁ (South East Monsoon) କୁହାଯାଏ ।

ଏହି ବାୟୁ ସମୁଦ୍ରରେ ଆବିର୍ଭାବ ହେବା ପୂର୍ବୁ ପ୍ରଥମେ ସ୍ଥଳଭାଗରେ ଦେଖାଯାଇଥାଏ । ପର୍ବତ, ମରୁଭୂମି, ବନ, ଉପତ୍ୟକା ଓ ନଗରାଦିର ପ୍ରତିବନ୍ଧକଦ୍ୱାରା ବାୟୁର ପ୍ରାକୃତିକ ଗତିରେ ବୈଷମ୍ୟ ପରିଲକ୍ଷିତ ହୁଏ ।

ଆରବ ଦେଶର ମରୁଭୂମିରେ 'ସିମୁମ' ନାମକ ଏକପ୍ରକାର ପ୍ରାଣନାଶକ ଉତ୍ତପ୍ତ ବାୟୁ ପ୍ରବାହିତ ହୁଏ । ଆଫ୍ରିକାର ସାହାରା ପ୍ରାନ୍ତରରେ ଓ ଅନ୍ୟାନ୍ୟ ପ୍ରଦେଶରେ ମଧ୍ୟ ଏହିପରି ବାୟୁର ସଞ୍ଚରଣ ହୁଏ । ସମୁଦ୍ର ତଟରେ ଦିବାଭାଗରେ ସମୁଦ୍ରଠାରୁ ଭୂମି ଅଭିମୁଖେ ଏବଂ ରାତ୍ରିରେ ଭୂମିଠାରୁ ସମୁଦ୍ର ଅଭିମୁଖେ ବାୟୁ ବହେ । ସୂର୍ଯ୍ୟୋଦୟରେ ଜଳ ଅପେକ୍ଷା ସ୍ଥଳ ଶୀଘ୍ର ଉତ୍ତପ୍ତ ହେଉଥିବା ଯୋଗୁଁ ଭୂମିର ଉଷ୍ଣ ବାୟୁ ଊର୍ଦ୍ଧ୍ୱେ ଉଠେ ଏବଂ ସମୁଦ୍ରର ଶୀତଳ ବାୟୁ

ସେହି ସ୍ଥାନ ପୂର୍ଣ୍ଣ କରିବାପାଇଁ ତଦଭିମୁଖେ ଗତିକରେ । ରାତ୍ରିରେ ଜଳ ଅପେକ୍ଷା ସ୍ଥଳ ଶୀଘ୍ର ଶୀତଳ ହୁଏ । ଅତଏବ ଦିବସର ବିପରୀତ କ୍ରିୟା ରାତ୍ରିରେ ପରିଲକ୍ଷିତ ହୁଏ । ଏହି ବାୟୁର ସ୍ପର୍ଶ ମାନବର ହିତକର ।

**ଘୂର୍ଣ୍ଣିବାୟୁ** : କୌଣସି କଠିନ ପଦାର୍ଥରେ ଲୋଷ୍ଟ୍ରାଘାତ କଲେ ଯେପରି ଲୋଷ୍ଟ୍ରା ପ୍ରତ୍ୟାବର୍ତ୍ତନ କରେ ସେହିପରି ବାୟୁ ସୁଦ୍ଧା ପ୍ରତ୍ୟାବର୍ତ୍ତନଶୀଳ । କୌଣସି ସ୍ଥୂଳ ପଦାର୍ଥର ଆଘାତରେ ବାୟୁ ପ୍ରତ୍ୟାବୃତ୍ତ ହୋଇ ବିପରୀତ ଦିଗେ ଗତି କରିବାବେଳେ ଉଭୟ ବାୟୁର ସଂଘର୍ଷଣ ଯୋଗୁଁ ଅବା କୌଣସି ସ୍ଥାନ ହଠାତ୍ ବାୟୁଶୂନ୍ୟ ହେଲେ ଉକ୍ତ ସ୍ଥାନାନ୍ତରଣାର୍ଥ ଚତୁର୍ଦିଗରୁ ଆଗତ ବାୟୁର ଆଘାତରୁ ଘୂର୍ଣ୍ଣିବାୟୁ ଜାତହୁଏ । ଘୂର୍ଣ୍ଣିବାୟୁର ଉତ୍ପତ୍ତି ଲାଗି ଆକାଶମଣ୍ଡଳର ବିଦ୍ୟୁତ୍ ମଧ୍ୟ ଅନ୍ୟତମ କାରଣ ହୋଇପାରେ । ଅଳ୍ପ ପରିସରବିଶିଷ୍ଟ ଘୂର୍ଣ୍ଣିବାୟୁକୁ 'ଧୂଳୀଧ୍ୱଜ' କୁହାଯାଏ । ଏହି ବାୟୁ ପଞ୍ଜାବ ଓ ଉତ୍ତରପଶ୍ଚିମ ପ୍ରଦେଶରେ ଅଧିକ ପରିମାଣରେ ଦେଖାଯାଏ; ଏହାକୁ ଲୁଓଆନ୍ଧ କୁହାଯାଏ । ସମୟେ ସମୟେ ଏଥିଦ୍ୱାରା ଗ୍ରୀଷ୍ମ କାଳରେ ବିଶେଷ ଅନିଷ୍ଟ ଘଟିଥାଏ । ଏହି ବାୟୁ ଭ୍ରମି ଭ୍ରମି କେବେ ଉର୍ଦ୍ଧ୍ୱ ଗତିଶୀଳ ଅବା କେବେ ଅଗ୍ରଗତିଶୀଳ ହୁଏ । ଏହି ବାୟୁ ଶର ପରି ସରଳ ଭାବରେ ଗତି କରେ ନାହିଁ; ବେଢ଼ ଦେଇ ଭ୍ରମି ଭ୍ରମି ଅନେକ ଦୂର ଗତି କଲାବେଳେ ସମ୍ମୁଖସ୍ଥ ବୃକ୍ଷ ଗୃହାଦି ନାଶ କରିଦିଏ । ଶତକ୍ରୋଶାଧିକ ଗତି ଅବା ତଦ୍‌ପରିସର ବିଶିଷ୍ଟ ଏହି ବାୟୁକୁ ପ୍ରକୃତ ଝଡ଼ ବୋଲାଯାଏ । ଏହି ଝଡ଼ ଇଚ୍ଛାମତେ ଗତି କରିପାରେ ନାହିଁ । ଚନ୍ଦ୍ର ସୂର୍ଯ୍ୟର ଗତି ପରି ଏହାର ଗତି ମଧ୍ୟ ପ୍ରକୃତିର ଅଲଂଘନୀୟ ।

ନିରକ୍ଷ ବୃତ୍ତର ଉତ୍ତରଭାଗର ସକଳ ଝଡ଼ ପୂର୍ବଦିଗରୁ ଉତ୍ଥିତ ହୋଇ ଉତ୍ତର ଓ ପଶ୍ଚିମ ଦିଗରେ ଭ୍ରମିଭ୍ରମି ଉତ୍ତରାଭିମୁଖେ ପ୍ରତ୍ୟାବର୍ତ୍ତନ କରେ; ସେହିପରି ନିରକ୍ଷ ବୃତ୍ତର ଦକ୍ଷିଣରୁ ଯେଉଁ ସକଳ ଝଡ଼ ଉତ୍ପନ୍ନ ହୁଏ ତାହା ପଶ୍ଚିମରୁ ଉତ୍ତର ଓ ପୂର୍ବଦିଗ ଦେଇ ଦକ୍ଷିଣାଭିମୁଖେ ପ୍ରତ୍ୟାବୃତ୍ତ ହୁଏ; କେତେକ ମଧ୍ୟ ମଣ୍ଡଳାକାରରେ ଗତି କରେ । ଏହି ଝଡ଼ମଣ୍ଡଳର ପରିଧି ଯେଉଁ ବେଗରେ ଘୂର୍ଣ୍ଣନ କରେ ତାହାର ମଧ୍ୟଭାଗ ତଦପେକ୍ଷା ପ୍ରବଳ ବେଗରେ ଘୂର୍ଣ୍ଣିତ ହୁଏ । ଏ ହେତୁ ଝଡ଼ ସମୟରେ ମଣ୍ଡଳର ମଧ୍ୟଭାଗ ଯେଉଁ ସ୍ଥାନେ ଉପନୀତ ହୁଏ ସେହି ସ୍ଥାନରେ ଭୟଙ୍କର ଉପଦ୍ରବ ଘଟେ; ଏହାକୁ ବାତାବର୍ତ୍ତ କୁହାଯାଏ । ଏହି ବାତାବର୍ତ୍ତର ବ୍ୟାସ ସର୍ବତ୍ର ସମାନ ନୁହେଁ; ଏହା ଘଣ୍ଟାକେ ଜ୍ୟୋତିଷକ୍ରମେ ୭ଠାରୁ ୫୦ କ୍ରୋଶ ପର୍ଯ୍ୟନ୍ତ ଗତି କରିଥାଏ, ଏହା ବଡ଼ ଅନିଷ୍ଟକର ।

ବାତାବର୍ତ୍ତ ସମୁଦ୍ରରେ ପ୍ରବାହିତ ହେଲେ ପ୍ରାୟ ୧୫୦ ହସ୍ତ ପରିମିତ ଉର୍ଦ୍ଧ୍ୱ ଜଳ ଉତ୍ଥିତ ହୁଏ । ଏହାକୁ ବାତାବର୍ତ୍ତ କଲ୍ଲୋଳ କୁହାଯାଏ । ଜାହାଜପକ୍ଷେ ଏହା ଅତ୍ୟନ୍ତ ଅନିଷ୍ଟକର । ୧୩୩୦ ସାଲରେ ଅନେକ ଜାହାଜ ଏହି କଲ୍ଲୋଳାରୋହଣ କରି ସମୁଦ୍ରବକ୍ଷରୁ ଅପସାରିତ ହୋଇ ଗଙ୍ଗାସାଗର ମଧ୍ୟସ୍ଥିତ ଦ୍ୱୀପର ବୃକ୍ଷଶ୍ରେଣୀର ଶିଖର ଭାଗରେ ଲାଗିଲା ।

ଲେଖକ ସମୁଦ୍ରମାର୍ଗରେ ମୁମ୍ବାଇଠାରୁ ସିଲୋନ୍ ଯାତ୍ରା କଲାବେଳେ ଏହି ବାତାବର୍ତ୍ତ କଲ୍ଲୋଳର ପ୍ରଭାବ ଅନୁଭବ କରିଥିଲେ । ବାତାବର୍ତ୍ତ ସମୟରେ ଘନଘନ ମେଘଗର୍ଜନ, ବିଦ୍ୟୁତ୍‌ର ଚମକ, ମୁଷଳଧାରାରେ ବାରି ବର୍ଷଣ ହୋଇଥାଏ । ଏହେତୁ ବିଦ୍ୟୁତ୍ ସଙ୍ଗେ ଏହାର ନୈସର୍ଗିକ ସମ୍ପର୍କ ଥିବା ଅନୁମିତ ହୁଏ । ଏହି ଘୂର୍ଣ୍ଣବାୟୁ ହିଁ ସମୁଦ୍ରରେ ଉତ୍ଥିତ ହୋଇ ଜଳସ୍ତମ୍ଭ ସୃଷ୍ଟି କରେ । ଜଳସ୍ତମ୍ଭ ଉତ୍ପନ୍ନ ହେବା ସ୍ଥାନ ଉପରେ ମେଘ ଆସି ରହି ପ୍ରଥମେ ପ୍ରବଳ ଘୂର୍ଣ୍ଣବାୟୁ ଜାତ ହୋଇ ଜଳ ସମୂହ ଆନ୍ଦୋଳିତ କରେ ଏବଂ ଚତୁର୍ଦ୍ଦିଗରେ ତରଙ୍ଗସ୍ରୋତ ସେହି ସ୍ଥାନର ମଧ୍ୟଭାଗକୁ ଦ୍ରୁତଗତିରେ ଆନୀତ ହୁଏ । ତଦ୍ୱାରା ପ୍ରବଳ ଜଳ ଓ ଜଳୀୟବାଷ୍ପ ରାଶୀକୃତ ହୋଇଉଠେ ଏବଂ ବାଷ୍ପମୟ ଗୋଟାଏ ଶୁଣ୍ଢାକାର ସ୍ତମ୍ଭ ଉତ୍ପନ୍ନ ହୋଇ ଉର୍ଦ୍ଧ୍ୱକୁ ଉତ୍ଥିତ ହୁଏ; ଅଥଚ, ମେଘରୁ ଏହିପରି ଅନ୍ୟ ଏକ ଶୁଣ୍ଢ ଅବତରଣ କରି ଏହା ସଙ୍ଗେ ସଂଯୁକ୍ତ ହେଲାପରି ବୋଧହୁଏ । ଏହି ଜଳସ୍ତମ୍ଭର ଉତ୍ପତ୍ତିରେ ଶବ୍ଦଜାତ ହୁଏ । ଏହା ଦୀର୍ଘରେ ୧୭୫୦ ହାତ ପର୍ଯ୍ୟନ୍ତ ହୋଇଥାଏ । ଏହି ସ୍ତମ୍ଭ ଶୂନ୍ୟଗର୍ଭା; ଏହା ଏକ ଘଣ୍ଟାରୁ ଅଧିକ କାଳ ରହେ ନାହିଁ; ଏହା ନଷ୍ଟ ହୋଇ ଅନ୍ୟତ୍ର ବୃଷ୍ଟି ହୋଇଥାଏ ।

୧୫୫୫ ଖ୍ରୀଷ୍ଟାବ୍ଦଠାରୁ ୟୁରୋପରେ ସହସ୍ର ସହସ୍ର ବ୍ୟକ୍ତିଏହି ବାୟୁର ତତ୍ତ୍ୱାନୁସନ୍ଧାନ ଲାଗି ଯତ୍ନବାନ୍ ହେଲେ । ୟୁରୋପୀୟମାନେ ସ୍ୱଭାବତଃ ବାଣିଜ୍ୟପ୍ରିୟ । ଜଳପଥରେ ବାଣିଜ୍ୟ କରିବାକୁ ହେଲେ ମେଘ, ବୃଷ୍ଟି, ଝଡ଼, ବାୟୁ ପ୍ରଭୃତିର ଗତିବିଧି ଜାଣିବା ନିତାନ୍ତ ଆବଶ୍ୟକ । ୧୫୫୩ ଅବ୍ଦରେ ଟାସ୍କାନୀୟ ଗ୍ରାଣ୍ଡଡିଭିକ୍, ଦ୍ୱିତୀୟ ଫାଉନାଣ୍ଡ ଓ ବୈଜ୍ଞାନିକ ପଣ୍ଡିତ ଲୁଇଗୀ ଐଣ୍ଟିନରୀ (Luigi Antinori) ତତ୍ତ୍ୱାନୁସନ୍ଧାନ ଲାଗି ନାନା ଯତ୍ନ ଓ ବହୁକଷ୍ଟ ସ୍ୱୀକାର କରିଅଛନ୍ତି । ଅଦ୍ୟାପି ଏହାର ତତ୍ତ୍ୱାନ୍ୱେଷଣରେ ତ୍ରୁଟି ହୋଇନାହିଁ । ଏହାର ତତ୍ତ୍ୱ ଜାଣିବା ନିମନ୍ତେ ଅନେକ ଯନ୍ତ୍ର ଆବିଷ୍କାର ହୋଇଅଛି । ବାୟୁର ତାପ ଓ ଶୈତ୍ୟ ପରିମାପକ ଯନ୍ତ୍ର, ବାୟୁର ଗୁରୁତ୍ୱ ନିର୍ଣ୍ଣୟ ଯନ୍ତ୍ର, ବାୟୁର ଗତି ପରିମାପକ ଯନ୍ତ୍ର, ବାୟୁର ଆର୍ଦ୍ରତାର ପରିମାଣ ସ୍ଥିର କରିବା ଯନ୍ତ୍ର, ବୃଷ୍ଟି ଓ ତୁଷାରପାତର ପରିମାଣ ନିର୍ଣ୍ଣାୟକ ଯନ୍ତ୍ର, ବାୟୁ, ନିଷ୍କାସନ ଯନ୍ତ୍ର, ଉଦ୍‌ଗତ ବାଷ୍ପ ପରିମାପକ ଯନ୍ତ୍ର, ସୂର୍ଯ୍ୟକିରଣର ପରିମାଣ ନିର୍ଣ୍ଣାୟକ ଯନ୍ତ୍ର,ମେଘାଦି ଘନୀଭୂତ ବାଷ୍ପ ନିର୍ଣ୍ଣାୟକ ଯନ୍ତ୍ର, ବାୟବୀୟ ଧୂଳି ନିର୍ଣ୍ଣାୟକ ଯନ୍ତ୍ର ପ୍ରଭୃତି ନିର୍ମାଣ କରି ବିପଦରୁ ମନୁଷ୍ୟକୁ ଉଦ୍ଧରିବା ନିମନ୍ତେ ଯତ୍ନବାନ୍ ହେଲେ ।

## ଅଗ୍ନି ପ୍ରକରଣ

ଭାରତୀୟମାନେ ଅଗ୍ନିକୁ ଦେବତା ଜ୍ଞାନ କରି ପୂଜା କରନ୍ତି । ଆର୍ଯ୍ୟ ଶାସ୍ତ୍ରରେ ଏହାର ୬୧ ଗୋଟି ନାମ ଲେଖାଅଛି । ପରମପୁରୁଷଙ୍କ ମୁଖରୁ ଏହି ଦେବତାଙ୍କ ଜନ୍ମ, ମତାନ୍ତରରେ ଅଗ୍ନି ଧର୍ମର ଔରସରେ ବସୁଙ୍କ ଗର୍ଭରୁ ସମ୍ଭୂତ । କିନ୍ତୁ ଅନ୍ୟ ପୁରାଣରେ ଦେଖାଯାଏ ଅଗ୍ନି କଶପ ଓ ଅଦିତିଙ୍କ ପୁତ୍ର । ଏ ସ୍ଥୂଳକାୟ, ଲମ୍ବୋଦର ଓ ଲୋହିତାଭ । ଏହାଙ୍କ କେଶ, ଚକ୍ଷୁ, ଭ୍ରୂ, ଶ୍ମଶ୍ରୁ ପିଙ୍ଗଳବର୍ଣ୍ଣ; ଶକ୍ତି ଓ ଅକ୍ଷସୁତ୍ରହସ୍ତ ଏବଂ ଛାଗବାହନ । ଅନ୍ୟତ୍ର ବର୍ଣ୍ଣିତ ଅଛି ଅଗ୍ନି

ଦ୍ୱିପଦ, ସପ୍ତହସ୍ତ ଓ ଦ୍ୱିମୁଖ ବିଶିଷ୍ଟ ଏବଂ ଏହାଙ୍କର କାନ୍ତି ବାଳାର୍କ ସଂକାଶ । ଏ ଦକ୍ଷିଣ-ପୂର୍ବ କୋଣର ଅଧିଷ୍ଠିତ ଦେବତା । ଋଗ୍‌ବେଦର ଅନେକ ମନ୍ତ୍ରରେ ଏହାଙ୍କର ସ୍ତବ ଦେଖାଯାଏ ।

ପ୍ରାଚୀନ ଯୁଗରେ ପ୍ରାୟ ସକଳ ଦେଶରେ ଅଗ୍ନି ଦେବତା ରୂପେ ପୂଜା ପାଉଥିଲେ; ସମ୍ପ୍ରତି ଭାରତୀୟ ଓ ପାର୍ଶୀମାନେ ହିଁ ଏହାଙ୍କୁ ପୂଜା କରନ୍ତି । ପାରସ୍ୟ ଦେଶରୁ ଅଗ୍ନିପୂଜା ପ୍ରାୟ ଲୋପ ପାଇଗଲାଣି । ଅଗ୍ନିଙ୍କ ପତ୍ନୀ ସ୍ୱାହା; ପ୍ରାଚୀନ ରୋମୀୟମାନେ ଏହାଙ୍କୁ ବେଷ୍ଟା ନାମରେ ଅର୍ଚ୍ଚନା କରୁଥିଲେ; କିନ୍ତୁ ଏହି ବେଷ୍ଟାଙ୍କ (Vesta) କୌଣସି ମୂର୍ତ୍ତି ମନ୍ଦିରରେ ସ୍ଥାପନ କରନ୍ତି ନାହିଁ । (No image Vestas semblance can express, fire if too subtle to admit of dress) ।

କୌଣସି ପ୍ରତିମୂର୍ତ୍ତି ବେଷ୍ଟାଙ୍କ ରୂପ ପ୍ରକାଶ କରିପାରିବ ନାହିଁ; ଅଗ୍ନି ଅତି ତେଜପୁଞ୍ଜ । ସେହି ଜାଜ୍ଜ୍ୱଲ୍ୟମାନ ଅଗ୍ନିଙ୍କ ଭୌତିକ ଜଗତରେ ପଟାନ୍ତର କାହିଁ ।

ଆର୍ଯ୍ୟମାନଙ୍କର କର୍ମବିଶେଷରେ ଅଗ୍ନି ପୃଥକ୍ ପୃଥକ୍ ନାମେ ଆହୂତ ହୁଅନ୍ତି, ଯଥା- ଗୃହ ପ୍ରବେଶାଦି କର୍ମରେ ପାବକ, ଗର୍ଭାଧାନରେ ମାରୁତ, ପୁଁସବନରେ ଚନ୍ଦ୍ରମସ୍ ଇତ୍ୟାଦି । ପାବକ, ପବମାନ ଓ ଶୁଚି ନାମରେ ଅଗ୍ନିଙ୍କ ତିନୋଟି ପୁତ୍ର ।

ତୈତ୍ତରୀୟ ସଂହିତାରେ ଲେଖାଅଛି, ପ୍ରଜାପତି ଅଗ୍ନିଙ୍କି ସୃଷ୍ଟିକରି ଦେବତାମାନଙ୍କର ବିଶ୍ରାମ ଭୂମିସ୍ୱରୂପ ଦାନକଲେ । ଆର୍ଯ୍ୟମାନେ ନିଜେ ଅଗ୍ନି ଉତ୍ପାଦନ କରି ସକଳ କାର୍ଯ୍ୟ ନିର୍ବାହ କରୁଥିଲେ ।

ସଂସ୍କୃତର 'ଅଗ୍ନି' ଓ ଲାଟିନ୍‌ର 'ଲିଗ୍ ଜୀସ୍' ଏ ଉଭୟ ଶବ୍ଦର ବିଲକ୍ଷଣ ସାଦୃଶ୍ୟ ଅଛି । ବେଦ ଅଛି ଯେ ଗ୍ରୀସ୍ ଦେଶରେ ପ୍ରମିଥିୟସ୍ ନାମକ ଜନୈକ ବିଲକ୍ଷଣ ଜ୍ଞାନୀ ସ୍ୱର୍ଗରୁ ଅଗ୍ନି ଆଣିଥିଲେ, ତଦୀୟ ଗ୍ରନ୍ଥରେ ମଧ୍ୟ ଏହାର ଉଲ୍ଲେଖ ଅଛି ।

ପ୍ରାଚୀନ କାଳରେ ଆର୍ଯ୍ୟମାନେ ଅରଣିମଥନପୂର୍ବକ ଅଗ୍ନି ଉତ୍ପାଦନ କରନ୍ତି । ସଂସ୍କୃତ ପ୍ରଥମ ଶବ୍ଦ ସହିତ ଗ୍ରୀକ୍ ପ୍ରମିଥିସ୍ ଶବ୍ଦର ବିଶେଷ ସାଦୃଶ୍ୟ ଅଛି; ତେବେ କ'ଣ ଏହି ଆର୍ଯ୍ୟ ଦେଶରୁ ସେହି ଗ୍ରୀସ୍ ଓ ଇତାଲୀୟମାନେ ଅଗ୍ନି ଉତ୍ପାଦନ କୌଶଳ ଶିକ୍ଷାକରି ଯାଇଥିଲେ? ଅସମ୍ଭବ ନୁହେଁ ।

ଆଦିମ ଅବସ୍ଥାରେ ମନୁଷ୍ୟ ଅଗ୍ନ୍ୟୁତ୍ପାଦନ କରି ଜାଣେନାହିଁ, ବିଦ୍ୟୁତ୍ ଓ ଦାବାନଳ ଦର୍ଶନେ ଅଗ୍ନିଜ୍ଞାନ ଜାତହେଲା । ଆଲ୍‌ଡାବେଡ଼ି ସାଭାଡ଼ାରା ନାମକ ସ୍ପେନ ଦେଶୀୟ ଜନୈକ ପରିବ୍ରାଜକ ଲେଖିଅଛନ୍ତି, ପ୍ରଶାନ୍ତ ମହାସାଗର ମଧ୍ୟବର୍ତ୍ତୀ ଲାସ୍ ଜାର୍ଡ଼ିନ୍ (Las Jardines) ଦ୍ୱୀପର ଲୋକମାନେ କସ୍ମିନ୍‌କାଳେ ଅଗ୍ନି ଦେଖି ନଥିଲେ । ସମୁଦ୍ର କୂଳେ ଜାହାଜ ଆସି ଉପସ୍ଥିତ ହେଲେ ସେହି ଦେଶବାସୀ ଅଗ୍ନିକି ଦେଖି କହନ୍ତି ଯେ, ବିଦ୍ୟୁତ୍ ଓ ସୂର୍ଯ୍ୟପରି କି ତେଜ ! ଉପରେ ଧୂଆଁ ବାହାରୁଛି ଇତ୍ୟାଦି କହି ଆଶ୍ଚର୍ଯ୍ୟାନ୍ୱିତ ହୁଅନ୍ତି । ମାଗିଲାନ୍ ନାମକ ଜଣେ ବ୍ୟକ୍ତି ନିଜ କୁଟୀରରେ

ଅଗ୍ନିସଂଯୋଗ କରି କୁଟୀରଟି ଦଗ୍ଧ କଲାରୁ ଲୋକେ ତାହାଦେଇ କହିଲେ ଯେ, କୌଣସି ଗୋଟିଏ ଭୟଙ୍କର ଜନ୍ତୁ ଆସି ଉକ୍ତ ଗୃହ ଗ୍ରାସ କରିଅଛି । ଯାବତ୍ପର୍ଯ୍ୟନ୍ତ ମନୁଷ୍ୟର ଜ୍ଞାନଚକ୍ଷୁ ଉନ୍ମୀଳନ ହୋଇ ନଥାଏ, ତାବତ୍ପର୍ଯ୍ୟନ୍ତ ଚନ୍ଦ୍ର, ସୂର୍ଯ୍ୟ, ବିଦ୍ୟୁତ୍, ଅଗ୍ନିକି ସେ ଈଶ୍ୱର ଜ୍ଞାନ କରିଥାଏ । ପ୍ରଥମରେ ମନୁଷ୍ୟର ଅହୈତୁକୀ ଭକ୍ତି ବା ଜ୍ଞାନ ନଥାଏ, ଥାଏ କେବଳ ଭୟ ଓ କ୍ଷୁଧା । କନ୍ଧ, କିରାତ ପ୍ରଭୃତି ଆରଣ୍ୟକ ଜାତି ହିଂସ୍ର ଜନ୍ତୁ ଓ ପ୍ରେତାଦିର ପୂଜା କରନ୍ତି ।

ଏଠାରେ ପ୍ରଶ୍ନ ଉଠିପାରେ ଯେ, ଜ୍ଞାନବାନ୍ ଆର୍ଯ୍ୟମାନେ ସୁଦ୍ଧା କାହିଁକି ଅଗ୍ନିଉପାସନା କରନ୍ତି । ଆର୍ଯ୍ୟର ବେଦ ପୁରାଣାଦିରେ ଦେଖାଯାଏ ଯେ, ପବିତ୍ର ଆର୍ଯ୍ୟମାନେ ଚିନ୍ମୟୀଙ୍କର ଉପାସନା କରିଆସିଅଛନ୍ତି । ବେଦାନ୍ତ ଦର୍ଶନ କହେ 'ସତ୍ୟଂ ଜ୍ଞାନମନନ୍ତଂବ୍ରହ୍ମ' । ତେବେ ଚିନ୍ମାତ୍ରମେବ ବ୍ରହ୍ମୋପାସକ ଆର୍ଯ୍ୟର ଧର୍ମଶାସ୍ତ୍ରରେ ସଚ୍ଚିଦାନନ୍ଦ ବ୍ରହ୍ମୋପାସନା ସଙ୍ଗେ ଅଗ୍ନି ପ୍ରଭୃତି ଭୌତିକ ପଦାର୍ଥ ପୂଜାର ଉଲ୍ଲେଖ ଅଛି କାହିଁକି? ଏହାର ଉତ୍ତରରେ ଏତିକି କୁହାଯାଇପାରେ ଯେ ଆର୍ଯ୍ୟ ହୃଦୟ ସର୍ବଦା ପ୍ରତିଭା ପୂଜା ନିମନ୍ତେ ବ୍ୟାକୁଳ । ସେ ଯେଉଁଠାରେ ଶକ୍ତି ଓ ସୌନ୍ଦର୍ଯ୍ୟ ଦେଖେ ସେଠାରେ ଈଶ୍ୱର ସତ୍ତା ଅନୁଭବ କରେ । ଏହାର ପ୍ରମାଣ ଆର୍ଯ୍ୟର ସର୍ବଶ୍ରେଷ୍ଠ ଧର୍ମଗ୍ରନ୍ଥ ଭୁବନବିଶ୍ରୁତ ଶ୍ରୀମଦ୍ଭଗବତ୍ ଗୀତାର ବିଭୂତି ଅଧ୍ୟାୟରେ ମିଳେ । ଆଉ ଗୋଟିଏ କଥା ମାନବର ଶ୍ରାନ୍ତ ମନ ଅନନ୍ତ ଉପାସନା ପ୍ରତି ସହଜେ ଆକୃଷ୍ଟ ହୋଇପାରେ ନାହିଁ । ଅତଏବ ଆର୍ଯ୍ୟଜାତି ନିତ୍ୟ ଅନୁଭୂତ ଶ୍ରେଷ୍ଠ ଓ ସୁନ୍ଦର ବସ୍ତୁଚୟରେ ଐଶୀସତ୍ତା ଉପଲବ୍ଧି କରି ତାହାର ଉପାସନା କରେ । ଅଗ୍ନିର ଦାହିକାଶକ୍ତି, ହେୟ ଉପାଦେୟ ଭାବରାହିତ୍ୟ ଓ ସକଳ କଳ୍ମଷ ଆତ୍ମସାତ୍ପୂର୍ବକ ନିଜେ ନିଷ୍କଳଙ୍କ ଓ ଦୀପ୍ତ ରହିବା ଦେଖିଲେ, ପାଷାଣ୍ଡ ହୃଦୟରେ ସୁଦ୍ଧା ଈଶ୍ୱର ସତ୍ତା ଅନୁଭବ ହେବା ଅସମ୍ଭବ ନୁହେଁ । ଏତଦ୍ବ୍ୟତୀତ ମାନବ ଜୀବନରେ ଅଗ୍ନିର ଅନିବାର୍ଯ୍ୟ ପ୍ରୟୋଜନୀୟତା କାହାରିକୁ ଅବିଦିତ ନାହିଁ । ଏଣୁ ଆର୍ଯ୍ୟର ଅଗ୍ନି ଉପାସନା ଭୀତିସାପେକ୍ଷ ଅବା ଅନ୍ଧବିଶ୍ୱାସମୂଳକ ନୁହେଁ । ଆର୍ଯ୍ୟମାନେ ଯେ ଅଗ୍ନି, ବରୁଣ, ଇନ୍ଦ୍ର, ଚନ୍ଦ୍ରର ଉପାସନା କରନ୍ତି ତାହା ମଧ୍ୟ ଏକେଶ୍ୱରବାଦର ବିରୁଦ୍ଧ ନୁହେଁ; ଯେହେତୁ ବେଦ କହେ, 'ଈଶ୍ୱରଃ ଏକ ବିପ୍ରବହୁଧା ବଦନ୍ତି' ।

କେବଳ ଆର୍ଯ୍ୟଗଣ କାହିଁକି, ପାରସ୍ୟ, ମିଶର, କାଲଡିୟା, ଇହୁଦି, ଗ୍ରୀକ୍, ରୋମାନ୍, ଚୀନ ପ୍ରଭୃତି ସକଳ ଜାତିର ଶାସ୍ତ୍ରରେ ଦେଖାଯାଏ ଯେ, ସେମାନଙ୍କ ଦେବମନ୍ଦିରରେ ଦିବାରାତ୍ରି ଅଗ୍ନି ପ୍ରଜ୍ୱଳିତ ରହିଥାଏ, ଦେବାଳୟରେ ଅଗ୍ନି ଜାଳି ରଖିବା ବ୍ୟବସ୍ଥା ବାଇବେଲରେ ମଧ୍ୟ ଦେଖାଯାଏ (Levititicus IV,13) । ବର୍ତ୍ତମାନ ସୁଦ୍ଧା କୌଣସି ଖ୍ରୀଷ୍ଟାନ୍‌ମାନେପ୍ରକାରାନ୍ତରେ ଅଗ୍ନି ପୂଜା କରନ୍ତି, କିନ୍ତୁ ଅଗ୍ନି ଉପାସନା ପ୍ରତି ସକଳ ଜାତିର ଆସ୍ଥା କ୍ରମଶଃ କମି ଯାଉଅଛି ।

### ଅଗ୍ନିଶିଖା

ଅଗ୍ନିଶିଖା ସମ୍ବନ୍ଧେ ଜାଣିବାକୁ ହେଲେ, ପ୍ରଥମେ ପଦାର୍ଥ ସକଳ କିପରି ଦଗ୍ଧ ହୁଏ ତାହା ଜାଣିବା ଆବଶ୍ୟକ । ଆମ୍ଭେମାନେ ନିଶ୍ୱାସ ସଙ୍ଗେ ଯେଉଁ ବାୟୁ ଗ୍ରହଣ କରୁଅଛୁଁ

ତାହାର ୫ ଭାଗରୁ ଏକଭାଗ ଅକ୍ସିଜେନ । ଜଗତର ଅନେକ ବସ୍ତୁ ସଙ୍ଗେ ସହଜେ ଅମ୍ଳଜାନ (ଅକ୍ସିଜେନ) ମିଶିଥାଏ । ଏହି ଅମ୍ଳଜାନ ଅନ୍ୟାନ୍ୟ ପଦାର୍ଥର ସଂଯୋଗରେ ସର୍ବଦା ନୂତନ ନୂତନ ଯୌଗିକ ପଦାର୍ଥରେ ପରିଣତ ହୁଏ । ଏହି ଅମ୍ଳଜାନ ଅନ୍ୟ ପଦାର୍ଥ ସହିତ ମିଶ୍ରିତ ହେଲେ ଯେଉଁ ତପେ ଉତ୍ପନ୍ନ ହୁଏ, ତାହାକୁ ହିଁ ଦଗ୍ଧ କହି । ଯେଉଁ ପଦାର୍ଥର ଯେତେ ପରିମାଣରେ ଅମ୍ଳଜାନ ମିଶିଥାଏ, ସେହି ପଦାର୍ଥ ତେତେ ପରିମାଣରେ ଓ ସେତେ ଶୀଘ୍ର ଦଗ୍ଧ ହୁଏ । ସବୁ ପଦାର୍ଥରେ ଅମ୍ଳଜାନ ସହଜେ ମିଶିପାରେ ନାହିଁ । ଉଦାହରଣ ସ୍ୱରୂପ ଲୌହ ସଙ୍ଗେ ଅମ୍ଳଜାନ ମିଶିଲେ Oxide of iron ଉତ୍ପନ୍ନ ହୁଏ; ଏହାକୁ ଫିପିଡ଼ିଯା ମଇଲା କୁହାଯାଏ । ଜ୍ୱଳନ୍ତ ନିଆଁରେ ଖଣ୍ଡେ ଲୁହା ରଖିଦେଲେ ତାତିଯାଇ ଲାଲବର୍ଣ୍ଣ ହୁଏ; ବାହାର କରିଦେଲେ ଶୀତଳ ହୋଇ ପୂର୍ବବର୍ଣ୍ଣ ଧାରଣ କରେ, କିନ୍ତୁ ଲୁହାର ଭାର କମେ ନାହିଁ । ଲୁହାଟି ଅଗ୍ନିପରି ତପ୍ତ ହେଲା କିନ୍ତୁ ଦଗ୍ଧ ହେଲାନାହିଁ । ଲୁହାକୁ କାଠପରି ଦଗ୍ଧ କରିବାକୁ ହେଲେ ବିଶେଷ ତାପ ଆବଶ୍ୟକ, କାରଣ ଲୁହା ସଙ୍ଗେ ଅମ୍ଳଜାନ ସହଜେ ମିଶିପାରେ ନାହିଁ; କିନ୍ତୁ ଅଙ୍ଗାର ଓ ଜଳଜାନ ପ୍ରଭୃତି ଅନେକ ବସ୍ତୁ ସଙ୍ଗେ ସହଜେ ମିଶିଯାଏ । (Carbon and Hydrogen) କାଷ୍ଠ ଓ ପଥର କୋଇଲା, ତୈଳ, ଚର୍ବି, ଘୃତ ପ୍ରଭୃତିରେ, ଅଙ୍ଗାର ଅଥବା ଜଳଜାନ ଅଧିକ ପରିମାଣରେ ଅଛି । ଏଥିଲାଗି ଅଗ୍ନିର ଆବଶ୍ୟକରେ ଉକ୍ତ ଦ୍ରବ୍ୟ ଅଧିକ ବ୍ୟବହାର କରାଯାଏ । ଯେଉଁ ଗ୍ୟାସ୍‌ରେ ଆଲୋକ ଜଳେ, ତାହା ପଥର କୋଇଲାରୁ ଆବିଷ୍କୃତ । ଅଙ୍ଗାର ଓ ଜଳଜାନ ମିଶ୍ରିତ ବାଷ୍ପକୁ ଗ୍ୟାସ୍ କୁହାଯାଏ । ଏହି ଗ୍ୟାସରେ ଅଲିଫାଇଣ୍ଟ୍ (Olefientas) ନାମକ ଏକପ୍ରକାର ବାଷ୍ପ ଅଛି; ଏହାର ଆଲୋକ ଅତ୍ୟନ୍ତ ପ୍ରଖର । ଜଳଜାନ ଦଗ୍ଧହେବା ସମୟରେ ଅଗ୍ନିଶିଖା ଉପରେ ଗୋଟିଏ ପାତ୍ର ଢାଙ୍କି ଦେଲେ ତହିଁରେ ଝାଳପରି ଜଳ ଜମି ରହେ ।

ଜଳ ଉଷ୍ମ ହେଲେ ଅବା ଅଙ୍ଗାରାଦି ଦ୍ରବ୍ୟ ଦଗ୍ଧ ହେଲେ ବାଷ୍ପ ହୁଏ । ଜଳୀୟ ବାଷ୍ପ ଶୀତଳ ହେଲେ ମେଘ ବା ଜଳରେ ପରିଣତ ହୁଏ । ଅଙ୍ଗାରକ ବାଷ୍ପକୁ ଉଦ୍ଭିଦ ନିଶ୍ୱାସ ସଙ୍ଗେ ଗ୍ରହଣ କରି ତତ୍ରସ୍ଥ ଅମ୍ଳଜାନ ତ୍ୟାଗ କରେ । ଗୃହୀତ ଅଙ୍ଗାରରେ ଉଦ୍ଭିଦ ପୁଷ୍ଟ ହୁଏ । ଉକ୍ତ ବାଷ୍ପ ପରେ ଅନ୍ୟାନ୍ୟ ଦ୍ରବ୍ୟ ସଙ୍ଗେ ମିଶି କାଷ୍ଠ ଓ ପତ୍ରରେ ପରିଣତ ହୁଏ ।

ଏହା ଗୋଟିଏ ଆଶ୍ଚର୍ଯ୍ୟ ବ୍ୟାପାର ଯେ, ସୂର୍ଯ୍ୟାଲୋକ ସାହାଯ୍ୟରେ ଉଦ୍ଭିଦ ବାୟୁର ଅଙ୍ଗାରଜାନ ଗ୍ରହଣ କରି ଅମ୍ଳଜାନ ଭାଗ ତ୍ୟାଗ କରେ । ଅଙ୍ଗାରକ ବାଷ୍ପ ଗ୍ରହଣ ସମୟରେ ସୂର୍ଯ୍ୟ କିରଣର କିୟଦଂଶ ଉତ୍ତାପ ଓ ଆଲୋକ ସଞ୍ଚୟ କରିଥାଏ; ଏହା ଉଦ୍ଭିଦର ଶରୀରରେ ପରିପାକ ହୋଇଯାଏ ନାହିଁ; ପୁଣି ସେହି କାଷ୍ଠରେ ଯେତେବେଳେ ଅମ୍ଳଜାନ ପୁନର୍ବାର ମିଶିବା ସମୟ ଆସେ ସେତେବେଳେ ଏହି ଅନ୍ତର୍ନିହିତ ସୂର୍ଯ୍ୟକିରଣ ବହିର୍ଗତ ହୁଏ; ତାହାହିଁ ଅଗ୍ନି ସଂଯୋଗରେ ଉତ୍ତାପ ଓ ଆଲୋକ ହୁଏ । ଅଙ୍ଗାରାଦି ଦଗ୍ଧ ହେବା ସମୟରେ ନୂତନ ମିଶ୍ରିତ ବାଷ୍ପ ଜାତହୋଇ ଯେତେବେଳେ ଉପରକୁ ଉଠେ, ସେତେବେଳେ ଏହି ତାପ ଉତ୍ତପ୍ତ ହୋଇ

ବାଷ୍ପ ଜ୍ୟୋତିର୍ମୟ ମୂର୍ତ୍ତିଧାରଣ କରେ; ତାହାହିଁ ଅଗ୍ନିଶିଖା । ଏହି ଅଗ୍ନିଶିଖା ସମ୍ବନ୍ଧେ ବୈଜ୍ଞାନିକଗଣ ବିଶେଷ ଆଲୋଚନା କରିଅଛନ୍ତି । ବାହୁଲ୍ୟ ଭୟେ ସେ ସକଳ ଉଲ୍ଲେଖ ନକରି ବର୍ତ୍ତମାନ ଅଗ୍ନିର ତାପ ସମ୍ବନ୍ଧେ କିଛି ବିଚାର କରିବୁ ।

**ତାପ (Heat)** : ପ୍ରକୃତି କାର୍ଯ୍ୟର ସାମଞ୍ଜସ୍ୟ ବିଧାନରେ ଏହି ତାପ ବିଶେଷ ଉପଯୋଗୀ । ଏହାଦ୍ୱାରା ବିଜ୍ଞାନ ପ୍ରଭାବରୁ ଯେଉଁ ବାତ୍ୟା ପ୍ରଭୃତି ଅସଂଖ୍ୟ ଆଶ୍ଚର୍ଯ୍ୟଜନକ ଓ ଭୟାନକ କାର୍ଯ୍ୟ ସଂଘଟିତ ହେଉଅଛି ତାହା ଲେଖିବା ବାହୁଲ୍ୟ ମାତ୍ର । ଏହି ତାପ ବିନା ରସାୟନ ଶାସ୍ତ୍ର ନିଷ୍ଫଳ । ପଦାର୍ଥ ସକଳର ବିଶ୍ଳେଷଣ, ସଂଶ୍ଳେଷଣ, ଅବସ୍ଥାନ୍ତର ଓ ରୂପାନ୍ତର ପ୍ରାପ୍ତି ପ୍ରଭୃତି ପ୍ରକ୍ରିୟା ଏଥିଦ୍ୱାରା ସାଧିତ ହୋଇଥାଏ । ଏହାର ମୂଳତତ୍ତ୍ୱ ଓ ଯଥାଯୋଗ୍ୟ ବିନିଯୋଗ ପ୍ରଣାଳୀ ଅବଗତ ହୋଇପାରିଲେ ସଂସାରର କେତେ ଯେ ବିସ୍ମୟାବହ ମହୋପକାରକ କାର୍ଯ୍ୟ ସାଧିତ ହୁଅନ୍ତା ତାହା କରିହେବ ନାହିଁ । ରେଳ, ମୋଟର, ବ୍ୟୋମଯାନ ପ୍ରଭୃତି ହିଁ ଏହାର ନିଦର୍ଶନ । କି ପ୍ରାଣୀରାଜ୍ୟ କି ଜଡ଼ରାଜ୍ୟ ସର୍ବତ୍ର ତାପର ମହୋପାଦେୟତା ବିଶେଷ ରୂପେ ପରିଲକ୍ଷିତ ହେଉଅଛି ।

ତାପର ଅଭାବରେ ପ୍ରାଣୀ ବା ଉଦ୍ଭିଦ ରାଜ୍ୟର ଉତ୍ପତ୍ତି, ସ୍ଥିତି ଓ ଲୟ କାର୍ଯ୍ୟ ସାଧିତ ହୋଇପାରିବ ନାହିଁ; ତାପ ବିଶେଷ ଉପକାରୀ । ତାପ ଅଦୃଶ୍ୟ ଓ ଭାରବିହୀନ । ପ୍ରଜ୍ୱଳିତ ପ୍ରଦୀପ ଦେଖି ଉତ୍ତାପ ସ୍ଥିର କରାଯାଏ ନାହିଁ । ତାପ ନିବନ୍ଧନ ଭାରରେ କିଛି ବୈଲକ୍ଷଣ୍ୟ ହୁଏନାହିଁ ଅଥଚ ତାହାର ଉତ୍ତାପ ଉପଲବ୍ଧି ହୁଏ । ତାପର ସତ୍ତା ସ୍ପର୍ଶ, ଗ୍ରାହ୍ୟ ଓ ପ୍ରକ୍ରମାନୁମେୟ । ତାପ ଅନ୍ୟାନ୍ୟ ବସ୍ତୁରେ ଉପସଂକ୍ରାମିତ ହେଲେ, ବସ୍ତୁ ତାହା ଶୋଷଣ କରି ଯେତେବେଳେ ଅବସ୍ଥାନ୍ତର ବା ରୂପାନ୍ତର ପ୍ରାପ୍ତ ହୁଏ, ତେତେବେଳେ ତାହାର ପ୍ରକ୍ରମ ପରିଲକ୍ଷିତ ହୁଏ; ତେବେ ହିଁ ବିସ୍ତାରଣ, ତରଳୀକରଣ, ବାଷ୍ପୀକରଣ ପ୍ରଭୃତି କ୍ରିୟାର ଉପଲବ୍ଧି ହୁଏ ।

ତାପ ଅଳ୍ପାଧିକ ପରିମାଣରେ ସକଳ ପଦାର୍ଥରେ ନିହିତ ଥାଏ; ତୁଷାର ପିଣ୍ଡ ଅତିଶୀତଳ ହେଲେ ହେଁ ଏଥିରେ ସୁଦ୍ଧା ତାପ ରହିଅଛି; କାରଣ ତାପ ପରିମାପକ ଯନ୍ତ୍ରଦ୍ୱାରା ଏହା ନିର୍ଣ୍ଣୟ ହୋଇଅଛି ଯେ, ଶୀତପ୍ରଧାନ ଦେଶରେ ଗ୍ରୀଷ୍ମକାଳରେ ତୁଷାର ଯେତେ ଶୀତଳ ରହେ ଶୀତକାଳରେ ତଦପେକ୍ଷା ଅଧିକ ଶୀତଳ ଥାଏ । ତାପ ତରଳରେଖାରେ ଗତିକରେ ଏବଂ ଆଲୋକ ପରି ଏହା ଅନ୍ୟବସ୍ତୁରେ ପ୍ରତିଫଳିତ ବା ସଂକ୍ରାମିତ ହୋଇଥାଏ । କୌଣସି ବସ୍ତୁ ଏହାକୁ ଆତ୍ମସାତ୍ ବା ଶୋଷଣ କରେ; ଅନ୍ୟ କୌଣସି ବସ୍ତୁଦ୍ୱାରା ଏହା ପ୍ରତିଫଳିତ ହୁଏ । କୌଣସି ବସ୍ତୁଦ୍ୱାରା ମଧ୍ୟ ଏହି ତାପ ପରିଚାଳିତ, ପ୍ରସାରିତ ଓ ବିକୀରିତ ହୋଇଥାଏ । ସକଳସ୍ଥଳେ ତାପ ପ୍ରତ୍ୟକ୍ଷ ଗ୍ରାହ୍ୟ ଓ ପରିମେୟ । କୌଣସିସ୍ଥଳେ ଯେଉଁ ବସ୍ତୁ ତାପକୁ ଶୋଷଣ କରେ ସେହି ବସ୍ତୁ ଉତ୍ତପ୍ତ ହୁଏନାହିଁ କିମ୍ବା ଉତ୍ତପ୍ତ ହୋଇଥିବା ଦେଖାଯାଏ ନାହିଁ, ସେହି ସ୍ଥାନରେ ତାପ ଗୂଢ଼ । ଏହା ପ୍ରତ୍ୟକ୍ଷ ଗ୍ରାହ୍ୟ ନୁହେଁ, ଅନୁମିତି ଗ୍ରାହ୍ୟ ।

ସୁତରାଂ ତାପ ଦ୍ୱିବିଧ - ପ୍ରତ୍ୟକ୍ଷ ଗ୍ରାହ୍ୟ ଓ ଅନୁମାନ ଗ୍ରାହ୍ୟ Sensible and latent । ଯେଉଁ ପଦାର୍ଥରେ ତାପ ରହେ ସେହି ପଦାର୍ଥ ଉଷ୍ଣ ବୋଧହୁଏ ଏବଂ ତାହାକୁ ମଧ୍ୟ ତାପ କୁହାଯାଏ । ଏ ସ୍ଥଳେ ପ୍ରଶ୍ନ ଉଠିପାରେ ଯେ ତାପ ଗୂଢ଼ ଭାବେ କୌଣସି ପଦାର୍ଥରେ ରହିଲେ ସେହି ତାପ କାହିଁକି ତାପ ପଦବାଚ୍ୟ ନହେବ? ଅବଶ୍ୟ ହେବ, କାରଣ ସେଠାରେ ପୂର୍ବେ ତାହାର ଅସ୍ତିତ୍ୱ ଲକ୍ଷିତ ହୋଇଅଛି ଏବଂ ପରେ ସୁଦ୍ଧା ତାହାର ଅସ୍ତିତ୍ୱ ଅନୁଭୂତ ହୋଇଥାଏ; ସୁତରାଂ ସେ ଅବସ୍ଥାରେ ପ୍ରତ୍ୟକ୍ଷ ନହେଲେ ମଧ୍ୟ ଅନୁମାନ କରାଯାଇ ପାରେ ଯେ, ତାପ ସେଠାରେ ବିଦ୍ୟମାନ । ତାପ, ଆଲୋକ, ତଡ଼ିତ୍, ଏହି ବସ୍ତୁତ୍ରୟ ଏକ ପ୍ରକୃତିର ରୂପାନ୍ତର ମାତ୍ର । ଏହି ବସ୍ତୁତ୍ରୟର ମୂଳ ପଦାର୍ଥ ଇଥର୍ (Eather) । ଏହା ଅଣୁ ସକଳର ପରସ୍ପର ଅବାନ୍ତର ପ୍ରଦେଶରେ ପରିବ୍ୟାପ୍ତ ହୋଇ ଅବସ୍ଥାନ କରେ । ପ୍ରାଚୀନ ପଣ୍ଡିତଗଣ କହନ୍ତି ଯେ, ଯାହାର ଉଷ୍ଣସ୍ପର୍ଶ ଅଛି ତାହାର ନାମ ତେଜ ବା ଅଗ୍ନି । ପ୍ରାଚୀନ ୟୁରୋପୀୟଗଣ କହନ୍ତି, ଏହା ଏକ ପ୍ରକାର ସୂକ୍ଷ୍ମ ପଦାର୍ଥ; କିନ୍ତୁ ନବ୍ୟମାନେ କହନ୍ତି ତାପ ସ୍ୱତନ୍ତ୍ର ପଦାର୍ଥ ନୁହେଁ । ସେମାନେ ପ୍ରମାଣ ଦର୍ଶାଇ ଅଛନ୍ତି ଯେ ଜଡ଼ାତ୍ମକ ଅଣୁସମୂହର କମ୍ପନ ହିଁ ତାପ । ଜଡ଼ ପଦାର୍ଥର ପରମାଣୁ ସକଳ ଇଥରର୍ବା ଆକାଶ ନାମଧେୟ ବିଶ୍ୱବ୍ୟାପୀ ସୂକ୍ଷ୍ମପଦାର୍ଥ ପରିବେଷ୍ଟିତ, ତାହାର ଆନ୍ଦୋଳନରେ ଜଡ଼ ଦ୍ରବ୍ୟର ଅଣୁ ସକଳ ଆନ୍ଦୋଳିତ ହେଲେ ତାପ ଉତ୍ପନ୍ନ ହୁଏ ।

ତାପର ପ୍ରକୃତ ତଥ୍ୟ ସମ୍ବନ୍ଧେ ପ୍ରଚଳିତ ଉପରୋକ୍ତ ମତଦ୍ୱୟ ପ୍ରଧାନ, କିନ୍ତୁ ଶେଷୋକ୍ତ ମତଟି ସର୍ବତ୍ର ସମାଦୃତ ।

(୧) ତାପ ଗୋଟିଏ ସୂକ୍ଷ୍ମତମ ଅଦୃଶ୍ୟ ତରଳ ପଦାର୍ଥ ବା ଇଥର୍ (Ether) । ଏହା ସକଳ ସ୍ଥାନରେ ସକଳ ବସ୍ତୁ ସହିତ ଅବସ୍ଥାନ କରେ ଏବଂ ପ୍ରୟୋଜନବଶତଃ ପୁଣି ସେହି ସକଳ ବସ୍ତୁରୁ ପୃଥକ୍ ହୋଇପାରେ । ଏହିପରି ସଂଯୋଗରେ ଏବଂ ବିଯୋଗରେ ତାପର ଚାଳନ ପ୍ରଭୃତି କ୍ରିୟା ପରିଲକ୍ଷିତ ହୋଇଥାଏ ।

(୨) ତାପ ଅଣୁସକଳର କମ୍ପନକୁ ଜାତ । ଯେବେ କୌଣସି ବସ୍ତୁର ଅଣୁସକଳ କମ୍ପିତ ହୋଇଥାଏ ତେବେ ତାହାକୁ ସ୍ପର୍ଶ କଲେ ସେହି କମ୍ପନ ଶରୀରର ସ୍ନାୟୁରେ ଲାଗି ଆଘାତ କରେ ଏବଂ ତଦ୍ୱାରା ହିଁ ଉଷ୍ଣ ସ୍ପର୍ଶାନୁଭବ ହୁଏ; ଅପିଚ ସେହି କମ୍ପନ ଯେ କେବଳ ଅଣୁସକଳରେ ଅବସ୍ଥାନ କରେ ତାହା ନୁହେଁ । ସେହି ଅଣୁସକଳର ଅବସ୍ଥାନ୍ତର ପ୍ରଦେଶସ୍ଥିତ ଇଥର ମଧ୍ୟରେ ସୁଦ୍ଧା ରହେ । ଏହି ମତଟି ଯୁକ୍ତିଯୁକ୍ତ ବୋଲି ସ୍ୱୀକୃତ ହୋଇଅଛି; କାରଣ ଏହି ସଂସାରରେ ଯେତେ ପଦାର୍ଥ ଚକ୍ଷୁଗୋଚର ହେଉଅଛି, ପ୍ରକୃତରେ ବିଚାର କଲେ ସେ ସକଳ ଅନବଚ୍ଛିନ୍ନ ଗତିଶୀଳ ।

ତାପର ଉତ୍ପତ୍ତି ସ୍ଥାନ (Sources of heat) ବିୟତ୍ ବିସ୍ତୃତ । ସକଳପ୍ରକାର ତାପ ପ୍ରଭାବ ପଦାର୍ଥ ମଧ୍ୟରେ ସୂର୍ଯ୍ୟ ପ୍ରଧାନ । ସୂର୍ଯ୍ୟର ତାପ ପୃଥିବୀରେ ପଡ଼େ । ତାପଦ୍ୱାରା

ଜଗତର ସମୁଦାୟ କାର୍ଯ୍ୟ ସାଧିତ ହୁଏ । ଗ୍ରୀଷ୍ମକାଳରେ ଅଧିକ ତାପ ଅନୁଭୂତ ହୁଏ । ଉଦ୍ଭିଦଗଣର ପରିବର୍ଦ୍ଧନାଦିରୁ ତାପର କ୍ରିୟା ଲକ୍ଷିତ ହୁଏ । ତାପ ପୃଥିବୀରେ ପଡ଼ି ପୃଥିବୀ ଏବଂ ତତ୍ରସ୍ଥ ପଦାର୍ଥ ସକଳକୁ ଉତ୍ତପ୍ତ କରେ; କିନ୍ତୁ ପୃଥିବୀର ଅଭ୍ୟନ୍ତରକୁ କେତେକ ହାତ ପରିମାଣ ମାତ୍ର ଭେଦ କରିଥାଏ; ଅତଏବ ଅନେକ ଦେଶରେ ଏହି ତାପରୁ ନିସ୍ତାର ପାଇବା ଲାଗି ଭୂମିର ବହୁ ନିମ୍ନ ପ୍ରଦେଶରେ ଲୋକେ ଗୃହ ନିର୍ମାଣ କରି ବାସ କରନ୍ତି । ରେଳପଥରେ ଯେଉଁ ସ୍ଥାନରେ ରେଲର ପରସ୍ପର ସଂଯୋଗ ହୁଏ, ଗ୍ରୀଷ୍ମକାଳରେ ସେହି ସ୍ଥଳରେ ତାପାଧିକରୁ ସମୟ ପରିସରଣ ଚିନ୍ତା ହିଁ ବ୍ୟତିବ୍ୟସ୍ତ କରିଥାଏ । ତାପ ପ୍ରସରି ପୃଥିବୀରେ ନାନାବିଧ ଫଳ ପରିପକ୍ୱ କରିଥାଏ । ଏହି ସମୟରେ ତାପର ଆଧିକ୍ୟ ହେତୁ ପରିଶୋଷଣ କ୍ରିୟାର ବିଶେଷ ଲକ୍ଷଣ ଦେଖିବାକୁ ମିଳେ; କୂପ ତଡ଼ାଗ ପ୍ରଭୃତି ଶୁଷ୍କ ହୋଇଯାଏ । ସୂର୍ଯ୍ୟଙ୍କ ବ୍ୟତୀତ ସଂଘର୍ଷଣ (Friction), ପେଷଣ, ସଂଘଟନ (Pureussion), ରାସାୟନିକ କ୍ରିୟା ପ୍ରଭୃତିରୁ ମଧ୍ୟ ତାପର ଉତ୍ପତ୍ତି ।

ତଡ଼ିତ୍ ଓ ଦହନ ଉକ୍ତ ରାସାୟନିକ କ୍ରିୟାର ଅନ୍ୟ ପରିଣତି ମାତ୍ର; ଏହି ସକଳରୁ ତାପ ଉତ୍ପନ୍ନ ହୁଏ । ପଦାର୍ଥ ଦ୍ୱୟର ପରସ୍ପର ସଂଗ୍ରହଣରେ ତାପର ଉତ୍ପତ୍ତି ।

ଏଥିଲାଗି ହିଁ ଗାଡ଼ିର ଚକରେ ଚର୍ବି ଦିଆଯାଏ; ବଂଶର ପରସ୍ପର ସଂଘର୍ଷଣରେ ଦାବାଗ୍ନି ଉତ୍ପନ୍ନ ହୁଏ ।

**ସଂଘଟନ** : ସଂଘର୍ଷଣ ଓ ପେଷଣ ଏ ଉଭୟର ଏକତ୍ର ହିଁ ସଂଘଟନ; ଚକମକି ପଥରର ପରସ୍ପର ଆଘାତରେ ଅଗ୍ନି ଜାତ ହୁଏ; କର୍ମକାର ହାତୁଡ଼ିରେ ଲୌହକୁ ପିଟିବାବେଳେ ଲୌହ ଉତ୍ତପ୍ତ ହୋଇଥାଏ ।

**ରାସାୟନିକ ପ୍ରକ୍ରିୟା** : ଦ୍ରବ୍ୟରେ ଦ୍ରବ୍ୟ ମିଳିତ ହୋଇ ଯେଉଁ ନୂତନ ପ୍ରକାର ବସ୍ତୁ ସୃଷ୍ଟି ହୁଏ, ତାହାକୁ ରାସାୟନିକ କ୍ରିୟା କହି । ଅନେକ ସମୟରେଏଥିରୁ ଅଗ୍ନି ଉତ୍ପନ୍ନ ହୋଇଥାଏ; କିନ୍ତୁ ସବୁସ୍ଥଳରେ ପ୍ରତ୍ୟକ୍ଷ ନହେଲେ ସୁଦ୍ଧା ଚୂନରେ ଜଳ ଯୋଗକଲେ, ଜଳ ସଙ୍ଗେ ଗନ୍ଧକଦ୍ରାବକ ମିଶ୍ରିତ କଲେ ତାପୋଦ୍ଗମ ପ୍ରତ୍ୟକ୍ଷ ହୁଏ; ଜଳରେ ପଟାସ୍ ଦେଲେ ଜଳି ଉଠେ, ପ୍ରଦୀପ ଜ୍ୱଳନ ରାସାୟନିକ କ୍ରିୟାର ଅନ୍ୟତମ ଉଦାହରଣ ।

ପୂର୍ବେ କହିଅଛୁଁ ତାପ ଦ୍ୱିବିଧ- ପ୍ରତ୍ୟକ୍ଷ ଗ୍ରାହ୍ୟ ଓ ଗୂଢ଼ ବା ଅନୁମିତି ଗ୍ରାହ୍ୟ । ପ୍ରତ୍ୟକ୍ଷ ଗ୍ରାହ୍ୟ ତାପସ୍ପର୍ଶ ଶକ୍ତିଦ୍ୱାରା ଅନୁଭୂତ ହୁଏ; ଅନ୍ୟଟି ପରୀକ୍ଷା କରିବାକୁ ଗଲେ ତାପମାନ ଯନ୍ତ୍ର ଆବଶ୍ୟକ । ତୁଷାର ପିଣ୍ଡର ସ୍ପର୍ଶରେ ଶୀତଳ ଅନୁଭୂତ ହୁଏ; କିନ୍ତୁ ସେହି ଶୈତ୍ୟର ପରିମାଣ ତାପପରିମାପକ ଯନ୍ତ୍ର ବ୍ୟତୀତ ସ୍ଥିର କରାଯାଇ ନପାରେ ।

ଇନ୍ଦ୍ରିୟଦ୍ୱାରା ସୂକ୍ଷ୍ମତତ୍ତ୍ୱ ଅନୁଭବ କରିବା ଉପାୟ ନାହିଁ; ଜଗତରେ ଇନ୍ଦ୍ରିୟଜ୍ଞାନଗମ୍ୟ ବସ୍ତୁର ସୁଦ୍ଧା ଅଭାବ ନାହିଁ ।

**ଉଷ୍ଣତା ଓ ଶୈତ୍ୟ :** ଶୀତ ଓ ଉଷ୍ଣ ମଧ୍ୟରେ ବିଶେଷ କିଛି ପ୍ରଭେଦ ଦେଖାଯାଏ ନାହିଁ । ଏକ ବସ୍ତୁର ତୁଳନାରେ ଯାହା ଉଷ୍ଣ, ଅନ୍ୟ ବସ୍ତୁର ତୁଳନାରେ ତାହା ଶୀତଳ । ତାପନିବନ୍ଧନ ଜଡ଼ ବସ୍ତୁର ପ୍ରସାରଣ ମାତ୍ର । ତାପ ସଂସ୍ପର୍ଶରେ ସକଳ ଜଡ଼ବସ୍ତୁ ପ୍ରସାରିତ ହୁଏ; ପରମାଣୁ ସକଳ ପରସ୍ପର ଦ୍ରବୀଭୂତ ହୁଏ ।

**ତାପର ଫଳ :** ଘନ, ତରଳ ବା ବାଷ୍ପୀୟ ଯେକୌଣସି ପଦାର୍ଥ ତାପଯୋଗେ ପ୍ରସାରିତ ଓ ଶୈତ୍ୟ ଯୋଗେ ସଂକୋଚିତ ହୁଏ । ଏହି ପ୍ରସାରଣ କ୍ରିୟା ଘନ ପଦାର୍ଥ ଅପେକ୍ଷା ତରଳ ପଦାର୍ଥରେ ଅଧିକ ଏବଂ ବାଷ୍ପୀୟ ପଦାର୍ଥରେ ସର୍ବାପେକ୍ଷା ଅଧିକ ପରିଲକ୍ଷିତ ହୁଏ । ପଦାର୍ଥର ଅଣୁସକଳ ଯେତିକି ଶିଥିଳ ହୁଏ ପ୍ରସାରଣ ସେତିକି ବୃଦ୍ଧି ହୁଏ; କିନ୍ତୁ କୌଣସି ନିର୍ଦ୍ଦିଷ୍ଟ ପରିମାଣର ତାପରେ ସକଳ ପଦାର୍ଥର ପ୍ରସାରଣ ସମାନ ଭାବରେ ହୁଏନାହିଁ । ଘନପଦାର୍ଥର ପ୍ରସାରଣ ଏତେ ଅଳ୍ପ ଯେ ନଗ୍ନଚକ୍ଷୁରେ ତାହା ଦେଖିବା ସହଜ ବ୍ୟାପାର ନୁହେଁ ।

ତରଳ ପଦାର୍ଥର ପ୍ରସାରଣ ଅପେକ୍ଷା ବାଷ୍ପୀୟ ପଦାର୍ଥର ପ୍ରସାରଣ ୧୩ ଗୁଣ ଅଧିକ । ଏହି ବାଷ୍ପୀୟ ପଦାର୍ଥର ପ୍ରସାରଣଦ୍ୱାରା ମାନବଜୀବନର କେତେ ଯେ ହିତ ସାଧିତ ହୁଏ, ତାହା ବର୍ଣ୍ଣନାତୀତ । ମାନବ କାହିଁକି ଏହାର ଅଭାବରେ କୌଣସି ଜୀବ ବଞ୍ଚିରହିପାରିବ ନାହିଁ । ଉକ୍ତ ପ୍ରସାରଣ ବାୟୁରେ ନ ରହିଲେ ତାହାର ଅଭାବରେ ମାନବର ଜୀବନଧାରଣ ଅସମ୍ଭବ ହୁଅନ୍ତା । ଜୀବଜଗତ ଯେଉଁ ବାୟୁ ପ୍ରଶ୍ୱାସଦ୍ୱାରା ତ୍ୟାଗ କରେ ତାହା ପ୍ରସାରଣ ଗୁଣରେ ସଙ୍ଗେ ସଙ୍ଗେ ଉର୍ଦ୍ଧ୍ୱଗତ ନହୋଇ ପୁନଶ୍ଚ ସେହି ଅପରିଷ୍କୃତ ବାୟୁ ଯଦି ନିଶ୍ୱାସଦ୍ୱାରା ଗ୍ରହଣ କରାଯାନ୍ତା ତାହାହେଲେ ସେହି ବାୟୁ ପ୍ରାଣୀମାନଙ୍କର ଜୀବନ ସଂହାର କରନ୍ତା । ମୃଦୁମଳୟ ମାରୁତଠାରୁ ପ୍ରଚଣ୍ଡ ବାତ୍ୟା ପର୍ଯ୍ୟନ୍ତ ସକଳ ବାୟୁର ଗତିରେ ଏହି ପ୍ରସାରଣ ଦେଖାଯାଏ । ଏହି ବାୟୁର ଗତି ବ୍ୟତିରେକେ ମେଘ ସଂଚାରିତ ହୋଇପାରନ୍ତା ନାହିଁ । ଅତଏବ ପୃଥିବୀର ସକଳ ସ୍ଥଳରେ ସମ୍ୟକ୍ ବୃଷ୍ଟିପାତ ହୁଅନ୍ତା ନାହିଁ ଏବଂ ଶସ୍ୟ ଉତ୍ପନ୍ନ ହୁଅନ୍ତା ନାହିଁ । ଜଗତର ଅଧିକାଂଶ ସ୍ଥଳ ମରୁଭୂମିରେ ପରିଣତ ହୁଅନ୍ତା । କିନ୍ତୁ ମଙ୍ଗଳମୟଙ୍କ ବିଚିତ୍ର ବିଧାନରୁ ତାପ ପ୍ରସରି ଶସ୍ୟଶ୍ୟାମଳା ଧରଣୀର ସଂବୃଦ୍ଧିରେ ବିପର୍ଯ୍ୟୟ ଘଟୁନାହିଁ ।

ତାପ, ପଦାର୍ଥକୁ ଘନ, ତରଳ ଓ ବାଷ୍ପୀୟ ଏହି ତିନି ଅବସ୍ଥାରେ ପରିଣତ କରେ । ଏହାହିଁ ତାପର କ୍ରିୟା ।

ପଦାର୍ଥ ତାପର ସଂକ୍ରମଣରେ ଘନରୁ ତରଳ, ତରଳରୁ ବାଷ୍ପୀୟ, ଏବଂ ତାପର ଅବସରଣରେ ବାଷ୍ପୀୟରୁ ତରଳ, ତରଳରୁ ଘନ ଅବସ୍ଥାରେ ପରିଣତ ହୁଏ । ବରଫ, ଜଳ ଓ ଜଳୀୟବାଷ୍ପ ଏକ ଉପାଦାନ ମାତ୍ର । ତାପଭେଦରେ କେବଳ ଅବସ୍ଥାତ୍ରୟରେ ପରିଣତ ହୁଏ ।

ଲୌହ କଠିନ ହେଲେ ସୁଦ୍ଧା, ଉପଯୁକ୍ତ ତାପ ଯୋଗେ ତରଳେ । ସକଳପ୍ରକାର ତରଳ ପଦାର୍ଥରେ ତାପ ଦେଲେ ବାଷ୍ପରେ ପରିଣତ ହୁଏ । ସକଳ ପଦାର୍ଥକୁ ତରଳ କରି ହୁଏ ନାହିଁ,

କିନ୍ତୁ ତରଳ ହେବା ଯେ ଅସମ୍ଭବ ତାହା କଦାପି ନୁହେଁ । ଅବଶ୍ୟ ଉତ୍କୃଷ୍ଟ ଉପାୟ ଅବଲମ୍ବନ କଲେ ଯେକୌଣସି ପଦାର୍ଥ ତରଳ ହୋଇପାରେ । ସଂସାରରେ ଯତ୍ନ ଓ ଅଧ୍ୟବସାୟର ଅସାଧ୍ୟ କିଛି ନାହିଁ । ଅଙ୍ଗାର ଓ କତିପୟ ଧାତବ ପଦାର୍ଥ ସାଧାରଣ ବହ୍ନିରେ ତରଳେ ନାହିଁ, କିନ୍ତୁ ଯେକୌଣସି ପଦାର୍ଥ ତଡ଼ିତାଗ୍ନିର ତାପରେ ନିଶ୍ଚୟ ତରଳ ହୋଇ ବାଷ୍ପରେ ପରିଣତ ହେବ ।

ତରଳ ପଦାର୍ଥ ଦୁଇ ପ୍ରକାରେ ବାଷ୍ପୀଭୂତ ହୁଏ; ସାଧାରଣ ତାପକ୍ରମେ ଉଦ୍ଗମଶୀଳ ତରଳ ପଦାର୍ଥ ସକଳ ଅନାବୃତ ଅବସ୍ଥାରେ ଉପରିଭାଗରୁ କ୍ରମଶଃ ବାଷ୍ପରେ ପରିଣତ ହୋଇ ତାପର କ୍ରମବୃଦ୍ଧିରେ ବୃଦ୍ଧି ହୁଏ; କୌଣସି ଜଳପୂର୍ଣ୍ଣ ପାତ୍ର ଅନାବୃତ ରଖିଲେ କ୍ରମେ ନ୍ୟୂନ ହୋଇ ନିଃଶୋଷିତ ହୁଏ । ଗ୍ରୀଷ୍ମକାଳରେ ଜଳାଶୟାଦି ମଧ୍ୟ ଶୁଷ୍କ ହୋଇଯାଏ । ଏହି ପ୍ରକ୍ରିୟାକୁ ଉତ୍ଶୋଷଣ (Evaporation) କୁହାଯାଏ । ତାପ ସଂଯୋଗରେ କୌଣସି ତରଳ ପଦାର୍ଥର ସମସ୍ତ ଅଂଶ ବାଷ୍ପରେ ପରିଣତ ହୋଇ ଅଧଃଭାଗରୁ ହରିତ ଉଦ୍ଗତ ହେଲେ ତାହାକୁ 'ସ୍ଫୁଟନ' କୁହାଯାଏ । ଏହା ପ୍ରତ୍ୟକ୍ଷୀଭୂତ ବ୍ୟାପାର । କିନ୍ତୁ ଉତ୍ଶୋଷଣ ସବୁ ସମୟରେ ଦେଖାଯାଏ ନାହିଁ ।

ତରଳ ପଦାର୍ଥ ବାଷ୍ପରେ ପରିଣତ ହେବାପାଇଁ ସକଳ ସମୟରେ ସମାନ ତାପ ଆବଶ୍ୟକ ହୁଏ ନାହିଁ, ଭୂବାୟୁର ପେଷଣରେ ନ୍ୟୂନାଧିକରେ ତାପର ହ୍ରାସ ବୃଦ୍ଧି ନିର୍ଭର କରେ । ଭୂବାୟୁର ପେଷଣ ଯେତେବେଳେ ନଥାଏ ସେତେବେଳେ ଜଳ, ଆଲକାହଲ୍ ପ୍ରଭୃତି କୌଣସି ତରଳ ପଦାର୍ଥ ନିମନ୍ତେ ତାପ ଆଦୌ ଆବଶ୍ୟକ ହୁଏ ନାହିଁ । ଗୋଟିଏ ଜଳପୂର୍ଣ୍ଣ ପାତ୍ର ବାୟୁ ନିଷ୍କାସକ ଯନ୍ତ୍ରର ମଧ୍ୟରେ ରଖି ଭିତର ଶୂନ୍ୟ କରିଦେଲେ ଜଳ ସ୍ୱତଃ ଫୁଟିଥାଏ; ସଚରାଚର ୧୦୦ଡିଗ୍ରୀ ତାପକ୍ରମେ ଜଳଫୁଟି ଉଠେ, କିନ୍ତୁ ଉଚ୍ଚ ପର୍ବତ ଉପରେ ଭୂବାୟୁର ପେଷଣ ଅପେକ୍ଷାକୃତ ଅଳ୍ପ ଥିବା ହେତୁ ୮୦ ବା ୮୫ ଡିଗ୍ରୀରେ ଜଳ ଫୁଟି ଉଠେ ।

ଏତଦ୍ଭିନ୍ନ ତାପର ଅନେକ କ୍ରିୟା ଅଛି, ତାପ ରାସାୟନ ସଂଯୋଗ ଓ ବିଯୋଗର ଗୋଟିଏ ପ୍ରଧାନ ଉତ୍ତୋଳକ । ଭୂତଳସ୍ଥ ଦ୍ରବ୍ୟସକଳ ବାୟୁରାଶିର ଚାପରେ ସମାକ୍ରାନ୍ତ ହୁଏ; ସାଗର ପୃଷ୍ଠରେ ବାୟୁରାଶିର ଚାପ ପ୍ରାୟ ୩୦ ଇଞ୍ଚର ସମାନ; ଏହି ୩୦ ଇଞ୍ଚ ଚାପର ଉଷ୍ଣତାରେ ବରଫ ଦ୍ରବ ହୁଏ; କିନ୍ତୁ ଅଧିକ ତାପଯୁକ୍ତ ହୋଇ, ସମଧିକ ଉଷ୍ଣ ନହେଲେ ଦ୍ରବ ହୁଏ ନାହିଁ । ଦ୍ରବଣଶୀଳ ବସ୍ତୁରେ ଯେତେ ତାପ ପ୍ରୟୋଗ କଲେ ମଧ୍ୟ ତା'ର ଉଷ୍ଣତା ବୃଦ୍ଧି ହୁଏ ନାହିଁ । ଦ୍ରବୀଭୂତ ହେଲେ ଦ୍ରବ୍ୟାଦିର ଆୟତନ ବୃଦ୍ଧି ପାଏ । ୧୦୦ ଘନଇଞ୍ଚ ପରିମାଣର ଗନ୍ଧକ ତରଳିଲେ ୧୦୫ ଘନଇଞ୍ଚ ହୁଏ; କିନ୍ତୁ ବରଫ ତରଳିଲେ ଓ ଜଳ ଘନ ହେଲେ ପ୍ରସାରିତ ହୁଏ, ଅନ୍ୟାନ୍ୟ ତରଳ ଦ୍ରବ୍ୟ ଘନ ହେଲେ ଭାରିହୁଏ । କିନ୍ତୁ ଜଳ ଜମି ବରଫ ହେଲେ ଲଘୁ ହୁଏ । ଏଣୁ ବରଫ ଜଳ ଉପରେ ଭାସେ ।

ଜଳ ଜମିବା ସମୟେ ବିସ୍ତୃତ ହୁଏ, ଶୀତପ୍ରଧାନ ଦେଶରେ ନଦ, ନଦୀ, ହ୍ରଦ, ସମୁଦ୍ର ପ୍ରଭୃତିର ଜଳ ଜମି ବରଫ ହେଲେ ଜଳ ଉପରେ ଭାସେ, ନିମ୍ନେ ୪୦'' ପ୍ରମାଣ ଉଷ୍ଣଜଳ

ଥିଲେ ମତ୍ସ୍ୟାଦି ଜଳଚର ଜୀବଗଣ ମରନ୍ତି ନାହିଁ । ଜଳ ଘନୀଭୂତ ହୋଇ ବରଫ ହେଲେ ତାହାର ଆୟତନର ବୃଦ୍ଧି ସଙ୍ଗେ ସଙ୍ଗେ ପ୍ରସାରଣ ଶକ୍ତି ମଧ୍ୟ ବିଲକ୍ଷଣ ବୃଦ୍ଧି ହୋଇଥାଏ ।

ଗୋଟିଏ ଜଳପୂର୍ଣ୍ଣ ଲୌହ ବୋତଲର ମୁଖ ବନ୍ଦ କରି କୌଣସି ଅତି ଶୀତଳ ପଦାର୍ଥ ମଧ୍ୟରେ କିଛିକାଳ ରଖାଗଲେ ବୋତଲ ମଧ୍ୟସ୍ଥିତ ଜଳ ବରଫରେ ପରିଣତ ହୁଏ, ଏବଂ ଉକ୍ତ ସମୟରେ ଏହା ଏତେ ପ୍ରବଳ ବେଗରେ ପ୍ରସାରିତ ହୁଏ ଯେ ଉକ୍ତ ଲୌହପାତ୍ର ବିଦୀର୍ଣ୍ଣ ହୋଇଯାଏ ।

ପର୍ବତ ଉପରେ ଯେଉଁ ବୃଷ୍ଟି ଜଳ ପଡ଼େ, ସେଥିର କିୟଦଂଶ ଛିଦ୍ରଦେଇ ପର୍ବତ ମଧ୍ୟରେ ବିଷ୍ଟ ହୁଏ; ପରେ ଶୀତକାଳରେ ଯେତେବେଳେ ତାହା ତୁଷାରରେ ପରିଣତ ହୋଇ ପ୍ରସାରିତ ହୁଏ ତେତେବେଳେ ପ୍ରସ୍ତରଖଣ୍ଡ ବିଦୀର୍ଣ୍ଣ ହୁଏ ।

ସୁରାସାର, ଜଳ, ତାର୍ପେନ୍‌ଟାଇନ୍ (Tarpantine) ଓ ପାରଦ ଏହି କେତୋଟି ତରଳ ପଦାର୍ଥ ଫୁଟାଇବାକୁ ହେଲେ ସେଗୁଡ଼ିକୁ ଯଥାକ୍ରମେ 'ଫାରେନ୍‌ଟ୍‌ର' ୨୭୩, ୩୨୬ ଓ ୬୬ ଡିଗ୍ରୀ ପରିମାଣରେ ତାପ ଆବଶ୍ୟକ ହୁଏ ।

ପରୀକ୍ଷାଦ୍ୱାରା ନିରୂପିତ ହୋଇଅଛି ଯେ, ପ୍ରତି ୫୩୦ ଫୁଟ ଉର୍ଦ୍ଧ୍ୱରେ ଫାରେନ୍‌ହିଟ୍‌ର ୧ ଅଂଶ ହାରରେ ଫୁଟନ ବିନ୍ଦୁର ହ୍ରାସ ହୁଏ, ପର୍ବତାଦିର ଉଚ୍ଚତା ନିରୂପଣ କରିବାର ଏହା ଗୋଟିଏ ଉପାୟ ।

ଯୁଡ଼ିକୋଲେନ୍, ଇଥର ପ୍ରଭୃତି ଶୀଘ୍ର ବାଷ୍ପରେ ପରିଣତ ହୁଏ । ଏହି ବସ୍ତୁ ସଂସ୍ପର୍ଶରେ ଶରୀର ଶୀତଳ ହୁଏ, କାରଣ ଏଗୁଡ଼ିକ ବାଷ୍ପ ହେବା ସମୟେ ଶରୀରଠାରୁ ତେଜ ଗ୍ରହଣ କରେ; ବୃଷ୍ଟି ପରେ ପବନ ଶୀତଳ ହୁଏ, ଯେହେତୁ ବୃଷ୍ଟିସମ୍ଭୂତ ଜଳକଣା ସକଳ ଭୂମି ଓ ବାୟୁଠାରୁ ତେଜ ଗ୍ରହଣ କରି ବାଷ୍ପ ହୁଏ । ଗ୍ରୀଷ୍ମକାଳରେ ମୃତ୍ତିକା ପାତ୍ରରେ ଜଳ ରଖିଲେ ଅପେକ୍ଷାକୃତ ଶୀତଳ ହୁଏ, କାରଣ ପାତ୍ରର ଛିଦ୍ରଦ୍ୱାରା ଜଳକଣା ସକଳ ବହିର୍ଗତ ହୋଇ ବାଷ୍ପରେ ପରିଣତ ହେବା ସମୟରେ ଅଭ୍ୟନ୍ତରସ୍ଥ ଜଳଠାରୁ ତେଜ ଗ୍ରହଣ କରେ । ଉକ୍ତ ପାତ୍ର ପବନରେ ରଖିଲେ ଅତି ଶୀତଳ ହୁଏ । ଦାରୁଣ ନିଦାଘର ତପ୍ତ ମଧ୍ୟାହ୍ନରେ ସୁଦ୍ଧା ହର୍ମ୍ମ୍ୟାଭ୍ୟନ୍ତରେ ଜଳସିକ୍ତ ଉଶୀର ବ୍ୟଜନ ସଞ୍ଚାଳନଜନିତ ବାୟୁଦ୍ୱାରା ଶୈତ୍ୟ ସୁଖାନୁଭବ ହୋଇଥାଏ । ଜଳ ବାଷ୍ପରେ ପରିଣତ ହେବା ସମୟରେ ତେଜ ପରିଗ୍ରହ କରିବା ହିଁ ଏହାର ପ୍ରଧାନ କାରଣ ।

**ତାପ ସଞ୍ଚାଳନ** : ପରିଚାଳନ, ପରିବାହନ ଓ ବିକିରଣ ଏହି ତିନିପ୍ରକାରେ ତାପ ସ୍ଥାନାନ୍ତରିତ ହୁଏ । ଲୌହଦଣ୍ଡର ଏକ ପ୍ରାନ୍ତରେ ଅଗ୍ନି ସଂଯୋଗ କଲେ ଅପର ପ୍ରାନ୍ତକୁ ତାପ ସଞ୍ଚରେ । ଯେଉଁ ଗୁଣର ବର୍ତ୍ତମାନରେ ଜଡ଼ବସ୍ତୁର ପରମାଣୁ ସକଳରେ ଏହିପରି ତାପ ସଞ୍ଚରେ ତାହାକୁ ପରିଚାଳକତା କହି ଏବଂ ଯେଉଁ କ୍ରିୟାଦ୍ୱାରା ଅଣୁରୁ ଅଣ୍ୱନ୍ତରେ ତାପ ସଞ୍ଚାଳିତ ହୁଏ ତାହାର ନାମ ପରିଚାଳନ । ଯେଉଁ ସକଳ ବସ୍ତୁ ତାପ ପରିଚାଳନକ୍ଷମ ସେଗୁଡ଼ିକୁ ତାପ ପରିଚାଳକ ବୋଲାଯାଏ ।

**ତାପ ପରିବହନ** : ତରଳ ବା ବାୟବୀୟ ଦ୍ରବ୍ୟ ସକଳର ଅଭ୍ୟନ୍ତରେ ତେଜ ପ୍ରବେଶ କରିପାରେ ନାହିଁ । ଅତଏବ କୌଣସି ଜଳପୂର୍ଣ୍ଣ ପାତ୍ରର ଉର୍ଦ୍ଧ୍ୱ ଦେଶରେ ତାପ ପ୍ରୟୋଗ କଲେ ତଦ୍ଦ୍ୱାରା ନିମ୍ନସ୍ଥ ଜଳ କିଛି ଉଷ୍ଣ ହୁଏ ନାହିଁ ।

**ତାପ ବିକିରଣ** : କୌଣସି ଧାତୁ ଉପରେ ଗୋଟିଏ ଅୟଃପିଣ୍ଡ ସ୍ଥାପନ କରାଗଲେ ତାହାର କିୟଦଂଶ ତାପାଧାର ଦ୍ରବ୍ୟଦ୍ୱାରା ପରିଚାଳିତ ହୁଏ; ଅନ୍ୟ କେତେକାଂଶ ଚତୁପାର୍ଶ୍ୱସ୍ଥ ବାୟୁଦ୍ୱାରା ପ୍ରଭାବିତ ହୁଏଏବଂ ଅବଶିଷ୍ଟ ଅଂଶ ବିକିରଣ ଯୋଗେ ଚତୁର୍ଦ୍ଦିଗରେ ବିକ୍ଷିପ୍ତହୋଇ ପାର୍ଶ୍ୱବର୍ତ୍ତୀ ଦ୍ରବ୍ୟଦ୍ୱାରା ପରିଗୃହୀତ ହୁଏ । ଅତଏବ ଉକ୍ତ ପିଣ୍ଡଟି କ୍ରମଶଃ ଶୀତଳ ହୋଇ ଚତୁର୍ଦ୍ଦିଗସ୍ଥ ବାୟୁତୁଲ୍ୟ ଉଷ୍ଣ ହୋଇଯାଏ ।

ଉପରୋକ୍ତ ପ୍ରକ୍ରିୟାଦ୍ୱାରା ସକଳ ଦ୍ରବ୍ୟର ତେଜ କିରଣ ରୂପେ ଚତୁର୍ଦିଗରେ ବିଚ୍ଛୁରିତ ହୋଇଥାଏ, ଏହାକୁ ବିକୀରଣ ବୋଲାଯାଏ ।

ଏହି ବିକୀର୍ଣ୍ଣ ଶକ୍ତି ଶିଶିର ଉତ୍ପତ୍ତିର ପ୍ରଧାନ କାରଣ, ରାତ୍ରିରେ ଭୂତଳସ୍ଥ ବସ୍ତୁସକଳ ତେଜ ବିସ୍ତାର କରି ବାୟୁରାଶି ଅପେକ୍ଷା ସମଧିକ ଶୀତଳ ହେଲେ ଚତୁଃପାର୍ଶ୍ୱସ୍ଥ ବାୟୁ ଅନ୍ତର୍ଗତ ଜଳୀୟବାଷ୍ପର କିୟଦଂଶ ଘନୀଭୂତ ହୋଇ ଶିଶିର ବିନ୍ଦୁ ରୂପେ ପଦାର୍ଥ ସକଳର ଉପରି ଭାଗରେ ବିନ୍ୟସ୍ତ ରହେ ।

**ତାପର ଉତ୍ପତ୍ତି ସ୍ଥାନ** : ଜଡ଼ଦ୍ରବ୍ୟର ପରସ୍ପର ସଂଘର୍ଷଣରେ ତାପ ଉତ୍ପନ୍ନ ହୁଏ । ପୁରାକାଳରେ ଆର୍ଯ୍ୟଗଣ ଅରଣୀ ଘର୍ଷଣ ଦ୍ୱାରା ଅଗ୍ନି ଉତ୍ପାଦନ କରନ୍ତି; ଅସଭ୍ୟମାନେ କାଠରେ କାଠ ଘଷି ଅଗ୍ନିଜାତ କରନ୍ତି । ଚକମକି ପଥର ଓ ଇସ୍ପାତ (ଅଙ୍ଗାଇତ)ର ପରସ୍ପର ଘାତ ପ୍ରତିଘାତରେ ଇସ୍ପାତ ରେଣୁଗୁଡ଼ିକ ଅଗ୍ନିମୟ ହୋଇ ଚତୁର୍ଦ୍ଦିଗେ ବିକ୍ଷିପ୍ତ ହୁଏ; ନିଆଁ କାଠି ଘଷିଲେ ଅଗ୍ନି ବାହାରିଥାଏ । ବରଫଖଣ୍ଡ ଅତି ଶୀତଳ ହେଲେ ମଧ୍ୟ ଘର୍ଷଣ କଲେ ଉଷ୍ଣ ହୋଇଥାଏ ।

**ସଙ୍କୋଚନ** : ଯେପରି ତାପ ଅପଗତ ହେଲେ ବସ୍ତୁ ସକଳ ସଙ୍କୁଚିତ ହୁଏ,ସେହିପରି ସଙ୍କୁଚିତ ହେଲେ ତାପ ଉତ୍ପନ୍ନ ହୁଏ; ଅକୁଞ୍ଚିତ ହେଲେ ଆୟତନର ଯେପରି ହ୍ରାସ ହୁଏ ଉଷ୍ଣତାରେ ସେହିପରି ବୃଦ୍ଧି ପାଏ । ବାରିଘଟିତ ପେଷଣ ଯନ୍ତ୍ରଦ୍ୱାରା କୌଣସି କଠିନ ବସ୍ତୁ ଉପରେ ଚାପ ପ୍ରୟୋଗ କଲେ ଏହା ଅକୁଞ୍ଚିତ ଓ ଉତ୍ତପ୍ତ ହୋଇଥାଏ; ଜଳ ଓ ତୈଳ ସଙ୍କୁଚିତ ହେଲେ ଉଷ୍ଣ ହୁଏ ।

**ଆଘାତ** : ଆଘାତପ୍ରାପ୍ତ ହେଲେ ଜଡ଼ ଦ୍ରବ୍ୟସକଳ ଉଷ୍ଣ ହୁଏ, ଏହା ସକଳର ପ୍ରତ୍ୟକ୍ଷ ବ୍ୟାପାର; ନେହାୟୀ ଉପରେ ସୀସା ଖଣ୍ଡେ ରଖି ହାତୁଡ଼ିରେ ଆଘାତ କଲେ ସୀସାର ପରିମାଣ ସକଳ ହାତୁଡ଼ିର ବେଗ ଆଘାତରେ ବିକମ୍ପିତ ଓ ଉତ୍ତପ୍ତ ହୁଏ । ପ୍ରବଳ ଶକ୍ତିସମ୍ପନ୍ନ ବନ୍ଧୁକର ଗୁଳି କୌଣସି କଠିନ ବସ୍ତୁରେ ଆଘାତ ହେଲେ ସମୟେ ସମୟେ ଅଗ୍ନି ଉତ୍ପନ୍ନ ହୋଇଥାଏ;

ପତନଶୀଳ ବସ୍ତୁ ଭୂତଳେ ପତିତ ହେଲେ ତାହାର ପରିଦୃଶ୍ୟମାନ ଗତିର ତିରୋଭାବେ ଅପରିଦୃଶ୍ୟମାନ ଆଣବିକ ଗତି ବା ତାପ ସମୁଦ୍ଭୂତ ହୁଏ । ପଦାର୍ଥବିଦ୍‌ଗଣ ପରୀକ୍ଷାଦ୍ୱାରା ପ୍ରମାଣିତ କରିଛନ୍ତି ଯେ, ଏକ ସେର ପରିମିତ କୌଣସି ଭାରି ଦ୍ରବ୍ୟ ୧୩୯୨ ଫୁଟ ଉଚ୍ଚରୁ ଅଥବା ୧୯୩୨ ସେର ଭାରି ଦ୍ରବ୍ୟ ଏକଫୁଟ ଉଚ୍ଚରୁ ପତିତ ହେଲେ ଯେଉଁ ବେଗ ପ୍ରାପ୍ତ ହୁଏ, ତାହାର ତିରୋଭାବରେ ଏତେ ତାପ ଜନ୍ମେ ଯେ, ତଦ୍ଦ୍ୱାରା ଏକ ସେର ଜଳର ଉଷ୍ଣତା ଶତାଂଶ ତାପମାନର ଏକ ଅଂଶ ବୃଦ୍ଧି କରାଯାଇପାରେ ।

**ରାସାୟନିକ ସଂଯୋଗ :** କାଷ୍ଠାଦିରୁ ଯେଉଁ ଅଗ୍ନି ଜାତ ହୋଇଥାଏ, ତଦ୍‌ଗତ ବାହ୍ୟ ପଦାର୍ଥ ସହିତ ବାୟୁସ୍ଥ ଅମ୍ଳଜାନର ରାସାୟନିକ ସଂଯୋଗ ହିଁ ତାହାର କାରଣ । ଦୀପରୁ ଯେଉଁ ଆଲୋକ ନିର୍ଗତ ହୁଏ ତାହା ତୈଳାଦିର ଅଙ୍ଗାର ସହିତ ବାୟୁସ୍ଥ ଅମ୍ଳଜାନର ରାସାୟନିକ ସଂଯୋଗ ନିବନ୍ଧନରୁ ଉତ୍ପନ୍ନ ହୋଇଥାଏ । ଆମ୍ଭେମାନେ ଯେଉଁ ଅଗ୍ନିଶିଖା ଦେଖିଥାଉଁ ତାହା ଅତ୍ୟୁଷ୍ଣ ବାଷ୍ପମାତ୍ର । ବାଷ୍ପ ବା ବାୟବୀୟ ଦ୍ରବ୍ୟ ସମଧିକ ଉତ୍ତପ୍ତ ହେଲେ ଅଗ୍ନିଶିଖାରୂପେ ପ୍ରତୀୟମାନ ହୁଏ ।

**ତଡ଼ିତ୍ :** ଏହି ତଡ଼ିତ୍‌ରୁ ମଧ୍ୟ ତାପ ଉତ୍ପନ୍ନ ହୁଏ । ବଜ୍ରାଗ୍ନି ଏହି ତଡ଼ିତ୍‌ାଗ୍ନିର ରୂପାନ୍ତର ମାତ୍ର; ଏହି ତଡ଼ିତ୍‌ାଗ୍ନିର ଆନୁପୂର୍ବିକ ସମସ୍ତ ବିଷୟ ବର୍ଣ୍ଣନା କଲେ ଗୋଟିଏ ସ୍ୱତନ୍ତ୍ର ଗ୍ରନ୍ଥ ହୋଇଯିବ; ଅତଏବ ତାହାର ସାରାଂଶ ମାତ୍ର ଉଲ୍ଲେଖ କରାଗଲା । ତଡ଼ିତ୍‌ର ଉତ୍ପତ୍ତି ସମ୍ବନ୍ଧେ ସିଦ୍ଧାନ୍ତ ଶିରୋମଣିରେ ଲେଖାଅଛି:

ସମୁଦ୍ର ଗର୍ଭେ ବାଡ଼ବାଗ୍ନି ଅଛି । ଜଳାଭ୍ୟନ୍ତରସ୍ଥ ଏହି ବାଡ଼ବାଗ୍ନିରୁ ଧୂମ୍ରରାଶି ଉତ୍ଥିତ ହୋଇଥାଏ, ଏହି ଧୂମ୍ରରାଶି ବାୟୁକର୍ତ୍ତୃକ ଆକାଶକୁ ନୀତ ହୋଇ ଚତୁର୍ଦ୍ଦିଗେ ବିସ୍ତୃତ ହୁଏ, ପରେ ରବି କିରଣଦ୍ୱାରା ପ୍ରଦୀପ୍ତ ହେଲେ ଯେଉଁ ସ୍ଫୁଲିଙ୍ଗ ସକଳ ନିର୍ଗତ ହୁଏ ତାହାହିଁ ବିଦ୍ୟୁତ୍ । ସେହି ବିଦ୍ୟୁତ୍ ଅନୁକୂଳ ଓ ପ୍ରତିକୂଳ ବାୟୁର ଆଘାତରେ ଉଦ୍‌ଭ୍ରାନ୍ତ ହୋଇ ପାର୍ଥିବାଂଶ ସହିତ ମିଶ୍ରିତ ହୁଏ । ପରେ ଅକସ୍ମାତ୍ ଏହା ବିଦ୍ୟୁତ୍ ରୂପେ ଉଦ୍ଭାସିତ ହୁଏ; ଏହା ବିଶେଷତଃ ଅକାଳବୃଷ୍ଟି ସମୟରେ ଦେଖା ଦେଇଥାଏ; ଏହା ତିନିପ୍ରକାର - ପାର୍ଥିବ, ଆପ୍ୟ, ତୈଜସ ।

ସୁଜଳ ଜଳଧି ମଧ୍ୟେ ବାଡ଼ବୋଽଗ୍ନିଃ ସ୍ଥିତୋଽସ୍ମାତ୍
ସଲିଲ ଭରନିମଗ୍ନାଦୁତ୍ଥିତା ଧୂମମାଳାଃ ।
ବିୟତି ପବନ ନୀତାଃ ସର୍ବତସ୍ତାଃ ଦ୍ରବନ୍ତି
ଦ୍ୟୁମଣି କିରଣ ଦୀପ୍ତା ବିଦ୍ୟୁତସ୍ତତ୍ ସ୍ଫୁଲିଙ୍ଗାଃ ।। (ସିଦ୍ଧାନ୍ତଶିରୋମଣି)

## ୟୁରୋପ ବିଜ୍ଞାନ

ଅମ୍ବର (Amber) ନାମକ ପଦାର୍ଥକୁ ଘର୍ଷଣ କଲେ ତାହା କ୍ଷୁଦ୍ରପଲାଳ, ତୃଣ ପ୍ରଭୃତି ଆକର୍ଷଣ କରେ; ବହୁକାଳରୁ ଏହି ଅମ୍ବରରେ ଆକର୍ଷଣ ଗୁଣ ଜଣାଯାଇଛି । ଅମ୍ବରରେ ଗ୍ରୀକ୍ ନାମଠାରୁ ଇଂରାଜୀ

Electricity ଶବ୍ଦର ଉତ୍ପତ୍ତି । ପ୍ରାଚୀନ ଆର୍ଯ୍ୟଗ୍ରନ୍ଥରେ ତୃଣମଣି ଶବ୍ଦର ଉଲ୍ଲେଖ ଦେଖାଯାଏ, ହୁଏତ ଅମ୍ବର ଓ ତୃଣମଣି ଏକ ପଦାର୍ଥ ହୋଇପାରେ । ତିନିଶତ ବତ୍ସର ପୂର୍ବେ ଡାକ୍ତର ଗିଲ୍‌ବର୍ଟ ବହୁଦ୍ରବ୍ୟର ଆକର୍ଷଣ ଶକ୍ତି ଆବିଷ୍କାର କରିଛନ୍ତି ।

ସମ୍ପ୍ରତି ଲର୍ଡ୍ କେନବିଲ୍ ତଡ଼ିତ୍‌ସମ୍ବନ୍ଧେ ଗବେଷଣା କରି ପୃଥିବୀର ବୈଜ୍ଞାନିକ ସମାଜରେ ଶୀର୍ଷସ୍ଥାନ ଅଧିକାର କରିଅଛନ୍ତି । ବର୍ତ୍ତମାନ ଯୁଗରେ ତଡ଼ିତ୍‌ଶକ୍ତି ମାନବ ସମାଜର ପ୍ରଭୁତ ଉପକାର ସାଧନରେ ନିୟୋଜିତ ହୋଇଅଛି । ତଡ଼ିତ୍ କୌଣସି ଜଡ଼ପଦାର୍ଥର ଧର୍ମ କିମ୍ବା କୌଣସି ଶକ୍ତିର ରୂପାନ୍ତର ତାହା ଅଦ୍ୟାପି ନିରୂପିତ ହୋଇପାରି ନାହିଁ ।

ତଡ଼ିତ୍ ଦୁଇ ପ୍ରକାର, ନାନାବିଧ କୌଶଳରେ କାଚରେ ଓ ଲାକ୍ଷାରେ ତଡ଼ିତ୍ ଧରାଯାଇଅଛି; କାଚର ତଡ଼ିତ୍ ଧନ ଓ ଜଉର ତଡ଼ିତ୍ ଋଣ ନାମେ ବୈଜ୍ଞାନିକମାନଙ୍କଦ୍ୱାରା ଅଭିହିତ ।

ବିଜ୍ଞାନ ଶାସ୍ତ୍ରରେ ବୈଦ୍ୟୁତିକାଗ୍ନିର ବିକାଶ ନିରୂପଣ ପରିଚାଳନାଦି ପ୍ରଭୃତି ଯନ୍ତ୍ର ନିର୍ମାଣ, ପରିଚାଳନ ପ୍ରକ୍ରିୟା, ତଡ଼ିତ୍ ଗ୍ରହଣର କ୍ଷମତା, ସଞ୍ଚାଳନ, ସଂକ୍ରାମଣ, ଆନ୍ଦୋଳନ, ତଡ଼ିତ୍‌ର ପ୍ରବାହ, ଯନ୍ତ୍ରବ୍ୟତୀତ ତଡ଼ିତ୍‌ର ଉତ୍ପାଦନ ପ୍ରଭୃତି ନାନାପ୍ରକାର ବିଷୟ ବିସ୍ତୃତ ଭାବେ ଆଲୋଚିତ ହୋଇଅଛି, ଏସ୍ଥଳେ ତଡ଼ିତାଗ୍ନି ସମନ୍ଧେ ବିଶଦ ଆଲୋଚନା ନକରି ସେହିସବୁ ବିଷୟ ସଂକ୍ଷେପରେ ପ୍ରକାଶ କରୁଅଛୁଁ ।

ଏହି ତଡ଼ିତ୍ ଅନଶ୍ୱର, ଯନ୍ତ୍ରଦ୍ୱାରା ପରୀକ୍ଷାକରି ଦେଖାଯାଇଅଛି ଯେ, ତଡ଼ିତ୍‌ର ଧ୍ୱଂସନାହିଁ । ଏହା ଏକ ସ୍ଥାନରୁ ଏକ ଆଧାରରୁ ଅନ୍ୟ ସ୍ଥାନକୁ ବା ଅନ୍ୟ ଆଧାରକୁ ନୀତ ହୋଇପାରେ, କିନ୍ତୁ ଏହାର ଏକ କଣା ସୁଦ୍ଧା ଧ୍ୱଂସ ପ୍ରାପ୍ତ ହୁଏ ନାହିଁ ।

ସାଧାରଣତଃ ତଡ଼ିତ୍ ବହୁକ୍ଷଣଯାଏ ଏକତ୍ର ଆବଦ୍ଧ ରହେନାହିଁ । ତାହାର କାରଣ ପାର୍ଶ୍ୱବର୍ତ୍ତୀ ପଦାର୍ଥର ଆଂଶିକ ପରିଚାଳନ ତଡ଼ିତ୍ ବାୟୁପଥେ ଧୂଳିକଣା ଓ ଜଳକଣା ପ୍ରଭୃତିର ଆଶ୍ରୟେ ଧୀରେଧୀରେ ପରିଚାଳିତ ହୋଇ ଦ୍ରବ୍ୟରୁ ଦ୍ରବ୍ୟାନ୍ତରକୁ ଗତିକରେ; କିନ୍ତୁ ଧ୍ୱଂସପ୍ରାପ୍ତ ହୁଏନାହିଁ । ଲାର୍ଡ୍ କେଲ୍‌ବନ ତଡ଼ିତ୍‌କୁ ବହୁ ବତ୍ସର ଆବଦ୍ଧ ରଖି ପରୀକ୍ଷା କରିଦେଖିଲେ ଯେ ତାହାର କ୍ଷୟ ବା ହ୍ରାସ ନାହିଁ, ଏହାର ନୂତନ ସୃଷ୍ଟି ନାହିଁ । ଶୁଦ୍ଧ ଧନ ବା ଶୁଦ୍ଧ ଋଣ ତଡ଼ିତ୍ କୌଣସି ଉପାୟରେ ସଞ୍ଚୟ କରାଯାଇ ପାରେନାହିଁ । କେତେକ ଧନ ତଡ଼ିତ୍ କୌଣସି ସ୍ଥଳେ କୌଣସି ଉପାୟେ ସଞ୍ଚିତ ହେଲେ ଠିକ୍ ତେତିକି ଋଣ ତଡ଼ିତ୍ ଅନ୍ୟ କେଉଁ ସ୍ଥାନରେ ଲୋପପାଇବ, ଯୋଗଫଳ ନ୍ୟୂନାଧିକ ହେବ ନାହିଁ । ଧନ ତଡ଼ିତ୍ ସମାନ ପରିମାଣରେ ଋଣ ତଡ଼ିତ୍‌ଠାରୁ ବିଶ୍ଳିଷ୍ଟ ବା ପୃଥକ୍ ହୁଏ ।

ଜଳ ଯେପରି ଚାପଦିଏ ତଡ଼ିତ୍ ସେପରି ଉଦ୍‌ବୃତ୍ତ ଉତ୍ପାଦନ କରେ । ଧନ ତଡ଼ିତ୍‌ର ଯେତେ ନିକଟକୁ ଯିବ ଉଦ୍‌ବୃତ୍ତି ତେତେ ଅଧିକ ହେବ। ଋଣ ତଡ଼ିତ୍‌ର ଯେତେ ନିକଟକୁ ଯିବ

ଉଦ୍‌ବୃତ୍ତି ତେତେ ହ୍ରାସ ହେବ; ଧନ ଉଦ୍‌ବୃତ୍ତ ସ୍ଥାନରୁ ଅଧିକ ଦୂର ଯାଏ, ଋଣ ତାହାର ବିପରୀତ ଗତିକରେ । କିନ୍ତୁ ଫଳ ଏକ । ଜଳ ଯେପରି ସ୍ୱତଃ ଉଚ୍ଚପ୍ରଦେଶରୁ ନିମ୍ନ ଦେଶକୁ ପ୍ରବାହିତ ହୁଏ ତାପ ସେପରି ଗରମ ସ୍ଥାନରୁ ଶୀତଳ ସ୍ଥାନକୁ ଯାଏ ।

ଅନ୍ୟ ଦ୍ରବ୍ୟ ଅପେକ୍ଷା ପୃଥିବୀରେ ତଡ଼ିତ୍‌ର ଘାତାଘାତରେ କ୍ଷୟ ବୃଦ୍ଧି କିଛି ହୁଏ ନାହିଁ, ଯେହେତୁ ଅନ୍ୟାନ୍ୟ ଦ୍ରବ୍ୟର ତୁଳନାରେ, ପୃଥିବୀର ଆକାର ଅତିଶୟ ବୃହତ୍; ଅତଏବ, ଭୂମି ସହିତ କୌଣସି ତଡ଼ିତ୍‌ଯୁକ୍ତ ଦ୍ରବ୍ୟର ସଂସ୍ପର୍ଶ ଘଟିଲେ ପ୍ରାୟ ସମଗ୍ର ତଡ଼ିତ୍ ଶକ୍ତି ପୃଥିବୀ ଅଭ୍ୟନ୍ତରକୁ ଚାଲିଯାଏ ।

ଲର୍ଡ଼ କେଲିଭିନଙ୍କ ଉଦ୍‌ଭାବିତ ଉଦ୍‌ବୃତ୍ତିମାନ ଯନ୍ତ୍ରର ସାହାଯ୍ୟରେ ଦେଖାଯାଇଅଛି ଯେ, ଭୂପୃଷ୍ଠର ଉର୍ଦ୍ଧ୍ୱସ୍ଥିତ ବାୟୁମଣ୍ଡଳରେ ପ୍ରାୟ ସର୍ବଦା ତଡ଼ିତ୍‌ର କିଛି ନା କିଛି ପ୍ରଭାବ ରହିଅଛି; ବାୟୁ ଅପେକ୍ଷା ମେଘ ପ୍ରାୟ ସର୍ବଦା ହିଁ ତଡ଼ିତ୍‌ଯୁକ୍ତ ଥାଏ । ଜଳର ବାଷ୍ପହେବା ଓ ବାୟୁର ସଂଘର୍ଷଣ ବୋଧହୁଏ ଏହି ତଡ଼ିତ୍ ବିକାଶର କାରଣ । କ୍ଷୁଦ୍ରକ୍ଷୁଦ୍ର ଜଳକଣା ଯେତେବେଳେ ଜମାଟ ବାନ୍ଧି ବୃହତ୍ତମ ଜଳକଣାରେ ପରିଣତ ହୁଏ, ଏବଂ ମେଘ ରୂପେ ବୃଷ୍ଟି ହୁଏ ତେତେବେଳେ ସେହି ତଡ଼ିତ୍‌ର ପରିମାଣ ଅଳ୍ପହେଲେ ମଧ୍ୟ ତାହାର ଉଦ୍‌ବୃତ୍ତି ଅଧିକ ହୋଇ ରହେ । ଭୂପୃଷ୍ଠରେ ବା ପାର୍ଶ୍ୱବର୍ତ୍ତୀ ମେଘରେ ପୂର୍ବ ତଡ଼ିତ୍ ନ ରହିଥିଲେ ସୁଦ୍ଧା ପୂର୍ବୋକ୍ତ ନିୟମମତେ ବିପରୀତ ତଡ଼ିତ୍‌ର ସଂକ୍ରମଣ ହୁଏ; ଉଦ୍‌ବୃତ୍ତିର ବୈଷମ୍ୟ ଓ ତଡ଼ିତ୍‌ର ଆକର୍ଷଣ ଅତ୍ୟଧିକ ହେଲେ, ମଧ୍ୟସ୍ଥ ବାୟୁରାଶି ଛିନ୍ନ କରି ପ୍ରକାଣ୍ଡ ତଡ଼ିତ୍ ସ୍ଫୁଲିଙ୍ଗ ଉତ୍ପନ୍ନ ହୁଏ, ସଙ୍ଗେ ସଙ୍ଗେ ଗମ୍ଭୀର ଗର୍ଜନ ଶୁଣାଯାଏ; ଏହି ନାଦକୁ ବଜ୍ର କହି ।

ସହବର୍ତ୍ତୀ ବିପରୀତ ତଡ଼ିତ୍ ଯଦି ଦୂରେ ରହେ ତା'ହେଲେ ତଡ଼ିତ୍‌ପକ୍ଷେ ମଧ୍ୟସ୍ଥ ବ୍ୟବଧାନ ଭେଦକରି ତାହା ସଙ୍ଗେ ସମ୍ମିଳିତ ହେବା କଠିନ ବ୍ୟାପାର । କିନ୍ତୁ ଏ ସ୍ଥଳେ କୌଣସି ପଦାର୍ଥ ଦେହରେ ଯଥେଷ୍ଟ ତଡ଼ିତ୍ ସଞ୍ଚିତ ରହେ ନାହିଁ ।

କୌଣସି ସୂଚୀଅଗ୍ରବିଶିଷ୍ଟ ପଦାର୍ଥରେ ତଡ଼ିତ୍ ସଞ୍ଚାର କଲେ ତାହାକୁ ଅଟକାଇ ରଖିବା ସୁକଠିନ । ତଡ଼ିତ ସୂଚୀମୁଖରେ ଜନ୍ମେ କିନ୍ତୁ ଚାରିଦିଗୁଁ ଚାପପାଇ ବାୟୁ ମୁଖରେ ସେହି ସ୍ଥାନରୁ ବାହାର ହୋଇଯାଏ । ବାୟୁରେ ଯେଉଁ ପ୍ରଭାବ ଜନ୍ମେ ତାହା କ୍ରମେ ଦେଖାଯାଏ । ଅଥଚ ସୂଚୀମୁଖରେ ଥିବା ବାୟୁ ମଧ୍ୟ ନାନାବିଧ ଆଲୋକରେ ବିକାଶ ପାଏ ।

ତଡ଼ିତ୍‌ର ସ୍ରୋତ ଏକମୁଖୀନ ନୁହେଁ, ବିଭିନ୍ନ ମୁଖେ ବିଭିନ୍ନ ରୂପେ ଗତିକରେ । ଆଘାତରେ ପ୍ରବାହ ଇତସ୍ତତଃ ଗତିକରେ, ସ୍ଫୁଲିଙ୍ଗ ଜନ୍ମେ, ଗୋଟାଏ ସ୍ଫୁଲିଙ୍ଗ କ୍ଷଣିକ ବ୍ୟାପାର, ଏହାର ସ୍ଥିତି କାଳ ଏକ ସେକେଣ୍ଡର ଲକ୍ଷାଂଶର ଅଂଶେ; କିନ୍ତୁ ଏହି କ୍ଷଣିକର ମଧ୍ୟେ ପୁଣି ଶତଲକ୍ଷ ଧକ୍କା ଆସି ପଡ଼ିଯାଏ; ବହୁ ସଂଖ୍ୟାବାର ତଡ଼ିତ୍ ପ୍ରବାହର ଇତସ୍ତତଃ ସ୍ପନ୍ଦନ ବା ଆନ୍ଦୋଳନ ସମଷ୍ଟିର ଫଳ ପ୍ରତ୍ୟେକ ସ୍ଫୁଲିଙ୍ଗ ମାତ୍ର । ପ୍ରବାହ କେବଳ ପରିଚାଳକର ଭିତରେ ଯାଏ ତାହା ନୁହେଁ;

ଅପରିଚାଳକର ପ୍ରବାହ ଭିତରେ ସୁଦ୍ଧା ତାହା ଯାଏ । କିନ୍ତୁ ପ୍ରଚଣ୍ଡ ଧକ୍କାରେ ଅପରିଚାଳକ ଛିଡ଼ିଯାଏ, ଧକ୍କା ମଧ୍ୟ ଏକମୁଖୀ ଯାଏ ନାହିଁ । ଏହି ଧକ୍କା ପଡ଼ିଲେ କିୟତ୍‌କ୍ଷଣ ଇତସ୍ତତଃ ଆନ୍ଦୋଳିତ ହୁଏ । ଏହି ଆନ୍ଦୋଳନରେ ସ୍ଫୁଲିଙ୍ଗ ଅନ୍ତର୍ଦ୍ଧାନ ହୁଏ । ସର୍ବତ୍ର ଉଦ୍‌ବୃତ୍ତି ସମାନ ହୁଏ; ପରିଚାଳକ କେବଳ ପ୍ରବାହର ପଥ ଦର୍ଶାଇ ଦିଏ; ଶରୀର ଭିତରେ ପ୍ରବେଶ ପାଇଁ ଚେଷ୍ଟାକରେ, ପ୍ରବେଶ ପରେ ତା'ପରେ ପରିଣତ ହୁଏ । ବସ୍ତୁତଃ ଯେଉଁ ଯେଉଁ ସ୍ଥାନକୁ ଆମ୍ଭେ ଶୂନ୍ୟ ଭାବିଥାଉଁ, ପ୍ରକୃତରେ ତାହା ଶୂନ୍ୟ ନୁହେଁ; "ଆଲୋକ ବିଜ୍ଞାନ" କହେ; ଶୂନ୍ୟସ୍ଥାନ ମଧ୍ୟ ପଦାର୍ଥ ବିଶେଷରେ ପରିପୂର୍ଣ୍ଣ; ଏହି ପଦାର୍ଥ ଓତପ୍ରୋତ ଭାବେ ପରିବ୍ୟାପ୍ତ । ଏହି ପଦାର୍ଥକୁ ଇଂରାଜୀରେ ଇଥର ଏବଂ ସଂସ୍କୃତରେ ଆକାଶ କହନ୍ତି । ଏହି ଆକାଶ ଶୂନ୍ୟ ନୁହେଁ, କିନ୍ତୁ ଅନ୍ୟବସ୍ତୁର ଅଭାବରେ ଶୂନ୍ୟପରି ପ୍ରତୀୟମାନ ସର୍ବବ୍ୟାପୀ ବସ୍ତୁ ହିଁ ଆକାଶ । ଏହି ଇଥର ବା ଆକାଶ ସୂକ୍ଷ୍ମ, ଅଦୃଶ୍ୟ ଓ ଅନୁଭବାତୀତ ହେଲେ ସୁଦ୍ଧା ଅତ୍ୟନ୍ତ କଠିନ ସ୍ଥିତି ସ୍ଥାପକ ପଦାର୍ଥ । ସୂକ୍ଷ୍ମ ବାୟୁ ଓ ଲୋଷ୍ଟ୍ରଖଣ୍ଡଠାରୁ ଗ୍ରହନକ୍ଷତ୍ର ପର୍ଯ୍ୟନ୍ତ ଏହାର ମଧ୍ୟ ଦେଇ ଅବାଧରେ ଚଳିଯାଏ ।

ଜଡ଼ ପଦାର୍ଥର ଅଣୁର କମ୍ପନରେ ତରଙ୍ଗ ଜନ୍ମି ଯେପରି ଆକାଶର ଚତୁର୍ଦ୍ଦିଗରେ ବ୍ୟାପ୍ତହୁଏ ଏବଂ ଆଲୋକ ଜାତକରେ, ତଡ଼ିତ୍‌ର ଆନ୍ଦୋଳନରେ ମଧ୍ୟ ସେହିପରି ତରଙ୍ଗ ଜନ୍ମି ଆକାଶର ଚତୁର୍ଦ୍ଦିଗରେ ପ୍ରସାରିତ ହୁଏ; ଏହି ସକଳ ତରଙ୍ଗକୁ ତଡ଼ିତୋର୍ମୀ ବା ଚୁମ୍ବକୋର୍ମି ବୋଲାଯାଏ ।

ତଡ଼ିତ୍ ତରଙ୍ଗୋତ୍ପତ୍ତିରେ ଚୁମ୍ବକର ତରଙ୍ଗୋତ୍ପତ୍ତି ହୋଇଥାଏ । ଉଭୟେ ସହବର୍ତ୍ତୀ ଓ ସହଚାରୀ । ଯେପରି ତଡ଼ିତ୍ ପ୍ରବାହ ସହିତ ଚୁମ୍ବକ ପ୍ରବାହର ସମ୍ବନ୍ଧ ସେହିପରି ଉକ୍ତ ତଡ଼ିତ୍ ପ୍ରବାହ ସହିତ ଆବର୍ତ୍ତ ବା ଘୂର୍ଣ୍ଣୀ ବାୟୁର ଅବିଚ୍ଛେଦ୍ୟ ସମ୍ବନ୍ଧ ପରିଲକ୍ଷିତ ହୁଏ । ଏହି ପ୍ରବାହ ସହିତ ଫଳତଃ ତଡ଼ିତ୍ ତରଙ୍ଗ ଓ ଆଲୋକ ତରଙ୍ଗ ଉଭୟ ସର୍ବତୋଭାବେ ସମଧର୍ମୀ । ଆଲୋକର ରଶ୍ମିପରି ତଡ଼ିତ୍‌ର ରଶ୍ମି ମଧ୍ୟ ପ୍ରତିଫଳିତ, ବକ୍ରୀକୃତ ବା ବିବର୍ତ୍ତିତ ଏବଂ ବିସ୍ଫାରିତ ହୁଏ, ଆଲୋକ ଯେପରି ନିର୍ଦ୍ଦିଷ୍ଟ ଦିଗରେ ସ୍ପନ୍ଦିତ ହୁଏ ସେହିପରି ତଡ଼ିତ୍ ଉର୍ମିର ଗତି ନିର୍ଣ୍ଣୟ କରିବାପାଇଁ ଅଦ୍ୟାବଧି ଗବେଷଣାର ବିରାମ ନାହିଁ । ଭାରତର ସୁପ୍ରସିଦ୍ଧ ବିଜ୍ଞାନାଚାର୍ଯ୍ୟ ଜଗଦୀଶ ଚନ୍ଦ୍ର ବୋଷ ଏ ସମ୍ବନ୍ଧେ ନୂତନ ତତ୍ତ୍ୱ ଆବିଷ୍କାର କରି ଯଶସ୍ୱୀ ହୋଇଅଛନ୍ତି ।

ଯେ ପର୍ଯ୍ୟନ୍ତ ଆକର୍ଷଣ ଥାଏ, ସେପର୍ଯ୍ୟନ୍ତ ସ୍ରୋତ ଥାଏ; ଯତ୍‌ସାମାନ୍ୟ ଆକର୍ଷଣରେ ପଦାର୍ଥ ଗର୍ଭରେ ସ୍ରୋତ ଜନ୍ମେ, ତରଳ ଆକାଶରେ ମଧ୍ୟ ସେହିପରି ସାମାନ୍ୟ ଆକର୍ଷଣରେ ସ୍ରୋତ ଜନ୍ମେ, ଏହି ସ୍ରୋତ ଜଳ ସ୍ରୋତୋପମ । ଅପରିଚାଳକ କଠିନ ଆକାଶରେ ପ୍ରବାହ ଜନ୍ମେନାହିଁ; ଅଧିକ କାଠିନ୍ୟରେ ଆକାଶ ଛିନ୍ନହୁଏ; ଆକାଶ ଛିନ୍ନହେଲେ କମ୍ପିତ ହୁଏ; ସେହି ସ୍ପନ୍ଦନ ଆକାଶର ଚତୁର୍ଦ୍ଦିଗରେ ଉର୍ମି ଉତ୍ପାଦନ କରି ଆକାଶ କର୍ତ୍ତୃକ ଦଶଗୁଣ ପ୍ରବଳ ବେଗରେ ପ୍ରବାହିତ ହୁଏ । ଅପରିଚାଳକ ଭେଦକରି ଉର୍ମି ପରେ ଉର୍ମି ସଞ୍ଚାରିତ ହୁଏ; କିନ୍ତୁ ପରିଚାଳକ ଭେଦ କରିପାରେ ନାହିଁ । ଆଘାତପ୍ରାପ୍ତ ହେଲେ ତରଳ ଆକାଶ ଆଉଜି

ପଡ଼େ, ଦେହରେ ଆଘାତପ୍ରାପ୍ତ ହେଲେ ତାହା ପ୍ରତ୍ୟାବର୍ତ୍ତନ ପୂର୍ବକ ପ୍ରତିଫଳିତ ହୁଏ; ଯଦି ଗୋଟିଏ ପ୍ରବେଶ କରେ ତାହା କେତେଦୂର ଅଗ୍ରସର ହୋଇ ତରଳ ପଦାର୍ଥର ସଂଘର୍ଷରେ ତାପରେ ପରିଣତ ହୁଏ ।

ତଡ଼ିତ୍‌ର ପ୍ରବାହ ଆକାଶର ଚତୁର୍ଦ୍ଦିଗରେ ଘୂର୍ଣ୍ଣି ବା ଆବର୍ତ୍ତ ଉତ୍ପାଦନ କରେ । ଏହି ପ୍ରଦେଶ ଚୁମ୍ବକ ପ୍ରଦେଶରେ ପରିଣତ ହୁଏ । ଲୌହ ପ୍ରଭୃତି ସକଳ ଜଡ଼ ପଦାର୍ଥର ଅଣୁଦ୍ୱାରା ଏହି ଆବର୍ତ୍ତୋତ୍ପାଦନ ଓ ଘୂର୍ଣ୍ଣନାରମ୍ଭ ହୋଇଥାଏ ।

ଫାରଡେ ପ୍ରମାଣିତ କରିଅଛନ୍ତିଯେ, ପଦାର୍ଥ ମାତ୍ରେ ଅଳ୍ପାଧିକ ପରିମାଣରେ ଚୁମ୍ବକ ଧର୍ମଲାଭ କରିପାରେ । ତଡ଼ିତ୍ ଲହରୀଗୁଡ଼ିକ ବଡ଼ ହେଲେ ସାଧାରଣ ଅପରିଚାଳକ ପଦାର୍ଥ ଭେଦକରେ, ସାଧାରଣ ପରିଚାଳକ ଗାତ୍ରେ ଲାଗି ପ୍ରତିଫଳିତ ହୋଇ ଫେରିଆସେ, ସେହିହେତୁ ଏପର୍ଯ୍ୟନ୍ତ ଏହାର ଅସ୍ତିତ୍ୱ ଧରାଯାଇ ନଥିଲା । ଛୋଟ ଲହରୀଗୁଡ଼ିକ ମଧ୍ୟରୁ କେତେକ ପରିଚାଳକ ଧାତୁର ଗାତ୍ରରେ ନିକ୍ଷିପ୍ତ ହୋଇ ପ୍ରତିଫଳିତ ହୁଏ ଏବଂ କେତେକ ଭିତରେ ରହି ଉତ୍ତାପ ଜନ୍ମାଏ । ଏହା ଅଦୃଶ୍ୟ, ତାପମାନ ଯନ୍ତ୍ର ପ୍ରଭୃତିର ସାହାଯ୍ୟରେ ଧରାଯାଏ । ଏହି ହେତୁ ଧାତୁପଦାର୍ଥ ମାତ୍ରେ ହିଁ ଆଲୋକ ପକ୍ଷେ ସ୍ୱଚ୍ଛ ନୁହେଁ ।

ଅଧ୍ୟାପକ ରନ୍ତଗେନ୍ (Rontgen) ଗୋଟିଏ ନୂତନ ରହସ୍ୟ ଆବିଷ୍କାର କରିଅଛନ୍ତି । କ୍ରୁକସ ନଳର ଅଭ୍ୟନ୍ତର ଯେପରି ବାୟୁଶୂନ୍ୟ ସେହିପରିଏହି ନବାବିଷ୍କୃତ ଯନ୍ତ୍ର ବାୟୁଶୂନ୍ୟ । ଶତବର୍ଷର ପୂର୍ବେ ତଡ଼ିତ୍ କୁତୂହଳର ସାମଗ୍ରୀ ଥିଲା, ସମ୍ପ୍ରତି ଏହା ସଭ୍ୟମାନବ ଜାତିର ସମ୍ପୂର୍ଣ୍ଣ ଆୟତ୍ତ ହୋଇଅଛି । ୧୮୯୬ ଖ୍ରୀଷ୍ଟାବ୍ଦରେ ତଡ଼ିତ୍ ରଶ୍ମି ବିଳାସର ସାମଗ୍ରୀ ହୋଇପଡ଼ିଲା, ବିଜ୍ଞାନ ଯେପରି ନିତ୍ୟ ନୂତନ ତଥ୍ୟ ଆବିଷ୍କାରରେ ତତ୍ପର ଶତବର୍ଷ ପରେ ମାନବର କେଉଁ କଳ୍ପନାତୀତ ବିଷୟ ଆବିଷ୍କାର କରିବ ତାହା କିଏ କହିପାରିବ ।

ତଡ଼ିତ୍‌ବାର୍ତ୍ତା, ତାର ଖବର, (Electrie Telegraph) ସମ୍ବନ୍ଧେ ବିଶେଷ ଉଲ୍ଲେଖ କରିବା ଅନାବଶ୍ୟକ । ବୈଦ୍ୟୁତିକାଗ୍ନି ସମ୍ବନ୍ଧେ ବୈଜ୍ଞାନିକଗଣ ଯାହା ନିରୂପଣ କରିଅଛନ୍ତି, ତତ୍‌ସମ୍ବନ୍ଧେ ବୃଷ୍ଟିପାତ ପ୍ରବନ୍ଧ ଦ୍ରଷ୍ଟବ୍ୟ ।

**ଜୀବଦେହାଗ୍ନି :** ଜୀବଶରୀର ତାପର ଅନ୍ୟ ଏକ ଉତ୍ପତ୍ତି ସ୍ଥଳ; ମାନବଶରୀରର ଉଷ୍ଣତା ଚତୁଃପାର୍ଶ୍ୱସ୍ଥ ବାୟୁର ଉଷ୍ଣତା ତୁଲ୍ୟ ନୁହେଁ । ପ୍ରଚଣ୍ଡ ଚଣ୍ଡକରତପ୍ତ ବାଲୁକାପୂର୍ଣ୍ଣ ମରୁଭୂମିସଂକୁଳ ଆରବ ଦେଶରେ ହେଉ କିମ୍ବା ଚିର ତୁଷାରାବୃତ ସୁମେରୁ ସନ୍ନିହିତ ପ୍ରଦେଶରେ ହେଉ ସକଳସ୍ଥାନରେ ମନୁଷ୍ୟ ଶରୀରର ଉଷ୍ଣତା ଫାରେନ୍ ହିଟ୍‌ର ୯୬ ଅଂଶରୁ ଅଧିକ ନୁହେଁ ।

**ଭୂଗର୍ଭାଗ୍ନି :** ଆଗ୍ନେୟଗିରି ଗର୍ଭୋଦ୍‌ଗମ ତପ୍ତ କର୍ଦ୍ଦମ ଓ ଉଷ୍ଣମଜଳ ଦେଖିଲେ ବୋଧହୁଏ ଯେ ପୃଥିବୀର ଅଭ୍ୟନ୍ତର ଅଗ୍ନିମୟ ପଦାର୍ଥରେ ପରିପୂର୍ଣ୍ଣ । ସୂର୍ଯ୍ୟତାପରେ ପୃଥିବୀର ଉପରିସ୍ଥ ୨ ବା ୩ ଫୁଟ ମାତ୍ର ମୃତ୍ତିକା ରାତ୍ରି ଅପେକ୍ଷା ଦିବା ଭାଗରେ ସମଧିକ ଉତ୍ତପ୍ତ ହୁଏ । ଶୀତକାଳ

ତୁଳନାରେ ଗ୍ରୀଷ୍ମକାଳେ ତଦପେକ୍ଷା ଅଧିକ ଦୂର ନିମ୍ନ ପର୍ଯ୍ୟନ୍ତ ଅପେକ୍ଷାକୃତ ଅଧିକ ଉଷ୍ଣ ହୋଇଥାଏ । କିନ୍ତୁ ୬୦, ୭୦ ଫୁଟରୁ ଅଧିକ ନିମ୍ନରେ ସୌରକିରଣ ପ୍ରଭାବ ଅନୁଭୂତ ହୁଏନାହିଁ । ଫରାସୀ ଦେଶର ରାଜଧାନୀ ପାରିସ୍ ନଗରୀର ମାନମନ୍ଦିରରେ ୫୯ ଫୁଟ ନିମ୍ନରେ ଗୋଟିଏ ତାପମାନ ଯନ୍ତ୍ର ନିହିତ ଅଛି; ଶୀତ, ଗ୍ରୀଷ୍ମ, ଅବା ଦିବାରାତ୍ରିରେ ତଦନ୍ତର୍ଗତ ପାରଦର ଉତ୍ତାପର ହ୍ରାସ ବୃଦ୍ଧି ଦେଖାଯାଉ ନାହିଁ । ଭୂଗର୍ଭସ୍ଥ ଗୋଟିଏ ନିର୍ଦ୍ଦିଷ୍ଟ ନିମ୍ନରେ ଦିବାରାତ୍ରି, ଶୀତ, ଗ୍ରୀଷ୍ମ ପ୍ରଭୃତି ପ୍ରାକୃତିକ ବୈଷମ୍ୟ ପରିଲକ୍ଷିତ ହୁଏ ନାହିଁ । ଊର୍ଦ୍ଧ୍ୱରେ ଓ ଅଧୋଦେଶରେ ଯଥାକ୍ରମେ ସୌରପାର୍ଥିବ ତେଜର ପ୍ରଭାବ ଦେଖିବାକୁ ମିଳେ । ଏହାକୁ ଚିର ସମଶୀତୋଷ୍ଣ ସ୍ଥଳ କୁହାଯାଏ ।

**ସୂର୍ଯ୍ୟାଗ୍ନି** : ଯେଉଁ ସକଳ ତେଜର କଥା ଉଲ୍ଲେଖ କରାଗଲା ସୌର ତେଜ ତୁଳନାରେସେ ସକଳ ଅକିଞ୍ଚିତ୍କର ବୋଧହୁଏ; ସୂର୍ଯ୍ୟ ହିଁ ତାପର ଆଦି କାରଣ । ତାଙ୍କଠାରୁ ଆମ୍ଭେ ତାପ ଓ ଆଲୋକ ପାଉଅଛୁଁ; କିନ୍ତୁ ସେହି ତାପ ଓ ଆଲୋକ ସୂର୍ଯ୍ୟ କେଉଁଠାରୁ ପାଉଛନ୍ତି ତାହା ଅଜ୍ଞେୟ ।

ତାପ ଓ ଆଲୋକ ଘଟିତ ସକଳ ବ୍ୟାପାର ହିଁ ତାଙ୍କଠାରୁ ସମ୍ପାଦିତ ହେଉଅଛି । ଦୀପଶିଖା, ଇନ୍ଧନାଗ୍ନି, ଦାବାଗ୍ନି, ବିଦ୍ୟୁଦଗ୍ନି, ବଜ୍ରାଗ୍ନି ପ୍ରଭୃତି ସୂର୍ଯ୍ୟଦ୍ୱାରା ପ୍ରଭାବିତ । ସୂର୍ଯ୍ୟ ହିଁ ସାଗରକୁ ଜଳୀୟ ଶରୀର; ପବନକୁ ବାୟବୀୟ ଆକାର ପ୍ରଦାନ କରିଅଛନ୍ତି । ସେହି ସମୁଦ୍ର ଜଳକୁ ବାଷ୍ପ ରୂପେ ପରିଣତ କରି ମେଘ ଉତ୍ପାଦନ କରୁଅଛନ୍ତି । ତାହାଙ୍କଦ୍ୱାରା ନବପଲ୍ଲବରେ ତରୁଲତାନିକର, କାନନରାଜିରେ ଧରଣୀବକ୍ଷ ଶୋଭା ପାଉଅଛି । ତାଙ୍କ ଯୋଗୁଁ ହିଁ କୀଟାଦପି କ୍ଷୁଦ୍ର ଜୀବଠାରୁ ପ୍ରକାଣ୍ଡ ଜୀବ ସୃଷ୍ଟି ହୁଏ । ସୂର୍ଯ୍ୟ ତେଜରୂପେ ଆବିର୍ଭୂତ ହୋଇ ପୁନରାୟ ତେଜ ରୂପେ ତିରୋହିତ ହେଉଛନ୍ତି । ଏବଂ ତାହାଙ୍କ ଅଗେମନ ଓ ଅନ୍ତର୍ଦ୍ଧାନ କାଳେ ଯାବତୀୟ ନୈସର୍ଗିକ ବ୍ୟାପାର ସମ୍ପାଦିତ ହେଉଅଛି । କି ସ୍ଥାବର କି ଜଙ୍ଗମ ସମସ୍ତ ଜୀବସୃଷ୍ଟି ସୂର୍ଯ୍ୟଙ୍କଠାରୁ ହିଁ ସ୍ୱାସ୍ଥ୍ୟଲାଭ କରି ସୁଖ ସ୍ୱାଚ୍ଛନ୍ଦ୍ୟରେ ଜୀବନ ଧାରଣ କରନ୍ତି । ତାହାଙ୍କୁ ଯୋଗୁଁ ବୃଷ୍ଟି ହୁଏ । ସୂର୍ଯ୍ୟଙ୍କ ବିଶେଷ ବିବରଣ, ଦୈବତ ତରଙ୍ଗାନ୍ତର୍ଗତ ସୌର ସମ୍ପ୍ରଦାୟେ ଦ୍ରଷ୍ଟବ୍ୟ ।

**ଅନୁମିତିଗ୍ରାହ୍ୟ ତାପ** : ଯେଉଁ ତାପ ସ୍ପର୍ଶଶକ୍ତିରେ କିମ୍ବା ତାପମାନ ଯନ୍ତ୍ରରେ ଲକ୍ଷିତ ହୁଏ ନାହିଁ ଅଥଚ ଏହାର ସତ୍ତା ଉପଲବ୍ଧି କରାଯାଏ ତାହାର ନାମ ଗୂଢ଼ ବା ଅନୁମିତି ଗ୍ରାହ୍ୟ ତାପ ।

ତାପଦ୍ୱାରା ଅନେକ ପଦାର୍ଥ ତରଳେ, ଦ୍ରବୀଭୂତ ହେବା ସମୟରେ ଦେଖାଯାଏ ଯେପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ରୂପେ ଗଳନ ସମାପ୍ତ ନହୁଏ,ସେପର୍ଯ୍ୟନ୍ତ ତାହାର ତାପକ୍ରମ ସ୍ଥିର ଓ ସମାଭାବେ ରହେ, ଦ୍ରବୀଭୂତ ହେବା ସମୟରେ ଯେଉଁ ତାପ ଥାଏ ତାହା ତାପମାନ ଯନ୍ତ୍ରଦ୍ୱାରା ଅବଧାରିତ ହୋଇପାରେ ନାହିଁ । ତରଳିତ ହେବାବେଳେ କେତେକ ତାପ ଶୋଷଣ କରେ; ଉକ୍ତ ତାପ ସେହି ପଦାର୍ଥକୁ ତରଳ ଅବସ୍ଥାରେ ରଖି ପର୍ଯ୍ୟବସିତ ହୋଇଯାଏ; ଘନପଦାର୍ଥ ତରଳୀକୃତ ହେଲେ ତାପର କାର୍ଯ୍ୟ ଆବଶ୍ୟକ ହୁଏ ନାହିଁ । ସୁତରାଂ ତାହାର ସତ୍ତା ତାପମାନ ଯନ୍ତ୍ରରେ ପ୍ରତ୍ୟକ୍ଷ ହୋଇପାରେ ।

**ଆପେକ୍ଷିକ ତାପ :** ସମାନ ତାପକ୍ରମରେ କୌଣସି ଦୁଇଟି ବିଭିନ୍ନ ପଦାର୍ଥକୁ ଏକ ଶ୍ରେଣୀର ପାତ୍ରରେ ସମାନ ଦୂରେ ରଖି ଏକସମୟରେ ସମଭାବରେ ତାପ ଦେଲେ ଶେଷରେ ଦେଖିବ, ତାହାର ତାପକ୍ରମରେ ଅନେକ ବୈଲକ୍ଷଣ୍ୟ ଘଟିଅଛି । ପାରଦ ଓ ଜଳକୁ ସେହିପରି ଅବସ୍ଥାରେ ରଖି ଦେଖିବ, ପାରଦ ଜଳ ଅପେକ୍ଷା ଅଧିକ ଉତ୍ତପ୍ତ ହେବ ।

ତାପ ବିଷୟକ ପ୍ରବନ୍ଧ ପ୍ରାୟ ଶେଷ ହେଲା । ତାପ ବିଜ୍ଞାନର ଏକ ବିଶିଷ୍ଟ ଅଂଶ ତଡ଼ିତ୍, ଆଲୋକ ସମ୍ବନ୍ଧେ ଦୈନନ୍ଦିନ କେତେ ନୂତନ ବିଷୟ ଆବିଷ୍କୃତ ହେଉଅଛି, ତାହାର ବର୍ଣ୍ଣନା ଦୁଃସାଧ୍ୟ । ଏହି ତାପଠାରୁ ହିଁ କୁଜ୍ଝଟିକା,ମେଘ, ବୃଷ୍ଟି, ଝଡ଼, ଶିଶିର, ତୁଷାର ଉତ୍ପନ୍ନ ହୋଇଥାଏ ।

## ଜଳ

ମହର୍ଷି ଯାସ୍କ ଜଳକୁ ଏକୋତ୍ତରଶତ ନାମେ ଅଭିହିତ କରିଅଛନ୍ତି । ଏହାଛଡ଼ା ଜଳର ଅପର ନାମ ଇରା; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଏତେଗୁଡ଼ିଏ ନାମ ସତ୍ତ୍ୱେ ବେଦରେ ଅପ୍ ଶବ୍ଦର ପ୍ରୟୋଗ ହିଁ ବହୁଳ ଦେଖାଯାଏ; ଋଗ୍‌ବେଦରେ ଋଷିମାନେ ପୁନଃପୁନଃ ଇନ୍ଦ୍ରଙ୍କୁ ଜଳଲାଗି ପ୍ରାର୍ଥନା କରିଅଛନ୍ତି; ଆର୍ଯ୍ୟଋଷିଗଣ ଜଳକୁ ଇନ୍ଦ୍ରଙ୍କର ପ୍ରସାଦ ମନେକରନ୍ତି । ''ଇନ୍ଦ୍ରାତ୍ ପ୍ରାପ୍ତା ଇତି ଆପଃ'' । ଇନ୍ଦ୍ରଙ୍କ ନିକଟରୁ ପ୍ରାପ୍ତବୋଲି ଜଳକୁ ଆପ କହନ୍ତି । ବୋଧହୁଏ ଆପ ଜଳର ପ୍ରଥମ ନାମ । ଆର୍ଯ୍ୟମାନେ ସ୍ଥିର କରିଅଛନ୍ତି ଯେ, ସର୍ବପ୍ରଥମେ ଜଳର ସୃଷ୍ଟି ହୋଇଥିଲା । ଯଥା :-

''ଆପୋହବୈ ଇଦ୍ରମଗ୍ରେ'', (ଶତପଥ ବ୍ରା ୧୧,୧,୬,୧)

''ଆପୋହ୍ୟଗ୍ରେ ବିଶ୍ୱମାବନ୍ ଗର୍ଭଂ ଦଧାନା'' (ଅଥର୍ବବେଦ, ୪,୨,୬)

ଅପ୍ ଶରୀରକୁ ପବିତ୍ର କରେ, ଜୀବନ ରକ୍ଷାକରେ ବୋଲି ଆର୍ଯ୍ୟଋଷିମାନେ ଏହାକୁ ପୂଜା କରନ୍ତି । ''ଆପୋ ଅସ୍ମାନ୍ମାତରଃ ଶୁନ୍ଧୟନ୍ତୁ''; (ଋଗ୍‌ବେଦ ୧୦,୧୭,୧୦) । ଅପ୍ ମାତାପରି ସେ ଆମ୍ଭଙ୍କୁ ପବିତ୍ର କରନ୍ତୁ । ଋଗ୍‌ବେଦ ଦଶମ ମଣ୍ଡଳ ନବମ ସୂକ୍ତରେ କେବଳ ଅପ୍‌ର ସ୍ତବ କରାଯାଇଅଛି । ତହିଁରେ ସ୍ଥାନେ ସ୍ଥାନେ ଲେଖାଅଛି କବିମାନେ ବିବସ୍ୱତର ସଦନରେ ଅପ୍ ସକଳର ଉତ୍ତମ ମହିମା କୀର୍ତ୍ତନ କରନ୍ତୁ ।

ଅନ୍ୟ ଋକ୍‌ଟିରେ ଅପ୍‌କୁ ଭେଷଜ ଓ ସକଳ ଦ୍ରବ୍ୟର ମାତା ବୋଲି ଉଲ୍ଲେଖ କରାଯାଇଅଛି । ସୃଷ୍ଟିତତ୍ତ୍ୱ ସମ୍ବନ୍ଧେ ପ୍ରାୟ ସର୍ବପ୍ରଥମେ ଜଳ ସୃଷ୍ଟି ହୋଇଅଛି ବୋଲି ସକଳ ଦେଶର ବୈଜ୍ଞାନିକମାନେ କହନ୍ତି । ସମଗ୍ର ପୃଥିବୀ ଜଳଦ୍ୱାରାଆପ୍ଲୁତ ହୋଇ ରହିଥିଲା । ଜଳ ବ୍ୟତୀତ ଜୀବନଧାରଣ ଅସମ୍ଭବ ବୋଲି ଜଳର ଅନ୍ୟତମ ନାମ ଜୀବନ । ଏହି ଜଳ ପ୍ରଦାନ ମୂଳରେ ମେଘ ବିଦ୍ୟମାନ, ବୃଷ୍ଟିପାତ ସମୟରେ ବିଦ୍ୟୁତ୍ ଚମକ ଓ ବଜ୍ରଧ୍ୱନି ହୋଇଥାଏ । ଅତଏବ ସେହି ବିଦ୍ୟୁତ୍ ଓ ବଜ୍ର ସମ୍ବନ୍ଧେ ଦୁଇଚାରି ପଦ ଆଲୋଚନା କରିବୁ ।

"ବାତାୟ କପିଳା ବିଦ୍ୟୁଦାତପାୟ ହିଲୋହିତା,

ପୀତା ବର୍ଷାୟ ବିଜ୍ଞେୟା ଦୁର୍ଭିକ୍ଷାୟାସିତା ଭବେତ୍" ।

ଅର୍ଥାତ୍ ବିଷ୍ଣୁପୁରାଣମତେ ଜୈମିନିଙ୍କ ଔରସରେ ବିଦ୍ୟୁତ୍‌ର ଜନ୍ମ । ତାହାର ବର୍ଣ୍ଣ ଚତୁର୍ବିଧ । ବର୍ଣ୍ଣ ଭେଦରେ କ୍ରିୟାଭେଦ ହୋଇଥାଏ । ଯଥା - କପିଳ ବର୍ଣ୍ଣରେ ବାୟୁର ପ୍ରକୋପ, ଲୋହିତ ବର୍ଣ୍ଣରେ ଆତପର ପ୍ରକୋପ, ପୀତବର୍ଣ୍ଣରେ ବର୍ଷଣ, ଅସିତ୍ ବର୍ଣ୍ଣରେ ଦୁର୍ଭିକ୍ଷ ହୁଏ ।

ବୃହତ୍‌ସଂହିତାରେ ଲେଖାଅଛି- ଧିଷ୍ଣ୍ୟ, ଅଶନି, ବିଦ୍ୟୁତ୍ ପ୍ରଭୃତି ଉଲ୍କା ବହୁବିଧ; ଏହା ମଧ୍ୟରୁ ତଟତଟ ସ୍ୱନା ବିଦ୍ୟୁତ୍ ସହସା ତ୍ରାସ ଜନ୍ମାଇଁ ଜୀବ ଓ ଉଦ୍ଭିଦୋପରି ପତିତ ହୁଏ ।

ଏହି ଉଲ୍କା ବିଶେଷ ଅନ୍ତରୀକ୍ଷସ୍ଥ ଜ୍ୟୋତିଷ୍କ ପଦାର୍ଥ ରୂପେ ଗଣ୍ୟ । ଜ୍ୟୋତିଃଶାସ୍ତ୍ରେ ଧିଷ୍ଣ୍ୟା, ଉଲ୍କା, ଅଶନି, ବିଦ୍ୟୁତ୍ ଓ ତାରା ଏହି ୫ବିଧ କ୍ରିୟାଭେଦରେ ବର୍ଣ୍ଣିତ ଅଛି । ଅଶନି ନାମକ ବଜ୍ର, ମନୁଷ୍ୟ, ଗଜ, ଅଶ୍ୱ, ମୃଗ, ପାଷାଣ, ଗୃହ, ତରୁ ଓ ପଶୁମାନଙ୍କ ଉପରେ ଘୋର ଶବ୍ଦରେ ପତିତ ହୁଏ । ଭୂମିଷ୍ଠ ହେଲେ ଚକ୍ରବତ୍ ଭ୍ରମଣ କରି ସେହି ସ୍ଥାନ ଭେଦ କରେ ।

ସମ୍ପ୍ରତି ବୈଜ୍ଞାନିକମାନେ ତାରାଗୁଡ଼ିକୁ (shooting stars) ଧିଷ୍ଣ୍ୟା ଉଲ୍କା, Meteors ଏବଂ ଯେଉଁ ସକଳ ଉଲ୍‌କା ପଡ଼ିବାବେଳେ ଶବ୍ଦକରେ, ସେଗୁଡ଼ିକୁ dotonatlong Meteors ବା boides କହନ୍ତି ।

ବୈଦ୍ୟୁତ୍‌ର ଆକାର ବିଶାଳ, ଗତି କୁଟିଳ; ବିଦ୍ୟୁତ୍, ଅଶନି ପ୍ରାୟ ଏକ କିନ୍ତୁ ପ୍ରକୃତି ଭେଦରେ ଦ୍ୱିବିଧ । ବିଦ୍ୟୁତ୍‌ର ଉତ୍ପତ୍ତି ସମ୍ବନ୍ଧେ ଶ୍ରୀପତି କହନ୍ତି, ସମୁଦ୍ର ମଧ୍ୟରେ ବାଡ଼ବାନଳ ନାମକ ଅଗ୍ନି ଥିବା ଯୋଗୁଁ ଧୂମରାଶି ଉତ୍ଥିତ ହୋଇ ପବନଦ୍ୱାରା ଆକାଶ ପଥେ ପରିଚାଳିତ ହେଲେ ଇତସ୍ତତଃ ବିକ୍ଷିପ୍ତ ହୁଏ । ପରେ ସୂର୍ଯ୍ୟ କିରଣରେ ଉତ୍ତପ୍ତ ହୋଇସେଥିମଧ୍ୟରୁ ଯେଉଁ ସକଳ ସ୍ଫୁଲିଙ୍ଗ ଉତ୍ପନ୍ନ ହୁଏ ତାହାହିଁ ବିଦ୍ୟୁତ୍ । ଏହି ବିଦ୍ୟୁତ୍ କୌଣସି ସମୟରେ ଅନ୍ତରୀକ୍ଷରୁ ସ୍ଖଳିତ ହୋଇ ଭୂପୃଷ୍ଠରେ ପତିତ ହେଲେ ତଦ୍ଦ୍ୱାରା ଜଗତର ପ୍ରଭୂତ ଅନିଷ୍ଟ ଘଟିଥାଏ । ଅଶନିପାତ ସମ୍ବନ୍ଧରେ ଉକ୍ତ ଗ୍ରନ୍ଥରେ ଉଲ୍ଲେଖ ଅଛି ଯେ ବିଦ୍ୟୁତେଜ ଅକସ୍ମାତ୍ ମୃତ୍ତିକାଦିରେ ମିଶ୍ରିତ ହେଲେ ଅନୁକୂଳ ବା ପ୍ରତିକୂଳ ବାତାଘାତରେ ଆକାଶରେ ବାତ୍ୟାବତ୍ ଘୂର୍ଣ୍ଣିତ ହୋଇଥାଏ । ଅକାଳ ବୃଷ୍ଟି ସମୟରେ ବିଶେଷତଃ ଏହା ଦେଖା ଦେଇଥାଏ । ପ୍ରାବୃଟ କାଳେ ଏହା ବିରଳ । କାରଣ ସେହି ଋତୁରେ ପାଂଶୁ ଉତ୍ଥିତ ହୁଏ ନାହିଁ ।

ପାର୍ଥିବ, ଜଳୀୟ, ତୈଜସ ଭେଦରେ ବିଦ୍ୟୁତ୍ ତ୍ରିବିଧ । ବୃହତ୍ ସଂହିତାରେ ବିଦ୍ୟୁଲ୍ଲତା, ବିଦ୍ୟୁଦାମନ୍ ପ୍ରଭୃତି ପ୍ରୟୋଗ ଦେଖି ବୋଧହୁଏ ଭିନ୍ନ ଭିନ୍ନ ବିଦ୍ୟୁତ୍‌ରେ ଭିନ୍ନ ଭିନ୍ନ ଶବ୍ଦ ଆରୋପିତ ହୋଇଅଛି, ଆଧୁନିକ ବୈଜ୍ଞାନିକଗଣ ବିଦ୍ୟୁତ୍‌କୁ କ୍ରିୟାଭେଦେ ବିଭିନ୍ନ ନାମରେ ଅଭିହିତ କରନ୍ତି ।

ପରୀକ୍ଷାଦ୍ୱାରା ପ୍ରମାଣିତ ହୋଇଅଛି ଯେ, ଜଳ ଓ ସ୍ଥଳର ଉପରିସ୍ଥ ଭାଗରେ ବାୟୁର ତଡ଼ିତ୍ ଶକ୍ତି (Electricity) ସମାନ ନୁହେଁ । ଜଳ ବାଷ୍ପୀଭୂତ ହେବା ସଙ୍ଗେସଙ୍ଗେ ତହିଁରୁ ତଡ଼ିତ୍ ପ୍ରକାଶ ପାଏ ଏବଂ ମେଘର ଜଳକଣାରେ ତାହା ସଦା ବର୍ତ୍ତମାନ ଥାଏ । ବାଷ୍ପକଣା ଘନୀଭୂତ ହେଲେ ଜଳକଣାରେ ପରିଣତ ହୁଏ; ତନ୍ନିହିତ ତଡ଼ିତ୍ ବିଦ୍ୟୁତ୍ ଆକାରରେ ପ୍ରକାଶ ପାଇଥାଏ । ବାଷ୍ପକଣା ଘନୀଭୂତ ହେବା ନିମନ୍ତେ ଧୂଳିକଣା ସୁଦ୍ଧା ଆବଶ୍ୟକ ହୋଇଥାଏ ।

ଏ ସକଳ ବିଷୟରେ ଆଲୋଚନା କଲେ ଜଣାଯାଏ ଯେ, ମେଘରେ ବିଦ୍ୟୁତ୍‌ର ବିଦ୍ୟମାନତା ସମ୍ବନ୍ଧେ ଆଧୁନିକ ବିଜ୍ଞାନ ସହିତ ପ୍ରାଚୀନ ଜ୍ୟୋତିଷ ଶାସ୍ତ୍ରର ବିଶେଷ ମତ ବୈଷମ୍ୟ ପରିଲକ୍ଷିତ ହୁଏନାହିଁ ।

ବିଦ୍ୟୁତ୍ ଓ ଅଶନି ମଧ୍ୟରେ ସୌସାଦୃଶ୍ୟ ପରିଦୃଷ୍ଟ ହେଲେ ସୁଦ୍ଧା ବସ୍ତୁତଃ ଏକ ନୁହେଁ; ଏହାର ଧାତୁଗତ ଅର୍ଥରେ ମଧ୍ୟ ପାର୍ଥକ୍ୟ ପରିଲକ୍ଷିତ ହୁଏ; ଯଥା- "ଦ୍ୟୁତ୍ ଧାତୁର ଅର୍ଥ ଦୀର୍ପ୍ତି ଦ୍ୟୁତ୍‌ରୁ ବିଦ୍ୟୁତ୍ ହେଲା ଏବଂ ଅଶଧାତୁର ଅର୍ଥ ସଂହତି, ଅଶ୍‌ରୁ ଅଶନି ଶବ୍ଦ ହୋଇଅଛି" । ଅପିଚ ବେଦରେ ଅଶନା ଶବ୍ଦରେ କ୍ଷେପଣୀୟ ପ୍ରସ୍ତର ବୁଝାଏ । ଏଥିରୁ ସ୍ପଷ୍ଟ ହୁଏ ଯେ, ଇନ୍ଦ୍ରର ବଜ୍ର ପ୍ରସ୍ତର ବା ଲୌହମୟ ଥିଲା । ଅଶନି ଶବ୍ଦଦ୍ୱାରା କେବଳ Glolrular Lightning ଏବଂ Lightning Tubes ବା Fulgurites ବୁଝାଏ, ଶେଷୋକ୍ତ ଅର୍ଥ ବିଶେଷ ଭାବେ ପ୍ରଚଳିତ । ଅଶନି ଅର୍ଥ Thunderbolt । ନିର୍ଘାତ ନାମେ ଅନ୍ୟ ଏକ ପ୍ରକାର ନୈସର୍ଗିକ ବ୍ୟାପାର ଅଛି । ବୃହତ୍ ସଂହିତାରେ ଉଲ୍ଲେଖ ଅଛି, ବାୟୁ ଅନ୍ୟ ଏକ ବାୟୁଦ୍ୱାରା ଆଘାତପ୍ରାପ୍ତ ହୋଇ ଭୂତଳେ ପତିତ ହେଲେ ନିର୍ଘାତ ବୋଲାଯାଏ । ଏହାର ଶବ୍ଦ ଭୈରବ ଓ ଜର୍ଜ୍ଜର, ଏହି ଅନୀଳ ସଂଘର୍ଷସମ୍ଭୂତ ନିର୍ଘାତ ଭୂପୃଷ୍ଠରେ ପତିତ ହେଲେ ଭୂକମ୍ପ ହୁଏ । ଯେଉଁ ନିର୍ଘାତ ପତନରେ ସମଗ୍ର ପୃଥିବୀ ପ୍ରକମ୍ପିତ ହୁଏ, ତାହାକୁ A sudden clap of thundur ବୋଲାଯାଏ ।

ଜ୍ୟୋତିଃଶାସ୍ତ୍ରରେ ବର୍ଣିତ ଅଛି ପ୍ରହରଣାର୍ଥ ବଜ୍ରର ଆକାର ଦ୍ୱିବିଧ,ଗୋଟିଏ ବିଷ୍ଣୁ ଚକ୍ର ପରିଏବଂ ଅନ୍ୟଟି ଗୁଣନଚିହ୍ନ (x) ପରି ।

ସାଧାରଣତଃ ଲୋକଙ୍କର ଧାରଣା ଏହି ଯେ, ମେଘ ଜଳୀୟବାଷ୍ପରୁ ଉତ୍ପନ୍ନ ହୁଏ; ଜଳୀୟବାଷ୍ପ କ୍ରମଶଃ ଘନୀଭୂତ ହୋଇ ମେଘରୂପେ ଆକାଶରେ ଭ୍ରମଣ କରେଏବଂ ଶୀତଳବାୟୁ ସ୍ତରେ ପ୍ରବେଶ କରି ଶୀତଳତା ପ୍ରାପ୍ତହୋଇ ବୃଷ୍ଟିପାତ ହୁଏ; କିନ୍ତୁ ସହସା ମେଘ ବାରିବର୍ଷଣ କରେନାହିଁ । ଏହି ବ୍ୟବଧାନରେ ଇତସ୍ତତ ଚଳନଜନିତ ସଂଘର୍ଷଣରେ ଅଗ୍ନି ଉତ୍ପନ୍ନ ହୋଇଥାଏ; ଏହା ବିଦ୍ୟୁତ୍ ନାମେ ଖ୍ୟାତ; ଏହାର ସଂସ୍ପର୍ଶରେ ମୃତ୍ୟୁଅବଶ୍ୟମ୍ଭାବୀ ।

ଏହି ବିଦ୍ୟୁତସମ୍ବନ୍ଧେ ଅଗ୍ନି ପ୍ରସଙ୍ଗରେ ବିସ୍ତୃତ ଭାବେ ଆଲୋଚିତ ହୋଇଅଛି; ଅତଏବ ଏଥିର ପୁନରାଲୋଚନ ଅନାବଶ୍ୟକ । ସମ୍ପ୍ରତି ବଜ୍ର ସମ୍ବନ୍ଧରେ ଦୁଇଚାରି ପଦ ଉଲ୍ଲେଖ କରି ପ୍ରବନ୍ଧର ଉପସଂହାର କରିବୁଁ ।

## ବଜ୍ର

ଏହାର ଉତ୍ପତ୍ତି ସମ୍ବନ୍ଧେ ପୁରାଣାଦିରେ ନାନା ମତ ଦେଖାଯାଏ । ''ମତ୍ସ୍ୟପୁରାଣ''ରେ ଲେଖାଅଛି ଯେ ବିଶ୍ୱକର୍ମା ରବିଦେବଙ୍କୁ ଭ୍ରମୀ ଯନ୍ତ୍ରରେ ଭ୍ରମଣ କରାଇ ତାଙ୍କର ତେଜ ପୃଥକ କଲାକାଳେ ସେହି ସହସ୍ର କିରଣାତ୍ମକ ପୃଥକୀକୃତ ସୂର୍ଯ୍ୟ ତେଜ, ବିଷ୍ଣୁଚକ୍ରେ ରୁଦ୍ରଶୂଳେ ଓ ଶକ୍ରବଜ୍ରେ ସ୍ଥିତ ହୋଇଥିଲା । ଅଥବା ସେହିତେଜ ଦେବତ୍ରୟଙ୍କ ଆୟୁଧ ହେଲା ।

''ଭାଗବତରେ ଲେଖାଅଛି'' ଇନ୍ଦ୍ରଦେବ ବୃତ୍ରାସୁରଙ୍କୁ ବଧ କରିବା ନିମନ୍ତେ ଦଧିଚୀ ମୁନିଙ୍କର ଅସ୍ଥିଦ୍ୱାରା ବିଶ୍ୱକର୍ମାଙ୍କୁ ବଜ୍ର ନିର୍ମାଣ କରଣେ ଆଦେଶ ଦେଲେ । ବିଶ୍ୱକର୍ମା ଦଧିଚୀଙ୍କ ଅସ୍ଥିରେ ବଜ୍ର ନିର୍ମାଣ କଲେ । ଇନ୍ଦ୍ର ଏହି ବଜ୍ରଦ୍ୱାରା ବୃତ୍ରାସୁରକୁ ବଧକଲେ; ଇନ୍ଦ୍ରଦେବଙ୍କ ଆୟୁଧ ବଜ୍ର ନାମେ ଖ୍ୟାତ ।

ଆହ୍ନିକ ତତ୍ତ୍ୱେ ଲେଖାଅଛି, ଭୟାନକ ବଜ୍ରପାତ ହେବା ପୂର୍ବରୁ ଯେଉଁ ନିର୍ଘୋଷ ହୁଏ ତେତିକିବେଳେ ପୂର୍ବ ବା ଉତ୍ତର ମୁଖରେ ଜୈମିନି ମୁନିଙ୍କ ନାମ ତ୍ରିବାର ସ୍ମରଣ କଲେ ବଜ୍ରଭୟ ଦୂର ହୁଏ ।

ବଜ୍ରପାତରେ ମନୁଷ୍ୟ ମୂର୍ଚ୍ଛିତ ହୋଇଥିଲେ ଭୂମିରେ ପୋତି ରଖିଲେ ବଞ୍ଚିଯାଏ । ଅନେକଙ୍କ ମତେ, ମେଘଦ୍ୱୟର ସଂଘର୍ଷଣରେ ବିଦ୍ୟୁତ୍ ସଙ୍ଗେ ଯେଉଁ ଶବ୍ଦ ଉତ୍ପନ୍ନ ହୁଏ ତାହା ବଜ୍ର । ପ୍ରବାଦ ଅଛି କଦଳୀ ବୃକ୍ଷ ବା ଗୋବର ଗାଦିରେ ବଜ୍ର ପଡ଼ିଲେ ତାହା ସେଥିରେ ରହିଯାଏ, ଦେଖିବାକୁ ଲୌହଶଳାକା ପରି- ବୈଜ୍ଞାନିକଙ୍କ ମତେ ବଜ୍ର ବିଦ୍ୟୁତ୍ ସଙ୍ଗେ ତଡ଼ିତ୍ କ୍ରିୟାରୁ ଉତ୍ପନ୍ନ ଅଗ୍ନିସ୍ଫୁଲିଙ୍ଗ ମାତ୍ର । ଏହାର ଆନୁସଙ୍ଗିକ ବ୍ୟାପାରର ସାଦୃଶ୍ୟ ଦେଖି 'ବେଞ୍ଜାମିନ୍ ଫ୍ରାଙ୍କଲିନ୍' ଉଭୟଏକ କାରଣରୁ ଉତ୍ପନ୍ନ ବୋଲି ଅନୁମାନ କରନ୍ତି । ବୈଜ୍ଞାନିକମାନେ ଯନ୍ତ୍ର ନିର୍ଗତ ତଡ଼ିତ୍ ଓ ମେଘସ୍ଥ ତଡ଼ିତ୍ ପରୀକ୍ଷାକରି ଏକ ବୋଲି ସ୍ୱୀକାର କରନ୍ତି, ସେଥିର ଗୋଟିଏ ପରୀକ୍ଷା - ଆକାଶ ମେଘାଚ୍ଛନ୍ନ ହୋଇ ବିଦ୍ୟୁତ୍ ଚମକ ହେଉଥିବା ସମୟରେଆଦ୍ର ସୂତ୍ର ସଂଲଗ୍ନ କାଗଜ ଚକି ଆକାଶରେ ଉଡ଼ାଇଲେ ତଡ଼ିତ୍ ଶକ୍ତି ଆଦ୍ରସୂତ୍ର ଦ୍ୱାରା ପ୍ରବାହିତ ହୋଇ ସଂଲଗ୍ନ ସୂତ୍ର ଧରିଥିବା ବ୍ୟକ୍ତିର ଅଙ୍ଗୁଳିରେ ଅନୁଭୂତ ହୁଏ । ବସ୍ତୁତଃ ବିଦ୍ୟୁତ୍ ବୃହତ୍‌ତଡ଼ିତ ସ୍ଫୁଲିଙ୍ଗଏବଂ ବଜ୍ରଧ୍ୱନି ତଦାନୁସଙ୍ଗିକ ବାୟୁର ଆକସ୍ମିକ ଉତ୍ତାପ ଓ ପ୍ରସାରଣଜନିତ ଶବ୍ଦ ।

ଗୃହକୁ ବଜ୍ରପାତରୁ ରକ୍ଷା କରିବାପାଇଁ ଗୃହ ପାର୍ଶ୍ୱରେ ସୂକ୍ଷ୍ମାଗ୍ର ଧାତୁଦଣ୍ଡ ପୋତିରଖିବା ପ୍ରଥା ଅଛି; କିନ୍ତୁ ଏହା ପ୍ରକୃତ ପ୍ରତିଷେଧକ ଉପାୟ ନୁହେଁ ବୋଲି ଆଧୁନିକଙ୍କ ମତ । ଗୃହକୁ ବଜ୍ରପାତରୁ ରକ୍ଷା କରିବାକୁ ହେଲେ ଗୃହର କିୟଦଂଶ ଲୌହ ବା ତାମ୍ର ଜାଲରେ ଆଚ୍ଛନ୍ନ ରଖିବା ବିନା ଗତ୍ୟନ୍ତର ନାହିଁ । ଏ ସମ୍ବନ୍ଧେ ବିଶେଷ ବିବରଣ ଅଗ୍ନି ପ୍ରସଙ୍ଗରେ ତଡ଼ିତ୍ ଓ ତାପ ବିଷୟ ଦ୍ରଷ୍ଟବ୍ୟ ।

ଏହି ପଞ୍ଚ ମହାଭୂତର ସୃଷ୍ଟିରେ ପରସ୍ପର ସମ୍ବନ୍ଧ ଅକ୍ଷୁର୍ଣ୍ଣ ରହିଅଛି. ଅନ୍ୟୋନ୍ୟ ସହାୟ ସମ୍ପର୍କରେ ବାଷ୍ପ, ମେଘ ପ୍ରଭୃତି ବିବିଧ ପଦାର୍ଥର ଉଦ୍ଭବହୋଇଥାଏ; ଅତଏବ ଜଳ ସମ୍ବନ୍ଧୀୟ ଯେଉଁ ସକଳ ବସ୍ତୁ ସୃଷ୍ଟି ହୋଇଅଛି ଏବଂ ଜଳ ଯହିଁରୁ ଭୂତଳେ ପତିତ ହେଉଅଛି ସେହି ବାଷ୍ପ, କୁଜ୍ଝଟିକା, ମେଘ ପ୍ରଭୃତି ସମ୍ବନ୍ଧେ ଦୁଇଚାରି ପଦ ଲେଖିବୁ ।

## କୁଜ୍ଝଟିକା

ପାଶ୍ଚାତ୍ୟ ପଣ୍ଡିତଗଣ ଏହି କୁଜ୍ଝଟିକା ସମ୍ବନ୍ଧେ ବିସ୍ତୃତ ଆଲୋଚନା କରିଅଛନ୍ତି । ପୃଥିବୀର ଉପରି ଭାଗରେ ଯେଉଁ ଜଳୀୟ ବାଷ୍ପରାଶି ବାୟୁର ସ୍ୱଚ୍ଛତାରେ ବ୍ୟାଘାତ ଜନ୍ମାଏ ତାହାହିଁ କୁଜ୍ଝଟିକା ନାମେ ଅଭିହିତ । ମେଘ ଓ କୁହୁଡ଼ି ମଧ୍ୟରେ ପାର୍ଥକ୍ୟ ଅତି ଅଳ୍ପ । ଆକାଶର ଉପର ସ୍ତରେ ଯେଉଁ ସାମାନ୍ୟ ଘନୀଭୂତ ବାଷ୍ପରାଶି ଭ୍ରମଣ କରେ ତାହା ମେଘ । ଭୂଭାଗର ଅତି ନିକଟରେ ସଞ୍ଚିତ ନ ରହୁଥିଲେ କୁହୁଡ଼ିକୁ ମଧ୍ୟ ମେଘ ବୋଲାଯାନ୍ତା । କୁହୁଡ଼ି ଅତି କ୍ଷୁଦ୍ରତମ ଜଳବିନ୍ଦୁର ସମଷ୍ଟି ମାତ୍ର । ଏ ସକଳ ଜଳବିନ୍ଦୁ ଏତେ କ୍ଷୁଦ୍ର ଯେ ଏହା ଅଣୁବୀକ୍ଷଣ ଯନ୍ତ୍ରର ସାହାଯ୍ୟ ବ୍ୟତୀତ ଦୃଶ୍ୟ ହୁଏ ନାହିଁ । ଯେଉଁ କାରଣରୁ ଶିଶିରର ଉତ୍ପତ୍ତି ତାହାର ବିପରୀତ କାରଣରୁ କୁହୁଡ଼ିର ଉତ୍ପତ୍ତି । ଆର୍ଦ୍ର ଭୂଭାଗର ତାପମାନ ଅପେକ୍ଷା ତତ୍‌ସଂଲଗ୍ନ ବାୟୁରାଶିର ତାପମାନ କିଞ୍ଚିତ୍ ନ୍ୟୂନ ହେଲେ କୁହୁଡ଼ି ଉତ୍ପନ୍ନ ହୁଏ । ଆର୍ଦ୍ର ଓ ଅଳ୍ପାତିରିକ୍ତ ପରିମାଣରେ ଉତପ୍ତ ଭୂଭାଗରୁ ଉଦ୍ଭୁତ ଜଳୀୟବାଷ୍ପ ନିକଟସ୍ଥ ଶୀତଳବାୟୁ ସ୍ପର୍ଶରେ ଘନୀଭୂତ ହୋଇ କ୍ଷୁଦ୍ର କ୍ଷୁଦ୍ର ଜଳବିନ୍ଦୁରେ ପରିଣତ ହୁଏ; ଏହାହିଁ କୁହୁଡ଼ି । ଏହାର ଉତ୍ପତ୍ତି ନିମନ୍ତେ ଦୁଇଟି ଅବସ୍ଥା ପ୍ରୟୋଜନ- ଉପରିସ୍ଥ ବାୟୁରାଶି ଅପେକ୍ଷା ପୃଥିବୀ ପୃଷ୍ଠର ଉଷ୍ଣ ତାପମାନ ଏବଂ ବାୟୁରାଶିର ଆର୍ଦ୍ରତା ।

ମୁସୋପ୍ଲେଟିୟର ତଡ଼ି ଶକ୍ତି ସହିତ କୁହୁଡ଼ିର ସମ୍ବନ୍ଧ ନିର୍ଣ୍ଣୟ କରି କୁହୁଡ଼ିକୁ ଦୁଇଟି ନାମରେ ଅଭିହିତ କରିଅଛନ୍ତି; ଯଥା- ରେଜିନାସ୍ (Resinaus), ଭିଟ୍ରିୟସ୍ (Vetrious) । ଶେଷୋକ୍ତ କୁହୁଡ଼ି ବିବିଧ ପ୍ରକାର ଦେଖାଯାଏ । ଶୁଷ୍କ କୁଜ୍ଝଟିକା (Dry fogs) ନାମେ ଅନ୍ୟ ଏକପ୍ରକାର କୁହୁଡ଼ି ମଧ୍ୟ ଅଛି । ଶୁଷ୍କ କୁହୁଡ଼ି ଧୂମ୍ରମୟ; ଏହା ସହିତ ଜଳୀୟବାଷ୍ପର କୌଣସି ସମ୍ବନ୍ଧ ନାହିଁ ।

**ମେଘ :** ସୂର୍ଯ୍ୟଙ୍କର ଅନ୍ୟତମ ନାମ ସହସ୍ରାଂଶୁ । ସହସ୍ରାଂଶୁ ସହସ୍ର କର ପ୍ରସାରଣ କରି ସମୁଦ୍ର, ନଦ, ନଦୀ ପ୍ରଭୃତି ସକଳ ପ୍ରକାର ଜଳାଶୟରୁ ଜଳ ଶୋଷଣ କରି ନେଉଅଛନ୍ତି । ଏହି ଶୋଷିତ ଜଳରାଶି ବାଷ୍ପରୂପେ ଉର୍ଦ୍ଧ୍ୱକୁ ଉଠେ । ଯେତେ ଉର୍ଦ୍ଧ୍ୱକୁ ବାଷ୍ପରାଶି ଉତ୍ଥିତ ହୁଏ ତେତେ ଅଧିକତର ଶୀତଳ ବାୟୁ ସହିତ ସମ୍ପୃକ୍ତ ହୋଇଥାଏ । ୧୮୦୦୦ ଫୁଟ ଉର୍ଦ୍ଧ୍ୱସ୍ଥିତ ବାୟୁର ଶୈତ୍ୟ ବରଫ ପରି । କେହି କେହି କହନ୍ତି ଏହି ଶୀତଳ ବାୟୁର ସଂସ୍ପର୍ଶରେ ଜଳୀୟ ବାଷ୍ପ ଘନୀଭୂତ ହୋଇ ମେଘରେ ପରିଣତ ହୋଇଥାଏ, କିନ୍ତୁ ଏହି ମତ ସର୍ବବାଦୀସମ୍ମତ ନୁହେଁ ।

ଜଳୀୟବାଷ୍ପ ଯେପରି କୁହୁଡ଼ିର ହେତୁ ସେପରି ଏହା ମଧ୍ୟ ମେଘର ହେତୁ । ମେଘର ଉର୍ଦ୍ଧ୍ୱଗତି ସମ୍ବନ୍ଧେ ଅନେକ କାରଣ ଅଛି, ଯଥା- ବାୟୁର ଅବସ୍ଥା, ଆର୍ଦ୍ରତା, ଋତୁ, ସମୁଦ୍ର ବା ପର୍ବତର ସାମୀପ୍ୟ । ଆସନ୍ନ- ମୂଷଳଧାରା ବର୍ଷଣଶୀଳ ଘନକୃଷ୍ଣ ମେଘ ଭୂପୃଷ୍ଠରୁ ଦୁଇ ବା ତିନିଶତ ଗଜ ଉର୍ଦ୍ଧ୍ୱରେ ବିଚରଣ କରେ, ପୁଣି କାର୍ପାସବତ୍ ଶୁଭ୍ର ଅଭ୍ରମାଳା ଭୂପୃଷ୍ଠରୁ ୪,୫ ମାଇଲ ଉର୍ଦ୍ଧ୍ୱରେ ବିଚରଣ କରେ ।

ଭୂଭାଗ ବା ସମୁଦ୍ରାଦି ଜଳାଶୟରୁ ତାପଯୋଗେ ଜଳୀୟବାଷ୍ପ ଉର୍ଦ୍ଧ୍ୱକୁ ଉଠି ବାୟୁମଣ୍ଡଳରେ ଭାସୁଥାଏ, ପରିଶେଷରେ ଆକାଶର କୌଣସି ବାୟୁରାଶି ଏହି ଜଳୀୟବାଷ୍ପରେ ପରିପୂର୍ଣ୍ଣ ରୂପେ ପରିସିକ୍ତ (Saturated) ହୋଇପଡ଼େ, ତା'ପରେ ନିମ୍ନଭାଗରୁ ବାଷ୍ପ ଉଦ୍ଗତ ହେଲେ ବାୟୁରାଶି ପୂର୍ଣ୍ଣ ରୂପେ ଆର୍ଦ୍ର ହୁଏ ଏବଂ ଜଳୀୟବାଷ୍ପ ଘନୀଭୂତ ହୋଇ ମେଘରେ ପରିଣତ ହୁଏ; ଏ ସକଳ ମେଘୋତ୍ପତ୍ତିର କାରଣ ସ୍ୱରୂପ ।

**ମେଘର ନାମକରଣ :** ବିଶିଷ୍ଟ ବୈଜ୍ଞାନିକ ହାୱାର୍ଡ଼ (Howard) ପ୍ରକାରଭେଦରେ ମେଘର ବିଭିନ୍ନ ନାମ କଳ୍ପନା କରିଅଛନ୍ତି- ଉଚ୍ଚତମ ଗଗନ ପଟରେ କାଶଶୁଭ୍ର ପରିଚ୍ଛନ୍ନ ଯେଉଁ ମେଘମାନ ଭାସମାନ ହେଉଥାଏ ତାହା ସିରସ୍ (Cirrus) ନାମେ ଖ୍ୟାତ । ଏହା ପ୍ରବଳ ବାୟୁ ବା ଝଟିକାର ପୂର୍ବ ଲକ୍ଷଣସୂଚକ । ଅପର ମେଘର ନାମ କ୍ୟୁମ୍ୟୁଲାସ୍ (Cumulus); ଏହାକୁ ଗ୍ରୈଷିଟକ୍ ମେଘ ମଧ୍ୟ କୁହାଯାଏ । ଏହି ଶୁଭ୍ର ମେଘଗୁଡ଼ିକ ପର୍ବତାକାରେ ଆକାଶ ମଣ୍ଡଳରେ ଭାସମାନ ହେଉଥାଏ । ଅନ୍ୟପ୍ରକାର ମେଘର ନାମ ଷ୍ଟ୍ରେଟାସ୍ (Stratus) । ଏହି ଶ୍ରେଣୀର ମେଘ ଘନୀଭୂତ ହୋଇଥାଏ, ଏଗୁଡ଼ିକ ଆକାଶରେ ଅନୁଗ୍ରସ୍ତ ଭାବେ ସ୍ତରେ ସ୍ତରେ ବିଚରଣ କରେ; ଉପତ୍ୟକା ଜଳଭୂମି ପ୍ରଭୃତିରୁ କୁହୁଡ଼ି ଉତ୍ଥିତ ହୋଇ ଏହିମେଘ ସୃଷ୍ଟି ହୋଇଥାଏ । ଏହି ନାମତ୍ରୟର ସମାସରେ ପାଶ୍ଚାତ୍ୟ ବୈଜ୍ଞାନିକଗଣ ମେଘକୁ ଅନେକ ନାମ ଦେଇଅଛନ୍ତି । ଯେଉଁ ମେଘରୁ ଜଳଧାରା ସମ୍ପାତରେ ବସୁଧାର ଅଙ୍ଗ ସୁଶୀତଳ ହୁଏ ସେହି ଘନ-କୃଷ୍ଣ-ସ୍ନିଗ୍ଧ-ମଧୁର-ଶ୍ୟାମଳ ବାରିଦପଟଳ ନିମ୍ବସ (Nimbus) ନାମେ ଖ୍ୟାତ ।

**ମେଘବିନ୍ଦୁ :** ମେଘବିନ୍ଦୁ ବା କୁଜ୍ଝଟିକା ଶିଶିର ବିନ୍ଦୁପରି ଜଳମୟ ନୁହେଁ; କିନ୍ତୁ ବୁଦ୍‌ବୁଦ୍ ପରି ଶୂନ୍ୟଗର୍ଭ । ଏହା ବୃଷ୍ଟିରେ ପରିଣତ ହେବା ସମୟରେ ଶୂନ୍ୟଗର୍ଭତା ବିନଷ୍ଟ ହୋଇ ଜଳରେ ପରିଣତ ହୁଏ ।

ମାସ ଭେଦରେ ବାୟୁରାଶିର ଶୀତାପ ଅବସ୍ଥାରେ ପାର୍ଥକ୍ୟ ଘଟିଲେ ତଦନୁପାତରେ ମେଘ ବିନ୍ଦୁର ଆକାରରେ ମଧ୍ୟ ପାର୍ଥକ୍ୟ ଘଟେ । ଅଗଷ୍ଟ ମାସରେ ୟୁରୋପରେ ଏହାର ଆକାର ଅତି କ୍ଷୁଦ୍ର ହୁଏ; ତେତେବେଳେ ଏହାର ପରିମାଣ ଏକ ଇଞ୍ଚର .୦୦୦୦୬ ଅଂଶମାତ୍ର; ଡିସେମ୍ବର ମାସରେ ଏହାର ଆକାର ବୃହତ୍ତମ; ତେତେବେଳେ ଏହାର ପରିମାଣ ଏକ ଇଞ୍ଚର .୦୦୦୨୫ ଅଂଶ ପର୍ଯ୍ୟନ୍ତ ହୁଏ ।

ମେଘ, ସୌଦାମିନୀ ଓ ତଡ଼ିତ୍ ସମ୍ବନ୍ଧେ ପ୍ରାଚୀନ ବୈଜ୍ଞାନିକ ପଣ୍ଡିତଗଣଙ୍କ ମଧ୍ୟରେ ଲେମ୍ (Lame), ବେକାରେଲ (Becuorel), ପେଲିଟୟର (Peltior) ପ୍ରଭୃତି ବୈଜ୍ଞାନିକମାନେ ବହୁଳ ଆଲୋଚନା କରିଅଛନ୍ତି ।

**ମେଘର କାର୍ଯ୍ୟ :** କେବଳ ବାରିଧାରା ବର୍ଷଣ କରି ଧରାପୃଷ୍ଠକୁ ଶୀତଳ କରିବାଦ୍ୱାରା ମେଘର କାର୍ଯ୍ୟ ତଥା ମେଘ ସୃଷ୍ଟିର ଉଦ୍ଦେଶ୍ୟ ପୂର୍ଣ୍ଣ ହୋଇଯାଏ ନାହିଁ । ମେଘଦ୍ୱାରା ସୂର୍ଯ୍ୟ ତାପ, ଓ ନୈଶ ବାଷ୍ପୋଦ୍ଗମ ହ୍ରାସ ହୁଏ । ଜୀବଜଗତ ପକ୍ଷେ ଏହି ଦୁଇଟି ଅବସ୍ଥା ବିଶେଷ ପ୍ରୟୋଜନ ।

**ମେଘ ସମ୍ବନ୍ଧେ ଆଧୁନିକ ସିଦ୍ଧାନ୍ତ :** ୧୮୯୨ ସାଲରେ ମିଉନିକ (Munic) ନଗରରେ ଇଣ୍ଟର ନେସନାଲ ମିଟିୟରଲଜିକାଲ କନ୍‌ଫରେନ୍‌ସରେ ସ୍ଥିରୀକୃତ ହୋଇଅଛି ଯେ, ମେଘ ସାଧାରଣରେ୫ ଭାଗରେ ବିଭକ୍ତ; ଯଥାଃ-

(୧) ଆକାଶର ଉଚ୍ଚତମ ପ୍ରଦେଶରେ ବିଚରଣଶୀଳ ମେଘ
(Very high in the air)

(୨) ଆକାଶ ପ୍ରଦେଶର ମଧ୍ୟବର୍ତ୍ତୀ ଉଚ୍ଚ ସ୍ଥାନରେ ବିଚରଣଶୀଳ ମେଘ
(At a medium height)

(୩) ଭୂପୃଷ୍ଠର ନିକଟବର୍ତ୍ତୀ ମେଘ
(Lying low or near the earth)

(୪) ବାୟୁର ଉଚ୍ଚ ପ୍ରବାହ ସ୍ତରସ୍ଥିତ ମେଘ
(In ascending current of air)

(୫) ଆକାଶର ପରିବର୍ତ୍ତନୋନ୍ମୁଖ ବାଷ୍ପ
(Masses vapour changing in form)

ମେଘ ବାଷ୍ପର ଘନୀଭୂତ ଅବସ୍ଥା ମାତ୍ର । ବାଷ୍ପ ଘନୀଭୂତ ହେଲେ ମେଘ ରୂପେ ପରିଣତ ହୋଇଥାଏ । ବାୟୁର ସ୍ତର ବିଶେଷ ତୁଷାରବତ୍ ଶୀତଳ ହୋଇ ତତ୍‌ସ୍ଥାନୀୟ ଜଳୀୟ ବାଷ୍ପସମୂହକୁ ନ୍ୟୂନାଧିକ ପରିମାଣେ ସାନ୍ଧ୍ୟ ଜଳଦାକାରେ (Stratus) ପରିଣତ କରିପାରେ । ମେଘତତ୍ତ୍ୱବିଦ୍ ପଣ୍ଡିତଗଣ ମେଘସମୂହକୁ ପ୍ରଧାନତଃ ୪ ଭାଗରେ ବିଭକ୍ତ କରିଅଛନ୍ତି, ଏହାର ବିବରଣ ନିମ୍ନରେ ପ୍ରଦତ୍ତ ହେଲା ।

(୧) ଷ୍ଟ୍ରେଟାସ୍ ମେଘଗୁଡ଼ିକ ସୁଦୀର୍ଘ ଏବଂ ଆକାଶରେ ଚକ୍ରବାଳ ପରି (Horizontally) ସ୍ତରେ ସ୍ତରେ ଅବସ୍ଥାନ କରେ ।

(୨) କିଉମିଉଲାସ୍ ମେଘଗୁଡ଼ିକ ପର୍ବତାକାର, ଏହାର ବରାଷ୍ପ ତୁଷାରବତ୍ ଘନୀଭୂତ ।

(୩) ସୀରସ୍ ମେଘଗୁଡ଼ିକ ଆକାଶର ଅତ୍ୟୁଚ୍ଚ ପ୍ରଦେଶରେ କାଶ-କୁସୁମ-କାନନ ସଦୃଶ

ଅବସ୍ଥାନ କରେ; ଏହାର ବାଷ୍ପ ସର୍ବାପେକ୍ଷା ଅଳ୍ପ ଘନୀଭୂତ; ଏହାର ମିଶ୍ରଣରେ ଅନେକ ପ୍ରକାର ମେଘ ସୃଷ୍ଟି ହୋଇ ବହୁ ନାମାନ୍ତର ଧାରଣ କରିଅଛି ।

(୪) ନିମ୍ବାସ୍ ମେଘଗୁଡ଼ିକ ଉଦୟହେଲେ ଧାରାବୃଷ୍ଟି ହୁଏ । ଏହି ମେଘ ଅନ୍ୟାନ୍ୟ ମେଘ ଅପେକ୍ଷା ଭୂପୃଷ୍ଠର ନିକଟବର୍ତ୍ତୀ । ଉପରୋକ୍ତ ଚାରୋଟି ମେଘ ପ୍ରଧାନ । ଏହାଛଡ଼ା ଅନ୍ୟାନ୍ୟ ମିଶ୍ରିତ ମେଘ ମଧ୍ୟ ଅଛି । ସୀରସ୍ ସିରୋ-ଷ୍ଟ୍ରେଟସ୍, ସିରୋକିଉମିଲାସ୍ ମେଘମାନେ ଆକାଶର ୧୦୦୦୦ ଗଜ ଉଚ୍ଚରେ ବିଚରଣ କରନ୍ତି । ସୀରସ୍ ବ୍ୟତୀତ ଅପର ଦୁଇଟି ମେଘ ତିନିସହସ୍ରଠାରୁ ଛ ସହସ୍ର ଗଜଯାଏ ଉଚ୍ଚରେ ଭ୍ରମଣ କରନ୍ତି । ଷ୍ଟ୍ରେଟୋ, କିଉମିଉଲାସ୍ ଓ ନିମ୍ବସ୍ ମେଘଗୁଡ଼ିକ ୧୦୦୦୦ାରୁ ୨୦୦୦ ଗଜ ପର୍ଯ୍ୟନ୍ତ ଉଚ୍ଚରେ ବିଚରଣ କରନ୍ତି । ଉଚ୍ଚ ବାୟୁସ୍ତରେ ବିଚରଣଶୀଳ ମେଘର ଭିତ୍ତି ପ୍ରାୟ ୧୮୦୦ ଗଜ ଉଚ୍ଚରେ ଏବଂ ମେଘଗଠନୋନ୍ମୁଖ ବାଷ୍ପ ୧୫୦୦ ଗଜ ଉଚ୍ଚରେ ବିଚରଣ କରେ ।

ମେଘ ବୃଷ୍ଟି ସହିତ ବାୟୁର ସମ୍ବନ୍ଧ ଅତି ଘନିଷ୍ଠ; ବାୟୁର ପ୍ରଚାପ, ବାୟୁର ତାପ, ଅଧଃଉର୍ଦ୍ଧ୍ୱସ୍ତର ବିଚରଣଶୀଳ ବାୟୁର ଶୈତ୍ୟ ଓ ଉଷ୍ଣତା ସହିତ ମେଘ ବୃଷ୍ଟି ଓତଃପ୍ରୋତ ଭାବେ ବିଜଡ଼ିତ ।

## ମେଘର ଫଳ ଗଣନା

ଆକାଶରେ କି ପ୍ରକାର ମେଘ କେଉଁ ସମୟରେ ଦେଖାଦେଲେ କି ଫଳ ଘଟିଥାଏ ସେ ସକଳ ଆମ୍ଭର ପରାଶର ସଂହିତାଦି ଶାସ୍ତ୍ରରୁ ଏବଂ ଖନା ଓ ଡାକରଷି ପ୍ରଭୃତି ବଚନରୁ ଜଣାଯାଏ । ପାଶ୍ଚାତ୍ୟ ବୈଜ୍ଞାନିକଗଣ ମଧ୍ୟ ଏ ସମ୍ବନ୍ଧେ କିଛି କିଛି ଅନୁସନ୍ଧାନ କରିଅଛନ୍ତି । ଯଥା :-

**ସିରିସ୍ ମେଘ :** ଗଗନରେ ଅତି ଉର୍ଦ୍ଧ୍ୱରେ ରଜତଶୁଭ୍ର ଅଭ୍ରମାଳା ଭାସମାନ ହେବା ଦେଖିଲେ ମନେ କରିବେ ଯେ, ଅତିଶୀଘ୍ର ଆକାଶର ପରିବର୍ତ୍ତନ ଘଟିବ । ଗ୍ରୀଷ୍ମକାଳରେ ଏହା ବୃଷ୍ଟିର ପୂର୍ବ ଲକ୍ଷଣର ସୂଚନା ଦିଏ; ଶୀତକାଳେ ଏହି ଶ୍ରେଣୀର ମେଘ ଦେଖାଗଲେ ସହର ଅଧିକ ମାତ୍ରାରେ ତୁଷାରପାତ ହୁଏ । ଏହି ମେଘପୁଞ୍ଜ ସଙ୍ଗେ ଦକ୍ଷିଣ ପଶ୍ଚିମ ବାୟୁ ପ୍ରବାହର ସମ୍ବନ୍ଧ ଥାଏ । ଏହି ବାୟୁ ସମ୍ପର୍କରୁ ସିରସ୍ ମେଘ କ୍ରମଶଃ ଘନୀଭୂତ ହୋଇ ଆର୍ଦ୍ର ହୁଏ ଏବଂ କ୍ରମଶଃ ଅନୁକୂଳ ବାୟୁର ସ୍ପର୍ଶମାତ୍ରେ ବୃଷ୍ଟି ହୁଏ ।

**ସିରୋ କିଉମିଉଲାସ୍ :** ଏହି ମେଘ ଜଳ ଉଦ୍ଭବର ପରିଚାୟକ; କିନ୍ତୁ ଝଡ଼ ହୁଏ ନାହିଁ । ଷ୍ଟ୍ରେଟ୍ସ୍ ମେଘ ଦେଖି ବୁଝିପାରିବେ ଯେ ଆକାଶରେ ଉର୍ଦ୍ଧ୍ୱଗମନଶୀଳ ବାୟୁ ପ୍ରବାହ ଅତି ଅଳ୍ପ । କିଉମିଉଲାସ୍ ମେଘ ଉର୍ଦ୍ଧ୍ୱଗମନଶୀଳ ବାୟୁପ୍ରବାହର ପ୍ରଭାବ ପରିଚାୟକ, ଭୂପୃଷ୍ଠର ଉପର ଭାଗ ଉଷ୍ଣହୋଇ ଏହାର ଉପରିସ୍ଥ ବାୟୁକୁ ଉଷ୍ଣ କରେ ଓ ସେହି ବାୟୁ ଉର୍ଦ୍ଧ୍ୱକୁ ଉତ୍‌ଥିତ ହୁଏ, ମେଘସ୍ତର ଉଷ୍ଣ ହେଲେ ତଦୁପରିସ୍ଥ ବାୟୁରାଶି ଉର୍ଦ୍ଧ୍ୱକୁ ପରିଚାଳିତ ହୁଏ । ବାଷ୍ପରାଶି ଅତିଶୟ

ଘନୀଭୂତ ହେଲେ ତଦ୍ଦ୍ୱାରା ସୌରକିରଣ ଏପରି ଭାବେ ଶୋଷିତ ହୁଏ ଯେ, ସେହି ସକଳ ଜଳୀୟକଣା ଭେଦକରି ସୂର୍ଯ୍ୟକିରଣ ଭୂପୃଷ୍ଠରେ ପତିତ ହୁଏନାହିଁ । ଏହା ବିକୀର୍ଣ୍ଣ ନହୋଇ ଉପରିସ୍ଥ ବାୟୁରାଶିକୁ ଉତ୍ତପ୍ତ କରିଦିଏ । ନିମ୍ନଭାଗ ଓ ଭୂପୃଷ୍ଠ ସ୍ନିଗ୍ଧ ଛାୟାରେ ଶୀତଳ ହୁଏ । କିଉମିଉଲାସ୍ ମେଘ ଦେଖିଲେ ଜଣାଯାଏ ଯେ, ଆର୍ଦ୍ରବାୟୁରାଶି କୌଣସି ଗିରି ବା ପ୍ରତିବନ୍ଧକ ଦିଗେ ପ୍ରବାହିତ ହେଉଅଛି ।

ମେଘ ସଞ୍ଚୟ ସମୟରେ ତାପରାଶି ମେଘରେ ପ୍ରଚ୍ଛନ୍ନ ଭାବେ ବିମିଶ୍ରିତ ରହେ । ମେଘଯୁକ୍ତ ବାୟୁ ନିମ୍ନଗାମୀ ହେଲେ ପୁନଶ୍ଚ ସେହି ପ୍ରଚ୍ଛନ୍ନ ତାପ ମେଘରେ ପ୍ରକାଶ ପାଏ । ଏହି ବିକିରଣଦ୍ୱାରା ବାୟୁ ରାଶିରୁ ଅତି ଅଳ୍ପ ମାତ୍ରାରେ ତାପ ହ୍ରାସ ହୁଏ । ବୃଷ୍ଟିହେବା ସମୟରେ ବାୟୁର ପ୍ରଚ୍ଛନ୍ନ ତାପ ହ୍ରାସ ନହେଲେ ଉକ୍ତ ବାୟୁଅଧୋଗାମୀ ହୁଏ ଏବଂ ଭୂପୃଷ୍ଠରେ ଅତ୍ୟନ୍ତ ଉଷ୍ଣ ବାୟୁର ପ୍ରଭାବ ଅନୁଭୂତ ହୋଇଥାଏ । ୧୮୨୬ ଖ୍ରୀଷ୍ଟାବ୍ଦରେ Espy ତାପବିଜ୍ଞାନର ତତ୍ତ୍ୱ ଆବିଷ୍କାର କରିଥିଲେ ।

ଅନେକ ସମୟରେ ଦିବାଭାଗର ପ୍ରଖର ସୂର୍ଯ୍ୟତାପ ଓ ଶୁଷ୍କବାୟୁ ପ୍ରବାହର ପ୍ରଭାବରେ ମେଘ ସଞ୍ଚିତ ନହୋଇ ବାଷ୍ପୀଭୂତ ହୋଇଯାଏ । ଜଳୀୟବାଷ୍ପମିଶ୍ରିତ ଏହି ବାୟୁକୁ ଝଞ୍ଜାନିଳ କୁହାଯାଏ । କିନ୍ତୁ ବାୟୁ ଆର୍ଦ୍ର ହେଲେ ଉକ୍ତ ବାୟୁରାଶି ମଧ୍ୟରେ ସୂର୍ଯ୍ୟତାପରେ ଯେଉଁ ପରିବର୍ତ୍ତନ ସଂଘଟିତ ହୋଇଥାଏ ସେ ପରିବର୍ତ୍ତନ ଝଡ଼ର ସଂଘଟନର ଅନୁକୂଳ ।

## ବୃଷ୍ଟିର ବିବରଣ

ଅଗ୍ନୌପ୍ରାସ୍ତାହୁତିଃ ସମ୍ୟଗାଦିତ୍ୟମୁପତିଷ୍ଠତେ

ଆଦିତ୍ୟା ଜ୍ଜାୟତେ ବୃଷ୍ଟି ବୃଷ୍ଟେରନ୍ନଂ ତତଃ ପ୍ରଜାଃ (ମନୁ ୩-୭୬)

ଅଗ୍ନିରେ ଯେଉଁ ଆହୁତି ପ୍ରଦାନ କରାଯାଏ ତାହା ସୂର୍ଯ୍ୟଦେବଙ୍କଠାରେ ସମ୍ୟକ୍ ରୂପେ ଅବସ୍ଥାନ କରେ; ସୂର୍ଯ୍ୟଙ୍କଠାରୁ ବୃଷ୍ଟି ହୁଏ, ବୃଷ୍ଟିରୁ ଅନ୍ନ ଜନ୍ମେ ଏବଂ ଅନ୍ନରୁ ପ୍ରଜା ଉତ୍ପନ୍ନ ହୁଅନ୍ତି । ସୁତରାଂ ଯଜ୍ଞାଦି ବୃଷ୍ଟିର କାରଣ । ଯଜ୍ଞ ବାହୁଲ୍ୟରେ ବୃଷ୍ଟିର ବାହୁଲ୍ୟ । ''ସହସ୍ର ଗୁଣ ମୁତ୍ସ୍ରଷ୍ଟୁ ମାଦତ୍ତେହି ରସଂ ରବିଃ'' (ରଘୁ ୧ମ ସର୍ଗ) । ସୂର୍ଯ୍ୟ ପୃଥିବୀସ୍ଥ ରସ ଆକର୍ଷଣ କରି ତାହା ସହସ୍ର ଗୁଣରେ ବର୍ଷଣ କରନ୍ତି । ବୃହତ୍ ସଂହିତା କହନ୍ତି ଏକମାତ୍ର ଅନ୍ନ ଜଗତର ପ୍ରାଣସ୍ୱରୂପ; ଏହି ଅନ୍ନବର୍ଷା କାଳର ଆୟତ୍ତ । ଏଥିଲାଗି ଯତ୍ନ ସହକାରେ ବର୍ଷାକାଳ ପରୀକ୍ଷା କରିବା ଉଚିତ ।

ଗର୍ଗ, ପରାଶର, କାଶ୍ୟପ ଓ ବତ୍ସ ପ୍ରଭୃତି ମୁନିଗଣ ବୃଷ୍ଟିର ଗର୍ଭଲକ୍ଷଣ ଯେପରି ନିରୂପଣ କରିଅଛନ୍ତି, ତଦନୁରୂପ ବୃଷ୍ଟିର ଗର୍ଭଲକ୍ଷଣ ସ୍ଥିର କରିପାରିଲେ କେଉଁ ଦିନ କେଉଁ ସମୟରେ ବୃଷ୍ଟିହେବ ତାହା ଅନାୟାସରେ ନିଶ୍ଚିତ ହୋଇପାରିବ ।

କେତେକଙ୍କ ମତେ କାର୍ତ୍ତିକ ଶୁକ୍ଳପକ୍ଷାନ୍ତେ ବୃଷ୍ଟିଗର୍ଭଦିବସ ସ୍ଥିର କରାଯାଏ । କିନ୍ତୁ ଏହି ମତ ଉତ୍କୃଷ୍ଟ ନୁହେଁ । ମାର୍ଗଶୀର୍ଷ ମାସର ଶୁକ୍ଳ ପ୍ରତିପଦଠାରୁ ଯେଉଁଦିନ ଚନ୍ଦ୍ର ପୂର୍ବାଷାଢ଼ା ନକ୍ଷତ୍ର ସଂଲଗ୍ନ ହୁଅନ୍ତି, ସେହିଦିନଠାରୁ ବୃଷ୍ଟିର ଗର୍ଭଲକ୍ଷଣ ଗଣନା କରାଯାଏ । ଚନ୍ଦ୍ର ଯେଉଁ ନକ୍ଷତ୍ରପ୍ରାପ୍ତ ହେଲେ ମେଘର ଗର୍ଭସ୍ଥିତ ହୁଏ, ଚନ୍ଦ୍ରବଶରୁ ଅର୍ଥାତ୍ ଚନ୍ଦ୍ରର ଦିନାନୁସାରେ ୧ ୯ ୬ ୫ ଦିନରେ ସେହି ଗର୍ଭର ପ୍ରସବ କାଳ, ଅର୍ଥାତ୍ ସେହି ଦିନରେ ବୃଷ୍ଟି ହୁଏ ।

ଅଗ୍ରହାୟଣ ମାସଜାତ ଗର୍ଭ ସୌର ଶୁକ୍ଳ ପକ୍ଷ ଜାତଗର୍ଭ ମନ୍ଦଫଳଯୁକ୍ତ ହୋଇଥାଏ । ମାଘ ଶୁକ୍ଳ ପକ୍ଷର ଗର୍ଭ, ଶ୍ରାବଣ କୃଷ୍ଣ ପକ୍ଷରେ, ମାଘ କୃଷ୍ଣ ପକ୍ଷର ଗର୍ଭ ଭାଦ୍ରପଦ ଶୁକ୍ଳପକ୍ଷରେ, ଫାଲ୍‌ଗୁନ ଶୁକ୍ଳପକ୍ଷଜାତ ଗର୍ଭ ଭାଦ୍ରପଦ କୃଷ୍ଣ ପକ୍ଷରେ, ଫାଲ୍‌ଗୁନ କୃଷ୍ଣ ପକ୍ଷର ଗର୍ଭ ଆଶ୍ୱିନ ଶୁକ୍ଳପକ୍ଷରେ, ଚୈତ୍ର ଶୁକ୍ଳପକ୍ଷଜାତ ଗର୍ଭ ଆଶ୍ୱିନ କୃଷ୍ଣ ପକ୍ଷରେ ଏବଂ ଚୈତ୍ର କୃଷ୍ଣପକ୍ଷଜାତ ଗର୍ଭ କାର୍ତ୍ତିକ ଶୁକ୍ଳପକ୍ଷରେ ପ୍ରସୂତ ହୁଏ ।

ପୂର୍ବ ଦିଗର ମେଘ ପଶ୍ଚାଦୁଥିତ ଓ ପଶ୍ଚିମର ମେଘ ପୂର୍ବ ଦିଗରେ ଉଦିତ ହୁଏ; ଏତଦ୍‌ବ୍ୟତୀତ ଅନ୍ୟାନ୍ୟ ଦିଗରେ ମଧ୍ୟ ଏହିପରି ବିପର୍ଯ୍ୟୟ ଘଟିଥାଏ । ଐଶାନ୍ୟ କୋଣ ଓ ପୂର୍ବଦିଗର ପବନରେ ଆକାଶ ବିମଳ, ଆନନ୍ଦରେ ରହି ମୃଦୁ ବର୍ଷଣ ହୋଇଥାଏ; ଚନ୍ଦ୍ର ସୂର୍ଯ୍ୟ ସ୍ନିଗ୍ଧ ଓ ବହୁଳ ଶୁକ୍ଳ ମଣ୍ଡଳ ପରିବୃତ ହୁଅନ୍ତି ।

ମାର୍ଗଶିର ମାସରେ ଅତି ଶୀତ ଓ ପୌଷ ମାସରେ ଅତିଶୟ ହିମପାତ ହେଲେ ଗର୍ଭ ପୁଷ୍ଟ ହୁଏନାହିଁ । ଫାଲ୍‌ଗୁନରେ ପବନ ଯଦି ରୁକ୍ଷ ଓ ପ୍ରଚଣ୍ଡ ହୁଏ, ତାହାହେଲେ ମେଘ ସଞ୍ଚୟ ସ୍ନିଗ୍ଧ, ପରିବେଶ ଅସମ୍ପୂର୍ଣ୍ଣ ହୁଏଏବଂ ସୂର୍ଯ୍ୟ ଅଗ୍ନିଙ୍କ ପରି ପିଙ୍ଗଳ ଓ ତାମ୍ରବର୍ଣ୍ଣ ଧାରଣ କଲେ ମେଘର ଗର୍ଭ ଶୁଭ ହୁଏ । ଚୈତ୍ରରେ ଗର୍ଭ ସକଳ ପବନ, ମେଘ, ବୃଷ୍ଟି ଓ ପରିବେଶଯୁକ୍ତ ହେଲେ ଶୁଭ ଘଟେ; ବୈଶାଖ ମାସରେ ମେଘ, ବାୟୁ, ଜଳ ଓ ବିଦ୍ୟୁତ୍‌ଯୁକ୍ତ ହୋଇ ଶବ୍ଦିତ ହେଲେ ଶୁଭ ହୋଇଥାଏ ।

ମୁକ୍ତା ଓ ରଜତ ସନ୍ନିଭ ବା ତମାଳ, ନୀଳୋତ୍ପଳ ଓ ଅଞ୍ଜନର ଦ୍ୟୁତି ବିଶିଷ୍ଟ କିମ୍ବା ଜଳଚର ପ୍ରାଣୀଗଣ ସଦୃଶ ଆକାରସମ୍ପନ୍ନ ମେଘସକଳ ପ୍ରଭୂତ ଜଳ ବର୍ଷଣ କରେ ପୁଣି ଗର୍ଭ ସୂର୍ଯ୍ୟର ତୀବ୍ର କିରଣରେ ଅଭିତାପିତ ଓ ମନ୍ଦ ମରୁତସମନ୍ୱିତ ହେଲେ ମେଘ ପ୍ରସବ କାଳେ ଭ୍ରଷ୍ଟହୋଇ ଜଳଧାରା ବର୍ଷଣ କରେ ।

ଅଶନି, ଉଲ୍କା, ପାଂଶୁପାତ, ଦିଗ୍‌ଦାହ, ଭୂମିକମ୍ପ, ଗନ୍ଧର୍ବନଗର, କୀଳକ, କେତୁ, ଗ୍ରହଯୁଦ୍ଧ, ରୁଧିରାଦି ବୃଷ୍ଟି ବିକୃତି, ପରିଘ, ଇନ୍ଦ୍ରଧନୁ ରାହୁଦର୍ଶନ ଓ ଅନ୍ୟାନ୍ୟ ତ୍ରିବିଧ ଉତ୍ପାତଦ୍ୱାରା ଗର୍ଭ ନଷ୍ଟ ହୁଏ । ଋତୁସ୍ୱଭାବଜନିତ ଲକ୍ଷଣଦ୍ୱାରା ଯେଉଁ ଗର୍ଭ ବୃଦ୍ଧି ହୁଏ ତାହାର ବିପରୀତ ଲକ୍ଷଣରେ ବିପର୍ଯ୍ୟୟ ଘଟେ । ସକଳ ଋତୁରେ ପୂର୍ବଭାଦ୍ରପଦ, ପୂର୍ବାଷାଢ଼ା, ଉତ୍ତରାଷାଢ଼ା ଓ ରୋହିଣୀ ନକ୍ଷତ୍ରରେ ବର୍ଦ୍ଧିତ ଗର୍ଭ ବହୁଜଳ ବୃଷ୍ଟି କରେ; ଶତଭିଷା, ଅଶ୍ଳେଷା, ଆର୍ଦ୍ରା, ସ୍ୱାତୀ

ଓ ମଘା ନକ୍ଷତ୍ରରେ ଗର୍ଭ ଶୁଭପ୍ରଦ; ଏହା ବହୁ ଦିବସ ପୋଷଣ କରେ ଓ ତ୍ରିବିଧ ଉତ୍ପାତ ନିବାରଣ କରେ ।

ଚନ୍ଦ୍ର ଉପରୋକ୍ତ ୫ଟି ନକ୍ଷତ୍ରରୁ କୌଣସି ଗୋଟିକରେ ଅବସ୍ଥାନ କଲେ ମାର୍ଗଶୀର୍ଷଠାରୁ ବୈଶାଖ ପର୍ଯ୍ୟନ୍ତ ୬ ମାସରେ ଯଥାକ୍ରମେ, ୮,୬,୨୦,୨୪,୨୬ ଦିନ ମାନଙ୍କରେ ତିନିଦିନ ଉପର୍ଯ୍ୟୁପରି ବୃଷ୍ଟି ହୁଏ ।

ଗର୍ଭ ସକଳ କ୍ରୂର ଗ୍ରହଯୁକ୍ତ ହେଲେ କରକା, ଅଶନି ଓ ମତ୍ସ୍ୟାଦି ବୃଷ୍ଟି ହୋଇଥାଏ । ଚନ୍ଦ୍ର ସୂର୍ଯ୍ୟ ଶୁଭଗ୍ରହଯୁକ୍ତ ହେଲେ ଗର୍ଭରୁ ବହୁ ବୃଷ୍ଟି ହୁଏ । ଅକାରଣରେ ଗର୍ଭ ସମୟରେ ଅତି ବୃଷ୍ଟି ହେଲେ ଗର୍ଭର ଅଭାବ ଘଟେ । ଦ୍ରୋଣ ପରିମାଣର ଅଷ୍ଟାଂଶରୁ ଅଧିକ ବର୍ଷା ହେଲେ ଗର୍ଭ ନଷ୍ଟ ହୁଏ । ପୁଷ୍ଟଗର୍ଭ ଗ୍ରହୋପଘାତାଦିଦ୍ୱାରା ଦୀର୍ଘକାଳବ୍ୟାପୀ ବର୍ଷଣରହିତ ହେଲେ ପ୍ରସବ କାଳରେ କରକା ସହିତ ବୃଷ୍ଟି ହୁଏ ।

ଯେଉଁ ଗର୍ଭ ପଞ୍ଚବିଧ ନିମିତ୍ତଦ୍ୱାରା ପୁଷ୍ଟ ହୁଏ, ସେହି ଗର୍ଭ ଶତଯୋଜନବ୍ୟାପୀ ବୃଷ୍ଟି କରେ । ଏହି ପଞ୍ଚ ନିମିତ୍ତରୁ ପ୍ରତ୍ୟେକର ଅଭାବରେ ଶତଯୋଜନର ଅର୍ଦ୍ଧାଂଶ କ୍ରମେ ବୃଷ୍ଟିର ହ୍ରାସ ହୁଏ; ଅର୍ଥାତ୍ ଚତୁର୍ନିମିତ୍ତିକ ଗର୍ଭ ୫୦ ଯୋଜନ, ତ୍ରିନିମିତ୍ତକ ୨୫ ଯୋଜନ, ଦ୍ୱିନିମିତ୍ତକ ୧୨ ଯୋଜନ । ଏକ ନିମିତ୍ତକ ୬। ଯୋଜନାବ୍ୟାପୀ ବର୍ଷଣ କରେ । ପଞ୍ଚନିମିତ୍ତକ ଗର୍ଭ ଏକ ଦ୍ରୋଣ ପରିମିତ, ଜଳ ପବନ ନିମିତ୍ତକ ଗର୍ଭ ତିନି ଆଢ଼କ, ଏବଂ ବିଦ୍ୟୁନ୍ନିମିତ୍ତକ ୬। ଆଢ଼କ ଜଳ ବର୍ଷଣ କରେ ।

ବାତ,ବାରି, ବିଦ୍ୟୁତ୍, ଗର୍ଜ୍ଜନ ଓ ମେଘ ଏହି ୫ଟି ନିମିତ୍ତ ଯୁକ୍ତ ଗର୍ଭ ବହୁ ଜଳପ୍ରଦ । ଗର୍ଭକାଳେ ଅତିବୃଷ୍ଟି ହେଲେ, ପ୍ରସବ କାଳ ଅତିକ୍ରମ କରି ଜଳକଣା ବୃଷ୍ଟି ହୋଇଥାଏ ।

ଜ୍ୟେଷ୍ଠ ଶୁକ୍ଳ ଅଷ୍ଟମ୍ୟାଦି ୪ ଦିନର ବାୟୁଦ୍ୱାରା ମେଘର ଗର୍ଭ ସ୍ଥିର କରିବାକୁ ହେବ । ଏହି ଦିନମାନଙ୍କରେ ମୃଦୁ ଶୁଭ ବାୟୁ ପ୍ରବାହ କିମ୍ବା ଆକାଶରେ ସ୍ନିଗ୍ଧମେଘାଚ୍ଛନ୍ନତା ଉକ୍ତ କାର୍ଯ୍ୟର ଅନୁକୂଳ । ଏହି ୪ ଦିନ ସ୍ୱାତୀ ପ୍ରଭୃତି ଚାରୋଟି ନକ୍ଷତ୍ରରେ ଘଟିଲେ ଶ୍ରବଣାଦି ମାସରେ ଉତ୍ତମ ବୃଷ୍ଟି ହୁଏ ।

ଏହି ସମସ୍ତ ବୃଷ୍ଟିର ଲକ୍ଷଣ । ଆଢ଼କର ଲକ୍ଷଣ ଓ ପରିମାଣ ଏବଂ ସଦ୍ୟ ବୃଷ୍ଟି ସମ୍ବନ୍ଧେ ଅନେକ ବିଷୟ ଶାସ୍ତ୍ରରେ ଲେଖାଅଛି; ତହିଁରୁ କେତେକ ବିଷୟ ନିମ୍ନରେ ଦିଆଗଲା ।

## ସଦ୍ୟବୃଷ୍ଟିର ଲକ୍ଷଣ

ବୃଷ୍ଟି ବିଷୟରେ ପ୍ରଶ୍ନ କରିବା କାଳେ, ଚନ୍ଦ୍ର ସଲିଳାୟନକାରୀ ରାଶିକି ଅର୍ଥାତ୍ କର୍କଟ, କୁମ୍ଭ, ମୀନ, କନ୍ୟା ଓ ମକରର ଅର୍ଦ୍ଧାର୍ଦ୍ଧ ରାଶିକୁ ଆଶ୍ରୟ କରି ଲଗ୍ନଗତ କିମ୍ବା ଶୁକ୍ଳପକ୍ଷରେ କେନ୍ଦ୍ର ଓ ଶୁଭଗ୍ରହ କର୍ତ୍ତୃକ ଦୃଷ୍ଟ ହେଲେ ଶୀଘ୍ର ପ୍ରଚୁର ବୃଷ୍ଟି ହୁଏ । ପାପଗ୍ରହ କର୍ତ୍ତୃକ ଦୃଷ୍ଟ ହେଲେ ଅଳ୍ପ ବୃଷ୍ଟି ହୁଏ; ଚନ୍ଦ୍ରଙ୍କ ପରି ଶୁକ୍ର ମଧ୍ୟ ଫଳପ୍ରଦ ।

**ବୃଷ୍ଟିର ସାଙ୍କେତିକ ଲକ୍ଷଣ** : ପ୍ରଶ୍ନକାଳେ ପ୍ରଶ୍ନକର୍ତ୍ତା ଯଦି ଆର୍ଦ୍ର ଦ୍ରବ୍ୟ, ଜଳ କିମ୍ବା ତତ୍‌ସମ୍ବନ୍ଧୀୟ କୌଣସି ପଦାର୍ଥ ସ୍ପର୍ଶ କରନ୍ତି, ଅଥବା ଜଳର ନିକଟବର୍ତ୍ତୀ ବା ଜଳ ସମ୍ବନ୍ଧୀୟ କୌଣସି କର୍ମରେ ରତ ହୁଅନ୍ତି ଏବଂ ପ୍ରଶ୍ନକାଳେ ଜଳ ବା ଜଳବାଚକ ଶବ୍ଦ ଶ୍ରୁତିଗୋଚର ହୁଏ, ତାହାହେଲେ ଅଚିରେ ବର୍ଷା ହୁଏ, ମାତ୍ର ବୃଷ୍ଟିର ପରିମାଣ ଓ ସମୟ ମେଘ ଓ ପବନ ଉପରେ ନିର୍ଭର କରେ ।

ବର୍ଷାକାଳେ ଯେଉଁଦିନ ସଦ୍ୟୋଦିତ ସୂର୍ଯ୍ୟଙ୍କ ଦୀପ୍ତିଦ୍ୱାରା ଚକ୍ଷୁ ଝଲସି ଉଠେ, ସୂର୍ଯ୍ୟ ଦ୍ରବୀଭୂତ ସୁବର୍ଣ୍ଣ ସଦୃଶ ବା ବୈଦୁର୍ଯ୍ୟ ପରି ସ୍ନିଗ୍ଧ କାନ୍ତିବିଶିଷ୍ଟ ଦିଶନ୍ତି ସେହିଦିନ ବୃଷ୍ଟି ହୁଏ ।

ଗୋନେତ୍ର ସଦୃଶ ଗଗନ, ବିରସ ଜଳ, ବିମଳ ଦିଗ ସକଳ ଲବଣାକ୍ତ ଜଳପରି ବିକୃତି, କାକାଣ୍ଡବବର୍ଣ୍ଣ ବିଶିଷ୍ଟ ମେଘୋଦର, ନିଶ୍ଚଳ ପବନ, ମତ୍ସ୍ୟଗଣର ପୁନଃପୁନଃ ଲମ୍ଫ ପ୍ରଦାନ ଓ ମଣ୍ଡୂକଗଣର ବାରମ୍ବାର ରବ ପ୍ରଭୃତି ଲକ୍ଷଣ ବୃଷ୍ଟିପାତ ପରିଚାୟକ ।

ଯଦି ଚନ୍ଦ୍ର ଶୁକ ବା କପୋତଲୋଚନ ସଦୃଶ ବା ମଧୁସନ୍ନିଭ ହୁଅନ୍ତିଏବଂ ଆକାଶରେ ପ୍ରତି ଚନ୍ଦ୍ର ବିରାଜିତ ହୁଏ, ସୂର୍ଯ୍ୟର ଉଦୟାସ୍ତ କାଳେ ଇନ୍ଦ୍ରଧନୁ, ପରିଘ ପ୍ରତିସୂର୍ଯ୍ୟ, ବିଦ୍ୟୁତ୍‌ର ପରିବେଶ ପ୍ରକାଶ ହୁଏ, ତପନୋଦୟାସ୍ତ କାଳେ ଗଗନ ତିତିରି ପକ୍ଷୀର ବର୍ଣ୍ଣ ଧରେ, ପକ୍ଷୀଗଣ ଆନନ୍ଦରେ କଳରବ କରନ୍ତି ଏବଂ ପାଂଶୁ ବା ଧୂଳିରେ ସ୍ନାନ କରନ୍ତି ତାହାହେଲେ ଦିବାରାତ୍ରି ପ୍ରଚୁର ବୃଷ୍ଟି ହୁଏ । ଏହାର ବିଶେଷ ବିବରଣ ବୃହତ୍ ସଂହିତା ୨୧, ୨୫ ଅଧ୍ୟାୟରେ ଲିଖିତ ଅଛି ।

ବର୍ଷା ଜଳର ବ୍ୟବହାର ସମ୍ବନ୍ଧେ ଆୟୁର୍ବେଦରେ ବିଶେଷ ଭାବେ ଆଲୋଚିତ ହୋଇଅଛି । ବର୍ଷା ଜଳ ଦୁଇ ପ୍ରକାର- ଅନ୍ତରୀକ୍ଷ ଜଳକୁ କୌଣସି ଶୁଭ୍ର ପାତ୍ରରେ(ଲୌହପାତ୍ର ବ୍ୟତୀତ) ରଖି ପାନ କରାଯାଏ । ଏହି ଜଳ ତ୍ରିଦୋଷ ନାଶକ; ଲଘୁ ସୌମ୍ୟ, ରସାୟନ, ବଳକାରକ, ତୃପ୍ତିକର, ପାଚକ, ପ୍ରାଣଧାରକ, ବୁଦ୍ଧିଜନକ, ଆହ୍ଲାଦକାରକ, ମୂର୍ଚ୍ଛା, ତନ୍ଦ୍ରା, ଦାହ, ଶ୍ରାନ୍ତି, କ୍ଲାନ୍ତି ଓ ପିପାସାନାଶକ । ବର୍ଷା କାଳେ ଏହି ଜଳ ବିଶେଷ ଉପକାରୀ ।

ଅକାଳବୃଷ୍ଟି ଅର୍ଥାତ୍ ପୌଷ, ମାଘ, ଫାଲ୍‌ଗୁନ, ଚୈତ୍ର ମାସର ବୃଷ୍ଟିରେ ସକଳ ପ୍ରାଣୀର ତ୍ରିଦୋଷ ପ୍ରକୋପିତ ହୁଏ । ଏହି ଚାରିମାସର ବୃଷ୍ଟିଜଳ ପାନରେ ବିଶେଷ ଅପକାର ହୁଏ । କରକା ଜଳ ଅମୃତୋପମ । ଏହାର ବିଶେଷ ବିବରଣ "ଭାବପ୍ରକାଶ"ରେ ଦ୍ରଷ୍ଟବ୍ୟ । ଭାରତୀୟ ଆର୍ଯ୍ୟଗଣ ବହୁକାଳ ପୂର୍ବେ ବର୍ଷାର ଉତ୍ପତ୍ତି ସମ୍ବନ୍ଧେ କହିଅଛନ୍ତି -

ତେଜୋହି ସର୍ବଭୂତେଭ୍ୟଃ ଆଦତ୍ତେରଶ୍ମିଭିର୍ଜଳଂ ।
ସମୁଦ୍ରାଦମ୍ବୁସା ଯୋଗାତ୍ ରଶ୍ମୟଃ ପ୍ରବହନ୍ତ୍ୟପଃ ।।
ତତୋଽୟନ ବଶାତ୍ କାଳେ ପରିବୃତ୍ତୋ ଦିବାକରଃ ।
ନିୟଚ୍ଛତି ପୟୋ ମେଘେ ଶୁକ୍ଲା ଶୁକ୍ଲୈ ର୍ଗଭସ୍ତିଭିଃ ।।

ଅଭ୍ରସ୍ଥାଃ ପ୍ରପତନ୍ତ୍ୟାପୋ ବାୟୁନା ସମୁଦୀରିତାଃ ।
ସର୍ବଭୂତ ହିତାର୍ଥାୟ ବାୟୁଭୂତାଃ ସମନ୍ତତଃ ।।

ଏହି ମେଘ ସମ୍ବନ୍ଧେ ପାଶ୍ଚାତ୍ୟ ମତରେ ଯଥେଷ୍ଟ ଆଲୋଚିତ ହୋଇଅଛି । ସମ୍ପ୍ରତି ସୌଦାମିନୀ ସମ୍ବନ୍ଧେ ଦୁଇଚାରି ପଦ ଉଲ୍ଲେଖ କରି ପ୍ରବନ୍ଧ ଉପସଂହାର କରିବୁଁ ।

ବୃଷ୍ଟି ବିନ୍ଦୁର ଉତ୍ପତ୍ତି ସମ୍ବନ୍ଧେ କେମ୍ବ୍ରିଜ୍ ୟୁନିଭରସିଟିର ସୁବିଖ୍ୟାତ ପ୍ରଫେସର ମିଷ୍ଟର ସି.ଟି.ଆର୍. ଉଇଲ୍‌ସନ୍ ବହୁ ଗବେଷଣା କରି କହିଅଛନ୍ତି ଯେ, ବାୟୁରାଶିରେ ଅତି ସୂକ୍ଷ୍ମ ଧୂଳିକଣା ସକଳ ଥାଏ, ବାୟୁ ଶୀତଳ ହେଲେଏହି ଧୂଳିକଣାର ଉପରେ ଜଳୀୟବାଷ୍ପ କଣାନିକର ଘନୀଭୂତ ହୋଇ ବୃଷ୍ଟି ବିନ୍ଦୁ ସଂଘଟନ କରେ ।

ବୃଷ୍ଟି ବିନ୍ଦୁ ଗଠନରେ ତଡ଼ିତ୍‌ର ଯଥେଷ୍ଟ ପ୍ରଭାବ ଅଛି । ତଡ଼ିତ୍‌ଶକ୍ତି ସ୍ପର୍ଶ ପ୍ରଭାବ ଦୁଇପ୍ରକାର- ଗୋଟିକର ନାମ 'ପଜିଟିଭ' ଅନ୍ୟଟିର ନାମ ନେଗେଟିଭ୍ (Possitive and Negative)। ମେଘର ଏକସ୍ତର ବାଷ୍ପ ପଜିଟିଭ ତଡ଼ିତ୍‌ରୁ ସୃଷ୍ଟ ହୁଏ, ଅପର ଏକସ୍ତର ବାଷ୍ପ ନେଗେଟିଭ ତଡ଼ିତ୍‌ରୁ ସୃଷ୍ଟି ହୁଏ; ଏହି ଉଭୟ ସ୍ତରରେ ଗୋଟିଏ ପ୍ରବଳ ତଡ଼ିତାକର୍ଷଣ ସଂଘଟିତ ହୁଏ; ଏହି ଆକର୍ଷଣର ଫଳରେ ବାଷ୍ପବିନ୍ଦୁ ପରସ୍ପର ସମ୍ମିଶ୍ରିତ ହୋଇ ବୃହଦାକାର ଧାରଣ କରେ ।

ନାନାକାରଣରୁ ବାୟୁରାଶିରେ ତରଙ୍ଗ ଉତ୍ଥିତ ହୋଇପାରେ । ଶବ୍ଦତରଙ୍ଗରେ ବାୟୁରାଶି ଆନ୍ଦୋଳିତ ହେଲେ ବଜ୍ରଧ୍ୱନିତ ହୁଏ । ନଳିକାଦି ଧ୍ୱନିଦ୍ୱାରା ମଧ୍ୟ ବାୟୁରାଶିରେ ତରଙ୍ଗ ଦି ସୃଷ୍ଟ ହୋଇଥାଏ ।

ମିଷ୍ଟର ଉଇଲ୍‌ସନ୍‌ଙ୍କ ସିଦ୍ଧାନ୍ତମତେ ବାୟୁରାଶିର ଜଳୀୟବାଷ୍ପ ଘନୀଭୂତ ହେବା ସକାଶେ ବାୟୁରାଶିସ୍ଥ ଧୂଳିକଣା ନେଗେଟିଭ ତଡ଼ିତ୍‌ଶକ୍ତି ବିଶିଷ୍ଟ ହେବା ହିଁ ପ୍ରଧାନ କାରଣ । ପଜିଟିଭ ତଡ଼ିତ୍‌ଶକ୍ତି ବିଶିଷ୍ଟ ଧୂଳିକଣାର ଏତାଦୃଶ ଶକ୍ତି ପରିଲକ୍ଷିତ ହୁଏ ନାହିଁ । ସେ ସିଦ୍ଧାନ୍ତ କରିଛନ୍ତି ଯେ, ଏହି ମୃଣ୍ମୟୀ ଧରଣୀମଣ୍ଡଳ ନେଗେଟିଭ ତଡ଼ିତ୍‌ର କ୍ରୀଡ଼ାସ୍ଥଳୀ । ବୃଷ୍ଟିବିନ୍ଦୁ ଆକାଶର ନେଗେଟିଭ ତଡ଼ିତ୍‌କୁ ନେଇ ଧରାଧାମରେ ଅବତୀର୍ଣ୍ଣ ହୁଏ । ପଜିଟିଭ ତଡ଼ିତ୍ (Possitive Electricity) ଆକାଶରେ ରହିଯାଏ ।

ଆଧୁନିକ ବୈଜ୍ଞାନିକ ଟିମ୍‌ସନ୍ ଅତି ସୂକ୍ଷ୍ମ ଗବେଷଣାଦ୍ୱାରା ସିଦ୍ଧାନ୍ତ କରିଅଛନ୍ତି ଯେ, ଯାହା ସୂକ୍ଷ୍ମତମ ପରମାଣୁ (Atom) ନାମେ ଅଭିହିତ ପ୍ରକୃତ ପକ୍ଷେ ତାହା ପରମାଣୁ ନୁହେଁ । ପରମାଣୁଗୁଡ଼ିକ ମଧ୍ୟ ବହୁ ଅଂଶରେ ବିଭକ୍ତ ହୋଇପାରେ । ଏ ସକଳର ପ୍ରତ୍ୟେକ ଅଂଶ ତଡ଼ିତ୍ ସମ୍ବନ୍ଧୀୟ (Electrical) ; ବାୟବୀୟ ପଦାର୍ଥର (Gaseous matter) ପ୍ରୋକ୍ତ ପରମାଣୁଗୁଡ଼ିକରୁ ଯେତେବେଳେ ବିଭକ୍ତ ହୁଏ, ସେତେବେଳେ ଏହାର ଅଂଶ (Corpushles) ଗୁଡ଼ିକ ନେଗେଟିଭ ତଡ଼ିତ୍‌ର କ୍ଷୁଦ୍ରତମ ଅଂଶପରି କାର୍ଯ୍ୟକରେ, କିନ୍ତୁ ବିଭକ୍ତ ଅଂଶଗୁଡ଼ିକ

ଯେତେବେଳେ ସମବେତ ହୁଏ, ସେତେବେଳେ ଏହାର କାର୍ଯ୍ୟକଳାପରେ ପଜିଟିଭ ଇଲେକ୍ଟ୍ରିସିଟିର କ୍ରିୟା ପରିଲକ୍ଷିତ ହୁଏ ।

ତଡ଼ିତ୍ ସମ୍ବନ୍ଧୀୟ କ୍ଷୁଦ୍ରତମାଂଶର ଚାରିଦିଗରେ ଜଳୀୟବାଷ୍ପ ଘନୀଭୂତ ହେବା ସୁବିଧା ପ୍ରାପ୍ତ ହୋଇଥାଏ । ଭୂବାୟୁରେ ସମ୍ମିଶ୍ରିତ ଜଳୀୟବାଷ୍ପ ସୂର୍ଯ୍ୟାଲୋକରେ ଏବଂ ଅପରାପର କାରଣରୁ ସହଜେ ହିଁ ଆୟନପ୍ରାପ୍ତ ହୁଏ । ଜଳୀୟବାଷ୍ପର ପରମାଣୁ ନେଗେଟିଭ ଆୟନ (Lone) ଅଂଶଗୁଡ଼ିକରେ ସ୍ୱଭାବତଃ ବାୟୁ ରାଶିର ଆର୍ଦ୍ରତା ଅଧିକ ପରିମାଣେ ଆକୃଷ୍ଟ ହୁଏ; ପଜିଟିଭ ଆୟନରେ ସେହିପରି ହୁଏ ନାହିଁ ।

ଏହି ସକଳ ନେଗେଟିଭ ବିଦ୍ୟୁତ୍ ଶକ୍ତିବିଶିଷ୍ଟ ଅୟନଗୁଡ଼ିକ ଚତୁଃପାର୍ଶ୍ୱରେ ସତ୍ୱର ଜଳୀୟ ବାଷ୍ପକଣା ସଞ୍ଚୟ କରେ, ସୁତରାଂ ଅଚିରେ ଏଗୁଡ଼ିକ ଗୋଟିଏ ବୃହତ୍ ବୃଷ୍ଟିବିନ୍ଦୁରେ ପରିଣତ ହୁଏ ।

**ବୃଷ୍ଟି** : ବର୍ଷା କାଳରେ ସବୁ ଦେଶରେ ସମଭାବରେ ହୁଏନାହିଁ । କେଉଁ ଦେଶରେ ବର୍ଷବ୍ୟାପୀ ଜଳବିନ୍ଦୁ ପଡ଼େନାହିଁ, କେଉଁ ଦେଶରେ ପ୍ରତି ସପ୍ତାହରେ ବର୍ଷା ହୁଏ । ସ୍ଥଳବିଶେଷରେ ସବୁ ଋତୁରେ ବର୍ଷା ହୋଇଥାଏ । ଅତଏବ ବୃଷ୍ଟିତତ୍ତ୍ୱବିଦ୍‌ଗଣ ଦେଶ ଭେଦରେ, ଶୀତ ବୃଷ୍ଟି ମଣ୍ଡଳ, ଗ୍ରୀଷ୍ମ ବୃଷ୍ଟିମଣ୍ଡଳ, ପ୍ରାବୃଟ ବୃଷ୍ଟି ମଣ୍ଡଳ, ସାମୟିକ ବୃଷ୍ଟିମଣ୍ଡଳ ଓ ଚିର ବୃଷ୍ଟିମଣ୍ଡଳ ବୋଲି ଅଭିହିତ କରିଅଛନ୍ତି ।

ଭାରତବର୍ଷରେ ମୌସୁମୀବାୟୁର (Monsoon) ପ୍ରଭାବ ଅତି ଅଧିକ, ଏହେତୁ ଏଠାରେ ଅୟନଭେଦରେ ବୃଷ୍ଟିର ତାରତମ୍ୟ ନହୋଇ ମୌସୁମୀ ବାୟୁ ଅନୁସାରେ ବୃଷ୍ଟି ହୋଇଥାଏ ।

ଅଗ୍ନିକୋଣରେ ମୌସୁମୀ ବାୟୁରେ ମାଲବାର ଉପକୂଳରେ, ଐଶାନ୍ୟ କୋଣର ମୌସୁମୀବାୟୁରେ କରମଣ୍ଡଳ ଉପକୂଳରେ ବର୍ଷାର ପ୍ରଭାବ ଅଧିକ ଦେଖାଦିଏ । ପର୍ବତବାରଣରୁ ସମୁଦ୍ରବାୟୁ ସର୍ବତ୍ର ପ୍ରସାରିତ ହୁଏନାହିଁ; ଏଥିଯୋଗୁଁ ଭିନ୍ନଭିନ୍ନ ଋତୁରେ କିଛି ପାର୍ଥକ୍ୟ ଥାଇ ଭିନ୍ନ ଭିନ୍ନ ଦେଶରେ ବର୍ଷା ହୋଇଥାଏ ।

ତିବ୍ବତ ଅଧିତ୍ୟକା, ପାରସ୍ୟର ମଧ୍ୟଭାଗ, ମାଙ୍ଗୋଲିଆ, ଆରବର ଉତ୍ତର ଓ ମଧ୍ୟଭୂମି, ଗୋବି ମରୁଭୂମି, ମିଶର ଦେଶ, ସାହାରା ମରୁଭୂମି ପ୍ରଭୃତିରେ ଆଦୌ ମେଘ ଦୃଶ୍ୟ ହୁଏନାହିଁ । ଏହି ଦେଶମାନଙ୍କରେ ୨୦ ବା ୩୦ ବର୍ଷରେ ଥରେ ବର୍ଷା ହୁଏ ।

ଇଟାଲି, ଅଷ୍ଟ୍ରେଲିଆ ଓ ଫ୍ରାନ୍‌ସ ଦେଶସ୍ଥ ବୈଜ୍ଞାନିକଗଣ ମେଘ ସହିତ ଯୁଦ୍ଧକରି ବୃଷ୍ଟି କରାଇବାକୁ ଉପାୟ ଉଦ୍ଭାବନ କରିଛନ୍ତି; ଏଥିସକାଶେ ଏମାନେ ଅପର୍ଯ୍ୟାପ୍ତ ଅର୍ଥ ବ୍ୟୟ କରି ସୁଦ୍ଧା ଅଦ୍ୟାପି ଯଶସ୍ୱୀ ହୋଇପାରି ନାହାନ୍ତି । ତୃଣାତାପ, ତଡ଼ିତ୍ ଭୀଷଣ ନିନାଦଜନକ ପ୍ରସ୍ଫୋଟନ ପ୍ରଭୃତି ବିବିଧ ଉପାୟଦ୍ୱାରା ବୃଷ୍ଟିପାତର ଚେଷ୍ଟା କରାଯାଉଛି; ଡାଇନାମାଇଟ୍ ଅଗ୍ନି ସଂଯୋଗେ ଦଗ୍ଧ କରି ଆକାଶରେ କୃତ୍ରିମ ମେଘ ଉତ୍ପାଦନର ପ୍ରୟାସ ଚାଲିଅଛି; କିନ୍ତୁ ଏ ସକଳ ପ୍ରକୃତ ବୈଜ୍ଞାନିକ ପ୍ରଣାଳୀ ନୁହେଁ ।

ପାଶ୍ଚାତ୍ୟ ବୈଜ୍ଞାନିକଙ୍କ ମତେ ସୁଦ୍ଧା ବୃଷ୍ଟି ଜଳ ଅତି ହିତକର, ଏଥିରେ ଉତ୍ପାଦିକା ଶକ୍ତି ଯଥେଷ୍ଟ ଅଛି । ଆହୁରି ସେମାନେ ପରୀକ୍ଷାଦ୍ୱାରା ସ୍ଥିର କରିଅଛନ୍ତି ଯେ, ଏହା ଆଣବିକ ଦୋଷରହିତ ।

ମାନବ ସମାଜର ନିତ୍ୟ ନୈମିତ୍ତିକ କ୍ରିୟା ସହିତ ବୃଷ୍ଟିର ଘନିଷ୍ଠ ସମ୍ବନ୍ଧ ରହିଅଛି; ସୁତରାଂ ଏହି ବୃଷ୍ଟି କ୍ରିୟା ମାନବର ଆୟତ୍ତ ହେଲେ ଜଗତର ଅନେକ ସୁବିଧା ହୁଅନ୍ତା ବୋଲି ଦୁରାଶାୟୀ ମାନବ ବିଚାର କରୁଅଛି । ପରିଶେଷରେ କି ଅନିଷ୍ଟ ଘଟିବ ତାହା ଭାବିପାରୁ ନାହିଁ । ମଙ୍ଗଳମୟଙ୍କ ବିଧାନ ପ୍ରାଣୀର ଅଗୋଚର ।

ବର୍ତ୍ତମାନ ଜଳ ସମ୍ବନ୍ଧେ କିଞ୍ଚିତ୍ ଆଲୋଚନା କରିଏ ପ୍ରବନ୍ଧର ଉପସଂହାର କରୁଅଛୁ । ଯେଉଁ ଜଳବିନା ପ୍ରାଣୀ ପ୍ରାଣ ଧାରଣ କରିପାରେ ନାହିଁ ସେହି ଜଳକୁ ଆର୍ଯ୍ୟଗଣ ଦେବତା ରୂପେ ପୂଜା କରନ୍ତି ।

ଉପକାରୀ ଜଡ଼ ହେଉ ବା ଜଙ୍ଗମ ହେଉ, ତାହାର ଉପକାର ଆର୍ଯ୍ୟଜାତି କଦାପି ଭୁଲିପାରେ ନାହିଁ । ଯେପରି ପରୋପକାର ଭାରତୀୟ ଜୀବନର ଚରମ ଲକ୍ଷ, ସେପରି କୃତଜ୍ଞତା ସ୍ୱୀକାର କରି ଉପକାରୀଙ୍କୁ ଦେବତାତୁଲ୍ୟ ପୂଜା କରିବାରେ ସୁଦ୍ଧା ଉଦାରହୃଦୟ ଆର୍ଯ୍ୟଗଣ କେବେ ତ୍ରୁଟି କରି ନାହାନ୍ତି ।

## ପୃଥିବୀ

ପୃଥିବୀ ଲୋକସକଳର ଆଧାରସ୍ୱରୂପ । ଆର୍ଯ୍ୟମାନେ ଏହାକୁ ୯୫ ଗୋଟି ନାମରେ ଅଭିହିତ କରିଅଛନ୍ତି । ବେଦରେ ପୃଥିବୀ ଶବ୍ଦ ଅନ୍ତରୀକ୍ଷ ନାମରେ ମଧ୍ୟ ଉକ୍ତ ହୋଇଅଛି । ଏହାର ଉତ୍ପତ୍ତି ସମ୍ବନ୍ଧେ ଶ୍ରୁତି କହେ -

"ଆକାଶତ୍ ବାୟୁର୍ବାୟୋରଗ୍ନି ରଗ୍ନେରାପ ଅପ୍‌ଭ୍ୟଃ ପୃଥିବୀ ଚୋତ୍‌ପଦ୍ୟତେ"

ଏତଦ୍ୱାରା ପ୍ରମାଣିତ ହେଉଅଛି ଯେ, ଏକ ସମୟରେ ଆକାଶ ବା ବାଷ୍ପ ସମସ୍ତ ଜଗନ୍ମଣ୍ଡଳରେ ବ୍ୟାପିଥିଲା, ପରେ ପ୍ରତ୍ୟେକ ବାଷ୍ପକଣାର ପରସ୍ପର ଆକର୍ଷଣ ଓ ସଂଘାତରେ ଅଣୁ ପରମାଣୁର ଉତ୍ପତ୍ତି ହୋଇଅଛି । ଜୈନ ଦର୍ଶନରେ ଲିଖିତ ଅଛି -

"ଅଣ୍ୱାଦୀନାଂ ସଂଘାତାତ୍ ଦ୍ୟଣୁକାଦୟ ଉତ୍ପଦ୍ୟନ୍ତେ ତତ୍ର ସ୍ୱାବସ୍ଥିତା
କୃଷଟଶକ୍ତି ରେବାଦ୍ୟ ସଂଯୋଗେ କାରଣ ଭାବମାପଦ୍ୟତେ" ।

ଅଣୁଗଣର ପରସ୍ପର ସଂଘାତରେ ଦ୍ୟଣୁକାଦି ଉତ୍ପନ୍ନ ହୋଇ ଆକାଶ ମାର୍ଗରେ ବିସ୍ତୃତି ଲାଭକରେ । କ୍ରମେ ଜଗତ୍ ବ୍ୟାପକତ୍ୱ ଓ ଘନତ୍ୱ ପ୍ରାପ୍ତ ହୁଏ; ପରିଶେଷରେ ତାହାଙ୍କ ମଧ୍ୟରେ ଅବସ୍ଥିତ ଆକର୍ଷଣୀ ଶକ୍ତି ଆଦ୍ୟ ସଂଯୋଗରେ କାରଣତ୍ୱ ପାଇଥାଏ । ଏଥିରୁ ଗୋଟିଏ ଜଗତ୍‌ବ୍ୟାପୀ ଆଣବିକ ଆକର୍ଷଣ ଶକ୍ତିର ପରିଚୟ ମିଳେ । ଘନୀଭୂତ ଅଣୁମଣ୍ଡଳୀର

ଆକର୍ଷଣାଧିକ୍ୟରେ ଦୂରବର୍ତ୍ତୀ ଅପେକ୍ଷାକୃତ ସୂକ୍ଷ୍ମତର ଅଣୁମଣ୍ଡଳୀର ଗତିରେ ବାୟୁପରେ ଦ୍ରୁତ ଗମନ ଓ ସଂଘର୍ଷଣ ହେତୁ ଅଗ୍ନି, , ଅଗ୍ନ୍ୟତାପ ଘନୀଭୂତ ହୋଇ ଶୀତଳ ହେବାକାଳେ ଜଳ, ସେହି ଜଳରୁ ପୃଥିବୀର ଅସ୍ତିତ୍ୱ ସୂଚିତ ହୁଏ । ଋଗ୍‌ବେଦ ସଂହିତାରେ (୧,୫୯,୨) ଅଗ୍ନି ପୃଥିବୀର ନାଭି ଓ ଜ୍ୟୋତିଃସ୍ୱରୂପ ବୋଲି ଉକ୍ତ ହୋଇଅଛି । ଯଥା-

''ମୂର୍ଦ୍ଧାଦିବୋ ନାଭିରଗ୍ନିଃ ପୃଥବ୍ୟା ଅର୍ଥାଭବଦରତୀ ରୋଦସ୍ୟୋଃ''
''ତଂତ୍ୱା ଦେବାସୋଽଜନୟନ୍ତ ଦେବଂ ବୈଶ୍ୱାନରଜ୍ୟୋତିରିଦାର୍ଯ୍ୟାୟଃ'' ।

**ଭାଷ୍ୟ** : ପୃଥିବ୍ୟା ଭୂମେଶ୍ଚ ନାଭିଂଃ ସଂନାହକଃ ରକ୍ଷକ ଇତ୍ୟର୍ଥଃ । ଅଥାନନ୍ତରଂ ଭୋଦସ୍ୟୋର୍ଦ୍ୟାବା ପୃଥିବ୍ୟୋରୟମରତିରଧିପତିରଭବତ୍; ହେବୈଶାନରତ୍ୱଂ ତାଦୃଶଂ ଦେବଂ ଦାନାଦି ଗୁଣଯୁକ୍ତଂତ୍ୱା ତ୍ୱଂ ଦେବାସଃ ସର୍ବଦେବା ଆର୍ଯ୍ୟାୟ ବିଦୁଷେ ମନବେ ଯଜମାନାୟ ବା ଜ୍ୟୋତିରିତ୍ ଜ୍ୟୋତିରୂପମେବା ଜନୟନ୍ତ ଉଦପାଦୟନ୍ । ସାୟନ ଭାଷ୍ୟର ତାତ୍ପର୍ଯ୍ୟ ଏହି ଯେ ଅଗ୍ନିସ୍ୱର୍ଗାଦି ସୃଷ୍ଟି ଲୋକମାନଙ୍କ ମଧ୍ୟରେ ପ୍ରଧାନ ଏବଂ ସେହି ଜ୍ୟୋତିରୂପୀ ବୈଶ୍ୱାନର ଯେ ପୃଥିବୀ ରକ୍ଷକ ସୂର୍ଯ୍ୟ ଏଥିରେ କୌଣସି ସନ୍ଦେହ ନାହିଁ । ସୂର୍ଯ୍ୟଙ୍କ ଆକର୍ଷଣ ଓ ଉତ୍ତପ୍ତ ରଶ୍ମିରେ ପୃଥିବୀ ରକ୍ଷିତ ଏହି ପୌରାଣିକ ଉତ୍ପତ୍ତି ଓ ବୈଜ୍ଞାନିକ ତତ୍ତ୍ୱ ସମୁଦ୍ଭୁତ ଧ୍ରୁବ ସତ୍ୟ ବୈଦିକ ମତାନୁମୋଦିତ ବୋଲି ବିବେଚିତ ହୁଏ ।

ବାଜସନେୟ ସଂହିତା କହେ., ''ରୁଦ୍ରାଃସଂସୃଜ୍ୟ ପୃଥିବୀଂ ବୃହଜ୍ଜ୍ୟୋତିଃ ସମୀଧିରେତେଷାଂ ଭାନୁରଜସ୍ର ଇଚ୍ଛୁକ୍ରୋ ଦେବେଷ୍ଣୁ ରୋଚତେ'' (ଶୁକ୍ଳଯଜୁ ୧୧,୫୪) । ମହୀଧର ଭାଷ୍ୟରେ ଉଲ୍ଲେଖ ଅଛି, ''ରୁଦ୍ରାଃ ପୃଥିବୀଂ ପାର୍ଥିବଂ ପିଣ୍ଡ ସଂସୃଜ୍ୟ ଶର୍କରାୟୋରସାଶ୍ମ ଚୂର୍ଣ୍ଣୈଃ ସଂଯୋଜ୍ୟ ବୃହଜ୍ଜ୍ୟୋତିଃ ପ୍ରୌଢ଼ମଗ୍ନିଂ ସମୀଧିରେ ସମ୍ୟକ ଦୀପିତବନ୍ତଃ । ତେଷାଂ ରୁଦ୍ରାଣାଂ ଶୁକ୍ରଃ ଶୁଦ୍ଧୋ ଦେଦୀପ୍ୟମାନୋଽଜଃସ୍ର ଅନୁପକ୍ଷୀଣ ଇବ ଦେବେଷୁ ମଧ୍ୟେ ଭାନୁଃ ଦୀପ୍ତିଃ ରୋଚତେ ପ୍ରକାଶତେ ଇତ୍ୟର୍ଥେଃ ।''

ରୁଦ୍ରଗଣ ସୂକ୍ଷ୍ମ ସିକତା, ଲୌହକଙ୍କ ଓ ପାଷାଣ ଚୂର୍ଣ୍ଣ ମିଳାଇ ପିଣ୍ଡାକାରରେ ପାର୍ଥିବ ପୃଥିବୀ ସୃଷ୍ଟି କରି ବୃହତ୍ ଜ୍ୟୋତି ପ୍ରାପ୍ତ ହେଲେ, ତତ୍‌ଫଳରେ ରୁଦ୍ରଗଣର ଦେଦୀପ୍ୟମାନ ଦୀପ୍ତିଦେବଗଣମଧ୍ୟେ ପ୍ରକାଶିତ ହୋଇଥିଲା । ଏତଦ୍ୱାରା ସ୍ପଷ୍ଟ ବୁଝାଯାଏ ଯେ, ପାର୍ଥିବ ଜଗତ ଗୋଲାକାର । ଏହି ଲୌହକଙ୍କ ପାଷାଣ ଚୂର୍ଣ୍ଣାଦି ପଦାର୍ଥର ବିକୃତିରେ ପଞ୍ଚ ମହାଭୂତ ଗନ୍ଧ ତନ୍ମାତ୍ରେ ପରିଣତ ପ୍ରାପ୍ତ ହୋଇ ପୃଥିବୀ ଉତ୍ପନ୍ନ ହୋଇଥିଲା । ଶତପଥ ବ୍ରାହ୍ମଣ କହେ, ''ଇୟଂ ବୈ ପୃଥିବୀ ଭୂତସ୍ୟପ୍ରଥମଜା'' (୧୮,୧,୨,୨୦) ଏହି ବେଦବାକ୍ୟରୁ ପୃଥିବୀର ଭୂତୋତ୍ପତ୍ତିର ପରିଚୟ ମିଳୁଅଛି ।

ଭଗବାନ ମନୁ ଜଗତର ଉତ୍ପତ୍ତି ଓ ସ୍ଥିତି ସମ୍ବନ୍ଧେ ଯେଉଁ ବର୍ଣ୍ଣନା କରିଯାଇଅଛନ୍ତି ସେଥିସହିତ ଉପରୋକ୍ତ ମତର କୌଣସି ପାର୍ଥକ୍ୟ ନାହିଁ । ସେ କହନ୍ତି, ଏହି ପରିଦୃଶ୍ୟମାନ

ବିଶ୍ୱବ୍ରହ୍ମାଣ୍ଡ ଏକ ସମୟରେ ଗାଢ଼ ତମସାଚ୍ଛନ୍ନ ଥିଲା,ଉକ୍ତ ଅବସ୍ଥା ପ୍ରତ୍ୟକ୍ଷର ଗୋଚରୀଭୂତ କିମ୍ବା ଲକ୍ଷଣଦ୍ୱାରା ଅନୁଭବ କରିବା ବିଷୟ ନୁହେଁ । ସେ ସମୟରେ ପ୍ରୋକ୍ତ ବିଷୟ ଜ୍ଞାନ ଓ ତର୍କର ଅତୀତ ହୋଇ ସର୍ବତୋଭାବେ ନିଦ୍ରିତ ଥିଲା । ପରେ ସ୍ୱୟମ୍ଭୂ ଭଗବାନ ମହାଭୂତାଦି ଚତୁର୍ବିଂଶତି ତତ୍ତ୍ୱରେ ପ୍ରବୃତ୍ତବୀର୍ଯ୍ୟ ହୋଇ ଏହି ବିଶ୍ୱସଂସାରକୁ ବ୍ୟକ୍ତ କଲେ ଏବଂ ନିଜେ କ୍ରମଶଃ ସେହି ତମୋବସ୍ଥାର ସଂହାରକ ରୂପେ ଆବିର୍ଭୂତ ହେଲେ ।

ଭାବଗ୍ରାହୀ ସୂକ୍ଷ୍ମତମ ଅବ୍ୟକ୍ତ ସର୍ବଭୂତମୟ ଅଚିନ୍ତ୍ୟ ସେହି ପୁରୁଷ ଶରୀର ଧାରଣ କରି ପ୍ରାଦୁର୍ଭାବ ହୋଇ ବିବିଧ ପ୍ରଜା ସୃଷ୍ଟି ସଂକଳ୍ପରେ ଧ୍ୟାନ ଯୋଗେ ନିଜ ଶରୀରରୁ ଜଳ ସୃଷ୍ଟି କଲେ; ଏହାପରେ ଏହି ଜଳରେ ନିଜ ଶକ୍ତିବୀଜ ମିଶ୍ରିତ କରି ସୁବର୍ଣ୍ଣ ବର୍ଣ୍ଣୋପମ ସୂର୍ଯ୍ୟ ସଦୃଶ୍ୟ ଆଭାବିଶିଷ୍ଟ ଗୋଟିଏ ଅଣ୍ଡ ନିର୍ମାଣ କଲେ । ତଦନନ୍ତର ସର୍ବଲୋକ ପିତାମହ ବ୍ରହ୍ମା ରୂପେ ସ୍ୱୟଂସେ ଏହି ଅଣ୍ଡ ମଧ୍ୟେ ଜନ୍ମଗ୍ରହଣ କଲେ ।

ନର ଅର୍ଥାତ୍ ପରମାତ୍ମାଠାରୁ ପ୍ରସୂତ ବୋଲି ଅପତ୍ୟ ପ୍ରତ୍ୟୟରେ ଜଳକୁ ନାରା କୁହାଯାଏ ଏବଂ ନାରୀ ବ୍ରହ୍ମ ରୂପେ ଅବସ୍ଥିତ; ପରମାତ୍ମାର ପ୍ରଥମ ଆଶ୍ରୟୀଭୂତ ହୋଇ ବ୍ରହ୍ମର ନାରାୟଣ ନାମ ହୋଇଅଛି । ଯଥା :-"ଆପୋନାରାବତି ପ୍ରୋକ୍ତଃ" ନାରଏବ ଅୟନଂ ଯଃ ସ ନାରାୟଣଃ ।

ସେ ଆଦି କାରଣ, ଅବ୍ୟକ୍ତ, ନିତ୍ୟ, ସଦସଦାତ୍ମକ ଓ ଜଗଭାସକାଧୀଶ; ତତ୍‌କର୍ତ୍ତୃକ ଉତ୍ପାଦିତ ଏହି ପ୍ରଥମ ପୁରୁଷଙ୍କୁ ମଧ୍ୟ ଲୋକେ ବ୍ରହ୍ମା କହନ୍ତି; ଭଗବାନ ବ୍ରହ୍ମା ଏ ବ୍ରହ୍ମାଣ୍ଡରେ ବ୍ରହ୍ମମାନର ସମ୍ବତ୍ସର କାଳ ବାସ କରି ପରିଶେଷରେ ଆତ୍ମଗତ ଧ୍ୟାନବଳେ ଏହାକୁ ଦୁଇ ଖଣ୍ଡ କରିଦେଲେ । ଏହାର ଉର୍ଦ୍ଧ୍ୱଖଣ୍ଡେ ସ୍ୱର୍ଗାଦି ଲୋକ, ଅଧେଖଣ୍ଡେ ପୃଥିବ୍ୟାଦି ଏବଂ ମଧ୍ୟ ଭାଗରେ ଆକାଶ, ଅଷ୍ଟଦିଗ ଓ ଶାଶ୍ୱତ ସମୁଦ୍ର ସକଳ ସୃଷ୍ଟ ହେଲା ।

ଅଧୋଖଣ୍ଡସ୍ଥ ପୃଥିବୀର ଶବ୍ଦ ସ୍ପର୍ଶ, ରୂପ, ରସ, ଗନ୍ଧ ଏହି ପଞ୍ଚ ଗୁଣ ବୋଲି ଉକ୍ତ ହୋଇଅଛି । ଲୋକାଲୋକ ଗିରିପରିବୃତ ଏହି ପରିଦୃଶ୍ୟମାନ ଯାବତୀୟ ପଦାର୍ଥ ଭୂମି ଅନ୍ତର୍ଭୁକ୍ତ । ସାଂଖ୍ୟ ଦର୍ଶନ ପ୍ରଣେତା ମହର୍ଷି କପିଳ ମଧ୍ୟ ଏହି ମତର ପରିପୋଷକ ।

"ତତ୍ର ପୃଥିବୀ ଧାରଣ ଭାବେନ ପ୍ରବର୍ତ୍ତମାନା ଚତୁର୍ଣ୍ଣାମୁନକରଂ କରୋତି ।
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧବତୀ ପଞ୍ଚଗୁଣା ପୃଥିବୀ" ।। (ସାଂଖ୍ୟ ତତ୍ତ୍ୱକୌମୁଦୀ ୨୫,୨୭)

ବ୍ରହ୍ମାଣ୍ଡାଦି ବିଭିନ୍ନ ପୁରାଣରେ ମଧ୍ୟ ନିଖିଳ ବିଶ୍ୱର ତମୋମୟତ୍ୱ ଓ ଅନାଦି ଅନନ୍ତ ପରିବ୍ୟାପ୍ତତ୍ୱ କଳ୍ପିତ ହୋଇଅଛି, ଏବଂ ଗନ୍ଧବତୀ ବସୁନ୍ଧରାର ଉତ୍ପତ୍ତି ବିଷୟ ସୁଦ୍ଧା ଉଲ୍ଲେଖ କରାଯାଇଅଛି ।

ଏତଦ୍ଦ୍ୱାରା ପ୍ରତିପନ୍ନ ହେଉଅଛି ଯେ, ସ୍ମୃତିପ୍ରଣେତା ମନୁ ଓ ପୁରାଣକାରଗଣ ବୈଜ୍ଞାନିକ ତତ୍ତ୍ୱର ପୂର୍ଣ୍ଣାଭାସ ପାଇଥିଲେ । ହୁଏତ ସେମାନେ ଯୋଗବଳେ ଏ ସକଳ ତତ୍ତ୍ୱର ଦ୍ୱାରୋଦ୍‌ଘାଟନ କରିଥିଲେ ନତୁବା ବୈଜ୍ଞାନିକ ଚର୍ଚ୍ଚାଦ୍ୱାରାଏହି ସମସ୍ତ

ଘଟନାବଳୀର ସମ୍ୟକ୍ ଜ୍ଞାନ ଉପଲବ୍ଧି କରି ଲିପିବଦ୍ଧ କରିଥିଲେ । ଧର୍ମପ୍ରାଣ ଭାରତୀୟ ପକ୍ଷେ ଈଶ୍ୱର ବା ସ୍ରଷ୍ଟାର ଏକତ୍ୱ କଳ୍ପନା ଅସମ୍ଭବ ନୁହେଁ, ଅତଏବ ଏହି ସମସ୍ତ ସତ୍ୟର ମୂଳରେ ପରମେଶ୍ୱର ବିଦ୍ୟମାନ ।

ଆଧୁନିକ ଯୁଗର ଭୂତତତ୍ତ୍ୱବିଦ୍‌ଗଣ ଜଗତ୍ ସୃଷ୍ଟିର ପ୍ରଥମରେ ଯେ ତମୋମୟ ଅବସ୍ଥା କଳ୍ପନା କରିଛନ୍ତି, ପ୍ରାଚୀନ ଆର୍ଯ୍ୟ ମହର୍ଷିଗଣ ମଧ୍ୟ ସେହିକଥା ସତ୍ୟରୂପେ ବ୍ୟକ୍ତ କରିଅଛନ୍ତି । ଐଶୀଶକ୍ତି ପ୍ରକାଶରେ ଭୂତ ତନ୍ମାତ୍ରରୁ ଆକାଶଦିର ସୃଷ୍ଟି, ଏହାହିଁ ବୈଜ୍ଞାନିକର (Ether) ବା ବାଷ୍ପ । ଭୂତତତ୍ତ୍ୱିଦ୍‌ଗଣ ଯଦି ବାଷ୍ପକୁ ଜଗଦୁତ୍ପତ୍ତିର ମୂଳୀଭୂତ କାରଣ ବୋଲି ଧରି ନିଅନ୍ତି, ତାହାହେଲେ ଆକାଶୋତ୍ପତ୍ତିକ୍ରିୟା କେଉଁଠାରୁ ହେଲା ? ଅବଶ୍ୟ ସ୍ୱୀକାର କରିବାକୁ ହେବ ଯେ ମହତତ୍ତ୍ୱ, ସତ୍ତ୍ୱ, ରଜ, ତମ ଏହି ଗୁଣତ୍ରୟ ଏବଂ ଅହଙ୍କାର ମଧ୍ୟ ଭୂତତନ୍ମାତ୍ର । ଏହା କେଉଁ ସୂକ୍ଷ୍ମଦର୍ଶୀର ସୂକ୍ଷ୍ମତର କଳ୍ପନାର ଫଳ- ଯାହାର ସଂଯୋଗରୁ ଆକାଶର ଉତ୍ପତ୍ତି, ପରେ ଆକାଶାଦିର ବିକୃତିରୁ ବାୟବ୍ୟାଦି ରୂପାନ୍ତରିତ ହୋଇଅଛି ତାହାର ମତେ ସମଗ୍ର ସୌର ଜଗତ ମଧ୍ୟ ପୃଥିବୀ, ପୁଣି ଏହି ମାନବାକାଶ ହିଁ ପାର୍ଥିବ ପୃଥିବୀ ।

ଆକାଶ ମଣ୍ଡପସ୍ଥ ଜ୍ୟୋତିଷ୍କ ଗ୍ରହଗଣ ପରସ୍ପର ପୃଥକ୍ ଓ ବକ୍ର ଭାବେ ଭ୍ରମଣ କରନ୍ତି । ସୂର୍ଯ୍ୟଗ୍ରହଠାରୁ ସମଗ୍ର ନକ୍ଷତ୍ରମଣ୍ଡଳର ଉତ୍ପତ୍ତି । ବାୟୁଯୁକ୍ତ କିରଣଜାଳରେ ଜଗତର ଜଳାକର୍ଷଣ, ଉତ୍ତରାୟଣ ଓ ଦକ୍ଷିଣାୟନ କାଳେ ରଶ୍ମିଦ୍ୱୟର ହ୍ରାସବୃଦ୍ଧି, ସୁଷୁମ୍ନା ନାମକ ରଶ୍ମିରେ ପ୍ରତିଦିନ ଚନ୍ଦ୍ରାଲୋକ ବର୍ଦ୍ଧନ ପ୍ରଭୃତି ଅନେକ କଥାର ଐକ୍ୟ ଅଛି କିନ୍ତୁ ପ୍ରଭେଦ ଏହି ଯେ - ବର୍ତ୍ତମାନ ବୈଜ୍ଞାନିକଗଣ ପୃଥିବୀର ଭ୍ରମଣଶୀଳତା ଓ ସୂର୍ଯ୍ୟର ସ୍ଥାୟୀତ୍ୱ କଳ୍ପନା କରିଅଛନ୍ତି । ଭାସ୍କରାଚାର୍ଯ୍ୟ ପ୍ରଭୃତି ସୁଦ୍ଧା ଏକଥା ସ୍ୱୀକାର କରିଥିଲେ, ଲଲ୍ଲାଚାର୍ଯ୍ୟ, ବ୍ରହ୍ମଗୁପ୍ତ ଓ ପୁରାଣକାରଗଣ ସୂର୍ଯ୍ୟର ଭ୍ରମଣଶୀଳତା ସ୍ୱୀକାର କରିଅଛନ୍ତି; କିନ୍ତୁ ବ୍ରହ୍ମାଣ୍ଡ ପୁରାଣକାର ଗ୍ରହଗଣକୁ ବାୟୁ ନିର୍ମିତ ଅଦୃଶ୍ୟ ରଶ୍ମିଦ୍ୱାରା ଧ୍ରୁବ ନକ୍ଷତ୍ରରେ ନିବଦ୍ଧ ଓ ଯଥା ନିର୍ଦ୍ଦିଷ୍ଟ ପଥେ ଭ୍ରାମ୍ୟମାଣ ପଦାର୍ଥ ବୋଲି ଦର୍ଶାଇ ଅଛନ୍ତି ଏବଂ ଧ୍ରୁବ ପରିବେଷ୍ଟିତ ସୂର୍ଯ୍ୟ ମଧ୍ୟ ଭ୍ରମଣଶୀଳ ବୋଲି ଲେଖିଅଛନ୍ତି । ଏହି ପୃଥିବୀର ପୂଜା, ମନ୍ତ୍ର, ଧ୍ୟାନ, ସ୍ତବ, ଦାନ, ଖନନ ପ୍ରଭୃତିର ବିଧିନିଷେଧ ବିବରଣ ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡ ସପ୍ତମ ଅଧ୍ୟାୟ ପୃଥିବୀ ଉପାଖ୍ୟାନେ ଦ୍ରଷ୍ଟବ୍ୟ ।

ନ୍ୟାୟମତେ ଏହି ପୃଥିବୀ ଗୁରୁ ଓ ରସଯୁକ୍ତ । ଏଥିରେ ରୂପ ନୈମିତ୍ତିକ ଦ୍ରବତ୍ୱ ଓ ପ୍ରତ୍ୟକ୍ଷଯୋଗିତା ବିଦ୍ୟମାନ । ସ୍ପର୍ଶ, ସଂଖ୍ୟା ପରିମିତ, ପୃଥକତ୍ୱ, ସଂଯୋଗ, ବିଭାଗ, ପରତ୍ୱ, ଅପରତ୍ୱ, ବେଗ, ଦ୍ରବତ୍ୱ, ଗୁରୁତ୍ୱ, ରୂପ. ରସ ଓ ଗନ୍ଧ ଏହି ଚଉଦଟି ଏହାର ଗୁଣ । ଗନ୍ଧ ଦୁଇପ୍ରକାର ସୌରଭ ଓ ଅସୌରଭ- ଏହି ଦ୍ୱିବିଧ ଗନ୍ଧର ହେତୁ ପୃଥିବୀ । ଗନ୍ଧ ଥିଲେ କ୍ଷିତି ଅଂଶ ଅଛି ବୋଲି ଜାଣିବାକୁ ହେବ । ଏହି ପୃଥିବୀରେ ଷଡ଼ ରସ ବିଦ୍ୟମାନ । ଏହାର ସ୍ପର୍ଶ ଅନୁଷ୍ଣ, ଅଶୀତ ଓ ପାକଜ ।

ପୃଥିବୀ ଦୁଇ ପ୍ରକାର- ନିତ୍ୟ ଓ ଅନିତ୍ୟ । ପରମାଣୁସ୍ୱରୂପା ପୃଥିବୀ ନିତ୍ୟ ଏବଂ ଅବୟବଶାଳିନୀ ପୃଥିବୀ ଅନିତ୍ୟ । ଏହି ସାବୟବ ପୃଥିବୀ, ଦେହ ଇନ୍ଦ୍ରିୟ ଓ ବିଷୟ ଭେଦରେ ତିନି ପ୍ରକାର; ତନ୍ମଧ୍ୟେ ଦେହଧାରୀ ଜରାୟୁଜ, ଘ୍ରାଣରୂପୀ, ଇନ୍ଦ୍ରିୟାତ୍ମକ, ଦ୍ୟଣୁକାଦି ବ୍ରହ୍ମାଣ୍ଡ ପର୍ଯ୍ୟନ୍ତ ପୃଥିବୀ ବିଷୟାତ୍ମକ ବୋଲି କଥିତ ।

ପାଶ୍ଚାତ୍ୟ ବା ଆଧୁନିକମତେ ଆମ୍ଭମାନଙ୍କ ବାସଭୂମି ପୃଥିବୀ ନଦନଦୀ ଗିରିମାଳା ସାମନ୍ଦ୍ରତ ଆସମୁଦ୍ର ବିସ୍ତୃତ ବୃହତ୍ ଭୂମିଖଣ୍ଡ । ସେହି ସୁଜଳା, ସୁଫଳା, ଶସ୍ୟଶ୍ୟାମଳା, ବନ, ଉପବନ ପ୍ରଭୃତି ସକଳ ପ୍ରାକୃତିକ ସୌନ୍ଦର୍ଯ୍ୟ ବିମଣ୍ଡିତା ପୃଥିବୀ ଦାନବ, ମାନବ, ପଶୁ, ପକ୍ଷୀ, କୀଟ, ପତଙ୍ଗାଦିର ବିଚରଣ ଭୂମି । ବାୟୁ ଓ ବାଷ୍ପ ଯେପରି ଜଗତର ଅଙ୍ଗସଙ୍ଗୀ, ସୂର୍ଯ୍ୟାଲୋକ ମଧ୍ୟ ସେହିପରି ଜୀବର ପ୍ରାଣଦାୟକ; ଏହି କାରଣରୁ ସୂର୍ଯ୍ୟଙ୍କ ସଙ୍ଗେ ଏହି ଲୋକମାତାର ଘନିଷ୍ଠ ସମ୍ବନ୍ଧ ସୂଚିତ ହେଉଅଛି ।

ବିଶେଷ ଆଲୋଚନା ଓ ଅନୁସନ୍ଧାନରୁ ଜଣାଯାଉଅଛି ଯେ- ପୃଥିବୀର ଉତ୍ପତ୍ତି କାଳରୁ ଭିନ୍ନ ଭିନ୍ନ ଯୁଗରେ ଭିନ୍ନ ଭିନ୍ନ ଜଗସ୍ରଷ୍ଟାର ଅପାର କରୁଣାରୁ ଏହି କର୍ମ କ୍ଷେତ୍ରରେ ଉଦ୍ଭବ ହୋଇଥିଲେ । ପୁରାଣରେ ବର୍ଣ୍ଣିତ ଅଛି ସତ୍ୟଯୁଗରେ ମତ୍ସ୍ୟ, କୂର୍ମ, ବରାହ, ନୃସିଂହ ପ୍ରଭୃତି ଅବତାର ଆବିର୍ଭୂତ ହୋଇଥିଲେ; ତତ୍ସଙ୍ଗେ ବିଭିନ୍ନ ଶ୍ରେଣୀର ଜୀବଦେହାଦିର ବର୍ଣ୍ଣନା ମଧ୍ୟ ଲିପିବଦ୍ଧ ହୋଇଅଛି, କିନ୍ତୁ ବୈଜ୍ଞାନିକ ଅନୁସନ୍ଧାନରେ ଆବିଷ୍କୃତ ପ୍ରସ୍ତରୀଭୂତ ଅସ୍ଥି ଦେହର ଅବସ୍ଥାନଠାରୁ ତତ୍ତତ୍ ଯୁଗ ସମ୍ବନ୍ଧୀୟ ମୃତ୍ତିକାନ୍ତରରେ ପ୍ରାଚୀନତା ସ୍ୱୀକାର କଲେ ସ୍ପଷ୍ଟ ପ୍ରତୀତ ହୁଏ ଯେ ପୃଥିବୀର ପ୍ରଥମାବସ୍ଥାରେ ଅଦ୍ଭୁତାକାର, ବୃହଦାୟତନବିଶିଷ୍ଟ ଜୀବ ଜଗତରେ ବିଚରଣ କରୁଥିଲେ ।

## ପୃଥିବୀର ଉତ୍ପତ୍ତି ସମ୍ବନ୍ଧେ ପାଶ୍ଚାତ୍ୟ ମତ

ସୂର୍ଯ୍ୟ ସହିତ ପୃଥିବୀର ଘନିଷ୍ଠ ସମ୍ବନ୍ଧ ସହଜେ ବୁଝାଯାଏ । ତାହାଙ୍କରଜ୍ୟୋତିଃ ବିସ୍ଫାରିତ ଆଲୋକରାଶି ନ ପାଇଲେ ଆମ୍ଭେ କଦାପି କିଛି ଦେଇପାରନ୍ତେ ନାହିଁ ଏବଂ ସମୁଦାୟ ଜାଗତିକ ପଦାର୍ଥ ଚେତନ ଶକ୍ତି ଲାଭ କରିପାରନ୍ତା ନାହିଁ । ଅଧୁନା ପ୍ରଶ୍ନ ଉଠିପାରେ ଯେ, ଏହି ପାଳୟିତ୍ରୀ ଧରିତ୍ରୀ ଏବଂ ସର୍ବପ୍ରାଣଦାୟକ ସୂର୍ଯ୍ୟ କେଉଁଠାରୁ ଆସିଲେ? ଏହି ବାକ୍ୟ କେତୋଟି ଅଳ୍ପ ଅନୁଧାବନ କଲେ ମଧ୍ୟେ ଆମ୍ଭର କୌତୂହଳ ବୃଦ୍ଧି ହେଉଅଛି ଏବଂ ଆମର ଏହି ବିସ୍ତୃତ ବ୍ରହ୍ମାଣ୍ଡର ଉତ୍ପତ୍ତି ଜାଣିବା ଲାଗି ସ୍ୱତଃ ଆଗ୍ରହ ଉଦ୍‌ବେଳିତ ହେଉଅଛି ।

ପୃଥିବୀ ଆମ୍ଭର ବାସସ୍ଥାନ ହେବାରୁ ଏହାର ତତ୍ତ୍ୱ ଜାଣିବା ନିମନ୍ତେ ଆମ୍ଭ ଏଡ଼େ ବ୍ୟାକୁଳ; କିନ୍ତୁ ସୌର ଜଗତର ପ୍ରତ୍ୟେକ ଜ୍ୟୋତିଷ୍କର ସହିତ ଅପରର ଏପରି ବିଶେଷ ସମ୍ବନ୍ଧ ଯେ ଗୋଟିକର ଉତ୍ପତ୍ତି ଜାଣିବାକୁ ହେଲେ, ଅପରଗୁଡ଼ିକ ସମ୍ବନ୍ଧେ ସୁଦ୍ଧା ସମ୍ୟକ୍ ଜ୍ଞାନଲାଭ କରିବାକୁ ହେବ । କୌଣସି ଜାତିର ପ୍ରାଚୀନ କିମ୍ବଦନ୍ତୀରେ ସୃଷ୍ଟି ସମ୍ବନ୍ଧୀୟ ଯେଉଁ କଥା ସନ୍ନିବେଶିତ

ତାହା କଳ୍ପନାପ୍ରସୂତ ବୋଲି ଅଗ୍ରାହ୍ୟ; କିନ୍ତୁ ପ୍ରାକୃତିକ ନିୟମାବଳୀର ପର୍ଯ୍ୟାଲୋଚନା ଦ୍ୱାରା ଏ ସମ୍ବନ୍ଧେ ଯାହା ପ୍ରତୀତ ହୁଏ, ତାହା ବୈଜ୍ଞାନିକ ଜଗତରେ ପରିଗୃହୀତ ଏବଂ ସର୍ବବାଦୀସମ୍ମତ ।

ସୌର ଜଗତ ଗୋଟିଏ ବୃକ୍ଷସ୍ୱରୂପ; ସୂର୍ଯ୍ୟ ତାହାର କାଣ୍ଡ ଏବଂ ଗ୍ରହ ଉପଗ୍ରହାଦି ତାହାର ଶାଖା ପ୍ରଶାଖାତୁଲ୍ୟ । ଜର୍ମାନ୍‌ର ବିଖ୍ୟାତ ଦାର୍ଶନିକ କାଣ୍ଟ ସୃଷ୍ଟିସମ୍ବନ୍ଧେ ଆଲୋଚନା କରି ସ୍ଥିର କରିଅଛନ୍ତି ଯେ, ଗ୍ରହ ଉପଗ୍ରହାଦି ଆକାଶମାର୍ଗର ଗୋଟିଏ ସମତଳ ପଥରେ ସୂର୍ଯ୍ୟଙ୍କୁ ବେଷ୍ଟନ କରି-ଚକ୍ରାକାରରେ ଭ୍ରମଣ କରନ୍ତି । ଏମାନେ କୌଣସି ଆଧିଦୈବିକ ପ୍ରଭାବେ ପ୍ରଭାବିତ ହୁଅନ୍ତି ନାହିଁ । କୌଣସି ଅଜ୍ଞାତ ନିୟମବଳେ ଏହି ସକଳ ସୌରଜଗତ ଏକ ବିଧିବଦ୍ଧ ପଥେ ଘୂର୍ଣ୍ଣିତ ହେଉଅଛି । କୌଣସି ପଦାର୍ଥଦ୍ୱାରା ଜ୍ୟୋତିଷ୍କଗୁଡ଼ିକ ପରସ୍ପର ସଂଯୁକ୍ତ ଥିଲେ ସମସୂତ୍ରରେ ଚଳି ପାରନ୍ତି । କିନ୍ତୁ ବାସ୍ତବ ପକ୍ଷେ ଇଥରମୟ (Ether) ଆକାଶରେ ଗ୍ରହଗଣ ପରସ୍ପର ଅସଂଯୁକ୍ତ ରହି ଭ୍ରମୁଅଛନ୍ତି । ଇଥର ପରି ସୂକ୍ଷ୍ମତର ପଦାର୍ଥରେ ଲିପ୍ତରହି ଗ୍ରହାଦିରଏହିପରି ଗତି କାହିଁକି ହୁଏ? କାଣ୍ଟ କହନ୍ତି, "ପ୍ରଥମେ ସୌରଜଗତ ଆବର୍ତ୍ତମାନ ବିଶୃଙ୍ଖଳ ବାଷ୍ପମୟ ପଦାର୍ଥରାଶିରେ ବ୍ୟାପ୍ତ ଥିଲା । କୌଣସି ସ୍ଥାନରେ ବାଷ୍ପ ଘନ ଥିବାରୁ ମାଧ୍ୟାକର୍ଷଣ ବଳରେ ବାଷ୍ପଜଗତର ଲଘୁ ଅଂଶଗୁଡ଼ିକ ଘନ ସ୍ଥାନରେ ବାଷ୍ପ ସହିତ ମିଳିତ ହୋଇ ଗୋଟିଏ ଗୋଟିଏ ଗୋଲକରେ ପରିଣତ ହୋଇଅଛି ।"

ସାର୍ ଉଇଲିୟମ ହର୍ସେଲ୍ (Sir William Herschel) ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଆକାଶର ଭିନ୍ନ ଭିନ୍ନ ଅବସ୍ଥାର ଭିନ୍ନ ଭିନ୍ନ ବାଷ୍ପ ଖଣ୍ଡ ଦେଖି ସ୍ଥିର ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ପ୍ରଦୀପ୍ତ ନୀହାରିକାରାଶିର ଅବସ୍ଥାରୁ ଜଗତର ଅଭିବ୍ୟକ୍ତି । ଅଦ୍ୟାପି ଆକାଶରେ ଯେଉଁ ସକଳ ନୀହାରିକା ବିଦ୍ୟମାନ, ତାହା କାଳକ୍ରମେ ଗୋଟିଏ ଗୋଟିଏ ଜ୍ୟୋତିଷ୍କରେ ପରିଣତ ହେବ । ଉକ୍ତ ମତ ଆଧୁନିକ ଜ୍ୟୋତିର୍ବିଦ୍‌ଗଣଙ୍କ ଦ୍ୱାରା ପରୀକ୍ଷିତ ଓ ପ୍ରମାଣିତ ହୋଇ ଗୃହୀତ ହୋଇଅଛି ।

ଲାପ୍ଲାସଙ୍କ ମତ ବୈଜ୍ଞାନିକ ଜଗତରେ ବିଶେଷ ଆଦରଣୀୟ ହୋଇଅଛି । ତାଙ୍କମତେ ସୂର୍ଯ୍ୟ ସୌରଜଗତର ଆଦିମ ଜ୍ୟୋତିଷ୍କ, ଅନ୍ୟ ସକଳ ସୂର୍ଯ୍ୟଙ୍କଠାରୁ ବିଚ୍ଛିନ୍ନ ହୋଇ ରହିଛନ୍ତି ।

ପୃଥିବୀର ସ୍ୱଭାବ ଓ ଉତ୍ପତ୍ତି ସମ୍ବନ୍ଧୀୟ ଗବେଷଣାରେ Laplace, Leibnitz, Sir Hohon Jerschel, Kant, Lwedenborg ପ୍ରଭୃତି ମନୀଷୀଗଣ ବହୁ ପ୍ରୟାସ ସହକାରେ ନାନା ତଥ୍ୟ ଆବିଷ୍କାର କରିଅଛନ୍ତି । ନୀହାରିକା ସିଦ୍ଧାନ୍ତ ଅନୁସାରେ (Nebular hypothesis) ଆଧୁନିକ ପଣ୍ଡିତଗଣ Induction ବ୍ୟାପ୍ତି ପ୍ରଣାଳୀରେ ସେହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି । ପୂର୍ବେ କୁହାଯାଇଅଛି ଯେ, ସୂର୍ଯ୍ୟଙ୍କ ଉତ୍ତାପ ବ୍ୟତିରେକେ ପୃଥିବୀର କୌଣସି କାର୍ଯ୍ୟ ସାଧିତ ହୋଇପାରିବ ନାହିଁ । କ୍ଷୁଦ୍ର ପତଙ୍ଗର ପକ୍ଷ ଚାଳନାଠାରୁ ପ୍ରକାଣ୍ଡ ପର୍ବତର ଚୂର୍ଣ୍ଣନ ପର୍ଯ୍ୟନ୍ତ ସକଳ କାର୍ଯ୍ୟ ସୂର୍ଯ୍ୟତାପରେ ସମ୍ପନ୍ନ

ହୁଏ । ସୂର୍ଯ୍ୟଙ୍କଠାରୁ ପ୍ରାଣୀଜଗତର ଜୀବନୋପଯୋଗୀ ଉତ୍ତାପ ଆମ୍ଭେ ଯେତେ ପାଉଅଛୁଁ ତାହାର ୨୧୭୦୦୦୦୦୦୦୦ ଗୁଣ ଉତ୍ତାପ ଶୂନ୍ୟରେ ବିକୀର୍ଣ୍ଣ ହୁଏ ।

ସୂର୍ଯ୍ୟ ଏତେ ପରିମାଣରେ ଉତ୍ତାପ ନିକ୍ଷେପ କଲେ ସୁଦ୍ଧା କି ରୂପେ ନିଜର ଉତ୍ତାପ ରକ୍ଷାକରଣେ ସମର୍ଥ ହୋଇଅଛନ୍ତି? ପ୍ରାକୃତିକ ନିମୟରେ ବାଷ୍ପ ଶୀତଳ ହେବା ସମୟରେ ସମୁଚିତ ହୋଇଉତ୍ତାପ ନିକ୍ଷିପ୍ତ ହୁଏ; ସୂର୍ଯ୍ୟ ସଦୃଶ୍ୟ ବାଷ୍ପଗୋଲକ ଶୀତଳ ହୋଇ ଯେତେ ସଙ୍କୁଚିତ ହୁଏ ତେତେ ଉତ୍ତାପ ବୃଦ୍ଧି ହୁଏ ।

ସୂର୍ଯ୍ୟ ପରିତ୍ୟକ୍ତ ବାଷ୍ପଚକ୍ର ଗୋଲକରୂପେ ଧାରଣ କରି ସୂର୍ଯ୍ୟର ଚତୁର୍ଦ୍ଦିଗରେ ଭ୍ରମଣ କରେ । କ୍ରମେ ଏହା ଶୀତଳ ଓ ଘନ ହୋଇ ତରଳତା ପ୍ରାପ୍ତ ହୁଏ । ତରଳ ଗୋଲକ ଭ୍ରମିଲେ ତାହାର ଦୁଇ ପ୍ରାନ୍ତ ଅଳ୍ପ ଚେପଟା ହୋଇଯାଏ ଏବଂ ମଧ୍ୟଦେଶ ସ୍ଫୀତ ହୋଇଉଠେ । ଉକ୍ତ ନିୟମାନୁସାରେ ସୂର୍ଯ୍ୟତ୍ୟକ୍ତ ଗୋଟିଏ ବାଷ୍ପଚକ୍ର ପୃଥିବୀ ଗୋଲକ ହୋଇ ଦଣ୍ଡାୟମାନ ରହିଲା ।

ପୃଥିବୀର ଗତିର ପରିମାଣକୁ ନେଇ ନିଉଟନ ବିଷୁବ ରେଖାସ୍ଥ ପ୍ରଦେଶର ଉନ୍ନତି ଓ ମେରୁ ସନ୍ନିହିତ ପ୍ରଦେଶର ଅବନତିର ପରିମାଣ ସ୍ଥିର କଲେ । ୧୭୩୬ ଖ୍ରୀଷ୍ଟାବ୍ଦରେ ଫ୍ରାନ୍ସର ବିଜ୍ଞାନ ସଭାରେ କ୍ଲାରୋ, ଲେମୋନିଏ ପ୍ରଭୃତି କେତେକ ବୈଜ୍ଞାନିକ ପୃଥିବୀର ବୃତ୍ତାଂଶର ପରିମାଣ ନେଇ ଲାପ୍ଲାଣ୍ଡ ପ୍ରେରିତ ହେଲେ; ଏହି ସମୟରେ କାନ୍ଦାସିନ ଦକ୍ଷିଣ ଅରାମେରିକାରେ ବିଷୁବରେଖାର ପରିମାଣ ଅବଲମ୍ବନ କରି ଅଙ୍କ ଗଣନାଦ୍ୱାରା ନିଉଟନଙ୍କର ଗଣନାଫଳ ସମର୍ଥନ କଲେ ।

ବାଷ୍ପମୟ ପୃଥିବୀ ଶୀତଳ ହୋଇ ଯେତେବେଳେ କ୍ରମଶଃ ଘନ ଅବସ୍ଥାକୁ ଆସିଲା, ସେତେବେଳେ ଯେଉଁ ସକଳ ବାଷ୍ପ ତରଳ ହେଲା ତାହା କ୍ରମଶଃ ପାର୍ଥିବ ଗୁଣପ୍ରାପ୍ତହେଲାଏବଂ ଯେଉଁ ଅବଶିଷ୍ଟାଂଶ ତରଳ ନହୋଇ ରହିଗଲା ତାହା ଅଦ୍ୟାପି ପୃଥିବୀ ଉପରେ ବାଷ୍ପାକାରରେ ରହିଅଛି । ପୃଥିବୀର ଏହି ବାଷ୍ପାବରଣ ଯେ ଦିନେ ଚନ୍ଦ୍ର ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା, ଏହା ନିଃସନ୍ଦେହ; ସେହି ତରଳ ଅବସ୍ଥାରେ ପୃଥିବୀର ଉତ୍ତାପ ସେଣ୍ଟିଗ୍ରେଡ୍ ୨୦୦୦ ଡିଗ୍ରୀ ଥିଲା । ତାପମାନ ଯନ୍ତ୍ରର ୧୦୦ ଡିଗ୍ରୀ ଉତ୍ତାପରେ ଜଳ ଫୁଟିଯାଏ; ତେବେ ଉପରୋକ୍ତ ପରିମାଣ ତାପରେ ଲୌହାଦି ଦ୍ରବ୍ୟ ବାଷ୍ପାକାରେ ପୃଥିବୀ ଉପରେ ଭାସିବା ବିଚିତ୍ର କ'ଣ?

ଯେଉଁ ଆକାଶରେ ସମ୍ପ୍ରତି ଗ୍ରହଗଣ ଅବସ୍ଥିତ ସେଠାରେ ଉତ୍ତାପ ଅତିଶୟ ଅଳ୍ପ । ଉତପ୍ତ ତରଳ ପୃଥିବୀ ଶୀତଳ ଆକାଶ ପଥେ ଭ୍ରମଣ କରି ନିଜ ଉତ୍ତାପ ଅନେକ କ୍ଷୟ କରିଅଛି । ଶୀତଳ ହେତୁ ତରଳ ପଦାର୍ଥ ଘନ ହୋଇ ବିଶେଷ ଦୃଢ଼ ହୋଇଅଛି ।

ଚନ୍ଦ୍ରର ଆକର୍ଷଣରୁ ସମୁଦ୍ରର ଜୁଆର ଭଟ୍ଟା ସାହାଯ୍ୟରେ ପୃଥିବୀର ଉତ୍ତାପ ହ୍ରାସ ହୋଇ ଅତି ଶୀତଳ ହେଲା । ଏହି ସକଳ କାରଣରୁ ଯେତେବେଳେ ପୃଥିବୀ ଶୀତଳ

ହେଲା ସେତେବେଳେ ମେରୁ ସନ୍ନିହିତ ସମୁଦ୍ରରେ ହିମଶୈଳ ସଦୃଶ ଭାସମାନ ଊର୍ଦ୍ଧ୍ୱ ତରଳାବସ୍ଥାପନ୍ନ ପଦାର୍ଥରାଶି ଭୂପୃଷ୍ଠର ସ୍ଥାନେ ସ୍ଥାନେ ଦେଖାଗଲା । କ୍ରମେ ତରଳ ପୃଥିବୀର ସମସ୍ତ ପୃଷ୍ଠଦେଶ ଏହିପରି କଠିନ ପଦାର୍ଥ ରାଶିରେ ଆବୃତହୋଇ ଏକ ଆବରଣ ସୃଷ୍ଟି କଲା; କିନ୍ତୁ ଏହିପରି ସୂକ୍ଷ୍ମ ଆବରଣରେ ଆଭ୍ୟନ୍ତରୀଣ ଜୁଆର ଭଟ୍ଟାର ରୋଧ ହେଲା ନାହିଁ; ମଧ୍ୟେ ମଧ୍ୟେ ଆବରଣ ଭେଦକରି ତରଳ ପଦାର୍ଥରାଶି ପ୍ରଚଣ୍ଡ ବେଗରେ ଊର୍ଦ୍ଧ୍ୱେ ଉତ୍‌କ୍ଷିପ୍ତ ହେବାକୁ ଲାଗିଲା, କ୍ରମେ ସେହି ଉତ୍‌କ୍ଷିପ୍ତ ପଦାର୍ଥ ରାଶି ଶୀତଳ ହୋଇ ପର୍ବତରେ ପରିଣତ ହେଲା । ସମ୍ପ୍ରତି ପର୍ବତଶ୍ରେଣୀ ସମାକୀର୍ଣ୍ଣ ବାଷ୍ପମଣ୍ଡିତ ଉତ୍ତପ୍ତ ପୃଥିବୀ ଦେଖାଗଲା । କ୍ରମେ କ୍ରମେ ଆହୁରି ଉତ୍ତାପର ହ୍ରାସ ହେଲା, ଯେତେବେଳେ ଶୂନ୍ୟ-ଭାସମାନ ଜଳୀୟବାଷ୍ପ ବାଷ୍ପାକାରରେ ରହିବା ଅସମ୍ଭବ ହେଲା, ତେତେବେଳେ ସେହି ବାଷ୍ପରାଶି ଜମିଯାଇ ଉତ୍ତପ୍ତଜଳ ରୂପେ ପୃଥିବୀରେ ପତିତ ହେଲା । ଏହାହିଁ ପୃଥିବୀ ଉପରେ ବୃଷ୍ଟିପାତର ପ୍ରାରମ୍ଭ ଯୁଗ । ଉଷ୍ଣ ପୃଥିବୀ ଉପରେ ବୃଷ୍ଟି ଜଳ ପଡ଼ିବା ମାତ୍ରେ ପୁଣି ବାଷ୍ପ ଉତ୍ଥିତ ହେଲା । ଶୀତଳ ଆକାଶର ସ୍ପର୍ଶବଶରୁ ପୁଣି ଶୀତଳ ହୋଇ ବୃଷ୍ଟି ରୂପେ ପତିତ ହେଲା । ଜଳର ଅବସ୍ଥା ଅହରହ ପରିବର୍ତ୍ତନରେ ଅନ୍ଧକାରାଚ୍ଛନ୍ନ ପୃଥିବୀ ବିଦ୍ୟୁତାଲୋକରେ ଉଦ୍ଭାସିତ ହେଲା । ବଜ୍ରଧ୍ୱନିରେ ନିନାଦିତ ହେଲା; ଏହି ଭୌତିକ ବିପ୍ଳବ ଚଳିଥିଲା ତାହାଅଦ୍ୟାବଧି ନିର୍ଣ୍ଣୀତ ହୋଇପାରି ନାହିଁ ।

କ୍ରମେ ସମଗ୍ର ପୃଥିବୀ ବ୍ୟାପିଗଲା; ବାଷ୍ପାବରଣ କିଛି ପାତଳ ହେଲା; ଅସ୍ଫୁଟ ସୂର୍ଯ୍ୟରଶ୍ମି ସେହି ଦିଗନ୍ତବ୍ୟାପୀ ଅନ୍ଧକାର ଭେଦକଲାଏବଂ ସେହି ଆଲୋକରେ ଜଳପ୍ଲାବିତ ପୃଥିବୀ ପୁଲକିତ ହୋଇଉଠିଲା ।

ଗଣନାଦ୍ୱାରା ସ୍ଥିର ହୋଇଅଛି ଯେ, ସୂର୍ଯ୍ୟଙ୍କର ଉତ୍ତାପ ପ୍ରଭାବରେ, ବାୟୁଯୋଗେ ପ୍ରତି ବର୍ଷରେ ୨ ୨୦ ଫୁଟ ସୂର୍ଯ୍ୟଙ୍କ ବ୍ୟାସ ସଙ୍କୋଚିତ ହୁଏ । ଏହି ହିସାବରେ ପ୍ରତି ଶତାବ୍ଦୀରେ ସୂର୍ଯ୍ୟଙ୍କ ବ୍ୟାସରୁ ୪ ମାଇଲ ସଙ୍କୋଚିତ ହୁଏ ।

ଏହି ସମୟରେ ସୂର୍ଯ୍ୟଙ୍କୁ ଅତିକ୍ରମ କରି ବାଷ୍ପ ସୌରଜଗତେ ବୁଧ ଓ ପୃଥିବୀ କକ୍ଷ ପର୍ଯ୍ୟନ୍ତ ବ୍ୟାପିଥିଲା ।

## ଭାରତୀୟମତେ ପୃଥିବୀ ଓ ଆକାଶର ସ୍ୱଭାବ

ଭାରତବର୍ଷୀୟ ପ୍ରାଚୀ ଭୌଗୋଳିକମାନେ ପୃଥିବୀର ଆକାର ନିର୍ଣ୍ଣୟରେ ଯଥେଷ୍ଟ ବୁଦ୍ଧିମତ୍ତାର ପରିଚୟ ଦେଇଅଛନ୍ତି; କୌଣସି ଶାସ୍ତ୍ରରେ ପୃଥିବୀର ଆକାର ତ୍ରିକୋଣ ବା ଚତୁଷ୍କୋଣ ରୂପେ ବର୍ଣ୍ଣିତ ହୋଇଅଛି, ଭାଗବତାଦି ପୁରାଣରେ ପଦ୍ମପତ୍ରାକୃତି ବୋଲି ମଧ୍ୟ କଥିତ ଅଛି । ଗଣିତ ଓ ଯୁକ୍ତିଦ୍ୱାରା ଧରଣୀର ଯେପରି ଆକାର ଓ ସ୍ୱରୂପ ନିର୍ଣ୍ଣିତ ହୋଇଅଛି ତାହା ସହିତ ସର୍ବତୋ ଭାବେ ୟୁରୋପୀୟ ଜ୍ୟୋତିର୍ବିଦ୍‌ଗଣ ଏକମତ ହୁଅନ୍ତି ।

''ଭୂମେଃ ପିଣ୍ଡଃ ଶଶାଙ୍କଃ କବିରବି କୁଜେ ଜ୍ୟାର୍କିନକ୍ଷତ୍ର କଯା-
ବୃତ୍ତୈର୍ବୃତ୍ତୋବୃତଃ ସନ୍ ମୃଦନିଳ ସଲିଳ ବ୍ୟୋମତେଜୋମୟୋଽୟଂ ।
ନାନ୍ୟାଧାରଃ ସ୍ୱଶକ୍ତ୍ୟୈବ ବିୟତି ନିୟତଂ ତିଷ୍ଠତୀହାସ ପୃଷ୍ଠେ
ନିଷ୍ଠଂ ବିଶ୍ୱଞ୍ଚ ଶଶ୍ୱତ୍‌ସ ଦନୁଜ ମନୁଜାଦିତ୍ୟ ଦୈତ୍ୟଂ ସମାସ୍ତାତ୍ ।''

(ସିଦ୍ଧାନ୍ତ ଶିରୋମଣି)

ପଞ୍ଚ ଭୂତମୟ ଏହି ଗୋଲାକାର ଭୂଖଣ୍ଡ ଚନ୍ଦ୍ର, ବୁଧ, ଶୁକ୍ର, ମଙ୍ଗଳ, ବୃହସ୍ପତି, ଶନି, ନକ୍ଷତ୍ର କକ୍ଷାବୃତ୍ତରେ ଆବୃତ୍ତ ହୋଇ ଅନ୍ୟ ଆଧାରର ଅପେକ୍ଷା ନକରି ନିଜ ଶକ୍ତିବଳେ ଆକାଶପଥେ ନିୟତ ଅବସ୍ଥିତ; ପୁଣି ସେହି ଶକ୍ତି ପ୍ରଭାବରେ ଦେବ ଦୈତ୍ୟାଦି ଅଧ୍ୟୁଷିତ ବିଶ୍ୱ ସଂସାର ଅଧିଷ୍ଠିତ ହୋଇ ରହିଅଛି । ଗୋଲାଧ୍ୟାୟରେ ବ୍ରହ୍ମାଣ୍ଡର ଗୋଲତ୍ୱ ସମ୍ବନ୍ଧେ ବିଶେଷ ପ୍ରମାଣ ମିଳେ ।

''ଭୂ ଭୂଧର ସ୍ତ୍ରିଦଶ ଦାନବ ମାନବାଦ୍ୟା ଯେ ଯାଶ୍ଚ ଧିଷ୍ଣ୍ୟଗମନେଚର ଚକ୍ରକକ୍ଷାଃ ।
ଲୋକ ବ୍ୟବସ୍ଥିତି ରୁପର୍ଯ୍ୟପରି ପ୍ରଦିଷ୍ଟା ବ୍ରହ୍ମାଣ୍ଡ ଭାଣ୍ଡଜଠରେ ତଦିଦଂ ସମସ୍ତଂ ।''

ଜ୍ୟୋତିର୍ବିଦ୍‌ଗଣ ପୃଥିବୀ, ପର୍ବତ, ଦେବ, ଦାନବ ଓ ଉପର୍ଯ୍ୟୁପରି ସପ୍ତଲୋକର ଅବସ୍ଥାନ ଏହି ବ୍ରହ୍ମାଣ୍ଡ ଭାଣ୍ଡୋଦରେ କଳ୍ପନା କରିଛନ୍ତି । ପୃଥିବୀର ଗୋଲତ୍ୱ ପରେ ବିବୃତ ହୋଇଅଛି । ଏହି ପରିଦୃଶ୍ୟମାନ ପୃଥିବୀ କଦମ୍ବ ପୁଷ୍ପପରି ଗୋଲାକାର ଓ ବନ-ପର୍ବତ-ନଗରାଦିରେ ପରିଶୋଭିତ ।

''ସର୍ବତଃ ପର୍ବତାରାମଗ୍ରାମ ଚୈତ୍ୟଚୟୈଶ୍ଚିତଃ
କଦମ୍ବକୁସୁମଗ୍ରନ୍ଥ କେଶର ପ୍ରସରୈରିବ''

ପୃଥିବୀର ଗୋଲତ୍ୱ ପ୍ରମାଣାର୍ଥେ ଭାରତୀୟ ଜ୍ୟୋତିର୍ବିଦ୍‌ଗଣ ଯେଉଁ ସକଳ ଯୁକ୍ତି ଅବଲମ୍ବନ କରିଅଛନ୍ତି ତାହା ସର୍ବତୋଭାବେ ଗ୍ରାହ୍ୟ ଅଟେ । ଚନ୍ଦ୍ର ସ୍ୱପ୍ରକାଶକ ନୁହନ୍ତି । ସୂର୍ଯ୍ୟକିରଣ ଦ୍ୱାରା ସେ ଆଲୋକିତ ପୃଥିବୀର ଛାୟାପାତଦ୍ୱାରା ସୂର୍ଯ୍ୟ କିରଣର ଅବରୋଧକୁ ଚନ୍ଦ୍ରଗ୍ରହଣ କୁହାଯାଏ; ଏହି ସମୟରେ ପୃଥିବୀର ଯେଉଁ ଛାୟା ଚନ୍ଦ୍ର ଉପରେ ପଡ଼େ ତାହା ନିୟତ ଗୋଲାକାର ଦେଖାଯାଏ । ଧରିତ୍ରୀ ଗୋଲାକାର ନହେଲେ ତାହାର ଛାୟା କଦାପି ଗୋଲାକାର ଦୃଶ୍ୟ ହୁଅନ୍ତା ନାହିଁ । ଗ୍ରହଣ ସମୟରେ ଶୃଙ୍ଗୋନ୍ନତି ଚନ୍ଦ୍ରଙ୍କର କେବଳ ଗୋଲାକାର ଛାୟାପାତର ମୂଳ କାରଣ ।

''ଉଦ୍ଧୃତ୍ୟ ପୃଥିବୀ ଛାୟାଂ ନିର୍ମିତୋମଣ୍ଡଳାକୃତିଃ,
ସ୍ୱର୍ଭାନୋସ୍ତୁ ବୃହତ୍ ସ୍ଥାନଂ ତୃତୀୟଂ ଯତ୍ତମୋମୟଂ'' ।

(ମତ୍ସ୍ୟ ଓ କୂର୍ମପୁରାଣ)

କୌଣସି କୌଣସି ପୁରାଣରେ ବସୁଧା ସମତଳ ବୋଲି ବର୍ଣ୍ଣିତ ହୋଇଅଛି କିନ୍ତୁ ମହାମତି ଭାସ୍କରାଚାର୍ଯ୍ୟ ଯୁକ୍ତିଦ୍ୱାରା ଉକ୍ତ ମତ ଖଣ୍ଡନ କରିଅଛନ୍ତି ।

''ଯଦିସମା ମୁକୁରୋଦରସନ୍ନିଭା ଭଗବତୀ ଧରଣୀ ତରଣିଃ କ୍ଷିତେଃ
ଉପରି ଦୂର ଗତୋଽପି ପରିଭ୍ରମନ୍ କିମ୍ନ ନରୈରମରୈରିବ ନେକ୍ଷତେ'' ।

ପୃଥିବୀ ଦର୍ପଣୋଦର ପରି ସମତଳ ହୋଇଥିଲେ ତା ଉପରେ ଉର୍ଦ୍ଧ୍ୱ ଭ୍ରମଣଶୀଳ ସୂର୍ଯ୍ୟ ନିରନ୍ତର ମାନ ଗଣର ଦୃଷ୍ଟିପଥାରୂଢ଼ ହୋଇ କଦାପି ଦିବାରାତ୍ରି ସଂଘଟିତ ହୁଅନ୍ତା ନାହିଁ ।

ପୃଥିବୀ ସମତଳ ବୋଲି ପ୍ରତିପାଦନ କରୁଥିବା ମତର ନିରସନ କରି ଗୋଲ ବୋଲି ପ୍ରତିପାଦନ କରିବାପାଇଁ ପ୍ରାଚୀନ ଜ୍ୟୋତିର୍ବିଦ୍ ଲଲ୍ଲାଚାର୍ଯ୍ୟ କହନ୍ତି-

ସମତା ଯଦି ବିଦ୍ୟତେ ଭୂବସ୍ତରବସ୍ତାଳନିଭାବହୁଚ୍ଛ୍ରୟାଃ
କଥମେବ ନ ଦୃଷ୍ଟିଗୋଚରଂ ସୁରହୋ ଯାନ୍ତି ସୁଦୂର ସଂସ୍ଥତାଃ ।

ପୃଥିବୀ ସମତଳ କ୍ଷେତ୍ର ବିଶେଷ ହେଲେ ଦୂରସ୍ଥ ଅତ୍ୟୁଚ୍ଚ ବୃକ୍ଷ ସକଳ ଦୃଷ୍ଟିଗୋଚର ହୁଅନ୍ତା ନାହିଁ କି? ଏତଦ୍ଦ୍ୱାରା ପୃଥିବୀ ଗୋଲତ୍ୱ ସୂଚିତ ହେଉଅଛି । ଆମ୍ଭେ ଯେତେ ଦୂରକୁ ଗମନ କରୁ ସମ୍ମୁଖସ୍ଥ ବୃକ୍ଷ କ୍ରମଶଃ ଛୋଟ ଦେଖାଯାଏ; ପରିଶେଷରେ ଅଦୃଶ୍ୟ ହୋଇଯାଏ ।

ପୃଥିବୀର ଗୋଲତ୍ୱ ନିବନ୍ଧନରେ ଦିବାରାତ୍ରି ହେବା ସିଦ୍ଧାନ୍ତ ଜ୍ୟୋତିଃଶାସ୍ତ୍ରରୁ ପ୍ରତିପନ୍ନ ହେଉଅଛି, ପୁରାଣରେ ଦିବାରାତ୍ରି ନିମନ୍ତେ ଧରିତ୍ରୀର ମଧ୍ୟସ୍ଥଳରେ ସୁମେରୁ ପର୍ବତର ଅବସ୍ଥିତି କଳ୍ପନା କରାଯାଇଛି । ଏହି ପର୍ବତର ଅନ୍ତରାଳରେ ସୂର୍ଯ୍ୟଙ୍କ ଗମନ ଯୋଗୁଁ ପୃଥିବୀ ଅନ୍ଧକାର ସମାଚ୍ଛନ୍ନ ହୁଏ; କିନ୍ତୁ ଏହି ମତର ପ୍ରତିବାଦ କରି ଭାସ୍କରାଚାର୍ଯ୍ୟ ନିମ୍ନଲିଖିତ ଯୁକ୍ତି ପ୍ରଦର୍ଶାଇ ଅଛନ୍ତି ।

ଯଦି ନିଶାଜନକଃ କନକାଚଳଃ କିମୁ ତଦନ୍ତରଗଃ ସ ନ ଦୃଶ୍ୟତେ ।
ଉଦଗୟୌ ନନୁ ମେରୁତଥାଂଶୁମାନ୍ କଥମୁଦେତି ଚ ଦକ୍ଷିଣ ଭାଗକେ ।।

ଯଦି ସୁମେରୁ ପର୍ବତ ରଜନୀର କାରଣ ହୁଏ, ତାହାହେଲେ ସୂର୍ଯ୍ୟ ତାହାର ଅପରଦିଗରେ ଗମନ କଲାବେଳେ ସେହି ସ୍ୱର୍ଣ୍ଣ ପର୍ବତର ଆଭା କାହିଁକି ଦୃଶ୍ୟ ହୁଏ ନାହିଁ? ଉକ୍ତ ପର୍ବତ ତ ନିୟତ ଉତ୍ତର ଦିଗସ୍ଥ, ତେବେ ଦକ୍ଷିଣ ଦିଗରେ ସୂର୍ଯ୍ୟଦେବ କାହିଁକି ବା ଏହାଠାରୁ ବହୁ ଦୂରରେ ଉଦିତ ହୁଅନ୍ତି? ପୃଥିବୀ ଗୋଲ ହେଲେ ମଧ୍ୟ ପ୍ରତ୍ୟକ୍ଷତଃ ସମତଳ କ୍ଷେତ୍ରପରି କାହିଁକି ଦିଶେ ?

''ଅଳ୍ପ କାୟତୟା ଲୋକାଃ ସ୍ୱ ସ୍ଥାନାତ୍ ସର୍ବତୋମୁଖଂ'
ପଶ୍ୟନ୍ତି ବୃତ୍ତାମପ୍ୟେତାଂ ଚକ୍ରାକାରାଂ ବସୁନ୍ଧରାଂ'' (ସୂର୍ଯ୍ୟ ସିଦ୍ଧାନ୍ତ)

ଅବନୀମଣ୍ଡଳର ତୁଳନାରେ ମାନବଗଣ ଅତି କ୍ଷୁଦ୍ର । ଏହି କାରଣରୁ ସେମାନେ ପୃଥିବୀ ବାସ୍ତବିକ ଗୋଲାକାର ହେଲେ ମଧ୍ୟ ଏହାକୁ ଚକ୍ରାକାର ସମତଳ କ୍ଷେତ୍ରପରି ଦେଖନ୍ତି । ବିଶେଷ ପ୍ରମାଣ-

''ସମୋ ଯତଃ ସ୍ୟାତ୍ ପରିଧେଃ ଶତାଂଶଃ ପୃଥ୍ୱୀ ଚ ନିତରାଂ ତନୀୟାନ୍
ନରଶ୍ଚ ତତ୍ପୃଷ୍ଠଗତସ୍ୟ କୃତ୍ସ୍ନା ସମେବ ତସ୍ୟ ପ୍ରତିଭାତ୍ୟତଃସା'' । (ଗୋଳାଧ୍ୟାୟ)

ଭୂମଣ୍ଡଳ ବିଶାଳ ହୋଇଥିବା ଯୋଗୁଁ ଭୂପରିଧିର ଶତାଂଶ ତତ୍ପୃଷ୍ଠସ୍ଥିତ ମାନବଚକ୍ଷୁକୁ ସମତଳ ପରି ପ୍ରତୀତ ହୁଏ । ଏଠାରେ ପ୍ରଶ୍ନ ଉଠିପାରେ ଯେ ବସୁଧା ଗୋଲାକାର ହେଲେ ଅବଶ୍ୟ ତାହାର ଉର୍ଦ୍ଧ୍ୱ ଓ ଅଧୋଭାଗ ରହିବ; ତାହାହେଲେ କାହିଁକି ନିମ୍ନ ପ୍ରଦେଶସ୍ଥିତ ଜୀବଜନ୍ତୁଗଣ ସ୍ଖଳିତ ହୋଇପଡ଼ନ୍ତି ନାହିଁ? ଏହାର ଉତ୍ତର ଏହି ଯେ ବସୁଧା ଗୋଲ ହେଲେ ମଧ୍ୟ ତାହାର ଅଧ ଉର୍ଦ୍ଧ୍ୱ ନାହିଁ ? ଅଧଉର୍ଦ୍ଧ୍ୱ କେବଳ କଳ୍ପନା କରାଯାଏ । ସୂର୍ଯ୍ୟ ସିଦ୍ଧାନ୍ତରେ ଉଲ୍ଲେଖ ଅଛି -

''ସର୍ବତ୍ରୈବ ମହୀଗୋଲେ ସ୍ୱସ୍ଥାନପୁରିସ୍ଥିତଂ,
ମନ୍ୟତେ ଯେ ଯତୋଗୋଳସ୍ତସ୍ୟ କ୍ୱୋର୍ଦ୍ଧ୍ୱଂବାପ୍ୟଧଃ'' ।

ପୃଥିବୀ ଗୋଲାକାର ଓ ଆକାଶରେ ସ୍ଥିତ, ସୁତରାଂ ତାହାର ଉର୍ଦ୍ଧ୍ୱ ବା ଅଧଃ କେଉଁଠାରେ? ଭୂମଣ୍ଡଳରେ ସକଳେ ସ୍ୱସ୍ୱ ସ୍ଥାନକୁ ଉପରିସ୍ଥିତ ମନେ କରନ୍ତି । ଏ ସମ୍ବନ୍ଧରେ ଭାସ୍କରାଚାର୍ଯ୍ୟ କହିଅଛନ୍ତି-

''ଯୋ ଯତ୍ର ତିଷ୍ଠତ୍ୟବନୀ ତଳସ୍ଥା ମାତ୍ମାନମସ୍ୟ ହ୍ୟୁପରି ସ୍ଥିତଂଚ ।
ସ ମନ୍ୟତେଽତଃ କୁଚତୁର୍ଥ ସଂସ୍ଥାମିଥଶ୍ଚତେ ତିର୍ଯ୍ୟ ଗିବାମନନ୍ତି ।।
ଅଧଃଶିରସ୍କାଃ କୁଦଳାନ୍ତରସ୍ଥାଃ ଛାୟା ମନୁଷ୍ୟା ଇବ ନୀରତୀରେ ।
ଅନାକୁଳା ସ୍ତିର୍ଯ୍ୟଗଧଃ ସ୍ଥିତାଶ୍ଚ ତିଷ୍ଠନ୍ତି ତେ ତତ୍ର ବୟଂ ଯଥାତ୍ର ।।''

ପ୍ରତ୍ୟେକ ବ୍ୟକ୍ତି ଦଣ୍ଡାୟମାନ ରହି ଧରଣୀ ନିଜ ପଦତଳେ ଅଛି ଏବଂ ନିଜେ ଧରଣୀ ଉପରେ ଅଛୁ ବୋଲି ମନେ କରନ୍ତି । ପୃଥିବୀର ଚତୁର୍ଥ ଭାଗ (୯୦ ଅଂଶ) ସ୍ଥିତ ବ୍ୟକ୍ତି ଧରା ମଣ୍ଡଳ ଉପରେ ଅଧିଷ୍ଠିତ ଥିଲେ ମଧ୍ୟ ତିର୍ଯ୍ୟକ୍ ଭାବେ ଥିଲାପରି ବୋଧହୁଏ । ଉପରେ (୧୮୦ ଅଂଶ)ରେ ଅନ୍ୟ ସମସ୍ତେ ଠିକ୍ ବିପରୀତ ଭାବେ ବାସ କରନ୍ତି; ଜଳାଶୟତୀରସ୍ଥ ମନୁଷ୍ୟର ଜଳଗତ ପ୍ରତିବିମ୍ବ ପରି ଉଭୟେ ବିପରୀତ ଭାବେ ଦଣ୍ଡାୟମାନ ବୋଲି ଭାବନ୍ତି । ଏହା କେବଳ ଭ୍ରମ । ଏ ସ୍ଥାନରେ ଆମ୍ଭେମାନେ ଯେପରି ଅଛୁଁ ସେ ସ୍ଥାନରେ ସେମାନେ ମଧ୍ୟ ସେପରି ସୁଖରେ ଅଛନ୍ତି । ସର୍ବତ୍ର ସକଳର ପଦତଳେ ଧରଣୀ ଏବଂ ମସ୍ତକ ଉପରେ ଅନନ୍ତ ଆକାଶ ବିଦ୍ୟମାନ ଥିଲାପରି ପ୍ରତୀତ ହୁଏ ।

ସମ୍ପ୍ରତି ପ୍ରଶ୍ନ ଉଠିପାରେ ଯେ ଯଦି ପୃଥିବୀ ଶୂନ୍ୟମାର୍ଗେ ଅବସ୍ଥିତ, ତାହାହେଲେ କି ପ୍ରକାରେ କି ଆଶ୍ଚର୍ଯ୍ୟ ଶକ୍ତିବଳେ ମନୁଷ୍ୟାଦି ଜୀବ, ବିଶାଳ ପର୍ବତଶ୍ରେଣୀ ଓ ବୃକ୍ଷରାଜି ଭୂପୃଷ୍ଠରେ ସଂଯତ ହୋଇ ରହିଅଛନ୍ତି । ତାହାର ଉତ୍ତରଏହି ଯେ ପାର୍ଥିବ ପଦାର୍ଥସକଳ ଆକର୍ଷଣ ଶକ୍ତି ବଳରେ ପୃଥିବୀରେ ସଂଯତ ଭାବେ ରହିଛନ୍ତି । ବିଶ୍ୱବ୍ରହ୍ମାଣ୍ଡର ସକଳ ବସ୍ତୁ ସେହି ଅନନ୍ତ ଶକ୍ତିର ଆଧାର ପରମେଶ୍ୱରଙ୍କ ଅଲଂଘନୀୟ ନିୟମର ବଶବର୍ତ୍ତୀ । ଜ୍ୟୋତିଷ ଶାସ୍ତ୍ରରେ ପୃଥିବୀର ଅନ୍ୟ କୌଣସି

ଆଧାର କଳ୍ପିତ ହୋଇନାହିଁ । ପଣ୍ଡିତପ୍ରବର ଭାସ୍କରାଚାର୍ଯ୍ୟ ପୁରାଣାଦିର ପ୍ରୋକ୍ତ ଭ୍ରାନ୍ତ ଧାରଣା ଯୁକ୍ତିଦ୍ୱାରା ଖଣ୍ଡନ କରିଦେଇଅଛନ୍ତି ।

ଅନନ୍ତଦେବ ପୃଥିବୀର ଆଧାର ବୋଲି ଶ୍ରୀମଦ୍‌ଭାଗବତ ସ୍ୱୀକାର କରେ । କିନ୍ତୁ ଏହା ଖଣ୍ଡନ କରାଯାଇଅଛି ।

"ମୂର୍ତ୍ତୋ ଧର୍ତ୍ତା ଚେଦ୍ଧରିତ୍ର୍ୟାସ୍ତଦନ୍ୟସ୍ତସ୍ୟାପ୍ୟନ୍ୟୋପ୍ୟେବମତ୍ରାନବସ୍ଥା ।
ଅନ୍ତ୍ୟେ କାଲ୍ପ୍ୟା ଚେତ୍ ସ୍ୱଶକ୍ତିଃ କିମାଦ୍ୟେ କିଂ ନୋ ଭୂମିଃସ୍ୟୋଷ୍ଟମୂର୍ତ୍ତେଶ୍ଚ ମୂର୍ତ୍ତିଃ" ।।

ଧରିତ୍ରୀଧାରଣ ନିମନ୍ତେ ଯଦି ମୂର୍ତ୍ତିମତ୍ ଆଧାର ସ୍ୱୀକାର କରାଯାଏ ଏବଂ ତାହା ମଧ୍ୟ ଯଦି ସ୍ୱୀୟଶକ୍ତି ମନେକର ତେବେ ସେହି ଶକ୍ତି ପୃଥିବୀରେ ହିଁ କାହିଁକି ପ୍ରଥମରୁ ସ୍ୱୀକାର କରିବ ନାହିଁ? ପୃଥିବୀ ମଧ୍ୟ ସାମାନ୍ୟ ବସ୍ତୁ ନୁହେଁ ତ? ଶାସ୍ତ୍ରରେ ପୃଥିବୀ ଶିବଙ୍କ ଅଷ୍ଟ ମୂର୍ତ୍ତିର ଅନ୍ୟତମ ମୂର୍ତ୍ତି ବୋଲି ବର୍ଣ୍ଣିତ, ଏହିପରି ଯୁକ୍ତିଜାଳଦ୍ୱାରା ପଣ୍ଡିତପ୍ରବର ଭାସ୍କରାଚାର୍ଯ୍ୟ ଏ ବିଷୟର ଉପସଂହାର କରିଅଛନ୍ତି ।

ଯଥୋଷ୍ଣତାର୍କାନଳୟୋଶ୍ଚ ଶୀତତା ବିଧୌଦ୍ରୁତିଃ କେ କଠିନତ୍ୱମଶ୍ମନି ।
ମରୁଚ୍ଚଳୋ ଭୂରଚଳା ସ୍ୱଭାବତୋ ଯତୋ ବିଚିତ୍ରା ବତ ବସ୍ତୁଶକ୍ତୟଃ ।।

ଯେପରି ସୂର୍ଯ୍ୟାଗ୍ନିରେ ଉଷ୍ଣତା, ଚନ୍ଦ୍ରରେ ଶୀତଳତା, ଜଳରେ ପ୍ରବାହ, ପାଷାଣରେ କଠିନତା ଓ ବାୟୁରେ ଚଞ୍ଚଳତା ସ୍ୱାଭାବିକ ସେପରି ପୃଥିବୀ ମଧ୍ୟ ସ୍ୱଭାବତଃ ଅଚଳା ଯେହେତୁ ବସ୍ତୁଶକ୍ତି ଅତି ବିଚିତ୍ର ।

କେବଳ ଅଚଳା ପ୍ରୟୋଗରେ ସେ ଭାସ୍କରାଚାର୍ଯ୍ୟ ପୃଥିବୀର ନିରାଧାରତ୍ୱ ପ୍ରତିପାଦନ କରିଅଛନ୍ତି, ଏପରି ନୁହେଁ ତଦ୍ଦ୍ୱାରା ପୌରାଣିକ କୂର୍ମାଦି ଆଧାର ବିଷୟକ କଳ୍ପନା ଏବଂ ବୌଦ୍ଧଶାସ୍ତ୍ରୋକ୍ତ ଧରଣୀର ନିରନ୍ତର ଅଧୋଗମନ ମତ ସୁଦ୍ଧା ନିରାକରଣ କରିଅଛନ୍ତି । ଯେଉଁବସ୍ତୁ ସ୍ୱଭାବତଃ ଅଚଳ ତାହାକୁ ଧରି ରଖିବା ଅପ୍ରୟୋଜନ । ବୌଦ୍ଧାଚାର୍ଯ୍ୟଗଣ ଯେଉଁ ଯୁକ୍ତି ଓ ପ୍ରମାଣ ଦ୍ୱାରା ପୃଥିବୀର ଅଧୋଗମନ ପ୍ରତିପାଦନ କରିଅଛନ୍ତି ସିଦ୍ଧାନ୍ତକାର ସେହି ଭ୍ରାନ୍ତ ଧାରଣାର ନିରସନ କରି ଅଛନ୍ତି ଏବଂ ଭାସ୍କରାଚାର୍ଯ୍ୟ ମଧ୍ୟ ତୀବ୍ର ପ୍ରତିବାଦ କରି ଉକ୍ତ ମତଦ୍ୱୟ ଖଣ୍ଡନ କରିଅଛନ୍ତି ।

## ପୃଥିବୀର ଆକର୍ଷଣ ଶକ୍ତି

ପୃଥିବୀର ଯେଉଁ ଅକର୍ଷଣ ଶକ୍ତି ଅଛି, ସେହି ଶକ୍ତିଦ୍ୱାରା ଶୂନ୍ୟମାର୍ଗରେ ନିକ୍ଷିପ୍ତ ଗୁରୁ ବସ୍ତୁ ପୁନଃ ପୃଥିବୀ ଅଭିମୁଖେ ଆକୃଷ୍ଟ ହୁଏ । କେହି କେହି ମନେକରନ୍ତି ଆକାଶରୁ ପଦାର୍ଥ ପ୍ରତ୍ୟାବର୍ତ୍ତିତ ହେବା ଉକ୍ତ ପଦାର୍ଥର ପତନଶୀଳ ଗୁଣ, କିନ୍ତୁ ପୃଥିବୀର କେନ୍ଦ୍ର ସ୍ଥାନ ପ୍ରକୃତରେ ପାର୍ଥିବାକର୍ଷଣର ମୂଳ, ଏହାହିଁ ମାଧ୍ୟାକର୍ଷଣ ନାମେ ଅଭିହିତ । ସକଳ ଗ୍ରହ ପରସ୍ପର ଆକର୍ଷଣରେ ଆବଦ୍ଧ ରହି

ନିରନ୍ତର ସ୍ୱ ସ୍ୱ କକ୍ଷରେ ବିଚରଣ କରୁଅଛନ୍ତି । ମାଧ୍ୟାକର୍ଷଣ ନିର୍ଦ୍ଦିଷ୍ଟ ନିୟମାନୁଯାୟୀ କାର୍ଯ୍ୟକାରୀ ଶକ୍ତି ବିଶେଷଦ୍ୱାରା ପ୍ରବର୍ତ୍ତିତ ହୁଏ । ଏହି ଶକ୍ତି ଜଡ଼ ବା ଚେତନ ତାହା ବିବେଚନା ସାପେକ୍ଷ ।

ଜାଗତିକ ସମସ୍ତ ପଦାର୍ଥ ଯେପରି ସ୍ୱ ସ୍ୱ କେନ୍ଦ୍ର ଅଭିମୁଖେ ସରଳ ରେଖାରେ ଆକୃଷ୍ଟ ହୁଏ, ସେହିପରି ସକଳ ପାର୍ଥିବ ପଦାର୍ଥ କୈନ୍ଦ୍ରିକ ଆକର୍ଷଣ ଶକ୍ତି ଦ୍ୱାରା ଭୂକେନ୍ଦ୍ର ଦିଗକୁ ଆକୃଷ୍ଟ ହୁଏ । ବାୟୁ ସ୍ତରର ଭିନ୍ନତା ଯୋଗୁଁ, ଭୂପୃଷ୍ଠର ସ୍ଥାନ ବିଶେଷରେ ଏବଂ ଭୂପଞ୍ଜରର ତାରତମ୍ୟ ଅନୁସାରେ ଏହି ଆକର୍ଷଣୀ ଶକ୍ତିରେ ମଧ୍ୟ କେତେ ପାର୍ଥକ୍ୟ ଘଟିଥାଏ ।

ନକ୍ଷତ୍ରାଦିର ଗତି ଲକ୍ଷ୍ୟ କରି ବୈଜ୍ଞାନିକମାନେ ସିଦ୍ଧାନ୍ତ କରିଅଛନ୍ତି ଯେ, ପ୍ରତ୍ୟେକ ଗ୍ରହ ସ୍ୱ ସ୍ୱ ଦୂରତ୍ୱର ବ୍ୟବଧାନାନୁସାରେ ସୂର୍ଯ୍ୟର କେନ୍ଦ୍ରାଭିମୁଖେ ଆକୃଷ୍ଟ ହୁଅନ୍ତି । ଆମ୍ଭେ ଦେଖିବାକୁ ପାଉଁ ଏକ ନିୟମ ଓ ଶକ୍ତିବଶତଃ ଉପଗ୍ରହମଣ୍ଡଳୀ ମଧ୍ୟ ସ୍ୱ ସ୍ୱ ମୁଖ୍ୟ ଗ୍ରହ ପାର୍ଶ୍ୱେ ପରସ୍ପର ଆକର୍ଷଣରେ ଆବଦ୍ଧ ରହି ସ୍ୱ ସ୍ୱ କକ୍ଷପଥେ ବିଚରଣ କରୁଛନ୍ତି । ବୈଜ୍ଞାନିକ ପ୍ରବର ନିଉଟନ୍ ଜାଗତିକ ବସ୍ତୁଦ୍ୱୟର ପରସ୍ପର ଆକର୍ଷଣ ଶକ୍ତି ନିରୂପଣ କରି ସାଧାରଣରେ ଯେଉଁ ନିୟମ ବିଧିବଦ୍ଧ କରିଯାଇ ଅଛନ୍ତି ବର୍ତ୍ତମାନ ଯୁଗରେ ଅନ୍ୟ ବୈଜ୍ଞାନିକଦ୍ୱାରା ତାହା ଭିନ୍ନ ରୂପେ ପ୍ରତିପାଦିତ ହେଲେ ସୁଦ୍ଧା ସାଧାରଣତଃ ଏକମାତ୍ର ସତ୍ୟ ବୋଲି ଗୃହୀତ ହୋଇଅଛି । ସେ ନକ୍ଷତ୍ରମାନଙ୍କର ଗତି ବିଶେଷ ରୂପେ ପର୍ଯ୍ୟବେକ୍ଷଣ କରି ଲେଖିଯାଇ ଅଛନ୍ତି ଯେ, Any two masses in the universe attract each other with a force proportion to their masses anf varies according to the inverse square of the distance. ଏହା ସମ୍ପ୍ରତି ବୈଜ୍ଞାନିକ ଜଗତରେ "The law of universal gravitation between two masses" ନାମେ ପରିଚିତ ।

ଭାରତୀୟ ଭୂଗୋଳବିଦ୍ ପଣ୍ଡିତଗଣ ଗ୍ରାମ, ନଗର, ନଦୀ ପର୍ବତାଦିର ସଂସ୍ଥାନ ନିର୍ଣ୍ଣୟରେ ବଡ଼ ଅସତର୍କ ଥିଲେ କିନ୍ତୁ ଭୂଗୋଳ ସଂକ୍ରାନ୍ତ ଗଣିତ ଶାସ୍ତ୍ରରେ ଏମାନେ ଯେପରି ପାରଦର୍ଶିତା ଲାଭ କରିଥିଲେ ତା'ର ତୁଳନାରେ ଏହା କିଛି ନୁହେଁ । ପୁରାଣାଦିରେ ଏ ବିଷୟେ ଯାହାକିଛି ନିଦର୍ଶନ ମିଳେ, କାଳର ପରିବର୍ତ୍ତନଶୀଳ ସର୍ବଗ୍ରାସୀ ନିୟମରେ ସେ ସକଳ ବିଲୁପ୍ତ ବା ନାମାନ୍ତରିତ ହୋଇଯାଇଅଛି । ସୁତରାଂ ସେହି ବିଷୟ ତ୍ୟାଗ କରି ଗୋଳ ବିଜ୍ଞାନର ଉପଯୋଗୀ ସ୍ଥଳଗୁଡ଼ିକ ଆଲୋଚନା କରୁଅଛୁ ।

"ଲଙ୍କା ସୁମଧ୍ୟେ ଯମକୋଟିରସ୍ୟାଂ ପ୍ରାକ୍ ପଶ୍ଚିମେ ରୋମକ ପତ୍ତନଂଞ୍ଚ ।
ଅଧସ୍ତତଃ ସିଦ୍ଧପୁରଂ ସୁମେରୁଃ ସୌମ୍ୟେଃଥ ଯାମ୍ୟେ ବଡ଼ବାନଳଶ୍ଚ ।।
କୁବୃତ୍ତି ପାଦାନ୍ତରିତାନି ତାନି ସ୍ଥାନାନି ଷଡ଼ଗୋଳ ବିଦୋ ବଦନ୍ତି ।
ଲଙ୍କାପୁରେଃର୍କସ୍ୟ ଯଦୋଦୟଃସ୍ୟାତ୍ ତଦା ଦିନାର୍ଦ୍ଧଂ ଯମକୋଟି ପୁର୍ଯ୍ୟାଂ ।।
ଅଧସ୍ତଦା ସିଦ୍ଧପୁରେଃସ୍ତକାଳଃସ୍ୟାଦ୍ରୋମକେ ରାତ୍ରିଦଳଂତଦୈବ" (ଗୋଳାଧ୍ୟାୟ)

ଭୂମଣ୍ଡଳର ମଧ୍ୟସ୍ଥଳେ ଲଙ୍କା, ପୂର୍ବରେ ଯମକୋଟି, ପଶ୍ଚିମରେ ରୋମକ ପତ୍ତନ, ଅଧଃସ୍ଥଳେ ସିଦ୍ଧପୁର, ଉତ୍ତରରେ ସୁମେରୁ, ଦକ୍ଷିଣରେ ବଡ଼ବାନଳ (କୁମେରୁ) ବିଦ୍ୟମାନ । ଗୋଳବିଦ୍ ପଣ୍ଡିତଗଣ ଉକ୍ତ ଛଟି ସ୍ଥାନକୁ ଭୂପରିଧିର ପାଦାନ୍ତରୀତ ଅର୍ଥାତ୍ ଚତୁର୍ଥାଂଶ ସମାନାନ୍ତରିତ ରୂପେ ସ୍ଥିତ ବୋଲି ସ୍ଥିର କରିଅଛନ୍ତି ।

ଲଙ୍କାପୁରରେ ଯେଉଁ ସମୟରେ ସୂର୍ଯ୍ୟୋଦୟ ହୁଏ, ସେହି ସମୟରେ ଯମ କୋଟିରେ ଦିବା ଦୁଇପ୍ରହର, ସିଦ୍ଧପୁରରେ ଅସ୍ତକାଳେ, ରୋମକ ପତ୍ତନରେ ଦ୍ୱିପ୍ରହର ରାତ୍ରି ହୋଇଥାଏ । ଧ୍ରୁବୋନ୍ନତି ଓ ଅକ୍ଷଛାୟାର ଅଭାବ ଦ୍ୱାରା ଭୂଗୋଳର ମଧ୍ୟସ୍ଥଳ ଜଣାଯାଏ ।

ତେଷାମୁପରି ଗୋ ଯାତି ବିଷୁବସ୍ଥୋ ଦିବାକରଃ
ନତାସ୍ତୁ ବିଷୁବଛାୟା ନାକ୍ଷସ୍ୟୋନ୍ନତିରିଷ୍ୟତେ । (ସୂର୍ଯ୍ୟସିଦ୍ଧାନ୍ତ)

ଦିବାକର ବିଷୁବ ବୃତ୍ତସ୍ଥ ହୋଇ ପ୍ରାଗୁକ୍ତ ଲଙ୍କା ପ୍ରଭୃତି ପୁର ଚତୁଷ୍ଟୟର ଉପରେ ଗମନ କରେ । ଏହେତୁ ସେ ସକଳ ସ୍ଥାନରେ ଅକ୍ଷଛାୟା ଓ ଅକ୍ଷାଂଶ ରୂପ ଧ୍ରୁବୋନ୍ନତି ନାହିଁ । ଜାଣିବା ଆବଶ୍ୟକ ଯେ ଅକ୍ଷଛାୟା ଓ ଧ୍ରୁବୋନ୍ନତି ରହିତ ଭୂଗୋଳକର ମଧ୍ୟବର୍ତ୍ତୀ ପୂର୍ବ ପର ବୃତ୍ତର ନାମ ନିରକ୍ଷବୃତ୍ତ । ଯେଉଁ ଦିନରେ ଦିବାରାତ୍ରି ସମାନ ହୁଏ,ସେହିଦିନ ସୂର୍ଯ୍ୟ ଏହି ବୃତ୍ତର ଉପରେ ଭ୍ରମଣ କରନ୍ତି । ଏହେତୁ ତାହାର ନାମ ବିଷୁବ ବୃତ୍ତ । ଏହି ବୃତ୍ତ ନିରକ୍ଷବୃତ୍ତରୁ ବାସ୍ତବତଃ ଅଭିନ୍ନ ଅଟେ ।

''ମେରୋରୁଭୟତୋ ମଧ୍ୟେ ଧ୍ରୁବତାରେ ନଭସ୍ଥିତେ,
ନିରକ୍ଷଦେଶସଂସ୍ଥାନାମୁଭୟେ କ୍ଷିତିଜାଶ୍ରୟେ ।
ଅତୋନାକ୍ଷୋଚ୍ଛ୍ରୟସ୍ତାସୁ ଧ୍ରୁବୟୋଃ କ୍ଷିତିଜାଶ୍ରୟୋଃ,
ନବତିର୍ଲମ୍ବକାଂଶସ୍ତୁ ମେରାବକ୍ଷାଂଶକାସ୍ତଥା'' । (ସୂର୍ଯ୍ୟସିଦ୍ଧାନ୍ତ)

ଦକ୍ଷିଣ ଓ ଉତ୍ତରମେରୁର ଆକାଶୋପରି ଦୁଇଗୋଟି ଧ୍ରୁବତାରା ଅଛନ୍ତି, ନିରକ୍ଷ ଦେଶସ୍ଥ ବ୍ୟକ୍ତି ଏତଦୁଭୟକୁ କ୍ଷିତିଜ ବୃତ୍ତ ସହିତ ସଂଲଗ୍ନ ଦେଖନ୍ତି, ଏହିହେତୁ ପୁର ଚତୁଷ୍ଟୟର ଧ୍ରୁବୋନ୍ନତି ନାହିଁ । ପ୍ରାଚୀନ ଜ୍ୟୋତିର୍ବିଦ୍‌ଗଣ ଯେଉଁ ପ୍ରମାଣଦ୍ୱାରା ପୃଥିବୀର ମଧ୍ୟସ୍ଥଳଂ ଗୋଳତ୍ୱ ନିରୂପଣ କରିଅଛନ୍ତି ତାହାହିଁ ପକ୍ଷାନ୍ତରେ ସମଗ୍ର ପୃଥିବୀର ସମ୍ୟକ୍ ଗୋଳତ୍ୱର ପ୍ରଧାନ ଅବଲମ୍ବନ ହୋଇଛି ।

''ନିରକ୍ଷଦେଶେ କ୍ଷିତିମଣ୍ଡଳୀମଗୌ ଧ୍ରୁବୌନରଃ ପଶ୍ୟତି ଦକ୍ଷିଣୋତ୍ତରୌ
ତଦାଶ୍ରିତଂ ଖେ ଜଳଯନ୍ତ୍ରବିତ୍ ଭ୍ରମଭ୍ଭଚକ୍ରଂ ନିଜ ମସ୍ତକୋପରି ।
ଉଦକ୍‌ସ୍ଥିଣଂ ଯାତି ଯଥା ନରସ୍ତଥା ତଥାସ୍ୟାନ୍ନତମୃକ୍ଷମଣ୍ଡଳଂ

ଉଦଗ୍‌ଧ୍ରୁବଂପଶ୍ୟତି ଚୋନ୍ନତଂ କ୍ଷିତେସ୍ତଦନ୍ତରେ ଯୋଜନଜାଂ ପଳାଂଶକାଃ''

(ଗୋଳାଧ୍ୟାୟ)

ନିରକ୍ଷ ଦେଶସ୍ଥ ମନୁଷ୍ୟ ଦକ୍ଷିଣ ଓ ଉତ୍ତରର ଧ୍ରୁବଦ୍ୱୟକୁ କ୍ଷିତିମଣ୍ଡଳସଂଲଗ୍ନ ଏବଂ ନିଜମସ୍ତକୋପରିସ୍ଥିତ ଆକାଶର ଧ୍ରୁବସଂଶ୍ରିତ ରାଶିଚକ୍ରକୁ ଜଳଯନ୍ତ୍ର ପରି ଭ୍ରମଣଶୀଳ ଦେଖେ, ପୁନଶ୍ଚ ପରିଧିଠାରୁ ଯେତେ ଉତ୍ତରକୁ ଗମନ କରୁଥିଲେ ସୁଦ୍ଧା ଏହି ରାଶିଚକ୍ର ତେତେ ଦକ୍ଷିଣକୁ ଅବନତ ଓ ଉତ୍ତର ଧ୍ରୁବ ଉନ୍ନତବତ୍ ଦୃଷ୍ଟିଗୋଚର ହୁଏ । ଆହୁରି ପରିଧିଠାରୁ ଦକ୍ଷିଣ ବା ଉତ୍ତରକୁ ଯେତେଦୂର ଅଗ୍ରସର ହେବ ତେତେ ଦୂରସ୍ଥାନ ଅପସାର ଯୋଜନ ବୋଲି କଥିତ । ଏହି ଅପସାର ଯୋଜନଦ୍ୱାରା ପୃଥୀବ୍ୟାଂଶ ନିରୂପିତ ହୋଇଅଛି । ନିରକ୍ଷ ଦେଶସ୍ଥ ବ୍ୟକ୍ତି ଯେପରି ଧ୍ରୁବଦ୍ୱୟକୁ କ୍ଷିତିଜସଂଲଗ୍ନ ଦେଖେ, ମେରୁପ୍ରଦେଶବାସୀ ମଧ୍ୟ ନକ୍ଷତ୍ରଚକ୍ରକୁ ସେହିପରି ଦେଖିଥାଏ ।

ସୌମ୍ୟଂ ଧ୍ରୁବଂ ମେରୁଗତାଃ ଖ ମଧ୍ୟେ ଯାମ୍ୟଞ୍ଚ ଦୈତ୍ୟା ନିଜମସ୍ତକୋର୍ଦ୍ଧ୍ୱେ
ସବ୍ୟାପସବ୍ୟଂ ଭ୍ରମଦୃକ୍ଷଚକ୍ରଂ ବିଲୋକୟନ୍ତି କ୍ଷିତିଜ ପ୍ରସକ୍ତଂ ।(ଗୋଳାଧ୍ୟାୟ)

## ପାଶ୍ଚାତ୍ୟ ମତ

ପୃଥିବୀର ଆକୃତି ନିରୂପଣ ବୈଜ୍ଞାନିକଗଣର ମହଦୁଦ୍ଦେଶ୍ୟ, ଯେହେତୁ ଏତଦ୍ଦ୍ୱାରା ଜ୍ୟୋତିଃଶାସ୍ତ୍ରର ଅନେକ ତଥ୍ୟ ପରିସ୍ଫୁଟ ହୁଏ ଏବଂ ଭୂଲୋକର ବ୍ୟାସାଂଶକୁ ନେଇ ଦ୍ୟୁଲୋକସ୍ଥିତ ନକ୍ଷତ୍ରାଦିର ଅବସ୍ଥାନ ଓ ଦୂରତ୍ୱ ନିରୂପଣ ସହଜ ହୁଏ; ଦୃଷ୍ଟି ବ୍ୟାପିକାର ମଧ୍ୟସ୍ଥଳରେ ଦଣ୍ଡାୟମାନ ବ୍ୟକ୍ତିକୁ ପୃଥିବୀପୃଷ୍ଠ ଗୋଲାକାର, ସମତଳ ଓ ଶିରୋଦେଶସ୍ଥ ଉଚ୍ଚ ଆକାଶ, କ୍ରମଶଃ ଦିଗ୍‌ବଳୟ ସମ୍ମିଳିତ ବୋଲି ବୋଧହୁଏ । ଉତ୍ତର ବା ଦକ୍ଷିଣମୁଖେ ଗମନ କରିବା ବ୍ୟକ୍ତି ମେରୁଦେଶସ୍ଥ ନକ୍ଷତ୍ରାବଳୀର (Circumplar stars) କ୍ରମୋନ୍ନତି ଓ ଭିନ୍ନ ଦିଗର ଅବନତି ଦେଖିବାକୁ ପାଏ । ସମୁଦ୍ରବକ୍ଷରେ ପୋତ ଗମନ କରୁଥିବାବେଳେ ପୋତରେ ଦଣ୍ଡାୟମାନ ହୋଇ ବହିର୍ଭାଗରେ ଦୃଷ୍ଟି ସଞ୍ଚାଳନ କଲେ ପୃଥିବୀର ଗୋଳତ୍ୱର ପ୍ରମାଣ ମିଳେ ବୋଲି ପୁରାତନ ଜ୍ୟୋତିର୍ବିଦ୍‌ଗଣଙ୍କ ମତ ।

ଆରିଷ୍ଟୋଟଲ୍‌ଙ୍କ ଗ୍ରନ୍ଥରୁ ଜଣାଯାଏ ଯେ, ଗଣିତଜ୍ଞଗଣ ଭୂପରିଧି ଚାରିଲକ୍ଷ ଷ୍ଟାଡ଼ିୟା ବୋଲି ସ୍ଥିର କରିଅଛନ୍ତି । ଏରାଟୋଥେନସ୍ ପୃଥିବୀର ଆକୃତି ନିର୍ଣ୍ଣୟରେ ମନୋଯୋଗୀ ହୋଇ ଆନୁସଙ୍ଗିକ ଯେଉଁ ସକଳ ଜାଗତିକ ବ୍ୟାପାର ଲକ୍ଷ୍ୟ କରିଥିଲେ ତତ୍‌ପନ୍ଥାବଲମ୍ବନେ ବର୍ତ୍ତମାନ ବୈଜ୍ଞାନିଗଣ ପୃଥିବୀର ଗୋଳତ୍ୱ ପ୍ରତିପାଦନରେ ସଫଳକାମ ହୋଇଅଛନ୍ତି । ଇଜିପ୍ଟର ଉତ୍ତରାଂଶବର୍ତ୍ତୀ ସାୟନୀ ନଗରରେ ସେ ସୂର୍ଯ୍ୟଙ୍କୁ ଉତ୍ତର କ୍ରାନ୍ତି (Summer Solstici) ସୀମାବର୍ତ୍ତୀ ଓ ମସ୍ତକୋର୍ଦ୍ଧ୍ୱାଲମ୍ବ ରେଖାସ୍ଥିତ ଦେଖିଲେ ଏବଂ ସେହି ସମୟରେ ସମଦ୍ରାଘିମାରେ ଅବସ୍ଥିତ ଆଲୋକର ଶିରୋବିନ୍ଦୁର ଅନ୍ତର ସାନ୍ଦ୍ରିୟା ନଗରରେ ୭ ୧ ୨ ଓ ଉତ୍ତରର ବ୍ୟବଧାନ ୫୦୦୦ ଷ୍ଟାଡ଼ିୟା ଅନୁମାନ କଲେ । ପରବର୍ତ୍ତୀ ଗଣିତଜ୍ଞ ପୋସିନିୟ୍ ଭିନ୍ନ ପନ୍ଥା ଅବଲମ୍ବନ କରି ସୂର୍ଯ୍ୟ ପରିବର୍ତ୍ତେ ତାରକା ସାହାଯ୍ୟରେ ପୃଥିବୀର ପରିଧି ୨ ଲକ୍ଷ ୪୦ ହଜାର ଷ୍ଟାଡ଼ିୟା ବୋଲି ସ୍ଥିର କଲେ, ଟଲୋମୀ ତଦୀୟ ଭୂବିଦ୍ୟା ବିଷୟକ ଗ୍ରନ୍ଥରେ ପୃଥିବୀ ପରିଧିର ୩୬୦ ଅଂଶର ଏକାଂଶ ୫୦୦ ଷ୍ଟାଡ଼ିୟା ବୋଲି ନିରୂପଣ କଲେ ।

୫୨୮ ଖ୍ରୀଷ୍ଟାବ୍ଦରେ ଆରବୀୟ ଖାଲିଫା ଆଲ୍‌ମାମୁନ୍ ପୃଥିବୀର ଆୟତନ ନିର୍ଦ୍ଧାରଣ କରିବା ସକାଶେ ଦୁଇଦଳ ଜ୍ୟୋତିର୍ବିଦ୍‌ଙ୍କୁ ଉତ୍ତର ଓ ଦକ୍ଷିଣାଭିମୁଖେ ପ୍ରେରଣ କଲେ । ମେସୋପୋଟେମିୟାର ବୃହତ୍‌ନଗରସ୍ଥ ବିଶାଳ ମଇଦାନ ଏହାର କେନ୍ଦ୍ରସ୍ଥଳ ହେଲା । କିନ୍ତୁ ସେମାନେ ବିଶେଷ ପରିଶ୍ରମ କରି ସୁଦ୍ଧା କୃତକାର୍ଯ୍ୟ ହୋଇପାରିଲେନାହିଁ । ପରିଶେଷରେ ଫରାସୀ ଦେଶବାସୀ ଫର୍ଣ୍ଣେଲ୍ (Fernel) ପାରିସ୍ ନଗରୀର ଦ୍ରାଘିମାଂଶର ଉପରେ ପରିଭ୍ରମଣ କଲାବେଳେ ଯାନଚକ୍ରର ଗତିଦ୍ୱାରା ଯେଉଁ ଦୂରତ୍ୱର ପରିମାଣ ସ୍ଥିର କରିଥିଲେ ଅତଃପର ତାହାର ସାହାଯ୍ୟରେ ଜ୍ୟୋତିଷ୍କ ମଣ୍ଡଳର ଆଲୋଚନାରେ ପ୍ରବୃତ୍ତ ହୋଇ ସେ ଅଜ୍ଞାତ ପୃଥିବୀରଏକ (ଡିଗ୍ରୀ) ଅଂଶର ପରିମାଣ ନିରୂପଣ କରିବାକୁ ସମର୍ଥ ହେଲେ ।

୧୬୨୬୭ ଖ୍ରୀଷ୍ଟାବ୍ଦରେ ଲେଡ଼ିନ୍ (Laydon) ନଗରରେ ଭୂବିଦ୍ ସ୍ନେଲୋ (Wsnell) ପୃଥିବୀର ପରିମାଣ ନିର୍ଦ୍ଦେଶରେ ବହୁ ପରିଶ୍ରମ କଲେ । ତଦୀୟ ପରିଶ୍ରମର ଫଳ ୧୭୨୯ ଖ୍ରୀଷ୍ଟାବ୍ଦରେ ମୁସେନ୍‌ବୃକ୍ (Muschenbrook) କର୍ତ୍ତୃକ ପରୀକ୍ଷିତ ହୋଇ ପ୍ରକାଶିତ ହେଲା । ରିଚାର୍ଡ଼ ନରଉଡ୍ ନାମକ ଜନୈକ ବ୍ୟକ୍ତି ୧୬୩୭ ଖ୍ରୀଷ୍ଟାବ୍ଦରେ ପୃଥିବୀର ଆକାର ନିର୍ଣ୍ଣୟାର୍ଥେ ବିପୁଳ ପ୍ରଯତ୍ନ କରିଥିଲେ । ୧୬୩୩ ଖ୍ରୀଷ୍ଟାବ୍ଦରେ ଲଣ୍ଡନ ଦ୍ରାଘିମାର ସୂର୍ଯ୍ୟର ଉଚ୍ଚତା ୬୨°୧° ଓ ୧୬୩୫ ଖ୍ରୀଷ୍ଟାବ୍ଦରେ ଜୁନ୍ ମାସରେ ଇୟର୍କ ଦ୍ରାଘିମାର ଉଚ୍ଚତା (Meridian altitude) ୫୯°୩୫ । ନିରୀକ୍ଷଣ କରି ଉଭୟ ନଗର ଅନ୍ତର୍ବର୍ତ୍ତୀ ଦୂରତା ଅବଲମ୍ବନରେ ସେ ଯେଉଁ ସିଦ୍ଧାନ୍ତରେ ଉପନୀତ ହେଲେ ତଦ୍ଦ୍ୱାରା ଡିଗ୍ରୀର ପରିମାଣ ୩୬୭୧୭୬ ଫୁଟ ହୋଇଥିଲା । ୧୬୬୯ ଖ୍ରୀଷ୍ଟାବ୍ଦରେ ପଣ୍ଡିତବର ପିକାର୍ଡ଼ ଦୂରବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଦ୍ରାଘିମାଂଶ ନିରୂପଣ କରିବାକୁ ସମର୍ଥ ହୋଇଥିଲେ । ଏ ନିବନ୍ଧନରେ ସେ ପାରିସ୍ ନିକଟବର୍ତ୍ତୀ ମେଲଭୋସିନଠାରୁ ଆମିନିନ୍‌କଟସ୍ଥ ସୋର୍ଡ଼ନ୍ନଗର ପର୍ଯ୍ୟନ୍ତଗୋଟିଏ ତ୍ରିକୋଣବ୍ୟାପ୍ତି ସ୍ୱୀକାର କରିଥିଲେ; ଏହାର ପରିମାଣ ୭୬୬୫୦ ଟିଉଜ୍ (Toise) ନିରୂପିତ ହେଲା । ଏହି ଅନୁପାତରେ ଏକ ଡିଗ୍ରୀର ପରିମାଣ ୫୭୦୬୦ ଟିଉଜ୍ ହୁଏ ।

ୟୁରୋପଖଣ୍ଡରେଏତାବତ୍କାଳ ପୃଥିବୀର ପୂର୍ଣ୍ଣ ଗୋଳତ୍ୱ ସ୍ୱୀକୃତ ହୋଇଥିଲା ଏବଂ ଭୂପରିମାଣ ନିର୍ଣ୍ଣୟକରଣେ ଅନ୍ୟ କିଛି ବିଶେଷ ଉପାୟ ଅବଲମ୍ବିତ ହୋଇନାହିଁ ।

ଏହାପରେ ବୈଜ୍ଞାନିକମାନଙ୍କର ନାନା ମତଭେଦ ଉପସ୍ଥିତ ହେବାରୁ ଲଣ୍ଡନରେ ହୁଏ ସ୍ଥଳ ଉପସ୍ଥିତ ହେଲା । ଦଳେ ଦଳେ ବୈଜ୍ଞାନିକ ନାନା ସ୍ଥାନକୁ ପ୍ରେରିତ ହେଲେ, ନାନା ସ୍ଥାନରେ ଏ ସମ୍ବନ୍ଧେ ସଭାସମିତି ହୋଇ ନାନାତର୍କ ଚାଲିଲା । ପରିଶେଷରେ ୧୮୬୦ ଖ୍ରୀଷ୍ଟାବ୍ଦରେ, ଷ୍ଟ୍ରୁବେ, (F.G. Struve) ପ୍ରଣୀତ, Arcdu Meridian ନାମକ ଗ୍ରନ୍ଥ ପ୍ରକାଶିତ ହେଲା, ପୃଥିବୀର ଆକୃତି ନିର୍ଣ୍ଣୟ କରିବାପାଇଁ ଏପରି ବୈଜ୍ଞାନିକ ଗ୍ରନ୍ଥ ଆଉ ଦ୍ୱିତୀୟ ପ୍ରଣୀତ ହୋଇନାହିଁ । ଏଥିଯୋଗୁଁ ସୁଦୂରବର୍ତ୍ତୀ ଅକ୍ଷାଂଶର ପରିମାଣ ପ୍ରାୟଅଭ୍ରାନ୍ତ ରୂପେ ପ୍ରଦତ୍ତ ହୋଇଅଛି ।

ନିଉଟନ୍ ମାଧ୍ୟାକର୍ଷଣ ଓ କେନ୍ଦ୍ର ବିମୁଖୀ ବା କେନ୍ଦ୍ରାତିଗ ଶକ୍ତିକି ମାତ୍ର ପୃଥିବୀର ଆକାର ନିର୍ଣ୍ଣୟରେ ମୂଳାଧାର ବୋଲି ସ୍ଥିର କରିଛନ୍ତି । ସମଭାବେ କୌଣିକ ବେଗେ ଭ୍ରାମ୍ୟମାଣ କୌଣସି ସମଧର୍ମା ତରଳ ପଦାର୍ଥକୁ ଭ୍ରମଣଶୀଳ ଆବର୍ତ୍ତୁଳାଭାସର ତୁଲ୍ୟାକୃତିତ୍ୱ ପ୍ରାପ୍ତି ସ୍ୱୀକାର କରି ନିଉଟନ୍ ତାହାର ମଧ୍ୟ ରେଖାର ପରିମାଣ ୨୩୦ ୨୩୦ ନିରୂପଣ କଲେ; ତତ୍ପରେ ସେ ସ୍ଥାନ ବିଶେଷର ଆକର୍ଷଣ ବୈଲକ୍ଷଣ ଏବଂ ବୃତ୍ତାଭାସତ୍ୱ (Ellipticity) ଓ ଘନତ୍ୱର (Density) ବ୍ୟତିକ୍ରମ ନିରୀକ୍ଷଣ କରି ପୃଥିବୀର ଜଳାଧାରତ୍ୱ ଓ ଗୋଳତ୍ୱ ସମ୍ପାଦନ କଲେ ।

ଏହା ଅବଶ୍ୟ ସ୍ୱୀକାର୍ଯ୍ୟ ଯେ, ଆଦିମ ଅବସ୍ଥାରେ ପୃଥିବୀ ଗୋଟିଏ ବୃହତ୍ତରଳ ପିଣ୍ଡ ଥିଲା; କାଳକ୍ରମେ ଉତ୍ତାପ ନିକ୍ଷେପରେ ଶୀତଳତା ପ୍ରାପ୍ତ ହୋଇ କ୍ରମଶଃ ଏହାର ଉପରିଭାଗ ଦୁଗ୍ଧସର ପରି ଆବରଣ ସଂଘଟିତ ହେଲା ଏବଂ ବିକୃତାଙ୍ଗ ଓ ପର୍ବତାଦି ବିମଣ୍ଡିତ ହୋଇ ବର୍ତ୍ତମାନ କଠିନ (solid) ହୋଇଅଛି ।

ଭୂପୃଷ୍ଠରେ ଇତସ୍ତତଃ ପର୍ବତ, ନଦନଦୀ, ସମୁଦ୍ର, ଦ୍ୱୀପପୁଞ୍ଜ ରହି ଗଣନା କାର୍ଯ୍ୟରେ ବିଶେଷ ବିଘ୍ନ ଘଟାଏ ଏବଂ ପୃଥିବୀର ଯେ ଘୂର୍ଣ୍ଣନଯୋଗ୍ୟ ଗୋଟିଏ ପୃଷ୍ଠ ଅଛି ତାହା ମଧ୍ୟ କଳ୍ପନାତୀତ ହୋଇପଡ଼େ; ତଥାପି ଗଣିତ ବିଦ୍ୟା ସାହାଯ୍ୟରେ ପୃଥିବୀର ଅଣ୍ଡାକୃତିତ୍ୱ ପ୍ରତିପାଦନ ଲାଗି ଗଣିତଜ୍ଞଗଣ ଗୋଟିଏ ଆବର୍ତ୍ତନ ଦଣ୍ଡ (Axis of rotation) ସ୍ୱୀକାର କରିଅଛନ୍ତି । ଭୂପୃଷ୍ଠ ଅକ୍ଷ (Latitude) ଓ ଦ୍ରାଘିମା (Longitude) ରେଖା ବିଲମ୍ବିତ କରି ସ୍ଥାନ ନିର୍ଣ୍ଣୟେ ସଫଳକାମ ହୋଇଛନ୍ତି । ଗୋଳତ୍ୱ ପ୍ରମାଣୀକୃତ ହେଲେ ମଧ୍ୟ ତତ୍ପରେ ପରିମାଣ ନିର୍ଦ୍ଧାରଣରେ ସେମାନଙ୍କର ଯତ୍ନର ଲାଘବତା ଦେଖାଯାଇ ନାହିଁ । ଉତ୍ତରୋତ୍ତର ଗଣନା ସହକାରେ ସେମାନେ ପୃଥିବୀ ପୃଷ୍ଠର ପରିଧି ଏବଂ ବ୍ୟାସାଦି ନିରୂପଣ କରି ଯଶସ୍ୱୀ ହୋଇଅଛନ୍ତି ।

**ପୃଥିବୀର ପରିମାଣ** : ବ୍ରହ୍ମାଣ୍ଡ ପୁରାଣରେ ଉଲ୍ଲେଖ ଅଛି ଯେ, ପୃଥିବୀର ଆୟତନ ପାଞ୍ଚକୋଟି ଯୋଜନ । ମେରୁର ମଧ୍ୟସ୍ଥାନଠାରୁ ପ୍ରତିଦିଗରେ ଏହି ପୃଥିବୀର ଅବାଧ ବିସ୍ତାର ୫୦ ହଜାର ଯୋଜନ; ସପ୍ତଦ୍ୱୀପବତୀ ଏହି ପୃଥିବୀ ମେରୁର ପ୍ରତ୍ୟେକ ଦିଗରେ ତିନିକୋଟି ଏକ ଲକ୍ଷ ସତାଇଶି ଯୋଜନ ବିସ୍ତୀର୍ଣ୍ଣ; ଏହି ବିସ୍ତୃତି ଅପେକ୍ଷା ପୃଥିବୀ ଅଣ୍ଡର ପରିଧି ତ୍ରିଗୁଣ । ତାରକା ସନ୍ନିବେଶ ପରିଧିର ନ୍ୟାୟ ଭୂସନ୍ନିବେଶର ମଧ୍ୟ ମଣ୍ଡଳାକାର ପରିଧି ଜଣାଯାଏ ।

ଉକ୍ତ ଅଣ୍ଡକଟାହାର ମଧ୍ୟରେ ସପ୍ତଦ୍ୱୀପା ପୃଥିବୀ ଅବସ୍ଥିତ, ତଦୁପରି ଯଥାକ୍ରମେ, ଭୂ, ଭୁବ, ସ୍ୱଃ, ମହଃ, ଜନ; ତପଃ ଓ ସତ୍ୟ ନାମେ ଛତ୍ରାକୃତି ମଣ୍ଡଳାକାର ସପ୍ତଲୋକ ଏବଂ ଅଧୋଦେଶେ ସପ୍ତପାତାଳ ଅବସ୍ଥିତ ।

ଏହି ସକଳ ବିଷୟ ଅବଗତ ହେବା ଲାଗି ଭାରତୀୟ ପ୍ରାଚୀନ ଜ୍ୟୋତିର୍ବିଦ୍‌ଗଣଙ୍କ ବ୍ୟବହୃତ ଯନ୍ତ୍ର ମଧ୍ୟରୁ କେତୋଟି ପ୍ରଧାନ ଯନ୍ତ୍ରର ନାମ ଉଦ୍ଧୃତ କଲୁ ।

ଗୋଲୋ ନାଡ଼ୀବଳୟଂ ଯଷ୍ଟିଃ ଶଙ୍କୁର୍ଘଟିଚକ୍ରଂ,
ଚାପଂ ତୁର୍ଯ୍ୟଂ ଫଳକଂ ଧୀରେକଂ ପାରମାର୍ଥିକଂ ଯନ୍ତ୍ରଂ (ଗୋଲାଧ୍ୟାୟ)

ଇଂରାଜୀରେ ମଧ୍ୟ Quadarnt. Sextant. Globe ପ୍ରଭୃତି ଯନ୍ତ୍ର ଆବିଷ୍କାର ହୋଇଅଛି ।

ବୈଜ୍ଞାନିକ ମତେ ସୂର୍ଯ୍ୟଠାରୁ ନେପ୍‌ଚ୍ୟୁନ୍‌ର ବ୍ୟବଧାନ ୨୮୦୦୦୦୦୦୦୦ ମାଇଲ । ଏ ସମ୍ବନ୍ଧେ ଅର୍ଥାତ୍ ସପ୍ତପାତାଳର ବିବରଣ ଜାଣିବାକୁ ହେଲେ ଭାଗବତ ୫ମ ସ୍କନ୍ଧ ୨୪ ଅଧ୍ୟାୟ ଦ୍ରଷ୍ଟବ୍ୟ । ଭାଗବତ, ବ୍ରହ୍ମବୈବର୍ତ୍ତ, ବ୍ରହ୍ମାଣ୍ଡ, ମତ୍ସ୍ୟ ଓ ଗୋଲାଧ୍ୟାୟ ପ୍ରଭୃତି ପୁରାଣରେ ଏହି ଭୂପରିମାଣ ନିରୂପଣରେ ବିଶେଷ ବିଭ୍ରାଟ ଲକ୍ଷିତ ହେଉଅଛି । ବ୍ରହ୍ମଗୁପ୍ତ, ଶ୍ରୀପତିମିଶ୍ର, ଲଲ୍ଲାଚାର୍ଯ୍ୟ ପ୍ରଭୃତିଙ୍କ ଗ୍ରନ୍ଥରେ ପୃଥିବୀର ଆକର୍ଷଣୀ ଶକ୍ତି ଓ ଭୂବାୟୁ ସମ୍ବନ୍ଧେ ବିଚାର କରିଥିବା ଦେଖାଯାଏ ନାହିଁ । ବୋଧହୁଏ ଏହି କାରଣରୁ ସେମାନେ ପୃଥିବୀକି ଅଚଳା କହି ତାହାର ସ୍ଥିରତା ସ୍ୱୀକାର କରିଅଛନ୍ତି । ଅନୁସନ୍ଧିତ୍ସୁ ହୋଇ ଆର୍ଯ୍ୟଭଟ୍ଟ ଏତି ନୂତନ ମତାବିଷ୍କାରରେ ସମର୍ଥ ହେଲେ ଏବଂ ଭାସ୍କରାଚାର୍ଯ୍ୟ ସୁଦ୍ଧା ଏହି ମତକୁ ପରିପୋଷଣ କରି ଅନେକ ପ୍ରାଚୀନ ବିଷୟର ତୀବ୍ର ପ୍ରତିବାଦ କରି ଖଣ୍ଡନ କଲେ ।

ପୁରାଣାଦି ଶାସ୍ତ୍ରମାନଙ୍କରେ ସୂର୍ଯ୍ୟର ମଧ୍ୟକେନ୍ଦ୍ର ମତପୋଷକ,ପ୍ରମାଣ ମିଳେ, (ଭାଗବତ ୫ମ ସ୍କନ୍ଧ ୨୦ ଅଧ୍ୟାୟ) ବୈଜ୍ଞାନିକ ମତେ, ପୃଥିବୀ ସୂର୍ଯ୍ୟକେନ୍ଦ୍ରରୁ ସୌରଜଗତ ଅନ୍ତର୍ଗତ ପଞ୍ଚମ ଗ୍ରହ ରୂପେ ପରିଗଣିତ; ମଙ୍ଗଳ ବୃହସ୍ପତି କକ୍ଷର ମଧ୍ୟବର୍ତ୍ତୀ କ୍ଷୁଦ୍ର ତାରକାଗଣଙ୍କ (Asteroid) ମଧ୍ୟରେ ଅବସ୍ଥିତ । ଏହାର ଆକୃତି ସର୍ବାପେକ୍ଷା ବୃହତ୍ । ବିଷୁବ ବୃତ୍ତରେ ଭୂମଣ୍ଡଳର ବ୍ୟାସ ୭୯୨୬ ମାଇଲ ଏବଂ ମେରୁଦେଶରେ ୬୮୯୮ ମାଇଲ; ପୃଥିବୀର ଆୟତନ ୨୬୧୦୦୦୦ ଲକ୍ଷ ଘନ ମାଇଲ ଓ ଭୂପୃଷ୍ଠ ୧୯୭୩୧୦୦୦୦ ବର୍ଗମାଇଲ ମାତ୍ର; ଜଳାପେକ୍ଷା ଭୂଭାଗ; ୫:୬୭ ଗୁଣ ଗାଢ଼; ସୂର୍ଯ୍ୟ ସହିତ ତୁଳନାରେ ଭୂପିଣ୍ଡର ଆକୃତିର ପରିମାଣ,୦୦୦୦, ୨୦୮୧୭୩ ଏବଂ ସୂର୍ଯ୍ୟଠାରୁ ଭୂମିର ଦୂରତା, ପାଞ୍ଚକୋଟି କ୍ରୋଶ । ଏହି ସୁଦୂର ପଥ ଅତିକ୍ରମ କରି ସୂର୍ଯ୍ୟରଶ୍ମି ଧରାମଣ୍ଡଳରେ ପ୍ରବେଶ କରେ । ସୂର୍ଯ୍ୟ ସମ୍ପୂର୍ଣ୍ଣ ବିକଶିତ ହେଲେ ଏହି ରଶ୍ମିକୁ ପୃଥିବୀପୃଷ୍ଠ ସ୍ପର୍ଶ କରିବା ପାଇଁ ଆଠ ମିନିଟ୍ ତେର ସେକେଣ୍ଡ ଲାଗେ । ପୃଥିବୀ ଗୋଲାକାର କିନ୍ତୁ ମେରୁଦେଶରେ ଉତ୍ତର ଓ ଦକ୍ଷିଣରେ ୧୩ ମାଇଲ ଚେପ୍‌ଟା ।

ଭାସ୍କରାଚାର୍ଯ୍ୟ ପୃଥିବୀର ପରିଧି ଓ ବ୍ୟାସର ଗୁଣନ ଫଳକୁ ଭୂପୃଷ୍ଠର କ୍ଷେତ୍ରଫଳ ବୋଲି ନିର୍ଣ୍ଣୟ କରିଛନ୍ତି । ଯୋଜନ ସଂଖ୍ୟାରେ ପୃଥିବୀର ପରିମାଣ, ୪୯୬୭ । ଭୂୟ-ବ୍ୟାସ ୧୮୫୧ ୩।୨୪ ପୃଷ୍ଠକ୍ଷେତ୍ରଫଳ । ଏହି ବିଷୟରେ ଭାରତୀୟ ଓ ପାଶ୍ଚାତ୍ୟ ଜ୍ୟୋତିର୍ବିଦ୍‌ଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ; ଏହାର କାରଣ ସ୍ଥିର କରିବା ବଡ଼ କଠିନ ବ୍ୟାପାର ।

ଆର୍ଯ୍ୟଭଟ୍ଟ ପୃଥିବୀର ପରିଭ୍ରମଣ ବିଷୟ ସ୍ପଷ୍ଟ ରୂପେ ଲେଖିଅଛନ୍ତି । ସତତ ଭ୍ରାମ୍ୟମାଣ ଏହି ଭୂଗୋଳକର ଭ୍ରମଣ ଗତି କାହିଁକି ସ୍ଥୂଳ ଚକ୍ଷୁରେ ଦେଖାଯାଉ ନାହିଁ, ଏହି ପ୍ରଶ୍ନର ଉତ୍ତରରେ

ସେ ଲେଖିଅଛନ୍ତି ଯେ, ଅନୁଲୋମଗାମୀ ଜଳଯାନସ୍ଥ ବ୍ୟକ୍ତି ଯେପରି ନଦୀତୀରସ୍ଥ ଅଚଳ ପଦାର୍ଥକୁ ବିଲୋମଗାମୀ ଦେଖୁଥାଏ ଏବଂ ଲଙ୍କାର (ବିଷୁବବୃତ୍ତ ପ୍ରଦେଶରେ) ଅଚଳ ନକ୍ଷତ୍ର ସମସ୍ତ ଯେପରି ସମ ପଶ୍ଚିମାଭିମୁଖେ ଗତିଶୀଳ ବୋଧହୁଏ,ସେହିପରି ବିଶାଳ ପୃଥିବୀର ଭ୍ରମଣ କ୍ଷୁଦ୍ରମାନବର ଦୃଷ୍ଟିଗୋଚର ହୁଏନାହିଁ ।

## ପୃଥିବୀର ଗତି

ଆଧୁନିକ ବିଜ୍ଞାନମତେ ଏହି ପୃଥିବୀ ଈଷଦୂନ ୨୪ ଘଣ୍ଟା ମଧ୍ୟରେ ବା ଏକ ନାକ୍ଷତ୍ରିକ ଦିନରେ ଥରେ ଆପଣାର ମେରୁଦଣ୍ଡର ଚତୁର୍ଦ୍ଦିଗରେ ଭ୍ରମଣ କରି ପୁଣି ପୂର୍ବ ସ୍ଥାନରେ ଉପନୀତ ହୁଏ । ଏହାହିଁ ପୃଥିବୀର ଆହ୍ନିକ ଗତି (Diarnal Rotation on its axis) । ଏହି ଆହ୍ନିକ ଗତି ହିଁ ଦିବାରାତ୍ରିର କାରଣ । ଆହ୍ନିକ ଗତିଦ୍ୱାରା ପୃଥିବୀର ଯେତେବେଳେ ଯେଉଁ ଦିଗେ ସୂର୍ଯ୍ୟ ରହନ୍ତି ସେହି ଭାଗେ ଦିନ ଓ ଏହାର ବିପରୀତ ଦିଗରେ ରାତ୍ରି ହୁଏ ।

ଯଦି ପୃଥିବୀ ଆପଣାର ମେରୁଦଣ୍ଡକୁ ଅୟନ ମଣ୍ଡଳର ଉପରେ ରଖି ଠିକ୍ ସଳଖରେ ବୁଲନ୍ତା ତାହାହେଲେ ସକଳ ସମୟରେ ଭୂପୃଷ୍ଠର ସକଳ ସ୍ଥାନରେ ଦିବାରାତ୍ରିର ପରିମାଣ ସମାନ ଦେଖାଯାଆନ୍ତା । ତଦଭାବେ ଦିବାରାତ୍ରିର ହ୍ରାସ ବୃଦ୍ଧି ହୁଏ ।

ଗୋଲାକାର ପୃଥିବୀ ସ୍ଥିର ମେରୁଦଣ୍ଡ ଧରି ଅୟନ ମଣ୍ଡଳରେ ଥିବା ଯୋଗୁଁ ଯେତିକି ସୂର୍ଯ୍ୟାଭିମୁଖୀନ ହୁଏ ଦକ୍ଷିଣମେରୁ ତେତିକି ସୂର୍ଯ୍ୟାଭିମୁଖରୁ ପଶ୍ଚାଦ୍ ପଡ଼ିଥାଏ । ଏହିହେତୁ ବିଷୁବରେଖାର ଉତ୍ତର ଭାଗରେ ଯେତେ ପରିମାଣ ଦିବସର ଦୈର୍ଘ୍ୟ, ଦକ୍ଷିଣ ଭାଗେ ତତୋଽଧିକ ମାତ୍ରାରେ ରାତ୍ରିର ବୃଦ୍ଧିହୁଏ; କେବଳ ବିଷୁବ ବୃତ୍ତସ୍ଥ ପ୍ରଦେଶ ସମୂହରେ ଦିବାରାତ୍ରି ଭାଗ ସମାନ । ଯେତେକାଳ ପୃଥିବୀ ଏ ଅବସ୍ଥାରେ ଭ୍ରମିବ, ସେତେଦିନ ୨୪ ଘଣ୍ଟା ମଧ୍ୟରେ ଥରେ ବୁଲିଗଲେ ଦକ୍ଷିଣ ମେରୁ ସୂର୍ଯ୍ୟାଭିମୁଖୀ ଓ ଉତ୍ତରମେରୁ ସୂର୍ଯ୍ୟର ବିମୁଖୀ ହେବନାହିଁ । ସୁତରାଂ ଦକ୍ଷିଣ ମେରୁରେ ୨୪ ଘଣ୍ଟା ଓ ଉତ୍ତର ମେରୁରେ ୨୪ ଘଣ୍ଟା ସୂର୍ଯ୍ୟମଣ୍ଡଳ ରହିବ । ଅର୍ଥାତ୍ ଦିବସ ରହିବ, ୨୪ ଘଣ୍ଟାରେ ଗୋଟିଏ ଅହୋରାତ୍ର ବା ଦିନ ହେଉଥିବ ।

ଏହିପରି ଭ୍ରମଣଶୀଳ ପୃଥିବୀର ଦକ୍ଷିଣ ମେରୁଠାରୁ ବିଷୁବରେଖାର ମଧ୍ୟବର୍ତ୍ତୀ ଦୂରବର୍ତ୍ତୀ ସ୍ଥାନ ସକଳ ଦୂରତ୍ୱର ପରିମାଣାନୁସାରେ କ୍ରମେ ସୂର୍ଯ୍ୟର ଅଭିମୁଖେ ଉପନୀତ ହୁଏ, ତାହା ଅପେକ୍ଷା ବୃହତ୍ ଅଂଶ ପୃଷ୍ଠଦେଶରେ ରହିଯାଏ । ଏହିହେତୁ ଦିନ ଅପେକ୍ଷା ରାତ୍ରି ଦୀର୍ଘ ହୁଏ । ଏହିପରି ସୂର୍ଯ୍ୟଙ୍କର କର୍କଟ ରାଶିରେ ଅବସ୍ଥାନ ସମୟରେ ଉତ୍ତରମେରୁଦେଶରେ ଛମାସ ଦିନ ଓ ଦକ୍ଷିଣରେ ଛମାସ ରାତ୍ରି ଏବଂ ଦକ୍ଷିଣାୟନରେ ମକର ରାଶିରେ ସୂର୍ଯ୍ୟଙ୍କ ଅବସ୍ଥାନ ସମୟରେ ଦକ୍ଷିଣ ମେରୁରେ ଛମାସ ଦିବା ଓ ଉତ୍ତରରେ ଛମାସ ରାତ୍ରି ହୋଇଥାଏ ।

ନିରକ୍ଷବୃତ୍ତସ୍ଥ ପ୍ରଦେଶରେ ଦିବା ରାତ୍ରି ସମାନ; ଉତ୍ତର ଓ ଦକ୍ଷିଣରେ କ୍ଷୟ ବୃଦ୍ଧି ହୁଏ ।

ସବ୍ୟଂଭ୍ରମତି ଦେବାନାମପସବ୍ୟଂ ସୁରଦ୍ୱିଷାଂ

ଉପରିଷ୍ଟାତ୍ ଭୂଗୋଳୋଃ ଙ୍ଗ ବକ୍ଷୋପଷ୍ଟାନ୍ମୁଖଃ ସଦା ।
ଅତସ୍ତତ୍ରଦିନଂ ତ୍ରିଂଶନ୍ନାଡ଼ିଙ୍କ ଶର୍ବରୀ ତଥା
ହାନିର୍ବୃଦ୍ଧି ସଦା ବ୍ୟାସଂ ସୁରାସୁର ବିଭାଗୟୋଃ ।

ଆହ୍ନିକ ଗତି ଯଦି ପୃଥିବୀର ଏକମାତ୍ର ଗତି ହୁଅନ୍ତା ତେବେ କଦାପି ଦିବା ରାତ୍ରିର ବିପର୍ଯ୍ୟୟ ଘଟନ୍ତା ନାହିଁ । ସୂର୍ଯ୍ୟ ନକ୍ଷତ୍ର ନିକଟକୁ ଉଠିବା ମାତ୍ରେ ତାହାଙ୍କୁ ଆମ୍ଭେ ଚିରକାଳ ସେହି ସ୍ଥାନରେ ହିଁ ଦେଖନ୍ତେ । ପ୍ରତ୍ୟହ ନିଜର ଚାରିଦିଗେ ଗୋଟିଏ ଥର ଭ୍ରମଣକରି ପୃଥିବୀ ବର୍ଷକେ ଥରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରି ଆସେ; ଏହାକୁ ପୃଥିବୀର ବାର୍ଷିକ ଗତି (Revolution on auorlit) କୁହାଯାଏ । ପ୍ରତିଦିନ, ସୂର୍ଯ୍ୟ ଓ ନକ୍ଷତ୍ରାଦିର ସ୍ଥାନ ପରିବର୍ତ୍ତନ ହିଁ ଏହାର ପ୍ରମାଣ; ଆମ୍ଭେ ସୂର୍ଯ୍ୟର ଗତି ପର୍ଯ୍ୟବେକ୍ଷଣ କରି ଜାଣିପାରୁ ଯେ ସୂର୍ଯ୍ୟଦେବ ୧୦ ଚୈତ୍ର (୨୨ ମାର୍ଚ୍ଚ) ମାସରେ ବିଷ୍ଣୁପଦ କ୍ରାନ୍ତି ବୃତ୍ତରେ, (Vernal equinox) ଠିକ୍ ପୂର୍ବରେ ଉଦୟ ହୋଇ ପଶ୍ଚିମେ ଅସ୍ତ ହୁଅନ୍ତି । ଅତଃପର ତିନିମାସ ଉତ୍ତରୋତ୍ତର ଉଚ୍ଚ ହୋଇ ୧୦ ଆଷାଢ଼ (୨୨ ଜୁନ୍)ରେ ସୂର୍ଯ୍ୟଦେବ ଉତ୍ତର କ୍ରାନ୍ତି ସୀମାରୂଢ଼ (Summer Solstici) ହୁଅନ୍ତି । ଏହି ସମୟରେ ସର୍ବାପେକ୍ଷା ଦିବସ ଦୀର୍ଘ ହୁଏ । ପୁଣି ବକ୍ର ଗତିରେ ଫେରି ତିନିମାସ ପରେ ୧୦ ଆଶ୍ୱିନ (୨୨ ସେପ୍ଟେମ୍ବର) ହରିପଦ ବା ତୁଳ କ୍ରାନ୍ତିରେ (Autumnal Equinox) ଦିବାରାତ୍ରି ସମାନ ହୁଏ; ପରେ ସୂର୍ଯ୍ୟ କ୍ରମଶଃ ଦକ୍ଷିଣ ଦିଗେ ଅଗ୍ରସର ହୋଇ ୧୦ ପୌଷ; (୨୪ ଡିସେମ୍ବର) ଦକ୍ଷିଣ କ୍ରାନ୍ତି ସୀମାରେ (Winter Solstici) ଉପସ୍ଥିତ ହୁଏ, ଏହି ଦିନ ସର୍ବାପେକ୍ଷା ଛୋଟ, ଏହିପରି ଉତ୍ତର ପ୍ରାନ୍ତଠାରୁ ଆରମ୍ଭ କରି ପୁଣି ଫେରିବାକୁ ସୂର୍ଯ୍ୟଙ୍କୁ ଏକବର୍ଷ ଲାଗେ । ସୂର୍ଯ୍ୟଙ୍କର ଏହି ପ୍ରତ୍ୟେକ ଗତିଦ୍ୱାରା ଆକାଶରେ ଯେଉଁ ବୃତ୍ତାଭାସ ଅଙ୍କିତ ହୁଏ ତାହାକୁ ରାଶିଚକ୍ର ବା ଅୟନ ମଣ୍ଡଳ କୁହାଯାଏ ।

ପୃଥିବୀର ଉଭୟ ମେରୁବର୍ତ୍ତୀ ତାରକା ବ୍ୟତୀତ ଅନ୍ୟ ସକଳ ତାରକାରେ ସୂର୍ଯ୍ୟର ପରିଭ୍ରମଣ ସଙ୍ଗେ ସଙ୍ଗେ ଏହି ରୂପ ପରିଦୃଶ୍ୟମାନ ଗତିହୁଏ ।

ମେରୁଦ୍ୱୟର ଉପରିସ୍ଥ ଆକାଶରେ ଯେଉଁ ସକଳ ତାରକା ଅଛନ୍ତି ସେମାନେ କେବେ ଅଦୃଶ୍ୟ ହୁଅନ୍ତି ନାହିଁ, କାରଣ ପୃଥିବୀ ନିଜ ଅୟନ ମଣ୍ଡଳ ଉପରେ ୨୩ ଡିଗ୍ରୀ ୨୮ ମିନିଟ ଅବସ୍ଥାନ କରେ । ଏହିପରି ଚିରକାଳ ସମାନ ଭାବରେ ରହିଅଛି ।

ଆହ୍ନିକ ଓ ବାର୍ଷିକ ଗତି ବ୍ୟତୀତ ପୃଥିବୀର ଅନ୍ୟ ଦୁଇପ୍ରକାର ଗତି ଅଛି । ଗୋଟିଏ କ୍ରାନ୍ତିପାତର ବକ୍ରଗତି, ଅନ୍ୟଟି ମେରୁର ଲକ୍ଷ ପରିବର୍ତ୍ତନ ଗତି । ଏହି ଉଭୟର ପ୍ରକୃତି ଏତେ ଜଟିଳ ଯେ ଗଣିତଜ୍ଞାନ ବିନା ସହଜେ ବୋଧହୁଏ ନାହିଁ । ଅତଏବ ସଂକ୍ଷେପରେ ତାହାର ଆଭାସ ଦିଆଗଲା ।

ପୃଥିବୀର ମେରୁପ୍ରଦେଶ ଅପେକ୍ଷା ବିଷୁବବୃତ୍ତସ୍ଥ ପଦାର୍ଥ ସମଷ୍ଟି (Eqatorial protuberance) ଅଧିକ । ସୁତରାଂ ମେରୁପ୍ରଦେଶ ଅପେକ୍ଷା ବିଷୁବ ବୃତ୍ତସ୍ଥ ସ୍ଥାନରେ ଚନ୍ଦ୍ର ସୂର୍ଯ୍ୟର ପ୍ରଭାବ ଅଧିକ । ଆକର୍ଷଣର ଏତାଦୃଶ ବୈଷମ୍ୟ ହେତୁ କ୍ରାନ୍ତିପାତ କ୍ରମାନ୍ୱୟରେ ପଛକୁ ପଡ଼ିଯାଏ । ଚନ୍ଦ୍ର ସୂର୍ଯ୍ୟର ଆକର୍ଷଣ ପ୍ରଭାବରୁ ଯେପରି କ୍ରାନ୍ତିପାତର ବକ୍ରଗତି ସମ୍ପାଦିତ ହୁଏ ସେହିପରି ଗ୍ରହଗହଣର ସମବେତ ଆକର୍ଷଣରେ ପୃଥିବୀର ଅନ୍ୟ ଏକ ଅଗ୍ରଗତି ଉତ୍ପନ୍ନ ହୁଏ । ଏହି ଉଭୟ ଗତିର କାର୍ଯ୍ୟ ଫଳରେ ପ୍ରତି ବତ୍ସର କ୍ରାନ୍ତିପାତ ୫୦.୧୦ ସେକେଣ୍ଡ ପଛକୁ ଘୁଞ୍ଚିଯାଏ । ଅର୍ଥାତ୍ ୫୦.୧୦ ସେକେଣ୍ଡ ଅଗ୍ରେ ସମ୍ପନ୍ନ ହୁଏ ।

ପୃଥିବୀର ବିଷୁବରେଖା (Equator) ଓ ଅୟନମଣ୍ଡଳର (Ecliptic) ସଂଯୋଗ ସ୍ଥଳକୁ କ୍ରାନ୍ତିପାତ କୁହାଯାଏ । ବିଷୁବରେଖାର ଏକ ଏକ ବିନ୍ଦୁ ସରିଯାଇ ତାହା କ୍ରମଶଃ ଯେତିକି ପୂର୍ବସ୍ଥିତ ବିନ୍ଦୁ ଦିଗକୁ ଗତିକରେ ତେତିକି ନକ୍ଷତ୍ର ରାଶିରେ ସୂର୍ଯ୍ୟର ଉଦୟ କାଳ ପ୍ରଭେଦ ଓ ଋତୁ ବୈଷମ୍ୟ ପରିଲକ୍ଷିତ ହୁଏ; ଗୋଟିଏ ନକ୍ଷତ୍ରରୁ ଆରମ୍ଭ କରି ଉକ୍ତ ନକ୍ଷତ୍ର ଯାଏ ଘୂରି ଆସିବାକୁ ପୃଥିବୀକୁ ଯେତେ ସମୟ ଲାଗେ ସେହି ସମୟକୁ ନକ୍ଷତ୍ର ବତ୍ସର (Sidereal year) ବୋଲାଯାଏ । ସୂର୍ଯ୍ୟ କୃତ୍ତିକା ନକ୍ଷତ୍ରରେ ଉଦୟ ହୋଇ ପୁନର୍ବାର କୃତ୍ତିକା ନକ୍ଷତ୍ରକୁ ଫେରି ଆସିଲେ ଏକବତ୍ସର ପୂର୍ଣ୍ଣ ହୁଏ ।

ଏକ କ୍ରାନ୍ତିପାତଠାରୁ ଆରମ୍ଭ କରି ପୁଣି ସେହି କ୍ରାନ୍ତିପାତକୁ ଫେରି ଆସିବାକୁ ଯେଉଁ ସମୟ ଲାଗେ ସେହି ସମୟକୁ ଏକ ସୌରବତ୍ସର (Tropical) ବୋଲାଯାଏ । ସୌରବତ୍ସ ନବବହ ଉପ୍ରଗକାରୀ।ର ନକ୍ଷତ୍ରବତ୍ସର ଅପେକ୍ଷା ୨୦ ମିନିଟ ୨୦ ସେକେଣ୍ଡ ପୂର୍ବରୁ ପୂର୍ଣ୍ଣ ହୁଏ । ବିଷୁବରେଖାର ଗୋଟିଏ ବିନ୍ଦୁରେ ଚିରକାଳ କ୍ରାନ୍ତିପାତ ହୁଏନାହିଁ । ପର୍ଯ୍ୟାୟକ୍ରମେ ବିଷୁବରେଖାର ପ୍ରତ୍ୟେକ ବିନ୍ଦୁ ପୃଥିବୀ ବକ୍ଷରୁ ବିଛିନ୍ନ ହୋଇ ପଡ଼ୁଅଛି । ବର୍ତ୍ତମାନ ପୃଥିବୀ ଯେତେଦୂର ଭ୍ରମଣ କରି କ୍ରାନ୍ତିପାତରେ ଉପସ୍ଥିତ ହେଉଛି, ଗୋଟିଏ ବିନ୍ଦୁରେ ଚିରକାଳ କ୍ରାନ୍ତିପାତ ହେଲେଏ ପୃଥିବୀ ତଦପେକ୍ଷା ଅଳ୍ପ ଦୂର ଭ୍ରମଣ କରି କ୍ରାନ୍ତିପାତକୁ ପ୍ରତ୍ୟାବୃତ ହୁଅନ୍ତା । ବାସନ୍ତିକ ସମରାତ୍ରି ଦିନ (Vernal Equinox)ଠାରୁ ସୌରବତ୍ସର ଗଣନା କରାଯାଏ ।

ସୌର ବତ୍ସରର ନ୍ୟୂନତା ଋତୁ ପରିବର୍ତ୍ତନର ମୂଳ କାରଣ; ଏବଂ ବର୍ତ୍ତମାନ ବୈଷମ୍ୟର ପ୍ରଧାନ ହେତୁ । ଆର୍ଯ୍ୟମାନେ ନକ୍ଷତ୍ରବତ୍ସର ଏବଂ ୟୁରୋପୀୟମାନେ ସୌରବତ୍ସର ଗଣନା କରନ୍ତି । ୟୁରୋପୀୟ ଗଣନାରେ ମାସ ଓ ଋତୁ ପ୍ରାୟ ନିୟମିତ ଏବଂ ସ୍ଥିର ରହେ । କିନ୍ତୁ ଆର୍ଯ୍ୟମାନଙ୍କର ନକ୍ଷତ୍ରବତ୍ସର ଗଣନାରେ ପ୍ରତି ବତ୍ସର ସମରାତ୍ରି ଦିବା ୨୦ ମିନିଟ ୨୦ ସେକେଣ୍ଡ ଆଗକୁ ହୋଇ ଅନେକ ବର୍ଷ ପରେ କ୍ରମେ ଋତୁ କାଳର ପରିବର୍ତ୍ତନ ଘଟିଥାଏ ।

ପୂର୍ବେ ଯେଉଁ ସମୟରେ ଋତୁରାଜ ବସନ୍ତର ଆବିର୍ଭାବ ହେଉଥିଲା, ସମ୍ପ୍ରତି ସେହି ସମୟରେ ପ୍ରଚଣ୍ଡ ଗ୍ରୀଷ୍ମ ଅନୁଭବ ହୁଏ; ଗ୍ରୀଷ୍ମ ସମୟରେ ବର୍ଷା ଦେଖାଦିଏ; ଏହିପରି ପ୍ରାୟ ଗୋଟିଏ ଦୁଇଟି ଋତୁରେ ବିଶେଷ ବୈଲକ୍ଷଣ୍ୟ ପରିଲକ୍ଷିତ ହୁଏ ।

ପୂର୍ବେ ଯେତେବେଳେ ବୈଶାଖ ମାସର ପ୍ରଥମ ଦିନରେ ବାସନ୍ତିକ ସମରାତ୍ରି ଦିବା ଘଟୁଥାଏ ସେତେବେଳେ ସେହିଦିନଠାରୁ ଭାରତବାସୀଗଣ ନୂତନ ଦିବସଗଣନା ଆରମ୍ଭ କରିଛନ୍ତି । କିନ୍ତୁ ସମ୍ପ୍ରତି ୨୦ ଚୈତ୍ରରେ ସମରାତ୍ରି ଦିବା ଆରମ୍ଭ ହେଉଅଛି, ସୁତରାଂ ପୁନରାୟ ବୈଶାଖ ମାସର ପ୍ରଥମରେ ସମରାତ୍ରି ଦିବା ଘଟିବାକୁ ପ୍ରାୟ ୨୫୦୦୦ ବତ୍ସର ଲାଗିବ । ପୂର୍ବେ ବାସନ୍ତିକ ସମରାତ୍ରି ଦିବାର ସୂର୍ଯ୍ୟ ମେଷ ରାଶିରେ ଉଦୟ ହେଉଥିଲେ । ଅଧୁନା ସେହି ରାଶିରେ ଉଦୟ ହେଉ ନାହାନ୍ତି ।

## ପୃଥିବୀର ଘନତ୍ୱ

ପୃଥିବୀର ପରିମାଣ ଓ ଗତି ନିରୂପଣ ସମ୍ବନ୍ଧେ ଜ୍ୟୋତିର୍ବିଦ୍‌ଗଣ ଯେପରି ଶ୍ରମସ୍ୱୀକାର କରିଥିଲେ ତାହାର ଘନତା ଓ ଗୁରୁତା (Density and Weight) ସମ୍ବନ୍ଧେ ସୁଦ୍ଧା ସେମାନେ ସେପରି ଯତ୍ନଶୀଳ ଥିଲେ । କୌଣସି ଗୋଟିଏ ପରିମିତ କ୍ଷୁଦ୍ର ବସ୍ତୁର ଆକର୍ଷଣୀ ଶକ୍ତିର ସହିତ ପୃଥିବୀର ଆକର୍ଷଣୀ ଶକ୍ତିର ତୁଳନା କଲେ ଉପରୋକ୍ତ ବିଷୟର ସୁସ୍ପଷ୍ଟ ଆଭାସ ମିଳେ । ଗୋଟିଏ ପର୍ବତ ସ୍ତୂପର ମସ୍ତକ ଦେଶରୁ ତାହାର ନିମ୍ନାବଲମ୍ବିତ ବିଚ୍ୟୁତିର (Deflection of the Plummet from the Vertical position) ଅନୁସରଣ କରି, ବୁଗେଁ, ମାସ୍କଲେନ୍ ପ୍ରଭୃତି ପଣ୍ଡିତଗଣ ପୃଥିବୀର ଗୁରୁତ୍ୱ ନିରୂପଣ କରିବାରେ ସମର୍ଥ ହୋଇଅଛନ୍ତି ।

ସେମାନେ ସ୍ୱ ସ୍ୱ ନିର୍ଦ୍ଦିଷ୍ଟ ପର୍ବତର ଓଳମ ବିଚ୍ୟୁତି ୪ଠାରୁ୫ ପର୍ଯ୍ୟନ୍ତ ଲକ୍ଷ୍ୟକରି ତତତ୍ ପର୍ବତର ଗୁରୁତ୍ୱ ଓ ଘନତ୍ୱ ନିରୂପଣ କରି ସିଦ୍ଧାନ୍ତ କଲେ ଯେ, ପୃଥିବୀ ପିଣ୍ଡର ଓଜନ ଜଳ ଅପେକ୍ଷା ୫ ଗୁଣ ଅଧିକ କିନ୍ତୁ ପର୍ବତର ଯଥାଯଥ ଗୁରୁତ୍ୱ ନିରୂପିତ ହୋଇପାରି ନାହିଁ । ପରୀକ୍ଷାଦ୍ୱାରା କାଭେଣ୍ଡିସ୍ ଓ ମିଷ୍ଟର ଫ୍ରାନ୍‌ସୀସ୍ ବେଲୀ (Mr. Francis Baily) ସୀସକର ଗୁରୁତ୍ୱ ଓ ପୃଥିବୀର ଆକର୍ଷଣୀ ଶକ୍ତିର ତୁଳନାରେ ସ୍ଥିର କରି ଅଛନ୍ତି ଯେ ପୃଥିବୀର ଗୁରୁତା ଜଳ ଅପେକ୍ଷା ୫୬୭ ଅଧିକ ।

ତୃତୀୟତଃ ରାଜଜ୍ୟୋତିର୍ବିଦ୍ ଏଇର୍ (Mr. Airy Astronmer Royal) ୧୬୫୮ ଖ୍ରୀଷ୍ଟାବ୍ଦରେ ଟାଇନ୍ ନଦୀକୂଳରେ ଓ ଈଟନ୍ କୋଇଲା ଖାତରେ ୧୨୬୦ ଫୁଟ ନିମ୍ନତର ପ୍ରଦେଶରେ ଘଡ଼ିର ଦୋଳନଯନ୍ତ୍ରର ଗତି ବିଚ୍ୟୁତି ଲକ୍ଷ୍ୟକରି, ଯେଉଁ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ, ତାହା ପୃଥିବୀର ଗୁରୁତ୍ୱ ନିର୍ଣ୍ଣୟର ଉପଯୋଗୀ । ସେ ଭୂପୃଷ୍ଠ ଓ ଖାତ ନିମ୍ନସ୍ଥ ଦୋଳକର ଦୈନିକ ବ୍ୟବଧାନ ୨$^{୧}/_{୪}$ ସେକେଣ୍ଡ ନିରୀକ୍ଷଣ କରି ସ୍ଥିର କଲେ ଯେ, ଏହି ନିମ୍ନ ପ୍ରଦେଶର ଆକର୍ଷଣ ୧୯୧୯୦୫ ଅଂଶ ଅଧିକ । ଏହି ଅଙ୍କ ଫଳରେ ସେ ପୃଥିବୀର ଗୁରୁତ୍ୱ ଜଳ ଅପେକ୍ଷା ଛ'ଠାରୁ ସାତ ଗୁଣ ପର୍ଯ୍ୟନ୍ତ ଅଧିକ ବୋଲି ନିର୍ଣ୍ଣୟ କରିଛନ୍ତି । କିନ୍ତୁ ନଦୀତୀରରେ ନିମ୍ନତା ଖାତ ପାର୍ଶ୍ୱସ୍ଥ ପର୍ବତାଦିରଆପେକ୍ଷିକ ଗୁରୁତ୍ୱ ଅବଧାରଣ ନକରି ସେ କୌଣସି ସୂକ୍ଷ୍ମ ଫଳ ସ୍ଥିର କରିପାରି ନାହାନ୍ତି ।

## ପୃଥିବୀର ତାପ

ପୃଥିବୀର ବାହାରେ ଓ ଭିତରେ ଉତ୍ତାପ ଅଛି; ଉତ୍ତାପ ଜୀବ ଜଗତର ପ୍ରାଣୋପଯୋଗୀ; ଅନନ୍ତ ଆକାଶର ତେଜରେ; ସୂର୍ଯ୍ୟର ଉଷ୍ଣତା ଓ ବାୟୁର ନିଷ୍ପୀଡ଼ନରେ ଜଗତରେ ଅନ୍ୟ ଏକ ଉତ୍ତାପ ବିକୀର୍ଣ୍ଣ ହେଉଅଛି । ସୂର୍ଯ୍ୟ କିରଣରୁ ଯେଉଁ ତାପର ଉପଲବ୍ଧି ହୁଏ ପୃଥିବୀର ଭ୍ରମଣ ଓ ସୂର୍ଯ୍ୟଠାରୁ ସ୍ଥାନ ବିଶେଷରେ ପୃଥିବୀର ଅବସ୍ଥାନ ଭେଦରେ ତହିଁରୁ ଶୀତ ଗ୍ରୀଷ୍ମାଦି ଘଟିଥାଏ, କିନ୍ତୁ ପୃଥିବୀର ଆଭ୍ୟନ୍ତରୀଣ ତାପ ଏହାଠାରୁ ପୃଥକ୍ ।

ଭୂପୃଷ୍ଠରୁ ଯେତେ ନିମ୍ନକୁ ଯିବ ଦୈନିକ ଉତ୍ତାପର ବ୍ୟତିକ୍ରମ ତେତେ ଅଳ୍ପ ଅନୁଭୂତ ହେବ । ପରିଶେଷରେ ଏପରି ଗୋଟିଏ ସ୍ଥାନ ଆସିବ ଯେ ସେଠାରେ ଆଦୌ ବାହ୍ୟିକ ତାପ ଅନୁଭୂତ ହେବ ନାହିଁ । ଋତୁର ପରିବର୍ତ୍ତନ ଓ ଏହି ସ୍ଥାଥାନର ଉତ୍ତାପର ପରିବର୍ତ୍ତନ ଲକ୍ଷିତ ହୋଇଥାଏ; ଏହି ସ୍ଥାନରୁ ଆହୁରି ନିମ୍ନ ପ୍ରଦେଶକୁ ଅବତରଣ କଲେ ପୁନଶ୍ଚ କ୍ରମଶଃ ତାପ ଅନୁଭୂତ ହୋଇଥାଏ । ପ୍ରତି ୪୦, ୫୦ ଫୁଟ୍ ନିମ୍ନରେ ଫାରେନ୍‌ହିଟ୍‌ର ୧୦ ଅଂଶ ତାପ ବୃଦ୍ଧି ହୁଏ କିମ୍ବା ଏକମାଇଲ ଅବତରଣ କଲେ ପ୍ରାୟ ୧୦୦୦ ଅଂଶ ଉତ୍ତାପ ମିଳେ; ଏପରି ହିସାବରେ ଅତି ନିମ୍ନର ତାପ ଗୃହୀତ ହେଲେ ୫୦ ମାଇଲରୁ ଅଧିକ ନିମ୍ନରେ ୫୦୦୦ ଡିଗ୍ରୀ ତାପର ପ୍ରଭାବ ଉପଲବ୍ଧି ହୋଇଥାଏ । ଏପରି ଉତ୍ତାପ କଳ୍ପନାରୁ ଜଗତର ଉତ୍ପତ୍ତି ପ୍ରାରମ୍ଭରେ ସାର୍ବଜନୀନ ତେଜର ଆବିର୍ଭାବ ମନେହୁଏ । ଏତଦ୍ଦ୍ୱାରା ଅନୁମିତ ହୁଏ ଯେ ଏହିପରି ପ୍ରଚଣ୍ଡ ତାପରେ କୌଣସି ଧାତୁ ଘନ ବା କଠିନ ହୋଇ ରହିପାରିବ ନାହିଁ । ଅବଶ୍ୟ ଦ୍ରବୀଭୂତ ହୋଇଯିବ । ଆଗ୍ନେୟଗିରି ନିଃସୃତ ଧାତବ ତରଳ ପଦାର୍ଥାଦି ଏହାର ନିଦର୍ଶନ । ଏହି ଧାରଣାରୁ ବୈଜ୍ଞାନିକଗଣ ପୃଥିବୀର ଆଦିମ ତରଳାବସ୍ଥା ସ୍ୱୀକାର କରିଅଛନ୍ତି । ପ୍ରଥମରେ ଏହି ଭୂପୃଷ୍ଠ ଦୁଗ୍ଧସର ପରି ସ୍ନିଗ୍ଧ ହୋଇଥିଲା । କେନ୍ଦ୍ରାଗତ ତାପ (Central heat) ସ୍ୱୀକାର କରି କରିୟା ଫୁରିୟାର, ହମ୍ବୋଲଟ ପ୍ରଭୃତି ଭୂତତ୍ତ୍ୱବିଦ୍‌ଗଣ ଅଭିନବ ତତ୍ତ୍ୱ ଆବିଷ୍କାରରେ ସଫଳକାମ ହୋଇଅଛନ୍ତି । ଏହି ଉତ୍ତାପର ପ୍ରଭାବରୁ ପର୍ବତ ପ୍ରଭୃତିର ଉତ୍ପତ୍ତି ଏବଂ ଭୂମିକମ୍ପ ସଂଘଟିତ ହୁଏ । ଅନନ୍ତ କ୍ରୋଡ଼ାବିଷ୍ଟ ବାଷ୍ପରାଶି ଘନୀଭୂତ ହୋଇ କ୍ରମଶଃ ତରଳ ହୋଇଥାଏ; ସେହି ଉତ୍ତପ୍ତ ତରଳ ଜଳରାଶି ଶୀତଳ ହେବାକାଳେ ଦୃଢ଼ ଆବରଣରେ ଆଚ୍ଛାଦିତ ହୁଏ । କ୍ରମେ ତା'ଉପରେ ସ୍ତର ଉପରେ ସ୍ତର ପଡ଼ି ଭୂପଞ୍ଜର ପ୍ରସ୍ତରବତ୍ କଠିନ ହୋଇପଡ଼େ । ଉପରିସ୍ଥ ମୃତ୍ତିକା ରାଶି କାଳକ୍ରମେ ପ୍ରସ୍ତରୀଭୂତ ହେବ, ସେହି ପ୍ରସ୍ତରୀଭୂତ ମୃତ୍‌ପିଣ୍ଡ ଦୂରଭବିଷ୍ୟତ୍‌ରେ ସ୍ଲେଟ୍ ପ୍ରଭୃତି ଘନ ଗ୍ରନ୍ଥିଯୁକ୍ତ ପ୍ରସ୍ତରରେ ପରିଣତ ହେବ; ମୃତ୍ତିକା ଓ ପର୍ବତାଦିର ସୁଗଭୀର ନିମ୍ନସ୍ତରରେ ଦ୍ରବମୟ ପ୍ରସ୍ତର ବା ଧାତବାଦିର ହ୍ରଦ ବା ଜଳସ୍ରୋତ ଦେଖାଯାଏ । ଭୂଗର୍ଭସ୍ଥ ପ୍ରସ୍ତରାସ୍ଥିର ନିଦର୍ଶନରୁ କେତୋଟି ପ୍ରଳୟ ଘଟିଥିବା ଅନୁମାନ କରାଯାଏ । ବୈଜ୍ଞାନିକଗଣ ଭୂତତ୍ତ୍ୱ ଆଲୋଚନାରୁ ଅର୍ଥାତ୍ କେତୋଟି ସ୍ତରର ପର୍ଯ୍ୟାୟ ପରିବର୍ତ୍ତନରେ ଚୂର୍ଣ୍ଣ ବାଲୁକାବତ୍ ମୃତ୍ତିକାରୁ ଦୃଢ଼ ଗ୍ରନ୍ଥିଯୁକ୍ତ ପ୍ରସ୍ତରରେ ପରିଣତ ହେବା ପର୍ଯ୍ୟନ୍ତ ଯେଉଁ ସମୟ ଲାଗେ ଏବଂ ବିଭିନ୍ନ ସ୍ତରର ରୂପାନ୍ତର ପ୍ରାପ୍ତି କେତେ ସମୟରେ

ହୁଏ ତାହାର ବିଶ୍ଳେଷଣଦ୍ୱାରା ଜଗତର ଉତ୍ପତ୍ତି କାଳ ସୂଚନା କରିଅଛନ୍ତି । କିନ୍ତୁ ଏତାଦୃଶ ଆନୁମାନିକ କଳ୍ପନା କେତେଦୂର ସତ୍ୟ ତାହା ସାମାନ୍ୟ ବୁଦ୍ଧିର ଅଗମ୍ୟ ।

## ପୃଥିବୀର ଉତ୍ପତ୍ତି କାଳ

ଆଧୁନିକ ବୈଜ୍ଞାନିକ ଯୁଗରେ କାହିଁକି ପ୍ରାଚୀନ ଯୁଗରେ ସୁଦ୍ଧା ଆର୍ଯ୍ୟଗଣଙ୍କ ମଧ୍ୟରେ ପୃଥିବୀର ବୟସ ନିର୍ଣ୍ଣୟ ପାଇଁ ବିଶେଷ ଆନ୍ଦୋଳନ ଚଳିଅଛି । ବୈଜ୍ଞାନିକ ବା ଜ୍ୟୋତିର୍ବିଦଗଣ ସ୍ୱ ସ୍ୱ ମତାବଲମ୍ବନରେ ଯେପରି ପୃଥିବୀର ଉତ୍ପତ୍ତି କାଳ କଳ୍ପନାରେ ସମର୍ଥ ହୋଇଅଛନ୍ତି ପ୍ରାଚୀନ ଆର୍ଯ୍ୟଗଣ ସେହି ସକଳ ବିଷୟ ଯୋଗବଳେ ବ୍ୟକ୍ତ କରିଅଛନ୍ତି ।

ପୁରାତନ ଆର୍ଯ୍ୟଶାସ୍ତ୍ରାଦିରେ ଜଗତର ଅନନ୍ତ କାଳ ବ୍ୟାପ୍ତିତ୍ୱ ସ୍ୱୀକୃତ ହୋଇଅଛି; ଭଗବାନ୍ ମନୁ "ଆସୀଦିଦଂ ତମୋଭୂତଂ" ପ୍ରଭୃତି ବଚନଦ୍ୱାରା ତାହାର ସୂଚନା ଦେଇଅଛନ୍ତି । କ୍ରମେ ସୂର୍ଯ୍ୟକିରଣ ଯୋଗୁଁ ବାଷ୍ପ ବା ନୀହାରିକାଠାରୁ ପଞ୍ଚମହାଭୂତମୟ ଏହି ଗୋଲାକାର ପିଣ୍ଡର ଉତ୍ପତ୍ତି କିନ୍ତୁ ଏହାର ଉତ୍ପତ୍ତି କେତେକାଳ ହେଲା ତାହା କେହି ନିଶ୍ଚୟ କରି ନାହାନ୍ତି ।

ପୁରାଣରେ ଉଲ୍ଲେଖ ଅଛି ଏବଂ ବୈଜ୍ଞାନିକ ଅନୁସନ୍ଧାନରୁ ଆବିଷ୍କୃତ ହୋଇଅଛି ଯେ, ପୃଥିବୀ ଭିନ୍ନ ଭିନ୍ନ ସମୟରେ ପ୍ରଳୟପ୍ଲାବିତ ହୋଇ ପୁନର୍ବାର ସୃଷ୍ଟି ହୋଇଅଛି । ଏକସପ୍ତତି ଯୁଗ ପରେ ପ୍ରଳୟ ଓ ଗୋଟିଏ ଗୋଟିଏ ମନ୍ୱନ୍ତର ଅର୍ଥାତ୍ ମନୁର ଅବସ୍ଥିତି କାଳ କଳ୍ପିତ ହୁଏ । ସୂର୍ଯ୍ୟ ସିଦ୍ଧାନ୍ତରେ ଉଲ୍ଲେଖ ଅଛି :-

ଯୁଗାନାଂ ସପ୍ତତିସ୍ତୈକା ମନ୍ୱନ୍ତରମିହୋଚ୍ୟତେ<br>
କୃତାବ୍ଦସଂଖ୍ୟା ତସ୍ୟାନ୍ତେ ସନ୍ଧିପ୍ରୋକ୍ତୋ ଜଳପ୍ଲବଃ ।

ମନ୍ୱନ୍ତର କାଳର ସନ୍ଧିର ପ୍ରମାଣ ସତ୍ୟଯୁଗ ତୁଲ୍ୟ; ଏହି ସନ୍ଧି ସମୟରେ ପୃଥିବୀ ଜଳପ୍ଲାବିତ ହୋଇଥିଲା । ଚାକ୍ଷୁଷ ମନ୍ୱନ୍ତରର ମହାପ୍ରଳୟ ପରେ ଏହି ସପ୍ତଦ୍ୱୀପବତୀ ପୃଥିବୀ ବିରାଜିତ । ତାହାହିଁ ପଞ୍ଜିକାର ଗଣନାନୁସାରେ ସପ୍ତମ ବୈବସ୍ୱତ ମନୁର ଆବିର୍ଭାବ କାଳ ଓ ଶ୍ୱେତ ବାରାହକଳ୍ପାଦ୍ୟ ୧୯୭୨୪୯୯୦୦ ଅବ୍ଦ ଗତ ହୋଇଅଛି ଏବଂ ୧୯୫୫୮୮୫୦୦୧ ଅବ୍ଦ ହେଲା ଭୂମି ସୃଷ୍ଟ ହୋଇଅଛି ।

ବିଖ୍ୟାତ ଆଧୁନିକ ଜ୍ୟୋତିର୍ବିଦ୍ ନିଉକୋମ୍ବ ଓ ହଲ୍‌ଡେନ୍ କୃତ ଜ୍ୟୋତିର୍ବିଦ୍ୟା ବିଷୟକ ପୁସ୍ତକରେ ଲିଖିତ ହୋଇଅଛି ଯେ ନୀହାରିକାଠାରୁ (Nebular hyporthesis) ବୈଜ୍ଞାନିକ ଆଲୋଚନାଦ୍ୱାରା ଅଦ୍ୟାପି ପୃଥିବୀର ଉତ୍ପତ୍ତି ସ୍ୱୀକୃତ ହୋଇନାହିଁ । ତଥାପି ପ୍ରକୃତିର ସମ୍ୟକ୍ ପର୍ଯ୍ୟାଲୋଚନାଦ୍ୱାରା (Studies of nature) ଏହି ମାତ୍ର ଦାର୍ଶନିକ ସିଦ୍ଧାନ୍ତ ଗ୍ରାହ୍ୟ ହୋଇଅଛି ।

ଜାଗତିକ ବିସ୍ତୃତି ବ୍ୟାପାରର ଅନୁଶୀଳନରୁ ଦେଖାଯାଏ ଯେ, ଏହି ଧରାମଣ୍ଡଳ ଆତ୍ମରକ୍ଷଣଶୀଳ ଶକ୍ତିବିଶିଷ୍ଟ (Self sustaining) ନୁହେଁ; ଭୌତିକ ଦେହର (Organism)

ନ୍ୟାୟ କୋଟି ଭାବେ କାରଣଦ୍ୱାରା (Laws of action) ପରିଚାଳିତ ଏବଂ କାଳେ ତଦ୍ଦ୍ୱାରା ଏହାର ଲୟ ହୋଇଯିବ । ନିୟୁକାସ୍ସ ପୃଥିବୀର ଉତ୍ପତ୍ତି କାଳ ସ୍ୱୀକାର କରନ୍ତି । କିନ୍ତୁ ଏହାର ପ୍ରକୃତ ଗୁଣନ ଫଳ ମିଳୁନାହିଁ; ତଥାପି ଦୁଇକୋଟି ବର୍ଷରୁ କିଛି ଅଧିକ ବୋଲି ଗ୍ରହଣ କରିଅଛନ୍ତି ।

ତାହାଙ୍କ ମତରେ କାଳେ ସୂର୍ଯ୍ୟ ଏବଂ ତାରକା ପ୍ରଭୃତିର ତେଜ କ୍ଷୟ ହେବ, ଧରା ପୁନର୍ବାର ଘୋର ତମସାଚ୍ଛନ୍ନ, ଏବଂ କଳ୍ପାନ୍ତରେ ନୂତନ ସୃଷ୍ଟି କାର୍ଯ୍ୟ ଆରମ୍ଭ ହେବ ।

## ପୃଥିବୀର ବାୟୁ

ଦୂଷିତ ନହୋଇ ଯେଉଁ ବାୟୁରାଶି ପୃଥିବୀରେ ରହିଅଛି ତାହାର ସେବନରେ ଆମ୍ଭେ ଜୀବନ ଧାରଣ କରୁଁ । ସେହି ବିଶ୍ୱଜୀବନ ବାୟୁ ପ୍ରାଚୀନ ଆର୍ଯ୍ୟଶାସ୍ତ୍ରରେ ଭୂବାୟୁ ନାମରେ ଅଭିହିତ ହୋଇଅଛି ।

ଭାରତବର୍ଷୀୟ ଜ୍ୟୋତିଃଶାସ୍ତ୍ରଜ୍ଞ ପ୍ରାଚୀନ ପଣ୍ଡିତଗଣ ସୁଦ୍ଧା ଭୂପୃଷ୍ଠରୁ ଆକାଶ ପର୍ଯ୍ୟନ୍ତ ସାତଗୋଟି ବିଭିନ୍ନ ବାୟୁସ୍ତର ଅଛି ବୋଲି ସ୍ୱୀକାର କରିଅଛନ୍ତି । ଏହି ବାୟୁର ଅଭାବରେ ଜୀବଜଗତ ପ୍ରାଣ ଧାରଣ କରିପାରନ୍ତା ନାହିଁ ।

ଜଳଚରଗଣ ଯେପରି ସତତ ଜଳରେ ମଗ୍ନ ରହି ଜୀବନ ଧାରଣ କରନ୍ତି ଏବଂ କ୍ଷଣମାତ୍ର ଜଳରୁ ଅନ୍ତର ହେଲେ ସେମାନଙ୍କ ଜୀବନଧାରଣ ସଂଶୟାପନ୍ନ, ସେହିପରି ଆମ୍ଭେମାନେ ସର୍ବଦା ଏହି ଭୂବାୟୁ ମଧ୍ୟରେ ନିମଜ୍ଜିତ ଅଛୁଁ । ଏହି ଜଗତରେ ବାୟୁବିହୀନ ହୋଇ କ୍ଷଣକାଳ କୌଣସି ପ୍ରାଣୀ ପ୍ରାଣଧାରଣ କରି ରହିପାରିବ ନାହିଁ । ବାୟୁ ପ୍ରାଣୀର ପ୍ରାଣ ସ୍ୱରୂପ ।

ଏହି ଭୂବାୟୁ ସପ୍ତପ୍ରକାର, ପୁରାଣାଦି ପରି ଜ୍ୟୋତିଃଶାସ୍ତ୍ରରେ ମଧ୍ୟ ଏହି ସପ୍ତବାୟୁର ନାମ ଉଲ୍ଲେଖ ଅଛି । ଯଥା- ପ୍ରଥମେ ଭୂବାୟୁ, ତାହାପରେ କ୍ରମାନ୍ୱୟରେ ୧ ଆବହ, ୨ ପ୍ରବହ, ୩ ଉଦ୍‌ବହ, ୪ ସଂବହ, ୫ ସୁବହ, ୬ ପରିବହ, ୭ ପରାବହ ଏହିପରି ଗୋଟିକ ପରେ ଗୋଟିଏ ରହିଛନ୍ତି ।

ପୃଥିବୀ ପୃଷ୍ଠଠାରୁ ଦ୍ୱାଦଶ ଯୋଜନ ଊର୍ଦ୍ଧ୍ୱ ପର୍ଯ୍ୟନ୍ତ ଭୂବାୟୁର ସୀମା, ମେଘ ଓ ବିଦ୍ୟୁତ୍ ଏହି ଭୂବାୟୁକୁ ଆଶ୍ରୟ କରି ରହିଅଛନ୍ତି । ଏହି ଭୂବାୟୁ ମଣ୍ଡଳର ଆନୁକୂଲ୍ୟରେ ମେଘ ବୃଷ୍ଟିହୋଇଥାଏ । ଏହି ବାୟୁର ସ୍ପର୍ଶ ବୈଷମ୍ୟରୁ କରକାପାତ ପ୍ରଭୃତି ହୁଏ ।

## ପାଶ୍ଚାତ୍ୟ ଜ୍ୟୋତିଃଶାସ୍ତ୍ର ମତ

ପାଶ୍ଚାତ୍ୟ ଜ୍ୟୋତିର୍ବିଦ ପଣ୍ଡିତଗଣ କହନ୍ତି, ଏହି ଭୂବାୟୁ ପୃଥିବୀର ୫୦ ମାଇଲ ଊର୍ଦ୍ଧ୍ୱ ପର୍ଯ୍ୟନ୍ତ ପରିବ୍ୟାପ୍ତ । ଏହି ପର୍ଯ୍ୟନ୍ତ ପୃଥିବୀର ଆକର୍ଷଣ ସୀମା । ଅତଃପର ଅନ୍ୟ ଗ୍ରହମାନଙ୍କର ଅଧିକାର । ବିଜ୍ଞାନବିଦ୍‌ଗଣ ବ୍ୟୋମଯାନରେ ବିଚରଣ କରି ପରୀକ୍ଷା କରିଅଛନ୍ତି ଯେ, ପୃଥିବୀ ଉପରିସ୍ଥ ଏହି ବିଭିନ୍ନ ବାୟୁସ୍ତର ବିଭିନ୍ନ ରୂପରେ ସ୍ଥୂଳ ଓ ସୂକ୍ଷ୍ମ ବା ଲଘୁ ହୋଇଥାଏ । ଏବଂ ଏହି ବାୟୁ ସତତ ଭିନ୍ନ ଭିନ୍ନ ଦିଗରେ ପ୍ରବହମାନ ବୋଲି ସେମାନଙ୍କ ଅଭିମତ ।

ଏହି ବାୟୁର ଉଚ୍ଚତା ସମ୍ବନ୍ଧେ ୟୁରୋପୀୟମାନଙ୍କ ସଙ୍ଗେ ଭାରତୀୟମାନଙ୍କର ମତ ବୈଷମ୍ୟଥିଲେ ହେଁ ଅଭିନିବେଶପୂର୍ବକ ଦେଖିଲେ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ ।

ଭାରତର ସ୍ଥାନଭେଦରେ ଦ୍ରବ୍ୟାଦି ପରି ଦୂରତ୍ୱ ଆଦି ପରିମାଣ ନିରୂପଣର ସୁଦ୍ଧା ଭେଦ ଦେଖାଯାଏ; ଯଥା-

ଚତୁର୍ହସ୍ତି ଧନୁସ୍ତସ୍ୟ ସହସ୍ରଂ କ୍ରୋଶ ଉଚ୍ୟତେ,
କ୍ରୋଶଦ୍ୱୟନ୍ତୁ ଗବ୍ୟୁତି ତତ୍‌ଦ୍ୱୟଂ ଯୋଜନଂ ବିଦୁଃ ।

ତାହାହେଲେ ପୂର୍ବକଥିତ ଦ୍ୱାଦଶ ଯୋଜନ, ୪୦୦୦ ହାତରେ କ୍ରୋଶ ଧରିନେଲେ, ୪୮ ମାଇଲ ପ୍ରାୟ ୫୦ ମାଇଲ ସମାନ ହେଲା ।

## ପୃଥିବୀର କମ୍ପନ

ଭାରତୀୟ ଆର୍ଯ୍ୟଗଣ ନ୍ୟୂନାଧିକରେ ପୃଥିବୀ ସମ୍ବନ୍ଧୀୟ ସମସ୍ତ ବିଷୟର ଆଲୋଚନା କରିଯାଇ ଅଛନ୍ତି । ସେମାନେ ଭୂମିକମ୍ପର କାରଣ ତାଦୃଶ ସ୍ଥିର ନିରୂପଣ କରି ନଥିଲେ ସୁଦ୍ଧା ଭୂମିକମ୍ପ ହେଲେ ଫଳାଫଳ କ'ଣ ହୁଏ ଅର୍ଥାତ୍ ଶୁଭ ବା ଅଶୁଭ ଘଟେ ତାହାର ବିସ୍ତୃତ ବିବରଣ ଲେଖିଯାଇ ଅଛନ୍ତି । ଏହି ଭୂକମ୍ପର ଆଲୋଚନାରେ ମଧ୍ୟ ବିଶେଷ ମତଭେଦ ଦେଖାଯାଏ ।

ବୃହତ୍ ସଂହିତାରେ ଭୂକମ୍ପର ଲକ୍ଷଣାଦି ସମ୍ବନ୍ଧେ ଲେଖାଯାଇଅଛି ଯେ, ଏହି ଭୂକମ୍ପ ପାତାଳ ଜଳନିବାସୀ ବୃହତ୍ ପ୍ରାଣୀ କର୍ତ୍ତୃକ ଘଟେ । ଅନ୍ୟ ପଣ୍ଡିତଙ୍କ ମତେ ଭୂଭାର ଧାରଣକ୍ଳିଷ୍ଟ ଦିଗ୍‌ଗଜଗଣର ବିଶ୍ରାନ୍ତି ଭୂକମ୍ପର ମୂଳ କାରଣ; ଅନ୍ୟ କେତେକଙ୍କ ମତେ, ବାୟୁ କର୍ତ୍ତୃକ ନିହତ ଓ ପତିତ ହେଲେ ଶବ୍ଦ ସହିତ ଏହା ଘଟିଥାଏ । କେତେକ ନିୟତି ଉପରେ ନିର୍ଭର କରନ୍ତି । ଆଚାର୍ଯ୍ୟଗଣଙ୍କ ପ୍ରଣୀତ ପୁରାଣାଦି ଶାସ୍ତ୍ରରେ ଉଲ୍ଲେଖ ଅଛି ଯେ, ଉଡ୍ଡୀୟମାନ ପର୍ବତ ଭୟରେ ଭୂଦେବୀ ବ୍ରହ୍ମାଙ୍କୁ ଗୁହାରି କଲେ, ବ୍ରହ୍ମା ଇନ୍ଦ୍ରଙ୍କୁ ସେଗୁଡ଼ିକର ପକ୍ଷଛେଦନ ଆଦେଶ ଦେଲେ । ଇନ୍ଦ୍ର ପୃଥିବୀକୁ କହିଲେ ଯେ, ଆଉ ଏଣିକି ତୁମ୍ଭେ ଭୟରେ କମ୍ପିତ ହେବନାହିଁ; କିନ୍ତୁ ଏହି ସଂସାରର କାଳକ୍ରମେ ଶୁଭ ଅଶୁଭ ଜାଣିବା ନିମନ୍ତେ ସମୟେ ସମୟେ ତୁମ୍ଭଙ୍କୁ ବାୟୁ, ଅଗ୍ନି, ଇନ୍ଦ୍ର, ବରୁଣ, ଦିବା ଓ ରାତ୍ରିର ଚାରି ଯାମେ କମ୍ପନ କରିବେ; ଏଥିରେ ଭୂଦେବୀ ତୃପ୍ତ ହେଲେ ।

ତଦବଧି ସତ୍ ଓ ଅସତ୍ ଫଳ ଜ୍ଞାନଲାଗି ଭୂଦେବୀଙ୍କୁ କମ୍ପନ କରନ୍ତି । ତାହାହିଁ ଭୂକମ୍ପ । ଭୂକମ୍ପଜନିତ ଶୁଭାଶୁଭ ଫଳ ନିମ୍ନରେ ଉଦ୍ଧୃତ ହେଲା ।

ପ୍ରଥମେ ଉତ୍ତରାଫାଲ୍‌ଗୁନୀ, ହସ୍ତା, ଚିତ୍ରା, ସ୍ୱାତୀ, ରେବତୀ, ମୃଗଶିରା ଓ ଅଶ୍ୱିନୀ ଏହି ନକ୍ଷତ୍ରଗୁଡ଼ିକ ବାୟବ୍ୟ ମଣ୍ଡଳ; ଏଥିରେ ଭୂକମ୍ପ ହେଲେ ଆକାଶ ଧୂମାବୃତ ହୁଏ । ବାୟୁ ପ୍ରବଳ ବେଗରେ ବହେ; ସୂର୍ଯ୍ୟ ପ୍ରଚ୍ଛନ୍ନ ଭାବେ ପ୍ରକାଶିତ ହୁଅନ୍ତି । ଶସ୍ୟ, ଜଳ, ବନୌଷଧିବର୍ଗର କ୍ଷୟ

ହୁଏ ଏବଂ ବଣିକଗଣ ଶ୍ୱାସ, ଉନ୍ମାଦ, ଜ୍ୱର ଓ କାମଳ ରୋଗରେ ପୀଡ଼ିତ ହୁଅନ୍ତି; ବୈଦ୍ୟଗଣ, ଶସ୍ତ୍ରଧାରୀ, ସୁନ୍ଦର ପୁରୁଷ, ସ୍ତ୍ରୀ, କବି, ଗନ୍ଧର୍ବ ଓ ପଣ୍ୟଶିଳ୍ପୀ ବ୍ୟକ୍ତିଗଣ ପୀଡ଼ିତ, ଏବଂ ସୌରାଷ୍ଟ୍ର, କୁରୁ, ମଗଧ, ଦଶାର୍ଣ୍ଣ ମତ୍ସ୍ୟଦେଶ ବିପଦଗ୍ରସ୍ତ ହୁଏ; ଏହା ବାୟୁକୃତ କମ୍ପନ ।

ପୁଷ୍ୟା, ଆଗ୍ନେୟ, ବିଶାଖା, ଭରଣୀ, ପୌତ୍ର, ଅଜ ଓ ଭାଗ୍ୟ ନାମକ ନକ୍ଷତ୍ରରେ ଆଗ୍ନେୟ ବର୍ଗ ହୁଏ । ଆଗ୍ନେୟବର୍ଗରେ ସାତଦିନ ଆକାଶ ତାରକା ଓ ଉଲ୍କାପାତାବୃତ ଏବଂ ଦିଗ୍‌ଦାହଯୁକ୍ତ ହୋଇ ଇଷଦ୍ଦୀପ୍ତ ଦୃଷ୍ଟ ହୁଏ । ସପ୍ତଶିଖ ବହ୍ନି ମରୁତର ସହାୟ ଲଭି ବିଚରଣ କରନ୍ତି । ଏହି ଆଗ୍ନେୟ ବର୍ଗରେ ଭୂକମ୍ପ ହେଲେ ମେଘକ୍ଷୟ ଜଳାଶୟଶୋଷଣ, ରାଜଦ୍ୱେଷ, ଦଦ୍ରୁ, ବିଚର୍ଚ୍ଚିକା, ଜ୍ୱର ଓ ପାଣ୍ଡୁରୋଗ ହୁଏ ଏବଂ ଅଙ୍ଗ, ବଙ୍ଗ, କଳିଙ୍ଗ, ବାହ୍ଲିକ ଓ ଦ୍ରାବିଡ଼ ଦେଶ ବିପଦଗ୍ରସ୍ତ ହୁଏଏବଂ ଶବରଗଣ ପୀଡ଼ିତ ହୁଅନ୍ତି । ଏହା ଅଗ୍ନିକୃତ କମ୍ପନ ।

ଅଭିଜିତ୍, ଶ୍ରବଣା, ଧନିଷ୍ଠା, ପ୍ରାଜାପାତ୍ୟ, ଐନ୍ଦ୍ର୍ୟ. ବୈଶ୍ୟ ଓ ମୈତ୍ର୍ୟ ଏହି ନକ୍ଷତ୍ରଗୁଡ଼ିକ ଇନ୍ଦ୍ରବର୍ଗ; ଏହି ଇନ୍ଦ୍ରବର୍ଗରେ ଭୂକମ୍ପ ହେଲେ ଅତିଶୟ ବୃଷ୍ଟି, ରାଜାର ନାଶ ଏବଂ ଅତିସାର, ଗଳଗ୍ରହ, ବଦନରୋଗ, ଶ୍ଳେଷ୍ମପ୍ରକୋପ ଓ କାଶ ରୋଗ ହୁଏ । ଯୁଗନ୍ଧର, ପୌରବ, କିରାତ, କୀର, ଅଭିସାର, ହଳ, ମଦ୍ର, ଅର୍ବୁଦ, ସୁବାସ୍ତୁ ଓ ମାଳବଦେଶବାସୀ ପ୍ରପୀଡ଼ିତ ହୁଅନ୍ତି; ଏହା ଇନ୍ଦ୍ରକୃତ କମ୍ପନ ।

ପୌଷ୍ଣ୍ୟ, ଆପ୍ୟ, ଆର୍ଦ୍ରା, ଅଶ୍ଲେଷା, ମୂଳା, ଅହିର୍ବ୍ରଧ୍ନ ଓ ବାରୁଣ ନକ୍ଷତ୍ରରେ ବରୁଣ ବର୍ଗ ହୁଏ; ଏହି ବରୁଣବର୍ଗରେ ଜଳଦପଟଳ ମୂଷଳ ଧାରାରେ ବହୁଳ ଜଳ ବର୍ଷଣ କରେ; ଗୋନର୍ଦ୍ଦ, ଚେଦୀ, କୁକ୍କୁର, କିରାତ ଓ ବିଦେହବାସୀଙ୍କର ଅନିଷ୍ଟ ହୁଏ; ଏହା ବରୁଣକୃତ କମ୍ପନ ।

ବାୟୁ, ବହ୍ନି, ବରୁଣ ଓ ଇନ୍ଦ୍ର ଏହି ଚାରିଜଣଙ୍କଦ୍ୱାରା ଭୂକମ୍ପ ହୋଇଥାଏ, ଭୂକମ୍ପର ଛ'ମାସ ପୂର୍ବରୁ ବିନା ମେଘରେ ବୃଷ୍ଟି,ଅଗ୍ନିର ବିସ୍ଫୁଲିଙ୍ଗଶିଖା, ବନଚରଙ୍କ ଗ୍ରାମ ମଧ୍ୟେ ପ୍ରବେଶ, ରାତ୍ରୀକାଳେ ଇନ୍ଦ୍ରଧନୁ ପ୍ରକାଶ ପ୍ରଭୃତି ପ୍ରକୃତିର ବିପରୀତ ଗତି ପରିଲକ୍ଷିତ ହୁଏ । ଏହି ସକଳ ଅପଶକୁନକୁ ଭୌମୋତ୍ପାତ କୁହାଯାଏ ।

ଉପରୋକ୍ତ ବର୍ଗ ଚତୁଷ୍ଟୟର ପରସ୍ପର ଘାତପ୍ରତିଘାତରେ ଜଗତର ନାନାବିଧ ଅମଙ୍ଗଳ ହୋଇଥାଏ । ଏହି ବିଷୟର ବିସ୍ତୃତ ବିବରଣ ବୃହତ୍ ସଂହିତା ୩୨ ଅଧ୍ୟାୟରେ ଦ୍ରଷ୍ଟବ୍ୟ । ବରାହମିହିର ମଧ୍ୟ ଏସମ୍ବନ୍ଧେ ଯଥେଷ୍ଟ ଆଲୋଚନା କରିଅଛନ୍ତି ।

ଭୂମିକମ୍ପ ସମ୍ବନ୍ଧେ ପୁରାଣ କହେ- ବାସୁକୀ ନିଜ ସହସ୍ର ଫଣାରେ ଭୂମି ଧାରଣ କରିଅଛନ୍ତି । ଯେଉଁ ଫଣାଟି ବିଶ୍ରାମ ନିମନ୍ତେ ଅବନତ କରନ୍ତି ତଦୁପରିସ୍ଥିତ ଭୂମିଖଣ୍ଡ ଟଳମଳ ହୁଏ । ବ୍ୟାସ ମହାମୁନି ଭୂକମ୍ପର କାରଣ ନିର୍ଦ୍ଦେଶ କରିଅଛନ୍ତି- ଗଜ, କଚ୍ଛପ ଓ ପନ୍ନଗଗଣର ପ୍ରଚଳନ ଯୋଗୁଁ ଭୂକମ୍ପ ହୁଏ । ରାଶିବିଶେଷରେ ଭୂକମ୍ପ ସଂଘଟନର ଶୁଭାଶୁଭ ନିମ୍ନରେ ଦିଆଗଲା । ଯଥା :-

'କଳ୍ପେ ମରଣଂ କ୍ଷେୟଂ ମରଣଂ ଚାପି ପନ୍ନଗେ,
ସର୍ବତ୍ର ସୁଖଦଂ ଚୈବ ପୃଥିବ୍ୟାଂ ଚଳିତେ ଗଜେ,''

ଜ୍ୟୋତିଷତନ୍ତ୍ରେ, ଅଦ୍‌ଭୁତ ସାଗରେ, ବିଶେଷ ଭାବରେ ଲେଖାଅଛି ଗ୍ରନ୍ଥ ବାହୁଲ୍ୟ ଭୟରେ ସେ ସକଳ ଉଦ୍ଧୃତ କରିଲାରୁ ନିବୃତ୍ତ ହେଲୁ ।

ଏହି ଭୂକମ୍ପ ସମ୍ବନ୍ଧେ ଆଧୁନିକ ବୈଜ୍ଞାନିକ ଓ ଭୂତତ୍ତ୍ୱବିଦ୍‌ଗଣଙ୍କ ସୁଦ୍ଧା ମତଭେଦ ଦେଖାଯାଏ । ଅନେକେ ଭୂଗର୍ଭ ସ୍ଥାନ ବିଶେଷର ସ୍ୱାଭାବିକ କମ୍ପନ ଭୂକମ୍ପ ବୋଲି ନିର୍ଦ୍ଦେଶ କରନ୍ତି । କେହିକେହି ଆଗ୍ନେୟଗିରିର ସଂସ୍ରବ ଏହାର ମୂଳ କାରଣ ବୋଲି କହନ୍ତି । ଯେଉଁ କାରଣରୁ ଆଗ୍ନେୟଗିରିରୁ ଅଗ୍ନିର ଉତ୍ପତ୍ତି ହୁଏ, ସେହିପରି ଆଭ୍ୟନ୍ତରୀଣ କାରଣରୁ ଭୂକମ୍ପ ଘଟେ ବୋଲି ତାହାଙ୍କ ମତ । ଅନ୍ୟ କେହି କହେ ସୁଗଭୀରସ୍ଥ ଭୂଗର୍ଭ ଉତ୍ତାପରେ ଉତ୍ତପ୍ତ ହେଲେ ଆଣବିକ ସ୍ରୋତ ବା ସ୍ପନ୍ଦନ ଉତ୍ପନ୍ନ ହୋଇ ଭୂମିକି ପ୍ରକମ୍ପିତ କରେ । ଭୂଗର୍ଭର ବହୁ ନିମ୍ନରେ କମ୍ପନଜନିତ ଶିଳାସମୂହର ସଂଘର୍ଷଣରେ ପୃଥିବୀର ଯେଉଁ ସ୍ଥଳ କମ୍ପି ଉଠେ ସେହି ସ୍ଥଳରେ ଅଳ୍ପାଧିକ ପରିମାଣରେ ଭୂକମ୍ପ ଅନୁଭୂତ ହୁଏ । ଅନ୍ୟ ଭୂତତ୍ତ୍ୱବିଦ୍‌ଗଣଙ୍କ ବିଶ୍ୱାସ ଏହି ସଚଳ ପୃଥିବୀରେ ଆଣବିକ ସ୍ରୋତ ନିତ୍ୟ ବହିଯାଉଅଛି; ଉକ୍ତସ୍ରୋତର କ୍ଷୀଣ ସ୍ପନ୍ଦନ ସାଧାରଣତଃ ଇନ୍ଦ୍ରିୟଦ୍ୱାରା ଅନୁଭୂତ ହେବାର ନୁହେଁ, ବୈଜ୍ଞାନିକ ଯନ୍ତ୍ର ସାହାଯ୍ୟରେ ତାହା ସ୍ଥିର ହୋଇ କୁହାଯାଇଅଛି ଯେ ସେହି ସାମାନ୍ୟ ସ୍ପନ୍ଦନ ହିଁ ସମୟରେ ଭୀଷଣ ଭୂକମ୍ପରେ ପରିଣତ ହେଉଅଛି ।

ନାନା ତର୍କବିତର୍କ ପରେ ପରିଶେଷରେ ସ୍ଥିର ହୋଇଅଛି ଯେ, ଭୂଗର୍ଭନିହିତ ସ୍ଥିତି ସ୍ଥାପକ ବାଷ୍ପରାଶି ଆଭ୍ୟନ୍ତରୀଣ ବହୁବ୍ୟାପୀ ତାପର ସାହଚର୍ଯ୍ୟରେ ସଶବ୍ଦେ ବିକ୍ଷିପ୍ତ ହୋଇ ଅନେକ ସମୟରେ ଭୂକମ୍ପ ସୃଷ୍ଟି କରେ ।

ଯାହାହେଉ ଭୂକମ୍ପ ସମୟରେ ଗୋଟିଏ ଖଣ୍ଡ ପ୍ରଳୟର କାଣ୍ଡ ଘଟିଥାଏ । ୧୭୦୩ ଖ୍ରୀଷ୍ଟାବ୍ଦରେ ଜାପାନରେ ଯେଉଁ ଭୂମିକମ୍ପ ହୋଇଥିଲା ତଦ୍ଦ୍ୱାରା ଦୁଇଗୋଟି ସହର ଏବଂ ଦୁଇ ଲକ୍ଷ ଲୋକଙ୍କର ପ୍ରାଣନାଶ ହୋଇଥିବା କଥା ଶୁଣାଯାଏ । ୧୭୩୭ ଖ୍ରୀଷ୍ଟାବ୍ଦ ଅକ୍ଟୋବର ମାସର ରାତ୍ରିକାଳେ ପ୍ରବଳ ଝଞ୍ଜା ସହ ଭୀଷଣ ଭୂକମ୍ପ ଗଙ୍ଗା ସାଗରଠାରୁ ସମସ୍ତ ଗାଙ୍ଗେୟ ଦ୍ୱୀପ ପର୍ଯ୍ୟନ୍ତ ପ୍ରାୟ ୯୦ କ୍ରୋଶ ସ୍ଥାନ ଆଲୋଡ଼ିତ କରିଥିଲା । ସେହି ପ୍ରଚଣ୍ଡ ଭୂକମ୍ପରେ କେବଳ କଲିକତାରୁ ଜାହାଜ ଓ ନୌକା ଡଙ୍ଗା ମିଶି ପ୍ରାୟ ୨୦୦୦୦ ସାଗରଗର୍ଭରେ ବିଲୀନ ହୋଇଯାଇଥିଲା । ଗଙ୍ଗାର ଜଳ ୪୦ ଫୁଟ ଉପରକୁ ଉଠିଯାଇ ପ୍ରାୟ ତିନିଲକ୍ଷ ପ୍ରାଣୀଙ୍କୁ କରାଳ କାଳ ଗ୍ରାସରେ ପକାଇଥିଲା । ଭୀଷଣ ଭୂକମ୍ପରେ ଭୂମି ଫାଟିଯାଇ ରସାତଳ ହୋଇଯାଏ । ସ୍ଥଳ ସକଳ ସମୁଦ୍ରପରି ଜଳପୂର୍ଣ୍ଣ ହୋଇଯାଏ; ଅନେକ ସ୍ଥାନରୁ ଅଗ୍ନି ବାହାରି ନଗର ଜନପଦ ଧ୍ୱଂସ କରିଦିଏ; ଅନେକ ସ୍ଥାନ ସମୁଦ୍ର ଆତ୍ମସାତ୍ କରେ । ୧୬୮୬ ଖ୍ରୀଷ୍ଟାବ୍ଦରେ ଭୂକମ୍ପ ହୋଇ ୪୦ ଦିନ ପର୍ଯ୍ୟନ୍ତ ସମଗ୍ର ଜାପାନକୁ ପ୍ରକମ୍ପିତ କରିଦେଇଥିଲା । ସର୍ବାପେକ୍ଷା ଏସିୟାର ପୂର୍ବାଂଶରେ ଭୂକମ୍ପର ପ୍ରଭାବ ଅଧିକ ।

୧ ୯ ୩୩ ଖ୍ରୀଷ୍ଟାବ୍ଦରେ ଭାରତରେ ଭୟଙ୍କର ଭୂକମ୍ପ ହୋଇଥିଲା; ତାହାରି ଫଳରେ ନେପାଳର 'କାଟ୍‌ମାଣ୍ଡ' ସହର ବିଧ୍ୱସ୍ତ ପ୍ରାୟ; ବିହାରର ମୁଜାଫରପୁର, ମୁଙ୍ଗେର୍ ପ୍ରଭୃତି ସହରର ଦୁରବସ୍ଥା କହିବାର ନୁହେଁ । ଏ ଅଞ୍ଚଳରୁ ପ୍ରାୟ ତିରିଶ ସହସ୍ର ଲୋକ ପ୍ରାଣ ହରାଇଥିଲେ । ଦର୍ଭଙ୍ଗାର ରାଜନଗରୀ ଧ୍ୱଂସ ହୋଇଗଲା । ଭଗବାନଙ୍କ ବିଚିତ୍ର ଲୀଳା, ପ୍ରକୃତିର ଭୀଷଣ ତାଣ୍ଡବ ପ୍ରାଣୀର ଜ୍ଞାନାଗମ୍ୟ । ସ୍ୱାଭିମାନୀ ମାନବ ଚିରକାଳ ଲାଗି ଜଗତରେ ନାନାପ୍ରକାର ଆଶାପାଶ ବିସ୍ତାର କରି ଭବିଷ୍ୟତ୍ ସୁଖ ଲାଗି କଳ୍ପନାମୟ ସୌଧରେ ନିବାସ କରିଥାଏ । ସେ ଜାଣିପାରେ ନାହିଁ ଯେ ସମସ୍ତ ବିଷୟ ତାହାର ଭବିତବ୍ୟତାର ଅଧୀନ । ଜାଗତିକ ମୋହର ଦୁର୍ବାର ମହିମା ଦୁର୍ଭେଦ୍ୟ ।

ଏହିପରି ନାନା ସ୍ଥାନରେ ଏହି ଭୂକମ୍ପ ଦେଖାଦେଇ ଜଗତର ଅନେକ କ୍ଷତିକରି ଦେଉଅଛି । ଭୂକମ୍ପରେ ଭୂମି ବିଦୀର୍ଣ୍ଣ ହୋଇ ଉଷ୍ଣଜଳ ଓ କର୍ଦ୍ଦମ ନିର୍ଗତ ହୁଏ । ତାହା ଗନ୍ଧକ ଦୁର୍ଗନ୍ଧଯୁକ୍ତ ହୋଇଥାଏ । ଏହାଅପେକ୍ଷା ଜଗତର ଅଧିକ କ୍ଷତିକାରକ ପ୍ରକୃତିର ଲୀଳା ଅନ୍ୟ କିଛି ନୁହେଁ । ଏହାର ନାମ ସ୍ମରଣ ମାତ୍ରେ ହୃତ୍‌କମ୍ପ ଜାତ ହେଉଅଛି । ଭାରତରେ ଯେଉଁ ସ୍ଥାନମାନଙ୍କରେ ଉଷ୍ଣ ପ୍ରସବଣ ଅଛି ଭୂତତ୍ତ୍ୱବିଦ୍‌ଗଣ ସେ ସକଳ ଭୂକମ୍ପ ପ୍ରସୂତ ବୋଲି କହନ୍ତି । ଭାରତରେ ଭୂକମ୍ପର କିମ୍ବା ଉଷ୍ଣପ୍ରସବଣର ଅଭାବ ନାହିଁ । ପ୍ରତିବର୍ଷ ୧୦ ବା ୧୨ ଥର ଭୂକମ୍ପ ହେବା ସମ୍ବାଦ ଶୁଣାଯାଏ, ତଥାପି ଗତ ବିହାର ଭୂକମ୍ପ ଘଟଣା ବଡ଼ ଭୟଙ୍କର । ଯେ ଥରେ ସେ ଦୁର୍ଘଟଣା ଅନୁଭବ କରିଛି କିମ୍ବା ସ୍ୱଚକ୍ଷୁରେ ଦେଖିଅଛି ସେ ଜନ୍ମାନ୍ତରେ ପାସୋରି ପାରିବ ନାହିଁ । ଈଶ୍ୱରେଚ୍ଛା ବଳୀୟସୀ ।

## ପୃଥିବୀର ଗୁଣ ଓ ଲକ୍ଷଣ

ଭୂମେଃ ସ୍ଥୈର୍ଯ୍ୟଂ ଗୁରୁତ୍ୱଂଚ କାଠିନ୍ୟଂ ପ୍ରସବାଥ ତା,
ଗନ୍ଧୋ ଗୁରୁତ୍ୱଂ ଶକ୍ତେଶ୍ଚସଂଘାତଃ ସ୍ଥାପନଂ ଧୃତିଃ; (ମହାଭାରତ ମୋକ୍ଷ ପର୍ବ)

ସ୍ଥିରତ୍ୱ, ଗୁରୁତ୍ୱ, କଠିନତ୍ୱ, ଶସ୍ୟୋତ୍ପତ୍ତି କ୍ଷମତା, ଗନ୍ଧଶକ୍ତି, ଗନ୍ଧଗ୍ରହଣ ସାମର୍ଥ୍ୟ, ଶ୍ଳିଷ୍ଟାବତ୍ୱ, ସ୍ଥାପନା, ମନୁଷ୍ୟ ଆଦି ଆଶ୍ରୟ ଓ ଧୃତି ଏହି ସକଳ ପୃଥିବୀର ଗୁଣ ।

ଉପଯୁକ୍ତ ପାତ୍ରରେ ଭୂଦାନ କଲେ ସ୍ୱର୍ଗ ପ୍ରାପ୍ତ ହୁଏ । ସକଳ ଦାନ ଅପେକ୍ଷା ଭୂଦାନ ଶ୍ରେଷ୍ଠ ଅଟେ । ପ୍ରାତଃକାଳରେ ଶଯ୍ୟାରୁ ଉଠି ଭୂମିରେ ପଦାର୍ପଣ କରିବା ସମୟରେ "ପ୍ରିୟଦତ୍ତାୟୈ ଭୁବେ ନମଃ" ବୋଲି ଭୂମିକୁ ନମସ୍କାର କରିବ, ପରେ ଭୂମିରେ ଦକ୍ଷିଣ ପଦ ନିକ୍ଷେପ କରିବ (ଆହ୍ନିକ ତତ୍ତ୍ୱ) ।

ଭୂମି ଦୁଇ ପ୍ରକାର । ଶୁଦ୍ଧା ଓ ଅଶୁଦ୍ଧା । ଅଶୁଦ୍ଧା ଭୂମି ତିନିଭାଗରେ ବିଭକ୍ତ । "ମଳିନା ଅମେଧ୍ୟା ଓ ଦୁଷ୍ଟା" । ଅମେଧା ଭୂମିର ଲକ୍ଷଣ :-

''ପ୍ରସୂତେ ଗର୍ଭିଣୀ ଯତ୍ର ମ୍ରୀୟତେ ଯତ୍ର ମାନୁଷଃ,
ଚାଣ୍ଡାଳୈ ରକ୍ଷିତଂ ଯତ୍ର ଯତ୍ର ବିନ୍ୟସ୍ୟତେ ଶବଃ ।।
ବିନ୍ମୂତ୍ରୋପହତଂ ଯତ୍ତୁ କୁଣପୋ ଯତ୍ର ଦୃଶ୍ୟତେ,
ଏବଂ କଶ୍ମଳଭୂୟିଷ୍ଠା ଭୂରମେଧ୍ୟେତି ଲକ୍ଷତେ''

ଯେଉଁ ଭୂମିରେ ଗର୍ଭିଣୀ ସନ୍ତାନ ପ୍ରସବ କରେ, ମନୁଷ୍ୟର ମୃତ୍ୟୁ ହୁଏ, ଶବ ଓ ମଳ ପଡ଼େ ସେହି ସକଳ ଭୂମି ଅମେଧ୍ୟା । ସେହି ସ୍ଥାନରେ ପ୍ରବେଶ କରି କୌଣସି କର୍ମ କରିବ ନାହିଁ ।

## ଦୁଷ୍ଟା ଭୂମିର ଲକ୍ଷଣ

କୃମିକୀଟ ପଦକ୍ଷେପୈ ର୍ଦୂଷିତା ଯତ୍ରମେଦିନୀ
ଦୁଷ୍ଟାପକର୍ଷଣୈଃ କ୍ଷିପ୍ତୈର୍ବାନ୍ତୈଶ୍ଚ ର୍ଦୂଷିତଂ ବ୍ରଜେତ ।

ଯେଉଁ ଭୂମି କୃମି, କୀଟ, ମଳ ମୂତ୍ର, ଶ୍ଳେଷ୍ମା ଓ ବାନ୍ତିଦ୍ୱାରା ଦୂଷିତ ଏବଂ ଯେଉଁ ସ୍ଥାନରେ ନଖ; ଦନ୍ତ ପଡ଼ିଥାଏ ତାହାକୁ ଦୁଷ୍ଟ ଭୂମି କୁହାଯାଏ ।

## ମଳିନା ଭୂମିର ଲକ୍ଷଣ

ନଖଦନ୍ତତନୁଜତ୍ୱକ ତୁଷପାଂଶୁରଜୋମଳୈଃ,
ଭସ୍ମପଙ୍କତୃଣୈର୍ବାପି ପ୍ରଚ୍ଛନ୍ନା ମଳିନା ଭବେତ୍ ।

ନଖ, ଦନ୍ତ, କେଶ, ଚର୍ମ, ତୁଷ, ଧୂଳି, ଭସ୍ମ, ପଙ୍କ ଓ ତୃଣାବୃତ ଭୂମିକି ମଳିନା :- କହି (ତିଥିତତ୍ତ୍ୱ) । ଏହି ତିନି ପ୍ରକାର ଭୂମି ତ୍ୟାଜ୍ୟ ଅଟେ; ଅନିବାର୍ଯ୍ୟ ପ୍ରୟୋଜନରେ ମାତ୍ର ଇଦୃଶ ଭୂମିରେ ଶୋଧନାନ୍ତର ବାସ କରାଯାଇପାରେ । ତୃଣାଦିର ଅପନୟନ, ଗୋମୟ ଲେପନ ଜଳପ୍ରକ୍ଷାଳନ, ତକ୍ଷଣ (ଚାଞ୍ଛିବା) ଏବଂ ଗାବବନ୍ଧନ- ଏ ପାଞ୍ଚପ୍ରକାର ଶୋଧନ ପ୍ରକ୍ରିୟା । (ଶୁଦ୍ଧି-ନିର୍ଣ୍ଣୟ ଦ୍ରଷ୍ଟବ୍ୟ)

''ନ ଭୂମୌ ବିଲିଖେଦ୍ୱର୍ଣ୍ଣଂ ମନ୍ତ୍ରଂ ନ ପୁସ୍ତକେ ଲିଖେତ୍,
ଭୂମୌ ତିଷ୍ଠତି ଦେବେଶେ ଜନ୍ମଜନ୍ମସୁ ମୂର୍ଖତା,
ତଦା ଭବତି ଦେବେଶେ ତସ୍ମାତତ୍ତତ୍ ପରିବର୍ଜୟେତ୍''

ଭୂମିରେ ଅକ୍ଷର ଲେଖିବ ନାହିଁ, ମନ୍ତ୍ର ପୁସ୍ତକରେ ଲେଖିବ ନାହିଁ, ଏହି କାର୍ଯ୍ୟ ଦୋଷାବହ ତେଣୁ ତାହା ପରିତ୍ୟାଗ କରିବ । ଏହି କାର୍ଯ୍ୟ କଲେ ଜନ୍ମେ ଜନ୍ମେ ମୂର୍ଖ ହୁଏ । ଯୋଗିନୀ ତନ୍ତ୍ରାନୁସାରେ ଭୂମିର ଶୁଭାଶୁଭ ବିଷୟ ମଙ୍ଗଳଗ୍ରହ ଦ୍ୱାରା ସ୍ଥିର କରାଯାଏ । ବାସ୍ତୁଶାସ୍ତ୍ରରେ ଏ ସମ୍ବନ୍ଧୀୟ ଅନେକ ବିଷୟ ଲେଖାଅଛି ।

ଭୂମିର ବର୍ଣ୍ଣ ଚତୁର୍ବିଧ - ଶ୍ୱେତ, ରକ୍ତ, ପୀତ ଓ କୃଷ୍ଣ । ବ୍ରହ୍ମ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ଏହି ଚାରି ଜାତିର ଭୂମି ଅଛି । ସୁଗନ୍ଧଯୁକ୍ତ ଭୂମି ବ୍ରହ୍ମଜାତୀୟ, ଶୋଣିତ ଗନ୍ଧଯୁକ୍ତ ଭୂମି କ୍ଷାତ୍ରଜାତୀୟ, ମଧୁ ଗନ୍ଧଯୁକ୍ତ ଭୂମି ବୈଶ୍ୟଜାତୀୟ ଏବଂ ମଦ୍ୟ ଗନ୍ଧଯୁକ୍ତ ଭୂମି ଶୂଦ୍ରଜାତୀୟ । ବ୍ରହ୍ମଜାତୀୟ ଭୂମି ମଧୁର, କ୍ଷାତ୍ରଜାତୀୟ ଭୂମି କଷାୟ, ବୈଶ୍ୟଜାତୀୟ ଭୂମି ଅମ୍ଳ ଏବଂ ଶୂଦ୍ରଜାତୀୟ ଭୂମି ତିକ୍ତ ହୋଇଥାଏ । ବ୍ରହ୍ମଜାତୀୟ ଭୂମି ଗଭୀର, କ୍ଷାତ୍ରଜାତୀୟ ଭୂମି ତୁଙ୍ଗ, ବୈଶ୍ୟଜାତୀୟ ଭୂମି ସମତଳ, ଶୂଦ୍ରଜାତୀୟ ଭୂମି ଉନ୍ନତାନତ । ସବଳ ବର୍ଣ୍ଣ ଓ ସମତଳ ଶୁକ୍ଳ ଭୂମି ଶୁଭଦାୟକ । କୁଶକାଶ ପ୍ରସୂତ ଭୂମି ବ୍ରାହ୍ମଣର, ଦୁର୍ବାଯୁକ୍ତ ଭୂମି କ୍ଷତ୍ରିୟର, ଫଳପୁଷ୍ପପୂର୍ଣ୍ଣ ଲତାପ୍ରସୂତ ଭୂମି ବୈଶ୍ୟର ଓ ତୃଣଯୁକ୍ତ ଭୂମି ଶୂଦ୍ର ପକ୍ଷେ ଉପଯୁକ୍ତ । ଯେଉଁ ଭୂମି ନଦୀ ସ୍ରୋତ ପ୍ଲାବିତ କିମ୍ବା ପାଷାଣଯୁକ୍ତ, ପର୍ବତାଗ୍ରେସଂଲଗ୍ନ, ଗର୍ତ୍ତ, ବିବର, ବଲ୍ମୀକ, ରୁକ୍ଷ, ଦନ୍ତକାଷ୍ଠପୂର୍ଣ୍ଣ, ଭଲ୍ଲୁକ, ଶୃଗାଳବାସଯୁକ୍ତ, ଚୌର ଉପଯୋଗୀ, ବିଶ୍ରୀତା । କିକଟ, ଫାଟଯୁକ୍ତ, ଛିଦ୍ରବିଶିଷ୍ଟ ସେହି ଭୂମି ସର୍ବଥା ପରିତ୍ୟାଗ କରିବ ।

ସୁଶ୍ରୁତରେ ଭୂପରୀକ୍ଷାର ବିଷୟ ଲେଖାଅଛି; ଯେଉଁ ଭୂମି, ଶର୍କରା (କରକଚା ଗୁଡ଼ି) ପଥର, ବଲ୍ମୀକ, ଶ୍ମଶାନ, ଦେବାୟତନ, ଏବଂ ବାଲୁକା ପ୍ରଭୃତି ଦ୍ୱାରା ଦୂଷିତ ନୁହେଁ, ଅଥବା ଛିଦ୍ର ବିଶିଷ୍ଟ ନୁହେଁ, କ୍ଷାରଯୁକ୍ତ କିମ୍ବା ରୁକ୍ଷ ନୁହେଁ, ଅଥଚ ସ୍ନିଗ୍ଧ, ବୃକ୍ଷଲତାପୂର୍ଣ୍ଣ, କୋମଳ, ସମତଳ ଓ ଗୌର, ଲୋହିତ ଅବା କୃଷ୍ଣବର୍ଣ୍ଣ ସେହିପରି ଭୂମିରୁ ଔଷଧି ସଂଗ୍ରହ କରିବ ।

**ଭୂମିର ବିଶେଷ ଲକ୍ଷଣ :** ଭୂମି ପ୍ରସ୍ତରବିଶିଷ୍ଟ, ଦୃଢ଼ କିମ୍ବା କୃଷ୍ଣ, ସ୍ଥୂଳବୃକ୍ଷ ଓ ଶସ୍ୟସମାକୀର୍ଣ୍ଣ ହେଲେ ପାର୍ଥିବ ଗୁଣ ବିଶିଷ୍ଟ ହୁଏ । ସ୍ନିଗ୍ଧ, ଶୀତଳ, କୋମଳ, ଜଳ ନିକଟସ୍ଥ, ବୃକ୍ଷ, ତୃଣଶସ୍ୟସଂକୁଳ ଭୂମିରେ ଅଧିକ ପରିମାଣେ ଜଳୀୟ ଗୁଣ ଥାଏ । ଲଘୁ ପ୍ରସ୍ତର ପାଣ୍ଡୁର ବର୍ଣ୍ଣ ସ୍ୱଳ୍ପ ବୃକ୍ଷଯୁକ୍ତ ଭୂମିରେ ଅଗ୍ନିର ଗୁଣ ଥାଏ । ରୁକ୍ଷ, ଭସ୍ମବର୍ଣ୍ଣ, ସ୍ୱଳ୍ପ ରସଯୁକ୍ତ ଭୂମିରେ ବାୟୁର ଗୁଣଥାଏ । ମୃଦୁ, ଛିଦ୍ରବିଶିଷ୍ଟ ଶ୍ୟାମଳବର୍ଣ୍ଣ, ଜଳଯୁକ୍ତ, ଶୀତଳ ଭୂମି ଆକାଶ ଗୁଣଯୁକ୍ତ । ଏହି ଚାରିପ୍ରକାର ଭୂମିରୁ କେଉଁ ପ୍ରକାର ଭୂମିରୁ କେଉଁ ଔଷଧି ସଂଗ୍ରହ କରିବ ସେହି ସକଳର ବିସ୍ତୃତ ବିବରଣ ସୁଶ୍ରୁତରେ ଉଲ୍ଲେଖ ଅଛି । ପଙ୍କିଳ, ମୃଦୁଳ ଓ ଛିଦ୍ରବିଶିଷ୍ଟ ବଲ୍ମୀକପୂର୍ଣ୍ଣ ଭୂମିରେ ଗୃହାଦି ନିର୍ମାଣ କରିବ ନାହିଁ । ଏ ସମ୍ବନ୍ଧେ ଶିଳ୍ପଶାସ୍ତ୍ର ଦ୍ରଷ୍ଟବ୍ୟ । ବାହୁଲ୍ୟ ଭୟରେ ବିଶେଷ ଉଲ୍ଲେଖ କରାଗଲା ନାହିଁ ।

## ଭୂବିଦ୍ୟା

ଭୂବିଦ୍ୟା ବା ଭୂଦର୍ଶନ (Geology) ଶାସ୍ତ୍ର ଅଧ୍ୟୟନ କଲେ ପୃଥିବୀର ଅଭ୍ୟନ୍ତର ସଂଶ୍ଳିଷ୍ଟ ପଦାର୍ଥ ନିଚୟର ଯାବତୀୟ ବିଷୟ ଜଣାଯାଏ ।

ଆମ୍ଭର ଅଧିଷ୍ଠାତ୍ରୀଭୂତା ପରିବର୍ତ୍ତନମୟୀ ପରିଦୃଶ୍ୟମାନ ବସୁନ୍ଧରାର ତତ୍ତ୍ୱ ନିରୂପଣ କରିବା ଭୂତତ୍ତ୍ୱର ଉଦ୍ଦେଶ୍ୟ । ପୌରାଣିକ କଳ୍ପନାରେ ମଧୁକୈଟଭ ଦୈତ୍ୟର ମେଦରୁ ଉତ୍ପନ୍ନ ହେବାରୁ

ଧରିତ୍ରୀର ନାମ ମେଦିନୀ ହୋଇଅଛି । କିନ୍ତୁ ପାଶ୍ଚାତ୍ୟ ବୈଜ୍ଞାନିକଗଣ ଏହି ନଦ, ନଦୀ, ହ୍ରଦ, ସାଗରେପୂର୍ଣ୍ଣ, ପ୍ରାନ୍ତର, ଅରଣ୍ୟ, ପର୍ବତ, ଦେଶ, ମହାଦେଶ ବିମଣ୍ଡିତା ରତ୍ନଗର୍ଭା ସାଗରାମ୍ବରା ବସୁଧାର ତାଦୃଶ ପୌରାଣିକ କଳ୍ପନା ପରିତ୍ୟାଗ କରି, ପର୍ଯ୍ୟବେକ୍ଷଣ ଓ ପରୀକ୍ଷାଦ୍ୱାରା ତତ୍ତ୍ୱ ଆଲୋଚନା କରି ଯେଉଁ ସକଳ ସିଦ୍ଧାନ୍ତ ଓ ମୀମାଂସା କରିଅଛନ୍ତି ତାହା ଭୂବିଦ୍ୟା ନାମେ ପ୍ରଖ୍ୟାତ; ସୁତରାଂ ଭୂବିଦ୍ୟା ବିଷୟକ ଶାସ୍ତ୍ର ଆଧୁନିକ ପାଶ୍ଚାତ୍ୟ ଗବେଷଣାମୂଳକ । ସମ୍ପ୍ରତି ସେ ସମ୍ବନ୍ଧେ ଦୁଇଚାରି ପଦ ଉଲ୍ଲେଖ କରି ଆମ୍ଭେ ଏହି ପ୍ରବନ୍ଧର ଉପସଂହାର କରିବୁଁ ।

ପ୍ରତ୍ୟକ୍ଷ ପରିଦୃଶ୍ୟମାନ ବିଶାଳ ନିସର୍ଗ ରାଜ୍ୟର ଇତିହାସ ବର୍ଣ୍ଣନା ପାର୍ଥିବ ବିଜ୍ଞାନର ଉଦ୍ଦେଶ୍ୟ । ପାର୍ଥିବ ବିଜ୍ଞାନ ବା ପ୍ରାକୃତିକ ଇତିହାସ (Natural History) ବିବିଧ ବିଭାଗରେ ବିଭକ୍ତ । ଭୂବିଦ୍ୟା ଅର୍ଥାତ୍ (ପୃଥିବୀର ଅତୀତ ଯୁଗର ସ୍ତରାବଳୀ ଓ ତନ୍ନିହିତ ପ୍ରସ୍ତରୀଭୂତ ଜୀବୋଦ୍ଭିଦର ପ୍ରକୃତି ଏବଂ କାଳନିରୂପଣଦ୍ୱାରା ବର୍ତ୍ତମାନ ଯୁଗର କ୍ରମୋନ୍ନତି ନିର୍ଣ୍ଣୟ) ଭୂଗୋଳ, ଉଦ୍ଭିଦବିଦ୍ୟା, ପ୍ରାଣୀବିଦ୍ୟା ଓ ରସାୟନ ଏହାର ପ୍ରତ୍ୟେକ ବିଜ୍ଞାନ ପୃଥିବୀ ସଂକ୍ରାନ୍ତ ଏକ ଏକ ପ୍ରାକୃତିକ ବିଭାଗର ଗବେଷଣାରେ ନିବଦ୍ଧ ।

ଯେଉଁ ସମସ୍ତ ବିଭିନ୍ନ ସ୍ତରାବଳୀରେ ଓ ବିଭିନ୍ନ ଧାତୁରେ ପୃଥିବୀ ସଂଘଟିତ ତାହାର ପରସ୍ପର ସମ୍ବନ୍ଧ ନିର୍ଣ୍ଣୟ, ପ୍ରକୃତି ଓ ଗଠନର ପର୍ଯ୍ୟାଲୋଚନା ଏବଂ ଯେଉଁ ଶକ୍ତିରେ ତାହାର ପରିବର୍ତ୍ତନ ହୋଇଅଛି ପ୍ରକୃତ ଭାବରେ ସେହି ସମୁଦାୟ ନିରୂପଣ କରିବା ଭୂବିଦ୍ୟାର ପ୍ରଧାନ ଉଦ୍ଦେଶ୍ୟ ।

ଭୂବିଦ୍ୟାବିଦ୍ ପଣ୍ଡିତଗଣ କହନ୍ତି, ପୃଥିବୀର ବିଶାଳ ଦେହରେ ଯୁଗେ ଯୁଗେ ଅନେକ ପରିବର୍ତ୍ତନ ଘଟିଅଛି । ଯେ ସକଳ ପରିବର୍ତ୍ତନ ଘଟିଅଛି ପୃଥିବୀ ପୃଷ୍ଠରେ ଅଦ୍ୟାପି ତାହାର ଜାଜ୍ୱଲ୍ୟମାନ ନିଦର୍ଶନ ରହିଅଛି; ସେ ସକଳ ଜାଣି ସେମାନେ କହନ୍ତି ପୃଥିବୀର ବୟସ ତୁଳନାରେ ମାନବର ସୃଷ୍ଟି; କିନ୍ତୁ ମାନବ ଜାତିର ତତ୍ତ୍ୱ ନିରୂପଣରେ ମନୁଷ୍ୟର ବୟସ ନିର୍ଦ୍ଧାରଣରେ କୌଣସି ମାନବତତ୍ତ୍ୱବିଦ୍ (Anthropologist) ଅଦ୍ୟାପି ସୂକ୍ଷ୍ମ ବିଚାର କରିପାରି ନାହିଁ । ସୁତରାଂ ବିବିଧ ଭୂତଧାତ୍ରୀ ଧରିତ୍ରୀର ବୟସ ନିର୍ଦ୍ଧାରଣ କରିବା ବୃଦ୍ଧ ବୟସଜାତ ମାନବ ସନ୍ତାନ ପକ୍ଷେ ଅତି ଦୁରୂହ । କିନ୍ତୁ ବସୁଧାବକ୍ଷବିହାରୀ ମାନବ ଶିଶୁ ଜନନୀର ବୟସ ନିରୂପଣ କରଣେ ଯଥାସାଧ୍ୟ ଚେଷ୍ଟା କରିଅଛି ଏବଂ କରୁଅଛି ।

ପୌରାଣିକ ଦୃଷ୍ଟିରେ ଦେଖିବାକୁ ଗଲେ; କାଶ୍ୟପଙ୍କ ପତ୍ନୀଗଣଙ୍କ ଗର୍ଭରେ ଆଦିତ୍ୟ, ଦୈତ୍ୟ, ଦାନବ, ମାନବ, ପକ୍ଷୀ, ସର୍ପାଦି ଜୀବ ଏକସମୟରେ ଜନ୍ମିଥିଲେ । ସେହି ହିସାବରେ ମାନବ ତିର୍ଯ୍ୟକ୍ ଜାତିର ବୈମାତ୍ରେୟ ଭ୍ରାତା; କିନ୍ତୁ ପାଶ୍ଚାତ୍ୟ ପଣ୍ଡିତଗଣ କହନ୍ତି ଯେ ସରୀସୃପାଦି ମନୁଷ୍ୟ ଅପେକ୍ଷା ଏତେ ବୟସରେ ବଡ଼ ଯେ, ଅଙ୍କଦ୍ୱାରା ଗଣନା କରିବା ଦୁଃସାଧ୍ୟ ଏହା ନିଃସଂଶୟ । ଭୂତାତ୍ତ୍ୱିକ ପଣ୍ଡିତଗଣ ପୃଥିବୀର ପ୍ରାଚୀନତମ ଶୈଳସ୍ତରରୁ ପ୍ରସ୍ତରୀଭୂତ ଅତିକାୟ ସରୀସୃପାଦିର ସୁସ୍ପଷ୍ଟ ନିଦର୍ଶନ ଲାଭ କରିଅଛନ୍ତି ।

ପୌରାଣିକ କଳ୍ପନାରେ ମଧ୍ୟ ଦେଖାଯାଏ ଯେ, ଭଗବାନ ଯୁଗେ ଯୁଗେ ଅବତୀର୍ଣ୍ଣ ହୋଇଛନ୍ତି । ଅତଳ ଜଳଧିତଳେ ପ୍ରଥମ ଅବତାର ମତ୍ସ୍ୟ, ତା'ପରେ କୂର୍ମ, ବରାହ ପ୍ରଭୃତି । ବୈଜ୍ଞାନିକ ଗବେଷଣାରେ ସିଦ୍ଧାନ୍ତ ହୋଇଅଛି ଯେ, ପୃଥିବୀରେ ପୁରାକାଳୀନ ଭିନ୍ନ ଭିନ୍ନ ଯୁଗରେ ଖଣ୍ଡ ପ୍ରଳୟ ରୂପେ ଭିନ୍ନ ଭିନ୍ନ ଭୂବିପ୍ଳବ ସଂଘଟିତ ହୋଇଥିଲା । ସେହି ହେତୁ ପୃଥିବୀ ରୂପାନ୍ତରିତ ହୋଇଅଛି । ଭୂମଣ୍ଡଳର ମାନଚିତ୍ରରେ ଆମ୍ଭେ ଜଳ ଓ ସ୍ଥଳ ସନ୍ନିବେଶ ଦେଖୁଅଛୁଁ; ଏହା ଅଧିକ ଦିନର ନୁହେଁ । ଆଜି ଯେଉଁଠାରେ ଅଭ୍ରଭେଦୀ ଗିରିରାଜ ହିମାଚଳ ସଗର୍ବେ ଦଣ୍ଡାୟମାନ, ସେହିଠାରେ ଦିନେ ଅତଳସ୍ପର୍ଶୀ ବିଶାଳ ବାରିଧି ଉତ୍ତାଳ ଫେନିଳ କଲ୍ଲୋଳ କଳେବରରେ ଚନ୍ଦ୍ର ଓ ସୂର୍ଯ୍ୟଦେବଙ୍କର ବିରାଟ ଦର୍ପଣ ସ୍ୱରୂପ ଥିଲା । ଯେଉଁ ସ୍ଥାନରେ ଆଜି କୃଶାନୁକଣକଳ୍ପ ସ୍ତୂପୀକୃତ ବାଲୁକାରାଶି ସମୀର ତରଙ୍ଗରେ ଭୈରବକ୍ରୀଡ଼ା କରୁଅଛି ସେହି ବିଶାଳ ସାହାରାର ମରୁସ୍ଥଳୀ ଦିନେ ରତ୍ନାକରର ଗଭୀର ଗର୍ଭରେ ପ୍ରୋଥିତ ଥିଲା । ଆଜି ଯେଉଁଠାରେ ମହାସମୁଦ୍ରର ଉତ୍ତାଳ ତରଙ୍ଗ-କୋଳାହଳ ଅର୍ଣ୍ଣବ ଯାତ୍ରୀଙ୍କର କୋମଳ ପ୍ରାଣରେ ଭୀଷଣ ଗାମ୍ଭୀର୍ଯ୍ୟର ସୂଚନା ଦେଉଅଛି, ସେଠାରେ ଦିନେ ସୁସଜ୍ଜିତ ଚିତ୍ତରଞ୍ଜନ ପଣ୍ୟଶ୍ରେଣୀ ପରିପୂର୍ଣ୍ଣ ବିପଣୀ ବିରାଜିତ ହୋଇ ସହସ୍ର ସହସ୍ର ନରନାରୀର ହୃଦୟ ଆନନ୍ଦ ତ୍ରାସରେ ପ୍ଲାବିତ କରିବ ।

ବୃହତ୍ ପ୍ରଣ୍ଡିତଗଣ ଚକ୍ଷୁରେ ଅଙ୍ଗୁଳି ଦେଇ ଦେଖାଇ ଦେଇଅଛି ଯେ, ଏତାଦୃଶ ବିସ୍ମୟକର ପରିବର୍ତ୍ତନ ଇତିହାସର ଅଧିଗମ୍ୟ କାଳରେ ସୁଦ୍ଧା ପ୍ରଚୁର ଘଟିଅଛି । ଆଜକୁ ଦୁଇ ସହସ୍ର ବତ୍ସର ହେଲା ହାର୍କେଡ଼ଲୋନିୟସ ଓ ପମ୍ପୀୟାଇ ନାମେ ଦୁଇଗୋଟି ଜନାକୀର୍ଣ୍ଣ ସୁରମ୍ୟ ନଗରୀ, ନେପ୍‌ଲେସ୍‌ର, ଭିସୁଭିୟସ୍ ପର୍ବତର ଅଗ୍ନି ଉତ୍ପାତରେ ଭୂଗର୍ଭରେ ଚିରକାଳ ସକାଶେ ଲୁକ୍କାୟିତ ହୋଇଯାଇଅଛି ।

ସମ୍ପ୍ରତି ଭୂତତ୍ତ୍ୱବିଦ୍‌ଗଣ ଭୂଗର୍ଭ ଖନନ କରାଇ ଉକ୍ତ ନଗର ଦ୍ୱୟର ଅନେକାଂଶ ଆବିଷ୍କାର କରିଅଛନ୍ତି । ଏହିପରି ଅନେକ କ୍ଷୁଦ୍ର ଓ ବୃହତ୍ ପରିବର୍ତ୍ତନ ପ୍ରତିନିତ୍ୟ ଭୂପୃଷ୍ଠରେ ଘଟୁଅଛି ।

ପୃଥିବୀର ଆଭ୍ୟନ୍ତରୀଣ ତାପରେ ଭୂପଞ୍ଜର ପରିଚାଳନାଦ୍ୱାରା ଅନେକ ସ୍ଥଳରେ ଅଭାବନୀୟ ପରିବର୍ତ୍ତନ ଘଟୁଅଛି । ପ୍ରବଳ ଭୂକମ୍ପ ପରେ କିପରି ଭୂଭାଗର ପରିବର୍ତ୍ତନ ହୁଏ, ତାହା ଅନେକେ ପ୍ରତ୍ୟକ୍ଷ କରିଅଛନ୍ତି; ଭୂକମ୍ପରେ ଅନେକ ସ୍ଥଳରେ ନଦୀ ଭିନ୍ନମୁଖୀ ହୋଇ ବହେ; ନଗର ବା ଜନପଦ ସମୁଦ୍ର ଗର୍ଭରେ ପ୍ରବେଶ କରେ; କୌଣସି ସ୍ଥାନରେ ଭୂଭାଗ ଉନ୍ନତ ହୋଇଉଠେ, କେଉଁଠାରେ ବା ପ୍ରକାଣ୍ଡ ହ୍ରଦର ଉତ୍ପତ୍ତି ହୁଏ ।

ଭୂତତ୍ତ୍ୱବିଦ୍ ପଣ୍ଡିତଙ୍କ ମତେ, ପୃଥିବୀର ଆଭ୍ୟନ୍ତରୀଣ ଶକ୍ତିରୁ ପର୍ବତ ସକଳ ଉତ୍ପତ୍ତି ହୋଇଅଛି; ହିମାଳୟ ପର୍ବତର ବହୁ ସହସ୍ର ଫୁଟ ଉଚ୍ଚ ସ୍ଥାନରେ ଅନେକ ଜଳଚର ଜୀବର ପ୍ରସ୍ତରୀଭୂତ କଙ୍କାଳ ସକଳ ପରିଦୃଷ୍ଟ ହୁଏ; ସିଓ୍ୱାଲିକ୍ ପର୍ବତ ଶ୍ରେଣୀରେ ଅତିକାୟ କୂର୍ମର ପ୍ରସ୍ତରୀଭୂତ ଅସ୍ଥି ଦୃଷ୍ଟ ହୁଏ । ଏତଦ୍ଦ୍ୱାରା ଅନୁମିତ ହୁଏ ଯେ ଏହି ସକଳ ପର୍ବତମାଳା ଏକ

ସମୟରେ ସମୁଦ୍ର ତରଙ୍ଗରେ ବିଧୌତ ହେଉଥିଲା; ପରେ ଭୂଗର୍ଭସ୍ଥ ଶକ୍ତିରେ ଉଦ୍ଭୁତ ହୋଇଅଛି । ହିମାଳୟ ସମୁଦ୍ର ତରଙ୍ଗରେ ବିଧୌତ ହେବା ବିଷୟ ମହାକବି କାଳିଦାସ ଲେଖିଅଛନ୍ତି, ଯଥାଃ-

"ପୂର୍ବାପରୌ ତୋୟନିଧୀ ବଗାହ୍ୟ ସ୍ଥିତଃ ପୃଥିବ୍ୟା ଇବମାନଦଣ୍ଡଃ"

ହିମାଳୟ ପୂର୍ବ ଓ ପଶ୍ଚିମ ପୟୋଧିରେ ଅବଗାହନ କରି ପୃଥିବୀର ମାନଦଣ୍ଡ ପରି ରହିଅଛି ।

ଭୂତାତ୍ତ୍ୱିକମାନେ ସ୍ଥିର କରିଛନ୍ତି ଯେ, ହିମଗିରି ଅବ୍ଧିଗର୍ଭେ ନିହିତ ଥିଲା ଏବଂ ପ୍ରାଚୀନ ମହାଦ୍ୱୀପର ପର୍ବତ ସକଳ ହିମାଳୟର ଶାଖା ସ୍ୱରୂପ ଥିଲା । ପଶ୍ଚିମରେ ପର୍ତ୍ତୁଗାଲ ସୀମାନ୍ତସ୍ଥିତ ପରିନିଜ୍ ପର୍ବତଶ୍ରେଣୀଠାରୁ ପୂର୍ବରେ ଅଲାଟଇ ପର୍ବତଶ୍ରେଣୀ ପର୍ଯ୍ୟନ୍ତ ଗୋଟିଏ ପର୍ବତମାଳା ଦୁଇଦିଗେ ଦୁଇ ମହାସମୁଦ୍ରରେ ଅବଗାହନ କରିଅଛି । କବିକୁଳତିଳକ କାଳିଦାସ ଯାହା ହିମାଳୟକୁ ମାନଦଣ୍ଡ ବୋଲି ଉଲ୍ଲେଖ କରିଅଛନ୍ତି ତାହାର ପ୍ରକୃଷ୍ଟ ପ୍ରମାଣ ସ୍ପଷ୍ଟରେ ଦେଖାଯାଇଅଛି । ହିମାଳୟର ସ୍ତରାବଳୀର ସନ୍ନିବେଶରୁ ପୃଥିବୀର ବୟସ ସ୍ଥିର କରିବା ସୁବିଧା ହୋଇଅଛି । ହିମାଳୟ ଗାତ୍ରରେ ଆବିଷ୍କୃତ ପ୍ରସ୍ତର ସୂଚିତ ଅସ୍ଥିର ଅବସ୍ଥାନଠାରୁ ତତ୍ତତ୍ ଯୁଗର ମୃତ୍ତିକାନ୍ତରେ ପ୍ରାଚୀନତା ସ୍ୱୀକାର କଲେ ସ୍ପଷ୍ଟ ଜଣାଯାଏ ଯେ, ଭୂବିପ୍ଳବରେ ଯୁଗେ ଯୁଗେ ପୃଥିବୀର ଜଳ ଓ ସ୍ଥଳ ଭାଗରେ ବିଶେଷ ପରିବର୍ତ୍ତନ ହେଉଅଛି; ଅତଏବ ଧରଣୀ ପରିବର୍ତ୍ତନ ଶୀଳା ।

## ମହାଦେଶ ବିଭାଗ

ସମଗ୍ର ପୃଥିବୀ ମଧ୍ୟରେ ଯେ କେତୋଟି ବିଭାଗ ସର୍ବାପେକ୍ଷା ଶ୍ରେଷ୍ଠ ତାହାର ନାମ ଲିପିବଦ୍ଧ କଲୁ । ସମ୍ପ୍ରତି ଏଗୁଡ଼ିକ ସ୍ୱତନ୍ତ୍ର ରାଜ୍ୟ ମଧ୍ୟେ ପରିଗଣିତ ହୁଏ ।

ଏସିଆ, ସାଇବେରିଆ ମାଞ୍ଚୁରୀଆ, ଜାପାନ, ଚୀନ, ଚୀନତାତାର, ତିବ୍ବତ, ମଙ୍ଗୋଲିୟା, ତୁର୍କିସ୍ଥାନ, ତୁରସ୍କ, ଆରବ, ପାରସ୍ୟ, ଆଫଗାନିସ୍ଥାନ, ବେଲୁଚିସ୍ଥାନ, ଭାରତ, (୧ ଶ୍ୟାମ, ୨ ବ୍ରହ୍ମ, ୩ କାମ୍ବୋଜ, ୪ ଆନାମ୍, ୫ କୋଚିନ୍, ୬ ମାଳୟ) ଏ ଛ'ଟି ସମ୍ପ୍ରତି ବ୍ରିଟିଶ ରାଜ୍ୟାନ୍ତର୍ଗତ । ଉପରୋକ୍ତ ସକଳଦେଶ ବା ରାଜ୍ୟ କ୍ଷୁଦ୍ର ବିଭାଗରେ ବିଭକ୍ତ ।

ୟୁରୋପ - ଗ୍ରେଟ୍ ବ୍ରିଟେନ୍, ଫ୍ରାନ୍ସ, ସ୍ପେନ୍, ପର୍ତ୍ତୁଗାଲ, ଇଟାଲି, ତୁରସ୍କ, ଗ୍ରୀସ୍, ଅଷ୍ଟ୍ରିଆ, ସୁଇଜରଲାଣ୍ଡ, ହଲାଣ୍ଡ, ବେଲଜିୟମ, ଜର୍ମାନୀ, ପୋଲାଣ୍ଡ, ଡେନମାର୍କ, ନରୱେ, ସ୍ୱିଡ଼େନ୍ ଓ ରୁଷିଆ ପ୍ରାଗୁକ୍ତ ପ୍ରକାରେ ଏହିଗୁଡ଼ିକ ସ୍ୱତନ୍ତ୍ର ରାଜଧାନୀ ।

ଆଫ୍ରିକା, ମଧ୍ୟ ଆଫ୍ରିକା, ଉତ୍ତର ଆମେରିକା ଓ ଦକ୍ଷିଣ ଆମେରିକା ଏ ସକଳ ମହାଦେଶ ।

## ସମୁଦ୍ର ବିଭାଗ

ଉପରୋକ୍ତ ସ୍ଥଳ ବିଭାଗ ପରି ଜଳ ବିଭାଗର ମଧ୍ୟ ପୃଥିବୀ ପୃଷ୍ଠରେ ନାମକରଣ ହୋଇଅଛି ।

୧- ଆଟଲାଣ୍ଟିକ୍ ମହାସାଗର- ୟୁରୋପ ଓ ଆମେରିକାର ମଧ୍ୟରେ ଅବସ୍ଥିତ ।

୨- ପ୍ରଶାନ୍ତ ମହାସଗାର- ଏସିଆର ଦକ୍ଷିଣରୁ ଆଫ୍ରିକା ଓ ଅଷ୍ଟ୍ରେଲିଆର ଦକ୍ଷିଣାଂଶେ ସ୍ଥିତ ।

୩- ଦକ୍ଷିଣ ମହାସାଗର- ଭାରତ ମହାସାଗର ଓ ଦକ୍ଷିଣ ମେରୁର ମଧ୍ୟରେ ଅବସ୍ଥିତ ।

୪- ଉତ୍ତର ମହାସାଗର-ଏସିଆ, ୟୁରୋପ ଓ ଆମେରିକାର ଉତ୍ତରରୁ ସୁମେରୁ ପର୍ଯ୍ୟନ୍ତ ବ୍ୟାପ୍ତ ।

ଏତଦ୍ଭିନ୍ନ ଭୂମଧ୍ୟ ସାଗର, ଉତ୍ତର ସାଗର, ଆରବୋପସାଗର, ବଙ୍ଗୋପସାଗର, ମେକ୍ସିକୋପସାଗର ପ୍ରଭୃତି ଅନେକ କ୍ଷୁଦ୍ର କ୍ଷୁଦ୍ର ଜଳ ବିଭାଗ ଓ ଅନେକ ହ୍ରଦ ମଧ୍ୟ ଅଛି ।

## ଆଲୋଚନା

ଆଧୁନିକ ବୈଜ୍ଞାନିକଗଣ ମହାଭୂତ ନିବହର ମୂଳ ରହସ୍ୟୋଦ୍ଘାଟନ କରିବା ବହୁ ପୂର୍ବୁଁ ପ୍ରାଚ୍ୟ ଦାର୍ଶନିକଗଣ ସୃଷ୍ଟିର ପଞ୍ଚୀକରଣ ପ୍ରକ୍ରିୟାକୁ ବିଶ୍ଳେଷଣ କରି ତାହାର ମୂଳରେ ଗୋଟିଏ ଅପ୍ରତର୍କ୍ୟ ପରମ ମହତ୍ତ୍ୱ ଉପଲବ୍ଧି ପୂର୍ବକ ସ୍ଥିର କରିଥିଲେ ଯେ ସାଗର ବକ୍ଷରୁ ଅସଂଖ୍ୟ ଲହରୀ ସମୁତ୍ଥିତ ହୋଇ ସାଗରରେ ଲୀନ ହେଲାପରି ଏହି ଅନନ୍ତ ବିଶ୍ୱବ୍ରହ୍ମାଣ୍ଡ ବ୍ରହ୍ମରୁ ସୃଷ୍ଟ ଓ ବ୍ରହ୍ମରେ ପର୍ଯ୍ୟବସିତ ହୋଇଥାଏ ।

ଶ୍ରୁତି କହେ-

ବ୍ରହ୍ମୈବେଦମମୃତଂ ପୁରସ୍ତାଦ୍ବ୍ରହ୍ମ ପଶ୍ଚାତ୍ ଦକ୍ଷିଣତଶ୍ଚୋତ୍ତରେଣ ।<br>
ଅଧଶ୍ଚୋର୍ଦ୍ଧ୍ୱଂ ଚ ପ୍ରସୃତଂ ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠଂ ।।

ଅର୍ଥାତ୍ ଅଗ୍ର, ପଶ୍ଚାତ୍, ବାମ, ଦକ୍ଷିଣ, ଅଧଃ ଓ ଉର୍ଦ୍ଧ୍ୱ ସର୍ବତ୍ର ପ୍ରସାରିତ ହୋଇ ବ୍ରହ୍ମ ସର୍ବଦା ଅମୃତ ଅର୍ଥାତ୍ ଅବିନଶ୍ୱର ଭାବରେ ରହିଅଛନ୍ତି । ବିଶ୍ୱ ବିସ୍ତୃତ ହେଲେ ସୁଦ୍ଧା ଏହା କେବଳ ବ୍ରହ୍ମ ଅଟେ ଏବଂ ସେହି ବ୍ରହ୍ମ ନିତ୍ୟ ଅଟନ୍ତି ।

"ଯସ୍ମାତ୍ ପରଂ ନାପରମସ୍ତି କିଞ୍ଚିତ୍ ଯସ୍ମାନ୍ନାଣୀୟୋ ନ ଜ୍ୟାୟୋଃସ୍ତିକଶ୍ଚିତ୍<br>
ବୃକ୍ଷ ଇବ ସ୍ତବ୍ଧୋ ଦିବି ତିଷ୍ଠତ୍ୟେକ ସ୍ତେନେଦଂ ପୂର୍ଣ୍ଣଂ ପୁରୁଷେଣ ସର୍ବଂ"

ବ୍ରହ୍ମ ଅଣୁରୁ ଅତି ସୂକ୍ଷ୍ମ ଏବଂ ମହତ୍ରୁ ମହାନ୍ । ଯାହାଙ୍କ ପରେ ଆଉ ଅପର କିଛି ନାହିଁ ଏବଂ ସେ ସର୍ବତ୍ର ପୂର୍ଣ୍ଣ ଭାବରେ ପରିପୂରିତ । ସେ ସଂକଳ୍ପମାତ୍ରେ ସମସ୍ତ ସୃଷ୍ଟି କରିଅଛନ୍ତି । ଯଥା-

ଖବାୟ୍ୱଗ୍ନିଜଳୋର୍ବୈଷଧାନ୍ନଦେହ କ୍ରମାଦମୀ
ସମ୍ଭୂତା ବ୍ରହ୍ମଣସ୍ତସ୍ମାଦେତସ୍ମାଦାତ୍ମନୋଽଖିଳାଃ
ଖ, ବାୟୁ, ଅଗ୍ନି, ଜଳ, ପୃଥିବୀ, ଔଷଧି, ଅନ୍ନ ଓ ଦେହ ତାହାଙ୍କଠାରୁ ଉତ୍ପନ୍ନ ।
ବିସ୍ଫୁଲିଙ୍ଗା ଯଥା ବହ୍ନେର୍ଜାୟନ୍ତେଽକ୍ଷରତ ସ୍ତଥା ।
ବିବିଧାଶ୍ଚ ଜଡ଼ାଭାବା ଇତ୍ୟାଥର୍ବଣିକୀ ଶ୍ରୁତିଃ ।।

ଆଥର୍ବଣ ଶ୍ରୁତି କହେ- ବହ୍ନିରୁ ସ୍ଫୁଲିଙ୍ଗ ପରି ଅକ୍ଷର ପରମାତ୍ମାଙ୍କଠାରୁ ବିବିଧ ପ୍ରକାର ଚେତନ ଜୀବ ଓ ନାନାବିଧ ଜଡ଼ ପଦାର୍ଥ ଉତ୍ପନ୍ନ ହୋଇଅଛନ୍ତି । ସୁତରାଂ ଏହି ଜଗତ୍ ବ୍ରହ୍ମର ରୂପାନ୍ତର ମାତ୍ର । ବେଦୋକ୍ତିର ତାତ୍ପର୍ଯ୍ୟ ଏହି ଯେ ବ୍ରହ୍ମରୁ ନିଖିଳ ସୃଷ୍ଟିର ବିକାଶ ହୋଇଥିଲେ ସୁଦ୍ଧା ସେହି ବ୍ରହ୍ମ ଜନ୍ମ, ଅସ୍ତିତ୍ୱ ବର୍ଦ୍ଧନ, ପରିଣାମ, ଅପକ୍ଷୟ ଓ ବିନାଶ ଏହି ଷଡ଼ବିଧ ବିକାର ଶୂନ୍ୟ; ପୂର୍ବୋକ୍ତ ବିକାର ସକଳ ପ୍ରକୃତି ସମ୍ଭୂତ ମାତ୍ର । ଭଗବଦ୍ ଗୀତା ମଧ୍ୟ ଏହି ଉକ୍ତି ସମର୍ଥନ କରିଅଛି- ''ବିକାରାଂଶ୍ଚ ଗୁଣାଂଶ୍ଚୈବବିଦ୍ଧି ପ୍ରକୃତ ସମ୍ଭବାନ୍'' । ସୁତରାଂ ବ୍ରହ୍ମ 'ଆନନ୍ଦଂ ନିମଳଂ ଶାନ୍ତଂନିର୍ବିକାରଂ ନିରଞ୍ଜନଂ' । ସେ କେବଳ ତତ୍ତ୍ୱଜ୍ଞାନୀମାନଙ୍କର ଅନୁଭବ ଜ୍ଞାନଦ୍ୱାରା ବୋଧଗମ୍ୟ । ଏହି ତତ୍ତ୍ୱାନ୍ୱେଷଣରେ ବିହ୍ୱଳ ହୋଇ ଆର୍ଯ୍ୟଗଣ ସ୍ଥୂଳ ଜଗତ ବିଷୟରେ ଅଧିକ ଚିନ୍ତାନ୍ୱିତ ହୋଇ ମସ୍ତିଷ୍କକୁ ଭାରାକ୍ରାନ୍ତ କରିନାହାନ୍ତି ।



ବୃହଚ୍ଚ ତଦ୍ଦିବ୍ୟମଚିନ୍ତ୍ୟରୂପଂ ସୂକ୍ଷ୍ମାଚ୍ଚ ତତ୍ ସୂକ୍ଷ୍ମତରଂବିଭାତି
ଦୂରାତ୍ ସୁଦୂରେ ତଦିହାନ୍ତିକେ ଚ ପଶ୍ୟତ୍‌ସ୍ୱିହୈବ ନିହିତଂ ଗୁହାୟାଂ । (ଶ୍ରୁତିଃ)

ଅଚିନ୍ତ୍ୟ ସ୍ୱରୂପ ପରମାତ୍ମା ଯେପରି ବୃହତ୍‌ରୁ ବୃହତ୍ତର ସେପରି ସୂକ୍ଷ୍ମରୁ ସୂକ୍ଷ୍ମତର । ଯେପରି ସେ ଦୂରରୁ ଦୂରତର ସେପରି ନିକଟରୁ ନିକଟତର । ସେ ପ୍ରତ୍ୟେକ ବସ୍ତୁର ଅଭ୍ୟନ୍ତରରେ ରହନ୍ତିଏବଂ ଜଗତର ସର୍ବତ୍ର ଓତଃପ୍ରୋତ ଭାବେ ବ୍ୟାପ୍ତ ।

ଏହି ଆର୍ଯ୍ୟଦର୍ଶନ ସମ୍ବନ୍ଧରେ ବିଶଦ ଆଲୋଚନା କରିବା ପୂର୍ବରୁ ଦର୍ଶନ ଶବ୍ଦର ବ୍ୟୁତ୍ପତ୍ତି ବୁଝାଇବା ନିତାନ୍ତ ପ୍ରୟୋଜନ ମନେକରୁ । ଦର୍ଶନ ପଦରେ ଦୃଶ୍ୟତେ ଯଥାର୍ଥତ୍ୱ ମନେନ ଇତି ଦୃଶ କରଣେ ଲ୍ୟୁଟ୍ । ଅଧ୍ୟାତ୍ମ ତତ୍ତ୍ୱବୋଧକ ଶାସ୍ତ୍ରଭେଦ ଅର୍ଥାତ୍ ଯାହାଦ୍ୱାରା ତତ୍ତ୍ୱଜ୍ଞାନ ଯଥାର୍ଥ ରୂପେ ଅବଗତ ହେଉଁ ତାହାର ନାମ ଦର୍ଶନ । ଦର୍ଶନ ଶାସ୍ତ୍ରର ସମ୍ୟକ୍ ପରିଶୀଳନ ହିଁ ପ୍ରକୃତ ଜ୍ଞାନଲାଭର ପ୍ରକୃଷ୍ଟ ଉପାୟ । ଦର୍ଶନ ଶାସ୍ତ୍ରର ସମ୍ୟକ୍ ଅଧ୍ୟୟନ ବିନା ବୁଦ୍ଧିର ପ୍ରାଖର୍ଯ୍ୟ, ବିବେକର ବିକାଶ, ଗବେଷଣାର ମୌଳିକତା, ଯୁକ୍ତିର ସାରବତ୍ତା ଏବଂ ଅଧୀତ ଗ୍ରନ୍ଥର ତାତ୍ପର୍ଯ୍ୟୋପଲବ୍ଧି ଅସମ୍ଭବ । ଦର୍ଶନ ଆସ୍ତିକ ଓ ନାସ୍ତିକ ଭେଦରେ ବହୁବିଧ । ଆର୍ଯ୍ୟମହର୍ଷିଙ୍କ ପ୍ରତିଭାଶାଣଶାଣିତ ଯେଉଁ ଔପନିଷଦୀୟ ବ୍ୟାହାର ଉଜ୍ଜ୍ୱଳ ମଣିସମୂହ ଶ୍ରେଷ୍ଠ ଅଧିକାରୀଙ୍କ ମଧ୍ୟରେ ବିନା ମୂଲ୍ୟରେ ବିତରଣାର୍ଥେ ବିଶ୍ୱପ୍ରଦର୍ଶନୀରେ ପ୍ରଦର୍ଶିତ ହୋଇଥିଲା ତାହାହିଁ ଦର୍ଶନ ନାମେ ଖ୍ୟାତ; କିନ୍ତୁ ସେହି ଦର୍ଶନ ରତ୍ନର ସ୍ପର୍ଶନସୌଭାଗ୍ୟ ସହଜ ବ୍ୟାପାର ନୁହେଁ । ଦିନେ ଭାରତ ବିପଣିରେ ଏହାର ସମାଦର ଅସାଧାରଣ ଥିଲା । ଦୁର୍ଦୈବ ବିଳାସରୁ ଆଜି ଏହାର ମୂଲ୍ୟ ଭାରତୀୟ ଜ୍ଞାନରତ୍ନ ବ୍ୟବସାୟୀଙ୍କ ନିକଟରେ ତେତେଦୂର ମହାର୍ଘ ନୁହେଁ । ନିର୍ମାଂସ ଶୁଷ୍କ ଶଲ୍ୟ ଖଣ୍ଡକୁ ନେଇ ସାରମେୟଗଣ ଅଯଥା ବିବାଦ ସୃଷ୍ଟି କଲାପରି ବେଳେବେଳେ କୌଣସି କୌଣସି ସ୍ଥଳରେ ବିବଦନଶୀଳଙ୍କର ଗଗନଭେଦୀ ବ୍ୟର୍ଥ ଚିତ୍କାର ମାତ୍ର ଶ୍ରୁତିଗୋଚର ହୁଏ । ସୌଭାଗ୍ୟ-ଲକ୍ଷ୍ମୀର ଇଙ୍ଗିତରେ ଉନ୍ନତି ଦିଗେ ଅଗ୍ରଗତିଶୀଳ ପାଶ୍ଚାତ୍ୟ ବୈଜ୍ଞାନିକ ଜଗତ୍ ଦର୍ଶନଗତ ଭୌତିକ ବିଭୂତି ମାତ୍ର ଆୟତ୍ତ କରି ଆଜି ମହଦୈଶ୍ୱର୍ଯ୍ୟଶାଳୀ ହୋଇଅଛନ୍ତି । ଏ କ୍ଷେତ୍ରରେ ଆର୍ଯ୍ୟଜାତିର ଉତ୍ତରାଧିକାରୀଗଣ ବେଦନାତୁର ହୃଦୟରେ ପ୍ରଜ୍ୱଳିତ ଖେଦାଗ୍ନିକୁ ନିଷ୍ଫଳ ଅଶ୍ରୁବର୍ଷଣଦ୍ୱାରା ନିର୍ବାପଣ କରିବା ବିନା ଉପାୟାନ୍ତର କଳ୍ପନା କରିପାରୁ ନାହାନ୍ତି । ଭାରତର

ଗୌରବମୟ ରାଜପ୍ରାସାଦ ଶତବୈଦ୍ୟୁତିକ ଆଲୋକରେ ଉଦ୍ଭାସିତ ହେଲେ ସୁଦ୍ଧା ବିଶୁଦ୍ଧ ଆଧ୍ୟାତ୍ମିକ ଅଖଣ୍ଡ ପ୍ରଦୀପ ବ୍ୟତିରେକେ ପ୍ରକୃତ ଶାନ୍ତିପ୍ରଦ ଜ୍ୟୋତିଃସତ୍ତା ଦେଖାଯିବା ଅସମ୍ଭବ । ଭାରତର ଏ ଦୈନ୍ୟ ଓ ଦୁର୍ଦ୍ଦିନ-କୁଜ୍ଝଟିକା କେବେ ଅପସାରିତ ହେବ ଏହି ଦୁଶ୍ଚିନ୍ତା-କୀଟ ଅନେକ ପରିଣାମଦର୍ଶୀଙ୍କ ଅନ୍ତର ବିଦ୍ଧ କରୁଅଛି । ବହୁଦର୍ଶୀତାଦ୍ୱାରା ବେଦର ସଂହିତା, ବ୍ରାହ୍ମଣ ଓ ଉପନିଷତ୍ ଅବଲମ୍ବନ କରି ବିରାଟ ସାଧନାର ଫଳସ୍ୱରୂପ ଆର୍ଯ୍ୟଗଣ ପାରଲୌକିକ ଉନ୍ନତିର ପ୍ରକୃଷ୍ଟୋପାୟ ନିର୍ଦ୍ଧାରଣପୂର୍ବକ ଯେଉଁ ଅଜ୍ଞେୟ ବ୍ରହ୍ମତତ୍ତ୍ୱ ଦର୍ଶନ ଶାସ୍ତ୍ରରେ ସନ୍ନିବେଶିତ କରିଅଛନ୍ତି ତନ୍ମଧ୍ୟରୁ ଷଟ୍‌ଦର୍ଶନର ପ୍ରାଧାନ୍ୟ ସମଧିକ । ସମ୍ପ୍ରତି ଆମ୍ଭେ ଏହି ତରଙ୍ଗରେ ପ୍ରସ୍ଥାନତ୍ରୟାନ୍ତର୍ଗତ ବ୍ରହ୍ମ ସୂତ୍ର ବ୍ୟତୀତ ସାଂଖ୍ୟ, ବୈଶେଷିକ, ନ୍ୟାୟ ପାତଞ୍ଜଳ ଓ ପୂର୍ବମୀମାଂସା ଦର୍ଶନଗତ ବିଷୟ ଆଲୋଚନା କରୁଅଛୁଁ । ଉକ୍ତ ଦର୍ଶନଗୁଡ଼ିକ ମଧ୍ୟରୁ ସାଂଖ୍ୟ ଅବା ବୈଶେଷିକ କେଉଁଟି ପ୍ରଥମ ରଚନା ଏହା ନେଇ ତତ୍ତ୍ୱବିଦ୍‌ଗଣଙ୍କ ମଧ୍ୟରେ ମତଭେଦ ପରିଲକ୍ଷିତ ହେଉଥିଲେ ସୁଦ୍ଧା ଅଧିକାଂଶଙ୍କ ମତେ ସାଂଖ୍ୟ ହିଁ ସର୍ବପ୍ରଥମ ଦର୍ଶନ । ସୁତରାଂ ଆମ୍ଭେ ଏ ବିଷୟ ନେଇ ମସ୍ତିଷ୍କ ଭାରାକ୍ରାନ୍ତ କରିବା ଅନାବଶ୍ୟକ । ଏଠାରେ ବକ୍ତବ୍ୟ ଏହି ଯେ ପ୍ରତ୍ୟେକ ଦର୍ଶନର ମୂଳ ସୂତ୍ରାବଲମ୍ବନ କରି ଅବିକଳ ଅନୁବାଦ ଲିପିବଦ୍ଧ କରାଯାଇ ନାହିଁ । କଣାଦ ଓ ଗୌତମସୂତ୍ରର ମୂଳତାତ୍ପର୍ଯ୍ୟକ୍ରମେ ଏବଂ ଅନ୍ୟ ତିନୋଟି ସମାଲୋଚନା ରୂପେ ବିଶଦୀକୃତ ହୋଇଛି । ମୌଳିକତାରେ ଅବଶ୍ୟ କୌଣସି ବ୍ୟତିକ୍ରମ ଘଟିନାହିଁ; ବରଂ ସମଧିକ ପୁଷ୍ଟ ହୋଇଅଛି । ଆଉ ଗୋଟିଏ କଥା, ଦାର୍ଶନିକ ପ୍ରୟୋଗଗୁଡ଼ିକୁ ସରଳ ଭାବେ ବୁଝାଇବାଲାଗି ଅପେକ୍ଷାକୃତ ଅଧିକ ଚେଷ୍ଟାରେ ତ୍ରୁଟି କରିନାହୁଁ ସତ୍ୟ, ତଥାପି ସ୍ଥାନେ ସ୍ଥାନେ ରଚନାର କାଠିନ୍ୟ ଦୋଷରୁ ଅବ୍ୟାହତି ପାଇ ନାହିଁ । ଯେହେତୁ ଦାର୍ଶନିକ ପଦବିନ୍ୟାସର କାଠିନ୍ୟ ବିଦୂରିତ ହେବା ଭଳି ସହଜ ପ୍ରତିପଦର ଭାବ ଅଦ୍ୟାପି ଅଭିଧାନ ଗ୍ରନ୍ଥରେ ସନ୍ନିବେଶିତ ହୋଇନାହିଁ । ଆଶାକରୁ ଜାତୀୟ ଅମୂଲ୍ୟ ସମ୍ପଦର ଅପବ୍ୟବହାର ନକରି ଥରେ ଆମୂଳଚୂଳ ପାଠ କରି ଶ୍ରମ ଚରିତାର୍ଥ କରିବେ । ଅଳମତି ବିସ୍ତରେଣ-

## ସାଂଖ୍ୟ ଦର୍ଶନ

ଉପନିଷଦ୍ କହେ ସାଂଖ୍ୟଦର୍ଶନ ପ୍ରଣେତା ମହର୍ଷି କପିଳ ଭାରତର ଆଦିମ ଋଷି ।

"ଋଷିଂ ପ୍ରସୂତଂ କପିଳଂ ଯସ୍ତମଗ୍ରେ ଜ୍ଞାନୈର୍ବିଭର୍ତ୍ତି" । (ଶ୍ୱେତାଶ୍ୱତର ଉପନିଷତ୍)

ନବଜାତ ଶିଶୁ କପିଳଋଷି ପ୍ରଥମେ ଜ୍ଞାନଦ୍ୱାରା ପୁଷ୍ଟ ହୋଇଥିଲେ । ଭୁବନବିସ୍ତୃତ ଭଗବଦ୍ ଗୀତାରେ ଯୋଗେଶ୍ୱର ଶ୍ରୀକୃଷ୍ଣ କହିଅଛନ୍ତି -

"ଗନ୍ଧର୍ବାଣାଂ ଚିତ୍ରରଥଃ ସିଦ୍ଧାନାଂ କପିଳୋ ମୁନିଃ" ।

"ମୁଁ ଗନ୍ଧର୍ବମାନଙ୍କ ମଧ୍ୟରେ ଚିତ୍ରରଥ ଏବଂ ସିଦ୍ଧମାନଙ୍କ ମଧ୍ୟରେ କପିଳ ମୁନି" ।

ଏହି ସାଂଖ୍ୟାଚାର୍ଯ୍ୟ କର୍ଦମଙ୍କ ଔରସରେ ଦେବହୂତିଙ୍କ ଗର୍ଭରୁ ଜାତ ହୋଇଥିଲେ । ସେ ସ୍ୱୀୟ ଜନନୀଙ୍କୁ ଯେଉଁ ଭାବରେ ତତ୍ତ୍ୱୋପଦେଶ ଦେଇଥିଲେ ତାହା ଶ୍ରୀମଦ୍‌ଭାଗବତରେ ଉଲ୍ଲେଖ କରାଯାଇଛି ।

## ଭାଗବତୋକ୍ତ କପିଳ ମତ

ଯେ ସକଳ ଇନ୍ଦ୍ରିୟ ପ୍ରକାଶାତ୍ମକ, ଯାହାଦ୍ୱାରା ଶବ୍ଦସ୍ପର୍ଶାଦି ବିଷୟ ଅନୁଭୂତ ହୁଏ, ସେହି ସତ୍ତ୍ୱମୂର୍ତ୍ତି ଭଗବାନଙ୍କ ପ୍ରତି ସ୍ୱାଭାବିକୀ ବୃତ୍ତିକୁ ଭଗବଦ୍ ଭକ୍ତି କୁହାଯାଏ । ଶୁଦ୍ଧ ସତ୍ ପୁରୁଷ ପକ୍ଷେ ମୁକ୍ତି ଅପେକ୍ଷା ଶ୍ରେଷ୍ଠ । ଇନ୍ଦ୍ରିୟଗଣର ଏହି ବୃତ୍ତ ସ୍ୱତଃ ଜନ୍ମେ ନାହିଁ । କିନ୍ତୁ ବେଦବିହିତ କର୍ମାଚାରଣରେ ପ୍ରଥମେ ପ୍ରବୃତ୍ତି ଜନ୍ମିଲେ- କ୍ରମେ କ୍ରମେ ଏହି ବୃତ୍ତର ଉତ୍ପତ୍ତି ହୋଇ ମୋକ୍ଷ ଲାଭ ହୁଏ । ଈଶ୍ୱର ଯାହାର ଆତ୍ମବତ୍ ପ୍ରିୟ, ପୁତ୍ରବତ୍ ସ୍ନେହର ପାତ୍ର, ସଖାପରି ବିଶ୍ୱାସଭାଜନ, ଗୁରୁବତ୍ ଉପଦେଷ୍ଟା,ବନ୍ଧୁପରି ହିତକାରୀ ଓ ଇଷ୍ଟଦେବତା ପରି ପୂଜ୍ୟ ଅର୍ଥାତ୍ ଯେଉଁମାନେ ସର୍ବତୋଭାବେ ଭଗବାନଙ୍କୁ ଭଜନ କରନ୍ତି ସେମାନଙ୍କୁ କାଳ କିଛି କରିପାରେ ନାହିଁ ।

ପୁରୁଷ ଅନାଦି, ନିର୍ଗୁଣ, ପ୍ରକୃତିଠାରୁ ଭିନ୍ନ, କେବଳ ସାକ୍ଷୀ ସ୍ୱରୂପ ଏବଂ ସ୍ୱପ୍ରକାଶକ । ଏହି ବିଶ୍ୱ ତାହାଙ୍କଠାରେ ସମନ୍ୱିତ ହୋଇ ପ୍ରକାଶ ପାଏ । ସେହି ପୁରୁଷ ନିକଟରେ ଗୁଣମୟୀ ପ୍ରକୃତି ଲୀଳାବଶତଃ ଉପଗତା ହେଲେ ସେ ଅବଜ୍ଞାକ୍ରମେ ତାହାକୁ ଗ୍ରହଣ କରିଥାଏ ।ଏହିପ୍ରକୃତି ନିଜ ଗୁଣଦ୍ୱାରା ଆପଣାର ସମାନରୂପ ପ୍ରଜା ସୃଷ୍ଟି କରେ । ନିଜେ ଅବିଶେଷ ଅଥଚ ବିଶେଷର ଆଶ୍ରୟରେ ଯେ ପ୍ରଧାନ ତାହାର ନାମ ପ୍ରକୃତି । ଏହି ପ୍ରଧାନ ତ୍ରିଗୁଣବିଶିଷ୍ଟ । ଉକ୍ତ ପ୍ରଧାନର କାର୍ଯ୍ୟସ୍ୱରୂପ ଚତୁର୍ବିଂଶତି ଗୁଣ ଅଛି । ଯଥା - ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ, ଏହି ପଞ୍ଚମହାଭୂତ; ଘ୍ରାଣ, ରସନା, ଚକ୍ଷୁ, ଶ୍ରୋତ୍ର ଓ ତ୍ୱକ୍ ଏହି ପଞ୍ଚ ଜ୍ଞାନେନ୍ଦ୍ରିୟ; ଶବ୍ଦ ସ୍ପର୍ଶ ରୂପ, ରସ ଓ ଗନ୍ଧ, ଏହି ପଞ୍ଚତନ୍ମାତ; ବାକ୍, ପାଣି, ପାଦ, ବାୟୁ ଉପସ୍ଥ ଏହି ପଞ୍ଚକର୍ମେନ୍ଦ୍ରିୟ ମନଃ, ବୁଦ୍ଧି, ଅହଂକାର ଓ ଚିତ୍ତ ଏହି ଚାରି ଅନ୍ତରିନ୍ଦ୍ରିୟ । ଅନ୍ତଃକରଣ ହିଁ ଅନ୍ତରିନ୍ଦ୍ରିୟ । ତାହା ବୃତ୍ତି ଭେଦରେ ମନଃ, ବୁଦ୍ଧି, ଅହଂକାର, ଚିତ୍ତ ଏହି ଚାରି ଭାଗରେ ବିଭକ୍ତ । ଏହି ଚତୁର୍ବିଂଶତି ତତ୍ତ୍ୱ ସଗୁଣ ବ୍ରହ୍ମର ସନ୍ନିବେଶ ସ୍ଥାନ । ଏତଭିନ୍ନ କାଳ ପଞ୍ଚବିଂଶତି ତତ୍ତ୍ୱ । ନିଷ୍କାମ ଧର୍ମ, ନିର୍ମଳ ମନ, ଭକ୍ତିଯୋଗ, ତତ୍ତ୍ୱଦର୍ଶୀ ଜ୍ଞାନ, ପ୍ରବଳ ବୈରାଗ୍ୟ, ତପୋଯୁକ୍ତ ଯୋଗ ଏବଂ ଦୃଢ଼ତର ଆତ୍ମସମାଧିରୁ ପୁରୁଷର ପ୍ରକୃତି କ୍ରମେ କ୍ରମେ ଜ୍ୱଳନ୍ତ କାଷ୍ଠ ପରି ଜଳି ଶେଷରେ ତିରୋହିତ ହୁଏ । ପୁରୁଷର ପ୍ରକୃତି ଏହିପରି ଥରେ ତିରୋହିତ ହେଲେ ଆଉଥରେ ହୁଏ ନାହିଁ । ସେତେବେଳେ ପୁରୁଷ ବୋଧକରେଏହାର ଭୋଗ ଶେଷ ହୋଇଅଛି । ପୁରୁଷ ଜନ୍ମଜନ୍ମାନ୍ତରରେ ଅଧ୍ୟାତ୍ମରତ ହୋଇ ଯେତେବେଳେ ତାହାର ବ୍ରହ୍ମଲୋକ ପ୍ରାପ୍ତି ବିଷୟରେ ବୈରାଗ୍ୟ ଉଦୟ ହୁଏ ଏବଂ ଭଗବାନଙ୍କ ପ୍ରତି ଐକାନ୍ତିକ ଭକ୍ତିମାନ ହୋଇ ଆତ୍ମତତ୍ତ୍ୱ ଜାଣିପାରେ ସେତେବେଳେ ତାହାର ଲିଙ୍ଗ ଶରୀର ନଷ୍ଟ ହୋଇଯାଇ ସେ କୈବଲ୍ୟ ଧାମରେ ଦେହାତିରିକ୍ତ ସଦାଶୟ ସ୍ୱରୂପ ପରମାନନ୍ଦ

ଲାଭକରେ । ସେହି ଆନନ୍ଦର ଶେଷ ନାହିଁ । ଆତ୍ମଜ୍ଞାନ ବଳରୁ ମିଥ୍ୟାଜ୍ଞାନ ସକଳ ନଷ୍ଟ ହୁଏ । ଏହା ଭାଗବତୋକ୍ତ କପିଳ ମତ ।

## ସାଂଖ୍ୟ ଶବ୍ଦର ବ୍ୟୁତ୍ପତ୍ତି

ସଂଖ୍ୟା, ସମ୍ୟକ୍‌ଜ୍ଞାନଂ ସା ଅସ୍ତ୍ୟତ୍ର ଇତି (ସଂଖ୍ୟା-ଅଣ୍) ଅଥବା- ସମ୍ୟକ୍ ଖ୍ୟାୟତେ ପ୍ରକାଶ୍ୟତେ ବସ୍ତୁତତ୍ତ୍ୱଂ ଅନୟା ଇତି ସଂଖ୍ୟା, ସମ୍ୟକଜ୍ଞାନଂ ତସ୍ୟାଂ ପ୍ରକାଶମାନଂ ଆତ୍ମତତ୍ତ୍ୱଂ ସାଂଖ୍ୟଂ । ସଂଖ୍ୟାଶବ୍ଦର ଅର୍ଥ ସମ୍ୟକ୍ ଜ୍ଞାନ । ଏହା ଏହି ଶାସ୍ତ୍ରରେ ଅଛି ବୋଲି ଏହାର ନାମ ସାଂଖ୍ୟ । ଅଥବା ଯାହାଦ୍ୱାରା ବସ୍ତୁତତ୍ତ୍ୱସମୂହ ସମ୍ୟକ୍ ରୂପେ ପ୍ରକାଶିତ ହୁଏ ତାହାକୁ ସଂଖ୍ୟା କହି । ଏହାର ମଧ୍ୟ ସମ୍ୟକ୍ ଜ୍ଞାନ ଅର୍ଥ, ଏହି ଜ୍ଞାନର ପ୍ରକାଶମାନ ଆତ୍ମତତ୍ତ୍ୱକୁ ସାଂଖ୍ୟ କୁହାଯାଏ । ଏହା ଷଟ୍ ଦର୍ଶନାନ୍ତର୍ଗତ ଶାସ୍ତ୍ର ବିଶେଷ ।

ଏହି ଦର୍ଶନରେ ଭାଷ୍ୟକାର ବିଜ୍ଞାନଭିକ୍ଷୁ ଏହିପରି ବ୍ୟୁତ୍ପତ୍ତି କରିଅଛନ୍ତି । ଯଥା-

ସଂଖ୍ୟାଂ ପ୍ରକୁର୍ବତେ ଚୈବ ପ୍ରକୃତିଞ୍ଚ ପ୍ରଚକ୍ଷତେ
ତତ୍ତ୍ୱାନି ଚ ଚତୁର୍ବିଂଶତ୍ ତେନ ସାଂଖ୍ୟାଃ ପ୍ରକୀର୍ତ୍ତିତାଃ ।
ସଂଖ୍ୟା ସମ୍ୟକ୍ ବିବେକେନ ଆତ୍ମତତ୍ତ୍ୱ କଥନଂ
ଅତଃ ସାଂଖ୍ୟଶବ୍ଦସ୍ୟ ଯୋଗରୂଢ଼ତୟା ତତ୍କାରଣଂ ସାଂଖ୍ୟଯୋଗଂ ।

(ସାଂଖ୍ୟଭାଷ୍ୟ)

ଅର୍ଥାତ୍ ଯହିଁରେ ସଂଖ୍ୟା, ପ୍ରକୃତି ଏବଂ ଚତୁର୍ବିଂଶତି ତତ୍ତ୍ୱ ବିଶଦୀକୃତ ତାହାକୁ ସାଂଖ୍ୟ କୁହାଯାଏ । ପରମ ଜ୍ଞାନୀ କପିଳ ଜୀବର ଦୁଃଖ ବିମୋଚନ ସକାଶେ ଏହି ଦର୍ଶନର ଉପଦେଶ ଦେଇଅଛନ୍ତି । ସେ ଯେଉଁ ସାଂଖ୍ୟର ଉପଦେଶ ଦେଇଅଛନ୍ତି ତାହାର ନାମ ''ତତ୍ତ୍ୱସମାସ'', ଏହା ଅତି ସଂକ୍ଷିପ୍ତ ।

ଏତତ୍ପବିତ୍ରମଗ୍ର୍ୟଂ ମୁନିରାସୁରୟେଽନୁକମ୍ପୟା ପ୍ରଦଦୌ
ଆସୁରିରପି ପଞ୍ଚଶିଖାୟ ତେନ ଚ ବହୁଧାକୃତଂ ତନ୍ତ୍ରଂ । (ସାଂଖ୍ୟକାରିକା)

ମହର୍ଷି କପିଳ ଏହି ପବିତ୍ର ଜ୍ଞାନ ପ୍ରଥମରେ ଆସୁରିଙ୍କୁ ଦେଲେ; ଆସୁରି ପଞ୍ଚଶିଖଙ୍କୁ ଦେଲେ; ପଞ୍ଚଶିଖ ଏହି ଜ୍ଞାନ ପ୍ରଚାର କଲେ । ଏହି ତତ୍ତ୍ୱସମାସ ନାମକ ଗ୍ରନ୍ଥ କାଳକ୍ରମେ ବିଲୁପ୍ତ ହୋଇଥିବା କଥା ବିଜ୍ଞାନଭିକ୍ଷୁ କହିଅଛନ୍ତି । ଯଥା-

କାଳାର୍କଭକ୍ଷିତଂ ସାଂଖ୍ୟଶାସ୍ତ୍ରଂ ଜ୍ଞାନସୁଧାକରଂ ।
କଳାବଶିଷ୍ଟଂ ଭୂୟୋଽପି ପୂରୟିଷ୍ୟେ ବଚୋଽମୃତୈଃ । (ସାଂଖ୍ୟଭାଷ୍ୟ)

କାଳରୂପ ଅର୍କକର୍ତ୍ତୃକ ଜ୍ଞାନସୁଧାକର ସାଂଖ୍ୟଶାସ୍ତ୍ର ଭକ୍ଷିତ ହୋଇ ଯେଉଁ କଳାମାତ୍ର ଅବଶିଷ୍ଟ ଥିଲା ତାହା ବାକ୍ୟାମୃତଦ୍ୱାରା ପୂରଣ କରିବି । ଏତଦ୍ଦ୍ୱାରା ସ୍ପଷ୍ଟ ହେଉଅଛି ଯେ କାଳକ୍ରମେ

ସାଂଖ୍ୟଶାସ୍ତ୍ରର ବିଲୁପ୍ତି ପରେ ଈଶ୍ୱରକୃଷ୍ଣ ଏହି ଜ୍ଞାନ ଅବଲମ୍ବନ କରି ଶ୍ଳୋକାକାରେ ସାଂଖ୍ୟକାରିକା ପ୍ରଣୟନ କରିଅଛନ୍ତି । ଏହା ଅତି ପ୍ରାମାଣିକ ପ୍ରାଚୀନ ଗ୍ରନ୍ଥ । ଏଥିରେ ବାସ୍ତୋରି ଗୋଟି କାରିକା ଅଛି । କପିଳକୃତ 'ତତ୍ତ୍ୱ ସମାସ' ନାମକ ଗ୍ରନ୍ଥର ବିସ୍ତୃତ ସୂତ୍ର ପଞ୍ଚଶିଖ ପ୍ରଣୀତ । ବିଜ୍ଞାନଭିକ୍ଷୁ ତାହାର ଭାଷ୍ୟ ପ୍ରଣୟନ କରିଅଛନ୍ତି । ବାଚସ୍ପତି ମିଶ୍ର ଈଶ୍ୱରକୃଷ୍ଣକୃତ ସାଂଖ୍ୟ କାରିକାର ଟୀକା କରି "ସାଂଖ୍ୟତତ୍ତ୍ୱ କୌମୁଦୀ" ନାମ ଦେଇଅଛନ୍ତି । ଏହି ସାଂଖ୍ୟ ଦର୍ଶନ ଛ ଅଧ୍ୟାୟରେ ବିଭକ୍ତ । ଏଥିରେ ୪୫୬ ଗୋଟି ସୂତ୍ର ଅଛି । ବିଜ୍ଞାନଭିକ୍ଷୁ ଲେଖିଅଛନ୍ତି ଆୟୁର୍ବେଦ ଶାସ୍ତ୍ର ଯେପରି ରୋଗ, ଆରୋଗ୍ୟ, ରୋଗନିଦାନ ଓ ଭୈଷଜ୍ୟ ଏହି ଚାରୋଟି ବ୍ୟୂହବିଶିଷ୍ଟ ତଦ୍ରୂପ ସାଂଖ୍ୟ ଶାସ୍ତ୍ର ମଧ୍ୟ ହେୟ, ହାନ, ହେୟ ହେତୁ ଓ ହାଦୋପାୟ ଏହି ଚାରି ବ୍ୟୂହବିଶିଷ୍ଟ ।

ତତ୍ର ତ୍ରିବିଧଂ ଦୁଃଖଂ ହେୟଂ ତଦତ୍ୟନ୍ତ ନିବୃତ୍ତିର୍ହାନଂ ।
ପ୍ରକୃତିପୁରୁଷ ସଂଯୋଗଦ୍ୱାରା ଚାବିବେକୋ ହେୟ ହେତୁଃ
ବିବେକ ଖ୍ୟାତିସ୍ତୁ ହାନୋପାୟଃ (ସାଂଖ୍ୟ ପ୍ରବଚନ ଭାଷ୍ୟ)

ଆଧ୍ୟାତ୍ମିକ, ଆଧିଭୌତିକ ଏବଂ ଆଧିଦୈବିକ ଏହି ତ୍ରିବିଧ ଦୁଃଖ ହେୟ । ଏହି ଦୁଃଖତ୍ରୟ ହାନ ଯୋଗ୍ୟ ଅର୍ଥାତ୍ ପରିତ୍ୟାଗ ଯୋଗ୍ୟ । ଅତଏବ ଏହାକୁ ହେୟ କହନ୍ତି । ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତିର ନାମ ହାନ । ପ୍ରକୃତି ଓ ପୁରୁଷର ଅବିବେକ ବା ଅଭେଦ ଜ୍ଞାନ ହେୟର ହେତୁ । ବିବେକ ଜ୍ଞାନ ହିଁ ହାନୋପାୟ । ଏହି ଜ୍ଞାନଦ୍ୱାରା ତ୍ରିବିଧ ଦୁଃଖର ଅତ୍ୟନ୍ତ ନିବୃତ୍ତି ହୁଏ ।

**ଦୁଃଖତ୍ରୟର ବିବରଣ:** ରୋଗାଦିଜନିତ ଦୁଃଖକୁ ଆଧ୍ୟାତ୍ମିକ ଦୁଃଖ, ଗ୍ରହ ପିଶାଚାଦି ପ୍ରଭାବଜନିତ ଦୁଃଖକୁ ଆଧିଦୈବିକ ଦୁଃଖ ଏବଂ ଶ୍ୱାନସର୍ପବ୍ୟାଘ୍ରାଦି ଭୂତନିବହ କର୍ତ୍ତୃକ ଜନିତ ଦୁଃଖକୁ ଆଧିଭୌତିକ ଦୁଃଖ କୁହାଯାଏ ।

ସାଂଖ୍ୟଦର୍ଶନର ପ୍ରଥମାଧ୍ୟାୟରେ ହେୟ, ହାନ,ହେୟହେତୁ ଓ ହାନୋପାୟ, ଦ୍ୱିତୀୟାଧ୍ୟାୟରେ ପ୍ରକୃତିର ସୂକ୍ଷ୍ମକାର୍ଯ୍ୟ, ତୃତୀୟୋଧ୍ୟାୟରେ ପ୍ରକୃତିର ସ୍ଥୂଳକାର୍ଯ୍ୟ, ଲିଙ୍ଗଶରୀର, ସ୍ଥୂଳଶରୀର, ଅପରବୈରାଗ୍ୟ ଓ ପରିବୈରାଗ୍ୟ, ଚତୁର୍ଥ ଅଧ୍ୟାୟରେ ଶାସ୍ତ୍ରପ୍ରସିଦ୍ଧ କତିପୟ ଆଖ୍ୟାୟିକା ବର୍ଣ୍ଣନପୂର୍ବକ ପ୍ରକାରାନ୍ତରେ ବିବେକ ଜ୍ଞାନ ସାଧନର ଉପଦେଶ, ପଞ୍ଚମ ଅଧ୍ୟାୟରେ ପରପକ୍ଷ ନିରସନ ଅର୍ଥାତ୍ ସ୍ୱସିଦ୍ଧାନ୍ତରେ ବାଦୀ ପ୍ରଦର୍ଶିତ ଦୋଷର ନିରସନ ଓ ବାଦୀର ମତ ଖଣ୍ଡନ ଏବଂ ଷଷ୍ଠ ଅଧ୍ୟାୟରେ ବିସ୍ତୃତ ଭାବେ ଶାସ୍ତ୍ରଗତ ମୁଖ୍ୟ ବିଷୟର ବ୍ୟାଖ୍ୟା ଓ ଶାସ୍ତ୍ରାର୍ଥର ଉପସଂହାର ବର୍ଣ୍ଣିତ ହୋଇଅଛି । ସାଂଖ୍ୟ ଦର୍ଶନରେ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକୃତ ହୋଇନାହିଁ । ସେଥିପାଇଁ ଏହାର ନାମ ନିରୀଶ୍ୱର ସାଂଖ୍ୟ । ଶଙ୍କରାଚାର୍ଯ୍ୟ ସାଂଖ୍ୟକୁ ନିରୀଶ୍ୱର ଓ ସେଶ୍ୱର ଏହି ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ତାହାଙ୍କ ମତରେ କପିଳ ପ୍ରଣୀତ ଶାସ୍ତ୍ର ନିରୀଶ୍ୱର ସାଂଖ୍ୟ ଏବଂ ପତଞ୍ଜଳି ପ୍ରଣୀତ ଶାସ୍ତ୍ର ସେଶ୍ୱର ସାଂଖ୍ୟ ।

ସାଂଖ୍ୟଶାସ୍ତ୍ରଂ ଦ୍ୱିଧାଭୂତଂ ସେଶ୍ୱରଞ୍ଚ ନିରୀଶ୍ୱରଂ
ଚକ୍ରେ ନିରୀଶ୍ୱରଂ ସାଂଖ୍ୟଂ କପିଲୋଽନ୍ୟତ୍ ପତଞ୍ଜଳିଃ ।
କପିଲୋ ବାସୁଦେବଃ ସ୍ୟାଦନନ୍ତଃସ୍ୟାତ୍ ପତଞ୍ଜଳିଃ
ଜ୍ଞାନେନ ମୁକ୍ତିଂ କପିଲୋ ଯୋଗେନାହ ପତଞ୍ଜଳିଃ । (ସର୍ବସିଦ୍ଧାନ୍ତରତ୍ନ)

କପିଳ ସ୍ୱୟଂ ବାସୁଦେବ ଏବଂ ପତଞ୍ଜଳି ଅନନ୍ତରୂପ । କପିଳଙ୍କ ମତରେ ଜ୍ଞାନଦ୍ୱାରା ମୁକ୍ତି ଏବଂ ପତଞ୍ଜଳିଙ୍କ ମତରେ ଯୋଗପ୍ରଭାବରେ ମୁକ୍ତି ପ୍ରାପ୍ତ ହୁଏ ।

ଶଙ୍କରାଚାର୍ଯ୍ୟ ଲେଖିଅଛନ୍ତି ଯୋଗୀଗଣ କାପିଳୀୟ ତତ୍ତ୍ୱଜ୍ଞାନ ନିମନ୍ତେ ପ୍ରସ୍ତୁତ ହେବେ । ଏ ହେତୁ ଶ୍ରୁତି, ସ୍ମୃତି, ଇତିହାସ, ପୁରାଣ ଓ ଭାରତ ଏପରିକି ଆଗମାଦିରେ ମଧ୍ୟ ସ୍ପଷ୍ଟ ସାଂଖ୍ୟ ମତ ଦୃଷ୍ଟ ହୁଏ । ଯଥା -

ଯୋଗୀ କପିଳ ପକ୍ଷୋକ୍ତଂ ତତ୍ତ୍ୱଜ୍ଞାନମପେକ୍ଷତେ ।
ଶ୍ରୁତିସ୍ମୃତୀତିହାସେଷୁ ପୁରାଣେ ଭାରତାଦିକେ
ସାଂଖ୍ୟୋକ୍ତଂ ଦୃଶ୍ୟତେ ସ୍ପଷ୍ଟଂ ତଥା ଚୈବାଗମାଦିଷୁ ।

ଶ୍ରୀମଦ୍‌ଭାଗବତରେ ଉକ୍ତ ହୋଇଅଛି, ''ନୈବସାଂଖ୍ୟାତ୍‌ପରଂ ଜ୍ଞାନଂ'' ଜ୍ଞାନ ଲାଭ ପାଇଁ ସାଂଖ୍ୟ ଅପେକ୍ଷା ଆଉ ଉତ୍କୃଷ୍ଟ ଶାସ୍ତ୍ର ନାହିଁ । ସୁପ୍ରସିଦ୍ଧ ରାଜନୀତିଜ୍ଞ ଚାଣକ୍ୟ ଅର୍ଥ ଶାସ୍ତ୍ରରେ ଯୋଗ ଓ ସାଂଖ୍ୟ ଏ ଦୁହିଙ୍କୁ ଆନ୍ୱିକ୍ଷିକୀ ବିଦ୍ୟା ମଧ୍ୟରେ ପରିଗଣିତ କରିଅଛନ୍ତି । ଯଥା :-

''ସାଂଖ୍ୟଯୋଗୌଲୋକାୟତଞ୍ଚେତ୍ୟାନ୍ୱିକ୍ଷିକୀ ।''

## ନିରୀଶ୍ୱର ସାଂଖ୍ୟର ଆଲୋଚନା

ସାଂଖ୍ୟ ସୂତ୍ର, ବିଜ୍ଞାନଭିକ୍ଷୁ ଭାଷ୍ୟ, ଈଶ୍ୱରକୃଷ୍ଣକୃତ କାରିକା ଓ ତତ୍ତ୍ୱକୌମୁଦୀ ଏ ସକଳ ଗ୍ରନ୍ଥ ବିଶେଷ ଭାବରେ ଆଲୋଚନା କଲେ ଜଣାଯାଏ ଯେ, ତତ୍ତ୍ୱକୌମୁଦୀରେ ଈଶ୍ୱର ଅଙ୍ଗୀକୃତ ହୋଇନାହାନ୍ତି କିନ୍ତୁ ବିଜ୍ଞାନଭିକ୍ଷୁ ପ୍ରକାରାନ୍ତରେ ଈଶ୍ୱର ସ୍ୱୀକାର କରିଅଛନ୍ତି । ସେ କହିଛନ୍ତି ସୂତ୍ରକାର ଅଭ୍ୟୁପଗମବାଦ ଅବଲମ୍ବନ କରି ଈଶ୍ୱର ପ୍ରତ୍ୟାଖ୍ୟାନ କରିଅଛନ୍ତି । ସୂତ୍ରକାରଙ୍କର ଅଭିପ୍ରାୟ ଏହି ଯେ ଯଦି ବିଚାରଦ୍ୱାରା ଈଶ୍ୱର ସିଦ୍ଧ ହୁଅନ୍ତି ନାହିଁ, ଏବଂ ବିବେକ ସାକ୍ଷାତ୍‌କାର ହେଲେ ମୋକ୍ଷ ପ୍ରାପ୍ତିରେ କୌଣସି ବାଧା ଘଟିପାରେ ନାହିଁ ତେବେ ବିଚାର ସ୍ଥଳେ ଈଶ୍ୱରଙ୍କର ଅସ୍ତିତ୍ୱ ନ ମାନିଲେ କ୍ଷତି କ'ଣ ? କାରଣ ଜୀବର ପ୍ରୟୋଜନ ମୁକ୍ତି । ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ନକଲେ ବିବେକ ସାକ୍ଷାତ୍‌କାରଦ୍ୱାରା ଯଦି ମୁକ୍ତି ହେବ ତେବେ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ବା ଅସ୍ୱୀକାର କଲେ ଲାଭ ବା କ୍ଷତି କ'ଣ?

ବିଜ୍ଞାନଭିକ୍ଷୁ ଯେ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରନ୍ତି ନାହିଁ ତାହା ନୁହେଁ, ତେବେ ସେ କହିଛନ୍ତି ଈଶ୍ୱରଙ୍କ ଅସ୍ତିତ୍ୱ ପ୍ରମାଣିତ ହୋଇପାରେ ନାହିଁ, କାରଣ ସେ ଅପ୍ରମେୟ ।

''ଈଶ୍ୱରାସିଦ୍ଧେଃ'' ଏହି ସୂତ୍ରଦ୍ୱାରା ଈଶ୍ୱର ସିଦ୍ଧି ହୁଅନ୍ତି ନାହିଁ । ଯଦି ଈଶ୍ୱର ନାହାନ୍ତି ଏହା ତାହାଙ୍କର ମତ ହୋଇଥା'ନ୍ତା ତେବେ ସେ ''ଈଶ୍ୱରାସିଦ୍ଧେଃ'' ଏହି ସୂତ୍ରର ପରିବର୍ତ୍ତେ ''ଈଶ୍ୱରାଭାବାତ୍'' ଏହିରୂପ ସୂତ୍ର ପ୍ରଣୟନ କରି ନଥା'ନ୍ତେ କି ? ପୁଣି ସେ କହିଛନ୍ତି, ''ଈଶ୍ୱରୋ ହି ଦୁର୍ଜ୍ଞେୟ ଇତି ନିରୀଶ୍ୱରତ୍ୱଂ'' (ବିଜ୍ଞାନଭିକ୍ଷୁ) । ଈଶ୍ୱର ଦୁର୍ଜ୍ଞେୟ, ଏ ହେତୁ ନିରୀଶ୍ୱରତ୍ୱ ଅଭିହିତ ହୋଇଅଛି । ଯାହା ପ୍ରୟୋଜନ ତାହା ଯଦି ସିଦ୍ଧ ହୁଏ ତେବେ ଅନ୍ୟ ବିଷୟ ନେଇ ବିଶେଷ ରୂପେ ଆଲୋଚନା କରିବା ବୃଥା । ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର ନକଲେ ଯଦି ମୁକ୍ତିର କୌଣସି ପ୍ରତିବନ୍ଧକ ନାହିଁ ତେବେ ସେଶ୍ୱର ଓ ନିରୀଶ୍ୱର ବାଦକୁ ନେଇ ବାଗବିତଣ୍ଡା କରିବା ନିଷ୍ପ୍ରୟୋଜନ ମାତ୍ର । ତାହାଙ୍କର ଏହି ସକଳ ବାକ୍ୟଦ୍ୱାରା ସ୍ପଷ୍ଟ ବୁଝାଯାଏ ଯେ ସେ ପ୍ରକାରାନ୍ତରେ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରିଅଛନ୍ତି ।

ସାଂଖ୍ୟ ସୂତ୍ର ବିଶେଷ ରୂପେ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ, ସେ ''ଈଶ୍ୱରାସିଦ୍ଧେଃ'' ଏହି ସୂତ୍ରଦ୍ୱାରା କେବଳ ଈଶ୍ୱରଙ୍କର ଅସ୍ତିତ୍ୱ ସ୍ୱୀକାର କରିନାହାନ୍ତି ତାହା ନୁହେଁ, ଆଉ କେତେଗୁଡ଼ିଏ ସୂତ୍ରଦ୍ୱାରା ନିରୀଶ୍ୱରତ୍ୱ ପ୍ରତିପାଦନ କରିଅଛନ୍ତି । ''ପ୍ରମାଣାଭାବାନ୍ନ ତତ୍ ସିଦ୍ଧେଃ'' (ସାଂଖ୍ୟ ସୂତ୍ର) । ପ୍ରମାଣ ଅଭାବରୁ ତାହା ସିଦ୍ଧ ହୁଏ ନାହିଁ । ପ୍ରମାଣ ନାହିଁ ବୋଲି ଈଶ୍ୱରଙ୍କର ଅସ୍ତିତ୍ୱ ସିଦ୍ଧ ହୁଏ ନାହିଁ ।

ସାଂଖ୍ୟ ମତରେ ପ୍ରମାଣ ତିନିପ୍ରକାର - ପ୍ରତ୍ୟକ୍ଷ, ଅନୁମାନ ଓ ଶବ୍ଦ । ଏହି ତିନିପ୍ରକାର ପ୍ରମାଣଦ୍ୱାରା ଈଶ୍ୱରଙ୍କର ଅସ୍ତିତ୍ୱ ସିଦ୍ଧ କରାଯାଇପାରେ ନାହିଁ । ଯେହେତୁ ଈଶ୍ୱର ପ୍ରତ୍ୟକ୍ଷ ସିଦ୍ଧ ନୁହନ୍ତି ଅର୍ଥାତ୍ ପ୍ରତ୍ୟକ୍ଷ ପ୍ରମାଣଦ୍ୱାରା କୌଣସି ରୂପେ ଈଶ୍ୱର ସିଦ୍ଧ ହୁଏନାହିଁ । ଯେ ସ୍ଥଳେ ପ୍ରତ୍ୟକ୍ଷଦ୍ୱାରା ସିଦ୍ଧ ହୁଏ ନାହିଁ ସେଠାରେ ଅନୁମାନ ପ୍ରୟୋଗ କରିବାକୁ ହୁଏ କିନ୍ତୁ ଅନୁମାନଦ୍ୱାରା ଈଶ୍ୱରସିଦ୍ଧ କରାଯାଇପାରେ ନାହିଁ । ''ସମ୍ବନ୍ଧାଭାବାନ୍ନାନୁମାନଂ'' (ସାଂଖ୍ୟ ସୂତ୍ର) । କୌଣସି ବସ୍ତୁ ସହିତ ଯଦି ଅନ୍ୟ କୌଣସି ବସ୍ତୁର ନିତ୍ୟ ସମ୍ବନ୍ଧ ଥାଏ ତାହାହେଲେ ଉକ୍ତ ବସ୍ତୁଦ୍ୱୟ ମଧ୍ୟରୁ ଗୋଟିକୁ ଦେଖିଲେ ଅପର ବସ୍ତୁର ଅସ୍ତିତ୍ୱ ଅନୁମାନ କରାଯାଇପାରେ । ଏହି ନିତ୍ୟ ସମ୍ବନ୍ଧ ବା ବ୍ୟାପ୍ତି ଏକମାତ୍ର ଅନୁମାନର କାରଣ । ଯେଉଁଠାରେଏହି ସମ୍ବନ୍ଧ ନାହିଁ ସେଠାରେ ପଦାର୍ଥାନ୍ତର ଅନୁମିତ ହୋଇ ନପାରେ । ଏ ସ୍ଥଳରେ ଜଗତର କେଉଁ ପଦାର୍ଥ ସହିତ ଈଶ୍ୱରଙ୍କର ଅସ୍ତିତ୍ୱ ଅନୁମାନ କରାଯିବ?

**ତୃତୀୟ ପ୍ରମାଣ ଶବ୍ଦ :** ଆପ୍ତବାକ୍ୟକୁ ଶବ୍ଦ ପ୍ରମାଣ କହି । ବେଦ ହିଁ ଆପ୍ତୋପଦେଶ । ବେଦରେ ଈଶ୍ୱରଙ୍କର କୌଣସି ପ୍ରସଙ୍ଗ ନାହିଁ ବରଂ ବେଦରେ ପ୍ରତିପାଦିତ ହୋଇଅଛି ଯେ ସୃଷ୍ଟି ପ୍ରକୃତିର କ୍ରିୟା, ଈଶ୍ୱରଙ୍କର ନୁହେଁ, ''ଶ୍ରୁତିରପି ପ୍ରଧାନ କାର୍ଯ୍ୟତ୍ୱସ୍ୟ'' (ସାଂଖ୍ୟସୂତ୍ର) । ବେଦରେ ଈଶ୍ୱରଙ୍କର ଯେଉଁ ସକଳ ବିଷୟର ଉଲ୍ଲେଖ ଅଛି ତାହା ମୁକ୍ତାତ୍ମାର ପ୍ରଶଂସା ବା ସିଦ୍ଧିର ଉପାସନା । ସୁତରାଂ ଶବ୍ଦ ପ୍ରମାଣଦ୍ୱାରା ଈଶ୍ୱର ସିଦ୍ଧ ହୁଏ ନାହିଁ । ଈଶ୍ୱରଙ୍କର ଅସ୍ତିତ୍ୱରେ ପ୍ରମାଣ ଅସ୍ୱୀକାର କରି ସେ ଏହି ରୂପ ପ୍ରତିପାଦନ କରିଅଛନ୍ତି ।

## ଈଶ୍ୱରଙ୍କର ଅସ୍ତିତ୍ୱ ଅଭାବ ସମ୍ବନ୍ଧେ ଅନ୍ୟବିଧ ଯୁକ୍ତି

ଈଶ୍ୱରଙ୍କର ଲକ୍ଷଣ କ'ଣ? ଯେ ସୃଷ୍ଟିକର୍ତ୍ତା ବା ପାପ ଓ ପୁଣ୍ୟର ଫଳ ବିଧାତା ସେ ବଦ୍ଧ ବା ମୁକ୍ତ ? ଯଦି ମୁକ୍ତ ବୋଲ ତାହାହେଲେ ତାହାର ସୃଷ୍ଟି କାର୍ଯ୍ୟରେ ପ୍ରବୃତ୍ତି ହୋଇ ପାରିବ ନାହିଁ । ଯଦି ବଦ୍ଧ ବୋଲ ତାହାହେଲେ ତାଙ୍କ ପକ୍ଷରେ ଅନନ୍ତ ଜ୍ଞାନ ଓ ଅନନ୍ତ ଶକ୍ତି ଅସମ୍ଭବ । ଅତଏବ ଜଣେ ଯେ ସୃଷ୍ଟିକର୍ତ୍ତା ଅଛି ତାହା ଅସମ୍ଭବ ।

''ମୁକ୍ତବଦ୍ଧୟୋର ନ୍ୟତରାଭାବାନ୍ନତତ୍ସିଦ୍ଧିଃ । ଉଭୟଥାପ୍ୟ ସତ୍କରତ୍ତ୍ୱଂ''

(ସାଂଖ୍ୟ ସୂତ୍ର)

ଯଦି ବୋଲ ଈଶ୍ୱର ପାପ ଓ ପୁଣ୍ୟର ଦଣ୍ଡ ବିଧାତା- ତାହାହେଲେ ତାହାଙ୍କୁ କର୍ମାନୁସାରେ ଫଳ ବିଧାନ କରିବାକୁ ହେବ । ଯଦି ସେ ତାହା ନକରି ନିଜ ଇଚ୍ଛାନୁସାରେ ଫଳ ବିଧାନ କରନ୍ତି, ତାହାହେଲେ ତାହାଙ୍କର ଏହା ନିଜ ଉପକାର ସକାଶେ କରା ଯାଉଥିବା ସମ୍ଭବପର ବୋଲି ଧରାଯିବ ଏବଂ ସେ ସାମାନ୍ୟ ଲୌକିକ ରାଜା ପରି ନିଜର ଉପକାରେଲିପ୍ସୁ ଓ ସୁଖିଦୁଃଖିର ଅଧୀନ ବୋଲି ବୁଝିବାକୁ ହେବ । ଯଦି ତାହା ନ କହି କର୍ମାନୁଯାୟୀ ଫଳ ବିଧାତା କୁହାଯାଏ ତାହାହେଲେ କର୍ମହିଁ ଫଳ ବିଧାନର କାରଣ ବୋଲି ନିର୍ଣ୍ଣୟ ନକରି ଫଳ ନିଷ୍ପତ୍ତି ସକାଶେ ଆଉ ଗୋଟିଏ କର୍ମ ଉପରେ ଈଶ୍ୱରାନୁମାନର ପ୍ରୟୋଜନ କ'ଣ ?

ଅନ୍ୟାନ୍ୟ ଦର୍ଶନଶାସ୍ତ୍ର ପରି ସାଂଖ୍ୟ ଦର୍ଶନର ମଧ୍ୟ ଚରମ ଲକ୍ଷ୍ୟ ମୁକ୍ତି । କପିଳ ମହର୍ଷି ଏହି ଦର୍ଶନ ପ୍ରାରମ୍ଭରେ ଉକ୍ତ ଉଦ୍ଦେଶ୍ୟ ବ୍ୟକ୍ତ କରିଅଛନ୍ତି, ''ଅଥ ତ୍ରିବିଧ ଦୁଃଖାତ୍ୟନ୍ତ ନିବୃତ୍ତିରତ୍ୟନ୍ତ ପୁରୁଷାର୍ଥଃ'' । ଦୁଃଖତ୍ରୟର ଅତ୍ୟନ୍ତ ନିବୃତ୍ତିର ନାମ ପରମ ପୁରୁଷାର୍ଥ, ତାହାହିଁ ମୁକ୍ତି । ଏହି ଦୁଃଖ ନିବୃତ୍ତିର ଏକମାତ୍ର ଉପାୟ ବିବେକ ଜ୍ଞାନ । ପ୍ରକୃତି ଓ ତତ୍କାର୍ଯ୍ୟ ବୁଦ୍ଧ୍ୟାଦିଠାରୁ ପୁରୁଷ ପୃଥକ୍; ଏହି ଜ୍ଞାନକୁ ବିବେକଜ୍ଞାନ କୁହାଯାଏ । ବିବେକଜ୍ଞାନ ପ୍ରକାଶ ପାଇଁ ଶାସ୍ତ୍ରର ପ୍ରୟୋଜନ ହୋଇଥାଏ ।

ଏହି ବିବେକଜ୍ଞାନ ସହଜସାଧ୍ୟ ନୁହେଁ । ଏହା ବହୁଜନ୍ମର ଆୟାସସାଧ୍ୟ ଅଭ୍ୟାସର ଫଳ ସ୍ୱରୂପ ଲାଭ ହୋଇଥାଏ । ଭଗବାନ୍ ଶ୍ରୀକୃଷ୍ଣ ଗୀତାରେ କହିଅଛନ୍ତି- ''ବହୂନାଂ ଜନ୍ମନାମନ୍ତେ ଜ୍ଞାନବାନ୍ ମାଂ ପ୍ରପଦ୍ୟତେ'' । ବହୁ ଜନ୍ମପରେ ଜ୍ଞାନବାନ୍ ବ୍ୟକ୍ତି ମୋତେ ପ୍ରାପ୍ତ ହୁଏ ।

ସାଂଖ୍ୟାଚାର୍ଯ୍ୟଗଣ କହନ୍ତି- ଜଗତରେ ଯଦି ଦୁଃଖ ନଥା'ନ୍ତା ତେବେ କେହିହେଲେ ଶାସ୍ତ୍ର ବିଷୟ ଜିଜ୍ଞାସାରେ ଶ୍ରଦ୍ଧାବାନ ହୁଅନ୍ତେ ନାହିଁ । ତତ୍ତ୍ୱକୌମୁଦୀରେ ଲେଖାଅଛି- ''ଏବଂ ହିଁ ଶାସ୍ତ୍ର ବିଷୟୋ ନ ଜିଜ୍ଞାସ୍ୟେ ଯଦି ଦୁଃଖ ନାମ ଜଗତି ନସ୍ୟାତ୍'' । ଉପରୋକ୍ତ ସୂତ୍ରର ତାତ୍ପର୍ଯ୍ୟ ଏହି ଯେ, ଦୁଃଖାନୁଭବ ହେଲେ ଦୁଃଖ ନିବାରଣର ଇଚ୍ଛା ଜନ୍ମିବ, ଦୁଃଖ ନିବାରଣେଚ୍ଛା ଜନ୍ମିଲେ ଦୁଃଖ ନିବାରଣରେ ପ୍ରବୃତ୍ତି ଜନ୍ମିବ, ଦୁଃଖ ନିବାରଣ ପ୍ରବୃତ୍ତି ଜନ୍ମିଲେ ଦୁଃଖ ନିବାରଣୋପାୟ

ଅନୁସନ୍ଧାନରୂପ ଶାସ୍ତ୍ରାଧ୍ୟୟନରେ ରତ ହେବ । ଶାସ୍ତ୍ରାଧ୍ୟୟନରୁ ଶାସ୍ତ୍ରୋପଦିଷ୍ଟ ବହୁ ଆୟାସସାଧ୍ୟ ବିବେକଜ୍ଞାନ ଜନ୍ମିଲେ ମିଥ୍ୟାଜ୍ଞାନ ନଷ୍ଟ ହୋଇ କ୍ରମଶଃ ଦୁଃଖନାଶ ହେବ ।

ଅନେକେ କହନ୍ତି ଲୌକିକ ଉପାୟଦ୍ୱାରା ଅନାୟାସରେ ଦୁଃଖର ନିବୃତ୍ତି ହୋଇପାରେ । ଯେପରି ଉପଯୁକ୍ତ ଚିକିତ୍ସକର ବ୍ୟବସ୍ଥା ଅନୁସାରେ ଉତ୍ତମ ଔଷଧ ସେବନ କଲେ ଶାରୀରିକ ଦୁଃଖ, ମନୋଜ୍ଞ ସ୍ତ୍ରୀ ପାନ ଭୋଜନାଦି ପ୍ରାପ୍ତିରେ ମାନସିକ ଦୁଃଖ, ନୀତିଶାସ୍ତ୍ରନିପୁଣତା ଏବଂ ନିରାପଦ ସ୍ଥାନରେ ଅବସ୍ଥିତିଦ୍ୱାରା ଆଧିଭୌତିକ ଦୁଃଖ ଏବଂ ମଣିମନ୍ତ୍ରାଦି ସାହାଯ୍ୟରେ ଆଧିଦୈବିକ ଦୁଃଖର ପ୍ରତିକାର ହୋଇପାରେ । ଇଦୃଶ ସହଜ ଉପାୟଦ୍ୱାରା ଯଦି ଦୁଃଖ ନିବୃତ୍ତି ହୁଅନ୍ତା ତେବେ ଅତି କଷ୍ଟସାଧ୍ୟ ଶାସ୍ତ୍ରୋପଦିଷ୍ଟ ବିବେକ ଜ୍ଞାନରେ ଲୋକଙ୍କର କାହିଁକି ପ୍ରବୃତ୍ତି ହେବ । ଗୋଟିଏ ପ୍ରବାଦ ଅଛି -

ଅର୍କ୍କେ ଚେନ୍ମଧୁ ବିନ୍ଦେତ କିମର୍ଥଂ ପର୍ବତଂ ବ୍ରଜେତ୍
ଦୃଷ୍ଟସ୍ୟାର୍ଥସ୍ୟ ସଂସିଦ୍ଧୌ କୋ ବିଦ୍ୱାନ୍ ଯତ୍ନମାଚରେତ୍ ।

ଘର କୋଣରେ ଯଦି ମଧୁ ପ୍ରାପ୍ତ ହୁଏ ତାହାହେଲେ ମଧୁ ଅନ୍ୱେଷଣ କରିବାପାଇଁ ପର୍ବତକୁ କାହିଁକି ଯିବ । ତାତ୍ପର୍ଯ୍ୟ ଏହି ଯେ, ଦୃଷ୍ଟ ସୁଖକର ଉପାୟ ଥିଲେ ଦୁଷ୍କର କାର୍ଯ୍ୟରେ କେହି କାହିଁକି ପ୍ରବୃତ୍ତ ହେବ । ଏହି ଆପତ୍ତି ଆପାତ ମନୋରମ ବୋଧହୁଏ । କିନ୍ତୁ ବିବେଚନା ସହକାରେ ଦେଖିଲେ ସହଜରେ ଏହାର ଅସାରତା ପ୍ରତିପନ୍ନ ହୁଏ । ପୂର୍ବୋକ୍ତ ଉପାୟଦ୍ୱାରା ଦୁଃଖର ନିବୃତ୍ତି ହେଲେ ମଧ୍ୟ ତାହା ଐକାନ୍ତିକ ବା ଅବ୍ୟଭିଚାରୀ ଉପାୟ ନୁହେଁ । ଏହି ଉପାୟଦ୍ୱାରା ତାତ୍କାଳିକ ଦୁଃଖର ନିବୃତ୍ତି ହେଲେ ସୁଦ୍ଧା କାଳାନ୍ତରେ ତଜ୍ଜାତୀୟ ଦୁଃଖର ପୁନରାବିର୍ଭାବ ହୋଇଥାଏ । ଯଥା - "ପ୍ରାତ୍ୟହିକ କ୍ଷୁତ୍‌ପ୍ରତିକାରବତ୍ ତତ୍‌ପ୍ରତିକାର ଚେଷ୍ଟନାତ୍ ପୁରୁଷାର୍ଥତ୍ୱଂ"; ପ୍ରତିଦିନ କ୍ଷୁଧାହେଲେ ଯେପରି ଭୋଜନଦ୍ୱାରା ତାହାର ସାମୟିକ ନିବୃତ୍ତି ହୋଇ ପୁନର୍ବାର କ୍ଷୁଧା ଜନ୍ମିଥାଏ ତଦ୍ରୂପ ଦୃଷ୍ଟ ସହଜ ଉପାୟଦ୍ୱାରା ଦୁଃଖର ପ୍ରତିକାର ହେଲେ ସୁଦ୍ଧା ପୁନର୍ବାର ଦୁଃଖୋତ୍ପତ୍ତି ହୁଏ । ଅତଏବ ଯେଉଁ ଉପାୟରେ ଦୁଃଖର ଚିର ନିବୃତ୍ତି ହେବ ସେହି ଉପାୟ ସର୍ବଥା ଅବଲମ୍ବନୀୟ । ବିବେକ ଜ୍ଞାନ ଦୁଃଖ ନିବୃତ୍ତିର ଏକମାତ୍ର ଉପାୟ ।

ଏହି ବିବେକ ଜ୍ଞାନଦ୍ୱାରା ଦୁଃଖର ଉଚ୍ଛେଦ ସାଧନ ହେଲେ ଆଉ ତାହାର ଆବୃତ୍ତି ହୁଏ ନାହିଁ । ଯେହେତୁ ମିଥ୍ୟାଜ୍ଞାନ ଦୁଃଖର ଆଦିକାରଣ; ବିବେକଜ୍ଞାନଦ୍ୱାରା ମିଥ୍ୟାଜ୍ଞାନ ସମୂଳେ ଉନ୍ମୂଳିତ ହେଲେ, ମିଥ୍ୟାଜ୍ଞାନ ରୂପ କାରଣ ଅଭାବରୁ ଦୁଃଖ ରୂପ କାର୍ଯ୍ୟର ଉତ୍ପତ୍ତି ହୁଏନାହିଁ । ବୃକ୍ଷ ଉତ୍ପାଟିତ ହେଲେ, କୌଣସି ବୁଦ୍ଧିମାନ୍ ବ୍ୟକ୍ତି ଫଳର ପ୍ରତ୍ୟାଶା କରେ ନାହିଁ ।

ଧରାଯାଉ ଦୃଷ୍ଟ ଉପାୟଦ୍ୱାରା ଦୁଃଖର ଏକାନ୍ତ ନିବୃତ୍ତି ହୁଏନାହିଁ; କିନ୍ତୁ ଆନୁଶ୍ରବିକ ଅର୍ଥାତ୍ ବୈଦିକ ଉପାୟରେ ଦୁଃଖର ଉପଶମ ହୋଇପାରେ । ସୁତରାଂ ଅତି କଷ୍ଟସାଧ୍ୟ ବିବେକଜ୍ଞାନ ଅପେକ୍ଷା ସହଜସାଧ୍ୟ ଯଜ୍ଞାଦିଦ୍ୱାରା ଅନାୟାସରେ ଦୁଃଖର ନିବୃତ୍ତି ହୋଇପାରେ ।

ଏ ସମ୍ବନ୍ଧେ ସାଂଖ୍ୟ ଶାସ୍ତ୍ର କହେ-ବୈଦିକ ଯଜ୍ଞାଦିଦ୍ୱାରାଏକାନ୍ତ ଦୁଃଖ ନିବୃତ୍ତି ହୁଏ ନାହିଁ । ଯଜ୍ଞାନୁଷ୍ଠାନଦ୍ୱାରା ସ୍ୱର୍ଗ ଲାଭ ହୁଏ ସତ୍ୟ, କିନ୍ତୁ ସ୍ୱର୍ଗ ଶବ୍ଦର ଅର୍ଥ ଦୁଃଖବିରୋଧୀ ସୁଖବିଶେଷ କେବଳ । ତଦ୍ଦ୍ୱାରା ଦୁଃଖନିବୃତ୍ତି ହୋଇପାରେ,ଅଥଚ ଅନେକ ଜନ୍ମ ପରମ୍ପରା ଆୟାସସାଧ୍ୟ ବିବେକଜ୍ଞାନ ଅପେକ୍ଷା ଅଳ୍ପକାଳସାଧ୍ୟ ଯଜ୍ଞାନୁଷ୍ଠାନଦ୍ୱାରା ଦୁଃଖର ଉଚ୍ଛେଦ ହେଲେ ମଧ୍ୟ ସମୂଳେ ଉଚ୍ଛେଦ ହୁଏ ନାହିଁ । ଯେହେତୁ ଯଜ୍ଞ ପଶୁ ବା ବୀଜାଦି ହିଂସା ଦୋଷଦୂଷିତ ହୋଇଥାଏ । ଯଦାଦି ହୋମ ମଧ୍ୟ ବୀଜ ହିଂସାପର ସୁତରାଂ ଯଜ୍ଞ ଦୂଷିତ ହିଂସାଜୁଷ୍ଟ ।

ସାଂଖ୍ୟାଚାର୍ଯ୍ୟଙ୍କ ମତରେ ବୈଧେୟ ହିଂସା ମଧ୍ୟ ବିଶେଷ ପାପଜନକ, ସୁତରାଂ ଦୁଃଖପ୍ରଦ । ଶ୍ରୁତି କହେ- ''ଅଗ୍ନି ସୋମୀୟଂପଶୁମାଲଭେତ'' । ଅଗ୍ନି ସୋମ ଯଜ୍ଞରେ ପଶୁହିଂସା କରିବ । ଅନ୍ୟତ୍ର ''ମା ହିଂସ୍ୟାତ୍ ସର୍ବଭୂତାନି'' । କୌଣସି ପ୍ରାଣୀର ହିଂସା କରିବା ନାହିଁ । ଏହି ନିଷେଧ ବିଧିର ତାତ୍ପର୍ଯ୍ୟ ହିଂସାଦ୍ୱାରା ପାପ ହୁଏ । ପୂର୍ବୋକ୍ତ ବାକ୍ୟରେ ପଶୁହିଂସା ପୁରୁଷର ପ୍ରତ୍ୟବାୟ କେବଳ । ତତ୍ତ୍ୱକୌମୁଦୀରେ ଲେଖାଅଛି - ଯଜ୍ଞ ଅବଶ୍ୟ ପୁଣ୍ୟଜନକ ତଥାପି ପୁଣ୍ୟ ସଙ୍ଗେ ସଙ୍ଗେ ଯତ୍‌କିଞ୍ଚିତ୍ ପାପ ମଧ୍ୟ ସଞ୍ଚିତ ହୁଏ । ଅତଏବ ଯଜ୍ଞକର୍ତ୍ତା ସ୍ୱୋପାର୍ଜିତ ପୁଣ୍ୟରାଶିର ଫଳସ୍ୱରୂପ ସ୍ୱର୍ଗଭୋଗ ତଥା ହିଂସାଲାଗି ଦୁଃଖ ମଧ୍ୟ ଭୋଗ କରେ କିନ୍ତୁ ସ୍ୱର୍ଗବାସୀ ପୁରୁଷ ସ୍ୱର୍ଗର ମୋହିନୀ ଶକ୍ତିରେ ମୁଗ୍ଧ ହୋଇ ଦୁଃଖ କଣିକାକୁ ଦୁଃଖ ବୋଲି ଜ୍ଞାନ କରିପାରେ ନାହିଁ ।

''ମୃଷ୍ୟନ୍ତେହି ପୁଣ୍ୟସମ୍ଭାରୋପନୀତ ସ୍ୱର୍ଗସୁଧାହ୍ରଦାବଗାହିନଃ
କୁଶଳାଃ ପାପମାତ୍ରୋପପାଦିତାଃ ଦୁଃଖ ବହ୍ନି କଣିକାଂ ।''

ବେଦୋକ୍ତ ସ୍ୱର୍ଗଫଳଜନକ କର୍ମ ସମସ୍ତ ସମାନ ପୁଣ୍ୟ ଫଳପ୍ରଦ ନୁହେଁ । କର୍ମର ତାରତମ୍ୟ ଅନୁପାତରେ କର୍ମଫଳର ତାରତମ୍ୟ ଅର୍ଥାତ୍ ସ୍ୱର୍ଗ ସୁଖର ଉତ୍କର୍ଷାପକର୍ଷ ଥାଏ । କାରଣର ବୈଜାତ୍ୟଦ୍ୱାରା କାର୍ଯ୍ୟର ବୈଜାତ୍ୟ ଅବଶ୍ୟମ୍ଭାବୀ । ସୁତରାଂ ସ୍ୱର୍ଗବାସୀଙ୍କ ମଧ୍ୟରେ ପ୍ରଧାନ ଅପ୍ରଧାନ ଥାଆନ୍ତି । ତେବେ ଦୁଃଖର ଅତ୍ୟନ୍ତ ନିବୃତ୍ତି ହେଲା କିପରି ? ସ୍ୱର୍ଗ ସୁଖ ଅନିତ୍ୟ । ସ୍ୱର୍ଗ ଶବ୍ଦର ଅର୍ଥ ସୁଖ ବିଶେଷ, ସୁଖ ଉତ୍ପତ୍ତି ଓ ବିନାଶଶୀଳ । ଯାହା କାରଣବଶତଃ ଉତ୍ପନ୍ନ ହୁଏ, କାରଣର ଅଭାବରେ ତାହାର ବିନାଶ ଅବଶ୍ୟମ୍ଭାବୀ ।

ପକ୍ଷାନ୍ତରେ ଦୁଃଖ ନିବୃତ୍ତି ବିବେକ ଜ୍ଞାନରୂପ କାରଣସାଧ୍ୟ ହେଲେ ସୁଦ୍ଧା ଏହା ଅଭାବ ସ୍ୱରୂପ ପଦାର୍ଥ ନୁହେଁ । ଅଭାବ ଉତ୍ପନ୍ନ ହେଲେ ମଧ୍ୟ ତାହାର ବିନାଶ ହୁଏ ନାହିଁ । ସୁଖ ଅଭାବରୂପ ନୁହେଁ, ଏହା ଭାବରୂପ । ଉତ୍ପନ୍ନ ଭାବ ପଦାର୍ଥର ବିନାଶ ଅଛି ସୁତରାଂ ସ୍ୱର୍ଗର ମଧ୍ୟ ବିନାଶ ଅଛି । ଗୀତାରେ ଭଗବାନ କହିଅଛନ୍ତି -

'ତେତଂ ଭୁକ୍ତ୍ୱା ସ୍ୱର୍ଗଲୋକଂ ବିଶାଳଂ କ୍ଷୀଣେ ପୁଣ୍ୟେ ମର୍ତ୍ତ୍ୟଲୋକଂ ବିଶନ୍ତି ।''

ଉକ୍ତ ପ୍ରମାଣର ତାତ୍ପର୍ଯ୍ୟ - ଦୃଷ୍ଟ ବା ଲୌକିକ ଉପାୟ, ଔଷଧାଦି ବା ଅଦୃଷ୍ଟ ଉପାୟ,

ଯଜ୍ଞାଦି ବା କୌଣସି ପ୍ରକା ରଉପାୟଦ୍ୱାରା ଦୁଃଖର ଅତ୍ୟନ୍ତ ନିବୃତ୍ତି ହୋଇପାରେ ନାହିଁ । କାରିକାରେ ଉଲ୍ଲେଖ ଅଛି-

"ଦୃଷ୍ଟବଦାନୁଶ୍ରବିକଃ ସହ୍ୟବିଶୁଦ୍ଧି କ୍ଷୟାତିଶୟଯୁକ୍ତଃ ।
ତଦ୍ ବିପରୀତଃ ଶ୍ରେୟାନ୍‌ବ୍ୟକ୍ତାବ୍ୟକ୍ତ୍ୟାଃଜ୍ଞବିଜ୍ଞାନାତ୍ ।"

ବେଦବିହିତ ଯାଗଯଜ୍ଞାଦି କର୍ମ ଦୃଷ୍ଟ ଉପାୟତୁଲ୍ୟ । ତଦ୍ୱାରା ଦୁଃଖର ଅତ୍ୟନ୍ତ ନିବୃତ୍ତି ଅସମ୍ଭବ । ସୁତରାଂ ବିବେକାଜ୍ଞାନରୂପ ଉପାୟ ଅବଲମ୍ବନରେ ଦୁଃଖର ଅତ୍ୟେନ୍ତ ନିବୃତ୍ତି ହୁଏ ।

ସାଂଖ୍ୟ ମତରେ ପ୍ରମାଣ ତିନିପ୍ରକାର - ପ୍ରତ୍ୟକ୍ଷ, ଅନୁମାନ ଓ ଆପ୍ତବାକ୍ୟ ଅର୍ଥାତ୍ ଶବ୍ଦପ୍ରମାଣ । ଯଥା- ପ୍ରତିବିଷୟାଧ୍ୟବସାୟୋଦୃଷ୍ଟଂ, ତ୍ରିବିଧମନୁମାନଂଖ୍ୟାତଂ । ତଲ୍ଲିଙ୍ଗଲିଙ୍ଗି ପୂର୍ବକ ମାପ୍ତ ଶ୍ରୁତିରାପ୍ତ ବଚନଂ ତୁ (ସାଂଖ୍ୟକାରିକା) । ବିଷୟ ଓ ଇନ୍ଦ୍ରିୟ ସନ୍ନିକର୍ଷରୁ ଉତ୍ପନ୍ନ ଅଧ୍ୟବସାୟ ଅର୍ଥାତ୍ ବୁଦ୍ଧିବୃତ୍ତିବିଶେଷ ହିଁ ପ୍ରତ୍ୟକ୍ଷ ପ୍ରମାଣ । ବ୍ୟାପ୍ୟ ବ୍ୟାପକ ଭାବ ଓ ପକ୍ଷଧର୍ମତାଜ୍ଞାନଜନ୍ୟ ବୁଦ୍ଧିବୃତ୍ତି ହିଁ ଅନୁମାନ ଏବଂ ଆପ୍ତବାକ୍ୟ ଜନ୍ୟ ବାକ୍ୟାର୍ଥଜ୍ଞାନ ହିଁ ଶବ୍ଦପ୍ରମାଣ । ଏହାର ତାତ୍ପର୍ଯ୍ୟ ଏହି ଯେ ବୁଦ୍ଧିବୃତ୍ତି ହିଁ ପ୍ରମାଣ; ଇନ୍ଦ୍ରିୟ ପ୍ରତ୍ୟକ୍ଷ ପ୍ରମାଣ ନୁହେଁ । ଯେହେତୁ ଯାହା ପ୍ରମାଣ ତାହା ଚିରଦିନ ପ୍ରମାଣ; ପ୍ରମାଣ କେବେ ଅପ୍ରମାଣ ହୋଇପାରେ ନାହିଁ । କିନ୍ତୁ ଇନ୍ଦ୍ରିୟ ପ୍ରମାଣ ନୁହେଁ ବୋଲି ସମୟ ସମୟରେ ବୈପରୀତ୍ୟ ଘଟିଥାଏ । ଅତଏବ ସାଂଖ୍ୟ ମତରେ ଇନ୍ଦ୍ରିୟକୁ ପ୍ରମାଣ ରୂପେ ଗ୍ରହଣ କରାଯାଇ ନାହିଁ । ବୁଦ୍ଧିବୃତ୍ତି ପ୍ରତ୍ୟକ୍ଷ ପ୍ରମାଣ ସତ୍ୟ କିନ୍ତୁ ସମସ୍ତ ବୁଦ୍ଧିବୃତ୍ତି ପ୍ରତ୍ୟକ୍ଷ ପ୍ରମାଣ ନୁହେଁ । ଯେଉଁ ବୁଦ୍ଧି ବୃତ୍ତି ବିଷୟ ଓ ଇନ୍ଦ୍ରିୟର ସନ୍ନିକର୍ଷରୁ ଉତ୍ପନ୍ନ ତାହାହିଁ ପ୍ରତ୍ୟକ୍ଷ ପ୍ରମାଣ । ବିଷୟ ପଦରେ ଘଟ, ପଟ, ରୂପ, ରସ ପ୍ରଭୃତି ପଦାର୍ଥ ବୁଝାଏ । ଚକ୍ଷୁ ପ୍ରଭୃତିର ନାମ ଇନ୍ଦ୍ରିୟ; ସନ୍ନିକର୍ଷ ଶବ୍ଦରେ ସମ୍ବନ୍ଧ ବିଷୟ ଓ ଇନ୍ଦ୍ରିୟ ମଧ୍ୟରେ ବ୍ୟବଧାନାଦି ପ୍ରତିବନ୍ଧକ ନଥିଲେ, ବିଷୟ ସହିତ ଇନ୍ଦ୍ରିୟର ସମ୍ବନ୍ଧ ବୁଝାଏ । ଏହି ସମ୍ବନ୍ଧ ନାନା ପ୍ରକାର ।

ଚକ୍ଷୁରିନ୍ଦ୍ରିୟ ସ୍ୱଚ୍ଛ । ଚକ୍ଷୁ ବ୍ୟତୀତ ଅନ୍ୟ ଇନ୍ଦ୍ରିୟ ସକଳ ସହିତ ବିଷୟର ନିତାନ୍ତ ଘନିଷ୍ଠତା ନଥିଲେ ମଧ୍ୟ ସମ୍ବନ୍ଧ ଘଟେ । ସରସ ଦ୍ରବ୍ୟ ରସନା ସହିତ ଗାଢ଼ସଂଯୁକ୍ତ ନହେଲେ ରସନା ଓ ରସର ସମ୍ବନ୍ଧ ଘଟେ ନାହିଁ । କିନ୍ତୁ ଚକ୍ଷୁ ସଙ୍ଗେ ବିଷୟର ଘନିଷ୍ଠତା ପ୍ରୟୋଜନ ହୁଏ ନାହିଁ । ବିଷୟ କିଛି ଦୂରରେ ଥିଲେ ମଧ୍ୟ ଚକ୍ଷୁରେ ତାହା ପ୍ରତିଫଳିତ ହୁଏ । ଏହିପରି ବିଷୟ ଓ ବିଶେଷ ବିଶେଷ ଇନ୍ଦ୍ରିୟର ଯେଉଁ ସମ୍ବନ୍ଧ ତହିଁରୁ ଚିତ୍ତର ଏକପ୍ରକାର ପରିଣାମ ବା ବିକାର ଜାତ ହୁଏ । ଅର୍ଥାତ୍ ବିଷୟ ଯେଉଁ ଆକାର ପ୍ରକାର ବିଶିଷ୍ଟ ହୁଏ ଚିତ୍ତ ମଧ୍ୟ ସେହି ଆକାର ପ୍ରକାର ପ୍ରାପ୍ତହୁଏ । ଏହି ପରିଣାମ ବା ବିକାରକୁ ଚିତ୍ତବୃତ୍ତି ବୋଲା ଯାଇଅଛି । ଏହି ବୁଦ୍ଧି ବୃତ୍ତି ଅର୍ଥରେ ନିଶ୍ଚୟରୂପା ଚିତ୍ତବୃତ୍ତି ବୋଲି ବୁଝିବାକୁ ହେବ । ବାଚସ୍ପତି ମିଶ୍ର କହିଅଛନ୍ତି ପ୍ରଥମେ ବିଷୟ ସହିତ ଇନ୍ଦ୍ରିୟର ସଂଯୋଗ ହୁଏ । ଏହି ସଂଯୋଗ ବୃତ୍ତି ନାମେ ଅଭିହିତ । ଇନ୍ଦ୍ରିୟର ଉକ୍ତ ରୂପ ବୃତ୍ତି ହେଲେ ତ୍ରିଗୁଣାତ୍ମିକା ବୁଦ୍ଧିର ତମୋଗୁଣ ଅପସାରିତ ହୋଇ ସତ୍ୱଗୁଣ ଉଦ୍ରେକ

ହୁଏ । ଏହି ସତ୍‌ସମୁଦ୍ୟୋକ୍ତଅଧ୍ୟବସାୟ ବୃତ୍ତି ବା ଜ୍ଞାନ ନାମେ ଅଖ୍ୟାତ । ଅତଏବ ବୁଦ୍ଧିର ଏହି ବୃତ୍ତିରୂପ ଜ୍ଞାନ ପ୍ରମାଣ ପଦବାଚ୍ୟ । ବିଷୟ ସହିତ ଯେତେବେଳେ ଇନ୍ଦ୍ରିୟର ସମ୍ବନ୍ଧ ହୁଏ ସେତେବେଳେ ମନ ପ୍ରଥମେ ବିଷୟ ରୂପେ ପରିଣତ ହୁଏ । ତତ୍ପରେ ଅହଙ୍କାରର ପରିଣାମ ହୁଏ । ତାହାପରେ ବିଷୟ ଅହଂ ଏବଂ କୃତି, ଜ୍ଞାନ ଇଚ୍ଛା ବା ଦ୍ୱେଷ ଏହି ତ୍ରିବିଧ ବସ୍ତୁକୁ ନେଇ ବୁଦ୍ଧିର ତିନୋଟି ବିକାର ହୁଏ । ତଦ୍ଦ୍ୱାରା ମୁଁ ଘଟ କରେ, ମୁଁ ଘଟ ଦେଖିଅଛି ଇତ୍ୟାଦି କର୍ତ୍ତୃତ୍ୱ ଭୋକ୍ତୃତ୍ୱାଦି ଜ୍ଞାନ ଉଦୟ ହୁଏ । ଉକ୍ତ ତିନୋଟି ପରିଣାମ ମଧ୍ୟରେ ବିଷୟଘଟିତ ବୁଦ୍ଧିବୃତ୍ତିର ପରିଣାମକୁ ଏଠାରେ ବୁଦ୍ଧିବୃତ୍ତି ବୋଲି କଥିତ ହୋଇଅଛି, ଏହାହିଁ ପ୍ରତ୍ୟକ୍ଷ ପ୍ରମାଣ । ସାଂଖ୍ୟମତରେ ଅନୁମାନ ମଧ୍ୟ ବୁଦ୍ଧିବୃତ୍ତିର ବିଶେଷ । ବ୍ୟାପ୍ୟ ବ୍ୟାପକ ଭାବ ଓ ପକ୍ଷଧର୍ମତା ଜ୍ଞାନରୁ ଯେଉଁ ବୁଦ୍ଧିବୃତ୍ତି ହୁଏ ତାହାହିଁ ଅନୁମାନ ।

ବ୍ୟାପ୍ୟ ବ୍ୟାପକ ଭାବ ପଦରେ ସ୍ୱଭାବ ସମ୍ବନ୍ଧ । ଯାହା ସହିତ ଯେଉଁ ବସ୍ତୁର ସ୍ୱାଭାବିକ ସମ୍ବନ୍ଧ ଅଛି ତାହାର ବ୍ୟାପ୍ୟ ସେହି ବସ୍ତୁ ହୋଇଥାଏ । ଯଥା- ଧୂମ ବହ୍ନିର ବ୍ୟାପ୍ୟ, ଯେହେତୁ ବହ୍ନି ସହିତ ଧୂମର ସ୍ୱାଭାବିକ ସମ୍ବନ୍ଧ ଅଛି । ଧୂମ ଯେଉଁଠାରେ ଥିବ ବହ୍ନି ସେହିଠାରେ ଥିବ । ଧୂମର ସ୍ୱଭାବ ଏହି ଯେ ସେ ବହ୍ନିର ସମ୍ବନ୍ଧ ତ୍ୟାଗ କରିପାରେ ନାହିଁ । ଏହି ସ୍ୱଭାବ ସମ୍ବନ୍ଧ ଜ୍ଞାନ ହିଁ ବ୍ୟାପ୍ୟବ୍ୟାପକ ଭାବ ଜ୍ଞାନ ।

ପକ୍ଷ ଶବ୍ଦରେ ଅନୁମିତି ଜ୍ଞାନ ଯଥା- ପର୍ବତ ବହ୍ନିମାନ, ଏହି ସ୍ଥଳରେ ପର୍ବତ ପକ୍ଷ, ଯେଉଁ ବସ୍ତୁ ପକ୍ଷ ବୋଲି ଜାଣିଅଛି, ସେହି ବସ୍ତୁ ପକ୍ଷରେ ବର୍ତ୍ତମାନ । ଏହି ଜ୍ଞାନକୁ ପକ୍ଷ ଧର୍ମ ଜ୍ଞାନ କହନ୍ତି । ଏହି ଅନୁମାନ ତିନି ପ୍ରକାର- ପୂର୍ବବତ୍, ଶେଷବତ୍ ଓ ସାମାନ୍ୟତୋଦୃଷ୍ଟ । ଏହାକୁ ବାଚସ୍ପତି ମିଶ୍ର ବୀତ ଓ ଅବୀତ ଏହି ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ଯାହା ସାଧ୍ୟ ଠିକ୍ ସେହି ବସ୍ତୁ ଯଦି ଅନ୍ୟତ୍ର ଦୃଷ୍ଟିଗୋଚର ହୁଏ ତାହା ହେଲେ ସେହି ଅନୁମାନକୁ ପୂର୍ବବତ୍ କହନ୍ତି । କିନ୍ତୁ ଯାହା ଅତୀନ୍ଦ୍ରିୟ, ଦୃଷ୍ଟିର ଅଗୋଚର ତାଦୃଶ ସାଧ୍ୟର ଅନୁମାନେ ଶେଷବତ୍ ବା ସାମାନ୍ୟତୋଦୃଷ୍ଟ ଅନୁମାନ । କିନ୍ତୁ ଶେଷବତ୍ ଅନୁମାନ ସ୍ଥଳରେ ହେତୁ ସାଧ୍ୟର ବ୍ୟାପ୍ୟବ୍ୟାପକ ଭାବ ଜ୍ଞାନ ନାହିଁ ଏବଂ ଏଥିରେ ସଧ୍ୟାଭାବ ଓ ହେତ୍ୱଭାବର ବ୍ୟାପ୍ୟବ୍ୟାପକଭାବ ଜ୍ଞାନ ଆବଶ୍ୟକ । ଏହାର ଫଳରେ ସାଧ୍ୟଭାବର ନିଷେଧ ହୁଏ ।

''ପୃଥିବୀ ପୃଥିବୀତରେଭ୍ୟୋଭିଦ୍ୟତେ ଗନ୍ଧବତ୍ତ୍ୱାତ୍''

ପୃଥିବୀରେ ପୃଥିବୀ ଭେଦ ନାହିଁ, ହେତୁ ଗନ୍ଧ । ପୃଥିବୀ ଭେଦ ଗନ୍ଧାଭାବର ବ୍ୟାପ୍ୟ ଏବଂ ଗନ୍ଧାଭାବ ପୃଥିବୀରେ ନାହିଁ । ଏହି ଜ୍ଞାନ ହେଲେ ପୃଥିବୀରେ ପୃଥିବୀ ଭେଦ ନାହିଁ ଏହିରୂପ ଜ୍ଞାନ ହୁଏ । ପରିଣାମରେ ପୃଥିବୀ ଯେ ସେଥିରେ ଅଛି ଏହି ଜ୍ଞାନ ହୋଇଥାଏ । ପୃଥିବୀତ୍ୱ ଏ ଅନୁମିତିର ବିଧେୟ ନୁହେଁ, ବିଷୟ ମାତ୍ର ।

ପୂର୍ବବତ୍ ଅନୁମାନଦ୍ୱାରା ପର୍ବତରେ ଯେ ବହ୍ନିର ଅନୁମିତି ହୁଏ, ସେଥିରେ ବହ୍ନି ବିଧେୟ ହୋଇଥାଏ । ବିଧେୟତା ମନୋବୃତ୍ତି ବିଶେଷ । ଯେଉଁ ଅନୁମିତିରେ ମନୋବୃତ୍ତିର ସମ୍ପର୍କ ନାହିଁ ସେହି ଅନୁମିତିସାଧକ ପ୍ରମାଣ ଶେଷବତ୍ ଅନୁମାନ । ସାମାନ୍ୟତୋଦୃଷ୍ଟ ଅନୁମାନ ପୂର୍ବବତ୍ ଅନୁମାନର ବିପରୀତ । ନ୍ୟାୟଦର୍ଶନରେ ଏହା ସବିଶେଷ ଭାବେ ସମାଲୋଚିତ । ବକ୍ତାର ଦୋଷ ଅର୍ଥାତ୍ ବକ୍ତବ୍ୟ ବିଷୟରେ ଭ୍ରମ ପ୍ରମାଦ ପ୍ରଭୃତି ଯଦି ନଥାଏ ତାହାହେଲେ ବାକ୍ୟଶ୍ରବଣ ପରେ ପ୍ରତିପାଦ୍ୟ ବିଷୟରୁ ଯେଉଁ ମନୋବୃତ୍ତି ହୁଏ ତାହା ହିଁ ଶବ୍ଦ ପ୍ରମାଣ । ତାହାର ଫଳ ଶବ୍ଦବୋଧ ।

ବେଦ ଅପୌରୁଷେୟ, ସୁତରାଂ ଏହା ଭ୍ରମପ୍ରମାଦଶୂନ୍ୟ । ବେଦବାକ୍ୟ ଶ୍ରବଣରେ ଯେଉଁ ଚିତ୍ତବୃତ୍ତି ଉଦୟ ହୁଏ ତାହା ଶବ୍ଦ ପ୍ରମାଣ । ବାଚସ୍ପତି ମିଶ୍ର କହନ୍ତି, ପ୍ରଥମରେ ବିଷୟ ସହିତ ଇନ୍ଦ୍ରିୟର ସଂଯୋଗ ହୁଏ । ଏହି ସଂଯୋଗକୁ ବୃତ୍ତି କୁହାଯାଏ । ଇନ୍ଦ୍ରିୟର ଉକ୍ତ ରୂପ ବୃତ୍ତି ହେଲେ ତ୍ରିଗୁଣାତ୍ମିକା ବୁଦ୍ଧିର ତମୋଗୁଣ ଅପସାରିତ ହେଲେ, ସତ୍ୱସମୁଦ୍ରେକ ଅର୍ଥାତ୍ ସତ୍ୱଗୁଣ ଉଦ୍ଭବ ଓ ପ୍ରବଳ ହୁଏ । ଏହାର ନାମ ଅଧ୍ୟବସାୟ ବୃତ୍ତି । ଏହି ବୃତ୍ତି ରୂପଜ୍ଞାନ ପ୍ରମାଣ ନାମେ ଅଭିହିତ । ଏହି ଜ୍ଞାନଦ୍ୱାରା ଚେତନା ଶକ୍ତିର ଯେ ଅନୁଗ୍ରହ ତାହାହିଁ ପ୍ରମାଣ; ଫଳ ବା ପ୍ରମାଣ, ଏହାର ଅପର ନାମ ବୋଧ ।

ପ୍ରକୃତି ଅଚେତନ, ତତ୍ପ୍ରସୂତ ବୁଦ୍ଧି ସତ୍ୱ ମଧ୍ୟ ଅଚେତନ । ସୁତରାଂ ବୁଦ୍ଧିର ଅଧ୍ୟବସାୟ ବା ବୃତ୍ତି ମଧ୍ୟ ଅଚେତନ । ଅଚେତନ ହେତୁ ବୁଦ୍ଧିବୃତ୍ତି ନିଜେ ବିଷୟ ପ୍ରକାଶ କରିବାକୁ ଅକ୍ଷମ ।

ପୁରୁଷ ଚେତନ ଓ ଅପରିଣାମୀ । ସୁତରାଂ ଅପରିଣାମୀ ପୁରୁଷର ଜ୍ଞାନ ବା ବୃତ୍ତିରୂପ ପରିଣାମ ହୋଇପାରେ ନାହିଁ କିନ୍ତୁ ବିଷୟବୁଦ୍ଧିଦ୍ୱାରା ପ୍ରକାଶିତ ହୁଏ । ବୁଦ୍ଧି ପରିଣାମଶୀଳା କିନ୍ତୁ ପରିଣାମ ସର୍ବଦା ହୁଏନାହିଁ; କେବେ କେବେ ହୋଇଥାଏ । ଅତଏବ ସର୍ବଦା ବିଷୟର ଭାନ ହୁଏ ନାହିଁ । ବୁଦ୍ଧିବୃତ୍ତି ଜଡ଼ ହେତୁ ସ୍ୱପ୍ରକାଶ ନୁହେଁ; ପୁରୁଷଦ୍ୱାରାଏହାର ପ୍ରକାଶ ହୁଏ । ବୁଦ୍ଧିବୃତ୍ତିଅଜ୍ଞାନ ଅବସ୍ଥାରେ ରହେ ନାହିଁ । ଅତଏବ ପୁରୁଷ ଅପରିଣାମୀ । ପୁରୁଷ ପରିଣାମୀ ହେଲେ ସର୍ବଦା ବୁଦ୍ଧିବୃତ୍ତିର ପ୍ରକାଶ ହୋଇପାରେ ନାହିଁ । ବୁଦ୍ଧିସତ୍ତ୍ୱେ ପୁରୁଷ ପ୍ରତିବିମ୍ବିତ ହୁଅନ୍ତି । ଆହୁରି ତମୋଗୁଣ ଅପସାରିତ ହେଲେ ସତ୍ୱଗୁଣର ଉଦ୍ଭବ ହୁଏ। ସତ୍ୱ ସ୍ୱଚ୍ଛ, ତହିଁରେ ପୁରୁଷର ପ୍ରତିବିମ୍ବ ପଡ଼େ ।

ମଳିନ ଆଦର୍ଶ ଉଜ୍ଜ୍ୱଳ ଆଲୋକର ନିକଟବର୍ତ୍ତୀ ହେଲେ ମଧ୍ୟ ତେଜସ୍କର ହୁଏନାହିଁ, କିନ୍ତୁ ନିର୍ମଳ ଆଦର୍ଶ ଉଜ୍ଜ୍ୱଳବସ୍ତୁର ସନ୍ନିଧାନରେ ଉଜ୍ଜ୍ୱଳ ଜ୍ୟୋତିଃ ଧାରଣ କରେ। ତଦ୍ବତ ଚିଚ୍ଛକ୍ତିର ସନ୍ନିଧାନ ଥିଲେ ମଧ୍ୟ ତମୋଃଭିଭୂତ ଚିତ୍ତରେ ଚିଚ୍ଛାୟା ବା ପ୍ରକାଶ ହୁଏ ନାହିଁ। ସତ୍ୱ ସମୁଦ୍ରେକ ହେଲେ ଚିଚ୍ଛକ୍ତିର ସାନ୍ନିଧ୍ୟବଶତଃ ଚିତ୍ତ ଉଜ୍ଜ୍ୱଳ ହୁଏ। ଏତଦ୍ୱାରା ଚିତ୍ପ୍ରତିବିମ୍ବର ବିଷୟ କ୍ରିୟପ୍ରରିମାଣରେ ବୁଝାଯାଇପାରେ। ସାତ୍ତ୍ୱିକ ବୁଦ୍ଧିରେ ଚିଚ୍ଛକ୍ତିର ପ୍ରତିବିମ୍ବ ପଡ଼ିଲେ

ଜ୍ଞାନାଦିବୃତ୍ତି ଉଦୟ ହୁଏ । ବସ୍ତୁଗତ୍ୟା ବୁଦ୍ଧିତତ୍ତ୍ୱର ଧର୍ମ ହେଲେ ମଧ୍ୟ ପୁରୁଷର ଧର୍ମ ବୋଲି ପ୍ରତୀୟମାନ ହୁଏ । ମଳିନ ଦର୍ପଣରେ ମୁଖର ପ୍ରତିବିମ୍ବ ପଡ଼ିଲେ ଦର୍ପଣର ମାଳିନ୍ୟ ଯେପରି ପ୍ରତିବିମ୍ବରେ ପରିଲକ୍ଷିତ ହୁଏ, ସେପରି ବୁଦ୍ଧିତତ୍ତ୍ୱଗତ ଜ୍ଞାନାଦି ବୃତ୍ତି ମଧ୍ୟ ପୁରୁଷଗତ ରୂପରେ ପ୍ରତିଭାତ ହୁଏ । ଏହାର ନାମ ଚେତନାଶକ୍ତିର ଅନୁଗ୍ରହ ବା ପୁରୁଷର ବୋଧ ।

ପକ୍ଷାନ୍ତରେ ବୁଦ୍ଧିତତ୍ତ୍ୱ ଓ ତାହାର ଅଧ୍ୟବସାୟ ଅଚେତନ ହେଲେ ମଧ୍ୟ ଏଥିରେ ଚେତନ ପୁରୁଷ ପ୍ରତିବିମ୍ବିତ ହୁଅନ୍ତି ବୋଲି ଏହା ଚେତନବତ୍ ପ୍ରତୀୟମାନ ହୁଏ । ଏହି ଅବସ୍ଥାରେ ପୁରୁଷ ଏବଂ ବୁଦ୍ଧିସତ୍ତ୍ୱ ଅଭିନ୍ନ ବୋଲି ପ୍ରତୀୟମାନ ହୁଏ । ଏତଦ୍ଦ୍ୱାରା ବୁଝାଯାଏ ଯେ ବୁଦ୍ଧିବୃତ୍ତିରେ ପୁରୁଷ ପ୍ରତିବିମ୍ବିତ ହୁଅନ୍ତି କିନ୍ତୁ ପୁରୁଷରେ ବୁଦ୍ଧିବୃତ୍ତି ପ୍ରତିବିମ୍ବିତ ହୁଏ ନାହିଁ । ବିଜ୍ଞାନଭିକ୍ଷୁଙ୍କ ମତରେ ବୁଦ୍ଧିବୃତ୍ତି ଓ ପୁରୁଷ ଏହି ଉଭୟରେ ଉଭୟ ପ୍ରତିବିମ୍ବିତ ହୁଅନ୍ତି । ଏହାଙ୍କ ମତରେ ବିଷୟ ସହିତ ଇନ୍ଦ୍ରିୟର ସନ୍ନିକର୍ଷ ହେଲେ, ବୁଦ୍ଧିର ବିଷୟାକାର ପରିଣାମ ବା ବୃତ୍ତି ହୁଏ । ସେହି ବିଷୟାକାର ବୃଦ୍ଧିବୃତ୍ତି ପୁରୁଷରେ ପ୍ରତିବିମ୍ବିତ ହୋଇ ଭାସମାନ ହୁଏ । ପୁରୁଷ ଅପରିଣାମୀ ଅଥଚ ତାହାର ବୁଦ୍ଧିପରି ବିଷୟାକାରତା ପୁରୁଷରେ ପ୍ରତିବିମ୍ବ ରୂପେ ସ୍ୱୀକୃତ । ଯଥା-

ତସ୍ମିନ୍ ଚିଦ୍ଦର୍ପଣେ ସ୍ଫାରେ ସମସ୍ତାଃ ବସ୍ତୁଦୃଷ୍ଟୟଃ
ଇମାସ୍ତା ପ୍ରତିବିମ୍ବନ୍ତି ସରସୀବ ତଟଦ୍ରୁମାଃ । (ସାଂଖ୍ୟ ପ୍ରବଚନଭାଷ୍ୟ)

ଅର୍ଥ- ତଟସ୍ଥିତ ବୃକ୍ଷ ସକଳର ପ୍ରତିବିମ୍ବ ସରୋବରରେ ପ୍ରତିଫଳିତ ହେଲାପରି ଚୈତନ୍ୟରୂପ ନିର୍ମଳ ଦର୍ପଣରେ ସମସ୍ତ ବସ୍ତୁ ପ୍ରତିବିମ୍ବିତ ହୁଏ ।

ଏବଂ-

ପ୍ରମାତା ଚେତନଃ ଶୁଦ୍ଧଃ ପ୍ରମାଣଂ ବୃତ୍ତିରେବ ନଃ ।
ପ୍ରମାର୍ଥାକାରବୃତ୍ତୀନାଂ ଚେତନେ ପ୍ରତିବିମ୍ବନଂ । (ଭାଷ୍ୟ)

ଚେତନ ପୁରୁଷ, ପ୍ରମାତା ଅର୍ଥାତ୍ ପ୍ରମା ସାକ୍ଷୀ । ବିଷୟାକାର ବୁଦ୍ଧିବୃତ୍ତି ପ୍ରମାଣ । ପୁରୁଷରେ ଏହି ବୁଦ୍ଧିବୃତ୍ତି ସକଳର ଯେଉଁ ପ୍ରତିବିମ୍ବନ ହୁଏ ତାହା ହିଁ ପ୍ରମା ।

ପୁରୁଷ ସୁଖଦୁଃଖ ଭୋଗ ବିବର୍ଜିତ । ପ୍ରକୃତିର ପ୍ରତିବିମ୍ବନରେ ପୁରୁଷର ସୁଖୀ ଦୁଃଖୀ, ଭୋଗୀ ପ୍ରଭୃତି ଜ୍ଞାନ ହେଉଥାଏ । ପ୍ରକୃତି ଅଚେତନ, ପୁରୁଷର ପ୍ରତିବିମ୍ବନରେ ପ୍ରକୃତି ଚୈତନ୍ୟଯୁକ୍ତ ବୋଲି ଜ୍ଞାନ କରେ । ପରସ୍ପରର ପ୍ରତିବିମ୍ବନରେ ଉଭୟରଏହି ଜ୍ଞାନ ଉଦୟ ହୁଏ । ବୁଦ୍ଧିବୃତ୍ତି ଓ ଚୈତନ୍ୟର ପରସ୍ପର ଏହିପରି ପ୍ରତିବିମ୍ବନ ହୁଏ ବୋଲି ପ୍ରଜ୍ୱଳିତ ଲୌହ ପିଣ୍ଡରେ ଅଗ୍ନିର ବ୍ୟବହାର ପରି ବୁଦ୍ଧିବୃତ୍ତିରେ ବୋଧ ବ୍ୟବହାର ହୋଇଥାଏ । ବୁଦ୍ଧିବୃତ୍ତି କ୍ଷଣଭଙ୍ଗୁର, ବୋଧ ମଧ୍ୟ କ୍ଷଣଭଙ୍ଗୁର; କିନ୍ତୁ ଯେଉଁମାନଙ୍କର ସ୍ୱଳ୍ପ ବୁଦ୍ଧି, ସେମାନେ ବୁଦ୍ଧିବୃତ୍ତି ଓ ବୋଧର ବିବେକ ଏହି ଉଭୟର ପାର୍ଥକ୍ୟ ବୁଝନ୍ତି ନାହିଁ । ତାର୍କିକମାନେ ମଧ୍ୟ ଏ ବିଷୟରେ ଭ୍ରାନ୍ତ । ପୁରୁଷଠାରେ ସାକ୍ଷାତ୍ ସମ୍ବନ୍ଧରେ ସୁଖ ଦୁଃଖାଦିର ଅସ୍ତିତ୍ୱ ନଥିଲେ ସୁଦ୍ଧା ପ୍ରତିବିମ୍ବ

ରୂପରେ ତାହାର ଅସ୍ତିତ୍ୱ ବର୍ତ୍ତମାନ ବିଷୟ ସମସ୍ତ ପ୍ରମାଣଦ୍ୱାରା ସିଦ୍ଧାନ୍ତିତ; ପ୍ରତ୍ୟକ୍ଷରେ କିମ୍ବା ଅନୁମାନରେ ସିଦ୍ଧ ନହେଲେ ତାହା ଆପ୍ତବାକ୍ୟାନୁସାରେ ସିଦ୍ଧ ହୁଏ । ପ୍ରଧାନ ଓ ପୁରୁଷ ପ୍ରତ୍ୟକ୍ଷ ସିଦ୍ଧ ନୁହନ୍ତି, ଅତଏବ ଅନୁମାନ ପ୍ରମାଣସିଦ୍ଧ ।

ପ୍ରକୃତିରୁ ମହତ୍, ବୁଦ୍ଧି, ଅହଂକାର ପ୍ରଭୃତିର ଯେଉଁ ସୃଷ୍ଟିକ୍ରମ ତାହା ଆପ୍ତ ପ୍ରମାଣସିଦ୍ଧ । କେହି କେହି କହନ୍ତି ପ୍ରତ୍ୟକ୍ଷ ନହେବା ଯୋଗୁଁ ଷଷ୍ଠ ଇନ୍ଦ୍ରିୟ ଓ ସପ୍ତମ ରସର ଅଭାବ ଯେପରି ନିଶ୍ଚିତ ହୁଏ ସେହିପରି ପ୍ରଧାନ ଓ ପୁରୁଷର ଅଭାବ ମଧ୍ୟ ନିଶ୍ଚୟ କରାଯାଉ; ଏହି ଆପତ୍ତି ଅସଙ୍ଗତ କାରଣ ଅତି ଦୂରତ୍ୱ, ଅତିସାମୀପ୍ୟ ଇନ୍ଦ୍ରିୟର ଅଭାବ, ଅନ୍ୟମନସ୍କତା, ସୂକ୍ଷ୍ମତ୍ୱ, ବ୍ୟବଧାନ, ଅଭିଭବ, ତୁଲ୍ୟବସ୍ତୁ ସହିତ ମିଶ୍ରଣ, ଅନୁଭବ ଏବଂ ତୁଲ୍ୟବସ୍ତ୍ୱନ୍ତରରେ ସଂଶ୍ଳେଷବଶତଃ ବିଦ୍ୟମାନ ବସ୍ତୁର ମଧ୍ୟ ଉପଲବ୍ଧି ବା ପ୍ରତ୍ୟକ୍ଷ ହୁଏ ନାହିଁ । ଯଥା -

ଅତିଦୂରାତ୍ ସାମୀପ୍ୟାଦିନ୍ଦ୍ରିୟାଘାତାତ୍-ମନୋଽନବସ୍ଥାନାତ୍ ।
ସୌକ୍ଷ୍ମ୍ୟାଦ୍‌ବ୍ୟବଧାନୀ ଦଭିଭବାତ୍ ସମାନାଭିହାରାଚ୍ଚ ।(ସାଂଖ୍ୟ)

ଆକାଶବକ୍ଷରେ ଉଡ୍ଡୀୟମାନ ପକ୍ଷୀ ନିକଟରେ ଥିବାବେଳେ ପ୍ରତ୍ୟକ୍ଷ ହୁଏ, କିନ୍ତୁ ଅତି ଦୂରକୁ ଗଲେ ପ୍ରତ୍ୟକ୍ଷ ହୁଏନାହିଁ । ଦୂରତାବଶତଃ ଦୃଷ୍ଟିଗୋଚର ନହେଲେ ମଧ୍ୟ ତାହାର ଅଭାବ ନିଶ୍ଚୟ କରାଯାଏ ନାହିଁ, ନୟନରଞ୍ଜିତ ଅଞ୍ଜନ ଅତି ନିକଟବର୍ତ୍ତୀ ହେଲେ ହେଁ ଦୃଷ୍ଟିଗୋଚର ହୁଏନାହିଁ । ଅନ୍ଧତ୍ୱ ବଧିରତ୍ୱାଦିକୁ ଇନ୍ଦ୍ରିୟାଘାତ କହି- ଅନ୍ଧ ଦେଖି ପାରେ ନାହିଁ, ବଧିର ଶୁଣିପାରେ ନାହିଁ । ମନୋଽନବସ୍ଥାନାତ୍-ଅନ୍ୟମନସ୍କତା- ଯେପରି ଦୁଷ୍ମନ୍ତଚିନ୍ତାରତା ଶକୁନ୍ତଳା ତାଙ୍କ ସମୀପରେ ଦୁର୍ବାସାଙ୍କର ଉପସ୍ଥିତି ଅନୁଭବ କରିପାରି ନଥିଲେ । ସୌକ୍ଷ୍ମ୍ୟାତ୍-ପରମାଣୁ ଅତିସୂକ୍ଷ୍ମ ହେତୁ ଦେଖାଯାଏ ନାହିଁ । ବ୍ୟବଧାନାତ୍ ଇନ୍ଦ୍ରିୟ ଓ ବସ୍ତୁ ମଧ୍ୟରେ ବ୍ୟବଧାନ, ଅର୍ଥାତ୍ ପ୍ରାଚୀର ବା ରୁଦ୍ଧ ଦ୍ୱାରାଦିର ଅନ୍ତରାଳସ୍ଥିତ ବସ୍ତୁ ଦେଖାଯାଏ ନାହିଁ । ଅଭିଭବାତ୍-ପରାଭବ ହେତୁ, ଅର୍ଥାତ୍ ସୂର୍ଯ୍ୟତେଜାଭିଭୂତ ଦେଦୀପ୍ୟମାନ ନକ୍ଷତ୍ରମଣ୍ଡଳ ରାତ୍ରିରେ ଦେଖାଗଲା ପରି ଦିନରେ ଦେଖାଯା'ନ୍ତି ନାହିଁ । ସମାନାଭିହାରାତ୍- ତୁଲ୍ୟ ବସ୍ତୁର ସହିତ ମିଶ୍ରଣ ଯଥା- ମେଘଜଳ ତଡ଼ାଗଜଳରେ ମିଶ୍ରିତ ହେଲେ ଯେପରି ପୃଥକ କରି ହୁଏନାହିଁ । ଅଭିହାର- ଆକ୍ରମଣ ।

ଏଥିରୁ ଜଣାଯାଏ ଯେ, ବସ୍ତୁ ସକଳର ପ୍ରତ୍ୟକ୍ଷ ପ୍ରବୃତ୍ତି ବ୍ୟତୀତ ବସ୍ତୁର ଅଭାବ ନିଶ୍ଚୟ କରାଯାଇ ପାରେନାହିଁ । ପୂର୍ବୋକ୍ତ ଉଦାହରଣରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ବସ୍ତୁ ସକଳ ବିଦ୍ୟମାନ ଥାଇ ସୁଦ୍ଧା ପ୍ରତ୍ୟକ୍ଷ ହୁଏ ନାହିଁ । ପ୍ରତ୍ୟକ୍ଷଯୋଗ୍ୟ ବସ୍ତୁ ଯଦି ପ୍ରତ୍ୟକ୍ଷ ନହୁଏ,ତେବେ ତାହାର ଅଭାବ ନିଶ୍ଚିତ ହେଲେ ଅନ୍ୟ ପ୍ରମାଣଦ୍ୱାରା ତାହାର ଅସ୍ତିତ୍ୱ ସିଦ୍ଧ କରାଯାଇ ପାରେ । ସୁତରାଂ ଷଷ୍ଠ ଇନ୍ଦ୍ରିୟ ଓ ସପ୍ତମ ରସ କୌଣସି ପ୍ରମାଣଦ୍ୱାରା ପ୍ରତିପନ୍ନ ନହେଲେ ସୁଦ୍ଧା ପ୍ରତ୍ୟକ୍ଷର ଅଯୋଗ୍ୟ ବୋଲି କଳ୍ପନା କରିବା ଅସଂଗତ ।

ସାଂଖ୍ୟ ମତରେ ପ୍ରମେୟ ବା ପଦାର୍ଥ ସକଳ ତତ୍ତ୍ୱ ନାମରେ ଅଭିହିତ । ପ୍ରମାଣଦ୍ୱାରା ସକଳ ପ୍ରମେୟ ପଦାର୍ଥ ପ୍ରମାଣିତ ହୁଏ ।

ତତ୍ତ୍ୱ ପଞ୍ଚବିଂଶତି ସଂଖ୍ୟକ - ମୂଳତତ୍ତ୍ୱ, ପ୍ରକୃତି ଓ ପୁରୁଷ; ପ୍ରକୃତିର ଚତୁର୍ବିଂଶତି ତତ୍ତ୍ୱ ଓ ପୁରୁଷ ଏପରି ପଞ୍ଚବିଂଶତି । ପ୍ରକୃତିର ପରିଣାମରେ ଜଗତର ସୃଷ୍ଟି ଓ ପ୍ରଳୟ ହେଉଅଛି । ପ୍ରକୃତିର ଏହି ପରିଣାମ ଦ୍ୱିବିଧ- ସ୍ୱରୂପ ପରିଣାମ ଓ ବିରୂପ ପରିଣାମ । ବିରୂପ ପରିଣାମରେ ଜଗତର ସୃଷ୍ଟି ଏବଂ ସ୍ୱରୂପ ପରିଣାମରେ ଧ୍ୱଂସ ବା ପ୍ରଳୟ ହୁଏ ।

ପ୍ରକୃତି ଓ ତାହାର ଚତୁର୍ବିଂଶତି ତତ୍ତ୍ୱ ଜଡ଼, ପୁରୁଷ ଚେତନ । ଏହି ସକଳ ତତ୍ତ୍ୱ ଚାରି ଶ୍ରେଣୀରେ ବିଭକ୍ତ- କେବଳ ପ୍ରକୃତି ବିକୃତି ଓ କୌଣସି ତତ୍ତ୍ୱ, କେବଳ ବିକୃତି ଏବଂ କୌଣସି ତତ୍ତ୍ୱ ଅନୁଭୟାତ୍ମକ, ଅର୍ଥାତ୍ ପ୍ରକୃତି ନୁହେଁ କିମ୍ବା ବିକୃତି ନୁହେଁ ।

ମୂଳପ୍ରକୃତିର ବିକୃତିର୍ମହଦାଦ୍ୟାଃ ପ୍ରକୃତିବିକୃତୟଃ ସପ୍ତ ।
ଷୋଡ଼ଶସ୍ତୁ ବିକାରୋ ନ ପ୍ରକୃତି ର୍ନ ବିକୃତିଃ ପୁରୁଷଃ ।। (ସାଂଖ୍ୟକାରିକା)

ପ୍ରକୃତି ଶବ୍ଦର ଅର୍ଥ ଉପାଦାନ ବ୍ୟାକାରଣ ଏବଂ ବିକୃତି ଶବ୍ଦର ଅର୍ଥ କାର୍ଯ୍ୟ । ମୂଳ ପ୍ରକୃତି ଅର୍ଥାତ୍ ଯାହାଠାରୁ ଜଗତର ଉତ୍ପତ୍ତି, ଯାହାର ଅପର ନାମ ପ୍ରଧାନ, ତାହାର କୌଣସି କାରଣରୁ ଉତ୍ପତ୍ତି ଅସମ୍ଭବ । କାରଣ ମୂଳ ପ୍ରକୃତି କାରଣଜନ୍ୟ ହେଲେ ସେହି କାରଣ ମଧ୍ୟ କାରଣାନ୍ତରଜନ୍ୟ ହୁଏ ଏବଂ ସେହି କାରଣାନ୍ତର ମଧ୍ୟ ଅପର କାରଣାନ୍ତରଜନ୍ୟ ଇତ୍ୟାଦି ରୂପ ଅନବସ୍ଥା ଦୋଷଯୁକ୍ତ ହେବ, ଅତଏବ ମୂଳ କାରଣ ଉତ୍ପନ୍ନ ବସ୍ତୁ ନୁହେଁ । ଏହା ସ୍ୱତଃସିଦ୍ଧ ବୋଲି ସ୍ୱୀକାର କରିବାକୁ ହେବ । ମୂଳ ପ୍ରକୃତି ହିଁ କେବଳ ପ୍ରକୃତି ।

ମହତ୍ତତ୍ତ୍ୱ, ଅହଂକାର ଓ ପଞ୍ଚତନ୍ମାତ୍ର ଏହି ସାତୋଟି ପ୍ରକୃତି ଓ ବିକୃତି, ଯେହେତୁ ଏମାନେ କୌଣସି କୌଣସି ତତ୍ତ୍ୱର ପ୍ରକୃତିରୁ ସମୁତ୍ପନ୍ନ । ସୁତରାଂ ଏହା ମୂଳ ପ୍ରକୃତିର ବିକୃତି ଏବଂ ମହତ୍ତତ୍ତ୍ୱରୁ ଅହଂକାରର ଉତ୍ପତ୍ତି; ଅତଏବ ଅହଙ୍କାରର ପ୍ରକୃତି ମହତ୍, ତେଣୁ ଏହା ପ୍ରକୃତି ଏବଂ ଉତ୍ପନ୍ନ ହୋଇଅଛି ବୋଲି କେବଳ ବିକୃତି । ପଞ୍ଚ ମହାଭୂତ ଓ ଏକାଦଶ ଇନ୍ଦ୍ରିୟ କେବଳ ବିକୃତି ଅର୍ଥାତ୍ ଏହି ଷୋଳଟି କୌଣସି ତତ୍ତ୍ୱାନ୍ତରରୁ ଉତ୍ପତ୍ତି ହୋଇନାହିଁ । ପୁରୁଷ ଅନୁଭୟରୂପ ଅର୍ଥାତ୍ ପ୍ରକୃତି କିମ୍ବା ବିକୃତି ମଧ୍ୟ ନୁହେଁ ।

ପ୍ରକରୋତୀତି ପ୍ରକୃତିଃ ପ୍ରଧାନଂ "ସତ୍ତ୍ୱରଜସ୍ତମସାଂ ସାମ୍ୟାବସ୍ଥା ସା ଅବିକୃତିଃ ପ୍ରକୃତିରେବ ସା ମୂଳ ପ୍ରକୃତିଃ ବିଶ୍ୱସ୍ୟ କାର୍ଯ୍ୟସଂଘାତସ୍ୟ ମୂଳଂ ନତ୍ୱସ୍ୟା ମୂଳାନ୍ତରମସ୍ତି, ଅନବସ୍ଥା ପ୍ରସଙ୍ଗାତ୍" (ତତ୍ତ୍ୱକୌମୁଦୀ) ।

ଯାହାଠାରୁ ବସ୍ତ୍ୱନ୍ତରର ଉତ୍ପତ୍ତି ହୁଏ ତାହାର ନାମ ପ୍ରକୃତି । ଅତଏବ ଏହାର ନାମ ପ୍ରଧାନ । ସତ୍ତ୍ୱ, ରଜ ଓ ତମୋଗୁଣର ସାମ୍ୟାବସ୍ଥାର ନାମ ପ୍ରକୃତି । ଏହି ପ୍ରଧାନ ହିଁ ସଂସାର କାର୍ଯ୍ୟସମୂହର ମୂଳ । ଏହାର ଅନ୍ୟ କୌଣସି ମୂଳାନ୍ତର ନାହିଁ, କାରଣ ମୂଳାନ୍ତର ସ୍ୱୀକାର

କଲେ ଅନବସ୍ଥା ଦୋଷ ହେବ । ଅତଏବ ସ୍ୱୀକାର କରାଯାଉ. ଯାହାର ଅନ୍ୟ କୌଣସି ମୂଳ ନାହିଁ ତାହାରି ନାମ ପ୍ରକୃତି ।

ପୁରୁଷ କୂଟସ୍ଥ ଅର୍ଥାତ୍ ଜନ୍ୟ ଧର୍ମର ଅନାଶ୍ରୟ, ଅଧିକାରୀ ଓ ଅସଙ୍ଗ । ଅତଏବ ପୁରୁଷ କାରଣ ହୋଇ ନପାରନ୍ତି । ପୁରୁଷ ନିତ୍ୟ, ତାହାର ଉତ୍ପତ୍ତି ନାହିଁ; ସୁତରାଂ କାର୍ଯ୍ୟ ମଧ୍ୟ ନୁହନ୍ତି; ଅତଏବ ପୁରୁଷ ଅନୁଭୟାତ୍ମକ । ପୂର୍ବେ କୁହାଯାଇଅଛି - ଯେଉଁସବୁ ପଦାର୍ଥ ଅତୀନ୍ଦ୍ରିୟ ତାହା ଅନୁମାନ ପ୍ରମାଣସିଦ୍ଧ । ଜଗତ୍‌ରୂପ କାର୍ଯ୍ୟରୁ ଦେଖି ତାହାର କାରଣ ଅନୁମାନ କରାଯାଏ, ଯେହେତୁ କାରଣ ଭିନ୍ନ କାର୍ଯ୍ୟ କଦାପି ହୁଏ ନାହିଁ । ଜଗତ୍‌ରୂପ କାର୍ଯ୍ୟର କାରଣ ପ୍ରକୃତି - ଏହା ଅନୁମାନସିଦ୍ଧ ଓ ଦୃଢ଼ ସତ୍ୟ ।

ଜଡ଼ବାଦୀ ବୌଦ୍ଧ ଦାର୍ଶନିକଗଣ କହନ୍ତି ଜଗତ୍ ଅସତ୍ କାର୍ଯ୍ୟରୁ ସମୁତ୍ପନ୍ନ; ଯେହେତୁ ବୀଜରୁ ଅଙ୍କୁର ଉତ୍ପତ୍ତି ହୁଏନାହିଁ; କିନ୍ତୁ ପାର୍ଥିବ ଉଷ୍ଣତା ଓ ସଲିଳାଦି ସଂଯୋଗରେ ବୀଜ ବିନଷ୍ଟ ହେଲେ, ପରେ ଅଙ୍କୁରୋତ୍ପତ୍ତି ହୁଏ । ସୁତରାଂ ଭାବରୂପ ବୀଜ ଅଙ୍କୁରୋତ୍ପତ୍ତିର କାରଣ ନୁହେଁ । ବୀଜର ଧ୍ୱଂସ ଅଙ୍କୁର ରୂପ ଭାବପଦାର୍ଥର କାରଣ, ଅତଏବ ସର୍ବତ୍ର ଅଭାବ କେବଳ ଭାବୋତ୍ପତ୍ତିର କାରଣ ।

ଏ ସିଦ୍ଧାନ୍ତ ନିତାନ୍ତ ଭ୍ରମାତ୍ମକ । ଯେହେତୁ ବୀଜ ଧ୍ୱଂସ ହେଲେ ଅଙ୍କୁରୋତ୍ପତ୍ତି ହୁଏ ସତ୍ୟ କିନ୍ତୁ ତାହା ବୋଲି ବୀଜର ନିରନ୍ୱୟ ବିନାଶ ହୁଏ ନାହିଁ । ବୀଜ ବିନଷ୍ଟ ହୁଏ ସତ୍ୟ କିନ୍ତୁ ବିନଷ୍ଟ ବୀଜର ଅବୟବ ବିନଷ୍ଟ ହୁଏ ନାହିଁ । ଏହି ଭାବସ୍ୱରୂପ ବୀଜାବୟବ ଅଙ୍କୁରର ଉତ୍ପାଦକ; ବୀଜର ଅଭାବ ଅଙ୍କୁରର ଉତ୍ପାଦକ ନୁହେଁ । ଅଭାବ ଭାବୋତ୍ପତ୍ତିର କାରଣ ହେଲେ, ଅଭାବ ସକଳ ସ୍ଥଳରେ ସୁଲଭ ହୋଇ ସକଳ ସ୍ଥଳରେ ସକଳ ଭାବ ପଦାର୍ଥ ଉତ୍ପାଦନ କରିପାରେ । ତାହାହେଲେ ସକଳ ସ୍ଥଳରେ ସକଳ ପଦାର୍ଥର ଉତ୍ପତ୍ତି ସମ୍ଭବ, ଅତଏବ ସ୍ୱୀକାର କରିବାକୁ ହେବ ଯେ ଅଭାବ ଭାବୋତ୍ପତ୍ତିର କାରଣ ନୁହେଁ ଏହି ଭାବପଦାର୍ଥ ସମସ୍ତ ଭାବପଦାର୍ଥର ଉତ୍ପତ୍ତି କାରଣ । ସାଂଖ୍ୟ ଦାର୍ଶନିକଗଣ ବେଦାନ୍ତର ବିବର୍ତ୍ତନବାଦ ଖଣ୍ଡନ କରି ସ୍ୱୀୟ ପରିଣାମବାଦ ସମର୍ଥନ କରି କହନ୍ତି ଯେ କାର୍ଯ୍ୟ କାରଣଠାରୁ ଭିନ୍ନ ନୁହେଁ, ତାହା କାରଣର ଅବସ୍ଥାନ୍ତର ମାତ୍ର । ଦୁଗ୍ଧ ଦଧି ରୂପେ, ସୁବର୍ଣ୍ଣ କୁଣ୍ଡଳ ରୂପେ, ମୃତ୍ତିକା ଘଟରୂପେ ଓ ତନ୍ତୁ ପଟ ରୂପେ ପରିଣତ ହୁଏ । ଅତଏବ ଦଧି, କୁଣ୍ଡଳ, ଘଟ ଓ ପଟ ଯଥାକ୍ରମେ ଦୁଗ୍ଧ, ସ୍ୱର୍ଣ୍ଣ, ମୃତ୍ତିକା ଓ ତନ୍ତୁ ବସ୍ତୁ ରୂପରୁ ଭିନ୍ନ ନୁହେଁ; କେବଳ ଏକ । କାର୍ଯ୍ୟ ଯଦି କାରଣଠାରୁ ଅଭିନ୍ନ ତେବେ ଉତ୍ପତ୍ତିର ପୂର୍ବେ ମଧ୍ୟ କାର୍ଯ୍ୟ ସୂକ୍ଷ୍ମରୂପେ କାରଣରେ ବିଦ୍ୟମାନ ଥିଲା । ଯେଉଁ ସକଳ ଉପାୟରେ କାର୍ଯ୍ୟର ଉତ୍ପତ୍ତି ହୁଏ ବୋଲି ସଚରାଚର ବିବେଚନା କରାଯାଏ ସେ ସମସ୍ତ ଉପାୟ କାର୍ଯ୍ୟର ଉତ୍ପାଦକ ନୁହେଁ । ଯେହେତୁ ତାହାର ପୂର୍ବରେ ମଧ୍ୟ କାର୍ଯ୍ୟ ସୂକ୍ଷ୍ମ ରୂପେ କାରଣରେ ଥିଲା । ସୁତରାଂ କାରଣ ବ୍ୟାପାର କାର୍ଯ୍ୟର ଉତ୍ପାଦକ ନୁହେଁ; ଅଭିବ୍ୟଞ୍ଜକ ବା ପ୍ରକାଶକ ମାତ୍ର । ଅତଏବ ଜଗତର ମୂଳ କାରଣ କେବଳ ସତ୍ । କାରଣ

ବ୍ୟାପାରର ପୂର୍ବରେ ଯଦି କାର୍ଯ୍ୟ ଅସତ୍- ଅବିଦ୍ୟମାନ ଥାଆନ୍ତା ତେବେ କେହିହେଲେ ମଧ୍ୟ କାର୍ଯ୍ୟର ବିଦ୍ୟମାନତ୍ୱ ସମ୍ପାଦନ କରିପାରନ୍ତେ ନାହିଁ । ଶତସହସ୍ର ଶିଳ୍ପୀ ମଧ୍ୟ ପୀତକୁ ନୀଳ ନୀଳକୁ ପୀତ କରିପାରିବେ ନାହିଁ, କାରଣ ନୀଳ ପୀତ ନୁହେଁ । ଯାହା ଅସତ୍ ତାହା ଚିରକାଳ ଅସତ୍ ଏବଂ ଯାହା ସତ୍ ତାହା ଚିରକାଳ ସତ୍ । ଏଠାରେ ଖଣ୍ଡନ କରାଯାଇପାରେ ଯେ ଘଟ ଯେପରି ଅଗ୍ନିରେ ଦଗ୍ଧ ହେବା ପୂର୍ବରୁ ଶ୍ୟାମ ବର୍ଣ୍ଣ ଧାରଣ କରିଥାଏ ଏବଂ ଦଗ୍ଧହେବା ପରେ ରକ୍ତବର୍ଣ୍ଣ ଧାରଣ କରେ ସେପରି, କାର୍ଯ୍ୟ ଓ କାରଣ ବ୍ୟାପାର ପୂର୍ବେ ଅସତ୍ ଏବଂ କାରଣ ବ୍ୟାପାର ପରେ ସତ୍ ହେବା କୌଣସି ବାଧାଜନକ ନୁହେଁ । ଅର୍ଥାତ୍ କାଳ ଭେଦରେ ଘଟର ଶ୍ୟାମତ୍ୱ ଓ ରକ୍ତତ୍ୱର ନ୍ୟାୟ ଅସତ୍ତ୍ୱ ମଧ୍ୟ ସତ୍ତ୍ୱ ଘଟର ଧର୍ମ ହୋଇପାରେ ।

ଏହାପରେ ବକ୍ତବ୍ୟ ଏହି ଯେ ପ୍ରକାରାନ୍ତରେ ସତ୍‌କାର୍ଯ୍ୟବାଦ ଅଙ୍ଗୀକୃତ ହୁଏ । ଯେହେତୁ ଶ୍ୟାମ ଓ ରକ୍ତ ଏହି ଉଭୟ ଅବସ୍ଥାରେ ଘଟ ସତ୍ ଅର୍ଥାତ୍ ବିଦ୍ୟମାନ ବୋଲି କାଳଭେଦରେ ଘଟରଶ୍ୟାମତ୍ୱ ଓ ରକ୍ତତ୍ୱ ରୂପ ଧର୍ମଭେଦ ହୋଇପାରେ । ପ୍ରକୃତ ସ୍ଥଳେ କାଳଭେଦରେ ଅସତ୍ତ୍ୱ ଓ ସତ୍ତ୍ୱ ଘଟର ଧର୍ମ ଅର୍ଥାତ୍ ଉତ୍ପତ୍ତିର ପୂର୍ବରେ ଘଟର ଅସତ୍ତ୍ୱ ଏବଂ ଉତ୍ପତ୍ତିର ପରେ ତାହାର ସତ୍ତ୍ୱ ସ୍ୱୀକାର କଲେ ଉଭୟ କାଳରେ ଘଟର ବିଦ୍ୟମାନ୍ୟତା ଅବଶ୍ୟ ସ୍ୱୀକାର କରିବାକୁ ହେବ; କାରଣ ଧର୍ମର ଆଶ୍ରୟରେ ଧର୍ମର ଅବସ୍ଥିତି । ଯେହେତୁ ବ୍ୟାପାରରେ ପୂର୍ବେ ଧର୍ମରୂପ ଘଟ ନାହିଁ ଅଥଚ ତାହାର ଧର୍ମର ଅସତ୍ତ୍ୱ ଥିବା ଏକାନ୍ତ ଅସମ୍ଭବ । ନିପୀଡ଼ନ ଦ୍ୱାରା ତିଳରୁ ତୈଳ ଓ ଆଘାତଦ୍ୱାରା ଧାନରୁ ତଣ୍ଡୁଳର ଅଭିବ୍ୟକ୍ତି ହୁଏ । ସୁତରାଂ କାରଣ ବ୍ୟାପାରଦ୍ୱାରା ସତ୍‌ର ଅଭିବ୍ୟକ୍ତି ସମସ୍ତେ ସ୍ୱୀକାର କରିବେ । ଯାହା ସ୍ୱତଃପ୍ରମାଣ ତାହାର ଆଉ ପ୍ରମାଣାନ୍ତରର ପ୍ରୟୋଜନ କ'ଣ? କିନ୍ତୁ ଅସତ୍‌ର ଉତ୍ପତ୍ତି ସମ୍ବନ୍ଧରେ ଗୋଟିଏ ସୁଦ୍ଧା ଦୃଷ୍ଟାନ୍ତ ନାହିଁ । ଯାହା ଅସତ୍ କୌଣସି କାଳେ ତାହାର ଉତ୍ପତ୍ତି ହୁଏ ନାହିଁ । ମନୁଷ୍ୟର ଶୃଙ୍ଗ, କୂର୍ମର ରୋମ ଓ ଆକାଶର କୁସୁମ ଏହି ସମସ୍ତ ସତ୍ ନୁହେଁ । ଅତଏବ ଏହାର ଉତ୍ପତ୍ତି ଅସମ୍ଭବ ଏବଂ ଯେଉଁ କାରଣର ସହିତ ଯେଉଁ କାର୍ଯ୍ୟର ସମ୍ବନ୍ଧ ଥାଏ ସେହି କାରଣଦ୍ୱାରା ସେହି କାର୍ଯ୍ୟ ଆବିର୍ଭୂତ ହୁଏ । ଯେଉଁ କାର୍ଯ୍ୟର ସହିତ ଯେଉଁ କାରଣର ସମ୍ବନ୍ଧ ନାହିଁ, ସେହି କାରଣଦ୍ୱାରା ସେହି କାର୍ଯ୍ୟର ଆବିର୍ଭାବ ହୁଏନାହିଁ । ତନ୍ତୁର ସହିତ ପଟର, ମୃତ୍ତିକାର ସହିତ ଘଟର ସମ୍ବନ୍ଧ ଅଛି ବୋଲି ତନ୍ତୁରୁ ପଟ ମୃତ୍ତିକାରୁ ଘଟ, ଉତ୍ପନ୍ନ ହୁଏ । ତନ୍ତୁର ସହିତ ଘଟର, ମୃତ୍ତିକାର ସହିତ ପଟର ସମ୍ବନ୍ଧ ନାହିଁ ବୋଲି ତନ୍ତୁରୁ ଘଟ ଓ ମୃତ୍ତିକାରୁ ପଟ ହୁଏନାହିଁ । ଜଗତର ଯାହା କାରଣ ତାହା ସତ୍; ସତ୍ କାରଣରୁ ଏହି ସତ୍ ଜଗତ୍‌ର ଉତ୍ପତ୍ତି ହୋଇଅଛି । କାରଣଭିନ୍ନ କାର୍ଯ୍ୟ ହୋଇପାରେ ନାହିଁ । ଏହି ଜଗତ୍ କାର୍ଯ୍ୟର କାରଣ ପ୍ରଧାନ ବା ପ୍ରକୃତି । ଏହି ପ୍ରଧାନ ସୁଖ, ଦୁଃଖ ଓ ମୋହାତ୍ମକ । ଜଗତର ପ୍ରତ୍ୟେକ ପଦାର୍ଥରେ ସୁଖ, ଦୁଃଖ ଓ ମୋହ ଅଛି । କାରଣରେ ଯଦି ସୁଖ ଦୁଃଖାଦି ନଥା'ନ୍ତା ତେବେ ତାହାର କାର୍ଯ୍ୟ ଜଗତ୍‌ରେ ମଧ୍ୟ ସୁଖ ଦୁଃଖାଦି ନଥା'ନ୍ତା ।

ପ୍ରତ୍ୟେକ ଦ୍ରବ୍ୟରେ ସୁଖ ଦୁଃଖ ଥିବା ଗୋଟିଏ ଦୃଷ୍ଟାନ୍ତ - ରୂପଯୌବନସମ୍ପନ୍ନା ଜଣେ ରମଣୀ ସ୍ୱୀୟ ସ୍ୱାମୀକି ସୁଖୀ ଓ ସପତ୍ନୀକ ଦୁଃଖିନୀ ଏବଂ ତାହାର ରୂପମୁଗ୍ଧ ପ୍ରଣୟୀକୁ ମୋହିତ କରେ । କାରଣ ସ୍ୱାମୀର ପ୍ରତି ତାହାର ସୁଖ ରୂପ ସମୁଦ୍ଭୂତ, ଦୁଃଖାଦିରୂପ ଅଭିଭୂତ ସପତ୍ନୀ ପ୍ରତି, ଦୁଃଖରୂପସମୁଦ୍ଭୂତ, ସୁଖାଦି ରୂପ ଅଭିଭୂତ ପ୍ରବଞ୍ଚିତ ଜାରପ୍ରତି ମୋହରୂପ ସମୁଦ୍ଭୂତ ସୁଖାଦି ରୂପ ଅଭିଭୂତ, ଅର୍ଥାତ୍ ଏହି ସ୍ତ୍ରୀଠାରେ ଯେପରି ସୁଖ, ଦୁଃଖ ଓ ମୋହ ଅଛି ତଦ୍‌ବତ୍ ଜଗତରେ ସର୍ବତ୍ର ସୁଖ, ଦୁଃଖ ଓ ମୋହ ବିଦ୍ୟମାନ । ଯଦି ସେ ସ୍ତ୍ରୀଠାରେ ସୁଖ, ଦୁଃଖ ଓ ମୋହ ନଥା'ନ୍ତା ତେବେ ସ୍ୱାମୀକି ସୁଖୀ, ସପତ୍ନୀକ, ଦୁଃଖିନୀ ଏବଂ ଜାରକୁ ବିମୋହିତ କରିପାରନ୍ତା ନାହିଁ । ଯେହେତୁ କାରଣ ଭିନ୍ନ କାର୍ଯ୍ୟ ହୁଏ ନାହିଁ ।

ସୁଖ, ଦୁଃଖ ଓ ମୋହର କାର୍ଯ୍ୟ ପ୍ରତ୍ୟକ୍ଷରେ ଦୃଷ୍ଟ ହେଲାଠାରେ ଏହାର କାରଣରେ ଯେ ସୁଖଦୁଃଖ ମୋହ ଅଛି ତାହା କହିବା ନିଷ୍ପ୍ରୟୋଜନ । ଏତଦ୍ଦ୍ୱାରା ସିଦ୍ଧ ହୁଏ ଯେ ଜଗତର ଯାହା ମୂଳ କାରଣ ତାହା ସୁଖଦୁଃଖ ଓ ମୋହାତ୍ମକ । ସୁତରାଂ ପ୍ରକୃତି ସୁଦ୍ଧା ସୁଖଦୁଃଖ ଓ ମୋହାତ୍ମିକା । ତ୍ରିଗୁଣର ସାମ୍ୟାବସ୍ଥାକୁ ପ୍ରକୃତି କୁହାଯାଏ । ଅବ୍ୟକ୍ତ ଓ ପ୍ରଧାନ ପ୍ରଭୃତି ଏହାର ନାମାନ୍ତର ମାତ୍ର । ସତ୍ୱଗୁଣ ସୁଖାତ୍ମକ, ରଜୋଗୁଣ ଦୁଃଖାତ୍ମକ ଓ ତମୋଗୁଣ ମୋହାତ୍ମକ । କିନ୍ତୁ ଏହି ଗୁଣତ୍ରୟ ପରସ୍ପର ବିରୋଧୀ ହେଲେ ମଧ୍ୟ କାର୍ଯ୍ୟ ଜନନରେ କୌଣସି ବ୍ୟାଘାତ ଜନ୍ମେ ନାହିଁ । ସମସ୍ତେ ମିଳିତ ହୋଇ କାର୍ଯ୍ୟ କରନ୍ତି; ଏଥିମଧ୍ୟରୁ ଯେଉଁ ଗୁଣର ପ୍ରାବଲ୍ୟ ହୁଏ ତାହାର ଧର୍ମ ପ୍ରକାଶ ପାଏ ।

ଯେପରି ବର୍ତ୍ତୀ ଓ ତୈଳ ପ୍ରତ୍ୟେକ ଅନଳ ବିରୋଧୀ ହେଲେ ମଧ୍ୟ ଉଭୟେ ମିଳିତ ହୋଇ ସ୍ୱକାର୍ଯ୍ୟ ସମ୍ପାଦନରେ ସମର୍ଥ ହୁଅନ୍ତି,ସେହିପରିଏହି ଗୁଣତ୍ରୟ ପରସ୍ପର ମିଳିତ ହୋଇ କାର୍ଯ୍ୟ ସାଧନରେ ସମର୍ଥ ହୁଅନ୍ତି ।

ସତ୍ୱାଦିର ପରସ୍ପର ସଂଯୋଗ ଓ ଲଘୁତ୍ୱାଦି ଗୁଣ ଅଛି ବୋଲି ଏହା ଦ୍ରବ୍ୟ ପଦାର୍ଥ । ସତ୍ତ୍ୱାଦି ଗୁଣତ୍ରୟ ପୁରୁଷରୂପ ପଶୁକୁ ବନ୍ଧନ କରେ ବୋଲି ଏହାକୁ ଗୁଣ ବୋଲାଯାଏ । ରଜ୍ଜୁଦ୍ୱାରା ପଶୁବନ୍ଧନ ହେଲାପରି ତ୍ରିଗୁଣଦ୍ୱାରା ପୁରୁଷ ଆବଦ୍ଧ ହୋଇଥାଏ, ଏହାହିଁ ଗୁଣର ତାତ୍ପର୍ଯ୍ୟ; ସୁତରାଂ ଏହା ଗୁଣ ନୁହେଁ ଦ୍ରବ୍ୟ ପଦାର୍ଥ ।

ଏହାର ତାତ୍ପର୍ଯ୍ୟ - ସତ୍ୱାଦିଗୁଣ ଦ୍ରବ୍ୟ ପଦାର୍ଥ । ଗୁଣତ୍ରୟର ସାମ୍ୟାବସ୍ଥାର ନାମ ପ୍ରକୃତି ଏହି ପ୍ରକୃତି ସର୍ବଦା ପରିଣାମଶୀଳା । ପ୍ରକୃତିର ଏହି ପରିଣାମ ଦ୍ୱିବିଧ- ସ୍ୱରୂପ- ପରିଣାମ ଓ ବିରୂପ-ପରିଣାମ । ଜଗତର ପ୍ରଳୟ କାଳ ଉପସ୍ଥିତିବେଳେ ପ୍ରକୃତିର ସଦୃଶ ପରିଣାମ, ଅର୍ଥାତ୍ ସତ୍ୱ ରୂପେ ରଜୋ ରଜୋରୂପେ ପରିଣତ ହୁଏ । ଏହି ପରିଣାମରେ ମହତ୍, ଅହଂକାର ପ୍ରଭୃତି ସତ୍ୱ ସକଳରୁ ଉଦ୍ଭବ ହୁଏ ନାହିଁ । ସକଳ ତତ୍ତ୍ୱ ନିଜ ନିଜ କାରଣରେ ଲୀନ ହୋଇଥାଏ । ଗୁଣତ୍ରୟର ଯେତେବେଳେ ବିସଦୃଶ ପରିଣାମ ହୁଏ ତେତେବେଳେ ଜଗତର ସୃଷ୍ଟି; ସେତେବେଳେ ଗୁଣତ୍ରୟ ମିଳିତ ହୋଇ ପରିଣତ ହୁଏ; କିନ୍ତୁ ପୃଥକ୍ ରୂପେ ଏହାର

ପରିଣାମ ହୁଏ ନାହିଁ । ଜଗତରେ ଯେଉଁ ବୈଷମ୍ୟ ଦେଖାଯାଏ, ତାହା ଗୁଣତ୍ରୟର ପରିଣାମ ବୈଷମ୍ୟ ମାତ୍ର । ଭିନ୍ନ ଭିନ୍ନ କାର୍ଯ୍ୟର ଉତ୍ପତ୍ତିରୁ ଭିନ୍ନ ଭିନ୍ନ ଗୁଣର ପ୍ରାଧାନ୍ୟ । ଯେପରି ଜଳର ରସ ଏକ ହେଲେ ସୁଦ୍ଧା ଭୂବିକାର ବିଶେଷର ସଂଯୋଗରୁ ନାରିକେଳ, ଜମ୍ବୀର, ବିଲ୍ୱାଦି ଫଳରେ ବିଭିନ୍ନ ରସରୂପେ ପରିଣତ ହୋଇ ମଧୁର, ଅମ୍ଳ, ତିକ୍ତାଦି ରୂପେ ଅନୁଭୂୟମାନ ହୁଏ ସେହିପରି କାର୍ଯ୍ୟ ବିଶେଷର ଉଦ୍ଭବ ଏବଂ ଗୁଣାନ୍ତରର ଅଭିଭବ ହୋଇ ଅପ୍ରଧାନ ଗୁଣ ପ୍ରଧାନ ଗୁଣର ଆଶ୍ରୟରେ ବିଚିତ୍ର ପରିଣାମର କାର୍ଯ୍ୟ ଉତ୍ପାଦନ କରେ । ଅତଏବ ଜଗତର ସମସ୍ତ ବୈଷମ୍ୟ ଗୁଣ ପରିଣାମ ବୈଷମ୍ୟର ଏକମାତ୍ର କାରଣ । ପ୍ରକୃତିଠାରୁ ଆରମ୍ଭ କରି, ଚରମ କାର୍ଯ୍ୟ ପର୍ଯ୍ୟନ୍ତ ସମସ୍ତ ଜଡ଼ ବର୍ଗ ସଂହତ ଅର୍ଥାତ୍ ମିଳିତ ଗୁଣତ୍ରୟର ସ୍ୱରୂପ । ସୁତରାଂ ସୁଖ, ଦୁଃଖ ଓ ମୋହାତ୍ମକ । ଏ ସମସ୍ତ ପରାର୍ଥ ଅର୍ଥାତ୍ ଅପରର ପ୍ରୟୋଜନ ସମ୍ପାଦନ ଲାଗି ଏମାନଙ୍କର ଉଦ୍ଭବ । ଗୃହ, ଶଯ୍ୟା ପ୍ରଭୃତି ପଦାର୍ଥ ସଂଘାତ ରୂପ ଅଥଚ ପରାର୍ଥ ଏହା ପ୍ରତ୍ୟକ୍ଷ ସିଦ୍ଧ ପ୍ରକୃତି, ମହଦାଦି ତତ୍ତ୍ୱ ସକଳ ସଂଘାତ; ଅତଏବ ପରାର୍ଥ । ପର ପୁରୁଷ ଆତ୍ମାର ପ୍ରୟୋଜନ ଲାଗି ପ୍ରକୃତିର ପ୍ରବୃତ୍ତି । ପୁରୁଷ ତ୍ରିଗୁଣାତ୍ମକ ନୁହେଁ; ସୁତରାଂ ତ୍ରିଗୁଣାତୀତ । କାରଣ ପୁରୁଷ ସଂଘାତ ହେଲେ ପରାର୍ଥ ହୁଅନ୍ତି । ସେହି ପର ସଂଘାତାତ୍ମକ ହେଲେ ତାହା ମଧ୍ୟ ପରାର୍ଥ ହେବ ଏହି ରୂପେ ଅନବସ୍ଥାଦୋଷ ଉପସ୍ଥିତ ହୁଏ; ସୁତରାଂ ପୁରୁଷ ଅସଂହତ । ''ସଂଘାତ ପରାର୍ଥତ୍ୱାତ୍ ତ୍ରିଗୁଣାଦି ବିପର୍ଯ୍ୟୟାଦଧିଷ୍ଠାନାତ୍ ପୁରୁଷୋଽସ୍ତି ଭୋକ୍ତୃଭାବାତ୍ କୈବଲ୍ୟାର୍ଥଂ ପ୍ରବୃତ୍ତେଶ୍ଚ । (ସାଂଖ୍ୟକାରିକା) ଏବଂ ସାଂଖ୍ୟସୂତ୍ରରେ ମଧ୍ୟ ''ସଂହତପରାର୍ଥତ୍ୱାତ୍'' ''ତ୍ରିଗୁଣାଦି ବିପର୍ଯ୍ୟୟାତ୍'' ''ଅଧିଷ୍ଠାନାଚ୍ଚ ତ୍ରିଗୁଣାତ୍ମକ'' । ରଥାଦି ସାରଥି ପ୍ରଭୃତି ଚେତନ କର୍ତ୍ତୃକ ଅଧିଷ୍ଠିତ ବୁଦ୍ଧ୍ୟାଦି ମଧ୍ୟ ତ୍ରିଗୁଣାତ୍ମକ ସୁତରାଂ ତାହା ମଧ୍ୟ ଅନ୍ୟଚେତନ କର୍ତ୍ତୃକ ଅଧିଷ୍ଠିତ । ଅତଏବ ଚେତନ ହିଁ ପୁରୁଷ ବା ଆତ୍ମା । ସୁଖ ଅନୁକୂଳ ବେଦନୀୟ ଓ ଦୁଃଖ ପ୍ରତିକୂଳ ବେଦନୀୟ । ବୁଦ୍ଧ୍ୟାଦି ସୁଖଦୁଃଖାତ୍ମିକା । ଅତଏବ ପୁରୁଷ ସୁଖର ଅନୁକୂଳ ବେଦନୀୟ ବା ଦୁଃଖର ପ୍ରତିକୂଳ ବେଦନୀୟ ହୋଇପାରେ ନାହିଁ । ସେହି ହେତୁ ପୁରୁଷ ଯଦି ସୁଖ ବା ଦୁଃଖର ଅନୁକୂଳ କିମ୍ବା ପ୍ରତିକୂଳ ବେଦନୀୟ ହୁଏ ତାହାହେଲେ ସ୍ୱକ୍ରିୟା ବିରୋଧ ହୋଇଯିବ । ବୁଦ୍ଧ୍ୟାଦି ଦୃଶ୍ୟ, ସେହି ସକଳର ଦ୍ରଷ୍ଟାରୂପେ ପୁରୁଷ ସିଦ୍ଧ ହୋଇଥାଏ । କାରଣ ଦ୍ରଷ୍ଟା ଭିନ୍ନ ଦୃଶ୍ୟ ରହିପାରେ ନାହିଁ । ଏହି ପୁରୁଷ ପ୍ରତି ଶରୀରରେ ଭିନ୍ନ । ସକଳ ଶରୀରର ପୁରୁଷ ଏକ ହେଲେ ଜନ୍ମ ମରଣାଦିର ବ୍ୟବସ୍ଥା ହୋଇପାରିବ ନାହିଁ । ତାହାହେଲେ ଜଣକର ଜନ୍ମ ମରଣରେ ସମସ୍ତଙ୍କର ଜନ୍ମ ମରଣ ଏବଂ ଜଣକର ବିକଳାଙ୍ଗ ବା କ୍ଲୀବତ୍ୱରେ ସମସ୍ତଙ୍କର ସେହିପରି ଘଟନ୍ତା ନାହିଁ କି? ସୁତରାଂ ପ୍ରତ୍ୟେକ ଶରୀରର ପୁରୁଷ ଭିନ୍ନ ଭିନ୍ନ ଯଥା :-

''ଜନ୍ମମରଣକରଣାନାଂ ପ୍ରତିନିୟମାଦଯୁଗପତ୍ ପ୍ରବୃତ୍ତେଶ୍ଚ ପୁରୁଷ ବହୁତ୍ୱଂ ସିଦ୍ଧଂ ତ୍ରୈଗୁଣ୍ୟ ବିପର୍ଯ୍ୟୟାଚ୍ଚୈବ'' (ସାଂଖ୍ୟକାରିକା) ଏହି ପୁରୁଷ ସାକ୍ଷୀ ସ୍ୱରୂପ ମାତ୍ର । ପ୍ରକୃତି ନିଜର ଏହି ସମସ୍ତ ଆଚରଣ ପୁରୁଷକୁ ଦେଖାଏ ।

ବାଦୀ ପ୍ରତିବାଦୀ ବିବଦମାନ ବିଷୟ ଯାହାକୁ ଦର୍ଶାନ୍ତି ସେ ସାକ୍ଷୀ । ପ୍ରକୃତି ମଧ୍ୟ ନିଜର ଆଚରଣ ପୁରୁଷକୁ ଦର୍ଶାଏ, ତେଣୁ ପୁରୁଷ ସାକ୍ଷୀ ଓ ଦ୍ରଷ୍ଟା । ପୁରୁଷ ତ୍ରିଗୁଣାତୀତ ଅତଏବ ଅକର୍ତ୍ତା, ଉଦାସୀନ ଓ କୈବଲ୍ୟଯୁକ୍ତ । ଦୁଃଖତ୍ରୟର ଅତ୍ୟନ୍ତ ଅଭାବ ହିଁ କୈବଲ୍ୟ । ଦୁଃଖ ଗୁଣାତ୍ମକ, ପୁରୁଷ ଗୁଣାତୀତ । ପ୍ରଧାନ ମହଦାଦି ଭୋଗ୍ୟ ବୋଲି ଭୋକ୍ତାର ଅପେକ୍ଷା କରେ । ବୁଦ୍ଧ୍ୟାଦିରେ ପ୍ରତିବିମ୍ବିତ ପୁରୁଷ ବୁଦ୍ଧ୍ୟାଦିଗତ ଦୁଃଖ ନିଜର ବୋଲି ବିବେଚନା କରେ । ବିବେକ ଜ୍ଞାନଦ୍ୱାରା ଏହି ଦୁଃଖର ପରିହାର ହୁଏ ।

ବିବେକ ଜ୍ଞାନ ମଧ୍ୟ ବୁଦ୍ଧିବୃତ୍ତି ବିଶେଷ; ଅତଏବ ବିବେକ ଜ୍ଞାନ ଲାଗି ପୁରୁଷ ମଧ୍ୟ ପ୍ରକୃତିର ଅପେକ୍ଷା କରେ । ଏହିପରି ଦୁହିଁଙ୍କର ଦୁହିଁଙ୍କ ପ୍ରତି ଅପେକ୍ଷା ଅଛି ବୋଲି ପ୍ରକୃତି ପୁରୁଷର ପରସ୍ପର ସଂଯୋଗ ହୁଏ । ଏହି ସଂଯୋଗ ବଶରୁ ସୃଷ୍ଟି । ଗତିଶକ୍ତିହୀନ ଓ ଦୃକ୍ ଶକ୍ତି ସମ୍ପନ୍ନ ପଙ୍ଗୁ ଏବଂ ଦୃକ୍‌ଶକ୍ତି ହୀନ ଓ ଗତିଶୀଳ ଅନ୍ଧ ଅନ୍ୟୋଃନ୍ୟ ଅପେକ୍ଷାରେ ସଂଯୁକ୍ତ ହୁଅନ୍ତି । ପଙ୍ଗୁ ଅନ୍ଧକୁ ସ୍କନ୍ଧରେ ବସାଇ ପଥ ଦର୍ଶାଇଲେ ଅନ୍ଧ ଗମନ କରେ । ଏବଂ ତଦ୍ଦ୍ୱାରା ଉଭୟଙ୍କର ଅଭିଳାଷ ସିଦ୍ଧ ହୁଏ । ପ୍ରକୃତି ପୁରୁଷ ସଂଯୋଗ ମଧ୍ୟ ତଦ୍ରୂପ । ପୁରୁଷ ଦୃକ୍‌ଶକ୍ତିଯୁକ୍ତ ଓ କ୍ରିୟାଶକ୍ତି ଶୂନ୍ୟ ବୋଲି ପଙ୍ଗୁ ସ୍ଥାନୀୟ ଏବଂ ପ୍ରକୃତି କ୍ରିୟା ଶକ୍ତିଯୁକ୍ତ ଓ ଦୃକ୍‌ଶକ୍ତି ଶୂନ୍ୟ ବୋଲି ଅନ୍ଧ ସ୍ଥାନୀୟ । ଉଭୟଙ୍କର ସଂଯୋଗରୁ ପ୍ରକୃତି ମହଦାଦି ଅଚେତନ ହେଲେ ମଧ୍ୟ ଚେତନ ପରି, ପୁରୁଷ ସ୍ୱରୂପତଃ ଅକର୍ତ୍ତା ହେଲେ ମଧ୍ୟ ଗୁଣ କର୍ତ୍ତୃତ୍ୱରେ କର୍ତ୍ତା ପରି ପ୍ରତୀୟମାନ ହୁଏ ।

"ତସ୍ମାତ୍ତତ୍ସଂଯୋଗାତ୍ ଅଚେତନଂ ଚେତନବଦଲିଙ୍ଗଂ<br>
ଗୁଣକର୍ତ୍ତୃତ୍ୱେ ଚ ତଥା କର୍ତ୍ତେବ ଭବତ୍ୟୁଦାସୀନଃ ।<br>
ପୁରୁଷସ୍ୟ ଦର୍ଶନାର୍ଥଂ କୈବଲ୍ୟାର୍ଥଂ ତଥା ପ୍ରଧାନସ୍ୟ<br>
ପଙ୍ଗ୍ୱନ୍ଧବଦୁଭୟୋରପି ସଂଯୋଗ ସ୍ତତ୍କୃତଃ ସର୍ଗଃ ।

ପ୍ରଧାନ ବୁଦ୍ଧିଠାରୁ ସୂକ୍ଷ୍ମ ଭୂତ ପର୍ଯ୍ୟନ୍ତ ଏକ ଏକ ସମଷ୍ଟି ଓ ଏକ ଏକ ପୁରୁଷ ଅନାଦି ଅଦୃଷ୍ଟ ସୂତ୍ରରେ ସୂର୍ଯ୍ୟାଭିମୁଖୀ ଦର୍ପଣ ଓ ସୂର୍ଯ୍ୟ ପରି ପରସ୍ପର ସନ୍ନିହିତ । ଦର୍ପଣ ତେଜୋହୀନ ହେଲେ ମଧ୍ୟ ସୂର୍ଯ୍ୟ ପ୍ରତିବିମ୍ବ ସ୍ପର୍ଶରେ ତେଜସ୍କର ହୁଏ ଏବଂ ସୂର୍ଯ୍ୟରେ ମଳିନତା ଓ ଚଞ୍ଚଳତା ନଥିଲେ ମଧ୍ୟ ଦର୍ପଣର ମାଳିନ୍ୟ ଓ ଆନ୍ଦୋଳନ ଯୋଗୁଁ ପ୍ରତିବିମ୍ବିତ ସୂର୍ଯ୍ୟ ମଧ୍ୟ ମଳିନ ଓ ଚଞ୍ଚଳ ଦେଖାଯାଏ । ବୁଦ୍ଧି ଅଚେତନ ହେଲେ ମଧ୍ୟ ଚେତନ ପୁରୁଷ କର୍ତ୍ତୃତ୍ୱ ସନ୍ନିଧାନରେ ଚେତନ ହୋଇଥାଏ ଏବଂ କର୍ତ୍ତୃତ୍ୱଯୁକ୍ତ ବୁଦ୍ଧି ପ୍ରତିବିମ୍ବିତ ପୁରୁଷ ଦର୍ଶନାର୍ଥ କର୍ତ୍ତୃତ୍ୱଶୂନ୍ୟ ହେଲେ ମଧ୍ୟ କର୍ତ୍ତା ବୋଲି ପ୍ରତୀୟମାନ ହୁଏ । ସୁତରାଂ ପୁରୁଷର ଯେ ଅହଂ କର୍ତ୍ତା, ଭୋକ୍ତା ଇତ୍ୟାଦି ଜ୍ଞାନ ତାହା ଅବିବେକ ଦୋଷରୁ ଉତ୍ପନ୍ନ ହୁଏ । ପୁରୁଷର ପ୍ରକୃତିର ଏହି ପ୍ରବୃତ୍ତି । ବ୍ୟକ୍ତ ଅବ୍ୟକ୍ତ ଭେଦରେ ପୁରୁଷାର୍ଥ ଦ୍ୱିବିଧ, ଯଥା- ଭୋଗ ଓ ମୁକ୍ତି । ଅବ୍ୟକ୍ତ ପୁରୁଷାର୍ଥ । ଏହା ଅଦୃଷ୍ଟର ନାମାନ୍ତର ମାତ୍ର । ଏହି ପୁରୁଷାର୍ଥ ଅନାଦି ସୃଷ୍ଟି । ଏହି ସୃଷ୍ଟିର ପୂର୍ବେ ପ୍ରଳୟ

ହୋଇଥାଏ; ସେହି ପ୍ରଳୟର ପୂର୍ବେ କେତେ ଯେ ସୃଷ୍ଟି ପ୍ରଳୟ ହୋଇଯାଇଅଛି ତାହାର ଇୟତ୍ତା ନାହିଁ । ସୁତରାଂ ଏହା ନୂତନ ନୁହେଁ । ସେହି ଅନାଦି ପୁରୁଷାର୍ଥ ପ୍ରକୃତିକି ପ୍ରତ୍ୟେକ ପୁରୁଷର ସହିତ ଗୋଟିଏ ବିଶେଷ ସମ୍ବନ୍ଧରେ ସମ୍ବନ୍ଧ କରି ରଖିଅଛି । ଯେତେବେଳେ ସେହି ପୁରୁଷାର୍ଥ ଅଭିବ୍ୟକ୍ତି ପ୍ରବଣ ସେତେବେଳେ ମହତତ୍ତ୍ୱ ପ୍ରଭୃତିର ସୃଷ୍ଟି ହୁଏ । ଏହାହିଁ ପ୍ରତ୍ୟେକ ସୃଷ୍ଟିର ଆରମ୍ଭ କାଳ ।

ପ୍ରକୃତିର ସହିତ ସମ୍ମିଳିତ ଅବସ୍ଥାରେ ପୁରୁଷର ସୁଖ ଦୁଃଖର ସାକ୍ଷାତ୍କାର ହୁଏ, ଏହାହିଁ ଭୋଗ ଏବଂ ଏହି ସୁଖ ଦୁଃଖ ପ୍ରକୃତିର ସ୍ୱରୂପ ଅଟେ । ଭୋକ୍ତା ନଥିଲେ ଭୋଗ ନିରର୍ଥକ, ଅତଏବ ଭୋଗ୍ୟ ବସ୍ତୁରେ ଭୋକ୍ତାର ଅପେକ୍ଷା ଅଛି । ଦୁଃଖତାପତାପିତ ହେବା ପରେ ମୁକ୍ତିର ଆକାଙ୍କ୍ଷା ହୁଏ । ପୁରୁଷ ପ୍ରକୃତିରୁ ଭିନ୍ନ ହେଲେ ମୁକ୍ତି ଲାଭ ହୁଏ । ମୁକ୍ତି ସକାଶେ ବିବେକ ସାକ୍ଷାତ୍କାର ଆବଶ୍ୟକ। ବୁଦ୍ଧି ନଥିଲେ ଭୋଗ କରେ ନାହିଁ; ପ୍ରକୃତି ନଥିଲେ ବୁଦ୍ଧି ହୁଏ ନାହିଁ । ପରସ୍ପରର ଏହି ରୂପ ଅପେକ୍ଷା ହିଁ ପରସ୍ପରର ସମ୍ବନ୍ଧ । ପୁରୁଷର ଅପବର୍ଗ; ସାଧନ ପର୍ଯ୍ୟନ୍ତ ପ୍ରକୃତି ପୁରୁଷକୁ ତ୍ୟାଗ କରିବ ନାହିଁ; ଅବଶ୍ୟ ଦିନେ ପ୍ରକୃତି ପୁରୁଷକୁ ବିବେକ ସାକ୍ଷାତ୍କାର କରାଇବ ତାବତ୍ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଅପରିହାର୍ଯ୍ୟ ।

ସୃଷ୍ଟି ଦ୍ୱିବିଧ - ପ୍ରତ୍ୟୟ ସର୍ଗ ଓ ତନ୍ମାତ୍ର ସର୍ଗ । ପ୍ରକୃତି ପୁରୁଷର ସଂଯୋଗରେ ଯେଉଁ ସୃଷ୍ଟି ହୁଏ ଅର୍ଥାତ୍ ଯହିଁରୁ ବୁଦ୍ଧିର ସୃଷ୍ଟି ହୁଏ ତାହାକୁ ପ୍ରତ୍ୟୟ ସର୍ଗ ଏବଂ ଯହିଁରୁ ଭୂତ ନିବହର ସୃଷ୍ଟି ହୁଏ ତାହାକୁ ତନ୍ମାତ୍ର ସର୍ଗ କୁହାଯାଏ । ପ୍ରକୃତିର ଯେଉଁ ପ୍ରଥମ ପରିଣାମ ହୁଏ ତାହାର ନାମ ବୁଦ୍ଧି ବା ମହତ୍ । ଏହି ବୁଦ୍ଧି ଧର୍ମ ଆଠ ପ୍ରକାର- ଧର୍ମ, ଜ୍ଞାନ, ବୈରାଗ୍ୟ, ଐଶ୍ୱର୍ଯ୍ୟ, ଅଧର୍ମ, ଅଜ୍ଞାନ, ଅବୈରାଗ୍ୟ ଓ ଅନୈଶ୍ୱର୍ଯ୍ୟ । ପ୍ରଥମ ଚାରୋଟି ସାତ୍ତ୍ୱିକ ଏବଂ ପରବର୍ତ୍ତୀ ଚାରୋଟି ତାମସିକ । ମହତତ୍ତ୍ୱର କାର୍ଯ୍ୟ ଅହଂକାର ତତ୍ତ୍ୱ, ତାହାର ବୃତ୍ତି ଅଭିମାନ, ଯଥା - ମୁଁ ବଳବାନ୍ ଧନାଢ଼୍ୟ, ମୋର ସବୁ ପ୍ରୟୋଜନ ଇତ୍ୟାଦି ରୂପ ଅଭିମାନ । ଅହଂକାରର ଅସାଧାରଣ ବୃତ୍ତି ତିନି ପ୍ରକାର - କାୟିକ ବା ସାତ୍ତ୍ୱିକ, ତୈଜସ ବା ରାଜସିକ, ଭୂତାଦି ବା ତାମସିକ । ଏକାଦଶ ଇନ୍ଦ୍ରିୟ ସାତ୍ତ୍ୱିକ ଅହଂକାରରୁ ଏବଂ ପଞ୍ଚତନ୍ମାତ୍ର ତାମସିକ ଅହଂକାରରୁ ଉତ୍ପନ୍ନ । ରାଜସିକ ଅହଂକାର ଏହି ଉଭୟ ଉତ୍ପତ୍ତିର ସାହାଯ୍ୟକାରୀ ମାତ୍ର ।

ଚକ୍ଷୁରାଦି ଜ୍ଞାନେନ୍ଦ୍ରିୟ, ବାଗାଦି କର୍ମେନ୍ଦ୍ରିୟ; ମନ ଏକାଦଶେନ୍ଦ୍ରିୟ ଏବଂ ଏହା ଉଭୟାତ୍ମକ । ମନ ଭିନ୍ନ ଅନ୍ୟ କୌଣସି ଇନ୍ଦ୍ରିୟ ସ୍ୱତଃ ପ୍ରବୃତ୍ତ ହୋଇ ପାରେ ନାହିଁ । ଗୁଣ ସକଳର ପରିଣାମ ବିଶେଷ ବଶରୁ ନାନା ଇନ୍ଦ୍ରିୟ ଏବଂ ନାନା ବାହ୍ୟ ପଦାର୍ଥ ଉତ୍ପନ୍ନ ହୋଇଅଛି । ମନରଅସାଧାରଣ ବୃତ୍ତି ସଂକଳ୍ପ । ଚକ୍ଷୁର ରୂପ, ଶ୍ରୋତ୍ରର ଶବ୍ଦ, ଘ୍ରାଣର ଗନ୍ଧ, ରସନାର ରସ, ତ୍ୱକ୍ର ସ୍ପର୍ଶ ଏହି ସକଳ ଜ୍ଞାନେନ୍ଦ୍ରିୟର ବ୍ୟାପାର । ବାକ୍ର ବଚନ, ପାଣିର ଗ୍ରହଣ, ପାଦର ବିଚରଣ, ପାୟୁର ବିସର୍ଜନ, ଉପସ୍ଥର ଆନନ୍ଦ ଏହି ସମସ୍ତ କର୍ମେନ୍ଦ୍ରିୟର ବ୍ୟାପାର । ମନୋବୁଦ୍ଧି ଓ ଅହଂକାର ଏ ତିନୋଟିର ନାମ ଅନ୍ତଃକରଣ । ଚକ୍ଷୁରାଦି ଦଶ ବାହ୍ୟକରଣ ଅନ୍ତଃକରଣର

ସାଧାରଣ ବୃତ୍ତି । ପ୍ରାଣାଦି ପଞ୍ଚବାୟୁ; ପ୍ରାଣବାୟୁ ନାସାଗ୍ର, ହୃଦୟ, ନାଭି ଓ ପାଦାଙ୍ଗୁଷ୍ଠି ସ୍ଥିତ; ଅପାନବାୟୁ- କୃକାଟିକା, ପୃଷ୍ଠ, ପାଦ, ପାୟୁ, ଉପସ୍ଥ ଓ ପାର୍ଶ୍ୱ ବିଚରଣଶୀଳ, ସମାନ ବାୟୁ- ହୃଦୟ, ନାଭି ଓ ସମସ୍ତ ସନ୍ଧିସ୍ଥାନଚାରୀ; ହୃଦୟ, କଣ୍ଠ, ତାଲୁ, ମସ୍ତକ ଓ ଭ୍ରୂମଧ୍ୟସ୍ଥିତ ବାୟୁ ଉଦାନ ଏବଂ ତ୍ୱକ୍‌ବ୍ୟାପ୍ତବାୟୁକୁ ବ୍ୟାନ କୁହାଯାଏ । ଏହି ବାୟୁ ସର୍ବଶରୀରବ୍ୟାପୀ । ସାଂଖ୍ୟାଚାର୍ଯ୍ୟମାନେ କହନ୍ତି ବାହ୍ୟେନ୍ଦ୍ରିୟ ସକଳ ଗ୍ରାମାଧ୍ୟକ୍ଷ, ମନ ଦେଶାଧ୍ୟକ୍ଷ, ବୁଦ୍ଧି ସର୍ବାଧ୍ୟକ୍ଷ ଏବଂ ପୁରୁଷ ସମ୍ରାଟ ସ୍ଥାନୀୟ, ଯେପରି ଗ୍ରାମପତି ପ୍ରଜାଙ୍କଠାରୁ କର ନେଇ ଦେଶପତି ନିକଟରେ ଦିଏ ଏବଂ ତାହାଠାରୁ କ୍ରମାନ୍ୱୟରେ ତାହା ମହାରାଜାଙ୍କ ପର୍ଯ୍ୟନ୍ତ ନୀତ ହୋଇ ତାହାଙ୍କର ପ୍ରୟୋଜନ ସାଧିତ ହୁଏ ସେହିପରି ବାହ୍ୟେନ୍ଦ୍ରିୟ ବିଷୟ ସକଳର ଆଲୋଚନା ମନ ନିକଟରେ ଉପସ୍ଥାପିତ କରାଏ; ମନ ତାହା ବୁଦ୍ଧିର ନିକଟରେ ଅର୍ପଣ କରେ ଏବଂ ବୁଦ୍ଧି ତଦ୍ୱାରା ପୁରୁଷର ଭୋଗାପବର୍ଗ ସମ୍ପାଦନ କରେ । ବାହ୍ୟେନ୍ଦ୍ରିୟ ମନ, ଅହଙ୍କାର ଓ ବୁଦ୍ଧି ଏମାନଙ୍କର ବୃତ୍ତି କ୍ରମାନ୍ୱୟରେ ହୁଏ । ସମୟ ସମୟରେ ଏକକାଳୀନ ହେବାର ମଧ୍ୟ ଦେଖାଯାଏ । ଦେଖାଯାଇଛି, ଆଲୋକରେ ଦଂଶନୋଦ୍ୟତ ସର୍ପ ଦେଖି ତତ୍‌କ୍ଷଣାତ୍ ଲୋକେ ପଳାୟନ କରନ୍ତି । ଏଠାରେ ଇନ୍ଦ୍ରିୟର ଆଲୋଚନା, ମନର ସଂକଳ୍ପ, ଅହଂକାରର ଅଭିମାନ ଓ ବୁଦ୍ଧିର ଅଧ୍ୟବସାୟ ଏକକାଳୀନ ହୁଏ । ନୋଚେତ୍ ସଙ୍ଗେ ସଙ୍ଗେ ପଳାୟନ ଅସମ୍ଭବ । ଭୋଗାପବର୍ଗ ରୂପ ପୁରୁଷାର୍ଥ ନିର୍ବାହ ଲାଗି ଇନ୍ଦ୍ରିୟ ସକଳର ପ୍ରବୃତ୍ତି; ଅଗ୍ନିସଂଯୋଗରେ ଲୌହଗୋଲକ ଯେପରି ଅଗ୍ନିବତ୍ ଦେଖାଯାଏ ତତ୍‌ବତ୍ ପୁରୁଷ ସଂଯୋଗରେ ଚିତ୍ତ ପ୍ରତିବିମ୍ବଦ୍ୱାରା ବୁଦ୍ଧି ମଧ୍ୟ ଚେତନ ପରି ପ୍ରତୀୟମାନ ହୁଏ । ଏହାହିଁ ପୁରୁଷର ସଂସାର । ପୁରୁଷ କୌଣସି କାଳେ କୈବଲ୍ୟଶୂନ୍ୟ ନୁହନ୍ତି; ସୁତରାଂ ସଂସାର ଦଶାରେ ମଧ୍ୟ ସେ ମୁକ୍ତ । ପୂର୍ବୋକ୍ତ ପ୍ରଣାଳୀକ୍ରମେ ବୁଦ୍ଧି ହିଁ ପୁରୁଷର ଭୋଗ ସମ୍ପାଦିକା, ଅଥଚ ବୁଦ୍ଧି ହିଁ ବିବେକ ଜ୍ଞାନଦ୍ୱାରା ପୁରୁଷର ମୁକ୍ତି ସାଧନ କରେ । ସ୍ୱରୂପତଃ ପୁରୁଷର ବନ୍ଧ, ମୋକ୍ଷ ବା ସଂସାର କିଛି ନାହିଁ । ବୁଦ୍ଧି ପୁରୁଷର ଆଶ୍ରୟରେ ବନ୍ଧ, ମୋକ୍ଷ ବା ସଂସାରଭାଗିନୀ । ଏହିରୂପେ କାରଣ ତ୍ରୟୋଦଶ ପ୍ରକାର, ଦଶେନ୍ଦ୍ରିୟ, ମନ, ଅହଂକାର ଓ ବୁଦ୍ଧି ଏହି ତ୍ରୟୋଦଶ କରଣ ମଧ୍ୟରେ କର୍ମେନ୍ଦ୍ରିୟ ସକଳ ଆହରଣ ଏବଂ ଅନ୍ତଃକରଣ ତ୍ରୟ ସାଧାରଣ ବୃତ୍ତି ରୂପ ପଞ୍ଚ ପ୍ରାଣଦ୍ୱାରା ଶରୀର ଧାରଣ କରିଥା'ନ୍ତି ଏବଂ ପଞ୍ଚ ଜ୍ଞାନେନ୍ଦ୍ରିୟ ସ୍ୱ ସ୍ୱ ବିଷୟ ପ୍ରକାଶ କରନ୍ତି । ଏହାର ନାମ ପ୍ରତ୍ୟୟସର୍ଗ । । ତନ୍ମାତ୍ରସର୍ଗ ସକଳ ସୂକ୍ଷ୍ମ; ସୁତରାଂ ଅସ୍ମଦାଦିର ଭୋଗ୍ୟ ନୁହେଁ । ପଞ୍ଚତନ୍ମାତ୍ରରୁ ପଞ୍ଚ ମହାଭୂତର ଉତ୍ପତ୍ତି; ଯଥା- ଶବ୍ଦ ତନ୍ମାତ୍ରରୁ ଆକାଶର ଉତ୍ପତ୍ତି; ଏହାର ଗୁଣ ଶବ୍ଦ, ଶବ୍ଦ ତନ୍ମାତ୍ରଯୁକ୍ତ ସ୍ପର୍ଶତନ୍ମାତ୍ରରୁ ବାୟୁର ଉତ୍ପତ୍ତି; ଏହାର ଗୁଣ ଶବ୍ଦ ଓ ସ୍ପର୍ଶ; ଶବ୍ଦସ୍ପର୍ଶତନ୍ମାତ୍ରଯୁକ୍ତ ରୂପତନ୍ମାତ୍ରରୁ ତେଜର ଉତ୍ପତ୍ତି;ଏହାର ଗୁଣ ଶବ୍ଦ, ସ୍ପର୍ଶ ଓ ରୂପ । ଶବ୍ଦସ୍ପର୍ଶ ଓ ରୂପ ତନ୍ମାତ୍ର ସହିତ ରସତନ୍ମାତ୍ରର ସଂଯୋଗରୁ ଜଳର ଉତ୍ପତ୍ତି, ତାହାର ଗୁଣ ଶବ୍ଦ, ସ୍ପର୍ଶ ଓ ରୂପ, ରସ ଏବଂ ଉପରୋକ୍ତ ତନ୍ମାତ୍ର ଚତୁଷ୍ଟୟ ସହିତ ଗନ୍ଧତନ୍ମାତ୍ରର ସଂଯୋଗରୁ ପୃଥିବୀର ଉତ୍ପତ୍ତି ହୋଇଅଛି; ଏହାର ଗୁଣ ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ । ଏହି ପଞ୍ଚଭୂତର ସମଷ୍ଟି ମଧ୍ୟରୁ କେଉଁଟି ସୁଖକର ଓ ଲଘୁ, କେଉଁଟି ଦୁଃଖକର ଓ ଚଞ୍ଚଳ ଏବଂ

କେତୋଟି ବିଷାଦକର ଓ ଗୁରୁ । ଅତଏବ ଏହା ବିଶେ ବିଶେଷ ନାମରେ ଅଭିହିତ । ଏହି ବିଶେଷ ତ୍ରିବିଧ - ସୂକ୍ଷ୍ମଶରୀର, ସ୍ଥୂଳଶରୀର ଏବଂ ତଦତିରିକ୍ତ ମହାଭୂତ ।

ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ କର୍ମେନ୍ଦ୍ରିୟ ମନ, ପଞ୍ଚତନ୍ମାତ୍ର, ଅହଂକାର, ବୁଦ୍ଧି ଏହି ଅଷ୍ଟାଦଶର ସମଷ୍ଟିରୁ ସୂକ୍ଷ୍ମ ଶରୀର ସଂଗଠିତ; ଏବଂ ଏହି ସୂକ୍ଷ୍ମ ଶରୀର କଳ୍ପାନ୍ତକାଳସ୍ଥାୟୀ ଓ ଇନ୍ଦ୍ରିୟଘଟିତ । ଇନ୍ଦ୍ରିୟସକଳ ଶାନ୍ତ, ଘୋର ଓ ମୂଢ଼ାତ୍ମକ । ଏହା ବିଶେଷ ମଧ୍ୟେ ପରିଗଣିତ । ଗୋଟିଏ ଗୋଟିଏ ପୁରୁଷ ଲାଗି ଗୋଟିଏ ଗୋଟିଏ ସୂକ୍ଷ୍ମ ଶରୀର ନିର୍ଦ୍ଦିଷ୍ଟ ଅଛି । ଏହି ସକଳ ସୂକ୍ଷ୍ମ ଶରୀର ପ୍ରକୃତିଠାରୁ ଉତ୍ପନ୍ନ । ପୁରୁଷର ବିବେକସାକ୍ଷାତ୍କାର ପର୍ଯ୍ୟନ୍ତ ସୂକ୍ଷ୍ମ ଶରୀର ଯାତାୟାତ କରେ ଅର୍ଥାତ୍ ସ୍ଥୂଳ ଦେହ ତ୍ୟାଗ କରି ଅନ୍ୟ ଏକ ସ୍ଥୂଳ ଦେହ ଗ୍ରହଣ କରେ; ଏହାର ନାମ ସଂସାର ଚିତ୍ର । ଚିତ୍ର ଆଶ୍ରୟ ବ୍ୟତୀତ ରହି ନପାରିଲା ପରି ସୂକ୍ଷ୍ମ ଶରୀର ତା'ର ଭୋଗାୟତନ ସ୍ଥୂଳ ଶରୀର ବିନା ରହିପାରେ ନହିଁ । ଜଳୌକା ପରି ସୂକ୍ଷ୍ମ ଶରୀର ସ୍ଥୂଳ ଶରୀର ଅବଲମ୍ବନ କରେ । ଭାଷ୍ୟକାର ଉଭୟ ଶରୀର ମଧ୍ୟରେ ଅନ୍ୟଏକ ଅଧିଷ୍ଠାନ ଶରୀର ଅଛି ବୋଲି ତ୍ରିବିଧ ଶରୀରର କଥା କହନ୍ତି । ସ୍ଥୂଳ ଦେହ ତ୍ୟାଗ ପରେ ଲିଙ୍ଗ ଦେହରେ ଲୋକାନ୍ତର ଗମନ ହୁଏ । ସେତେବେଳେ ଏହା ଅଧିଷ୍ଠାନ ଶରୀର ଆଶ୍ରୟ କରେ । ସ୍ଥୂଳ ଭୂତର ସୂକ୍ଷ୍ମାଂଶ ଅଧିଷ୍ଠାନ ଶରୀର ନାମରେ ଅଭିହିତ । ଏହାକୁ ଅତିବାହିକ ଶରୀର କୁହାଯାଏ । ମୃତ୍ୟୁ ପଥରେ ରସାନ୍ତ, ଭସ୍ମାନ୍ତ ଓ ବିଷ୍ଠାନ୍ତ ରୂପେ ସ୍ଥୂଳ ଶରୀର ନାଶ ହୁଏ । ପୋତିଦେଲେ ରସ, ଦାହ କଲେ ଭସ୍ମ, କିନ୍ତୁ ଭକ୍ଷଣ କଲେ ବିଷ୍ଠାନ୍ତ ହୁଏ । ଧର୍ମଦ୍ୱାରା ଉର୍ଦ୍ଧ୍ୱଗମନ, ଅଧର୍ମଦ୍ୱାରା ଅଧୋଗମନ, ଜ୍ଞାନଦ୍ୱାରା ଅପବର୍ଗ, ଅଜ୍ଞାନଦ୍ୱାରା ବନ୍ଧ ଓ ବୈରାଗ୍ୟଦ୍ୱାରା ପ୍ରକୃତିରେ ଲୟ ହୁଏ । ରାଗଦ୍ୱାରା ସଂସାର, ଐଶ୍ୱର୍ଯ୍ୟଦ୍ୱାରା ଇଚ୍ଛାର ସାଫଲ୍ୟ ଏବଂ ଅନୈଶ୍ୱର୍ଯ୍ୟଦ୍ୱାରା ଇଚ୍ଛାର ନିଷ୍ଫଳତା ସୃଷ୍ଟ ହୁଏ । ପୁଣି ଏହି ସର୍ଗ ଚାରି ଭାଗରେ ବିଭକ୍ତ ଯଥା - ବିପର୍ଯ୍ୟୟ, ଅଶାନ୍ତି, ତୁଷ୍ଟି ଓ ସିଦ୍ଧି । ବିପର୍ଯ୍ୟୟ ପଞ୍ଚବିଧ - ଅବିଦ୍ୟା, ଅସ୍ମିତା, ରାଗ ଦ୍ୱେଷ ଓ ଅଭିନିବେଶ । ତମ, ମୋହ, ମହାମୋହ, ତାମିସ୍ର ଓ ଅନ୍ଧତାମିସ୍ର ଭେଦରେଏହାର ନାମାନ୍ତର ହୋଇଅଛି । ଅନାତ୍ମ ବସ୍ତୁରେ ଆତ୍ମଖ୍ୟାତିକୁ ଅବିଦ୍ୟା କୁହାଯାଏ । ଅନିତ୍ୟ ଓ ଅନାତ୍ମୀୟ ବସ୍ତୁରେ ନିତ୍ୟ ଓ ଆତ୍ମୀୟରୂପ ଅଭିମାନ, ଅସ୍ମିତା, ସୁଖାନୁଶୟିକୀ ରାଗ ଓ ଦୁଃଖାନୁଶୟିକୀ ଦ୍ୱେଷ ଉଭୟକୁ ଅଭିନିବେଶ କୁହାଯାଏ । ଉକ୍ତ ଅବିଦ୍ୟା ବିଷୟ ଭେଦରେ ଆଠ ପ୍ରକାର, ଯଥା - ପ୍ରକୃତି ବୁଦ୍ଧି, ଅହଂକାର ଓ ପଞ୍ଚତନ୍ମାତ୍ର । ଏହା ଏହି ଆଠ ପ୍ରକାର ବିଷୟ ଅନାତ୍ମାରେ ଆତ୍ମବୁଦ୍ଧି ଜନ୍ମାଏ ବୋଲି ଅବିଦ୍ୟା ନାମେ ଅଭିହିତ । ଦେବଗଣ ଅଣିମାଦି ଅଷ୍ଟବିଧ ଐଶ୍ୱର୍ଯ୍ୟ ଲାଭ କରି ଏହାକୁ ଆତ୍ମୀୟ ଓ ନିତ୍ୟରୂପେ ବିବେଚନା କରନ୍ତି କିନ୍ତୁ ଏହା ଅନାତ୍ମୀୟ ଓ ଅନିତ୍ୟ, କାରଣ ଐଶ୍ୱର୍ଯ୍ୟ ବୁଦ୍ଧିର ଧର୍ମ ସୁତରାଂ ଅସ୍ମିତା ମଧ୍ୟ ବିଷୟଭେଦରେ ଆଠ ପ୍ରକାର - ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ ଏହି ସମସ୍ତ ରାଗର ବିଷୟ । ଶବ୍ଦାଦି ବିଷୟ ମଧ୍ୟ ଦିବ୍ୟ ଅଦିବ୍ୟ ଭେଦରେ ଦୁଇ ପ୍ରକାର ସୁତରାଂ ବିଷୟ ଭେଦରେ ରାଗ ଦଶ ପ୍ରକାର । ଏହି ଶବ୍ଦାଦି ଦଶ ବିଷୟ ସ୍ୱଭାବତଃ ରଞ୍ଜନୀୟ ହେଲେ ମଧ୍ୟ ଏକବିଧ ଶବ୍ଦାଦି ଅପରବିଧି ଶବ୍ଦାଦି ଭୋଗର ପ୍ରତିବନ୍ଧକ ହୁଏ ।

ଭୋଗ୍ୟ ଶବ୍ଦ ପ୍ରଭୃତିର ଉପାୟ ସ୍ୱରୂପ ଅଣିମାଦି ଅଷ୍ଟୈଶ୍ୱର୍ଯ୍ୟ ସ୍ୱଭାବତଃ ଦ୍ୱେଷବିଷୟକ । ଯେହେତୁ ଐଶ୍ୱର୍ଯ୍ୟ ସମ୍ପାଦନ ବହୁ ଆୟାସସାଧ୍ୟ, ଶବ୍ଦାଦି ଦଶଭୋଗ୍ୟ ବିଷୟ ଓ ତତ୍‌ସମ୍ପାଦକ ଅଣିମାଦି ଅଷ୍ଟସିଦ୍ଧି ଏହି ଅଷ୍ଟାଦଶ ବିଷୟ ଦ୍ୱେଷସମ୍ପନ୍ନ ବୋଲି ଏହି ଦ୍ୱେଷ ମଧ୍ୟ ଅଷ୍ଟାଦଶ ପ୍ରକାର । ଉକ୍ତ ଅଷ୍ଟାଦଶ ବିଷୟ ବିନାଶଶୀଳ । ହେତୁ ବିଷୟ ଭେଦରେ ଅଭିନିବେଶ ମଧ୍ୟ ଅଷ୍ଟାଦଶ ପ୍ରକାର ।

ଏକାଦଶ ଇନ୍ଦ୍ରିୟର ଅଶକ୍ତି ଏକାଦଶ ପ୍ରକାର; ବୁଦ୍ଧିର ଅଶକ୍ତି ସପ୍ତଦଶ ପ୍ରକାର । ଏହିପରି ଆଶକ୍ତି ଅଷ୍ଟାବିଂଶତି ପ୍ରକାର- ଚକ୍ଷୁରାଦି ଇନ୍ଦ୍ରିୟର ଅଶକ୍ତି ଅନ୍ଧତ୍ୱାଦି ।

ତୁଷ୍ଟି ନ ପ୍ରକାର, ସିଦ୍ଧି ଆଠ ପ୍ରକାର । ଏମାନଙ୍କର ବିପର୍ଯ୍ୟୟ ବୁଦ୍ଧିର ଅଶକ୍ତି ସପ୍ତଦଶ ପ୍ରକାର । ବିଷୟ ବୈରାଗ୍ୟ ପାଇଁ ତୁଷ୍ଟି ପାଞ୍ଚପ୍ରକାର । ବୈରାଗ୍ୟର ହେତୁ ମଧ୍ୟ ପାଞ୍ଚପ୍ରକାର, ଯଥା- ଅର୍ଜନଦୋଷ, ରକ୍ଷଣଦୋଷ, କ୍ଷୟଦୋଷ, ଭୋଗଦୋଷ ଏବଂ ହିଂସାଦୋଷ । ଏହି ପଞ୍ଚବିଧ ଦୋଷ ଦର୍ଶନରୁ ବୈରାଗ୍ୟ ଉଦୟ ହୁଏ । ଧନାର୍ଜନର ଉପାୟସକଳ ଅତି କଷ୍ଟକର ଭାବି ବିଷୟ ବୈରାଗ୍ୟ ଉଦୟ ହେଲେ ଯେଉଁ ତୁଷ୍ଟି ହୁଏ ତାହାର ନାମ ପରା । ଉପାର୍ଜିତ ଧନ ରକ୍ଷାକରିବା କଷ୍ଟକର ଭାବି ଯେଉଁ ବୈରାଗ୍ୟ ଉଦୟ ହୁଏ ତଜ୍ଜନିତ ତୁଷ୍ଟି ସୁପାର, କଷ୍ଟସଂଚିତ ଧନ ଭୋଗଦ୍ୱାରା କ୍ଷୟ ହେବ ଭାବି ଉଦୟ ହେବା ବୈରାଗ୍ୟରୁ ଯେଉଁ ତୁଷ୍ଟି ହୁଏ ତାହା ପାରାପର, ବିଷୟ ଭୋଗାଭ୍ୟାସରେ ଅଭିଳାଷବୃଦ୍ଧି, ବିଷୟ ଭୋଗରେ ଅପାରଗ ହେଲେ ଯେଉଁ ବୈରାଗ୍ୟ ଉଦୟ ହୁଏ ତଜ୍ଜନିତ ତୁଷ୍ଟି ଅନୁତାପାମ୍ଭ, ଭୋଗରେ ପ୍ରାଣିହିଂସା ଭାବି ଯେଉଁ ବୈରାଗ୍ୟ ଉଦୟ ହୁଏ ତଜ୍ଜନିତ ତୁଷ୍ଟି ଉତ୍ତମାମ୍ଭ, ତାହାକୁ ତୁଷ୍ଟି କୁହାଯାଏ । ଏହା ବାହ୍ୟ ତୁଷ୍ଟି କେବଳ । ଆଧ୍ୟାତ୍ମିକ ତୁଷ୍ଟି ମଧ୍ୟ ପ୍ରକୃତି ତୁଷ୍ଟି, ଉପାଦାନ ତୁଷ୍ଟି, କାଳତୁଷ୍ଟି, ଭାଗ୍ୟତୁଷ୍ଟି ଭେଦରେ ଚତୁର୍ବିଧ । ବିବେକ ସାକ୍ଷାତ୍‌କାର ମଧ୍ୟ ପ୍ରକୃତିର ପରିଣାମ ବିଶେଷ । ପ୍ରକୃତି ବିବେକ ସାକ୍ଷାତ୍‌କାର କର୍ତ୍ତ୍ରୀ, ବିବେକ ତା'ର କର୍ତ୍ତା ନୁହେଁ । ମୁଁ କୂଟସ୍ଥ ଓ ପୂର୍ଣ୍ଣ ଏହି ଭାବନାରୁ ଯେଉଁ ତୁଷ୍ଟି ହୁଏ ତାହାର ନାମ ପ୍ରକୃତିତୁଷ୍ଟି । ସନ୍ନ୍ୟାସ ଗ୍ରହଣରୁ ଯେଉଁ ତୁଷ୍ଟି ହୁଏ ତାହା ଉପାଦାନ ତୁଷ୍ଟି, ସନ୍ନ୍ୟାସ ଗ୍ରହଣ ପୂର୍ବକ ଦୀର୍ଘକାଳ ଧ୍ୟାନ ଅଭ୍ୟାସ ବା ସମାଧିର ଅନୁଷ୍ଠାନରେ ଯେଉଁ ତୁଷ୍ଟି ହୁଏ ତାହାର ନାମ କାଳତୁଷ୍ଟି; ସଂପ୍ରଜ୍ଞାତ ସମାଧିର ଚରମୋତ୍କର୍ଷ ସ୍ୱରୂପ ଆନନ୍ଦ ଘନସମାଧି ଲାଭ ହେଲେ ଯେଉଁ ତୁଷ୍ଟି ହୁଏ ତାହାର ନାମ ଭାଗ୍ୟ ତୁଷ୍ଟି ବୋଲି ଭାଷ୍ୟକାର ବିଜ୍ଞାନଭିକ୍ଷୁଙ୍କର ମତ ।

ବାଚସ୍ପତି ମିଶ୍ରଙ୍କ ମତରେ ସିଦ୍ଧି ଆଠ ପ୍ରକାର । ଆଧ୍ୟାତ୍ମିକାଦି ଭେଦରେ ଦୁଃଖ ତିନି ପ୍ରକାର; ପ୍ରତିଯୋଗୀ ଭେଦେ ଦୁଃଖ ନିବୃତ୍ତି ତିନି ପ୍ରକାର । ଏହାହିଁ ମୁଖ୍ୟ ସିଦ୍ଧି । ଏହି ସିଦ୍ଧିତ୍ରୟର ନାମ ପ୍ରଷମାଦ, ମୁଦିତ ଓ ମୋଦମାନ । ଏହାର ସାଧନଗୁଡ଼ିକ ଗୌଣସିଦ୍ଧି ବୋଲି ଅଭିହିତ । ଏହା ମଧ୍ୟ ଅଧ୍ୟୟନ ଶବ୍ଦ, ଉହ, ସୁହୃତ୍ ପ୍ରାପ୍ତି ଓ ଦାନଭେଦରେ ପଞ୍ଚବିଧ । ଗୁରୁଙ୍କଠାରୁ ଅଧ୍ୟାତ୍ମଶାସ୍ତ୍ର ଅଧ୍ୟୟନ, ସମ୍ୟକ୍ ଅର୍ଥାବବୋଧକୁ ଶବ୍ଦ କହି । "ଆତ୍ମା ବା

ଅରେ ଦ୍ରଷ୍ଟବ୍ୟଃ ଶ୍ରୋତବ୍ୟଃ'' ଆତ୍ମା ଶ୍ରବଣ ମନନ ନିଦିଧ୍ୟାସନ ଯୋଗ୍ୟ ଏହାହିଁ ଶାସ୍ତ୍ରୋକ୍ତ ଶ୍ରବଣ । ତତ୍ପରେ ମନନ ଏବଂ ପରିଶେଷରେ ଅଧୀତ ଓ ମନନଶୀଳ ବିଷୟରେ ନିଦିଧ୍ୟାସନ । ଉହ ଶବ୍ଦର ଅର୍ଥ ତର୍କ । ଶାସ୍ତ୍ରୀୟ ଅବିରୋଧ ଯୁକ୍ତିଦ୍ୱାରା ଶାସ୍ତ୍ରାର୍ଥର ଅବଧାରଣା । ସୁହୃତ୍ ପ୍ରାପ୍ତି ପଦରେ ଗୁରୁଶିଷ୍ୟ ପ୍ରଭୃତିଙ୍କ ସତ୍‌ସଙ୍ଗ । ବିବେକ ଜ୍ଞାନଶୁଦ୍ଧିର ନାମ ଦାନ । ଏହି ବିଶୁଦ୍ଧ ବିବେକ ସର୍ବବିଧ, ସଂଶୟ, ବିପର୍ଯ୍ୟୟ ଉଚ୍ଛେଦ ସମର୍ଥ ବୋଲି ଏହାର ଖ୍ୟାତି । ଏହି ସଂସାର ବିଚିତ୍ର ଭୋଗର ଲୀଳାଭୂମି; ଭୋଗହସ୍ତରୁ କେହି ପରିତ୍ରାଣ ପାଇବେ ନାହିଁ । ଜୀବର ମରଣଭୟ ସ୍ୱାଭାବିକ । ଜରାମରଣାଦି ଯେପରି ସ୍ୱାଭାବିକ, ସୁଖ ସେପରି ସ୍ୱାଭାବିକ ନୁହେଁ ଏହା ଆଗନ୍ତୁକ ଉପାୟସାଧ୍ୟ । ଜରାମରଣାଦି ଲାଗି କୌଣସି ଚେଷ୍ଟା ଅନାବଶ୍ୟକ । ତାହା ସ୍ୱୟଂ ଉପସ୍ଥିତ ହୁଏ । ସୁଖଲାଗି ପ୍ରବଳ ଚେଷ୍ଟା କରାଯାଉଅଛି ସତ୍ୟ କିନ୍ତୁ ଉପରିଭାଗରେ ଶାଣିତ କୃପାଣ ସୂକ୍ଷ୍ମ ସୂତ୍ରରେ ଲମ୍ବିତ କରି ତାହାର ନିମ୍ନରେ ବସି ବିଶ୍ରାମ ସୁଖ ଉପଭୋଗ କଲାପରି ଉକ୍ତ ଚେଷ୍ଟା ଅବିବେକ ସାପେକ୍ଷ ସିନା । ସାଂସାରିକ ସୁଖାନୁଶକ୍ତି ବିପଦସଙ୍କୁଳ । ସଂସାର ପ୍ରକୃତିର କାର୍ଯ୍ୟ ପ୍ରକୃତି ତ୍ରିଗୁଣମୟୀ । ତନ୍ମଧ୍ୟରୁ ରଜୋଗୁଣୋଦ୍ଭବ ସମସ୍ତ ବିଷୟ ଦୁଃଖାତ୍ମକ ଏବଂ ସତ୍ୱଗୁଣୋଦ୍ଭବ ସମସ୍ତ ବିଷୟ ସୁଖସ୍ୱରୂପ । ସୁତରାଂ ସାଂସାରିକ ସୁଖ କୁପିତ ଫଣିର ଫଣାଛାୟା ତୁଲ୍ୟ; ସୁଖର ତୁଳନାରେ ଦୁଃଖ ଅପର୍ଯ୍ୟାପ୍ତ; ପ୍ରଗାଢ଼ ଅନ୍ଧକାର ତୁଲ୍ୟ ଦୁଃଖରାଶି ସୁବିସ୍ତୀର୍ଣ୍ଣ, ଖଦ୍ୟୋତୋନ୍ମେଷ ପରି ସୁଖର କ୍ଷଣିକ ଆବିର୍ଭାବ ଓ ତିରୋଭାବ ହୋଇଥାଏ ।

ଦ୍ୟୁଲୋକରୁ ସତ୍ୟଲୋକ ପର୍ଯ୍ୟନ୍ତ ସତ୍ୱ ବହୁଳ । ଅତଏବ ସେହି ଲୋକମାନଙ୍କର ସୁଖର ମାତ୍ରା କିଛି ଅଧିକ । ଭୂଲୋକ ରଜୋବହୁଳ ସୁତରାଂ ଦୁଃଖର ମାତ୍ରା ଅତ୍ୟଧିକ । ପଶୁ ଓ ସ୍ଥାବରାଦି ସୃଷ୍ଟି ତମୋବହୁଳ ସୁତରାଂ ମୋହାତ୍ମକ ।

ପ୍ରକୃତି ନିଜେ ହିଁ ସୃଷ୍ଟିକର୍ତ୍ତ୍ରୀ-
ଯତଃ ''ପ୍ରକୃତିଃକର୍ତ୍ତ୍ରୀ ପୁରୁଷଃ ପୁଷ୍କରପଲାଶବନ୍ନିର୍ଲେପଃ'' ।

ବତ୍ସର ପରିପୋଷଣ ଲାଗି ଯେପରି ଅଜ୍ଞ ନିକଟରେ ଦୁଗ୍ଧର ପ୍ରବୃତ୍ତି ସେପରି ପୁରୁଷର ଭୋଗାପବର୍ଗ ଲାଗି ଅଚେତନ ପ୍ରକୃତିର ମଧ୍ୟ ପ୍ରବୃତ୍ତି ହୁଏ ।

''ବତ୍ସସ୍ୟ ବିବୃଦ୍ଧିନିମିତ୍ତଂ କ୍ଷୀରସ୍ୟ ଯଥା ପ୍ରବୃତ୍ତିରଜ୍ଞସ୍ୟ
ପୁରୁଷୋ ବିମୋକ୍ଷନିମିତ୍ତଂ ତଥା ପ୍ରବୃତ୍ତିଃ ପ୍ରଧାନସ୍ୟ ।''

ନର୍ତ୍ତକୀ ଯେପରି ସଭ୍ୟଙ୍କୁ ନୃତ୍ୟ ଦର୍ଶାଇ ନୃତ୍ୟରୁ ନିବୃତ୍ତ ହୁଏ ସେପରି ପ୍ରକୃତି ମଧ୍ୟ ପୁରୁଷ ନିକଟରେ ନିଜର ସ୍ୱରୂପ ପ୍ରକାଶ କରି ନିବୃତ୍ତ ହୁଏ ।

ରଙ୍ଗସ୍ୟ ଦର୍ଶୟିତ୍ୱା ନିବର୍ତ୍ତତେ ନର୍ତ୍ତକୀ ଯଥା ନୃତ୍ୟାତ୍
ପୁରୁଷସ୍ୟ ତଥାତ୍ମାନଂ ପ୍ରକାଶ୍ୟ ନିବର୍ତ୍ତତେ ପ୍ରକୃତିଃ ।

ଗୁଣବାନ୍ ଭୃତ୍ୟ ନିର୍ଗୁଣ ପ୍ରଭୁର ଆରାଧନା କରି ପ୍ରଭୁକୃପାର ପ୍ରତ୍ୟାଶା ନକଲା ପରି ଗୁଣବତୀ ପ୍ରକୃତି ମଧ୍ୟ ନାନାବିଧ ଉପାୟରେ ନିର୍ଗୁଣ ପୁରୁଷର ଉପକାର କରି କୌଣସି ପ୍ରତ୍ୟୁପକାର ଆଶା କରେ ନାହିଁ ।

"ନାନାବିଧୈରୁପାୟୈ ରୁପକାରିଣ୍ୟନୁପକାରିଣଃ ପୁଂସଃ
ଗୁଣବତ୍ୟଗୁଣସ୍ୟ ସତ ସ୍ତସ୍ୟାର୍ଥ ମପାର୍ଥକଂ ଚରତି ।"

ଯେପରି କୌଣସି ଅସୂର୍ଯ୍ୟଂପଶ୍ୟା କୁଳବଧୂ ଦୈବାତ୍ ସ୍ଖଳିତଚେଳାଞ୍ଚଳ ହୋଇଥିବା ଅବସ୍ଥାରେ ଥରେ ମାତ୍ର କୌଣସି ପୁରୁଷ କର୍ତ୍ତୃକ ଦୃଷ୍ଟ ହେଲେ ଲଜ୍ଜାବଶତଃ ଆଉଥରେ ସେହି ପୁରୁଷର ନୟନପଥବର୍ତ୍ତିନୀ ହୁଏନାହିଁ, ସେହିପରି ପ୍ରକୃତି ମଧ୍ୟ କୌଣସି ପୁରୁଷକର୍ତ୍ତୃକ ବିବେକ ଜ୍ଞାନଦ୍ୱାରା ଦୃଷ୍ଟହେଲେ ପୁନର୍ବାର ତା'ର ଦୃଷ୍ଟିପଥାରୂଢ଼ ହୁଏ ନାହିଁ ।

"ପ୍ରକୃତେଃ ସୁକୁମାରତନ୍ନ ନ କିଂଚିଦସ୍ତି ମେ ମତିର୍ଭବତି
ଯା ଦୃଷ୍ଟାସ୍ମୀତି ପୁନ ର୍ନ ଦର୍ଶନମୁପୈତି ପୁରୁଷସ୍ୟ । (ସାଂଖ୍ୟକାରିକା)

ପ୍ରକୃତିର ବିବେକ ସାକ୍ଷାତ୍‌କାରଦ୍ୱାରା ପୁରୁଷ ଯଦି ମୁକ୍ତହୁଏ ତେବେ ପ୍ରକୃତିର ଆଉ ସୃଷ୍ଟି ହୁଏ ନାହିଁ; ପ୍ରକୃତିର ଆଶ୍ରୟରେ ପୁରୁଷର ବନ୍ଧ, ମୋକ୍ଷ ବା ସଂସାର । କିନ୍ତୁ ସ୍ୱଭାବତଃ ପୁରୁଷର ବନ୍ଧ, ମୋକ୍ଷ ବା ସଂସାର ନାହିଁ ।

ଭୃତ୍ୟଗତ ଜୟ ପରାଜୟ ଯେପରି ତା'ର ସ୍ୱାମୀ ପ୍ରାପ୍ତ ହୁଏ ସେପରି ପ୍ରକୃତିଗତ୍ୟବନ୍ଧମୋକ୍ଷ ମଧ୍ୟ ପୁରୁଷ ପ୍ରାପ୍ତ ହୁଏ । କୋଷକାର କୀଟ ଯେପରି ନିଜେ ନିଜକୁ ବନ୍ଧନ କରେ ସେହିପରି ପ୍ରକୃତି ମଧ୍ୟ ନିଜେ ନିଜକୁ ଆବଦ୍ଧ କରିଥାଏ । ଶ୍ରଦ୍ଧା ସହକାରେ ସୁଦୀର୍ଘ କାଳ ନିରନ୍ତର ପୂର୍ବକଥିତ ତତ୍ତ୍ୱନୁଯାୟୀ ବିବେକ ଜ୍ଞାନ ଅଭ୍ୟାସ କଲେ ମୁଁ ପୁରୁଷ, ମୁଁ ପ୍ରକୃତି ନୁହେଁ, ମୁଁ କର୍ତ୍ତା ନୁହେଁ, କୌଣସି ବିଷୟରେ ମୋର ସ୍ୱାଭାବିକ ସ୍ୱାମୀତ୍ୱ ନାହିଁ ଏହିପରି ବିବେକସାକ୍ଷାତ୍‌କାରାତ୍ମକ ଜ୍ଞାନ ଉତ୍ପନ୍ନ ହୁଏ । ଯଦି ମିଥ୍ୟାଜ୍ଞାନ ବା ମିଥ୍ୟାଜ୍ଞାନବାସନା ଅନାଦି ଏବଂ ପକ୍ଷାନ୍ତରେ ବିବେକଜ୍ଞାନ ଓ ବିବେକଜ୍ଞାନବାସନା ଆଦିଯୁକ୍ତ ତେବେ ଗୋଟିକର ଆରମ୍ଭ ଅଛି ଓ ଅନ୍ୟଟିର ନାହିଁ । ଏହିପରି ବିବେକଜ୍ଞାନ ମିଥ୍ୟାଜ୍ଞାନର ଏବଂ ବିବେକଜ୍ଞାନବାସନା ମିଥ୍ୟାଜ୍ଞାନବାସନାର ଉଚ୍ଛେଦ ସାଧନ କରିପାରେ, ଏଥିରେ ଅନ୍ୟ କୌଣସି ପ୍ରତିବନ୍ଧକତା ନାହିଁ । ଯେହେତୁ ତତ୍ତ୍ୱ ବିଷୟରେ ବୁଦ୍ଧିର ସ୍ୱାଭାବିକ ପକ୍ଷପାତ ଅଛି ବୋଲି ତତ୍ତ୍ୱଜ୍ଞାନ ପ୍ରବଳ ଓ ମିଥ୍ୟାଜ୍ଞାନ ଦୁର୍ବଳ; ସୁତରାଂ ବିବେକଜ୍ଞାନ ହେଲେ ଆଉ ମିଥ୍ୟାଜ୍ଞାନର ସମ୍ଭାବନା ରହେ ନାହିଁ । ଅଙ୍କୁରୋଦ୍ଗମଶକ୍ତି ରହିତ ବୀଜରୁ ସଲିଳ ଓ ତାପ ସଂଯୋଗରେ ସୁଦ୍ଧା ଯେପରି ଅଙ୍କୁର ଉତ୍ପନ୍ନ ହୁଏନାହିଁ; ସେପରି ପ୍ରକୃତି ପୁରୁଷର ସଂଯୋଗ ହେଲେ ମଧ୍ୟ ବିବେକଜ୍ଞାନଦ୍ୱାରା ଅବିବେକ ବିନଷ୍ଟ ହେଲେ ଆଉ ସଂସାରାଂକୁରଭାବ ଉତ୍ପନ୍ନ ନହୋଇ ମୁକ୍ତି ହୁଏ ।

ଶବ୍ଦାଦି ବିଷୟଭୋଗ ପୁରୁଷର ସ୍ୱାଭାବିକ ନୁହେଁ; ତାହାଠାରେ ଆରୋପିତ ମାତ୍ର। ମିଥ୍ୟାଜ୍ଞାନ ଭୋଗର ନିବନ୍ଧନ ବା ହେତୁ । ମିଥ୍ୟାଜ୍ଞାନ ବିନଷ୍ଟ ହେଲେ ଭୋଗ ହୋଇପାରେ ନାହିଁ । ସୁତରାଂ ସୃଷ୍ଟିର କୌଣସି ପ୍ରୟୋଜନ ନାହିଁ ।

ପୂର୍ବୋକ୍ତପ୍ରକାରେ ବିବେକ ସାକ୍ଷାତ୍‌କାର ହେଲେ ସଞ୍ଚିତ ଧର୍ମ ଧର୍ମର ବୀଜଭାବ ନଷ୍ଟ ହୋଇଯାଏ ବୋଲି ତାହା ଜନ୍ମାଦିରୂପ ଫଳ ଉତ୍ପାଦନ କରିପାରେ ନାହିଁ । ଯେପରି ଧାନ୍ୟାଦି ଭର୍ଜିତ ହେଲେ ଅଙ୍କୁରୋତ୍ପାଦନ ସମର୍ଥ ହୁଏନାହିଁ ସେହିପରି ବିବେଜ୍ଞାନଦ୍ୱାରା ଅଜ୍ଞାନ ଭ୍ରଷ୍ଟହେଲେ ଅଜ୍ଞାନର କାର୍ଯ୍ୟସ୍ୱରୂପ ସଂସାର ଆଉ ଅଙ୍କୁରିତ ହୋଇପାରେ ନାହିଁ । ଭଗବଦ୍ ଗୀତା କହେ -

''ଜ୍ଞାନାଗ୍ନିଃ ସର୍ବ କର୍ମାଣି ଭସ୍ମସାତ୍ କୁରୁତେଽର୍ଜୁନ ।''
ଜ୍ଞାନରୂପ ଅଗ୍ନିପ୍ରଜ୍ୱଳିତ ହେଲେ ସମସ୍ତ କର୍ମ ତତ୍‌କ୍ଷଣାତ୍ ଭସ୍ମୀଭୂତ ହୁଏ ।
କ୍ଲେଶସଲିଳାବସିକ୍ତାନାଂ ହି ବୁଦ୍ଧିଭୂମୌ
କର୍ମ ବୀଜାନ୍ୟଙ୍କୁରଂ ପ୍ରସୂବତେ ତତ୍ତ୍ୱଜ୍ଞାନନିଦାଘଘ୍ନନିପୀତ
ସକଳ କ୍ଲେଶସଲିଳାୟା ମୂଷରାୟାଂ
କୁତଃ କର୍ମବୀଜାନାମଙ୍କୁର ପ୍ରସବଃ । (ତତ୍ତ୍ୱକୌମୁଦୀ)

ଜଳସିକ୍ତ ଭୂମିରେ ହିଁ ବୀଜ ଅଙ୍କୁରୋତ୍ପାଦନସମର୍ଥ ହୁଏ । ଯେପରି ସୂର୍ଯ୍ୟ ତାପରେ ସମସ୍ତ ଜଳ ପରିଶୁଷ୍କ ଉଷର ଭୂମିରେ ବୀଜରୁ ଅଙ୍କୁରୋତ୍ପନ୍ନ ହେବା ଅସମ୍ଭବ ସେପରି ମିଥ୍ୟାଜ୍ଞାନାଦିରୂପ କ୍ଲେଶ ଥିଲେ ମଧ୍ୟ ସଞ୍ଚିତ କର୍ମଫଳ ଜାତ କରାଏ । ଉକ୍ତ ତତ୍ତ୍ୱଜ୍ଞାନ ଦ୍ୱାରା ମିଥ୍ୟାଜ୍ଞାନାଦି କ୍ଲେଶ ଅପନୀତ ହେଲେ ଆଉ କର୍ମଫଳ ଉତ୍ପନ୍ନ ହୋଇପାରେ ନାହିଁ । ଏତଦ୍ୱାରା ପ୍ରତିପନ୍ନ ହେଉଅଛି ଯେ ତତ୍ତ୍ୱଜ୍ଞାନ ଲାଭରୁ ହିଁ ମୁକ୍ତିଲାଭ ହୁଏ । ଯଦିଚ ତତ୍ତ୍ୱଜ୍ଞାନୀର କର୍ମଫଳ ହୋଇପାରେ ନାହିଁ ତଥାପି ଯେଉଁ ଧର୍ମାଧର୍ମ ଫଳ ପ୍ରସବ କରିବାକୁ ଆରମ୍ଭ କରିଅଛି ଅର୍ଥାତ୍ ଯେଉଁ ଧର୍ମାଧର୍ମ ପ୍ରଭାବରେ ତାହାର ଫଳ ଭୋଗ ଲାଗି ବର୍ତ୍ତମାନ ଶରୀର ଉତ୍ପନ୍ନ ହୋଇଅଛି ତାହା ପ୍ରବୃତ୍ତ ବେଗ ବୋଲି ତାହାର ପ୍ରତିରୋଧ ହୁଏ ନାହିଁ ।

ଜ୍ଞାନିନାଽଜ୍ଞାନିନା ବାପି ଯାବଦ୍ଦେହସ୍ୟ ଧାରଣଂ
ତାବଦ୍ବର୍ଣ୍ଣାଶ୍ରମଂ ପ୍ରୋକ୍ତଂ କର୍ତ୍ତବ୍ୟଂ କର୍ମ ମୁକ୍ତୟେ । (ସାଂଖ୍ୟପ୍ରବଚନଭାଷ୍ୟ)

ଜ୍ଞାନୀ ବା ଅଜ୍ଞାନୀ ହେଉ ଯାବତ୍ପର୍ଯ୍ୟନ୍ତ ଦେହ ଥିବ ତାବତ୍କାଳ କର୍ମକ୍ଷୟ ଲାଗି କର୍ମଫଳ ଭୋଗ କରିବାକୁ ହେବ । ମାତ୍ର ଜ୍ଞାନୀ ଓ ଅଜ୍ଞାନୀ ଉଭୟଙ୍କ ମଧ୍ୟରେ ବିଶେଷତ୍ୱ ଏତିକି ଯେ ଜ୍ଞାନୀ କେବଳ ପ୍ରାରବ୍ଧ କର୍ମ ଭୋଗକରି କ୍ଷୟ କରେଏବଂ ଅଜ୍ଞାନୀ ପୁନର୍ବାର କର୍ମବୀଜ ସଞ୍ଚୟ କରେ ଓ ତାହାର ଫଳରେ ବାରମ୍ବାର ଜନ୍ମମୃତ୍ୟୁଚକ୍ରରେ ଘୂର୍ଣ୍ଣିତ ହୁଏ । ମାତ୍ର ଜ୍ଞାନୀର ଦେହାନ୍ତରେ ମୋକ୍ଷ ଲାଭ ହୁଏ ।

କୁମ୍ଭକାର ଦଣ୍ଡାଦିଦ୍ୱାରା ଚକ୍ରର ପରିଭ୍ରମଣ ସମ୍ପାଦନ କରେ, କିନ୍ତୁ ଥରେ ସେ ବୁଲାଇଲା ପରେ ଦଣ୍ଡ ବାହାର କରିଦେଲେ ମଧ୍ୟ ଯେପରି ବେଗାଖ୍ୟ-ସଂସ୍କାର ବଳରେ ଚକ୍ର କିଛିକାଳ ନିଜେ ଘୂର୍ଣ୍ଣିତ ହୁଏ ସେହିପରି ସଞ୍ଚିତ ଧର୍ମାଧର୍ମ ଫଳ ଜନନରେ ଅସମର୍ଥ ହେଲେ ମଧ୍ୟ ଯେଉଁ କର୍ମଫଳ ଜନ୍ମିଅଛି ତଥାବିଧ ଫଳ କର୍ମାନୁସାରେ ତତ୍ତ୍ୱଜ୍ଞାନୀର ଶରୀର କିଛିକାଳ ଅବସ୍ଥିତ ରହେ । ଏହି ପ୍ରାରବ୍ଧ କର୍ମଫଳ ଭୋଗ ପରେ ଜ୍ଞାନୀର ଦେହପାତ ହେଲେ ମଧ୍ୟ ଆଉ ଦେହାନ୍ତର ହୁଏ ନାହିଁ । କାରଣ ତତ୍ତ୍ୱଜ୍ଞାନଦ୍ୱାରା କର୍ମାଶୟର ବୀଜଭାଗ ଦଗ୍ଧ ହୋଇ ଜ୍ଞାନୀର ତ୍ରିବିଧ ଦୁଃଖ ନିବୃତ୍ତି ରୂପ କୈବଲ୍ୟ ସମ୍ପାଦିତ ହୁଏ ଏବଂ ପରେ ମୁକ୍ତି ଲାଭକରେ । ଏତଦ୍ଦ୍ୱାରା ବୁଝିବାକୁ ହେବ ଯେ ଭୋଗ ବ୍ୟତୀତ କର୍ମର କ୍ଷୟ ହୁଏ ନାହିଁ ।

''ମାଭୁକ୍ତ୍ୱା କ୍ଷୀୟତେ କର୍ମ କଳ୍ପକୋଟିଶତୈରପି'' (ଭାଷ୍ୟ)

ଶତକୋଟି କଳ୍ପକାଳରେ ମଧ୍ୟ କର୍ମ ଭୋଗ ନହେଲେ କ୍ଷୟ ହେବ ନାହିଁ । କର୍ମାଶୟରେ କର୍ମର ଅନନ୍ତ ଜୀବ ସଞ୍ଚିତ ଥାଏ । ଭୋଗ ଭିନ୍ନ କେତେବେଳେ କର୍ମର କ୍ଷୟ ହୁଏ ନାହିଁ ଏବଂ କର୍ମକ୍ଷୟ ବ୍ୟତୀତ ଯେତେବେଳେ ମୁକ୍ତି ହୁଏ ନାହିଁ ତେବେ ମୁକ୍ତି ଏକରୂପ ଅସମ୍ଭବ । ଅତଏବ ଯେ କର୍ମଫଳ ପ୍ରଦାନ କରିବା ଆରମ୍ଭ କରିଅଛି ସେହି କର୍ମ ଭୋଗ ବ୍ୟତୀତ କିଛି କ୍ଷୟ ହୁଏ ନାହିଁ । କିନ୍ତୁ ଯେ ସକଳ କର୍ମ କର୍ମାଶୟରେ ବୀଜ ଭାଗରେ ଅଛି ତାହା ଜ୍ଞାନଦ୍ୱାରା ଭୃଷ୍ଟ ଭାବାପନ୍ନ ହୋଇଥାଏ । ସୁତରାଂ ଏ ସକଳ କର୍ମ ବୀଜ ଥିଲେ ମଧ୍ୟ ମୁକ୍ତିରେ ବାଧା ଘଟେ ନାହିଁ । ସେତେବେଳେ ପୁରୁଷ ନିଜର ସ୍ୱରୂପାବସ୍ଥା ପ୍ରାପ୍ତ ହୁଏ ।

ତଦାଦ୍ରଷ୍ଟୁଃ ସ୍ୱରୂପେଣାବସ୍ଥାନଂ । (ପାତଞ୍ଜଳ ଦର୍ଶନ)

ପୁରୁଷର ଏହି ଅବସ୍ଥା ପ୍ରାପ୍ତିରେ ଜନ୍ମ, ଜରା, ବ୍ୟାଧି ଓ ମୃତ୍ୟୁ ରହେ ନାହିଁ । ଅର୍ଥାତ୍ ତ୍ରିତାପ ତାଙ୍କୁ ସ୍ପର୍ଶ କରେ ନାହିଁ ।

## ସାଂଖ୍ୟ ଯୋଗ

ଯେଉଁ ସକଳ ଆର୍ଯ୍ୟଦର୍ଶନରେ ତତ୍ତ୍ୱଜ୍ଞାନ ପର୍ଯ୍ୟାଲୋଚିତ ସେମାନଙ୍କ ମଧ୍ୟରେ ସାଂଖ୍ୟ ସର୍ବପ୍ରଥମ ଉନ୍ନତତମ ବିଚାରଶୀଳ ଦର୍ଶନ ବୋଲି ଏଥିପୂର୍ବେ ଉଲ୍ଲେଖ କରାଯାଇଛି । ଏହାର ଅନ୍ୟତମ ପ୍ରମାଣ ଭଗବତ୍‌ଗୀତା-

ଲୋକେଽସ୍ମିନ୍ ଦ୍ୱିବିଧା ନିଷ୍ଠା ପୁରା ପ୍ରୋକ୍ତା ମୟାଽନେଘ ।
ଜ୍ଞାନଯୋଗେନ ସାଂଖ୍ୟାନାଂ କର୍ମଯୋଗେନ ଯୋଗିନାଂ ।୨।୩।୩।ଗୀତା

ଅର୍ଥ - ଇହଲୋକରେ ଦୁଇପ୍ରକାର ନିଷ୍ଠା ବା ପନ୍ଥା ପୂର୍ବକାଳରେ ମୁଁ କହିଥିଲି । ତନ୍ମଧ୍ୟରୁ ଜ୍ଞାନଯୋଗଦ୍ୱାରା ସାଂଖ୍ୟ ଅର୍ଥାତ୍ ଜ୍ଞାନୀମାନେ ମୋକ୍ଷ ଲାଭ କରିବେ ଏବଂ କର୍ମଯୋଗଦ୍ୱାରା କର୍ମଯୋଗୀମାନେ ମୋକ୍ଷ ଲାଭ କରିବେ ।

ଭାଗବତାଦି ପୁରାଣ ଗ୍ରନ୍ଥରେ ସୁଦ୍ଧା ସାଂଖ୍ୟଦର୍ଶନ ପ୍ରଣେତା ମହର୍ଷି କପିଳଙ୍କୁ ବିଷ୍ଣୁଙ୍କର ସପ୍ତବିଂଶତି ଅବତାରରେ ଅନ୍ୟତମ ବୋଲି ସ୍ୱୀକୃତ ହୋଇଅଛି । ଗୀତାର ଉପରୋକ୍ତ ଶ୍ଳୋକରେ ମଧ୍ୟ ଉକ୍ତ ବିଷୟ ପ୍ରତିପନ୍ନ ହୋଇଅଛି ବୋଲି ଧରିନେଲେ କୌଣସି ଅସଙ୍ଗତ ହେବ ନାହିଁ । ଏହି ସାଂଖ୍ୟଯୋଗ ବା ସାଂଖ୍ୟଦର୍ଶନ ପ୍ରକୃତ ଅଧିକାରୀ ପକ୍ଷେ ମୋକ୍ଷ ଲାଭର ପ୍ରକୃଷ୍ଟ ପନ୍ଥା ବୋଲି ଗୀତାର ଦ୍ୱିତୀୟାଧ୍ୟାୟରୁ ସ୍ପଷ୍ଟ ପ୍ରତୀତ ହୁଏ ।

ତଂ ତଥା କୃପୟାବିଷ୍ଟ ମଶ୍ରୁପୂର୍ଣାକୁଳେକ୍ଷଣଂ ।
ବିଷୀଦନ୍ତମିଦଂ ବାକ୍ୟମୁବାଚ ମଧୁସୂଦନଃ ।

x x x x x x

ଧର୍ମପୀଠ କୁରୁକ୍ଷେତ୍ରରେ ଯେତେବେଳେ କୁରୁ ଓ ପାଣ୍ଡବ ଉଭୟ ବାହିନୀ ଯୁଦ୍ଧ କାମନାରେ ସମବେତ ହୋଇଥିଲେ ସେତେବେଳେ ବୀରାଗ୍ରଣୀ ଅର୍ଜୁନ ସ୍ୱୀୟ ସାରଥି ଭଗବାନ୍ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ-

ଯାବଦେତାନ୍ନିରୀକ୍ଷେଽହଂ ଯୋଦ୍ଧୁକାମାନବସ୍ଥିତାନ୍ ।
କୈର୍ମୟାସହଯୋଦ୍ଧବ୍ୟ ମସ୍ମିନ୍ ରଣ ସମୁଦ୍ୟମେ ।୧ ।୨୨ ।ଗୀତା
ଯୋତ୍ସ୍ୟମାନାନବେକ୍ଷେଽହଂ ଯ ଏତେଽତ୍ର ସମାଗତାଃ
ଧାର୍ତ୍ତରାଷ୍ଟ୍ରସ୍ୟ ଦୁର୍ବୁଦ୍ଧେ ଯୁଦ୍ଧେ ପ୍ରିୟଚିକୀର୍ଷବଃ ।୨୩।
ଅର୍ଜୁନଙ୍କ ଉପରୋକ୍ତ ଅନୁରୋଧ ରକ୍ଷା କରି-
ସେନୟୋରୁଭୟୋର୍ମଧ୍ୟେ ସ୍ଥାପୟିତ୍ୱା ରଥୋତ୍ତମଂ ।
ଭୀଷ୍ମଦ୍ରୋଣପ୍ରମୁଖତଃ ସର୍ବେଷାଂ ଚ ମହୀକ୍ଷିତାନ୍ ।
ଉବାଚ ପାର୍ଥ ପଶ୍ୟୈତାନ୍ ସମବେତାନ୍ କୁରୁନିତି ।୧-୨୪-୨୫

ଉଭୟ ସେନାର ମଧ୍ୟସ୍ଥଳରେ ନନ୍ଦିଘୋଷୋପବିଷ୍ଟ ପାର୍ଥ ନିଜର ବନ୍ଧୁ ବାନ୍ଧବଗଣଙ୍କୁ ଦେଖି ଦୟା ପରବଶ ହୋଇ ସେମାନଙ୍କୁ ବଧ କରିବା ଅନ୍ୟାୟ ମନେକରି ଧନୁଶର ତ୍ୟାଗ କଲେ ଏବଂ ସ୍ୱଜନ ବଧ ପାପ ବର୍ଣ୍ଣନ କରି ଯୁଦ୍ଧ ସଂକଳ୍ପରେ ପ୍ରବୃତ୍ତ ହେବାପାଇଁ ଉପଦେଶ ନଦେବାକୁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ । ଅର୍ଜୁନଙ୍କର ଏତାଦୃଶ ବାକ୍ୟ ଶ୍ରବଣ କରି ତାଙ୍କୁ ଉତ୍ସାହିତ କରିବା ପାଇଁ ଭଗବାନ୍ କହିଲେ -

କୁତସ୍ତ୍ୱା କଶ୍ମଳମିଦଂ ବିଷମେ ସମୁପସ୍ଥିତଂ ।
ଅନାର୍ଯ୍ୟଜୁଷ୍ଟମସ୍ୱର୍ଗ୍ୟମକୀର୍ତ୍ତିକରମର୍ଜୁନ୍ ।।
କ୍ଳୈବ୍ୟଂ ମାସ୍ମଗମଃ ପାର୍ଥ ନୈତତ୍ତ୍ୱୟ୍ୟୁପପଦ୍ୟତେ
କ୍ଷୁଦ୍ରଂ ହୃଦୟଦୌର୍ବଲ୍ୟଂ ତ୍ୟକ୍ତ୍ୱୋତ୍ତିଷ୍ଠ ପରନ୍ତପ ।୨-୨-୩ ଗୀତା ।

ହେ ପରନ୍ତପ ! ଅନାର୍ଯ୍ୟ ଦୋଷଯୁକ୍ତ ଅସ୍ୱର୍ଗ ଅକୀର୍ତ୍ତିକର ମନୋଦୁଃଖ ଏପରି ବିଷମ

ସମୟରେ ତୁମଠାରେ କେଉଁଠାରୁ ଉପସ୍ଥିତ ହେଲା ? ଏହା ତୁମ୍ଭ ପକ୍ଷେ ଉପଯୁକ୍ତ ନୁହେଁ ଅତଏବ ତୁମ୍ଭେ ଦୁଃଖିତ ନହୋଇ ଜାଗ୍ରତ ହୁଅ । କିନ୍ତୁ ଏହି ଉତ୍ସାହାତ୍ମକ ବାକ୍ୟରେ ଦୁଃଖାପହତଚେତା ଅର୍ଜୁନଙ୍କର ମନ ମାନିଲା ନାହିଁ, ସେ "କଥଂ ଭୀଷ୍ମମହଂ ସଂଖ୍ୟେ" ପ୍ରଭୃତି ଶ୍ଳୋକପଞ୍ଚକରେ ନିଜ ବିଚାରର ଉତ୍କର୍ଷତା ପ୍ରତିପାଦନ କରି "ନ ଯୋତ୍ସ୍ୟ ଇତି ଗୋବିନ୍ଦ - ମୁକ୍ତ୍ୱା ତୂଷ୍ଣୀଂ ବଭୂବ ହ" । ହେ ଗୋବିନ୍ଦ ଯୁଦ୍ଧ କରିବି ନାହିଁ କହି ନୀରବ ହେଲେ । ତେତେବେଳେ ଉପହାସ କରି ଭଗବାନ ଶ୍ରୀକୃଷ୍ଣ କହିଲେ -

ଅଶୋଚ୍ୟାନନ୍ୱଶୋଚସ୍ତ୍ୱଂ ପ୍ରଜ୍ଞାବାଦାଂଶ୍ଚ ଭାଷସେ ।
ଗତାସୂନଗତାସୂଂଶ୍ଚ ନାନୁଶୋଚନ୍ତି ପଣ୍ଡିତାଃ ।।୨-୧୧ ।।ଗୀତା ।।

ଯେଉଁମାନେ ଶୋକର ଯୋଗ୍ୟ ନୁହନ୍ତି ତୁମ୍ଭେ ସେମାନଙ୍କ ପାଇଁ ଶୋକ କରୁଛ ଏବଂ ବ୍ରହ୍ମଜ୍ଞାନୀଙ୍କ ପରି ମୁଖରେ କଥା କହୁଛ, କିନ୍ତୁ ବାସ୍ତବରେ ପଣ୍ଡିତମାନେ ଗତାଗତ ବସ୍ତୁପାଇଁ ଶୋଚନା କରନ୍ତି ନାହିଁ -

ନ ତ୍ୱେବାହଂ ଜାତୁ ନାସଂ ନ ତ୍ୱଂ ନେମେ ଜନାଧିପାଃ
ନ ଚୈବ ନ ଭବିଷ୍ୟାମଃ ସର୍ବେ ବୟ ମତଃପରମ୍ ।
ଦେହିନୋଽସ୍ମିନ୍ ଯଥା ଦେହେ କୌମାରଂ ଯୌବନଂ ଜରା
ତଥା ଦେହାନ୍ତର ପ୍ରାପ୍ତିର୍ଧୀରସ୍ତତ୍ର ନ ମୁହ୍ୟତି ।
ନାସତୋ ବିଦ୍ୟତେ ଭାବୋ ନାଭାବୋ ବିଦ୍ୟତେ ସତଃ ।
ଉଭୟୋରପି ଦୃଷ୍ଟୋଽନ୍ତ ସ୍ତ୍ୱନୟୋ ସ୍ତତ୍ତ୍ୱଦର୍ଶିଭିଃ ।।
ଅବିନାଶୀ ତୁ ତଦ୍‌ବିଦ୍ଧି ଯେନ ସର୍ବମିଦଂ ତତଂ ।
ବିନାଶମବ୍ୟୟସ୍ୟାସ୍ୟ ନ କଶ୍ଚିତ୍‌କର୍ତ୍ତୁମର୍ହତି ।।

ନ ଜାୟତେ ମ୍ରୀୟତେ ବା କଦାଚିତ୍
ନାୟଂ ଭୂତ୍ୱା ଭବିତା ବା ନ ଭୂୟଃ ।
ଅଜୋ ନିତ୍ୟଃ ଶଶ୍ୱତୋଽୟଂ ପୁରାଣୋ
ନ ହନ୍ୟତେ ହନ୍ୟମାନେ ଶରୀରେ ।।

ବେଦାବିନାଶିନଂ ନିତ୍ୟଂ ଯ ଏନମଜମବ୍ୟୟଂ ।
କଥଂ ସ ପୁରୁଷଃ ପାର୍ଥ କଂ ଘାତୟତି ହନ୍ତି କଂ ।।

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍‌ଣାତି ନରୋଽପରାଣି
ତଥା ଶରୀରାଣି ବିହାୟ ଜୀର୍ଣ୍ଣା-
ନ୍ୟନ୍ୟାନି ସଂଯାତି ନବାନି ଦେହୀ ।।

ନୈନଂ ଛିନ୍ଦନ୍ତି ଶସ୍ତ୍ରାଣି ନୈନଂ ଦହତି ପାବକଃ ।
ନ ଚୈନଂ କ୍ଲେଦୟନ୍ତ୍ୟାପୋ ନ ଶୋଷୟତି ମାରୁତଃ ।।
ଅବ୍ୟକ୍ତାଦୀନି ଭୂତାନି ବ୍ୟକ୍ତମଧ୍ୟାନି ଭାରତ ।
ଅବ୍ୟକ୍ତ ନିଧନାନ୍ୟେବ ତତ୍ର କା ପରିଦେବନା ।।

ଉପରୋକ୍ତ ଶ୍ଳୋକସମୂହରେ ଆତ୍ମା ଦେହଠାରୁ ପୃଥକ୍, ଦେହ ବିନାଶଶୀଳ, ଜନ୍ମ, ଜରା, ବ୍ୟାଧି, ମରଣଯୁକ୍ତ ଏବଂ ଆତ୍ମା ଅଜ, ନିତ୍ୟ, ଶାଶ୍ୱତ ଓ ଅବିନାଶୀ; ଜନ୍ମ ମୃତ୍ୟୁ ଆତ୍ମାର ଧର୍ମ ନୁହେଁ ତା'ର ଦେହାନ୍ତର ବା ଜନ୍ମାନ୍ତର ମନୁଷ୍ୟମାନଙ୍କର ଜୀର୍ଣ୍ଣବସ୍ତ୍ର ପରିତ୍ୟାଗ କରି ନୂତନ ବସ୍ତ୍ର ଧାରଣ କଲାପରି ବୋଲି ପ୍ରତିପାଦନ କରି ଅର୍ଜୁନଙ୍କୁ ଯୁଦ୍ଧ ବା ସ୍ୱଧର୍ମରତ ହେବାପାଇଁ ଉପଦେଶ ଦେଇଥିଲେ । ଯେଉଁ ବ୍ୟକ୍ତି ଉପରୋକ୍ତ ଜ୍ଞାନରତ୍ନମଣ୍ଡିତ ସେହି ପ୍ରକୃତ ଜ୍ଞାନୀ ବା ସ୍ଥିତପ୍ରଜ୍ଞ ବୋଲି ଭଗବାନଙ୍କ ମୁଖରୁ ଶୁଣି ଅର୍ଜୁନ ପୁନର୍ବାର ପ୍ରଶ୍ନ କଲେ-

ସ୍ଥିତପ୍ରଜ୍ଞସ୍ୟ କା ଭାଷା ସମାଧିସ୍ଥସ୍ୟ କେଶବ ।
ସ୍ଥିତଧୀଃ କିଂ ପ୍ରଭାଷେତ କିମାସୀତ ବ୍ରଜେତ କିମ୍ ।।

ହେ କେଶବ ସ୍ଥିତପ୍ରଜ୍ଞାର ଭାଷା ଓ ସମାଧି କିପରି? ସେ କିପରି ରହେ? କିପରି ଚଳେ? ତାହାର ଉତ୍ତରରେ ଦ୍ୱିତୀୟାଧ୍ୟାୟର ୫୫ ଶ୍ଳୋକଠାରୁ ଆରମ୍ଭ କରି ଅଧ୍ୟାୟ ଶେଷ ପର୍ଯ୍ୟନ୍ତ ଆତ୍ମଜ୍ଞାନର ବିଷୟ ବିବୃତିଦ୍ୱାରା ଅର୍ଜୁନଙ୍କୁ ସାଂଖ୍ୟ ଯୋଗ ଉପଦେଶ ଦେଲେ । ଏଥିରୁ ସାଂଖ୍ୟ ବିଚାରର ଔତ୍କର୍ଷ୍ୟ ସ୍ପଷ୍ଟ ଜଣାଯାଏ । ଏହି ସମସ୍ତ ଜ୍ଞାନ ଓ ବୈରାଗ୍ୟ ମିଶ୍ରିତ ଉପଦେଶ ଶ୍ରବଣ କଲାପରେ ସଂଶୟାପନ୍ନଚେତା ସାଧକ ପ୍ରବର ଅର୍ଜୁନ ପ୍ରଶ୍ନକଲେ -

ଜ୍ୟାୟସୀ ଚେତ୍ କର୍ମଣସ୍ତେ ମତା ବୁଦ୍ଧିର୍ଜନାର୍ଦନ
ତତ୍ କିଂ କର୍ମଣି ଘୋରେ ମାଂ ନିୟୋଜୟସି କେଶବ ।

ହେ କେଶବ ଯଦି କର୍ମ ଅପେକ୍ଷା ଜ୍ଞାନ ଶ୍ରେଷ୍ଠ ବୋଲି ତୁମ୍ଭର ମତ ତେବେ ମୋତେ କାହିଁକି ଏହି ଘୋର କର୍ମରେ ନିଯୁକ୍ତ କରୁଛ । ଏହି ପ୍ରଶ୍ନର ଉତ୍ତର ସ୍ୱରୂପ କିପରି କର୍ମଯୋଗ ଦ୍ୱାରା ମଧ୍ୟ ମୁକ୍ତିଲାଭ ହୋଇପାରେ ତୃତୀୟାଧ୍ୟାୟରେ ସେ ସମସ୍ତ ବିଷୟ ବିଶଦ ଭାବରେ ବୁଝାଇ ଦେଲେ; ସେଥିରେ ପୁଣି ସଂଶୟାପନ୍ନ ହୋଇ କର୍ମନିଷ୍ଠା ଓ ଜ୍ଞାନନିଷ୍ଠା ମଧ୍ୟରେ କେଉଁଟି ଶ୍ରେଷ୍ଠ ବୋଲି ପ୍ରଶ୍ନ କରିବାରୁ କହିଲେ -

ସାଂଖ୍ୟଯୋଗୌ ପୃଥଗ୍ ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ ।
ଏକମପ୍ୟାସ୍ଥିତଃ ସମ୍ୟଗୁଭୟୋ ର୍ବିନ୍ଦତେ ଫଳମ୍ ।।
ଯତ୍‌ସାଂଖ୍ୟୈଃ ପ୍ରାପ୍ୟତେ ସ୍ଥାନଂ ତଦ୍ ଯୋଗୈରପି ଗମ୍ୟତେ ।
ଏକଂ ସାଂଖ୍ୟଂ ଚ ଯୋଗଂ ଚ ଯଃ ପଶ୍ୟତି ସ ପଶ୍ୟତି ।।

ଏହି ଶ୍ଳୋକଦ୍ୱୟର ତାତ୍ପର୍ଯ୍ୟ - ସାଂଖ୍ୟ ଓ ଯୋଗ ଏହି ଉଭୟକୁ ମୂର୍ଖମାନେ ପୃଥକ୍ ବୋଲି

କହନ୍ତି; କିନ୍ତୁ ପଣ୍ଡିତମାନଙ୍କର ତାହା ମତ ନୁହେଁ । ସାଂଖ୍ୟଦ୍ୱାରା ପ୍ରାପ୍ୟସ୍ଥାନ ଯୋଗରେ ମଧ୍ୟ ଅଧିଗମ୍ୟ । ଏହି ସମସ୍ତ ବିଷୟରୁ ସ୍ପଷ୍ଟ ପ୍ରତୀତ ହୁଏଯେ ସାଂଖ୍ୟ ଉପଯୁକ୍ତ ଅଧିକାରୀ ପାଇଁ ମୋକ୍ଷ ଲାଭର ପ୍ରକୃଷ୍ଟ ମାର୍ଗ । ଉପଯୁକ୍ତ ଅଧିକାରୀ ବ୍ୟତୀତ କୌଣସି ମାର୍ଗାବଲମ୍ବନରେ ମୋକ୍ଷଲାଭ ଦୁଷ୍କର, ଏହା ଭଗବାନ୍ ସ୍ୱୟଂ କହିଛନ୍ତି- ''ସ୍ୱଧର୍ମେ ନିଧନଂ ଶ୍ରେୟଃ ପରଧର୍ମୋ ଭୟାବହ'' । ଅତଏବ ପରିଶେଷରେ ଏତିକି କୁହାଯାଇପାରେ ଯେ, ଉପଯୁକ୍ତ ଅଧିକାରୀ ପାଇଁ ସାଂଖ୍ୟ ଜ୍ଞାନ ଲାଭର ପ୍ରକୃଷ୍ଟତମ ମାର୍ଗ ।

## ବୈଶେଷିକ ଦର୍ଶନ

ବୈଶେଷିକ ଦର୍ଶନ ପ୍ରଣେତା ମହର୍ଷି କଣାଦଙ୍କର ଅନ୍ୟ କେତେ ନାମ ଅଛି । ତନ୍ମଧ୍ୟରୁ ଗୋଟିଏ ନାମ ଉଲୂକ । ଯଥା ଭାରତେ - ''ଉଲୂକଃ ପରମୋ ବିପ୍ରୋ ମାର୍କଣ୍ଡେୟୋ ମହାମୁନିଃ'' । ମାଧ୍ୱାଚାର୍ଯ୍ୟ ସର୍ବଦର୍ଶନ ସଂଗ୍ରହରେ ଏହାଙ୍କ କୃତ ଦର୍ଶନକୁ ଔଲୂକ୍ୟଦର୍ଶନ ନାମରେ ଉଲ୍ଲେଖ କରିଅଛନ୍ତି । ଏହାଙ୍କର ଅନ୍ୟାନ୍ୟ ନାମ କଣଭକ୍ଷ, କଣଭୁଜ ଓ କାଶ୍ୟପ । ଏ ମହାଶୟ କଣ ଭକ୍ଷଣ କରୁଥିବାରୁ ତାଙ୍କୁ କଣାଦ ବୋଲି କୁହାଯାଇଛି । କଣଂ ଅତ୍ତି ଭକ୍ଷୟତି ଇତି କଣାଦଃ । ଏହାହିଁ କଣାଦ ଶବ୍ଦର ବ୍ୟୁତ୍ପତ୍ତି ।

ଲିଙ୍ଗ ପୁରାଣରୁ ସ୍ପଷ୍ଟ ହୁଏ ଅକ୍ଷପାଦଗୌତମ ଓ ଉଲୂକ ଏ ଦୁହେଁ ସାମସମୟିକ । ଯଥା-

ଅକ୍ଷପାଦଃ କୁମାରଶ୍ଚଉଲୂକୋ ବତ୍ସ ଏବଂ ଚ
ତତ୍ରାପି ମମ ତେ ଶିଷ୍ୟାଃ ଭବିଷ୍ୟନ୍ତି ତପୋଧନାଃ ।

ଏହି ଦର୍ଶନର ରଚନା କାଳ ନିର୍ଣ୍ଣୟ କରିବା ସହଜ କଥା ନୁହେଁ । ତଥାପି ବୈଶେଷିକ ଦର୍ଶନ ଅତି ପ୍ରାଚୀନ ବୋଲି ନିଃସନ୍ଦେହରେ କୁହାଯାଇ ପାରେ । ଯେହେତୁ ଯେଉଁ ପରମାଣୁ ବା ଜଡ଼ତତ୍ତ୍ୱ କଣାଦ ନିଜ ସୂତ୍ରରେ ପ୍ରଚାର କରି ଅଛନ୍ତି ତାହା ଖ୍ରୀଷ୍ଟଜନ୍ମର ୪୪୦ ବର୍ଷ ପୂର୍ବେ ଗ୍ରୀକ୍ ଦେଶରେ ଡେମିକ୍ରୀଟ୍‌ସଙ୍କଦ୍ୱାରା ପ୍ରଚାରିତ । ତତ୍ପରେ ଏପିକ୍ୟୁରାସ ମଧ୍ୟ ଠିକ୍ କଣାଦ ମତ ପ୍ରଚାର କରିଥିଲେ । ପରମାଣୁରୁ ଜଗଦୁତ୍ପତ୍ତି ହେବା କଥା ଲୁକ୍ରେସିଆଙ୍କର ଦର୍ଶନର ଦ୍ୱିତୀୟାଧ୍ୟାୟରେ ମିଳେ । ତାହା କଣାଦଙ୍କ ମତ ସଙ୍ଗେ ଅନେକ ସ୍ଥାନରେ ଏକମତ ହେବା ଦେଖାଯାଏ । ତେବେ ସର୍ବାଦୌ ପରମାଣୁବାଦ ପ୍ରଚାର କିଏ କଲା? କଣାଦ ବା ଡେମିକ୍ରୀଟ୍‌ସ ? ପ୍ରଥମତଃ ଭଗବଦ୍‌ଗୀତାରେ ବୈଶେଷିକ ମତ ଦୃଷ୍ଟ ହୁଏ । ସୁତରାଂ ଗୀତା ରଚନାର ପୂର୍ବେ କଣାଦ ଅବଶ୍ୟ ଥିଲେ । କଣାଦ ଯେଉଁ ଅଙ୍କୁରାରୋପଣ କରିଯାଇଥିଲେ, ଭାରତରେ ତାହା ଫଳପ୍ରସୂ ନହୋଇ ସୁଦୂର ୟୁରୋପଖଣ୍ଡରେ ହୋଇଥିଲା । ଏହାର ପ୍ରମାଣ ଡେମିକ୍ରୀଟ୍‌ସଙ୍କ ଜୀବନୀରେ ଲେଖାଅଛି ଯେ ସେ କତିପୟ ସନ୍ନ୍ୟାସୀଙ୍କ ସଙ୍ଗେ ଭାରତକୁ ଆସିଥିଲେ । ବୋଧହୁଏ ଭାରତରେ

କଣାଦମତର ବହୁଳ ପ୍ରଚାର ଜାଣିପାରି ସ୍ୱଦେଶକୁ ଫେରି ନିଜ ଗ୍ରନ୍ଥରେ ବୈଶେଷିକ ମତ ଲେଖିଯାଇ ଅଛନ୍ତି ।

ମହର୍ଷି କଣାଦ ଷଟ୍‌ପଦାର୍ଥବାଦୀ କି ସପ୍ତପଦାର୍ଥବାଦୀ ଏ ବିଷୟରେ ଅନେକ ମତଭେଦ ଦେଖାଯାଏ । କିନ୍ତୁ ତାହାଙ୍କର ସୂତ୍ରରେ ଛଗୋଟି ପଦାର୍ଥର ବିଷୟ ହିଁ ଉଲ୍ଲେଖ ଅଛି ଯଥା-

''ଧର୍ମ ବିଶେଷ ପ୍ରସୂତାତ୍ର ଦ୍ରବ୍ୟଗୁଣକର୍ମସାମାନ୍ୟବିଶେଷସମବାୟାନାଂ ପଦାର୍ଥାନାଂ ସାଧର୍ମ୍ୟବୈଧର୍ମ୍ୟାଭ୍ୟାଂ ତତ୍ତ୍ୱଜ୍ଞାନାନ୍ନିଃଶ୍ରେୟସଂ ।''

ଅର୍ଥ- ଦ୍ରବ୍ୟ-ଗୁଣ-କର୍ମ ସାମାନ୍ୟ ବିଶେଷ ଓ ସମବାୟ ଏ ସକଳ ପଦାର୍ଥର ସାଧର୍ମ୍ୟ ବୈଧର୍ମ୍ୟଦ୍ୱାରା ଯେଉଁ ତତ୍ତ୍ୱଜ୍ଞାନ ଜନ୍ମେ ତହିଁରୁ ମୁକ୍ତିଲାଭ ହୁଏ । କିନ୍ତୁ ସ୍ଥାନାନ୍ତରରେ କଣାଦ ଅଭାବ ସମ୍ବନ୍ଧରେ ବିଶେଷ ଆଲୋଚନା କରି ଯାଇଥିବାରୁ କେତେକ ଆଚାର୍ଯ୍ୟ ତାହାଙ୍କୁ ସପ୍ତପଦାର୍ଥବାଦୀ ବୋଲି କହନ୍ତି । ମାତ୍ର ସାଂଖ୍ୟ ମତରେ କଣାଦ ଷଟ୍‌ପଦାର୍ଥବାଦୀ-ଯେହେତୁ ଗୋଟିଏ ସୂତ୍ରରେ ଲିଖିତ ଅଛି ଯେ ''ନ ବୟଂ ଷଟ୍‌ପଦାର୍ଥବାଦିନୋ ବୈଶେଷିକାଦିବତ୍'' । ବୈଶେଷିକ ପରି ଆମ୍ଭେ ଷଟ୍‌ପଦାର୍ଥବାଦୀ ନୋହୁ । ଏ ବିଷୟରେ ମତଦ୍ୱୈଧ ଅଛି । ତାହାର ବିସ୍ତୃତ ବିବରଣ ଏଠାରେ ଉଲ୍ଲେଖ କରି ଗ୍ରନ୍ଥର ଅଯଥା କଳେବର ବୃଦ୍ଧି କରିବା ଉଚିତ ନୁହେଁ ମନେକରି ନିବୃତ୍ତ ହେଲୁଁ ।

ଏହି ଦର୍ଶନର ଉଦ୍ଦେଶ୍ୟ ମୁକ୍ତି । ମୁକ୍ତି ଲାଗି ଆତ୍ମାର ଶ୍ରବଣ ମନନାଦି ନିରୂପିତ ହୋଇଅଛି । ବିଶେଷ ପଦାର୍ଥକୁ ଅଧିକାର କରିଏହି ଦର୍ଶନ ପ୍ରଣୟନ କରାଯାଇଅଛି । ଅତଏବ ଏହାର ନାମ ବୈଶେଷିକ । ବିଶେଷ ପଦର ତାତ୍ପର୍ଯ୍ୟ ବୈଶେଷିକ ସୂତ୍ରରେ ଉଲ୍ଲେଖ କରାଯାଇଅଛି ଯଥା - ''ଅନ୍ୟତ୍ରାନ୍ତ୍ୟେଭ୍ୟୋ ବିଶେଷେଭ୍ୟଃ'' । ଏହି ବିଷୟକୁ ନେଇ କାରିକାବଳିରେ ମଧ୍ୟ ଉଲ୍ଲେଖ କରାଯାଇଅଛି - ''ଅନ୍ତ୍ୟୋ ନିତ୍ୟ ଦ୍ରବ୍ୟବୃତ୍ତି ର୍ବିଶେଷଃ ପରିକୀର୍ତ୍ତିତଃ'' । ବିଶେଷ ପଦାର୍ଥକୁ ଅନ୍ତ୍ୟ କୁହାଯାଏ । ନିତ୍ୟଦ୍ରବ୍ୟ ହିଁ ଏହି ଅନ୍ତ୍ୟର ଆଶ୍ରୟ । ପ୍ରତ୍ୟେକ ପରମାଣୁ ଏହି ଅନ୍ତ୍ୟବିଶିଷ୍ଟ । ପରମାଣୁମାନଙ୍କର ପରସ୍ପର ଭେଦସାଧକ ଏହି ବିଶେଷ ପଦାର୍ଥ ପ୍ରତ୍ୟେକ ପରମାଣୁରେ ଅଛି । ଅତଏବ ପରମାଣୁର ବିଶେଷକୁ ନେଇ ସମସ୍ତ ଜଗତରେ ଦୃଷ୍ଟବସ୍ତୁର ବିଭିନ୍ନତାରୂପ ବିଶେଷ ଅନୁଭୂତ ହୁଏ । ଯେହେତୁ ପରମାଣୁରୁ ସମସ୍ତ ପଦାର୍ଥ ଉତ୍ପନ୍ନ । ଏହାହିଁ ଏହି ଦର୍ଶନକାରଙ୍କ ମତ ।

ଏହି ଦର୍ଶନ ଦଶ ଅଧ୍ୟାୟ ବିଶିଷ୍ଟ; ପ୍ରତି ଅଧ୍ୟାୟ ଦୁଇ ଦୁଇ ଆହ୍ନିକରେ ବିଭକ୍ତ; ସମୁଦାୟ ଗ୍ରନ୍ଥରେ ୩୬୦ ସୂତ୍ର ଅଛି । ପ୍ରତ୍ୟେକ ଦିନର ରଚିତ ସୂତ୍ର ଆହ୍ନିକ ନାମେ ଅଭିହିତ- ଯେହେତୁ ଅହ୍ନା ନିବୃତ୍ତୋ ଗ୍ରନ୍ଥ ଇତି ଆହ୍ନିକଃ - ଏଥିରୁ ଅନୁମିତ ହୁଏ ଯେ ମହର୍ଷି କଣାଦ କୋଡ଼ିଏ ଦିନରେଏହି ଦର୍ଶନ ସମାପ୍ତ କରିଥିବେ ।

## କଣାଦ ଦର୍ଶନର ମୁଖ୍ୟ ଉଦ୍ଦେଶ୍ୟ

କଣାଦଙ୍କ ମତରେ ପଦାର୍ଥ ସପ୍ତପ୍ରକାର, ଛଗୋଟି ଭାବ ପଦାର୍ଥ ଏବଂ ଗୋଟିଏ ଅଭାବ ପଦାର୍ଥ । ଦ୍ରବ୍ୟ, ଗୁଣ, କର୍ମ, ସାମାନ୍ୟ, ବିଶେଷ ଓ ସମବାୟ ଏହି ଛ ପ୍ରକାର ଭାବପଦାର୍ଥ ।

ଦ୍ରବ୍ୟପଦାର୍ଥ - ଯହିଁରେ ଗୁଣ ଥାଏ ତାହାକୁ ଦ୍ରବ୍ୟ କୁହାଯାଏ ।

ଦ୍ରବ୍ୟ ନ ପ୍ରକାର । ଯଥା - ପୃଥିବୀ, ଜଳ, ତେଜ, ବାୟୁ, ଆକାଶ, କାଳ, ଦିକ୍, ଆତ୍ମା ଓ ମନ । ଏ ପଦାର୍ଥମାନଙ୍କ ମଧ୍ୟରୁ ପ୍ରଥମ ପାଞ୍ଚଗୋଟି ପଦାର୍ଥ ଭୂତ ନାମେ ଅଭିହିତ । ବହିରିନ୍ଦ୍ରିୟଗ୍ରାହ୍ୟ ବିଶେଷଗୁଣବିଶିଷ୍ଟ ପଦାର୍ଥ ହିଁ ଭୂତ । ପୃଥିବୀର ଗନ୍ଧ, ଜଳର ରସ, ତେଜର ରୂପ, ବାୟୁର ସ୍ପର୍ଶ ଓ ଆକାଶର ଶବ୍ଦ ବିଶେଷ ଗୁଣ । ଏହି ପାଞ୍ଚ ଗୁଣ ଯଥାକ୍ରମେ ଘ୍ରାଣ, ରସନା, ଚକ୍ଷୁ, ତ୍ୱକ୍ ଓ ଶ୍ରୋତ୍ରରୂପ ବହିରିନ୍ଦ୍ରିୟଦ୍ୱାରା ଗ୍ରାହ୍ୟ ଅଥଚ ଏଗୁଡ଼ିକ ବିଶେଷ ଗୁଣ ।

ଜ୍ଞାନ ଆତ୍ମାର ବିଶେଷ ଗୁଣ କିନ୍ତୁ ମନୋଗ୍ରାହ୍ୟ । ଏହା ବହିରିନ୍ଦ୍ରିୟଗ୍ରାହ୍ୟ ନୁହେଁ ଅତଏବ ଆତ୍ମାକୁ ଭୂତ ବୋଲାଯାଏ ନାହିଁ ।

ପୃଥିବୀ - ଯହିଁରେ ଗନ୍ଧ ଥାଏ ତାହାର ନାମ ପୃଥିବୀ । ଯଦିଚ ଜଳରେ ଗନ୍ଧର ଉପଲବ୍ଧି ହୁଏ ତଥାପି ସେ ଗନ୍ଧ ଜଳର ନୁହେଁ । ତାହା ପୃଥିବୀର ଗନ୍ଧ ଜଳରେ ସଂକ୍ରାନ୍ତ ହୋଇଥାଏ । ନୂତନ ମୃତ୍ପାତ୍ରରେ ଜଳ ରଖି କିଛିକ୍ଷଣ ପରେ ପାନ କଲେ ତହିଁରୁ ନୂତନ ମୃଦ୍ଗନ୍ଧ ଅନୁଭୂତ ହୁଏ; ସୁତରାଂ ଆଶ୍ରୟ ଗନ୍ଧ ହିଁ ଜଳରେ ଅନୁଭୂତ ହେଉଥାଏ । ବସ୍ତୁତଃ ଜଳରେ ଗନ୍ଧ ନାହିଁ । ଜଳ - ଯହିଁରେ ଶୀତସ୍ପର୍ଶ, ଶୁକ୍ଳରୂପ ଓ ସ୍ୱାଭାବିକ ଦ୍ରବତ୍ୱ ଅଛି ତାହାକୁ ଜଳ କହି । ଶୁକ୍ଳ ପୀତ ପ୍ରଭୃତି ନାନାବିଧ ରୂପ ପୃଥିବୀରେ ଦୃଷ୍ଟ ହେଲେ ମଧ୍ୟ ସ୍ୱଭାବ ସିଦ୍ଧ ଦ୍ରବତ୍ୱ ନଥିବାରୁ ପୃଥିବୀକି ଜଳ କୁହାଯାଏ ନାହିଁ ।

ତେଜ - ଯହିଁରେ ସ୍ୱାଭାବିକ ଉଷ୍ଣସ୍ପର୍ଶ ଅଛି ତାହାକୁ ତେଜ କହି ।

ବାୟୁ - ଅପାକଜ ଅନୁଷ୍ଣ ଓ ଅଶୀତସ୍ପର୍ଶ ଯହିଁରେ ଥାଏ ତାହାକୁ ବାୟୁ କହି ।

ଆକାଶ - ଯହିଁରେ ଶବ୍ଦ ଉତ୍ପନ୍ନ ହୁଏ ତାହାକୁ ଆକାଶ କୁହାଯାଏ । ଆକାଶ ନିତ୍ୟ ଓ ନିରବୟବ । ଆକାଶ ଏକ ହେବା ଯୋଗୁଁ ଆକାଶତ୍ୱ ଜାତି ନୁହେଁ । ଏକମାତ୍ର ଶବ୍ଦ ହିଁ ଆକାଶ ସିଦ୍ଧିର ହେତୁ ''ପରିଶେଷାଲ୍ଲିଙ୍ଗମାକାଶସ୍ୟ'' ଅର୍ଥାତ୍ ଅନ୍ୟ ଅଷ୍ଟବିଧ ଦ୍ରବ୍ୟରେ ଶବ୍ଦ ରହିବା ଅସମ୍ଭବ ବୋଲି ଶବ୍ଦ ଏକମାତ୍ର ଆକାଶର ଲିଙ୍ଗ ଅର୍ଥାତ୍ ଅନୁମାପକ ହେତୁ ।

କାଳ - ପରତ୍ୱ, ଅପରତ୍ୱ ଏବଂ ବୁଦ୍ଧିର ଅସାଧାରଣ କାରଣ ପଦାର୍ଥକୁ କାଳ କୁହାଯାଏ । ଏହି କାଳ ନିତ୍ୟ ଓ ନିରବୟବ । କାଳ ଏକ ହେଲେ ସୁଦ୍ଧା ଉପାଧି ଭେଦରେ ଓ କ୍ଷଣାଦି ରୂପରେ ବ୍ୟବହୃତ ହୁଏ ।

ଦିକ୍ - ଦୂରତ୍ୱ, ନିକଟତ୍ୱ ଓ ବୁଦ୍ଧିର ଅସାଧାରଣ କାରଣ ପଦାର୍ଥକୁ ଦିକ୍ କହି । ଏହି ଦିକ୍

ନିତ୍ୟ ଓ ଏକ । ଦିକ୍ ଏକ ହେଲେ ସୁଦ୍ଧା ଉପାଧି ଭେଦରେ ପ୍ରାଚୀ, ପ୍ରତୀଚି, ଉଦିଚୀ ଓ ଅବାଚୀ ନାମରେ ବ୍ୟବହୃତ ହୁଏ ।

ଆତ୍ମା - ଯହିଁରେ ଜ୍ଞାନ ଓ ଇଚ୍ଛା ଉତ୍ପନ୍ନ ହୁଏ ତାହାକୁ ଆତ୍ମା କହି । ଅତଏବ "ଜ୍ଞାନାଧିକରଣ" ଆତ୍ମା ବୋଲି କୁହାଯାଇଛି । ଜୀବାତ୍ମା ପରମାତ୍ମା ଭେଦରେ ଆତ୍ମା ଦ୍ୱିବିଧ । ଜୀବାତ୍ମା ଅନନ୍ତ, ପରମାତ୍ମା ଏକ, ସର୍ବଜ୍ଞ ଓ ସର୍ବଶକ୍ତିମାନ୍ ।

ମନ - ଯେଉଁ ପଦାର୍ଥ ସୁଖଦୁଃଖାଦି ସାକ୍ଷାତ୍କାରର କାରଣ ତାହାକୁ ମନ କୁହାଯାଏ । ଏହି ମନ ଅଣୁ ସ୍ୱରୂପ, ଜ୍ଞାନମାନଙ୍କର ଅଯୌଗପଦ୍ୟତା ହେତୁ ଏହାର ଅଣୁତ୍ୱ ସ୍ୱୀକାର କରାଗଲା ।

ଗୁଣ ପଦାର୍ଥ - ଦ୍ରବ୍ୟ ଓ କର୍ମ ଭିନ୍ନ ଯେଉଁ ପଦାର୍ଥ ସାମାନ୍ୟବାନ୍ ତାହାକୁ ଗୁଣ କହି । ଗୁଣ ଚବିଶ ପ୍ରକାର ଯଥା- ରୂପ, ରସ, ଗନ୍ଧ, ସ୍ପର୍ଶ, ସଂଖ୍ୟା, ପରିମାଣ, ପୃଥକତ୍ୱ, ସଂଯୋଗ, ବିଭାଗ, ପରତ୍ୱ, ଅପରତ୍ୱ, ଗୁରୁତ୍ୱ, ଦ୍ରବତ୍ୱ, ସ୍ନେହ, ଶବ୍ଦ, ବୁଦ୍ଧି, ସୁଖ, ଦୁଃଖ, ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ଧର୍ମ, ଅଧର୍ମ ଓ ସଂସ୍କାର ।

କର୍ମ ପଦାର୍ଥ - ଯେଉଁ ପଦାର୍ଥ ସଂଯୋଗରୁ ଭିନ୍ନ ଏବଂ ସଂଯୋଗର ଅସମବାୟୀ କାରଣ ତାହାକୁ କର୍ମ କୁହାଯାଏ । କର୍ମ ପାଞ୍ଚ ପ୍ରକାର ଯଥା - ଉତ୍କ୍ଷେପଣ, ଅପକ୍ଷେପଣ, ଆକୁଞ୍ଚନ ପ୍ରସାରଣ ଓ ଗମନ ।

ସାମାନ୍ୟ ବା ସତ୍ତା ପଦାର୍ଥ- ନିତ୍ୟ ଓ ଅନେକ ସମବେତ ପଦାର୍ଥକୁ ସାମାନ୍ୟ କହି । ସାମାନ୍ୟ ଦୁଇ ପ୍ରକାର ଯଥା - ପରସାମାନ୍ୟ ଓ ଅପରସାମାନ୍ୟ । ପରସାମାନ୍ୟ ଦ୍ରବ୍ୟ, ଗୁଣ, କର୍ମ ଏହି ତିନି ପଦାର୍ଥରେ ସତ୍ତା ରୂପେ ରହେ ଏବଂ ଅପର ସାମାନ୍ୟ ଏଥିରୁ ପ୍ରତ୍ୟେକଟିରେ ଦ୍ରବ୍ୟ ରୂପେ ରହେ ।

ବିଶେଷ - ଯାହାଦ୍ୱାରା ପରମାଣୁମାନଙ୍କର ଭେଦ ସାଧନ କରାଯାଏ ତାହାକୁ ବିଶେଷ କହି । ଏହି ବିଶେଷ ଅନନ୍ତ ଓ ନିତ୍ୟଦ୍ରବ୍ୟବୃତ୍ତି ।

ସମବାୟ - ନିତ୍ୟ ସମ୍ବନ୍ଧକୁ ସମବାୟ କହି । ଦ୍ରବ୍ୟ ଓ ଗୁଣର, ଜାତି ଓ ବ୍ୟକ୍ତିର, ଅବୟବ ଓ ଅବୟବୀର ଯେଉଁ ସମ୍ବନ୍ଧ ତାହାହିଁ ସମବାୟ ।

ଅଭାବ ଚାରି ପ୍ରକାର ଯଥା - ପ୍ରାଗଭାବ, ପ୍ରଧ୍ୱଂସାଭାବ, ଅତ୍ୟନ୍ତାଭାବ ଓ ଅନ୍ୟୋଽନ୍ୟାଭାବ । କଣାଦଙ୍କ ମତରେ ଅନ୍ଧକାର ସ୍ୱତନ୍ତ୍ର ପଦାର୍ଥ ନୁହେଁ କିନ୍ତୁ ତେଜର ଅଭାବକୁ ଅନ୍ଧକାର କୁହାଯାଏ । ଏହାଙ୍କ ମତରେ ପ୍ରମାଣ ଦୁଇ ପ୍ରକାର - ପ୍ରତ୍ୟକ୍ଷ ଓ ଅନୁମାନ, ଉପମାନ ଅନୁମାନ ଅନ୍ତର୍ଭୁକ୍ତ ।

ସର୍ବପ୍ରଥମେ କଣାଦ ପରମାଣୁବାଦ ପ୍ରଚାର କରି କହି ଅଛନ୍ତି ଯେ ପରମାଣୁ ସତ୍ ପୁରୁଷ ଓ ନିତ୍ୟ ପଦାର୍ଥ ତାହାର ଆଉ କାରଣ ନାହିଁ, "ସଦକାରଣବନ୍ନିତ୍ୟଂ" ଆମ୍ଭେ ଯେଉଁ ସମସ୍ତ

ଜଡ଼ ପଦାର୍ଥ ପ୍ରତ୍ୟକ୍ଷ କରୁ ସେ ସକଳ ପରମାଣୁ ସଂଯୋଗରୁ ସମୁତ୍ପନ୍ନ । ଅଦୃଷ୍ଟ ରୂପ କାରଣ ବିଶେଷ ଦ୍ୱାରା ପରମାଣୁ ସମୁଦାୟର ସଂଯୋଗ ହୋଇ ଏହି ବିଶ୍ୱ ସଂସାରର ଉତ୍ପତ୍ତି ହୋଇଅଛି ।

କଣାଦ ଜଡ଼ପଦାର୍ଥର ମୂଳତତ୍ତ୍ୱ ନିଜ ସୂତ୍ର ମଧ୍ୟରେ ସନ୍ନିବେଶ କରିଅଛନ୍ତି । ତାହାର କାରଣ ବୈଶେଷିକ ଉପସ୍କାରରେ ସ୍ପଷ୍ଟ ହୋଇଅଛି । "ଦୃଷ୍ଟେ କାରଣେ ସତି ଅଦୃଷ୍ଟ କଳ୍ପନାଽନବକାଶାତ୍" । ଅର୍ଥାତ୍ ଦୃଷ୍ଟ କାରଣ ଥିବାଠାରେ ଅଦୃଷ୍ଟ କାରଣର କଳ୍ପନା ଅନାବଶ୍ୟକ । ମହର୍ଷି କଣାଦ ବାସ୍ତବିକ ଯାହା ଅନୁଭବ କରିଥିଲେ ତାହାର ଜ୍ଞାନାନୁଶୀଳନରେ ସେ ପ୍ରବୃତ୍ତ ହୋଇଅଛନ୍ତି ।

କଣାଦଙ୍କ ସୂତ୍ରରେ ଈଶ୍ୱରଙ୍କର ନାମ ନଥିବା ହେତୁ କେତେକ ତାଙ୍କୁ ନିରୀଶ୍ୱରବାଦୀ ବୋଲି କହୁଅଛନ୍ତି । କାରଣ ଦର୍ଶନଶାସ୍ତ୍ରର ମୁଖ୍ୟ ଉଦ୍ଦେଶ୍ୟ ଜଗତ୍ କାରଣ ନିର୍ଦ୍ଧାରଣ କରିବା । ଯଦି କଣାଦଙ୍କର ଈଶ୍ୱର ବିଶ୍ୱାସ ଥାଆନ୍ତା ଓ ଈଶ୍ୱର ବିଶ୍ୱକାରଣ ବୋଲି ସେ ଭାବିଥାନ୍ତେ ତେବେ ଈଶ୍ୱରଙ୍କ ବିଷୟରେ ସ୍ପଷ୍ଟ ଭାବେ ଉଲ୍ଲେଖ କରିଥାନ୍ତେ; ସେପରି କିଛି ନ ଲେଖିଥିବା ଯୋଗୁଁ କଣାଦ ନାସ୍ତିକ ବା ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧେ ସନ୍ଦିହାନ ଏପରି ଅନେକେ ଭାବି ପାରନ୍ତି କିନ୍ତୁ ତାହା ଠିକ୍ ନୁହେଁ, ଯେହେତୁ କଣାଦ "ତଦ୍‌ରଚନାଦାମ୍ନାୟସ୍ୟ ପ୍ରାମାଣ୍ୟଂ" ଅର୍ଥାତ୍ ବେଦ ଈଶ୍ୱରୋକ୍ତ ହେବାରୁ ତାହାର ପ୍ରାମାଣ୍ୟ ସ୍ୱୀକାର କରିଅଛନ୍ତି । ତେବେ ସେ ନାସ୍ତିକ ବା ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧେ କାହିଁକି ସନ୍ଦିହାନ ହେବେ? ଯେ ଈଶ୍ୱର ପ୍ରତିପାଦିତ ବେଦକୁ ପ୍ରମାଣ ବୋଲି ସ୍ୱୀକାର କରେ ସେ "ଦ୍ୟାବା ଭୂମୀ ଜନୟନ୍ ଦେବ ଏକ ଆସ୍ତେ ବିଶ୍ୱସ୍ୟ କର୍ତ୍ତା ଭବନସ୍ୟ ଗୋପ୍ତା" ଇତ୍ୟାଦି ଈଶ୍ୱର ପ୍ରତିପାଦକ ବେଦଦ୍ୱାରା ସହଜରେ ଈଶ୍ୱର ସିଦ୍ଧି କରି ନପାରେ କି?

ଯେ ତତ୍ତ୍ୱଜ୍ଞାନରୁ ମୋକ୍ଷ ହୁଏ ବୋଲି ପ୍ରଚାର କରିଅଛନ୍ତି, ଯେ ସ୍ୱର୍ଗ ଓ ଅପବର୍ଗପ୍ରଦ ଧର୍ମତତ୍ତ୍ୱ ପ୍ରଚାର କରିବା ଲାଗି, "ଯତୋଽଭ୍ୟୁଦୟନିଃଶ୍ରେୟସସିଦ୍ଧିଃ ସ ଧର୍ମଃ ।" ଯହିଁରୁ ଅଭ୍ୟୁଦୟ ଓ ନିଃଶ୍ରେୟସ ଅର୍ଥାତ୍ ସ୍ୱର୍ଗ ଓ ଅପବର୍ଗ ସିଦ୍ଧି ହୁଏ ତାହାର ନାମ ଧର୍ମ ବୋଲି ସୂତ୍ର ପ୍ରଣୟନ କରିଅଛନ୍ତି, ସେହି ମହର୍ଷି କଣାଦ କିପରି ନାସ୍ତିକ ବା ନିରୀଶ୍ୱରବାଦୀ ତାହାଙ୍କର ଉପରୋକ୍ତ ସୂତ୍ରରୁ ସ୍ପଷ୍ଟ ଜଣାଯାଏ । ସେ କଣାଦ ଆସ୍ତିକ ଓ ସମ୍ପୂର୍ଣ୍ଣ ଈଶ୍ୱରବାଦୀ ।

ମାଧ୍ୱାଚାର୍ଯ୍ୟ କଣାଦଙ୍କର କୌଣସି ଅଂଶର ପ୍ରାଧାନ୍ୟ ସ୍ୱୀକାର କରି କହିଅଛନ୍ତି -
ଦ୍ୱିତ୍ୱେ ଚ ପାକଜୋତ୍‌ପତ୍ତୌ ବିଭାଗେ ଚ ବିଭାଗଜେ ।
ଯସ୍ୟ ନ ସ୍ଖଳିତାବୁଦ୍ଧି ସ୍ତଂ ବୈ ବୈଶେଷିକଂ ବିଦୁଃ ।।

ଅର୍ଥ - ଦ୍ୱିତ୍ୱୋତ୍ପତ୍ତି ପାକଦ୍ୱାରା ରୂପାଦିର ଉତ୍ପତ୍ତି ଓ ବିଭାଗଜ ବିଭାଗର ଉତ୍ପତ୍ତିରେ ଯାହାଙ୍କର ବୁଦ୍ଧି ଅବିଚଳିତ ତାଙ୍କୁ ବୈଶେଷିକ ବୋଲି ଜାଣିବ - ଶଙ୍କର ମିଶ୍ର କଣାଦ ସୂତ୍ରର ବ୍ୟାଖ୍ୟାରେ ଲେଖିଅଛନ୍ତି, "ତଦିତ୍ୟନୁକ୍ତମପି ପ୍ରସିଦ୍ଧସିଦ୍ଧିତୟା ଈଶ୍ୱରଂ ପରାମୃଶତି" ତତ୍ ଶବ୍ଦର ଅର୍ଥ

ଈଶ୍ୱର, ଏହା ପ୍ରସିଦ୍ଧ; ଅତଏବ ପୂର୍ବେ ସୂଚନା ନଥିଲେ ମଧ୍ୟ ଏଠାରେ ତାହା ଈଶ୍ୱରବାଚକ ବୋଲି ନିଶ୍ଚୟ ହୋଇଅଛି । ଈଶ୍ୱର ଶବ୍ଦର ଉଲ୍ଲେଖ ନଥିଲେ ମଧ୍ୟ କଣାଦ ଗୌଣଭାବେ ଈଶ୍ୱର ସ୍ୱୀକାର କରିଅଛନ୍ତି ।

ଇତି ବୈଶେଷିକ ଦର୍ଶନ ବିଚାରଃ ।

## ଗୌତମଦର୍ଶନ ବା ନ୍ୟାୟଦର୍ଶନ

ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ ଏହି ପଞ୍ଚାବୟବ ବାକ୍ୟକୁ ନ୍ୟାୟ କୁହାଯାଏ । ଏହି ନ୍ୟାୟ ଯେଉଁ ଶାସ୍ତ୍ରକୁ ବୁଝାଏ ତାହାକୁ ନ୍ୟାୟଶାସ୍ତ୍ର କହନ୍ତି । ଏହି ନ୍ୟାୟଦର୍ଶନର ପ୍ରଣେତା ମହର୍ଷି ଗୌତମ । ଏହି ଦର୍ଶନରେ ମହର୍ଷି ଗୌତମ ସୂତ୍ରାକାରେ ଯେଉଁ ପଦାର୍ଥଗୁଡ଼ିକର ବିଷୟ କହିଯାଇଅଛନ୍ତି ତାହାହିଁ ଆମ୍ଭମାନଙ୍କର ବର୍ତ୍ତମାନ ଆଲୋଚ୍ୟ ବିଷୟ ।

## ଗୌତମ ଦର୍ଶନର ପ୍ରତିପାଦ୍ୟ ବିଷୟ

ଏହି ଦର୍ଶନରେ ପାଞ୍ଚଗୋଟି ଅଧ୍ୟାୟ ଏବଂ ପ୍ରତ୍ୟେକ ଅଧ୍ୟାୟରେ ଦୁଇ ଦୁଇ ଆହ୍ନିକ ଅଛି ।

**ପ୍ରଥମ ଅଧ୍ୟାୟରେ** - ପ୍ରମାଣାଦି ଷୋଡ଼ଶ ପଦାର୍ଥର ଉଦ୍ଦେଶ୍ୟ, ଆତ୍ମତତ୍ତ୍ୱ, ବସ୍ତୁତତ୍ତ୍ୱ, ମୋକ୍ଷରୂପ ପ୍ରୟୋଜନ ପ୍ରତିପାଦନ, ତତ୍ତ୍ୱଜ୍ଞାନାଧୀନ ମୁକ୍ତିର ଉତ୍ପତ୍ତିକ୍ରମ, ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶବ୍ଦ ଭେଦରେ ପ୍ରମାଣର ଚାରିପ୍ରକାର ବିଭାଗ ଏବଂ ପ୍ରତ୍ୟକ୍ଷାଦିର ଲକ୍ଷଣ, ଦୃଷ୍ଟାର୍ଥ ଓ ଅଦୃଷ୍ଟାର୍ଥ ଭେଦରେ ଶବ୍ଦର ବିଭାଗ, ପ୍ରମେୟ ଲକ୍ଷଣ ଓ ପ୍ରମେୟ ବିଭାଗ ପୂର୍ବକ ଆତ୍ମଶରୀରାଦି ନିରୂପଣ, ଇନ୍ଦ୍ରିୟ ଭୂତ ଓ ଅର୍ଥବିଭାଗ, ବୁଦ୍ଧିଲକ୍ଷଣ, ମନୋନିରୂପଣ, ପ୍ରବୃତ୍ତିଲକ୍ଷଣ ଓ ତାହାର ବିଭାଗ, ଦୋଷ, ପ୍ରେତ୍ୟଭାବ, ଫଳ, ଦୁଃଖ, ଅପବର୍ଗ ଓ ସଂଶୟର ଲକ୍ଷଣ, ସଂଶୟର କାରଣ ନିର୍ଦ୍ଦେଶ, ପ୍ରୟୋଜନ ଓ ଦୃଷ୍ଟାନ୍ତର ଲକ୍ଷଣ ଏବଂ ତାହାର ବିଭାଗ, ସିଦ୍ଧାନ୍ତ ଲକ୍ଷଣ ଓ ତାହାର ବିଭାଗ, ବିଶେଷତଃ ସେମାନଙ୍କର ଲକ୍ଷଣ, ନ୍ୟାୟାବୟବ ବିଭାଗ, ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ ଲକ୍ଷଣ, ତର୍କ ଓ ନିଶ୍ଚୟ ନିରୂପଣ, ବାଦ ଜଳ୍ପ ଓ ବିତଣ୍ଡାର ଲକ୍ଷଣ, ହେତ୍ୱାଭାସ ଲକ୍ଷଣ, ସବ୍ୟଭିଚାର, ବିରୁଦ୍ଧ, ପ୍ରକରଣସମ, ସାଧ୍ୟସମ, କାଳାତୀତ ଭେଦରେ ହେତ୍ୱାଭାସର ବିଭାଗ ଓ ପ୍ରତ୍ୟେକର ଲକ୍ଷଣ, ଛଳସ୍ୱରୂପ ଓ ଛଳବିଭାଗ, ବାକ୍‌ଛଳ, ଉପଚାର ଛଳ ଓ ସାମାନ୍ୟ ଛଳ ଏହି ତ୍ରିବିଧ ଛଳର ଲକ୍ଷଣ, ଜାତି ଓ ନିଗ୍ରହ ସ୍ଥାନ ନିରୂପଣ ବର୍ଣ୍ଣିତ ହୋଇଅଛି ।

**ଦ୍ୱିତୀୟ ଅଧ୍ୟାୟରେ** - ସଂଶୟ ସମ୍ବନ୍ଧୀୟ ପୂର୍ବପକ୍ଷ ଓ ସିଦ୍ଧାନ୍ତ, ପ୍ରମାଣ ଚତୁଷ୍ଟୟ ସମ୍ବନ୍ଧୀୟ ପୂର୍ବପକ୍ଷ ଓ ସମାଧାନ, ପ୍ରତ୍ୟକ୍ଷ ଲକ୍ଷଣର ଆକ୍ଷେପ ଓ ସମାଧାନ, ମନଃସିଦ୍ଧି ବିଷୟରେ

ଯୁକ୍ତି, ପ୍ରତ୍ୟକ୍ଷ ସିଦ୍ଧାନ୍ତ ସୂତ୍ର, ଇନ୍ଦ୍ରିୟ ସନ୍ନିକର୍ଷରେ ପ୍ରତ୍ୟକ୍ଷେ ହେତୁତ୍ୱଶଙ୍କା ଓ ତତ୍ସମାଧାନ, ପ୍ରତ୍ୟକ୍ଷେ ଅନୁମିତିତ୍ୱଶଙ୍କା ଓ ତତ୍‌ସମାଧାନ, ଅବୟବୀଖଣ୍ଡନ ଓ ତତ୍‌ସମାଧାନ, ଅନୁମାନ ସମ୍ବନ୍ଧୀୟ ପୂର୍ବପକ୍ଷ ଓ ତତ୍‌ସମାଧାନ, ଉପମାନର ଅନୁମାନାନ୍ତର୍ଗତତ୍ୱ ଖଣ୍ଡନ ଏବଂ ଶବ୍ଦ ପ୍ରାମାଣ୍ୟ ପକ୍ଷେ ପୂର୍ବପକ୍ଷ ଓ ସମାଧାନ, ବେଦପ୍ରମାଣାକ୍ଷେପ ଓ ତତ୍‌ସମାଧାନ, ବେଦବାକ୍ୟ ବିଭାଗ ବିଧି ଲକ୍ଷଣ, ଅର୍ଥବାଦ ବିଭାଗ ଓ ଅନୁବାଦ ଲକ୍ଷଣ, ବେଦପ୍ରାମାଣ୍ୟରେ ଯୁକ୍ତି, ପ୍ରମାଣଚତୁଷ୍ଟୟ ସମ୍ବନ୍ଧେ ଆକ୍ଷେପ ଓ ତତ୍‌ସମାଧାନ, ଶବ୍ଦର ଅନିତ୍ୟତ୍ୱ ସାଧନ, ଶବ୍ଦ ବିକାର ନିରାକରଣ କେବଳ ବ୍ୟକ୍ତି, କେବଳ ଜାତି, କେବଳ କୃତି ଶକ୍ତିର ନିରାକରଣ, ଜାତ୍ୟାକୃତି ବିଶିଷ୍ଟ ବ୍ୟକ୍ତିରେ ଶକ୍ତି ସ୍ଥାପନ, ବ୍ୟକ୍ତି ଆକୃତି ଓ ଜାତିର ଲକ୍ଷଣ ବର୍ଣ୍ଣିତ ହୋଇଅଛି ।

**ତୃତୀୟ ଅଧ୍ୟାୟରେ :** ଆତ୍ମାଦି ଦ୍ୱାଦଶପ୍ରମେୟ ନିରୂପଣ, ଇନ୍ଦ୍ରିୟଚୈତନ୍ୟବାଦ ଶରୀରାତ୍ମବାଦ ପ୍ରଭୃତିର ଦୂଷଣ, ଚକ୍ଷୁର ଅଦ୍ୱୈତତ୍ୱ ନିରାକରଣ, ମନର ଆତ୍ମତ୍ୱ ଶଙ୍କା ନିରସନ, ଆତ୍ମାର ନିତ୍ୟତ୍ୱ ପ୍ରତିପାଦନ, ଶରୀରର ଏକ ଭୌତିକତ୍ୱ କଥନ ଓ ପାର୍ଥିବତ୍ୱରେ ଯୁକ୍ତି, ଇନ୍ଦ୍ରିୟର ଭୌତିକତ୍ୱ ନାନାତ୍ୱ ପରୀକ୍ଷା, ରୂପରସାଦି ଗୁଣ ସମ୍ବନ୍ଧରେ ପରୀକ୍ଷା, ଜ୍ଞାନର ଅଯୌଗପଦ୍ୟତ୍ୱ ପ୍ରତିପାଦନ, ବୁଦ୍ଧିର ଆତ୍ମଗୁଣତ୍ୱ ପ୍ରତିପାଦନ ଓ ଶରୀର ଗୁଣତ୍ୱ ନିରାକରଣ, ମନଃ ପରୀକ୍ଷା, ଶରୀରର ପୁରୁଷାଦୃଷ୍ଟାଧୀନତ୍ୱ କଥନ ବର୍ଣ୍ଣିତ ହୋଇଅଛି ।

**ଚତୁର୍ଥ ଅଧ୍ୟାୟରେ** - ପ୍ରବୃତ୍ତି ଓ ଦୋଷର ପରୀକ୍ଷା, ଜନ୍ମାନ୍ତର ସିଦ୍ଧାନ୍ତ, ଉତ୍ପତ୍ତି ପ୍ରକାର ପ୍ରଦର୍ଶନ, ଦୁଃଖ ଓ ଅପବର୍ଗ ପରୀକ୍ଷା, ତତ୍ତ୍ୱ ଜ୍ଞାନୋତ୍ପତ୍ତି ଅବୟବୀ ଓ ନିରବୟବ ପ୍ରକରଣ ପ୍ରଦତ୍ତ ହୋଇଅଛି ।

**ପଞ୍ଚମ ଅଧ୍ୟାୟରେ** - ଚତୁର୍ବିଂଶତି ପ୍ରକାର ଜାତି ବିଭାଗ ଓ ଲକ୍ଷଣ, ନିଗ୍ରହ ସ୍ଥାନ ବିଭାଗ, ପ୍ରତିଜ୍ଞା ହାନି, ପ୍ରତିଜ୍ଞାନ୍ତର ପ୍ରଭୃତି ଦ୍ୱାଦଶ ନିଗ୍ରହ ସ୍ଥାନ, ଲକ୍ଷଣ ହେତ୍ୱାଭାସ ଉଲ୍ଲେଖ କରାଯାଇଅଛି ।

**ଷୋଡ଼ଶ ପଦାର୍ଥର ନିରୂପଣ** -ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ସିଦ୍ଧାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ବିତଣ୍ଡା, ହେତ୍ୱାଭାସ, ଛଳ, ଜାତି ଓ ନିଗ୍ରହ ସ୍ଥାନ, ଏହି ଷୋଡ଼ଶ ପଦାର୍ଥର ତତ୍ତ୍ୱଜ୍ଞାନ ହେଲେ ମୋକ୍ଷ ଲାଭ ହୁଏ, ଅର୍ଥାତ୍ ତତ୍ତ୍ୱଜ୍ଞାନ ହେଲେ ମିଥ୍ୟାଜ୍ଞାନ ନାଶ ହୁଏ, ମିଥ୍ୟାଜ୍ଞାନ ନାଶ ହେଲେ ଦୋଷ ନାଶ ହୁଏ,ଦୋଷ ନାଶ ହେଲେ ପ୍ରବୃତ୍ତି ନାଶ ହୁଏ, ପ୍ରବୃତ୍ତି ନାଶହେଲେ ଜନ୍ମ ନାଶହୁଏ, ଜନ୍ମ ନାଶ ହେଲେ ଦୁଃଖ ନାଶ ହୁଏ ଏବଂ ଦୁଃଖ ନାଶ ହିଁ ମୁକ୍ତି - ଅର୍ଥାତ୍ ଆତ୍ୟନ୍ତିକ ଦୁଃଖ ନିବୃତ୍ତିର ନାମ ମୁକ୍ତି । ଏହି ଷୋଡ଼ଶ ପଦାର୍ଥ ଜାଣିବାକୁ ହେଲେ ପ୍ରମାଣ ନିତାନ୍ତ ଆବଶ୍ୟକ । ପ୍ରମାଣର ଲକ୍ଷଣ ଓ ବିଭାଗ- ଯାହାଦ୍ୱାରା ଯଥାର୍ଥ ରୂପେ ବସ୍ତୁ ବା ପଦାର୍ଥର ନିର୍ଣ୍ଣୟ କରାଯାଏ ତାହାକୁ ପ୍ରମାଣ କହି । ପ୍ରମାଣ ଚାରି ପ୍ରକାର ଯଥା - ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶବ୍ଦ । ପ୍ରମାଣ ଜନ୍ୟ ଜ୍ଞାନ ମଧ୍ୟ ଚାରି ପ୍ରକାର ଯଥା - ପ୍ରତ୍ୟକ୍ଷ, ଅନୁମିତି, ଉପମିତି ଓ ଶାବ୍ଦ । ନେତ୍ରାଦି ଇନ୍ଦ୍ରିୟଗଣର ପଦାର୍ଥ ସମ୍ପର୍କରୁ ଯେଉଁ ଜ୍ଞାନ

ଜନ୍ମେ ତାହାକୁ ପ୍ରତ୍ୟକ୍ଷ କୁହାଯାଏ । ତାହା ଦୁଇପ୍ରକାର ନିର୍ବିକଳ୍ପକ ପ୍ରତ୍ୟକ୍ଷ ଓ ସବିକଳ୍ପକ ପ୍ରତ୍ୟକ୍ଷ । ନିଷ୍ପ୍ରକାରକ ଜ୍ଞାନକୁ ନିର୍ବିକଳ୍ପକ କହି । ଯଥା- ଘଟ ଘଟତ୍ୱେ । ଏଠାରେ ଘଟତ୍ୱ ପ୍ରକାର ବିଧୟା ଜ୍ଞାନର ବିଷୟ ନହୋଇ ସ୍ୱତନ୍ତ୍ର ଜ୍ଞାନ ବିଷୟ ହୋଇଥାଏ । ସପ୍ରକାରକ ଜ୍ଞାନକୁ ସବିକଳ୍ପକ କହି ଯଥା - ଘଟ, ପଟ, ପର୍ବତ ଇତ୍ୟାଦି । ଏଠାରେ ଘଟତ୍ୱ ପ୍ରକାର ବିଧୟା ଜ୍ଞାନର ବିଷୟ ହୋଇଥାଏ । ନିର୍ବିକଳ୍ପକ ଜ୍ଞାନର ପ୍ରତ୍ୟକ୍ଷ ନ ହେବାରୁ ତାହାକୁ ଅତୀନ୍ଦ୍ରିୟ କହନ୍ତି ।

ସବିକଳ୍ପକ ପ୍ରତ୍ୟକ୍ଷ ଛ ପ୍ରକାର ଯଥା - ଘ୍ରାଣେନ୍ଦ୍ରିୟଜନ୍ୟ ପ୍ରତ୍ୟକ୍ଷ, ଚକ୍ଷୁରିନ୍ଦ୍ରିୟଜନ୍ୟ ପ୍ରତ୍ୟକ୍ଷ, ରସନେନ୍ଦ୍ରିଜନ୍ୟ ପ୍ରତ୍ୟକ୍ଷ, ଶ୍ରୋତ୍ରେନ୍ଦ୍ରିୟଜନ୍ୟ ପ୍ରତ୍ୟକ୍ଷ, ତ୍ୱଗିନ୍ଦ୍ରିୟଜନ୍ୟ ପ୍ରତ୍ୟକ୍ଷ ଓ ମନୋଜନ୍ୟ ପ୍ରତ୍ୟକ୍ଷ । ଘ୍ରାଣେନ୍ଦ୍ରିୟ ଦ୍ୱାରା ଗନ୍ଧର ପ୍ରତ୍ୟକ୍ଷ, ଚକ୍ଷୁରିନ୍ଦ୍ରିୟଦ୍ୱାରା ନୀଳପୀତାଦି ରୂପର ପ୍ରତ୍ୟକ୍ଷ, ରସନେନ୍ଦ୍ରିୟଦ୍ୱାରା ମଧୁର, ଲବଣ, କଟୁ, କଷାୟ ଓ ତିକ୍ତାଦି ରସର ପ୍ରତ୍ୟକ୍ଷ, ଶ୍ରୋତ୍ରେନ୍ଦ୍ରିୟଦ୍ୱାରା ଶବ୍ଦର ପ୍ରତ୍ୟକ୍ଷ, ତ୍ୱଗିନ୍ଦ୍ରିୟଦ୍ୱାରା ସ୍ପର୍ଶର ପ୍ରତ୍ୟକ୍ଷ ଏବଂ ମନଦ୍ୱାରା ସୁଖ ଓ ଦୁଃଖର ପ୍ରତ୍ୟକ୍ଷ ହୁଏ । ଯଥା- ମୁଁ ସୁଖୀ, ମୁଁ ଦୁଃଖୀ ଇତ୍ୟାଦି ।

ଅନୁମାନ ପ୍ରମାଣ- ଅନୁମୀୟତେ ଅନେକ ଇତି ଅନୁମାନଂ ଅର୍ଥାତ୍ ଯାହାଦ୍ୱାରା ଅନୁମାନ କରାଯାଏ ତାହାକୁ ଅନୁମାନ କହି । ଏହା ଅନୁମାନ ଶବ୍ଦର ବ୍ୟୁତ୍ପତ୍ତି ଲଭ୍ୟାର୍ଥ । ଅନୁମାନ ଲକ୍ଷଣ ଓ ବିଭାଗ ଯଥା- "ତତ୍ପୂର୍ବକଂ ତ୍ରିବିଧମନୁମାନଂ" ଏଠାରେ ତତ୍ ପଦଟି ପ୍ରତ୍ୟକ୍ଷପର ହେବାରୁ ପ୍ରତ୍ୟକ୍ଷ ପୂର୍ବକ ଅନୁମାନ ହୁଏ, ଯେହେତୁ ପ୍ରଥମେ ସାଧ୍ୟ ହେତୁ ଦୁହିଁଙ୍କର ବ୍ୟାପ୍ୟ, ବ୍ୟାପକ ଭାବ ସମ୍ବନ୍ଧ ପ୍ରତ୍ୟକ୍ଷ ହୁଏ । ତଦନନ୍ତର ପକ୍ଷରେ ହେତୁର ପ୍ରତ୍ୟକ୍ଷ ହୁଏ । ତା'ପରେ ପକ୍ଷରେ ସାଧ୍ୟର ଅନୁମାନ କରାଯାଏ ବୋଲି ଅନୁମାନକୁ ପ୍ରତ୍ୟକ୍ଷ ପୂର୍ବକ କୁହାଗଲା । ସେହି ଅନୁମାନ ତିନି ପ୍ରକାର । ଯଥା- ପୂର୍ବବତ୍, ଶେଷବତ୍ ଓ ସାମାନ୍ୟତୋ ଦୃଷ୍ଟ । ଯେଉଁଠାରେ କାରଣଦ୍ୱାରା କାର୍ଯ୍ୟର ଅନୁମାନ କରାଯାଏ ସେହି ଅନୁମାନକୁ ପୂର୍ବବତ୍ ଅନୁମାନ କୁହାଯାଏ । ଯଥା- ମେଘୋନ୍ନତି ଦ୍ୱାରା ବୃଷ୍ଟିର ଅନୁମାନ କରାଯାଏ । ଏଠାରେ ମେଘୋନ୍ନତି ରୂପ କାରଣଦ୍ୱାରା ବୃଷ୍ଟିରୂପ କାର୍ଯ୍ୟର ଅନୁମାନ କରାଗଲା । ଯେଉଁଠାରେ କାର୍ଯ୍ୟଦ୍ୱାରା କାରଣର ଅନୁମାନ କରାଯାଏ ତାହାକୁ ଶେଷବତ୍ ଅନୁମାନ କହି ଯଥା - ନଦୀବୃଦ୍ଧି ଦ୍ୱାରା ବୃଷ୍ଟିର ଅନୁମାନ । ଏଠାରେ ନଦୀବୃଦ୍ଧିରୂପ କାର୍ଯ୍ୟଦ୍ୱାରା ବୃଷ୍ଟିରୂପ କାରଣର ଅନୁମାନ କରାଯିବାରୁ ଏହାକୁ ଶେଷବତ୍ ଅନୁମାନ କୁହାଗଲା । କାରଣ ଓ କାର୍ଯ୍ୟ ଭିନ୍ନ କେବଳ ବ୍ୟାପ୍ୟ ବସ୍ତୁ ଦର୍ଶନରେ ବ୍ୟାପକ ବସ୍ତୁର ଯେଉଁ ଅନୁମିତି ହୁଏ ତାହାକୁ ସାମାନ୍ୟତୋଦୃଷ୍ଟ ଅନୁମାନ କୁହାଯାଏ । ଯଥା- ଗଗନ ମଣ୍ଡଳରେ ପୂର୍ଣ୍ଣଚନ୍ଦ୍ର ଦର୍ଶନରୁ ଶୁକ୍ଳପକ୍ଷାନୁମାନ । ଏଠାରେ ପୂର୍ଣ୍ଣଚନ୍ଦ୍ର ଶୁକ୍ଳପକ୍ଷର କାରଣ ବା କାର୍ଯ୍ୟ ନୁହେଁ କିନ୍ତୁକେବଳ ବ୍ୟାପ୍ୟ ମାତ୍ର ।

ଉପମାନ - ସାଦୃଶ୍ୟ ଜ୍ଞାନର ନାମ ଉପମାନ । ଏହା ଶକ୍ତିଜ୍ଞାନର ଜନକ ଯଥା- ଗୋସଦୃଶ ଗବୟ ବୋଲି କୌଣସି ପ୍ରସିଦ୍ଧ ବକ୍ତାଙ୍କଠାରୁ ଶୁଣି ଅରଣ୍ୟକୁ ଗଲା । ସେଠାରେ ଗୋସଦୃଶ ଜୀବ ଦେଖି ଏହା ଗବୟପଦବାଚ୍ୟ ବୋଲି ସ୍ଥିରକଲା, କାରଣ ତାଠାରେ ଗୌର ସାଦୃଶ୍ୟ ଅଛି ।

ଏହି ରୂପ ଗବୟ ଓ ଗବୟ ପଦର ବାଚ୍ୟ ବାଚକ ଭାବ ସମ୍ବନ୍ଧ ଅବଧାରଣ କଲା । ଏହି ବାଚ୍ୟବାଚକ ଭାବ ସମ୍ବନ୍ଧ ହିଁ ଶକ୍ତି ।

ଶବ୍ଦ ପ୍ରମାଣ- ଆପ୍ତୋପଦେଶକୁ ଶବ୍ଦ ପ୍ରମାଣ କହି । ଯଥାର୍ଥ ବକ୍ତାଙ୍କୁ ଆପ୍ତ କହନ୍ତି । ଶବ୍ଦଜନ୍ୟ ବୋଧକୁ ଶାବ୍ଦବୋଧ କୁହାଯାଏ । ଦୃଷ୍ଟାର୍ଥ ଓ ଅଦୃଷ୍ଟାର୍ଥ ଭେଦରେ ଶବ୍ଦ ଦୁଇ ପ୍ରକାର, ଯାହାର ଅର୍ଥ ଦୃଶ୍ୟମାନ ତାହାକୁ ଦୃଷ୍ଟାର୍ଥ କହି; ଯଥା- ମୃଗ ଦେଖ; ହାତୀ ଯାଉଚି ଇତ୍ୟାଦି । ଏଠାରେ ମୃଗ ଓ ହାତୀ ଦୃଶ୍ୟମାନ ପଦାର୍ଥ, ଯାହାର ଅର୍ଥ ଦେଖାଯାଏ ନାହିଁ ତାହାକୁ ଅଦୃଷ୍ଟାର୍ଥ କହନ୍ତି- ଯଥା ସ୍ୱର୍ଗକାମୀ ପୁରୁଷ ଜ୍ୟୋତିଷ୍ଟୋମ ଯାଗ କରୁ । ଏଠାରେ ସ୍ୱର୍ଗ ପଦାର୍ଥ ଅଦୃଶ୍ୟ ହେବାରୁ ଏହାକୁ ଅଦୃଷ୍ଟାର୍ଥ ଶବ୍ଦ ବୋଲି କୁହାଗଲା ।

ପ୍ରମେୟ ପଦାର୍ଥ- ଆତ୍ମା, ଶରୀର, ଇନ୍ଦ୍ରିୟ, ଅର୍ଥ, ବୁଦ୍ଧି, ମନ, ପ୍ରବୃତ୍ତି, ଦୋଷ, ପ୍ରେତ୍ୟଭାବ, ଫଳ, ଦୁଃଖ ଓ ଅପବର୍ଗ ଭେଦରେ ପ୍ରମେୟ ଦ୍ୱାଦଶ ପ୍ରକାର ।

ଆତ୍ମା ସମସ୍ତଙ୍କର ଦ୍ରଷ୍ଟା ଓ ସର୍ବାନୁଭବୀ । ଇଚ୍ଛା, ଦ୍ୱେଷ, ପ୍ରଯତ୍ନ, ସୁଖ, ଦୁଃଖ ଓ ଜ୍ଞାନ ଏ ଛ ଗୋଟି ଗୁଣ ଆତ୍ମାର ଲିଙ୍ଗ । କିନ୍ତୁ ପରମାତ୍ମାଙ୍କଠାରେ ଦ୍ୱେଷ ଓ ଦୁଃଖ ଛଡ଼ା ଅନ୍ୟ ଗୁଣଗୁଡ଼ିକ ଥାଏ । ଶରୀର ଆତ୍ମାର ଭୋଗ ସ୍ଥାନ ଏବଂ ଚେଷ୍ଟା, ଇନ୍ଦ୍ରିୟ ଓ ସୁଖ ଦୁଃଖାଦି ଭୋଗର ଆଶ୍ରୟ । ଇନ୍ଦ୍ରିୟମାନଙ୍କଦ୍ୱାରା ଭୋଗ କରାଯାଏ । ଘ୍ରାଣ, ରସନା, ଚକ୍ଷୁଃ, ତ୍ୱକ୍ ଓ ଶ୍ରୋତ୍ର ଭେଦରେ ଇନ୍ଦ୍ରିୟ ପାଞ୍ଚପ୍ରକାର । ଏମାନେ ଭୌତିକ ଅର୍ଥାତ୍ ଘ୍ରାଣେନ୍ଦ୍ରିୟ । ପାର୍ଥିବ, ପୃଥିବୀର ଗୁଣ ଗନ୍ଧ ଗ୍ରହଣ କରେ, ରସନେନ୍ଦ୍ରିୟ ଜଳୀୟ, ମଧୁରାଦି ରସ ଗ୍ରହଣ କରେ, ଚକ୍ଷୁରିନ୍ଦ୍ରିୟ ତୈଜସ ରୂପ ଗ୍ରହଣ କରେ, ତ୍ୱଗିନ୍ଦ୍ରିୟ ବାୟବୀୟ ସ୍ପର୍ଶ ଗ୍ରହଣ କରେ, ଆକାଶେନ୍ଦ୍ରିୟ ଶ୍ରୋତ୍ର, ଶବ୍ଦ ଗ୍ରହଣ କରେ ।

ରୂପ, ରସ, ଗନ୍ଧ, ସ୍ପର୍ଶ ଓ ଶବ୍ଦ ଏମାନେ ହିଁ ଅର୍ଥ ଏବଂ ଭୋଗର ବିଷୟ । ଭୋଗ ଅର୍ଥାତ୍ ଆତ୍ମାର ସୁଖଦୁଃଖାଦି ଜ୍ଞାନ ହିଁ ବୁଦ୍ଧି । ସୁଖାଦି ସର୍ବ ବିଷୟଗ୍ରାହକ ଅନ୍ତଃକରଣ ହିଁ ମନଃ । ସେ ଯୁଗପତ୍ ଜ୍ଞାନମାନଙ୍କର ଉତ୍ପତ୍ତି କରାଏ ନାହିଁ ।

ଧର୍ମ ଓ ଅଧର୍ମର ପ୍ରବୃତ୍ତି ପଦବାଚ୍ୟ ଏବଂ ରାଗଦ୍ୱେଷାଦି ଦୋଷ ପଦବାଚ୍ୟ । ଏମାନେ ଶରୀର,ଇନ୍ଦ୍ରିୟ, ଅର୍ଥ, ବୁଦ୍ଧି, ସୁଖ ବେଦନାମାନଙ୍କର ସମ୍ପାଦକ । ପୁନର୍ଜନ୍ମକୁ ପ୍ରେତ୍ୟଭାବ କୁହାଯାଏ । ସୁଖଦୁଃଖୋପଭୋଗ ହିଁ ଫଳ । ପ୍ରତିକୂଳ ବେଦନୀୟ ଦୁଃଖ । ଦୁଃଖର ଅତ୍ୟନ୍ତ ବିମୋକ୍ଷକୁ ଅପବର୍ଗ କହି । ସଂଶୟ ପଦାର୍ଥ ନିରୂପଣ- ଅନିଶ୍ଚୟାତ୍ମକ ଜ୍ଞାନର ନାମ ସଂଶୟ । ଏହି ସଂଶୟକୁ ନିଶ୍ଚୟ ନିବର୍ତ୍ତ୍ୟ କହନ୍ତି, ଅର୍ଥାତ୍ ନିଶ୍ଚୟ ହେଲେ ସଂଶୟ ନିବର୍ତ୍ତିତ ହୁଏ ।

ସମାନାନେକଧର୍ମୋପପତ୍ତି, ବିପ୍ରତିପତ୍ତି, ଉପଲବ୍ଧ୍ୟ ବ୍ୟବସ୍ଥା ଓ ଅନୁପଲବ୍ଧ୍ୟବ୍ୟବସ୍ଥା ଭେଦରେ ସଂଶୟର ଚାରିଗୋଟି କାରଣ ନିରୂପଣ କରାଯାଇ ଅଛି ତାହା ନିମ୍ନରେ ଉଲ୍ଲେଖ କରାଗଲା । ସମାନାନେକଧର୍ମୋପପତ୍ତିରୁ ସଂଶୟ ଯଥା- ଦୂରରୁ କୌଣସି ଦୀର୍ଘାକାର ପଦାର୍ଥ

ଦେଖି ସେ ପଦାର୍ଥରେ ଉଚ୍ଚୈସ୍ତରତ୍ୱ ଆରୋହ ପରିଣାହ ପ୍ରଭୃତି ପୁରୁଷଗତ ଧର୍ମ ଜ୍ଞାନରୁ ସ୍ଥାଣୁ ବା ପୁରୁଷ ବୋଲି ସଂଶୟ ଜାତ ହୁଏ ।

ବିପ୍ରତିପତ୍ତିରୁ ସଂଶୟ - ପରସ୍ପର ବିରୁଦ୍ଧ ଏକାର୍ଥ ବିଷୟକ ଜ୍ଞାନର ନାମ ବିପ୍ରତିପତ୍ତି । ଜଣେ କହିବ ପର୍ବତରେ ବହ୍ନି ଅଛି । ଆଉ ଜଣେ କହିବ ପର୍ବତରେ ବହ୍ନି ନାହିଁ, ଏହି ରୂପ ପରସ୍ପର ବିରୁଦ୍ଧ ବାକ୍ୟଜ୍ଞାନରୁ ମଧ୍ୟସ୍ଥ ବ୍ୟକ୍ତିର ପର୍ବତ ବହ୍ନିମାନ୍ କି ନାହିଁ ବୋଲି ସଂଶୟ ଜନ୍ମେ ।

ଉପଲବ୍ଧି ଅବ୍ୟବସ୍ଥାରୁ ସଂଶୟ - ତଡ଼ାଗାଦିରେ ସତ୍ ଉଦକର ଉପଲବ୍ଧି ଏବଂ ମରୀଚିକାରେ ଅସତ୍ ଉଦକର ଉପଲବ୍ଧି ହୁଏ ଅତଏବ ପ୍ରତୀୟମାନ ଉଦକର ସତ୍ୟାସତ୍ୟ ବ୍ୟବସ୍ଥାପକ ପ୍ରମାଣର ଅନିଶ୍ଚୟକୁ ପ୍ରତୀୟମାନ ଉଦକ ସତ୍ ବା ଅସତ୍ ବୋଲି ସଂଶୟ ଜନ୍ମେ ।

ଅନୁପଲବ୍ଧି ଅବ୍ୟବସ୍ଥାରୁ ସଂଶୟ- କୌଣସି ସ୍ଥାନରେ ସତ୍ ପଦାର୍ଥର ମଧ୍ୟ ଉପଲବ୍ଧି ହୁଏ ନାହିଁ । ଅନ୍ତଃ ପ୍ରବିଷ୍ଟ କୀଳକ, ମୂଳ ଓ ଉଦକ ତଥା ଅସତ୍ ପଦାର୍ଥର ମଧ୍ୟ ଉପଲବ୍ଧି ହୁଏନାହିଁ । ଯଥା- "ଅନୁତ୍ପନ୍ନ ବିନଷ୍ଟ କୀଳକ ପ୍ରଭୃତି" ତେବେ ଅସତପ୍ଦାର୍ଥର ଯେ କେବଳ ଅନୁପଲବ୍ଧି ହେଉଛି ତାହା ନୁହେଁ ସତ୍ପଦାର୍ଥର ମଧ୍ୟ ଅନୁପଲବ୍ଧି ଦେଖାଯାଏ । ଅତଏବ ସତ୍ ଓ ଅସତ୍ ପଦାର୍ଥର ଅନୁପଲବ୍ଧି ବ୍ୟବସ୍ଥାର ପ୍ରମାଣର ଅନିଶ୍ଚୟରୁ ସତ୍ ପଦାର୍ଥର ଅନୁପଲବ୍ଧି ବା ଅସତପ୍ଦାର୍ଥର ଅନୁପଲବ୍ଧି ଏହି ରୂପ ସଂଶୟ ଜାତ ହୁଏ ।

ପ୍ରୟୋଜନ ପଦାର୍ଥ - ଯେଉଁ ଉଦ୍ଦେଶ୍ୟରେ ପୁରୁଷ ପ୍ରବର୍ତ୍ତେ ତାହାହିଁ ପ୍ରୟୋଜନ । ଜ୍ଞାନ ଉଦ୍ଦେଶ୍ୟରେ ସେ ଅଧ୍ୟୟନରେ ପ୍ରବୃତ୍ତ ହୁଏ ତାହାର ଜ୍ଞାନ ପ୍ରୟୋଜନ । ସ୍ୱର୍ଗ ଉଦ୍ଦେଶ୍ୟରେ ଯେ ଯାଗ କରେ ତାହାର ସ୍ୱର୍ଗ ହିଁ ପ୍ରୟୋଜନ ।

ଦୃଷ୍ଟାନ୍ତ ପଦାର୍ଥ - ଶାସ୍ତ୍ରଜ୍ଞ ଓ ତଦିତର ଉଭୟଙ୍କର ସାଧ୍ୟସାଧନ ଏବଂ ସାମାନ୍ୟାଧିକରଣ୍ୟ ବିଷୟକ ବୁଦ୍ଧି ଯେଉଁଠାରେ ସମତା ପ୍ରାପ୍ତ ହୁଏ ତାହାର ନାମ ଦୃଷ୍ଟାନ୍ତ । ଅଥବା ପ୍ରକୃତ ବିଷୟର ଦୃଢ଼ୀକରଣାର୍ଥ ଅନ୍ୟ ଉଦାହରଣ ଦିଆଯାଏ ତାହାକୁ ଦୃଷ୍ଟାନ୍ତ କହି । ଯଥା - ଧୂମଦ୍ୱାରା ପର୍ବତରେ ବହ୍ନିସାଧନ କରିବାକୁ ଗଲେ ମହାନସର ଦୃଷ୍ଟାନ୍ତ ଦେବାକୁ ହୁଏ । ଯେପରି ଧୂମ ଥିବାରୁ ମହାନସ ବହ୍ନିମାନ୍ ସେପରି ପର୍ବତରେ ଧୂମ ଥିବାର ପର୍ବତ ମଧ୍ୟ ବହ୍ନିମାନ୍ ଇତ୍ୟାଦି ।

ସିଦ୍ଧାନ୍ତ ପଦାର୍ଥ - ଦୃଢ଼ନିଶ୍ଚୟକୁ ସିଦ୍ଧାନ୍ତ କହି । ଯଥା- ଆତ୍ମା ନିତ୍ୟ-ଏଠାରେ ଆତ୍ମାର ନିତ୍ୟତ୍ୱ ନିଶ୍ଚୟ କରାଯାଇଅଛି ।

ସର୍ବତନ୍ତ୍ର, ପ୍ରତିତନ୍ତ୍ର, ଅଧିକରଣ ଓ ଅଭ୍ୟୁପଗମ ଭେଦରେ ସିଦ୍ଧାନ୍ତ ଚତୁର୍ବିଧ । ସର୍ବଶାସ୍ତ୍ରସ୍ୱୀକୃତ ସ୍ୱଶାସ୍ତ୍ର ପ୍ରତିପାଦିତ ଅର୍ଥର ଯେଉଁ ସିଦ୍ଧାନ୍ତ ତାହାକୁ ସର୍ବତନ୍ତ୍ର ସିଦ୍ଧାନ୍ତ କହି । ଯଥା- ପୃଥିବୀ, ଜଳ, ତେଜ, ବାୟୁ ଓ ଆକାଶ ଏହି ପାଞ୍ଚ ପଦାର୍ଥ ମହାଭୂତ ବୋଲି ସକଳ

ଶାସ୍ତ୍ରରେ ସିଦ୍ଧାନ୍ତ କରାଯାଇଛି ନିଜ ଶାସ୍ତ୍ରରେ ତାହାହିଁ ପ୍ରତିପାଦନ କରାଗଲା । ତାହାହେଲେ ପୃଥିବ୍ୟାଦି ପଞ୍ଚପଦାର୍ଥର ଭୂତତ୍ତ୍ୱ ସର୍ବତନ୍ତ୍ର ସିଦ୍ଧାନ୍ତ ।

ପ୍ରତିତନ୍ତ୍ର ସିଦ୍ଧାନ୍ତ - ସ୍ୱଶାସ୍ତ୍ରସଦୃଶ ଶାସ୍ତ୍ରରେ ଅପ୍ରତିପାଦିତ, ପର ଶାସ୍ତ୍ରରେ ପ୍ରତିପାଦିତ ଯେଉଁ ବିଷୟ ତାହାର ନାମ ପ୍ରତିତନ୍ତ୍ର ସିଦ୍ଧାନ୍ତ ଯଥା - ଷୋଡ଼ଶ ପଦାର୍ଥ ବାଦ ନୈୟାୟିକ ସିଦ୍ଧାନ୍ତ, ସପ୍ତପଦାର୍ଥବାଦ ବୈଶେଷିକ ସିଦ୍ଧାନ୍ତ ଏବଂ ଇନ୍ଦ୍ରିୟଗଣର ଭୌତିକତ୍ୱ ସାଂଖ୍ୟ ଶାସ୍ତ୍ର ବିରୁଦ୍ଧ କିନ୍ତୁ ନ୍ୟାୟ ଶାସ୍ତ୍ର ସଙ୍ଗତ ।

ଅଧିକରଣ ସିଦ୍ଧାନ୍ତ - ଯାହା ସିଦ୍ଧ ହେଲେଅନ୍ୟ ପ୍ରାକରଣିକ ପଦାର୍ଥସମୂହ ସିଦ୍ଧ ହୁଏ ତାହାର ନାମ ଅଧିକରଣ ସିଦ୍ଧାନ୍ତ ଯଥା - ପ୍ରପଞ୍ଚ କର୍ତ୍ତୃତ୍ୱ ରୂପେ ଈଶ୍ୱର ସିଦ୍ଧି ହେଲେ, ଈଶ୍ୱରଙ୍କର ସର୍ବଜ୍ଞତ୍ୱ ସିଦ୍ଧ ହୁଏ; କାରଣ ସର୍ବଜ୍ଞତ୍ୱ ବିନା ଏତାଦୃଶ ପ୍ରପଞ୍ଚକର୍ତ୍ତୃତ୍ୱ ଉପପନ୍ନ ହୋଇନପାରେ । ସୁତରାଂ ପ୍ରପଞ୍ଚକର୍ତ୍ତୃତ୍ୱେନ ଈଶ୍ୱର ସିଦ୍ଧି, ଏହା ଅଧିକରଣ ସିଦ୍ଧାନ୍ତ ।

ଅଭ୍ୟୁପଗମ ସିଦ୍ଧାନ୍ତ - ପରକୀୟ ସିଦ୍ଧାନ୍ତ ବିଷୟ ବିଶେଷ ରୂପେ ପରୀକ୍ଷା କରିବା ପାଇଁ ସ୍ୱଶାସ୍ତ୍ରାସିଦ୍ଧ ପଦାର୍ଥର ଯେଉଁ ସ୍ୱୀକୃତି ତାହାର ନାମ ଅଭ୍ୟୁପଗମ ସିଦ୍ଧାନ୍ତ; ଯଥା - ନୈୟାୟିକ ଶବ୍ଦର ଦ୍ରବ୍ୟତ୍ୱ ସ୍ୱୀକାର କରେ ନାହିଁ; କିନ୍ତୁ ମୀମାଂସକ ନିଜେ ଶବ୍ଦରେ ଦ୍ରବ୍ୟତ୍ୱ ସ୍ୱୀକାର କରେ । ଆଚ୍ଛା ଶବ୍ଦ ଦ୍ରବ୍ୟ ହେଲେ ହେଉ କିନ୍ତୁ ନିତ୍ୟ ନା ଅନିତ୍ୟ? ଇତ୍ୟାଦି ପରୀକ୍ଷା କରିବା ପାଇଁ ଶବ୍ଦରେ ଯେଉଁ ଦ୍ରବ୍ୟତ୍ୱ ସ୍ୱୀକୃତ ତାହାହିଁ ଅଭ୍ୟୁପଗମ ସିଦ୍ଧାନ୍ତ ।

ଅବୟବ ପଦାର୍ଥ- ବାକ୍ୟ ବିଶେଷକୁ ଅବୟବ କହି, ସେହି ଅବୟବ ପାଞ୍ଚ ପ୍ରକାର ଯଥା - ପ୍ରତିଜ୍ଞା, ହେତୁ, ଉଦାହରଣ, ଉପନୟ ଓ ନିଗମନ । ପକ୍ଷରେ ସାଧ୍ୟ ନିର୍ଦ୍ଦେଶର ନାମ ପ୍ରତିଜ୍ଞା ଯଥା - 'ପର୍ବତୋ ବହ୍ନିମାନ୍' ଏଠାରେ ପର୍ବତ ପକ୍ଷ ତହିଁରେ ସାଧ୍ୟ ବହ୍ନିର ନିର୍ଦ୍ଦେଶ କରାଗଲା । ଉଦାହରଣ - ସାଧର୍ମ୍ୟରୁ ସାଧ୍ୟ ସାଧନର ନାମ ହେତୁ ଯଥା- 'ପର୍ବତୋ ବହ୍ନିମାନ୍ ଧୂମାତ୍' ଏଠାରେ ଧୂମ ଉଦାହରଣରେ ଥାଇ ପକ୍ଷରେ ସାଧ୍ୟ ସାଧନ କରେ ବୋଲି ହେତୁ ପଦବାଚ୍ୟ ହେଲା; ସାଧ୍ୟ ଓ ସାଧନ ଦୁହିଙ୍କର ଯେଉଁଠାରେ ବ୍ୟାପ୍ତି ନିଶ୍ଚୟ କରାଯାଏ, ତାହାକୁ ଉଦାହରଣ କହନ୍ତି । ଯଥା - ମହାନସ, ଏଠାରେ ବହ୍ନିଧୂମ ଦୁହିଁଙ୍କର ବ୍ୟାପ୍ତି ନିଶ୍ଚୟ କରାଯାଏ ।

'ଉଦାହରଣାପେକ୍ଷ ତଥେତି ଉପସଂହାରେ ନାମ ଉପନୟ' । ଯଥା- 'ବହ୍ନିବ୍ୟାପ୍ୟ ଧୂମବାନ୍ ଅୟଂ ପର୍ବତଃ' । ଅର୍ଥାତ୍ ଏହି ପର୍ବତରେ ବହ୍ନିବ୍ୟାପ୍ୟ ଧୂମ ଅଛି ।

ଉପନୟ କୃତ ହେତୁ ନିର୍ଦ୍ଦେଶକୁ ଆଶ୍ରୟ କରି ପ୍ରତିଜ୍ଞାର ଯେଉଁ ପୁନର୍ବଚନ ତାହାର ନାମ ନିଗମନ ଯଥା - ତସ୍ମାତ୍ତଥା । ଅର୍ଥାତ୍ ବହ୍ନିବ୍ୟାପ୍ୟଧୂମ ଏହି ପର୍ବତରେ ଥିବାରୁ ଏହି ପର୍ବତ ବହ୍ନିମାନ୍ ହେବ ।

ତର୍କ - ଆପତ୍ତି ବିଶେଷକୁ ତର୍କ କହି । ଅର୍ଥାତ୍ ସଂଦିଗ୍ଧ ପଦାର୍ଥ ବିଷୟକ ଯୁକ୍ତି ସମ୍ବଳିତ ଉହ ହିଁ ତର୍କ, ଯଥା- ପର୍ବତ ଯଦି ବହ୍ନିମାନ୍ ନହୁଏ । ତେବେ ଧୂମବାନ୍ ମଧ୍ୟ ହୋଇ ନପାରେ ।

ଯେହେତୁ ଧୂମ ବହ୍ନିର ବ୍ୟାପ୍ୟ, ବହ୍ନି ବିନା ଧୂମ ରହେ ନାହିଁ । ତର୍କ ହେଲେ ଆପାଦ୍ୟାଭାବ ଦ୍ୱାରା ଆପାଦକାଭାବ ନିଶ୍ଚୟ ହୁଏ ।

ଅଙ୍ଗଦିଗ୍ଧ ଜ୍ଞାନର ନାମ ନିର୍ଣ୍ଣୟ - ଅର୍ଥାତ୍ ବିବେଚନା କରି ପକ୍ଷ ଓ ପ୍ରତିପକ୍ଷଦ୍ୱାରା ଯେଉଁ ଅର୍ଥାବଧାରଣ ହୁଏ ତାହାକୁ ନିର୍ଣ୍ଣୟ କହନ୍ତି ।

ବାଦ - ପରସ୍ପର ଜିଗୀଷା ନକରି କେବଳ ପ୍ରକୃତ ବିଷୟର ତତ୍ତ୍ୱ ନିର୍ଣୟ ଲାଗି ବାଦୀ ଓ ପ୍ରତିବାଦୀର ବିଚାରକୁ ବାଦ କହି । ଅର୍ଥାତ୍- ପ୍ରମାଣ ଓ ତର୍କଦ୍ୱାରା ସ୍ୱପକ୍ଷ ସାଧନ ଓ ପରପକ୍ଷ ଦୂଷଣ ପୂର୍ବକ ସିଦ୍ଧାନ୍ତ ଅବିରୋଧୀ ପଞ୍ଚାବୟବ ବାକ୍ୟ ଯୁକ୍ତବାଦୀ ଓ ପ୍ରତିବାଦୀର ପରିଗ୍ରହକୁ ବାଦ କୁହାଯାଏ । ବାଦ ବିଷୟରେ ସମସ୍ତେ ଅଧିକାରୀ ନୁହନ୍ତି, କିନ୍ତୁ ଯେଉଁମାନେ ପ୍ରକୃତ ବିଷୟର ତତ୍ତ୍ୱନିର୍ଣ୍ଣୟେଚ୍ଛୁ, ଯଥାର୍ଥବାଦୀ, ବଞ୍ଚକତାଦି ଦୋଷଶୂନ୍ୟ, ଯଥାକାଳେ ପ୍ରକୃତୋପଯୋଗୀ କଥନସମର୍ଥ, ସିଦ୍ଧାନ୍ତ ବିଷୟର ଅପଳାପ କରନ୍ତି ନାହିଁ ଏବଂ ଯୁକ୍ତିସିଦ୍ଧ ବିଷୟ ସ୍ୱୀକାର କରନ୍ତି, ସେମାନେ କେବଳ ବାଦ ବିଷୟରେ ଅଧିକାରୀ । ଜଳ୍ପ, ପ୍ରମାଣ, ତର୍କ, ଛଳ, ଜାତି ଓ ନିଗ୍ରହସ୍ଥାନଦ୍ୱାରା ଯଥାଯୋଗ୍ୟ ସ୍ୱପକ୍ଷ ସ୍ଥାପନ ଓ ପରପକ୍ଷ ନିରସନ ଯୁକ୍ତବାଦୀ ଓ ପ୍ରତିବାଦୀର ଉକ୍ତି ପ୍ରତ୍ୟୁକ୍ତିକି ଜଳ୍ପ କହି । ଜଳ୍ପ ବିଜିଗୀଷା ବଶତଃ ହୋଇଥାଏ । ଏହି ଜଳ୍ପରେ ପ୍ରମାଣାଭାସ ତର୍କାଭାସ ଓ ଅବୟବାଭାସ ପ୍ରୟୋଗ ହୋଇଥାଏ - ସ୍ୱପକ୍ଷ ସାଧନ ଓ ପରପକ୍ଷ ନିରସନ ପୂର୍ବକ ବିଜିଗୀଷୁଦ୍ୱୟର ଉକ୍ତି ପ୍ରତ୍ୟୁକ୍ତି ହିଁ ପ୍ରକୃତ ପକ୍ଷେ ଜଳ୍ପ ପଦବାଚ୍ୟ ।

ବିତଣ୍ଡା - ନିଜ ମତ ସମର୍ଥନ ନକରି ଅନ୍ୟ ମତ ଖଣ୍ଡନ କରିବା ପାଇଁ ଯେଉଁ ଜଳ୍ପନା କରାଯାଏ ତାହାର ନାମ ବିତଣ୍ଡା । ହେତ୍ୱାଭାସ-ଅନୁମିତି ପ୍ରତିବନ୍ଧକ ଜ୍ଞାନର ବିଷୟକୁ ଦେତ୍ୱାଭାସ କହି । ହେତ୍ୱାଭାସ - ହେତୁ ପରି ଆଭାସମାନ ହେଉଥିବ କିନ୍ତୁ ପ୍ରକୃତରେ ହେତୁ ନୁହେଁ; ତାହା ପାଞ୍ଚପ୍ରକାର ଯଥା- ସଭବ୍ରିଚାର, ବିରୁଦ୍ଧ, ସତ୍ପ୍ରତିପକ୍ଷ, ଅସିଦ୍ଧ ଓ ବାଧିତ । ଏମାନଙ୍କୁ ଦୁଷ୍ଟହେତୁ କହନ୍ତି ।

ସବ୍ୟଭିଚାର - ବ୍ୟଭିଚାର ବିଶିଷ୍ଟହେତୁର ନାମ ସବ୍ୟଭିଚାର । ହେତୁନିଷ୍ଠ ସାଧ୍ୟାଭାବାଦିକରଣ ନିରୂପିତ ବୃତ୍ତିତାର ନାମ ବ୍ୟଭିଚାର । ଯଥା- 'ଧୂମବାନ୍ ବହ୍ନେଃ' ଏଠାରେ ଧୂମ ସାଧ୍ୟ ଓ ବହ୍ନି ହେତୁ । ଏହି ବହ୍ନିହେତୁ ଧୂମାଭାବାଧିକରଣ ଅୟୋଗୋଳକରେ ବୃତ୍ତି ହେବାରୁ ସଭ୍ୟଭିଚାର ହେଲା । ବ୍ୟାପ୍ତିଗ୍ରହ, ପ୍ରତିବନ୍ଧ ହିଁ ଏହାର ଫଳ ।

ବିରୁଦ୍ଧ - ଏକାଧିକରଣାବୃତ୍ତିତ୍ୱ ରୂପ ପଦାର୍ଥର ନାମ ବିରୋଧ । ଏହି ବିରୋଧ ବିଶିଷ୍ଟହେତୁକୁ ବିରୁଦ୍ଧ କହି- ଯଥା ଗୋତ୍ୱବାନ୍ ଅଶ୍ୱତ୍ୱାତ୍ । ଏଠାରେ ଅଶତ୍ୱ ହେତୁ ବିରୁଦ୍ଧ, ଗୋତ୍ୱ ଓ ଅଶତ୍ୱ ପରସ୍ପର ବିରୁଦ୍ଧ ଧର୍ମ । ଏହି ଦୁଇଧର୍ମ ଏକ ଅଧିକରଣରେ କେବେହେଲେ ରହନ୍ତି ନାହିଁ । ବ୍ୟାପ୍ତିଘଟକ ସାମାନାଧିକରଣ୍ୟ ଗ୍ରହ ପ୍ରତିରୋଧ ହିଁ ଏହି ବିରୋଧର ଫଳ ।

ସତ୍‌ପ୍ରତିପକ୍ଷ - ଯେଉଁ ହେତୁର ସାଧ୍ୟଭାବ ସାଧକହେତ୍ୱନ୍ତର ହୁଏ ତାହାକୁ ସତ୍‌ପ୍ରତିପକ୍ଷ କୁହାଯାଏ, ଯଥା- ହ୍ରଦୋ ବହ୍ନିମାନ୍ ଧୂମାତ୍ - ଏଠାରେ ବହ୍ନ୍ୟଭାବ ରୂପ ସାଧ୍ୟାଭାବ ସାଧକ ଜଳରୂପ ହେତ୍ୱନ୍ତର । ଯଥା - ହ୍ରଦୋ ବହ୍ନ୍ୟଭାବବାନ୍ ଜଳାତ୍; ଅତଏବ ଧୂମ ହେତୁ ସତ୍‌ପ୍ରତିପକ୍ଷ । ସତ୍‌ପ୍ରତିପକ୍ଷର ଫଳ ଅନୁମିତି ପ୍ରତିବନ୍ଧ ।

ଅସିଦ୍ଧ - ଯଥା - କାଞ୍ଚନମୟ ପର୍ବତୋ ବହ୍ନିମାନ୍, ବହ୍ନିମାନ୍ ନୀଳଧୂମାତ୍, ହ୍ରଦୋ ଦ୍ରବ୍ୟ ଧୂମାତ୍ । ଏଠାରେ ପର୍ବତରେ କାଞ୍ଚନମୟତ୍ୱ, ଧୂମରେ ନୀଳତ୍ୱ; ହ୍ରଦରେ ଧୂମବତ୍ତା ଅସିଦ୍ଧ; ଏହାର ଫଳ ପରାମର୍ଶ ପ୍ରତିବନ୍ଧ ।

ବାଧିତ- ସାଧ୍ୟାଭାବ ବତ୍‌ର ନାମ ବାଧ, ଏହି ବାଧବିଶିଷ୍ଟ ହେତୁକୁ ବାଧିତ କହି, ଯଥା- ହ୍ରଦୋ ବହ୍ନିମାନ୍ ଧୂମାତ୍ । ଏଠାରେ ହ୍ରଦରୂପ ପକ୍ଷରେ ସାଧ୍ୟର ଅଭାବ ଥିବାରୁ ବାଧ ହେଲା । ଏହି ବାଧର ଫଳ ଅନୁମିତି ପ୍ରତିବନ୍ଧ ।

ଛଳ- ବକ୍ତା ଯେଉଁ ଅର୍ଥ ତାତ୍ପର୍ଯ୍ୟରେ ଯେଉଁ ଶବ୍ଦ ପ୍ରୟୋଗ କରେ ସେହି ଶବ୍ଦରସେହି ଅର୍ଥ ଗ୍ରହଣ ନକରି ତଦ୍‌ବିପରୀତ ଅର୍ଥ କଳ୍ପନାଦ୍ୱାରା ବାଦୀବାକ୍ୟରେ ବିରୋଧ ପ୍ରଦର୍ଶନର ନାମ ଛଳ । ଯଥା - ମୁଁ ହରିପ୍ରସାଦ ଖାଉଚି ଇତ୍ୟାଦି ସ୍ଥଳରେ ହରି ଶବ୍ଦର ବିଷ୍ଣୁରୂପ ଅର୍ଥ ଗ୍ରହଣ ନକରି ବାନରି ବାନର ରୂପ ଅର୍ଥ କଳ୍ପନାଦ୍ୱାରା ଦୋଷ ଦର୍ଶାଇବା ବାକ୍ୟକୁ ଛଳ କହି । ବାକ୍‌ଛଳ, ସାମାନ୍ୟ ଛଳ ଓ ଉପଚାର ଛଳ ଭେଦରେ ଛଳ ତ୍ରିବିଧ ।

ବହ୍ୱର୍ଥବ୍ୟଞ୍ଜକ ଶବ୍ଦ ପ୍ରୟୋଗରେ ଯଦି ବାଦୀର ଇଷ୍ଟାର୍ଥ ତ୍ୟାଗ କରି ଭିନ୍ନାର୍ଥ କଳ୍ପନାଦ୍ୱାରା ବାଦୀର ଉକ୍ତି ପ୍ରତ୍ୟାଖ୍ୟାନ କରାଯାଏ ତେବେ ତାହାକୁ ବାକ୍‌ଛଳ କହି । ଯଥା- ସମାଗତ ବ୍ୟକ୍ତି ନବ କମ୍ବଳଧାରୀ । ଏହି ବାଦୀବାକ୍ୟ ଶ୍ରବଣ କରି ବାଦୀର ଅଭିପ୍ରେତ ନବ ଶବ୍ଦର ନୂତନ ରୂପ ଅର୍ଥ ପରିତ୍ୟାଗ କରି ନବ ଶବ୍ଦର 'ନ' ସଂଖ୍ୟା ରୂପ ଅର୍ଥ କଳ୍ପନାଦ୍ୱାରା "ଏହାର ତ ନ'ଟି କମ୍ବଳ ନାହିଁ ଏ ରୂପ ବିରୋଧ ପ୍ରଦର୍ଶନ କରି ବାଦୀବାକ୍ୟ ପ୍ରତ୍ୟାଖ୍ୟାନ କରାଗଲେ ତାହାକୁ ବାକ୍‌ଛଳ କୁହାଯାଏ ।

ସାମାନ୍ୟ ଛଳ - ସମ୍ଭୂତାର୍ଥରେ ଅତି ସାମାନ୍ୟ ଯୋଗକରି ଯଦି ଅସମ୍ଭୂତାର୍ଥ କଳ୍ପନା କରାଯାଏ ତାହାହେଲେ ତାହାକୁ ସାମାନ୍ୟ ଛଳ କୁହାଯାଏ । ଯଥା- ବ୍ରାହ୍ମଣ ବିଦ୍ୟାଚରଣ ସମ୍ପନ୍ନ ଏପରି ବାଦୀବାକ୍ୟ ଶ୍ରବଣ କରି "ବ୍ରାହ୍ମଣ ଯଦି ବିଦ୍ୟାଚରଣସମ୍ପନ୍ନ ହୁଏ ବ୍ରାତ୍ୟ କାହିଁକି - ବିଦ୍ୟାଚରଣ ସମ୍ପନ୍ନ ହେବ ନାହିଁ, ବ୍ରାତ୍ୟ କଣ ବ୍ରାହ୍ମଣ ନୁହେଁ । ଏ ରୂପ ଅସମ୍ଭୂତାର୍ଥ କଳ୍ପନା କରାଯିବାକୁ ଏଠାରେ ସାମାନ୍ୟ ଛଳ ହେଲା ।

ଶକ୍ୟାର୍ଥ ଅଭିପ୍ରାୟରେ ଶବ୍ଦ ପ୍ରୟୋଗ କଲେ ଲକ୍ଷଣଦ୍ୱାରା ଅର୍ଥ ପ୍ରକାଶ କରି ପ୍ରତିଷେଧ କରିବା ଓ ଲକ୍ଷାର୍ଥ ଅଭିପ୍ରାୟରେ ଶବ୍ଦ ପ୍ରୟୋଗ କଲେ ଶକ୍ୟାର୍ଥ ସଭାବ କରି ପ୍ରତିଷେଧ କରିବା ଉପଚାର ଛଳ, ଯଥା- ଗଙ୍ଗା ଶବ୍ଦର ଜଳ ରୂପ ଅର୍ଥ ଅଭିପ୍ରାୟରେ ଗଙ୍ଗାରେ ମୀନ ଅଛି ଏପରି

ବାକ୍ୟ ପ୍ରୟୋଗ କଲେ ଗଙ୍ଗା ଶବ୍ଦର ଗଙ୍ଗା ତୀର ରୂପ ଲକ୍ଷ୍ୟାର୍ଥକୁ ନେଇ ଗଙ୍ଗା ତୀରରେ ତ ମୀନ ନାହିଁ ଏହି ରୂପ ପ୍ରତିଷେଧ କରିବା ଏବଂ ଗଙ୍ଗା ଶବ୍ଦର ଗଙ୍ଗାତୀର ରୂପ ଲକ୍ଷ୍ୟାର୍ଥ ଅଭିପ୍ରାୟରେ ଗଙ୍ଗାରେ ଘୋଷ ଅଛି ଏପରି ବାକ୍ୟ ପ୍ରୟୋଗ କଲେ ଜଳରୂପ ଶକ୍ୟାର୍ଥକୁ ନେଇ ପ୍ରତିଷେଧ କରିବା ଇତ୍ୟାଦି ।

ଜାତି - ପର ମତ ଖଣ୍ଡନ ସାଧିତ ହେଉଛି ଜାତି- ସେହି ଜାତି ଚତୁର୍ବିଂଶତି ପ୍ରକାର ଯଥା - ସ୍ୱଧର୍ମ୍ୟସମା, ବୈଧର୍ମସମା, ଉତ୍କର୍ଷସମା, ଅପକର୍ଷସମା, ବର୍ଣ୍ଣ୍ୟସମା, ଅବର୍ଣ୍ଣ୍ୟସମା, ବିକଳ୍ପସମା, ସାଧ୍ୟସମା, ପ୍ରାପ୍ତିସମା, ଅପ୍ରାପ୍ତିସମା, ପ୍ରସଙ୍ଗସମା, ପ୍ରତିଦୃଷ୍ଟାନ୍ତସମା, ଅନୁତ୍ପତ୍ତିସମା, ସଂଶୟସମା, ପ୍ରକରଣସମା, ଅହେତୁସମା, ଅର୍ଥାପତ୍ତିସମା, ଅବିଶେଷସମା, ଉପପତ୍ତିସମା, ଉପଲବ୍ଧିସମା, ଅନୁପଲବ୍ଧିସମା, ନିତ୍ୟସମା, ଅନିତ୍ୟସମା ଓ କାର୍ଯ୍ୟସମା ।

ନିଗ୍ରହସ୍ଥାନ - ବକ୍ତାର ଦୋଷସୂଚକ ପରାଜୟକାରକ ହିଁ ନିଗ୍ରହ ସ୍ଥାନ । ସେହି ନିଗ୍ରହସ୍ଥାନ ଦ୍ୱାବିଂଶତି ପ୍ରକାର, ଯଥା - ପ୍ରତିଜ୍ଞାହାନି, ପ୍ରତିଜ୍ଞାନ୍ତର, ପ୍ରତିଜ୍ଞାବିରୋଧ, ପ୍ରତିଜ୍ଞାସନ୍ନ୍ୟାସ, ହେତ୍ୱନ୍ତର, ଅର୍ଥାନ୍ତ, ନିରର୍ଥକ, ଅବିଜ୍ଞାତାର୍ଥ, ଅପାର୍ଥକ, ଅପ୍ରାପ୍ତକାଳ, ନ୍ୟୁନ, ଅଧିକ, ପୁନରୁକ୍ତ, ଅନନୁଭାଷଣ, ଅଜ୍ଞାନଏ ଅପ୍ରତିଭା, ବିକ୍ଷେପ, ମତାନୁଜ୍ଞା, ପର୍ଯ୍ୟନୁଯୋଜ୍ୟାପେକ୍ଷଣ, କିରନୁଯୋଜ୍ୟାନୁଯୋଗଃ, ଅପସିଦ୍ଧାନ୍ତ ଓ ହେତ୍ୱାଭାଷ ଏମାନଙ୍କ ନିଗ୍ରହସ୍ଥାନ କହି ।



ଏହି ସମସ୍ତ ପ୍ରାଚୀନ ନ୍ୟାୟ ନାମରେ ବ୍ୟବହୃତ । ଏହି ଦର୍ଶନ ପ୍ରଣେତା ମହର୍ଷି ଗୌତମ ଜଣେ ପ୍ରାଚରନ ଋଷି । ଯଥା-

ଅତ୍ରିର୍ବଶିଷ୍ଠୋଭଗବାନ୍ କଶ୍ୟପଶ୍ଚ ମହାମୁନିଃ
ଗୌତମଶ୍ଚ ଭରଦ୍ୱାଜୋ ବିଶ୍ୱାମିତ୍ର, ସ୍ତଥୈବଚ
ତଥୈବ ପୁତ୍ର ଭଗବାନ୍ ଋଚୀକସ୍ୟ ମହାତ୍ମନଃ
ସପ୍ତମେ ଜମଦଗ୍ନିଶ୍ଚ ଋଷୟଃ ସଂପ୍ରତଂ ଦିବି- (ହରିବଂଶ)

## ପାତଞ୍ଜଳ ଦର୍ଶନ

ଏହି ଦର୍ଶନରେ ଯୋଗ, ଯୋଗାଭ୍ୟାସ ଓ ତାହାର ଫଳସ୍ୱରୂପ ସିଦ୍ଧି ଏବଂ ଯୋଗର ଚରମ ସୀମା ସମାଧି ବର୍ଣ୍ଣିତ ହୋଇଅଛି । ବର୍ଣ୍ଣିତ ବିଷୟାନୁସାରେଏହାର ନାମ ଯୋଗଦର୍ଶନ ହୋଇଥିଲେ ହେଁ ଏହାର ରଚୟିତା ମହର୍ଷି ପାତଞ୍ଜଳିଙ୍କ ନାମାନୁସାରେ ଏହି ଦର୍ଶନ ପାତଞ୍ଜଳ ଦର୍ଶନ ନାମେ ବିଶେଷ ଭାବେ ପରିଚିତ । ସାଂଖ୍ୟଦର୍ଶନ ସହିତ ପଦାର୍ଥ ନିର୍ଣ୍ଣୟାଦି ବିଷୟରେ ବିଶେଷ ସାମଞ୍ଜସ୍ୟ ପରିଲକ୍ଷିତ ହେଉଥିବାରୁ ଏହାକୁ ସାଂଖ୍ୟ ପ୍ରବଚନ ବୋଲି ମଧ୍ୟ କୁହାଯାଏ ।

ଯୋଗ - ସ୍ମରଣାତୀତ କାଳରୁ ଦେଖାଯାଉଛି ଏବଂ ଅନେକ ବିଷୟ ସୁଦ୍ଧା ଲିପିବଦ୍ଧ କରାଯାଇଛି ଯେ ଜଗତରେ ଯେଉଁ ସକଳ ଅଚିନ୍ତନୀୟ ଘଟଣା ଘଟେ ତାହା ମାନବଶକ୍ତିର କଳ୍ପନାତୀତ । ସେହି ସମସ୍ତ ଘଟଣାର କାରଣ ସ୍ୱରୂପ କୌଣସି ଅଶରୀରୀ ଶକ୍ତି ମାନବଚକ୍ଷୁର ଅନ୍ତରାଳରେ ବିଦ୍ୟମାନ ଏବଂ ସେହି ଶକ୍ତିର ରୋଷରେ ଅମଙ୍ଗଳ ତଥା ତୋଷରେ ମଙ୍ଗଳ ସଂଘଟିତ, ସେଥିଯୋଗୁଁ ତାହାର ଉପାସନା ସର୍ବଥା ବାଞ୍ଛନୀୟ; ଏହି ଶକ୍ତି ଅସଂଖ୍ୟ ଏବଂ ପ୍ରତ୍ୟେକର କୌଣସି ବିଶେଷ କାର୍ଯ୍ୟ ସାଧନ କ୍ଷମତା ଅଛି ବୋଲି ଅନେକେ ବିଶ୍ୱାସ କରନ୍ତି । ଆଧୁନିକ ଯୁଗରେ ସୁଦ୍ଧା ଉପରୋକ୍ତ ଘଟଣାବଳୀର ପ୍ରତ୍ୟକ୍ଷ ପ୍ରମାଣର ଅଭାବ ନାହିଁ । ଅବଶ୍ୟ କୌଣସି ଅତିମାନବ ଶକ୍ତିରେ ବିଶ୍ୱାସ ନକରିଭୌତିକ ପଦାର୍ଥ ସଂଯୋଗରେ ଅସାଧ୍ୟ ସାଧିତ ହୁଏ ବୋଲି ବିଶ୍ୱାସ କରିବା ଲୋକଙ୍କ ସଂଖ୍ୟା ମଧ୍ୟ ଜଗତରେ ବିରଳ ନୁହେଁ ।

ଯୋଗର ଉଦ୍ଦେଶ୍ୟ ମନୁଷ୍ୟ କୌଣସି ବହିଃଶକ୍ତି ଉପରେ ନିର୍ଭର ନକରି ନିଜର ଅନ୍ତର୍ନିହିତ ଚିରଜାଗ୍ରତ ଆତ୍ମଶକ୍ତିକୁ ଉଦ୍‌ବୁଦ୍ଧ କରିବା ଏବଂ ମୋକ୍ଷଲାଭ କରିବା ଯୋଗର ପ୍ରଧାନ ଅଙ୍ଗ ସଂଯମ । ସଂଯମ ବଳରେ ମନୁଷ୍ୟ ସୂକ୍ଷ୍ମରୁ ସୂକ୍ଷ୍ମତର ହୋଇ ପରକାୟ ପ୍ରବେଶ କରିପାରେ,ଅନନ୍ତାକାଶରେ ସଂଚରଣ କରିପାରେ, କୋଟିଦନ୍ତାବଳର ଏକୀଭୂତ ବଳ ସଞ୍ଚୟ କରିପାରେ ଏବଂ ଅନ୍ତର୍ଯ୍ୟାମୀ ପରି ସଂସାରର ସମସ୍ତ ବିଷୟ ଅବଗତ ହୋଇପାରେ । ଯୋଗାଭ୍ୟାସ ସକାଶେ ପ୍ରସ୍ତୁତ ହେବା ପୂର୍ବରୁ ମନୁଷ୍ୟ ଯେଉଁ ସମସ୍ତ ଚିତ୍‌ଶକ୍ତିସମ୍ପନ୍ନ ହେବାକୁ ହେବ ତାହା ଯୋଗାଙ୍ଗର ପ୍ରଥମ ଉପାଦାନ ସ୍ୱରୂପ ବର୍ଣ୍ଣିତ ହୋଇଅଛି । ଏହି ଯୋଗଦର୍ଶନ ସମ୍ବନ୍ଧରେ ନାନା ଆଚାର୍ଯ୍ୟଙ୍କର ନାନା ମତ ପରିଲକ୍ଷିତ ହେଉଥିଲେ ହେଁ ନ୍ୟୁନାଧିକରେ ଅଭ୍ୟାସ ବିଷୟରେ ପ୍ରାୟ ସମସ୍ତେ ପତଞ୍ଜଳିଙ୍କ ସଙ୍ଗେ ଏକମତ । ସାଂଖ୍ୟ ଓ ଯୋଗଦର୍ଶନ ମଧ୍ୟରେ ପ୍ରଭେଦ ଏତିକି ଯେ ସାଂଖ୍ୟ ଈଶ୍ୱରଙ୍କ ଅସ୍ତିତ୍ୱ ସମ୍ବନ୍ଧେ ନୀରବ କିନ୍ତୁ ପାତଞ୍ଜଳ ତାହା ସ୍ୱୀକାର କରନ୍ତି । ଯାହାହେଉ ଯୋଗୀମାନେ ଈଶ୍ୱରଙ୍କୁ ସ୍ରଷ୍ଟା ଇତ୍ୟାଦି ବହୁଭାବରେ ନିଅନ୍ତି ନାହିଁ । ବେଦ ଈଶ୍ୱରଙ୍କୁ ଜଗତ୍ ସ୍ରଷ୍ଟା ରୂପେ ପ୍ରତିପାଦନ କରେ । ଜଗତ ଏକ ଶୃଙ୍ଖଳାରେ ନିୟନ୍ତ୍ରିତ ହେଉଥିବା ହେତୁ ତାହା ଅବଶ୍ୟ କୌଣସି ଏକ ଚିତ୍‌ଶକ୍ତିରୁ ବ୍ୟକ୍ତ ହୋଇଥିବ । ଯୋଗୀମାନେ ଈଶ୍ୱରଙ୍କର ଅସ୍ତିତ୍ୱ ପ୍ରତିପାଦନ କରିବା ପାଇଁ ଯେଉଁ ବିଚିତ୍ର ପ୍ରଣାଳୀ ଅବଲମ୍ବନ କରିଥା'ନ୍ତି ତାହାଏଥିରେ ବର୍ଣ୍ଣନା କରାଯିବ । ସର୍ବାଦୌ ଆମ୍ଭେମାନେ ପାଠକ ପାଠିକାଙ୍କୁ ପାତଞ୍ଜଳ ଯୋଗଦର୍ଶନାନ୍ତର୍ଗତ ବିଷୟର ପରିଚୟ ଦେବୁ ।

ମହର୍ଷି କପିଳଙ୍କ ପରି ପତଞ୍ଜଳି ମଧ୍ୟ ପ୍ରକୃତି, ମହତ୍ତତ୍ତ୍ୱ ପ୍ରଭୃତି ପଞ୍ଚବିଂଶତି ତତ୍ତ୍ୱ ସ୍ୱୀକାର କରିଅଛନ୍ତି । କପିଳ ଜୀବାତିରିକ୍ତ ସର୍ବବ୍ୟାପୀ ପରମେଶ୍ୱରଙ୍କର ସତ୍ତା ସମ୍ବନ୍ଧେ ସନ୍ଦିହାନ; କିନ୍ତୁ ପତଞ୍ଜଳି ତାହା ପ୍ରତିପାଦନ କରିଅଛନ୍ତି । ଏଣୁ କେହି କେହି ସାଂଖ୍ୟଦର୍ଶନକୁ ନିରୀଶ୍ୱର ସାଂଖ୍ୟ ଏବଂ ପାତାଞ୍ଜଳ ଦର୍ଶନକୁ ସେଶ୍ୱର ସାଂଖ୍ୟ କହନ୍ତି ।

ପାତଞ୍ଜଳ ଦର୍ଶନ ପାଦଚତୁଷ୍ଟୟରେ ବିଭକ୍ତ, ଯଥା- ସାମାଧିପାଦ, ସାଧନ ପାଦ, ବିଭୂତି ପାଦ ଓ କୈବଲ୍ୟ ପାଦ । ଏହାର ପ୍ରଥମ ପାଦରେ ଯୋଗାନୁଶାସନ ବା ଯୋଗାଭ୍ୟାସ, ଯୋଗର ଲକ୍ଷଣ, ଯୋଗର ଅସାଧାରଣ ଉପାୟ ସ୍ୱରୂପ ଯେଉଁ ଅଭ୍ୟାସ ଓ ବୈରାଗ୍ୟ ତାହାର ସ୍ୱରୂପ ଓ ଭେଦ, ସଂପ୍ରଜ୍ଞାତ ଓ ଅସଂପ୍ରଜ୍ଞାତ ଭେଦରେ ସମାଧିର ବିଭାଗ, ବିସ୍ତର ଯୋଗୋପାୟ, ଈଶ୍ୱରଙ୍କ ସ୍ୱରୂପ ଓ ପ୍ରମାଣ, ଉପାସନା ଓ ତାହାର ଫଳ, ଚିତ୍ତବିକ୍ଷେପ ଓ ଦୁଃଖାଦିର ନିରାକରଣୋପାୟ ଏବଂ ସମାଧିଭେଦ ପ୍ରଭୃତି ବର୍ଣ୍ଣିତ ହୋଇଅଛି ।

ଦ୍ୱିତୀୟ ପାଦରେ - କ୍ରିୟାଯୋଗ, କ୍ଳେଶସମୂହର କାରଣ ନିର୍ଦ୍ଦେଶ, ସ୍ୱରୂପ ଓ ଫଳ, କର୍ମର ପ୍ରଭେଦ, ସ୍ୱରୂପ, କାରଣ ଓ ଫଳ, ବିପାକର କାରଣ ଓ ସ୍ୱରୂପ, ତତ୍ତ୍ୱଜ୍ଞାନର ଅନ୍ତରଙ୍ଗ ଓ ବହିରଙ୍ଗଭେଦ, ଯମନିୟମାଦିର ସ୍ୱରୂପ ଓ ଫଳ, ଆସନାଦିର ଲକ୍ଷଣ, କାରଣ ଓ ଫଳ ଉକ୍ତ ହୋଇଅଛି ।

ତୃତୀୟ ପାଦରେ ଯୋଗର ଅନ୍ତରଙ୍ଗ କ୍ରିୟା ବା ଧ୍ୟାନ, ଧାରଣା, ସମାଧିରୂପ ସଂଯମ, ପରିଣାମ, ପ୍ରଭେଦ ଓ ସିଦ୍ଧି ପ୍ରଦର୍ଶିତ ହୋଇଅଛି ।

ଚତୁର୍ଥପାଦରେ - ସିଦ୍ଧିପଞ୍ଚକ, ବିଜ୍ଞାନବାଦ ନିରାକରଣ, ସାକାରବାଦ ସଂସ୍ଥାପନ ଓ କୈବଲ୍ୟ ପ୍ରଦର୍ଶିତ ହୋଇଅଛି । ପତଞ୍ଜଳିଙ୍କ ମତରେ ପରମେଶ୍ୱର ଷଡ଼୍‌ବିଂଶତି ତତ୍ତ୍ୱ ।

## ଯୋଗର ଲକ୍ଷଣ

ଯୋଗ ଶବ୍ଦର ଅନେକ ଅର୍ଥ ଥିଲେ ହେଁ ଏଠାରେ ଚିତ୍ତବୃତ୍ତିନିରୋଧ ହିଁ ଯୋଗ ଶବ୍ଦବାଚ୍ୟ । "ଯୋଗଶ୍ଚିତ୍ତବୃତ୍ତି ନିରୋଧଃ" ବିଷୟପ୍ରବୃତ୍ତ ଚିତ୍ତକୁ ବିଷୟନିବୃତ୍ତ କରି କେବଳ ଧ୍ୟେୟ ବସ୍ତୁରେ ସଂସ୍ଥାପନ ପୂର୍ବକ ତନ୍ମାତ୍ରର ଧ୍ୟାନ ବିଶେଷକୁ ଯୋଗ କୁହାଯାଏ ।

## ଚିତ୍ତର ଅବସ୍ଥାଭେଦ ଓ ତାହାର ବିଶେଷ ଲକ୍ଷଣ

କ୍ଷିପ୍ତ, ମୂଢ଼, ବିକ୍ଷିପ୍ତ, ଏକାଗ୍ର ଓ ନିରୁଦ୍ଧ ଭେଦରେ ଚିତ୍ତର ଅବସ୍ଥା ପାଞ୍ଚପ୍ରକାର । କ୍ଷିପ୍ରାବସ୍ଥା - ଯେଉଁ ଅବସ୍ଥାରେ ମନ ଅସ୍ଥିର ହୋଇ ଏକ ବିଷୟରେ ନିବିଷ୍ଟ ନହେଁ ସର୍ବଦା ଚଞ୍ଚଳ ଜଳୌକା ପରି ଗୋଟିକୁ ଛାଡ଼ି ଅନ୍ୟ ଗୋଟିକୁ ଧରିବା ପାଇଁ ବ୍ୟତିବ୍ୟସ୍ତ ହୁଏ ସେହି ଅବସ୍ଥାକୁ କ୍ଷିପ୍ତାବସ୍ଥା କୁହାଯାଏ ।

ମୂଢ଼ାବସ୍ଥା - ଯେଉଁ ଅବସ୍ଥାରେ ମନ ହିତାହିତ ଜ୍ଞାନରହିତ କାମ କ୍ରୋଧାଦିର ବଶୀଭୂତ, ନିଦ୍ରା ତନ୍ଦ୍ରାଦିର ଅଧୀନ, ଏବଂ ଆଳସ୍ୟାଦି ବିବିଧ ତମୋମୟ ଅବସ୍ଥାରେ ନିମଗ୍ନ ଥାଏ ସେହି ଅବସ୍ଥାକୁ ମୂଢ଼ାବସ୍ଥା କୁହାଯାଏ ।

ବିକ୍ଷିପ୍ତାବସ୍ଥା - ବିକ୍ଷିପ୍ତାବସ୍ଥା ସହିତ କ୍ଷିପ୍ତାବସ୍ଥାର ଭେଦ ଅତି ସାମାନ୍ୟ । କ୍ଷିପ୍ତାବସ୍ଥାରେ ଚିତ୍ତର ଚାଞ୍ଚଲ୍ୟ ଥାଏ କିନ୍ତୁ ବିକ୍ଷିପ୍ତାବସ୍ଥାରେ ଚିତ୍ତର ଚାଞ୍ଚଲ୍ୟ ସଙ୍ଗେ ସଙ୍ଗେ କ୍ଷଣିକ ସ୍ଥିରତା ମଧ୍ୟ ଥାଏ । ଯେଉଁ ଅବସ୍ଥାରେ ଚିତ୍ତ ଦୁଃଖଜନକ ବିଷୟ ତ୍ୟାଗ କରି ସୁଖଜନକ ବସ୍ତୁରେ

ସ୍ଥିର ହୁଏ ଏବଂ ଚିରାଭ୍ୟସ୍ତ ଚାଞ୍ଚଲ୍ୟ ପରିତ୍ୟାଗ କରି କ୍ଷଣ କାଳଲାଗି ଅବଲମ୍ବନଶୂନ୍ୟ ବା କେବଳ ସୁଖାସ୍ୱାଦରେ ନିମଗ୍ନ ଥାଏ, ସେହି ଅବସ୍ଥାକୁ ବିକ୍ଷିପ୍ତାବସ୍ଥା କୁହାଯାଏ ।

ଏକାଗ୍ରତା - ଏକାଗ୍ର ଓ ଏକତାନ ଏହି ଉଭୟ ଶବ୍ଦ ଏକ ଅର୍ଥରେ ପ୍ରଯୁଜ୍ୟ । ଚିତ୍ତ ଯେଉଁ ଅବସ୍ଥାରେ ଏକ ବାହ୍ୟ ବସ୍ତୁ ବା କୌଣସି ଆଭ୍ୟନ୍ତରୀଣ ବସ୍ତୁ ଅବଲମ୍ବନ କରି ନିର୍ବାତସ୍ଥ ଦୀପଶିଖା ପରି ନିଶ୍ଚଳ ରହେ, ଅଥବା ଯେଉଁ ଅବସ୍ଥାରେ ଚିତ୍ତର ରଜସ୍ତମୋବୃତ୍ତି ଅଭିଭୂତ ହୋଇ କେବଳ ସାତ୍ତ୍ୱିକ ବୃତ୍ତି ଉଦୟ ହୁଏ ସେହି ଅବସ୍ଥାର ନାମ ଏକାଗ୍ରବସ୍ଥା ।

ନିରୁଦ୍ଧାବସ୍ଥା- ଏକାଗ୍ରାବସ୍ଥା ଓ ନିରୁଦ୍ଧାବସ୍ଥା ମଧ୍ୟରେ ଯଥେଷ୍ଟ ପ୍ରଭେଦ ଅଛି । ଏକାଗ୍ରାବସ୍ଥାରେ ଚିତ୍ତର କୌଣସି ନା କୌଣସି ଅବଲମ୍ବନ ଥାଏ; କିନ୍ତୁ ନିରୁଦ୍ଧାବସ୍ଥାରେ ତାହା ନଥାଏ । ଯେଉଁ ଅବସ୍ଥାରେ ଚିତ୍ତ ନିଜର କାରଣୀଭୂତ ପ୍ରକୃତିପ୍ରାପ୍ତ ହୋଇ ନିଶ୍ଚେଷ୍ଟ ଏବଂ ଦଗ୍ଧସୂତ୍ର ପରି କେବଳ ସଂସ୍କାରଭାବାପନ୍ନ ହୋଇଥାଏ ଅର୍ଥାତ୍ ଯେଉଁ ଅବସ୍ଥାରେ ତାହାର କୌଣସି ପ୍ରକାର ବିସଦୃଶ ପରିଣାମ ନଥାଏ ସେହି ଅବସ୍ଥାର ନାମ ନିରୁଦ୍ଧାବସ୍ଥା । ଏହି ପାଞ୍ଚ ପ୍ରକାର ଅବସ୍ଥା ମଧ୍ୟରେ ପ୍ରଥମୋକ୍ତ ଅବସ୍ଥାତ୍ରୟ ସଙ୍ଗେ ଯୋଗର କୌଣସି ସମ୍ପର୍କ ନାହିଁ; କିନ୍ତୁଏକାଗ୍ର ଓ ନିରୁଦ୍ଧାବସ୍ଥା ସହିତ ଯଥେଷ୍ଟ ସମ୍ପର୍କ ଅଛି । ଏହି ଉଭୟ ଅବସ୍ଥା ମଧ୍ୟରେ ନିରୁଦ୍ଧାବସ୍ଥା ହିଁ ଶ୍ରେଷ୍ଠ, କିନ୍ତୁ ଏହା ସହଜ ବୋଧଗମ୍ୟ ନୁହେଁ । ଏହି ଅବସ୍ଥା ପ୍ରାପ୍ତି ସକାଶେ ଯୋଗୀକୁ ପ୍ରଥମେ ଅଭ୍ୟାସଦ୍ୱାରା ଚିତ୍ତର କ୍ଷିପ୍ତ, ମୂଢ଼ ଓ ବିକ୍ଷିପ୍ତାବସ୍ଥା ଦୂର କରିବାକୁ ହେବ । ଅନ୍ତରର ଏକାଗ୍ର ଓ ନିରୁଦ୍ଧାବସ୍ଥା ପାଇଁ ଯତ୍ନ କରିବାକୁ ହେବ । ଯେତେବେଳେ ନିରୁଦ୍ଧାବସ୍ଥାରେ ଯୋଗୀର ଚିତ୍ତ ସ୍ଥିତ ହୁଏ, ସେତେବେଳେ ପୁରୁଷ ଦ୍ରଷ୍ଟବ୍ୟ ରୂପେ ଅବସ୍ଥାନ କରେ । ଏହି ଅବସ୍ଥା ହିଁ ଯୋଗୀର ଚରମ ଲକ୍ଷ୍ୟ । ଏହି ଅବସ୍ଥାରେ ଚିତ୍ତରେ ଅନ୍ୟ କୌଣସି ବିକ୍ଷେପ ନଥାଏ ।

ମନୋବୃତ୍ତି - ମନୋବୃତ୍ତିର ପାଞ୍ଚ ପ୍ରକାର ଯଥା - ପ୍ରମାଣ, ବିପର୍ଯ୍ୟୟ, ବିକଳ୍ପ, ନିଦ୍ରା ଓ ସ୍ମୃତି । ପ୍ରମାଣ ତ୍ରିବିଧ - ପ୍ରତ୍ୟକ୍ଷ, ଅନୁମାନ ଓ ଆଗମ । ପୁନଶ୍ଚ ବୃତ୍ତିସମୁଚୟକ୍ଲିଷ୍ଟାକ୍ଲିଷ୍ଟ ଭେଦରେ ଦ୍ୱିବିଧ । ରାଗ, ଦ୍ୱେଷ, କାମ, କ୍ରୋଧ ପ୍ରଭୃତି ବୃତ୍ତି କ୍ଲେଶର କାରଣ, ଅତଏବ ତାହା କ୍ଲିଷ୍ଟ । ଶ୍ରଦ୍ଧା, ଭକ୍ତି, କରୁଣା ପ୍ରଭୃତି ବୃତ୍ତି ଦୁଃଖନିବୃତ୍ତ ରୂପ ମୋକ୍ଷର କାରଣ, ତେଣୁ ତାହା ଅକ୍ଲିଷ୍ଟ । କ୍ଲିଷ୍ଟବୃତ୍ତି ହେୟ ଓ ଅକ୍ଲିଷ୍ଟବୃତ୍ତି ଉପାଦେୟ; କିନ୍ତୁ ଯୋଗାଭ୍ୟାସରେଏହି ଉଭୟ ବୃତ୍ତିନିରୋଧ ଆବଶ୍ୟକ ।

ମିଥ୍ୟାଜ୍ଞାନ ବା ଭ୍ରମକୁ ବିପର୍ଯ୍ୟୟ କହି । ଅର୍ଥାତ୍ ଯେଉଁ ଜ୍ଞାନ ପ୍ରତ୍ୟକ୍ଷଦର୍ଶନ ପରେ ଭ୍ରମାତ୍ମକ ପ୍ରତୀତ ହୁଏ ତାହାହିଁ ବିପର୍ଯ୍ୟୟ, ଯଥା- ରଜ୍ଜୁରେ ସର୍ପଭ୍ରାନ୍ତି ଶୁକ୍ତିରେ ରଜତ ଭ୍ରାନ୍ତି ଇତ୍ୟାଦି । ବସ୍ତୁ ନଥାଇ ତନ୍ନାମାତ୍ମକ ଶବ୍ଦଜନିତ ଯେଉଁ ମନୋବୃତ୍ତିର ସ୍ଫୁରଣ ହୁଏ ତାହାକୁ ବିକଳ୍ପ କୁହାଯାଏ, ଯଥା - ଆକାଶ କୁସୁମ ।

ନିଦ୍ରା (ସୂ) 'ଅଭାବ-ପ୍ରତ୍ୟାୟାଲମ୍ବନା ବୃତ୍ତିର୍ନିଦ୍ରା' ।

ଅର୍ଥାତ୍ ନିଦ୍ରିତାବସ୍ଥାରେ ଅନ୍ୟ ସକଳ ବୃତ୍ତିର ଅଭାବ ଥାଏ, କିନ୍ତୁ ନିଦ୍ରାରୁ ଉଠିବା ପରେ ନିଦ୍ରିତ ହୋଇଥିବା ଜ୍ଞାନ ହୁଏ । ଯଦି ନିଦ୍ରା ବୃତ୍ତି ହୋଇ ନଥା'ନ୍ତା ତେବେ ସେହିପରି ସ୍ମୃତି ହୁଅନ୍ତା ନାହିଁ । ଅତଏବ ଯାହା ସ୍ମରଣ ହୁଏ ତାହା ଅବଶ୍ୟ ବୃତ୍ତି ।

(ସୂ) 'ଅନୁଭୂତିବିଷୟାଽସମ୍ପ୍ରମୋଷଃସ୍ମୃତିଃ' ।

ପୂର୍ବାନୁଭୂତ ବିଷୟ ପୁନଶ୍ଚ ସ୍ମରଣ ହୋଇ ତଦ୍‌ବିଷୟକ ଯେଉଁ ବୃତ୍ତି ଉଦୟ ହୁଏ ତାହାର ନାମ ସ୍ମୃତି, ଯଥା - ଆମ୍ଭେମାନେ ଥରେ କୌଣସି ବ୍ୟକ୍ତିକୁ ଦେଖିଥିଲେ ପୁନଶ୍ଚ ସେହି ବ୍ୟକ୍ତିର ସ୍ମରଣ ମାତ୍ରେ ତାହାର ଆକାର ପ୍ରକାର ଓ ତଦାନୁସଙ୍ଗିକ ସମସ୍ତ ବିଷୟ ବୃତ୍ତ୍ୟାକାରେ ସ୍ଫୁରଣ ହୁଏ ।

(ସୂ) 'ଅଭ୍ୟାସବୈରାଗ୍ୟାଭ୍ୟଂ ତନ୍ନିରୋଧଃ' ।

ଅଭ୍ୟାସ ଓ ଅନାସକ୍ତିଦ୍ୱାରା ପୂର୍ବୋକ୍ତ ପଞ୍ଚବିଧ ମନୋବୃତ୍ତିର ନିରୋଧ ହୁଏ ।

(ସୂ) 'ତତ୍ର ସ୍ଥିତୌ ଯତ୍ନୋଽଭ୍ୟାସଃ' । ବୃତ୍ତି ନିରୋଧ ପାଇଁ ନିରବଚ୍ଛିନ୍ନ ପ୍ରଯତ୍ନର ନାମ ଅଭ୍ୟାସ ।

(ସୂ) 'ସ ତୁ ଦୀର୍ଘକାଳ ନୈରନ୍ତର୍ଯ୍ୟସତ୍କାରସେବିତୋ ଦୃଢ଼ଭୂମିଃ' । ଅଭ୍ୟାସ ଦିନକରେ ହୁଏ ନାହିଁ; ସେଥିପାଇଁ ଉପରୋକ୍ତ ସୂତ୍ରରେ କହିଛନ୍ତି- ଦୀର୍ଘକାଳ ଆଦର ସହକାରେ ଅଭ୍ୟାସ କଲେ ଅଭ୍ୟାସ ଦୃଢ଼ମୂଳ ହୁଏ ।

(ସୂ) 'ଦୃଷ୍ଟାନୁଶ୍ରବିକବିଷୟବିତୃଷ୍ଣସ୍ୟ ବଶୀକାର ସଂଜ୍ଞା ବୈରାଗ୍ୟମ୍' ।

ଦୃଷ୍ଟ ଓ ଶ୍ରୁତ ବିଷୟରେ ଯେଉଁ ବିତୃଷ୍ଣା ଉଦୟ ହୁଏ ତାହାର ବଶୀକରଣ ସଂଜ୍ଞାକୁ ବୈରାଗ୍ୟ କହି ।

(ସୂ) ତତ୍ ପରଂ ପୁରୁଷଖ୍ୟାତେର୍ଗୁଣବୈତୃଷ୍ଣ୍ୟମ୍' ।

ଯେଉଁ ବୈରାଗ୍ୟଦ୍ୱାରା ପୁରୁଷର ପ୍ରକୃତ ବୋଧରୁ ତ୍ରିଗୁଣରେ ସୁଦ୍ଧା ଅନାସକ୍ତି ଜାତ ହୁଏ ତାହା ଶ୍ରେଷ୍ଠ ବୈରାଗ୍ୟ ।

(ସୂ) ବିତର୍କବିଚାରାନନ୍ଦାସ୍ମିତାନୁଗମାତ୍ସଂପ୍ରଜ୍ଞାତଃ' ।

ସମାଧି - ସଂପ୍ରଜ୍ଞାତ ଓ ଅସଂପ୍ରଜ୍ଞାତ ଭେଦରେ ସମାଧି ଦୁଇ ପ୍ରକାର । ଯେଉଁ ସମାଧିଦ୍ୱାରା ପ୍ରକୃତିର ସମସ୍ତ ଶକ୍ତି ନିରୋଧକ୍ଷମତା ଆସେ ତାହାର ନାମ ସଂପ୍ରଜ୍ଞାତ ସମାଧି, ଏହି ସଂପ୍ରଜ୍ଞାତ ସମାଧି, ବିତର୍କ, ବିଚାର,ଆନନ୍ଦ ଓ ଅସ୍ମିତା ଏହି ଚାରିଭାଗରେ ବିଭକ୍ତ ।

(ସୂ) ବିରାମ ପ୍ରତ୍ୟାଭ୍ୟାସପୂର୍ବଃସଂସ୍କାରଶେଷୋଽନ୍ୟଃ' ।

ପ୍ରବଳ ବୈରାଗ୍ୟବଶତଃ ଯେତେବେଳେ ସମସ୍ତ ଚିତ୍ତବୃତ୍ତିର ନିବୃତ୍ତି ହୁଏ ସେତେବେଳେ ଚିତ୍ତ ସଂସ୍କାରଶୂନ୍ୟ ହୁଏ । ସେହି ସଂସ୍କାରଶୂନ୍ୟ ନିରାଲମ୍ବାବସ୍ଥାକୁ ଅସଂପ୍ରଜ୍ଞାତ ସମାଧି କହି । ଏହି ଅବସ୍ଥାକୁ ବେଦାନ୍ତ ମତରେ ନିର୍ବିକଳ୍ପ ସମାଧି ଆଖ୍ୟା ଦିଆଯାଇଛି ।

(ସୂ) ଭବ - ପ୍ରତ୍ୟୟୋବିଦେହପ୍ରକୃତି-ଲୟାନାଂ ।

ବିଦେହଲୟ ଓ ପ୍ରକୃତିଲୟ ଏହି ଅବସ୍ଥା ଦ୍ୱୟ ସଂପ୍ରଜ୍ଞାତ୍‌ସମାଧିମୂଳକ । ଏ ଉଭୟ ମୁକ୍ତିର କାରଣ ନୁହନ୍ତି । ଯେଉଁମାନେ ଶ୍ରଦ୍ଧା, ବୀର୍ଯ୍ୟ, ସ୍ମୃତି, ସମାଧି ଓ ଅତୁଳ ପ୍ରଜ୍ଞାଲାଭ କରିଅଛନ୍ତି ସେମାନେ ବିଦେହଲୟ ଏବଂ ପ୍ରକୃତିଲୟ ଅବସ୍ଥାବିହୀନ ଜୀବନ୍ମୁକ୍ତ ଯୋଗୀ ।

(ସୂ) ତୀବ୍ରସଂବେଗାନାମାସନ୍ନଃ ।

ଯେଉଁମାନଙ୍କର ସଂବେଗ ତୀବ୍ର, ସେମାନଙ୍କର ସମାଧି ଶୀଘ୍ର ଲାଭ ହୁଏ । ସଂବେଗ ତିନି ପ୍ରକାର - ତନୁ, ମଧ୍ୟା ଓ ଅଧିମାତ୍ର । ମହର୍ଷି ପତଞ୍ଜଳି ସମାଧି ଲାଭର ଗୋଟିଏ ସୁଗମ ଉପାୟ ନିର୍ଦ୍ଧାରଣ କରିଅଛନ୍ତି - ତାହା ଈଶ୍ୱରୋପାସନା । ଅର୍ଥାତ୍ ଈଶ୍ୱର ଉପାସନାଦ୍ୱାରା ମୋକ୍ଷ ଲାଭ ହୁଏ ।

(ସୂ) ଈଶ୍ୱରପ୍ରଣିଧାନାଦ୍‌ବା ।

ଈଶ୍ୱରୋପାସନା କରିବାକୁ ହେଲେ କାୟିକ, ବାଚିକ ଓ ମାନସିକ ସମସ୍ତ ବ୍ୟାପାର ଈଶ୍ୱରାଧୀନ କରି, ଫଳ ପ୍ରତି ଦୃଷ୍ଟି ନରଖି ସୁଖାନୁସନ୍ଧାନ ରତ ନହୋଇ ସମସ୍ତ କର୍ମଫଳ ଈଶ୍ୱରାର୍ପଣ କରି କର୍ମ କରିବାକୁ ହେବ । ଶୁଦ୍ଧଭକ୍ତି ସହକାରେ ଈଶ୍ୱର ପ୍ରଣିଧାନଦ୍ୱାରା ସମାଧି ଲାଭ ହୁଏ । ଈଶ୍ୱରଙ୍କ ସ୍ୱରୂପଜ୍ଞାନ ବ୍ୟତୀତ ତାହାଙ୍କ ପ୍ରତି ଅବ୍ୟଭିଚାରିଣୀ ଭକ୍ତି ଜନ୍ମିବ ନାହିଁ ବୋଲି ଭଗବାନ୍ ପତଞ୍ଜଳି ନିମ୍ନୋକ୍ତ ସୂତ୍ରରେ ଈଶ୍ୱରଙ୍କର ସ୍ୱରୂପ ନିର୍ଦ୍ଦେଶ କରିଅଛନ୍ତି ।

(ସୂ) କ୍ଳେଶକର୍ମବିପାକାଶୟୈରପରାମୃଷ୍ଟଃ ପୁରୁଷବିଶେଷ ଈଶ୍ୱରଃ ।

ଯାହାଙ୍କୁ କ୍ଳେଶ, କର୍ମବିପାକ ଏବଂ ଆଶୟ ସ୍ପର୍ଶ କରିପାରେ ନାହିଁ ଏପରି ପୁରୁଷବିଶେଷକୁ ଈଶ୍ୱର କହି ।

(ସୂ) "ତତ୍ର ନିରତିଶୟଂ ସର୍ବଜ୍ଞତ୍ୱବୀଜଂ" ।

ସେହି ଈଶ୍ୱର ନିତ୍ୟ, ଅନାଦି, ଅନନ୍ତ ଏବଂ ତାହାଙ୍କଠାରେ ନିରତିଶୟ ସର୍ବଜ୍ଞତ୍ୱ ବୀଜ ନିହିତ ଥିବାରୁ ସେ ସର୍ବଜ୍ଞ ।

(ସୂ) 'ସ ପୂର୍ବେଷାମପି ଗୁରୁଃ କାଳେନାନବଚ୍ଛେଦାତ୍' ।

ସେ କାଳଦ୍ୱାରା ଅନବଚ୍ଛିନ୍ନ । ଅତଏବ ଅନାଦି; ସେହିହେତୁ ସେ ପୂର୍ବାଚାର୍ଯ୍ୟମାନଙ୍କର ମଧ୍ୟ ଗୁରୁ; ତାହାଙ୍କର ବାଚକ ଶବ୍ଦ ପ୍ରଣବ, ସେହିତ ପ୍ରଣବ ମନ୍ତ୍ରର ଜପ ଓ ତାହାର ଅର୍ଥ ଧ୍ୟାନ ହିଁ ଉପାସନା ।

(ସୂ) ତତଃ ପ୍ରତ୍ୟକ୍ ଚେତନାଧିଗମୋଽପ୍ୟନ୍ତରାୟ ଭାବଶ୍ଚ ।

ସେହି ଉପାସନାଦ୍ୱାରା ଅନ୍ତର୍ଦର୍ଶନ ପ୍ରାପ୍ତି ଓ ଅନ୍ତରାୟ ଅଭାବ ହୁଏ । ନିମ୍ନୋକ୍ତ ସୂତ୍ରରେ ଅନ୍ତରାୟ କ'ଣ ତାହା ବିଶଦ ଭାବରେ ବୁଝାଇ ଦିଆଯାଇଛି ।

(ସୂ) ବ୍ୟାଧିସ୍ତ୍ୟାନସଂଶୟପ୍ରମାଦାଲସ୍ୟାବିରତି- ଭ୍ରାନ୍ତିଦର୍ଶନାଲବ୍ଧଭୂମିକତ୍ୱାନବସ୍ଥିତତ୍ୱାନି ଚିତ୍ତବିକ୍ଷେପାସ୍ତେଽନ୍ତରାୟାଃ ।

ବ୍ୟାଧି, ସ୍ତ୍ୟାନ, ସଂଶୟ, ପ୍ରମାଦ, ଆଳସ୍ୟ, ଅବିରତି, ଭ୍ରାନ୍ତିଦର୍ଶନ, ଅଲବ୍ଧଭୂମିକତ୍ୱ ଓ ଅନବସ୍ଥିତ୍ୱ ଏଗୁଡ଼ିକୁ ଚିତ୍ତ ବିକ୍ଷେପ କହି । ଏଗୁଡ଼ିକ ଯୋଗର ଅନ୍ତରାୟ । ଧାତୁ ବୈଷମ୍ୟ ଜନିତଜ୍ୱରାଦିକି ବ୍ୟାଧି, ଅକର୍ମଣ୍ୟତାକୁ ସ୍ତ୍ୟାନ, ଯୋଗ କରିବି କି ନାହିଁ ଇତ୍ୟାଦି ସନ୍ଦେହକୁ ସଂଶୟ, ଅନବଧାନତାକୁ ପ୍ରମାଦ, ଯୋଗବିଷୟକ ଯତ୍ନାଭାବକୁ ଆଳସ୍ୟ, ଔଦାସିନ୍ୟକୁ ଅବିରତି, ଅନିବାର୍ଯ୍ୟ ବିଷୟାସକ୍ତିକି ଭ୍ରାନ୍ତି ଦର୍ଶନ, ସମାଧି ଭୂମିର ଅପ୍ରାପ୍ତିକି ଅଲବ୍ଧଭୂମିକତ୍ୱ ଏବଂ ସମାଧିରେ ଚିତ୍ତର ଅସ୍ଥୈର୍ଯ୍ୟକୁ ଅନବସ୍ଥିତତ୍ୱ କୁହାଯାଏ । ଦୁଃଖ, ଶାରୀରିକ କମ୍ପ, ଶ୍ୱାସ, ପ୍ରଶ୍ୱାସ ଏବଂ ଇଚ୍ଛାବ୍ୟାଘାତଜନିତ କ୍ଷୋଭରୁ ଯେଉଁ ମନୋବିକାର ଉଦୟ ହୁଏ ସେହି ସକଳ ଯୋଗର ଅନ୍ତରାୟ ।

(ସୂ) ତତ୍ପ୍ରତିଷେଧାର୍ଥମେକତତ୍ତ୍ୱାଭ୍ୟାସଃ ।

ସେହି ସକଳ ପ୍ରତିବନ୍ଧକର ପ୍ରତିଷେଧ ସକାଶେ ଏକତତ୍ତ୍ୱ ଅଭ୍ୟାସ କରିବାକୁ ହେବ । ଧ୍ୟାନବେଳେ ମନ ଅନ୍ୟତ୍ର ନ ଗଲା ପରି ଚେଷ୍ଟା କରିବ ଏବଂ ଚିତ୍ତପ୍ରସାଦନ ନିମନ୍ତେ ସୁଖ, ଦୁଃଖ, ପୁଣ୍ୟ ଓ ପାପ ବିଷୟରେ ମୈତ୍ରୀ, କରୁଣା, ମୁଦିତା ଓ ଉପେକ୍ଷା ଭାବନା କରିବ । ଅର୍ଥାତ୍ ପରସୁଖରେ ସୁଖୀ ହେବ, ଈର୍ଷା କରିବ ନାହିଁ; ପର ଦୁଃଖରେ ଦୁଃଖୀ ହେବ, ବିଦ୍ୱେଷ ରଖିବ ନାହିଁ, ପର ପୁଣ୍ୟରେ ହୃଷ୍ଟ ହେବ, ଅସୂୟା ରଖିବ ନାହିଁ; ପାପର ଉପେକ୍ଷା କରିବ । ଅତଏବ ସୁଖୀ ପ୍ରତି ମୈତ୍ରୀ, ଦୁଃଖୀ ପ୍ରତି କରୁଣା, ପୁଣ୍ୟବାନ୍ ପ୍ରତି ମୁଦିତା ଓ ପାପୀ ପ୍ରତି ଉପେକ୍ଷା କରିବା ଯୋଗ ଶାସ୍ତ୍ରର ଅଭିମତ ।

ଚିତ୍ତର ନିର୍ମଳତା ଓ ସ୍ଥିରତା ଲାଗି ଏକମାତ୍ର ଉପାୟ ପ୍ରାଣାୟମ । ପ୍ରଥମେ ଶାସ୍ତ୍ରୋକ୍ତ ବିଧି ଅବଲମ୍ବନ କରି ଗୁରୂପଦେଶକ୍ରମେ ନାସିକାଦ୍ୱାରା ଅମୃତମୟ ବାୟୁ ଗ୍ରହଣ କରି ପରିମିତ ରୂପେ ସେ ବାୟୁ ଧାରଣ କରିବ; ପରେ ଧୀରେ ଧୀରେ ପରିତ୍ୟାଗ, କରିବ । ଏହି ପ୍ରାଣାୟାମ ସିଦ୍ଧ ହେଲେ ମନର ସମସ୍ତ ବିକ୍ଷେପ ବିଦୂରିତ ହୁଏ, ଚିତ୍ତ ନିର୍ମଳ ଓ ସ୍ଥିର ରହେ ।

ଭଗବାନ୍ ପତଞ୍ଜଳି ଯେଉଁ ସମସ୍ତ ଧାରଣା ପ୍ରଣାଳୀ ଉଲ୍ଲିଖିତ ସୂତ୍ରମାନଙ୍କରେ କହିଛନ୍ତି, ସେଥିରୁ କୌଣସି ଗୋଟିକର ଅଭ୍ୟାସରେ ସର୍ବବିଷୟବତୀ ପ୍ରବୃତ୍ତି ପ୍ରଭାବରେ ସର୍ବତତ୍ତ୍ୱ ଜ୍ଞାତ ହୋଇ ଚିତ୍ତକୁ ସର୍ବତତ୍ତ୍ୱମୟ କରିପାରିଲେ ତାହା ସ୍ଥିର ହୁଏ । ସ୍ଥାନ ବିଶେଷରେ ଧାରଣାର ଫଳରେ ପ୍ରଭେଦ ମଧ୍ୟ ଅଛି, ଯଥା- ନାସାଗ୍ରରେ ମନ ସ୍ଥିର ହେବାର କେତେଦିନ ପରେ ଦିବ୍ୟ

ଗନ୍ଧ ଆଘ୍ରାଣ, ଜିହ୍ବାମୂଳରେ ଦିବ୍ୟଶବ୍ଦ, ଜିହ୍ବାଗ୍ରରେ ଦିବ୍ୟ ରସାସ୍ବଦନ, ଜିହ୍ବାମଧ୍ୟରେ କୌଣସି ବସ୍ତୁ ସଂସର୍ଗରେ ଆସିଲା ପରି ଭାବ ଏବଂ ତାଲୁରେ ଦିବ୍ୟବସ୍ତୁ ଦର୍ଶନ ଲାଭ ହୁଏ । ଯାହାର ଚିତ୍ତବିକ୍ଷିପ୍ତ ହୋଇଥାଏ, ସେ ଯଦି ଯୋଗାଭ୍ୟାସରେ ରତ ଥାଏ ଅଥଚ ଯୋଗର ସତ୍ୟତାରେ ସଂଶୟାପନ୍ନ, ତାହାର ଉପରୋକ୍ତ ବିଷୟାନୁଭବରେ ସନ୍ଦେହ ଦୂର ହୁଏ ଏବଂ ଚିତ୍ତ ସ୍ଥୈର୍ଯ୍ୟ ଆସେ । ପୁନଶ୍ଚ ଯୋଗାଭ୍ୟାସର ଅନ୍ୟାନ୍ୟ ପ୍ରଣାଳୀ ନିମ୍ନଲିଖିତ ସୂତ୍ରରେ ନିର୍ଦ୍ଦେଶ କରିଅଛନ୍ତି ।

(ସୂ) 'ବିଶୋକାବା ଜ୍ୟୋତିଷ୍ମତୀ' ।

ଅଥବା ଶୋକରହିତ ଜ୍ୟୋତିଷ୍ମନ୍ତ ବସ୍ତୁ ଉପରେ ଧ୍ୟାନ କରିବାଦ୍ବାରା ଚିତ୍ତ ସ୍ଥିର ହୁଏ ।

(ସୂ) ବୀତରାଗ ବିଷୟଂ ବା ଚିତ୍ତମ୍ ।

ଅଥବା ଚିତ୍ତ ବିଷୟତୃଷ୍ଣାରେ ବୀତସ୍ପୃହ ହେଲେ ସ୍ଥିର ହୁଏ ।

(ସୂ) 'ସ୍ୱପ୍ନନିଦ୍ରାଜ୍ଞାନାଲମ୍ବନଂ ବା' ।

ନିଦ୍ରିତାବସ୍ଥାର ସ୍ୱପ୍ନାନୁଭୂତ ଜ୍ଞାନାବଲମ୍ବନରେ ଧ୍ୟାନ କଲେ ଚିତ୍ତ ସ୍ଥିର ହୁଏ । ଅର୍ଥାତ୍ ସୌଭାଗ୍ୟବଶତଃ ମନୁଷ୍ୟ ନିଦ୍ରିତାବସ୍ଥାରେ ସ୍ୱପ୍ନରେ ଅନୁଭବ କରେ ଯେ ସେ କୌଣସି ଦିବ୍ୟ ମୂର୍ତ୍ତିର ଦର୍ଶନ ଲାଭ କରିଅଛି, ତାହାଙ୍କ ସହିତ କଥୋପକଥନ କରୁଅଛି ଏବଂ କେବେ କେବେ ସେ ଦିବ୍ୟ ସଙ୍ଗୀତ ଶ୍ରବଣ କରୁଅଛି ଅଥବା ଆନନ୍ଦମୟ ସ୍ଥିତିରେ ରହିଅଛି । ତଦ୍ବାରା ତା'ର ମନରେ ଅନୁଭୂତ ବିଷୟର ଏକ ପ୍ରକାର ସଂସ୍କାର ଦୃଢ଼ମୂଳ ହୋଇଥାଏ, ସେହି ସ୍ୱପ୍ନକୁ ସେ ସତ୍ୟ ମନେକରି ତା'ର ଧ୍ୟାନରେ ରତ ହେଲେ ଚିତ୍ତ ସ୍ଥିର ହୁଏ; ଅଥବା ନିଜର ଅଭିରୁଚି ଅନୁସାରେ ଧ୍ୟାନକଲେ ଚିତ୍ତ ସ୍ଥିର ହୁଏ । ପୂର୍ବୋକ୍ତ ଅଭ୍ୟାସଦ୍ବାରା ଚିତ୍ତସ୍ଥିର ହେଲେ ସୂକ୍ଷ୍ମତମଠାରୁ ମହତ୍ତମ ପର୍ଯ୍ୟନ୍ତ ବଶୀଭୂତ କରାଯାଏ । ଯେତେବେଳେ ଅତି ସ୍ଥୂଳଠାରୁ ଅତି ସୂକ୍ଷ୍ମ ବସ୍ତୁରେ ସୁଦ୍ଧା ସ୍ଥିର ଚିତ୍ତରେ ଧାରଣା କରିବାର ଶକ୍ତି ଜନ୍ମିବ ସେତେବେଳେ ଈଶ୍ୱରଙ୍କଠାରେ ଚିତ୍ତ ସ୍ଥିର କରିବାର ସାମର୍ଥ୍ୟ ଜନ୍ମିବ । ସେ ସମୟରେ କୌଣସି ବସ୍ତୁରେ କି କୌଣସି ତତ୍ତ୍ୱରେ ମନଃ ସ୍ଥିର କରିବାକୁ ହେଲେ ତାହାର ଆଉ ବିଘ୍ନ ଉପସ୍ଥିତ ହେବ ନାହିଁ ଏବଂ ସେତେବେଳେ ଆଉ ଏକାଗ୍ରତା ଅଭ୍ୟାସର ପ୍ରୟୋଜନ ହୁଏ ନାହିଁ । ଯେପରି ନିର୍ମଳ ସ୍ଫଟିକ ଯେଉଁ ବର୍ଣ୍ଣର ପଦାର୍ଥ ସହିତ ସଂଲଗ୍ନ କରାଯାଏ ତତ୍କ୍ଷଣାତ୍ ସେହି ପଦାର୍ଥର ବର୍ଣ୍ଣରେ ରଞ୍ଜିତ ହୋଇଯାଏ ତଦ୍ରୂପ ଏକାଗ୍ରତା ବଳରେ ନିର୍ମଳଚିତ୍ତ ସର୍ବ ବସ୍ତୁରେ, ସର୍ବ ବିଷୟରେ ଏପରିକି ଈଶ୍ୱର ପର୍ଯ୍ୟନ୍ତ ତଦାକାରତା ପ୍ରାପ୍ତ ହୋଇପାରେ ।

(ସୂ) ତତ୍ର ଶବ୍ଦାର୍ଥଜ୍ଞାନବିକଳ୍ପୈଃ ସଙ୍କୀର୍ଣ୍ଣା ସବିତର୍କା । ସମାପତ୍ତିଃ ।

ସବିତର୍କ, ନିର୍ବିତର୍କ, ବିଚାର ଓ ନିର୍ବିଚାର ଭେଦରେ ସମାଧି ଚାରି ପ୍ରକାର । ସବିତର୍କ- ଶବ୍ଦ, ଅର୍ଥ ଏବଂ ଜ୍ଞାନମିଶ୍ରିତ ସମାଧିର ନାମ ସବିତର୍କ ସମାଧି ।

ନିର୍ବିତର୍କ - (ସୂ) ସ୍ମୃତିପରିଶୁଦ୍ଧୌ ସ୍ୱରୂପଶୂନ୍ୟେବାର୍ଥ ମାତ୍ରନିର୍ଭାସା ନିର୍ବିତର୍କା ।

ଯେଉଁ ସମାଧିରେ ସ୍ମୃତି ପରିଶୁଦ୍ଧ ହୁଏ ଅଥବା ଗୁଣଶୂନ୍ୟ ହୁଏଏବଂ କେବଳ ଧ୍ୟେୟ ବସ୍ତୁର ଅର୍ଥ ମାତ୍ର ଉଦ୍ଭାସିତ ହୁଏ ସେହି ସମାଧିକୁ ନିର୍ବିତର୍କ ସମାଧି କହି ।

ସବିଚାର ଓ ନିର୍ବିଚାର- (ସୂ) ଏତୟୈବ ସବିଚାରା ନିର୍ବିଚାରା ଚ ସୂକ୍ଷ୍ମ ବିଷୟା ବ୍ୟାଖ୍ୟାତା ।

ଉପରୋକ୍ତ ସବିତର୍କ ଓ ନିର୍ବିତର୍କ ସମାଧି ପରେ ସବିଚାର ଓ ନିର୍ବିଚାର ସମାଧି ବିଷୟ ସୂକ୍ଷ୍ମ ଭାବରେ ବୁଝାଯାଇଛି । ଏମାନଙ୍କ ମଧ୍ୟରୁ ନିର୍ବିଚାରସମାଧି ଶ୍ରେଷ୍ଠ ।

(ସୂ) ସୂକ୍ଷ୍ମବିଷୟତ୍ୱଂଚାଲିଙ୍ଗପର୍ଯବସାନମ୍ ।

ସୂକ୍ଷ୍ମବିଷୟ ସମୂହ ପ୍ରଧାନରେ ପର୍ଯ୍ୟବସିତ ।

(ସୂ) 'ତା ଏବ ସବୀଜଃ ସମାଧିଃ' ।

ଉପରୋକ୍ତ ସମସ୍ତ ସମାଧି ସବୀଜ ସମାଧି ଅଟନ୍ତି ।

(ସୂ) 'ନିର୍ବିଚାରବୈଶାରଦ୍ୟେଽଧ୍ୟାତ୍ମପ୍ରସାଦଃ' ।

ନିର୍ବିଚାରସମାଧିବିଶାରଦ ହେଲେ ଅଧ୍ୟାତ୍ମ ପ୍ରସାଦ ଲାଭ ହୁଏ ।

(ସୂ) 'ତତ୍ର ଋତଂଭରା ପ୍ରଜ୍ଞା' ।

ସେଥିରେ ପ୍ରଜ୍ଞା ଅର୍ଥାତ୍ ଜ୍ଞାନ ସତ୍ୟମୂଳକ ବା ସତ୍ୟ ପୂର୍ଣ୍ଣ ହୁଏ ।

(ସୂ) 'ଶ୍ରୁତାନୁମାନପ୍ରଜ୍ଞାଭ୍ୟାମନ୍ୟବିଷୟ ବିଶେଷତ୍ୱାତ୍,

ଶ୍ରୁତାନୁମାନଜାତ ପ୍ରଜ୍ଞା ଅର୍ଥାତ୍ ଶ୍ରବଣ କିମ୍ବା ଅନୁମାନଦ୍ୱାରା ଯେଉଁ ଜ୍ଞାନ ଜନ୍ମେ, ତାହା ସତ୍ୟଜ୍ଞାନ ଋତମ୍ଭରା ପ୍ରଜ୍ଞାର ସମୁଲ୍ୟ ନୁହେଁ । ଋତମ୍ଭରା ପ୍ରଜ୍ଞା ସର୍ବଶ୍ରେଷ୍ଠ; ତାହା ସହିତ ଅନ୍ୟ କୌଣସି ଜ୍ଞାନର ତୁଳନା ନାହିଁ ।

(ସୂ) 'ତଜ୍ଜଃ ସଂସ୍କାରୋଽନ୍ୟସଂସ୍କାର ପ୍ରତିବନ୍ଧୀ' ।

ତତ୍ ପ୍ରସୂତ ସଂସ୍କାର ଅନ୍ୟ ସଂସ୍କାରର ପ୍ରତିବନ୍ଧକ ।

(ସୂ) ତସ୍ୟାପି ନିରୋଧେ ସର୍ବନିରୋଧାନ୍ନିର୍ବୀଜଃ ସମାଧିଃ ।

ଏହି ସଂସ୍କାର ସୁଦ୍ଧା ନିରୁଦ୍ଧ ହେଲେ ସର୍ବ ନିରୋଧକ ନିର୍ଜୀବ ସମାଧିର ଆବିର୍ଭାବ ହୁଏ । ଯୋଗୀଗଣ ଋତମ୍ଭରା ପ୍ରଜ୍ଞାଦ୍ୱାରା ସମସ୍ତ ବସ୍ତୁତତ୍ତ୍ୱ ଜାଣିପାରନ୍ତି । ଏହି ନିର୍ବୀଜ ସମାଧି ତୃତୀୟାବସ୍ଥାରେ ପ୍ରକୃତି ମଧ୍ୟ ସ୍ୱତନ୍ତ୍ର ହୋଇଯାଏ । ପ୍ରକୃତି ସ୍ୱତନ୍ତ୍ର ହେଲେ ଆତ୍ମା ପ୍ରକୃତିବନ୍ଧନରୁ ମୁକ୍ତ ହୁଅନ୍ତି; ପରେ ଶରୀର ବା ଜନ୍ମ ମରଣ କିଛି ରହେ ନାହିଁ ।

## ଅଭ୍ୟାସପାଦ

ସମାଧି ଲାଭ କରିବାକୁ ଗଲେ ପ୍ରଥମେ କ୍ରିୟାଯୋଗ ଆବଶ୍ୟକ । ପୂର୍ବାଧ୍ୟାୟରେ କଥିତ ସମସ୍ତ ବିଷୟ ତାହା ଜ୍ଞାନଯୋଗ । ଚିତ୍ତ ସ୍ଥିର ଓ ନିର୍ମଳ ହେଲେ ମନୁଷ୍ୟ ଜ୍ଞାନଯୋଗର ଅଧିକାରୀ ହୁଏ । ଆପ୍ରସନ୍ନଚେତା ବ୍ୟକ୍ତି ପକ୍ଷେ ଚିତ୍ତର ନିର୍ମଳତା ଓ ସ୍ଥିରତା ଲାଗି ପ୍ରଥମେ କ୍ରିୟାଯୋଗ ଅଭ୍ୟାସ ଆବଶ୍ୟକ ।

କ୍ରିୟାଯୋଗ - ତପଃ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ ଏଗୁଡ଼ିକୁ କ୍ରିୟାଯୋଗ କହି । ଶ୍ରଦ୍ଧାପୂର୍ବକ ଶାସ୍ତ୍ରୋକ୍ତ ବ୍ରତାଦି ଅନୁଷ୍ଠାନର ନାମ ତପଃ, ଈଶ୍ୱର ପ୍ରତିପାଦକ ଶାସ୍ତ୍ରାଦି ଅଧ୍ୟୟନର ନାମ ସ୍ୱାଧ୍ୟାୟ । କାମନାଶୂନ୍ୟ ହୋଇଏକାଗ୍ରତା ସହକାରେ ଈଶ୍ୱରଙ୍କୁ ଭକ୍ତି ଓ ଶ୍ରଦ୍ଧା କରିବା ଈଶ୍ୱର ପ୍ରଣିଧାନ, ଈଶ୍ୱରଙ୍କ ସ୍ୱରୂପ ଜ୍ଞାନ ଅର୍ଥାତ୍ ଈଶ୍ୱର ବିଷୟକ ଜ୍ଞାନକୁ ମଧ୍ୟ ଈଶ୍ୱର ପ୍ରଣିଧାନ କୁହାଯାଏ ।

(ସୂ) ସ ସମାଧ- ଭାବନାର୍ଥଃ କ୍ଳେଶତନୁକରଣାର୍ଥଶ୍ଚଃ ।

ଉପରୋକ୍ତ କ୍ରିୟାଯୋଗ ସମାଧି ଅଭ୍ୟାସ ଓ କ୍ଳେଶସମୂହ କୃଶ କରିବା ପାଇଁ ଆବଶ୍ୟକ ।

(ସୂ) ଅବିଦ୍ୟାସ୍ମିତାରାଗଦ୍ୱେଷାଭିନିବେଶାଃକ୍ଳେଶାଃ' ।

କ୍ଳେଶ ପଞ୍ଚବିଧ - ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ।

(ସୂ) ଅବିଦ୍ୟା କ୍ଷେତ୍ରମୁତ୍ତରେଷାଂ ପ୍ରସୁପ୍ତ-ଚତୁ-ବିଚ୍ଛିନ୍ନୋଦାରାଣାମ୍ ।

ଅବିଦ୍ୟା ରୂପ କ୍ଷେତ୍ରରୁ ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ଉତ୍ପନ୍ନ ହୋଇଅଛନ୍ତି । ଏମାନେ କେତେବେଳେ, ପ୍ରସୁପ୍ତ ଭାବେ, କେତେବେଳେ ସୂକ୍ଷ୍ମଭାବେ, କେତେବେଳେ ବିଚ୍ଛିନ୍ନଭାବେ, କେତେବେଳେ ବା ଉଦାର ଭାବେ ଚିତ୍ତରେ ବିରାଜିତ ଥା'ନ୍ତି ।

ଅବିଦ୍ୟା - ଅନିତ୍ୟକୁ ନିତ୍ୟ, ଅଶୁଚିକି ଶୁଚି, ଦୁଃଖକୁ ସୁଖ ଓ ଅନାତ୍ମାକୁ ଆତ୍ମା ବୋଧ କରିବାର ନାମ ଅବିଦ୍ୟା । ଜୀବ ଶରୀର ଗ୍ରହଣ କରିବା ମାତ୍ରେ ଅବିଦ୍ୟା ତାହାର ଅନୁଧାବନ କରିଥାଏ ।

ଅସ୍ମିତା - ଦୃକ୍ ସହିତ ଦର୍ଶନ ଶକ୍ତିର ଅଭେଦାଭିମାନର ନାମ ଅସ୍ମିତା ।

(ସୂ) ସୁଖାନୁଶୟୀ ରାଗଃ । ସୁଖର ଅନୁସରଣ ହିଁ ରାଗ ।

(ସୂ) ଦୁଃଖାନୁଶୟୀ ଦ୍ୱେଷଃ । ଦୁଃଖର ଅବଲମ୍ବନ ହିଁ ଦ୍ୱେଷ ।

(ସୂ) ସ୍ୱ ରସବାହି ବିଦୁଷୋଽପି ତଥାରୂଢ଼ୋଽଭିନିବେଶଃ ।

ଅଭିନିବେଶ - ପୁନଃ ପୁନଃ ମୃତ୍ୟୁଯନ୍ତ୍ରଣା ଭୋଗକରି କି ପଣ୍ଡିତ କି ମୂର୍ଖ ସମସ୍ତ ଜୀବର

ମନୋମଧ୍ୟରେ ସେହି ସକଳ ମତ୍ୟୁଯନ୍ତ୍ରଣା ସମ୍ବନ୍ଧୀୟ ରାଶି ରାଶି ସଂସ୍କାର ରୂପ ସ୍ମୃତି ଜାଗରିତ ହୋଇ ସୁଦ୍ଧା ଯେ ମରିବାର ଅନିଚ୍ଛା ସ୍ଫୁରିତ ହୁଏ, ତାହାକୁ ଅଭିନିବେଶ କହି । କ୍ରିୟାଯୋଗ ଓ ଦ୍ୱାରା ପୂର୍ବୋକ୍ତ ପାଞ୍ଚପ୍ରକାରକ୍ଲେଶ କ୍ରମେ କ୍ରମେ କ୍ଷୀଣ ହୁଏ । ତାପରେ ସମାଧି ଲାଭ ନିସ୍ତେଜ କ୍ଲେଶଗୁଡ଼ିକ ଅନ୍ତର୍ହିତ ହୁଅନ୍ତି । କେବଳ ଧ୍ୟାନଦ୍ୱାରା ମଧ୍ୟ ଏ ସକଳ କ୍ଲେଶ କ୍ଷୟ ହୋଇପାରେ ।

କର୍ମାଶୟ - କର୍ମପ୍ରବୃତ୍ତିକ କର୍ମାଶୟ କହି । ଏହି କର୍ମାଶୟ ଦୃଷ୍ଟଜନ୍ମବେଦନୀୟ ଓ ଅଦୃଷ୍ଟଜନ୍ମବେଦନୀୟ ଭେଦରେ ଦୁଇ ପ୍ରକାର । ଯେ ସମସ୍ତ ଧର୍ମାଧର୍ମ କର୍ମଜୀବର ବର୍ତ୍ତମାନ ଜନ୍ମରେ ବେଦନାର କାରଣ ହୁଅନ୍ତି,ସେମାନଙ୍କୁ ଦୃଷ୍ଟଜନ୍ମବେଦନୀୟ ଏବଂ ଯେଉଁମାନେ ଭବିଷ୍ୟତ୍ କୌଣସି ଜନ୍ମରେ ବେଦନାର କାରଣ ହୁଅନ୍ତି ସେମାନଙ୍କୁ ଅଦୃଷ୍ଟଜନ୍ମବେଦନୀୟ କୁହାଯାଏ । କ୍ଲେଶ ଥିଲେ କ୍ଲେଶରୁ ଉତ୍ପନ୍ନ କର୍ମଶାୟରୁ ଜନ୍ମ ମରଣ ପ୍ରଭୃତି ଫଳ ମଧ୍ୟ ଥାଏ । ଯେହେତୁ ଏମାନେ ପୁଣ୍ୟାପୁଣ୍ୟରୂପ କର୍ମାଶୟ ନାମକ କାରଣରୁ ପ୍ରାଦୁର୍ଭୂତ ।

(ସୂ) ପରିଣାମତାପ-ସଂସ୍କାରଦୁଃଖୈର୍ଗୁଣବୃତ୍ତିବିରୋଧାଚ୍ଚ ସର୍ବମେବ ଦୁଃଖଂ ବିବେକିନଃ ।

ପରିଣାମତାପ ସ୍ୱରୂପ ଦୁଃଖ ସୁଖ ବିଚ୍ୟୁତିର ଆକାଙ୍କ୍ଷାସ୍ୱରୂପ ଦୁଃଖ ବା ସୁଖାନୁଶୟୀସଂସ୍କାର, ଦୁଃଖ ବା ଗୁଣବୃତ୍ତି ବିରୋଧ କ୍ରିୟାର ଦୁଃଖ ଏହି ସମସ୍ତ ଦୁଃଖକୁ ବିବେକୀ ମହାପୁରୁଷମାନେ ଯଥାଯଥ ଭାବେ ଗ୍ରହଣ କରନ୍ତି । ଉପସ୍ଥିତ ଦୁଃଖ ପରିତ୍ୟାଗର ଉପାୟ ସଙ୍ଗେ ସଙ୍ଗେ ଅନାଗତ ଦୁଃଖ ସୁଦ୍ଧା ସର୍ବଥା ପରିତ୍ୟାଜ୍ୟ ।

(ସୂ) 'ଦ୍ରଷ୍ଟୃ ଦୃଶ୍ୟୟୋଃ ସଂଯୋଗୋ ହେୟହେତୁଃ ।'

ଦ୍ରଷ୍ଟା ଓ ଦୃଶ୍ୟର ସଂଯୋଗ ତ୍ୟାଜ୍ୟର ହେତୁ । ପ୍ରକାଶକ୍ରିୟା, ସ୍ଥିତିଶୀଳ, ତ୍ରିଗୁଣାତ୍ମକ ପ୍ରକୃତି ଏବଂ ତଦୁତ୍ପନ୍ନ ପଞ୍ଚଭୂତ ଓ ଇନ୍ଦ୍ରିୟଗଣ ଦୃଶ୍ୟ ପଦବାଚ୍ୟ; ପୁରୁଷ ଦ୍ରଷ୍ଟା ।

ତ୍ରିଗୁଣାତ୍ମକ ପ୍ରକୃତି- ବିଶେଷ ଅବିଶେଷ, ଲିଙ୍ଗ ଓ ଅଲିଙ୍ଗ ନାମକ ଚତୁର୍ବିଧ ଅବସ୍ଥା କ୍ରମେ ପ୍ରକାଶିତ ହୁଏ । ପ୍ରକୃତିର ବିଶେଷ ଅବସ୍ଥା ପଞ୍ଚଭୂତ ଓ ଇନ୍ଦ୍ରିୟଗଣ, ଅବିଶେଷାବସ୍ଥା, ସୂକ୍ଷ୍ମଭୂତ ଓ ଅହଙ୍କାର, ଲିଙ୍ଗୀବସ୍ଥା ମହତତ୍ତ୍ୱ ଏବଂ ଶକ୍ତିସମଷ୍ଟି ମୂଳ ପ୍ରକୃତିର ଲିଙ୍ଗୀବସ୍ଥା ।

(ସୂ) 'ଦ୍ରଷ୍ଟାଦୃଶି ମାତ୍ର ଶୁଦ୍ଧୋଽପି ପ୍ରତ୍ୟୟାନୁପଶ୍ୟଃ' ।

ବୁଦ୍ଧିର ସହିତ ଏକୀଭୂତ ହେଲେ ଅଦ୍ରଷ୍ଟା ଶୁଦ୍ଧାତ୍ମାକୁ ଦ୍ରଷ୍ଟା ବୋଲାଯାଏ । ଅର୍ଥାତ୍ ଆତ୍ମା, ଜ୍ଞାନାଦି ଧର୍ମବିବର୍ଜିତ ଶୁଦ୍ଧ ଚିନ୍ମାତ୍ର ସ୍ୱରୂପ, ତାହାର କୌଣସି ପ୍ରକାର ଅନ୍ୟଥା ଭାବ ନାହିଁ, କେବଳ ବୁଦ୍ଧି ସଂଯୋଗରୁ ନାନା ପ୍ରକାର ପରିଣାମ ଓ ବିକୃତି ସଂଘଟିତ ହୁଏ । ଉକ୍ତ ଚତୁର୍ବିଧ ଅବସ୍ଥାସଂପନ୍ନ ପ୍ରକୃତି ନାନାରୂପେ ପରିଣତ ହୋଇ ବୁଦ୍ଧିସମନ୍ୱିତ ଚିଦାତ୍ମାର ଦୃଶ୍ୟ ହୋଇଥାଏ ।

ପ୍ରକୃତିତତ୍ତ୍ୱଙ୍କ ବିବେକଜ୍ଞାନସମ୍ପନ୍ନ ଚିଦାତ୍ମାପକ୍ଷେ ପ୍ରକୃତି ଅଦୃଶ୍ୟ ଓ ନଷ୍ଟପ୍ରାୟ ହେଲେ ସୁଦ୍ଧା ଅବିବେକୀ ପୁରୁଷ ନିକଟରେ ସେହି ପ୍ରକୃତି ଅଦୃଶ୍ୟ ଓ ନଷ୍ଟ ପ୍ରାୟ ନୁହେଁ ।

ପୁରୁଷ ଓ ପ୍ରକୃତିର ପରସ୍ପର ସଂଯୋଗ ଉଭୟର ସ୍ୱରୂପ ଓ ଶକ୍ତି ଉପଲବ୍ଧିର ହେତୁ । ସେହି ସଂଯୋଗର ହେତୁ ଅବିଦ୍ୟା । ଅବିଦ୍ୟାର ଅଭାବ ହେଲେ ପୁରୁଷ ସଙ୍ଗେ ପ୍ରକୃତିର ସଂଯୋଗ ଅଭାବ ହୁଏ । ପ୍ରକୃତିର ସଂଯୋଗ ଅଭାବ ହେଲେ ପୁରୁଷ କେବଳ ଶୁଦ୍ଧ ଚିଦାତ୍ମା ହୁଏ । ସେତେବେଳେ ତାହାର କୈବଲ୍ୟ ଲାଭ ହୁଏ; କୈବଲ୍ୟ ହିଁ ମୁକ୍ତି । ସତ୍ୟଜ୍ଞାନପ୍ରଦାୟିନୀ ବିବେକପ୍ରସୂତ ପ୍ରଜ୍ଞା ହିଁ ଅବିଦ୍ୟା ପରିହାରର ଏକମାତ୍ର ଉପାୟ ।

(ସୂ) 'ତସ୍ୟ ସପ୍ତଧା ପ୍ରାନ୍ତଭୂମିଃ ପ୍ରଜ୍ଞା' ।

ତାହାର ପ୍ରଜ୍ଞା ଉଚ୍ଚସ୍ତରର ସପ୍ତଭାଗବିଶିଷ୍ଟ । ଯୋଗାଙ୍ଗଙ୍କ ଅନୁଷ୍ଠାନଦ୍ୱାରା ମନୋମଳ କ୍ଷୟ ହେଲେ ଜ୍ଞାନଦୀପ୍ତିମୟୀ ବିବେକପ୍ରସୂତ ପ୍ରଜ୍ଞାର ଆବିର୍ଭାବ ହୁଏ ।

## ଯୋଗାଙ୍ଗ

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଏବଂ ସମାଧିକୁ ଗୋଚର ଅଷ୍ଟାଙ୍ଗ କୁହାଯାଏ । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହକୁ ଯମ କହି । ଜାତି, ଦେଶ, କାଳ ଓ ସମୟ କର୍ତ୍ତୃକ ଉକ୍ତ ପଞ୍ଚ ପ୍ରକାର ଯମ ବିଚ୍ଛିନ୍ନ ନହୋଇ ଯଦି ସର୍ବାବସ୍ଥାରେ ସମଭାବରେ ଆଚରିତ ହୁଏ ତାହାହେଲେଏମାନଙ୍କୁ ମହାବ୍ରତ ବୋଲାଯାଏ । ଶୌଚ, ସନ୍ତୋଷ, ତପଃ, ସ୍ୱଧ୍ୟାୟ ଏବଂ ଈଶ୍ୱରପ୍ରଣିଧାନ ଏହି ପାଞ୍ଚ ପ୍ରକାର ଅନୁଷ୍ଠାନକୁ ନିୟମ ବୋଲାଯାଏ । ଯୋଗବିଘ୍ନକର ହିଂସା ପ୍ରଭୃତି ବିତର୍କ ନିବାରଣ କରିବାକୁ ହେଲେ ପ୍ରତିପକ୍ଷ ଅର୍ଥାତ୍ ଯୋଗର ଅନୁକୂଳ ଅବିତର୍କ ଅହିଂସା ପ୍ରଭୃତି ଯହିଁରୁ ସ୍ଫୁରଣ ହେବ ତାହାର ଚେଷ୍ଟା କରିବା କର୍ତ୍ତବ୍ୟ । ଯୋଗବିଘ୍ନକର ହିଂସାଦିକୁ ବିତର୍କ କହି । ଲୋଭ ମୋହ ଓ କ୍ରୋଧବଶତଃ ନିଜ ଇଚ୍ଛାରେ ବା ଅପରକୌଣସି ଲୋକର ଅନୁରୋଧରେ ବା ନିଜ ଅନୁମୋଦନରେ ହିଂସା ପ୍ରଭୃତି ବିବିଧ ବିତର୍କ ନିଷ୍ପାଦିତହୋଇଥାଏ । ଅହିଂସା ପ୍ରତିଷ୍ଠିତ ହେଲେ ତାହାର ସନ୍ନିଧାନରେ ବୈରଭାବ ନଷ୍ଟ ହୁଏ । ଅର୍ଥାତ୍ ସେ ଅହିଂସ୍ରକ ତାହା ନିକଟରେ ହିଂସ୍ରଜନ୍ତୁମାନେ ମଧ୍ୟ ହିଂସା କରିପାରିବେ ନାହିଁ । ସତ୍ୟ ପ୍ରତିଷ୍ଠିତ ହେଲେ ତାହାର କ୍ରିୟା ଫଳବତୀ ହୁଏ ।

(ସୂ) 'ଅସ୍ତେୟ ପ୍ରତିଷ୍ଠାୟାଂ ସର୍ବରତ୍ନୋପସ୍ଥାନମ୍' ।

ଅସ୍ତେୟ ଅର୍ଥାତ୍ ଅଚୌର୍ଯ୍ୟ ପ୍ରତିଷ୍ଠିତ ହେଲେ ସମସ୍ତ ରତ୍ନ ଉପସ୍ଥିତ ହୁଏ । ବ୍ରହ୍ମଚର୍ଯ୍ୟ ପ୍ରତିଷ୍ଠିତ ହେଲେ ବୀର୍ଯ୍ୟ ଲାଭ ହୁଏ । ଅପରିଗ୍ରହ ପ୍ରତିଷ୍ଠାରେ ଯୋଗୀ ଜାତିସ୍ମର ହୁଏ ।

(ସୂ) ଶୌଚାତ୍ସ୍ୱାଙ୍ଗଜୁଗୁପ୍ସାପରୈରସଂସର୍ଗଃ ।

ଶୌଚ ପ୍ରତିଷ୍ଠାରୁ ନିଜର ଶରୀର ପ୍ରତି ଘୃଣା ଏବଂ ଅନ୍ୟାନ୍ୟମାନଙ୍କ ସଙ୍ଗେ ଅସଂସର୍ଗ ଇଚ୍ଛା ହୁଏ । ବାହ୍ୟ ଶୌଚ ସିଦ୍ଧ ହୋଇ ପରେ ଅଭ୍ୟନ୍ତର ଶୌଚ ସିଦ୍ଧ ହେଲେ ସତ୍ୱ ଶୁଦ୍ଧି ହୁଏ ।

(ସୂ) ସତ୍ୱଶୁଦ୍ଧି ସୌମନସ୍ୟୈକାଗ୍ର୍ୟେନ୍ଦ୍ରିୟାତ୍ମଦର୍ଶନଯୋଗ୍ୟତ୍ୱାନିଚ ।

ସତ୍ୱ ଶୁଦ୍ଧିରୁ ସୌମନସ୍ୟ, ସୌମନସ୍ୟରୁ ଏକାଗ୍ରତା, ଏକାଗ୍ରତାରୁ ଇନ୍ଦ୍ରିୟ ଜୟ, ଏବଂ ଇନ୍ଦ୍ରିୟ ଜୟରୁଆତ୍ମଦର୍ଶନ ଯୋଗ୍ୟତା ପ୍ରାପ୍ତ ହୁଏ । ସନ୍ତୋଷ ପ୍ରତିଷ୍ଠିତ ହେଲେ ଅନୁତ୍ତମ ଅର୍ଥାତ୍ ଯେଉଁ ସୁଖଠାରୁ ଅପର ଶ୍ରେଷ୍ଠ ସୁଖ ନାହିଁ ସେହି ଅନିର୍ବଚନୀୟ ସୁଖ ଲାଭ ହୁଏ ।

ତପୋଦ୍ୱାରା ଶରୀର ଓ ଇନ୍ଦ୍ରିୟଗଣର ଅଶୁଦ୍ଧି କ୍ଷୟ ହୁଏ । ସ୍ୱଧ୍ୟାୟ ସିଦ୍ଧ ହେଲେ ଇଷ୍ଟ ଦେବତା ସଂଦର୍ଶନ ଏବଂ ତାଙ୍କ ସଙ୍ଗେ ସମ୍ଭାଷଣ ସୌଭାଗ୍ୟ ଘଟିଥାଏ । ଈଶ୍ୱର ପ୍ରଣିଧାନ ଦ୍ୱାରା ସମାଧି ସିଦ୍ଧ ହୁଏ ।

ଏହି ସୂତ୍ର ପର୍ଯ୍ୟନ୍ତ ଯୋଗର ଅଷ୍ଟାଙ୍ଗ ଅଭ୍ୟାସ ମଧ୍ୟରୁ ଯମ ନିୟମ ପ୍ରଥମ ଅଙ୍ଗ ଦ୍ୱୟର ସାଧନ ଏବଂ ତଲ୍ଲବ୍ଧ ଫଳ ବର୍ଣ୍ଣନପୂର୍ବକ ନିମ୍ନୋକ୍ତ ସୂତ୍ରମାନଙ୍କରେ ଅନ୍ୟାନ୍ୟ ଯୋଗାଙ୍ଗ ବିଷୟ ନିର୍ଦ୍ଦେଶ କରାଯାଇଅଛି ।

ଯେଉଁ ଆସନରେ ଉପବେଶନ କଲେ ସୁଖରେ ଅଧିକ ସମୟ ଉପବେଶନ କରାଯାଇ ପାରେ ଏବଂ ଯହିଁରେ ଶରୀର ନିଶ୍ଚଳ ରହେ ତାହାହିଁ ଆସନ ।

(ସୂ) ପ୍ରଯତ୍ନଶୈଥିଲ୍ୟାନନ୍ତସମାପତ୍ତିଭ୍ୟାଂ ।

ସ୍ୱଭାବତଃ ଚଞ୍ଚଳତା ଶିଥିଳ ହେଲେ ଏବଂ ଅନନ୍ତ ଧ୍ୟାନ ନିମଗ୍ନ ହେଲେ ଆସନ ସ୍ଥିର ଓ ସୁଖକର ହୁଏ । ଆସନ ସିଦ୍ଧ ହେଲେ ଶୀତୋଷ୍ଣ ସୁଖଦୁଃଖାଦି ଦ୍ୱନ୍ଦ୍ୱସମୂହର ବାଧା ରହେ ନାହିଁ, ଆସନ ସିଦ୍ଧି ହେଲା ପରେ ଶ୍ୱାସପ୍ରଶ୍ୱାସରେ ସ୍ୱାଭାବିକ ଗତି ବିଚ୍ଛେଦ କରି ପ୍ରାଣବାୟୁକୁ ଆୟତ୍ତ କରିବାକୁ ପ୍ରାଣାୟାମ କୁହାଯାଏ । ଯୋଗଶାସ୍ତ୍ର ମତରେ ରେଚକ ପୂରକ ଓ କୁମ୍ଭକଦ୍ୱାରା ଯାହା ସମାଧା କରାଯାଏ ତାହାର ନାମ ପ୍ରାଣାୟାମ; ଏହି ପ୍ରାଣାୟାମ ତିନି ଭାଗରେ ବିଭକ୍ତ, ଯଥା- ବାହ୍ୟବୃତ୍ତି, ଆଭ୍ୟନ୍ତର ବୃତ୍ତି ଓ ସ୍ତମ୍ଭବୃତ୍ତି । ଯେଉଁ ବୃତ୍ତି ପ୍ରଭାବରେ ବହିର୍ବାୟୁକୁ ଆକର୍ଷଣ କରି ଅନ୍ତର୍ନିହିତ କରାଯାଏ ତାହାର ନାମ ଆଭ୍ୟନ୍ତର ବୃତ୍ତି ବା ପୂରକ ।

ସ୍ତମ୍ଭବୃତ୍ତିଦ୍ୱାରା ପୂରିତ ବାୟୁକୁ ରୋଧ କରାଯାଏ । ଏହି ସ୍ତମ୍ଭବୃତ୍ତିର ଅପର ନାମ କୁମ୍ଭକ । ଏହି ପ୍ରାଣାୟାମ ପୁନର୍ବାର ଦୀର୍ଘ ସୂକ୍ଷ୍ମରୂପେ ଦେଶ, କାଳ ଏବଂ ସଂଖ୍ୟାଦ୍ୱାରା ସାଧିତ ହୋଇଥାଏ । ପ୍ରାଣାୟାମରେ ରେଚକ କରିବା ସମୟରେ ବହିର୍ଭାଗରେ ରେଚକ ବାୟୁ ଯଦି ଅଧିକ ଦୂର ଯାଏ ତାହାହେଲେ ତାହାର ନାମ ଦୀର୍ଘ, ଅଳ୍ପ ଦୂର ଗଲେ ତାହାର ନାମ ସୂକ୍ଷ୍ମ, ପୂରକ ଓ କୁମ୍ଭକ କରିବା ସମୟରେ ଶରୀର ମଧ୍ୟରେ ସର୍ବତ୍ର ବାୟୁ ପୂର୍ଣ୍ଣ ହେଲେ ଦୀର୍ଘ ବୋଲାଯାଏ । ସର୍ବତ୍ର ସମ୍ପୂର୍ଣ୍ଣ ନହେଲେ ସୂକ୍ଷ୍ମ ମଧ୍ୟେ ପରିଗଣିତ ହୁଏ । କାଳଦ୍ୱାରା ଏହି ପ୍ରାଣାୟାମତ୍ରୟର ଦୈର୍ଘ୍ୟ ବା

ସୌକ୍ଷ୍ମ୍ୟ ସ୍ଥିର କରିବାକୁ ହେଲେ ସ୍ଥିତିକାଳ ନିର୍ବାଚନ କରିବାକୁ ହୁଏ । ଅଧିକ କାଳ ସ୍ଥାୟୀ ହେଲେ ଦୀର୍ଘ ଏବଂ ଅଳ୍ପକାଳ ସ୍ଥାୟୀ ହେଲେ ସୂକ୍ଷ୍ମ ବୋଲାଯାଏ । ସଂଖ୍ୟାନୁସାରେ ଜପଦ୍ୱାରା ଏହି ପ୍ରାଣାୟାମତ୍ରୟର ଦୈର୍ଘ୍ୟ ଓ ସୌକ୍ଷ୍ମ୍ୟ ନିର୍ଣ୍ଣିତ ହୁଏ । ନିର୍ଦ୍ଦିଷ୍ଟ ସଂଖ୍ୟାର ଅଧିକ ଜପରେ ଯେ ସକଳ ପ୍ରାଣାୟାମ ଶେଷ ହୁଏ ସେଗୁଡ଼ିକୁ ଦୀର୍ଘ ପ୍ରାଣାୟାମ ଏବଂ ଅଳ୍ପସଂଖ୍ୟକ ଜପରେ ଶେଷ ହେଲେ ସୂକ୍ଷ୍ମ ପ୍ରାଣାୟାମ ବୋଲାଯାଏ ।

(ସୂ) ବାହ୍ୟାଭ୍ୟନ୍ତର ବିଷୟାକ୍ଷେପୀ ଚତୁର୍ଥଃ ।

ଏହି ପ୍ରାଣାୟାମଦ୍ୱାରା ବାହ୍ୟ ବା ଅଭ୍ୟନ୍ତର ବସ୍ତୁରେ ବିଷୟ ପ୍ରକାଶିତ କରି ପ୍ରାଣ ନିରୋଧ କରାଯାଏ । ଏହାର ନାମ ଚତୁର୍ଥ ପ୍ରାଣାୟାମ । ଏହି ଚତୁର୍ଥ ପ୍ରାଣାୟାମରେ ଦୀର୍ଘକାଳ କୁମ୍ଭକ ଅଭ୍ୟାସରେ ଚିତ୍ତ ପ୍ରକାଶଯୁକ୍ତ ହୋଇଥାଏ, କିନ୍ତୁ ଉପରୋକ୍ତ ତ୍ରିବିଧ ପ୍ରାଣାୟାମରେ ଏହା ନଥାଏ ।

(ସୂ) ତତଃ କ୍ଷୀୟତେ ପ୍ରକାଶାବରଣମ୍ ।

ଏହି ପ୍ରାଣାୟାମଦ୍ୱାରା ଚିତ୍ତର ପ୍ରକାଶାବରଣ କ୍ଷୟ ହୁଏ ଅର୍ଥାତ୍ ଚିତ୍ତ ସ୍ୱଭାବତଃ ଚେତନଯୁକ୍ତ; କାରଣ ତାହା ସତ୍ୱସମ୍ଭୂତ କିନ୍ତୁ ରଜୋତମୋ ଅଂଶରେ ଆବୃତ ହୋଇଥାଏ । ଉପରୋକ୍ତ ପ୍ରାଣାୟାମଦ୍ୱାରା ସେହି ଆବରଣ ଅପସାରିତ ହୁଏ ।

(ସୂ) ଧାରଣାସୁ ଯୋଗ୍ୟତା ମନସଃ । ଅତଃପର ମନ ଧାରଣାର ଉପଯୁକ୍ତ ହୁଏ ।

ଅତ୍ୟପର ପ୍ରତ୍ୟାହାର ନିର୍ଦ୍ଦେଶ କରାଯାଉଛି-

(ସୂ) ସ୍ୱ ସ୍ୱ ବିଷୟ ସଂପ୍ରୟୋଗା - ଭାବେ ଚିତ୍ତସ୍ୱରୂପାନୁକାର ଇବେନ୍ଦ୍ରିୟାଣାଂ ପ୍ରତ୍ୟାହାରଃ ।

ଯେତେବେଳେ ସକଳ ଇନ୍ଦ୍ରିୟ ସ୍ୱ ସ୍ୱ ବିଷୟ ସଂଯୋଗରୁ ବିରତ ହୋଇ ଚିତ୍ତର ସ୍ୱରୂପାକାର ଧାରଣ କରି ଅନ୍ତର୍ମୁଖୀ ହୁଅନ୍ତି ତାହାକୁ ପ୍ରତ୍ୟାହାର କୁହାଯାଏ ।

(ସୂ) ତତଃ ପରମବଶତେନ୍ଦ୍ରିୟାଣାମ୍ ।

ତଦନନ୍ତରଏହି ପ୍ରତ୍ୟାହାର ପ୍ରଭାବରେ ଇନ୍ଦ୍ରିୟଗଣ ଅତ୍ୟନ୍ତ ବଶ ହୁଅନ୍ତି । ଯେତେବେଳେ ଯୋଗୀ ଇନ୍ଦ୍ରିୟଗଣଙ୍କୁ ସ୍ୱ ସ୍ୱ ବିଷୟପରାଙ୍ମୁଖ କରି ବଶ କରେ ତେତେବେଳେ ତାହାର ଶରୀରର ପ୍ରତ୍ୟେକ ଅଙ୍ଗପ୍ରତ୍ୟଙ୍ଗ ଓ ଶିରାପ୍ରଶିରା ତାହାର ଅଧୀନ ହୁଏ; କାରଣ ଇନ୍ଦ୍ରିୟଗଣ ସକଳ କାର୍ଯ୍ୟର କେନ୍ଦ୍ରସ୍ଥଳୀ । ଇନ୍ଦ୍ରିୟଗଣ ଜ୍ଞାନ ଓ କର୍ମ ଦୁଇ ଭାଗରେ ବିଭକ୍ତ । ଇନ୍ଦ୍ରିୟ ସଂଯମରେ ଭାବ ଓ କାର୍ଯ୍ୟ ଉଭୟ ସଂଯତ ହୋଇଯାଏ; ତେତେବେଳେ ଯୋଗୀର ଜନ୍ମ ସାର୍ଥକ ହୁଏ, ସେ ଅସୀମ ଆନନ୍ଦ ଅନୁଭବ କରେ ଏବଂ ଶରୀର ଧାରଣାର ମହତ୍ତ୍ୱ ବୁଝିପାରେ ।

# ଇତି ସାଧନ ପାଦ

## ବିଭୂତି ପାଦ

ଏହି ଅଧ୍ୟାୟରେ ଯୋଗଲବ୍ଧ ବିଭୂତି ସମସ୍ତ ବିଶଦ ଭାବରେ ବର୍ଣ୍ଣନା କରାଯାଉଛି ।

ଧାରଣା- (ସୂ) ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା ।

ବିଶେଷରେ ଚିତ୍ତବନ୍ଧନର ନାମ ଧାରଣା । ଅର୍ଥାତ୍ ସ୍ୱ ଶରୀର ଭିତରେ ନାଡ଼ୀଚକ୍ରରେ, ଭ୍ରୂମଧ୍ୟରେ ନାସାଗ୍ରରେ, କିମ୍ବା ଶରୀର ବାହାରେ କୌଣସି ଦିବ୍ୟ ମୂର୍ତ୍ତିରେ ଚିତ୍ତ ଆବଦ୍ଧ ରଖିବାର ନାମ ଧାରଣା ।

ଧ୍ୟାନ - (ସୂ) 'ତତ୍ର ପ୍ରତ୍ୟୟୈକତାନତାଧ୍ୟାନମ୍' ।

ଧାରଣା ବସ୍ତୁ ସମ୍ବନ୍ଧୀୟ ନିଶ୍ଚୟ ଜ୍ଞାନର ଏକତାନତା ବା ଏକାଗ୍ରତା ହିଁ ଧ୍ୟାନ । ଅର୍ଥାତ୍ ଯେଉଁ ବସ୍ତୁରେ ଚିତ୍ତଧାରଣା କରାଯାଏ ତାହାର ନିଶ୍ଚୟ ଜ୍ଞାନର ଏକାଗ୍ରତାକୁ ଧ୍ୟାନ କହି ।

ସମାଧି - (ସୂ) 'ତଦେବାର୍ଥ ମାତ୍ର ନିର୍ଭାସଂ ସ୍ୱରୂପ ଶୂନ୍ୟମିବ ସମାଧିଃ' ।

ସେହି ଧ୍ୟାନ ସ୍ୱରୂପ ଶୂନ୍ୟ ଧ୍ୟେୟାର୍ଥ ନିର୍ଭାସ ସ୍ଥିତି ହିଁ ସମାଧି ।

ସଂଯମ - ପାର୍ଥିବ କିମ୍ବା ଅପାର୍ଥିବ କୌଣସି ବସ୍ତୁରେ ବା ବିଷୟରେ ଧାରଣା, ଧ୍ୟାନ ଓ ସମାଧି ଏହି ତ୍ରିତୟର ସମ୍ମିଳିତ ପ୍ରୟୋଗକୁ ସଂଯମ କହି । ସଂଯମ ଆୟତ୍ତ ହେଲେ ଦିବ୍ୟଜ୍ଞାନମୟୀ ପରମାବୁଦ୍ଧି ସ୍ଫୁରିତ ହୁଏ । ସଂଯମର ସୁବିନିଯୋଗ ଆବଶ୍ୟକ ଅର୍ଥାତ୍ ସ୍ଥୂଳ ବସ୍ତୁରେ ସଂଯମ ପ୍ରୟୋଗ କରିପାରିଲେ ସୂକ୍ଷ୍ମ ବସ୍ତୁରେ ସଂଯମାଭ୍ୟାସ ଶକ୍ତି ସ୍ୱତଃ ଜନ୍ମେ । ଯମନିୟମ ଅପେକ୍ଷା ସଂଯମ ସମାଧିର ଅନ୍ତରଙ୍ଗ । ସଂଯମ ବଳରେ ଅତି ସୂକ୍ଷ୍ମ ବସ୍ତୁରେ ମଧ୍ୟ ଚିତ୍ତ ସମାହିତ ହୁଏ । ସେହି ସଂଯମ ନିର୍ବୀଜ ସମାଧିର ବହିରଙ୍ଗ ସ୍ୱରୂପ ।

(ସୂ) ବ୍ୟୁଥିଆନ ନିରୋଧ ସଂସ୍କାରୟୋଭିଭବ- ପ୍ରାଦୁର୍ଭାବୌ ନିରୋଧ କ୍ଷଣଚିତ୍ତାନ୍ୱୟୋ ନିରୋଧ-ପରିଣାମଃ ।

ମନର ବିକ୍ଷିପ୍ତ ସଂସ୍କାର ନିରୋଧଦ୍ୱାରାଏବଂ ନିରୋଧ ସଂସ୍କାରର ଅଭ୍ୟୁଦୟଦ୍ୱାରା ସେହି ସମୟରେ ଚିତ୍ତରେ ନିରୋଧର ଯେଉଁ ଅବିଚ୍ଛେଦ ଯତ୍ନ ବିଦ୍ୟମାନ ଥାଏ ତାହାକୁ ନିରୋଧ ପରିଣାମ କୁହାଯାଏ । ସମାଧିର ଏହି ପ୍ରଥମାବସ୍ଥାରେ ଚିତ୍ତବୃତ୍ତିଚୟ ନିରୁଦ୍ଧ ହୋଇଥାଏ କିନ୍ତୁ ସମ୍ପୂର୍ଣ୍ଣ ରୂପେ ନୁହେଁ, କାରଣ ନିରୁଦ୍ଧାବସ୍ଥାରେ ଚିତ୍ତ ବୃତ୍ତଶୂନ୍ୟ ଯେ ହେବା ଆବଶ୍ୟକ, ଏହି ଅବସ୍ଥାରେ ଚିତ୍ତର ନିରୋଦ୍ଧ ସଂସ୍କାର ଏପରି ଜାଗ୍ରତ ଥାଏ । ଯଦି କୌଣସି ବୃତ୍ତି ଉଦୟ ହୁଏ ତାହାହେଲେ ତାହାର ନିରୋଧପାଇଁ ଏହି ବୃତ୍ତି ଉଦ୍ଭୁତ ହୋଇଥାଏ । ଯଦି ଏକବୃତ୍ତିଦ୍ୱାରା ଅନ୍ୟବୃତ୍ତି ନିରୋଧ

କରାଯିବ ତାହାହେଲେ ସେହି  ନିରୁଦ୍ଧ ଅବସ୍ଥାକୁ ପ୍ରକୃତ ସମାଧି କୁହାଯିବ ନାହିଁ କାରଣ ଯେଉଁ ବୃତ୍ତିଦ୍ୱାରା ଅପରବୃତ୍ତି ନିରୋଧ ହୁଏ ତାହା ସୁଦ୍ଧା ଏକ ବୃତ୍ତି । ଅତଏବ ଏହି ଅବସ୍ଥାର ନାମ ନିରୋଧ ପରିଣାମ, ଏହି ନିକୃଷ୍ଟ ସମାଧି ସ୍ଥିତିରୁ ଚିତ୍ତ ଉତ୍କ୍ରାନ୍ତ ହେଲେ ଉତ୍କୃଷ୍ଟ ସମାଧି ଲାଭ ହୁଏ ।

(ସୂ) ତସ୍ୟ ପ୍ରଶାନ୍ତ ବାହିତା ସଂସ୍କାରାତ୍-

ତାହାର ପ୍ରବାହ ସଂସ୍କାର ଯୋଗୁଁ ସ୍ଥିର ହୁଏ ଅର୍ଥାତ୍- ଚିତ୍ତରଏହି ଅନବଚ୍ଛିନ୍ନ ନିରୋଧ ପ୍ରବାହ ଅଭ୍ୟାସବଶତଃ ସ୍ଥିର ହୁଏ ଏବଂ ଚିତ୍ତ ନିରବଚ୍ଛିନ୍ନ ଏକଗ୍ରତା ସମ୍ପତ୍ତି ପ୍ରାପ୍ତ ହୁଏ ।

(ସୂ) ସର୍ବାର୍ଥ ତୈକାଗ୍ରତୟୋଃ କ୍ଷୟୋଦୟୌ ଚିତ୍ତସ୍ୟ ସମାଧି ପରିଣାମ ।

ଚିତ୍ତ ମଧ୍ୟରେ ସମସ୍ତ ପ୍ରକାର ବସ୍ତୁ ବା ବୃତ୍ତି ପ୍ରବେଶ କରୁଥାଏ ଏବଂ ଏକ ବସ୍ତୁ ବୃତ୍ତିରେ ଚିତ୍ତନିଶ୍ଚଳ ହେଉଥାଏ । ଯେତେବେଳେ ଏହି ଉଭୟ ପ୍ରଭାବ ଲୟହୁଏ, କେବଳ ଏକ ବସ୍ତୁ ହିଁ କ୍ରମଶଃ ବ୍ୟକ୍ତ ହୁଏ ଚିତ୍ତର ସେହି ଅବସ୍ଥାକୁ ସମାଧି ପରିଣାମ କୁହାଯାଏ ।

(ସୂ) ଶାନ୍ତୋଦିତୌତୁଲ୍ୟ ଚିତ୍ତସ୍ୟୈକାଗ୍ର ପରିଣାମଃ ।

ଶାନ୍ତ ଓ ଉଦିତ ଅର୍ଥାତ୍ ଚିତ୍ତର ଯେଉଁ ସଂସ୍କାର ଶାନ୍ତ ହୋଇଯାଇଛି ଏବଂ ଯେଉଁ ସଂସ୍କାର ଉଦୟ ହେଉଛି ସେହି ଉଭୟର  ତୁଲ୍ୟଜ୍ଞାନ ହିଁ ଚିତ୍ତର ଏକାଗ୍ରତା ପରିଣାମ ।

ନିରୋଧ, ସମାଧି ଓ ଏକାଗ୍ରତା ଭେଦରେ ଚିତ୍ତର ଯେପରି ତ୍ରିବିଧ ପରିଣାମ ଅଛି ସେପରି ପଞ୍ଚଭୂତ ଓ ଇନ୍ଦ୍ରିୟଗଣର ମଧ୍ୟ ଧର୍ମ, ଲକ୍ଷଣ ଓ ଅବସ୍ଥା ନାମକ ତ୍ରିବିଧ ପରିଣାମ ଲକ୍ଷିତ ହୁଏ । ଧର୍ମ ଅର୍ଥରେ ଗୁଣମୟୀ ଶକ୍ତି । ଧର୍ମ ସେହି ଗୁଣମୟୀ ଶକ୍ତିର ଆଧାର । ପ୍ରତ୍ୟେକ ପ୍ରାକୃତିକ ପଦାର୍ଥକୁ ଧର୍ମୀ ବୋଲାଯାଏ । ପ୍ରତ୍ୟେକ ପ୍ରାକୃତିକ  ପଦାର୍ଥରେ ପ୍ରଧାନ ତିନି ପ୍ରକାର ଧର୍ମ ବା ଗୁଣମୟୀ ଶକ୍ତି ବିଦ୍ୟମାନ  । ସେହି ତ୍ରିବିଧ ଧର୍ମ ବା ଗୁଣମୟୀ ଶକ୍ତିତ୍ରୟ ଶାନ୍ତ, ଉଦିତ ଓ  ଅବ୍ୟପଦେଶ୍ୟ ନାମରେ ଅଭିହିତ  । ଏକ ପଦାର୍ଥର ଭିନ୍ନ ଭିନ୍ନ ପରିବର୍ତ୍ତନ ହିଁ ତାହାର ଭିନ୍ନ ଭିନ୍ନ କ୍ରମର କାରଣ । ପ୍ରତ୍ୟେକ ପଦାର୍ଥର ତ୍ରିବିଧ ପରିଣାମ ସଂଯମଦ୍ୱାରା ତତ୍ ସମ୍ବନ୍ଧୀୟ ଅତୀତ ଓ ଅନାଗତ ଜ୍ଞାନସମୂହ ପ୍ରତ୍ୟକ୍ଷ ହୋଇଥାଏ ।

(ସୂ) ଶବ୍ଦାର୍ଥ ପ୍ରତ୍ୟୟ ନାମିତରେତରାଧ୍ୟାସାତ୍ ସଙ୍କରସ୍ତତ୍ ପ୍ରବିଭାଗସଂଯମାତ୍ ସର୍ବଭୂତରୁତଜ୍ଞାନମ୍ ।

କୌଣସି ପ୍ରକାର ଶବ୍ଦ, ଅର୍ଥ ଏବଂ ଜ୍ଞାନ ଯାହା କି ସହଜବୋଧ୍ୟ ନୁହେଁ, ସେଥିରେ ସଂଯମ ଅଭ୍ୟାସ କରି ଅଧ୍ୟାସବିହୀନ ଯୋଗୀ ସର୍ବଭୂତ ଉଚ୍ଚାରିତ ଶବ୍ଦର ଅର୍ଥ ବୋଧ କରିପାରେ ।

(ସୂ) ସଂସ୍କାରସାକ୍ଷାତ୍କରଣାତ୍ପୂର୍ବଜାତିଜ୍ଞାନମ୍ । ସଂଯମ ବଳରେ ସଂସ୍କାର ସାକ୍ଷାତ୍କାର ହେଲେ ଯୋଗୀ ପୂର୍ବଜନ୍ମ ବୃତ୍ତାନ୍ତ ଜ୍ଞାତ ହୁଏ । ଅନ୍ୟର ମନୋଭାବବ୍ୟଞ୍ଜକ ବାହ୍ୟିକ କୌଣସି ଚିହ୍ନ ଅନୁସାରେ ତାହାର ଚିତ୍ତରେ ସଂଯମ ପ୍ରୟୋଗ କଲେ ସେ ତାହାର ଚିତ୍ତବୃତ୍ତି ଅବଗତ

ହୋଇପାରେ । ପରଚିତ୍ତଜ୍ଞାନ ବିଷୟକ ସଂଯମଦ୍ୱାରା ସେହି ଚିତ୍ତର ଆଲମ୍ବନ ସମ୍ବନ୍ଧେ ଜ୍ଞାନ ଜନ୍ମେ ନାହିଁ, ତାହା ଜାଣିବାକୁ ହେଲେ ସ୍ୱତନ୍ତ୍ର ସଂଯମ ଆବଶ୍ୟକ । ଯୋଗୀ ନିଜ ଶରୀରରେ ଏପରି ଆଶ୍ଚର୍ଯ୍ୟ ଭାବେ ସଂଯମ ପ୍ରୟୋଗ କରେ ଯେ ତାହାର ପ୍ରଭାବରେ ଶାରୀରିକ ରୂପ ଦର୍ଶନରେ ଦର୍ଶନକର୍ତ୍ତାର ଦର୍ଶନ ଶକ୍ତି ସ୍ତମ୍ଭିତ ହୋଇଯାଏ ।

(ସୂ) 'ଏତେନ ଶବ୍ଦାଦ୍ୟନ୍ତର୍ଧାନ ମୁକ୍ତମ୍', ପୂର୍ବୋକ୍ତ ସଂଯମଦ୍ୱାରା ଅନ୍ତର୍ଦ୍ଧାନରେ କଥିତ ଶବ୍ଦ ଓ ଅନ୍ୟାନ୍ୟ ଲୁକ୍କାୟିତ ବିଷୟ ବୁଝାଯାଏ । ସେ ସେହି ସଂଯମ ପ୍ରଭାବରେ ଅପ୍ରକାଶିତ ଯୋଗୀ ଅନ୍ତର୍ହିତ ହେଲେ ବୋଲି ବିବେଚନା କରେ । ଯେଉଁ ପ୍ରକାରେ ଯୋଗୀର ରୂପ ଅନ୍ତର୍ଦ୍ଧାନ ହୁଏ ସେହି ପ୍ରକାର ଶବ୍ଦ, ସ୍ପର୍ଶ, ରସ ଓ ଗନ୍ଧର ଅନ୍ତର୍ଦ୍ଧାନ ହୋଇଥାଏ । ପୂର୍ବ ଜନ୍ମକୃତ ସକଳ ସତ୍, ଅସତ୍ କର୍ମ ମଧ୍ୟରୁ କେତେକ ଏହି ଶରୀରରେ ନିରୁପକ୍ରମ କର୍ମ ନାମେ ଅଭିହିତ । ଏହା ଫଳପ୍ରସୂ ଏବଂ ସୋପକ୍ରମ ଓ ନିରୁପକ୍ରମ ଭେଦରେ ଦ୍ୱିବିଧ । ଯେଉଁ କର୍ମର ଫଳ ଆରମ୍ଭ ହୋଇନାହିଁ, ସେହି କର୍ମରେ ସଂଯମ ପ୍ରୟୋଗ କଲେ ନିଜ ମୃତ୍ୟୁ ସମ୍ବନ୍ଧେ ଜ୍ଞାନ ଜନ୍ମେ ଅର୍ଥାତ୍ ନିଜ ମୃତ୍ୟୁର ସର୍ବ ଲକ୍ଷଣ ଜଣାଯାଏ । ମୈତ୍ରୀ, କରୁଣା ଓ ମୁଦିତା ନାମକ ଭାବତ୍ରୟ ପ୍ରତି ସଂଯମ ପ୍ରୟୋଗ କଲେ ସେଗୁଡ଼ିକ ବୃଦ୍ଧିପ୍ରାପ୍ତ ହୁଅନ୍ତି ।

ହସ୍ତୀ ପ୍ରଭୃତିର ବଳରେ ମନଃ ସଂଯମ କଲେ ଯୋଗୀ ହସ୍ତୀ ପ୍ରଭୃତି ପରି ବଳବାନ୍ ହୁଏ । ପରମାଣୁ ବ୍ୟବଧାନ ବିଶିଷ୍ଟ ଓ ଦୂରସ୍ଥ ପଦାର୍ଥ ସମୂହରେ ସଂଯମ ପ୍ରୟୋଗ କଲେ ସେମାନେ ବିକାଶ ପ୍ରାପ୍ତ ହୁଅନ୍ତି । ସୂର୍ଯ୍ୟଙ୍କଠାରେ ମନଃସଂଯମ କଲେ ଭୁବନଜ୍ଞାନ ଅର୍ଥାତ୍ ସର୍ବଲୋକ ସମ୍ବନ୍ଧୀୟ ଜ୍ଞାନ ଜନ୍ମେ । ଚନ୍ଦ୍ରଙ୍କଠାରେ ମନଃସଂଯମ କଲେ ତାରାଗଣର ଜ୍ଞାନ ଜନ୍ମେ । ଧ୍ରୁବନକ୍ଷତ୍ରରେ ମନଃ ସଂଯମ କଲେ ତାରାଗଣର ଗତି ନିର୍ଣ୍ଣୟ କରାଯାଇପାରେ । ନାଭି ଚକ୍ରରେ ମନଃ ସଂଯମ କଲେ ଶରୀର ନିର୍ମାଣ ତତ୍ତ୍ୱ ଜଣାଯାଏ । କଣ୍ଠ କୂପରେ ମନଃ ସଂଯମ କଲେ କ୍ଷୁତ୍‌ପିପାସାର ନିବୃତ୍ତି ହୁଏ । କୂର୍ମ ନାଡ଼ୀରେ ମନଃ ସଂଯମ କଲେ ସ୍ଥୈର୍ଯ୍ୟ ଆସେ । ବ୍ରହ୍ମରନ୍ଧ୍ରସ୍ଥିତ ଦିବ୍ୟ ତେଜରେ ମନଃ ସଂଯମ କଲେ ସିଦ୍ଧଦର୍ଶନ ଅର୍ଥାତ୍ ଦିବ୍ୟ ପୁରୁଷଗଣର ଦର୍ଶନ ଲାଭ ହୁଏ । ପ୍ରତିଭାପ୍ରସୂତ ଆଧ୍ୟାତ୍ମିକ ଜ୍ଞାନରେ ଚିତ୍ତ ସଂଯମ କଲେ ଯୋଗୀ ସର୍ବଜ୍ଞ ହୁଏ । ହୃଦୟରେ ସଂଯମ କଲେ ମନ ସମୂହର ଜ୍ଞାନ ଜନ୍ମେ ।

ନିର୍ମଳାବୁଦ୍ଧି ଏବଂ ତାହାର ଚେତୟିତା ଚୈତନ୍ୟ ପୁରୁଷ ଅଭିନ୍ନ ନୁହେଁ । ଉଭୟର ମଧ୍ୟରେ ଅନେକ ପ୍ରଭେଦ ଅଛି । ଏହି ଜ୍ଞାନ ନ ଜନ୍ମିଲେ ସୁଖ ଦୁଃଖ ପ୍ରଭୃତି ବିବିଧ ମାୟିକ ବ୍ୟାପାରରେ ଅଭିଭୂତ ହେବାକୁ ହୁଏ । ସେହି କାରଣରୁ ଭୋଗ ନାମକ ପଦାର୍ଥର ଅଧୀନ ହେବାକୁ ହୁଏ ଏବଂ ସେହି ଭୋଗ ପୁରୁଷଠାରେ ଆରୋପିତ ହୁଏ ।

ଯେଉଁ ଅବସ୍ଥାରେ ପୁରୁଷ ଏକ ପଦାର୍ଥ ଏବଂ ତାହାର ପ୍ରତିବିମ୍ବସ୍ୱରୂପ ଭୋଗ ଅପର ପଦାର୍ଥ ହୁଏ ସେହି ଭେଦାତ୍ମକ ବୋଧଶକ୍ତି ପ୍ରତି କୃତସଂଯମ ହେଲେ ଆତ୍ମଜ୍ଞାନ ଜନ୍ମେ । ଆତ୍ମସଂଯମ ପ୍ରଭାବରେ ସଂସାରତାରକ ଜ୍ଞାନ, ଦିବ୍ୟଶବ୍ଦ ଶ୍ରବଣ, ଦିବ୍ୟ ସ୍ପର୍ଶାନୁଭବ, ଦିବ୍ୟ

ରୂପଦର୍ଶନ, ଦିବ୍ୟାରସାସ୍ୱାଦନ ଓ ଦିବ୍ୟ ଗନ୍ଧାଘ୍ରାଣ ଅନୁଭୂତ ହୁଏ ।

(ସୂ) ତେ ସମାଧାବୁପସର୍ଗା ବ୍ୟୁଥିଆନେ ସିଦ୍ଧୟଃ ।

ସଂଯମଲବ୍ଧ ଉପରୋକ୍ତ ଶକ୍ତିସମୂହ ସମାଧିଅବସ୍ଥା ଅର୍ଥାତ୍ କୈବଲ୍ୟର ପ୍ରତିବନ୍ଧକ, କିନ୍ତୁ ସେଗୁଡ଼ିକ ସାଂସାରିକ ଅବସ୍ଥାର ସିଦ୍ଧି ବା ଶକ୍ତି ।

(ସୂ) ବନ୍ଧକାରଣଶୈଥିଲ୍ୟାତ୍ ପ୍ରଚାର ସମ୍ବେଦନନାଚ୍ଚ ଚିତ୍ତସ୍ୟ ପରଶରୀରାବେଶଃ ।

ଚିତ୍ତର ବନ୍ଧନକାରଣ ଶିଥିଳ ହେଲେ ଯୋଗୀ ଜ୍ଞାନବାହିନୀ ନାଡ଼ୀର ସଂଚାରଣ ଜ୍ଞାନକୁ ପର ଶରୀରରେ ପ୍ରବେଶ କରିପାରେ । ସଂଯମ ପ୍ରଭାବରେ ଉଦାନ ବାୟୁ ବଶ ହେଲେ ଜଳ, ପଙ୍କ ଓ କଣ୍ଟକ ପ୍ରଭୃତିରେ ନିର୍ଲିପ୍ତ ଭାବେ ଅନାୟାସରେ ବିଚରଣ କରିପାରେଏବଂ ନିଜ ଇଚ୍ଛାନୁସାରେ ଦେହତ୍ୟାଗ କରିପାରେ । ସମାନ ବାୟୁ ଆୟତ୍ତ ହେଲେ ଯୋଗୀ ଜ୍ୟୋତିଃସମାବୃତ ହୁଏ । ଶ୍ରୋତ୍ର ଏବଂ ଆକାଶର ସମ୍ବନ୍ଧରେ ମନଃ ସଂଯମ କଲେ ଦିବ୍ୟ ଶ୍ରବଣଶକ୍ତି ଲାଭହୁଏ । ଶରୀର ଏବଂ ଆକାଶର ସମ୍ବନ୍ଧରେ ମନଃ ସଂଯମ କଲେ ତୁଳାପରି ଲଘୁ ହୋଇ ଆକାଶରେ ଗମନ କରେ । ଶରୀରର ବାହାରେ ବାସ୍ତବ ମନୋବୃତ୍ତିରେ ସଂଯମ କଲେ ଆନାତ୍ମାରେ ଆତ୍ମଜ୍ଞାନ ବିଦୂରିତ ହୋଇ ମହା ବିଦେହାବୃତ୍ତି ସ୍ଫୁରିତ ହୁଏ । ସେହି ଅପୂର୍ବ ସ୍ଫୁରଣ ସଙ୍ଗେ ସଙ୍ଗେ ଜ୍ଞାନଶକ୍ତିର ଆବରଣ କ୍ଷୟ ହୁଏ ।

ପ୍ରତ୍ୟେକ ଭୂତର ସ୍ଥଳ, ସ୍ୱରୂପ, ସୂକ୍ଷ୍ମ, ଅନ୍ୱୟ ଓ ଅର୍ଥବତ୍ତ୍ୱ ନାମକ ପଞ୍ଚବିଧ ଅବସ୍ଥା ପ୍ରତି ସଂଯମ ପ୍ରୟୋଗ କଲେ ଭୂତ ଜୟ ହୁଏ । ଭୂତଗଣକୁ ଇଚ୍ଛାଧୀନ କରିପାରିଲେ ଅଣିମାଦି ଅଷ୍ଟଐଶ୍ୱର୍ଯ୍ୟ ଲାଭ ହୁଏ ଏବଂ କାୟିକସମ୍ପତ୍ ଅବିନଶ୍ୱରହୋଇ ରହେ । ରୂପ, ଲାବଣ୍ୟ, ବଳ ଏବଂ ବଜ୍ରତୁଲ୍ୟ ଶାରୀରିକ ଦୃଢ଼ତା ହିଁ କାୟିକ ସମ୍ପତ୍ । ଗ୍ରହଣ, ସ୍ୱରୂପ, ଅସ୍ମିତା, ଅନ୍ୱୟ ଓ ଅର୍ଥବତ୍ତ୍ୱ ନାମରେ ଇନ୍ଦ୍ରିୟଗଣର ପଞ୍ଚବିଧ ଅବସ୍ଥା ଅଛି । ଜିତେନ୍ଦ୍ରିୟ ହେବାକୁ ହେଲେ ପ୍ରଥମେ ଏହିଗୁଡ଼ିକୁ ବଶୀଭୂତ କରିବାକୁ ହେବ । ଇନ୍ଦ୍ରିୟମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିପାରିଲେ ମନପରି ଶରୀର ନିର୍ବିଘ୍ନରେ ସର୍ବତ୍ର ଗମନ କରିପାରେ । ବିଦେହୀ ହେଲେ ଇନ୍ଦ୍ରିୟଗଣ ସମ୍ବନ୍ଧେ ଜ୍ଞାତହେବା ସକାଶେ ଜ୍ଞାନର ପ୍ରଭାବ ହୁଏ ନାହିଁ ଏବଂ ପ୍ରଧାନ ମୂଳ ପ୍ରକୃତି ବଶୀଭୂତ ହୁଏ ନାହିଁ । ପରମା ବୁଦ୍ଧି ସହିତ ପରମ ପୁରୁଷ ପରମାତ୍ମାର ଯେଉଁ ପ୍ରଭେଦ ଜ୍ଞାନ ନିର୍ଣ୍ଣୟ ହୋଇଥାଏ ସେହି ଜ୍ଞାନ ପ୍ରତି ସଂଯମ ପ୍ରୟୋଗ କଲେ ସର୍ବଭାବ ଉପରେ ପ୍ରଭୁତ୍ୱ ଜନ୍ମେ ଏବଂ ସର୍ବଜ୍ଞତ୍ୱ ମଧ୍ୟ ଲାଭ ହୁଏ । ସେଥିପ୍ରତି ଅର୍ଥାତ୍ ସିଦ୍ଧିରେ ବୈରାଗ୍ୟ ଜନ୍ମିଲେ ଅବିଦ୍ୟାଜନିତ ବିବିଧ ଦୋଷର ବୀଜ କ୍ଷୟ ହୁଏ ଏବଂ ତତ୍କାଳେ କୈବଲ୍ୟ ପ୍ରାପ୍ତି ହୁଏ । କୌଣସି ପରମ ବିରାଗୀ ଯୋଗୀ ଅମରଗଣ କର୍ତ୍ତୃକ ବିବିଧ ଦିବ୍ୟ ଭୋଗ ସକାଶେ ଆମନ୍ତ୍ରିତ ହୋଇ ବିସ୍ମୟ ଓ ପ୍ରଲୋଭନ ପରତନ୍ତ୍ର ହେବ ନାହିଁ। ଯେହେତୁ ସେଥିରେ କୈବଲ୍ୟ ସମ୍ବନ୍ଧେ ବିଷମ ବିଘ୍ନ ଉପସ୍ଥିତ ହୁଏ । କ୍ଷଣ ଏବଂ ପର୍ଯ୍ୟାୟ ପରମ୍ପରା ପଦ୍ଧତି ପ୍ରତି ସଂଯମ ପ୍ରୟୋଗ କଲେ ବିବେକ ପ୍ରସୂତ ଜ୍ଞାନୋଦୟ ହୁଏ ।

(ସୂ) ଜାତି ଲକ୍ଷଣ ଦେଶୈରନ୍ୟତାନବଚ୍ଛେଦାତ୍ତୁଲ୍ୟୟୋସ୍ତତଃ ପ୍ରତିପତ୍ତିଃ ।

ଯେଉଁ ବସ୍ତୁସକଳ ଜାତି, ଲକ୍ଷଣ ଓ ଦେଶଦ୍ୱାରା ପୃଥକ କରି ହୁଏ ନାହିଁ ସେହି ବସ୍ତୁ ସକଳର ବିବେକ ଜ୍ଞାନ ସୁଦ୍ଧା ଉପରୋକ୍ତ ସଂଯମ ବଳରେ ଲାଭ ହୁଏ ।

(ସୂ) ତାରକଂ ସର୍ବବିଷୟଂ ସର୍ବାର୍ଥବିଷୟମକ୍ରମଂ ଚେତି ବିବେକଜଂ ଜ୍ଞାନମ୍ ।

ଯେଉଁ ବିବେକଜ୍ଞାନଦ୍ୱାରା ସର୍ବାର୍ଥ ଓ ସର୍ବବିଷୟ ଏକ ସମୟରେ ଗ୍ରହଣ କରାଯାଇପାରେ ତାହା ତାରକ ।

(ସୂ) ସତ୍ୱପୁରୁଷୟୋଃ ଶୁଦ୍ଧିସାମ୍ୟେ କୈବଲ୍ୟମିତି ।

ପୁରୁଷ ଓ ସତ୍ୱର ଶୁଦ୍ଧିସାମ୍ୟରେ କୈବଲ୍ୟ ପ୍ରାପ୍ତି ହୁଏ ।

ଇତିବିଭୂତିପାଦଃ

## କୈବଲ୍ୟ ପାଦ

ଜନ୍ମ, ଔଷଧି, ମନ୍ତ୍ର, ତପସ୍ୟା ଓ ସମାଧିରୁ ବିବିଧସିଦ୍ଧି ଉତ୍ପନ୍ନ ହୁଏ । ଅଦ୍ଭୁତ ସିଦ୍ଧି ପ୍ରଭାବରେ ପ୍ରାକୃତିକ ଅନୁପ୍ରବେଶଦ୍ୱାରା, ଏକଜାତି ଅପର ଜାତି ହୋଇପାରେ । କୃଷକ, କ୍ଷେତ୍ରରେ ଜଳ ପ୍ରବେଶର ପ୍ରତିବନ୍ଧକ ସ୍ୱରୂପ ଉଚ୍ଚବନ୍ଧ ଭଙ୍ଗକଲେ ଜଳ ଯେପରି ସ୍ୱତଃ କ୍ଷେତ୍ର ମଧ୍ୟରେ ଅବାଧରେ ପ୍ରବିଷ୍ଟ ହୁଏ, ସେପରି ଜୀବର ଧର୍ମ ବା ଅଧର୍ମ ଜାତ୍ୟନ୍ତର ପରିଣାମର ପ୍ରବର୍ତ୍ତନ ନୁହେଁ । କିନ୍ତୁ ଏମାନଙ୍କ ମଧ୍ୟରେ କୌଣସିଟି କେବଳ ପ୍ରକୃତିର ଆବରଣ କ୍ଷୟ କରିଥାଏ । ବଳବତୀ ଇଚ୍ଛା ପ୍ରଭାବରେ ଅସ୍ମିତାରୁ ଏକାଧିକ ଶରୀର ଓ ଚିତ୍ତ ଉତ୍ପନ୍ନ ହୋଇପାରେ । ଧ୍ୟାନସିଦ୍ଧ ଚିତ୍ତ ହିଁ କର୍ମବାସନାଶୂନ୍ୟ । କର୍ମବାସନାଶୂନ୍ୟ ହେଲେଯୋଗୀ ମୁକ୍ତ ହୋଇଯାଏ । ସିଦ୍ଧ ଯୋଗୀଗଣର ସକଳ କର୍ମହିଁ ନିଷ୍କାମ । ସେହିହେତୁ ସେମାନଙ୍କ କୃତ କୌଣସି କର୍ମ ବର୍ତ୍ତମାନ ଜୀବନର ପରିବର୍ତ୍ତନ କରିପାରେ ନାହିଁ ଏବଂ ଭବିଷ୍ୟତ୍ ଜୀବନରେ ସୁଦ୍ଧା ବିବିଧ ଫଳଭୋଗର ବୀଜ ଉତ୍ପନ୍ନ ନଥାଏ । ସେମାନଙ୍କର କର୍ମ ଅଶୁକ୍ଳକୃଷ୍ଣ, ଅଯୋଗୀଗଣର କାର୍ଯ୍ୟକଳାପ, ଶୁକ୍ଳ, କୃଷ୍ଣ ଏବଂ ଶୁକ୍ଳକୃଷ୍ଣ । ତପସ୍ୟା ସମନ୍ୱିତ ଜ୍ଞାନପ୍ରସୂତ କର୍ମ ଶୁକ୍ଳକର୍ମ, ନରହତ୍ୟା ପ୍ରଭୃତି କୃଷ୍ଣ କର୍ମ ଏବଂ ସଦସତ୍ ଉଭୟବିଧ କାର୍ଯ୍ୟ ଶୁକ୍ଳକୃଷ୍ଣ । ଏହି ତ୍ରିବିଧ କର୍ମର ଯେଉଁ ସକଳ ଫଳ ଫଳିବାକୁ ଆରମ୍ଭ ହୋଇଅଛି ସେ ସକଳର ଅନୁକୂଳ ବାସନା ସକଳ ପ୍ରକାଶିତ ହୋଇଥାଏ । ଯେଉଁ ସକଳ ଫଳ ଫଳେ ନାହିଁ, ତାହାର ଅନୁକୂଳ ବାସନା ସକଳ ଅବ୍ୟକ୍ତ ଥାଏ । ତୁମେ ବର୍ତ୍ତମାନ କାଳରେ, ବର୍ତ୍ତମାନ ଦେଶରେ, ବର୍ତ୍ତମାନ ଜନ୍ମରେ ଯେଉଁ ସକଳ ସଂସ୍କାରସମ୍ପନ୍ନ ହୋଇଅଛି, ସେହି ସକଳ ସଂସ୍କାର ଏହି ରୂପେ ଭବିଷ୍ୟତ୍ ଜନ୍ମ ସକାଶେ ଅବ୍ୟକ୍ତ ଭାବେ ତୁମପାଇଁ ସଞ୍ଚିତ ରହିବ, ଅର୍ଥାତ୍ ଯଦି ତୁମର ଏହି ରୂପ ଜନ୍ମହୁଏ ତାହାହେଲେ ତୁମର ଇହଜନ୍ମର ସଂସ୍କାର ସକଳ ସେହି ଜନ୍ମରେ ସ୍ଫୁରଣ ହେବ । ପିତାପୁତ୍ର ଯେପରି ଅଭିନ୍ନ, ସଂସ୍କାର ଓ ସ୍ମୃତି ମଧ୍ୟ

ସେହିପରି ଅଭିନ୍ନ । ସୁଖ ପ୍ରାର୍ଥନାର ନିତ୍ୟତାବଶତଃ ବାସନା ସମୂହର ମଧ୍ୟ ଅନାଦିତ୍ୱ ନିଶ୍ଚୟ କରାଯାଏ । ବାସନା ଅନାଦି ହେଲେ ସୁଦ୍ଧା ଯୋଗବଳରେ ବାସନା କ୍ଷୟ ହୋଇଯାଏ । ବାସନାର କ୍ଷୟ ନହେଲେ ଆଉ ରକ୍ଷା ନାହିଁ । ହେତୁ, ଫଳ, ଆଶ୍ରୟ ଓ ଅବଲମ୍ବନ ବ୍ୟତୀତ ବାସନା ଉତ୍ପନ୍ନ କିମ୍ବା ସଞ୍ଚିତ ହୁଏ ନାହିଁ । ଉକ୍ତ ହେତୁଫଳ ପ୍ରଭୃତିର ଅଭାବ ହେଲେ ବାସନାର ମଧ୍ୟ ଅଭାବ ହୁଏ । ଅବସ୍ଥାର ପରିବର୍ତ୍ତନ ଅନୁସାରେ ବିନଷ୍ଟ ହେଉଚି, ଉତ୍ପନ୍ନ ହେବ ଇତ୍ୟାଦି ବୋଲାଯାଏ । ବାସ୍ତବିକ କୌଣସିର ବିନାଶ ହୁଏ ନାହିଁ ଓ କୌଣସିର ବିନାଶ ହେବ ନାହିଁ, କୌଣସିର ଉତ୍ପତ୍ତି ହେଉ ନାହିଁ ଓ ଉତ୍ପତ୍ତି ହେବ ନାହିଁ, ଯେହେତୁ ବସ୍ତୁ ନିତ୍ୟ ଓ ଚିତ୍ତ ନିତ୍ୟ । ତାହାର ଉତ୍ପତ୍ତି କିମ୍ବା ବିନାଶ ନାହିଁ । ଯାହାକୁ ଉତ୍ପତ୍ତି କୁହାଯାଏ ତାହା ଏକ ପ୍ରକାର ପରିବର୍ତ୍ତନ ମାତ୍ର । ଯାହାକୁ ବିନାଶ କୁହାଯାଏ ତାହା ସୁଦ୍ଧା ଅପର ଏକ ପରିବର୍ତ୍ତନ । ଏପରି ବସ୍ତୁ ନାହିଁ ଯାହା ତ୍ରିଗୁଣର ପରିଣାମ ନୁହେଁ । ତ୍ରିଗୁଣର କୌଣସି ଗୁଣଦ୍ୱୟ ପରସ୍ପରରେ ଆନୁକୂଲ୍ୟ ବ୍ୟତୀତ ପରିଣତ ହୋଇପାରେ ନାହିଁ । ଏହି ପରିଣାମର ଏକତା ନିବନ୍ଧନ ବସ୍ତୁତତ୍ତ୍ୱ ଏକରୁ ଅଧିକ ନୁହେଁ । ବିଜ୍ଞାନମୟ ଚିତ୍ତ ସୁପ୍ରଭାବରେ ବସ୍ତୁସମ୍ବନ୍ଧୀୟ ଯେଉଁ ବିଶେଷ ଜ୍ଞାନ ଜନ୍ମାଏଁ ସେସକଳ ବସ୍ତୁ ଏବଂ ସେହି ବିଶେଷ ଜ୍ଞାନ ଅଭେଦ ନୁହେଁ । ଅଥଚ ଉଭୟର ପଥ ସୁଦ୍ଧା ଏକ ନୁହେଁ ଏକ ବସ୍ତୁ ସମ୍ବନ୍ଧେ ନାନାଲୋକର ନାନା ପ୍ରକାର ବିଜ୍ଞାନ ଜନ୍ମିଥାଏ । ବସ୍ତୁର ସମତାବଶତଃ ତତ୍ ସମ୍ବନ୍ଧେ ଲୋକମାନଙ୍କର ବିଜ୍ଞାନର ସମତା ରହେ ନାହିଁ । ଚିତ୍ତରେ ବସ୍ତୁର ଉପରାଗବଶତଃ ତାହା ଜ୍ଞାତ ହୁଏ । ଚିତ୍ତରେ ବସ୍ତୁର ଉପରାଗ ନହେଲେ ତାହା ଅଜ୍ଞାତ ହୁଏ । ଇନ୍ଦ୍ରିୟ ସମ୍ବନ୍ଧଦ୍ୱାରା ଚିତ୍ତରେ ଯେତେବେଳେ ଯେଉଁ ବସ୍ତୁର ଉପରାଗ ହୁଏ ସେତେବେଳେ ସେହି ବସ୍ତୁ ସମ୍ବନ୍ଧେ ଜ୍ଞାନ ଜନ୍ମେ । ଯେଉଁ ପରିଣାମ-ବିହୀନ ନିତ୍ୟ ଚୈତନ୍ୟ ପୁରୁଷର ବିଷୟ ଚିତ୍ତବୃତ୍ତିର ସର୍ବଦା ସୁଗୋଚର ହୁଏ ଏବଂ ଯେ ସେମାନଙ୍କର ପ୍ରକାଶକ ସେହି ପରିଣାମ ବିହୀନ ନିତ୍ୟ ଚୈତନ୍ୟପୁରୁଷ ସର୍ବଜ୍ଞ ଓ ଚିତ୍ତର ପ୍ରଭୁ । ପୁରୁଷ ଚିତ୍ତକୁ ପ୍ରକାଶ ନକଲେ ଚିତ୍ତ ନିଜେ ପ୍ରକାଶିତ ହୋଇପାରେ ନାହିଁ । ଏକ ସମୟରେ ଚିତ୍ତ ଓ ଚୈତ୍ୟର ଅବଧାରଣ ହୁଏ ନାହିଁ, ସୁତରାଂ ସ୍ଥିର କରିବାକୁ ହେବ ଯେ ଉଭୟଏକ ନୁହନ୍ତି । ଚୈତ୍ୟର ପ୍ରକାଶକ ଚିତ୍ତ, ଚିତ୍ତର ପ୍ରକାଶକ ଆତ୍ମା ଏବଂ ଆତ୍ମା ସ୍ୱପ୍ରକାଶକ । ଏକ ବୁଦ୍ଧି ଅପର ବୁଦ୍ଧି ପ୍ରକାଶ କରେ, ଏହା ସ୍ୱୀକାର କଲେ ଅନେକ ବୁଦ୍ଧିର ପ୍ରସଙ୍ଗର ଅବତାରଣା କରିବାକୁ ହୁଏ । ତାହାହେଲେ ସ୍ମୃତିବିଶୃଙ୍ଖଳା ମଧ୍ୟ ଘଟେ ।

ଚିତ୍ସ୍ୱରୂପ ଦିବ୍ୟ ପୁରୁଷ କୌଣସି ପ୍ରକାର ସଂକ୍ରମଯୁକ୍ତ କିମ୍ବା ବିକୃତ ହୁଏ ନାହିଁ । ସୂର୍ଯ୍ୟ ପ୍ରତିବିମ୍ବ ଜଳରେ ପଡ଼ିଲେ ଯେପରି ଜଳ ସୂର୍ଯ୍ୟ ବୋଲି ବୋଧହୁଏ ସେପରି ଚିତ୍ପ୍ରତିବିମ୍ବ ବୁଦ୍ଧିସତ୍ତ୍ୱ ରୂପ ଜଳରେ ପଡ଼ିଲେ ବୁଦ୍ଧିସତ୍ୱ ଚିଦାକାର ବୋଲି ବୋଧହୁଏ । ଚିତ୍ପ୍ରତିବିମ୍ବ ଏହିପରି ବୁଦ୍ଧିର ଆକାର ଧାରଣ କଲେ, ତାହାଠାରେ ବୁଦ୍ଧି ସମ୍ବେଦନ ଅର୍ଥାତ୍ ବୁଦ୍ଧି ଶୁଦ୍ଧିର ସାକ୍ଷାତ୍କାର ଜନ୍ମେ । ଦ୍ରଷ୍ଟା ଆତ୍ମା, ଦୃଶ୍ୟ ବୁଦ୍ଧିତତ୍ତ୍ୱରେ ଆରୋପିତ ହେଲେ ସେହି ବୁଦ୍ଧିତତ୍ତ୍ୱ ବା ଚିତ୍ତ ସର୍ବ-ପ୍ରକାଶକ ହୁଏ । ଚିତ୍ତ ଅସଂଖ୍ୟ କାମନାବିଶିଷ୍ଟ ହୋଇ ଅସଂଖ୍ୟ ରୂପରେ ପ୍ରକାଶିତ ହେଲେ ଦେହ ଏବଂ ଇନ୍ଦ୍ରିୟଗଣ ସହିତ ମିଳିତ ହୋଇ ତାହାର ଗୁଣାଦି କାର୍ଯ୍ୟରେ କ୍ଷମତାପ୍ରଯୁକ୍ତ ପରରେ

ଭୋଗ, ଭୋଗ୍ୟ ଏବଂ ନିମିତ୍ତ କାରଣ ହୁଏ । ଚିତ୍‌ଶକ୍ତି ଚିତ୍ତର ସହିତ ଭିନ୍ନ ନୁହେଁ ବୋଲି ଜାଣିପାରିଲେ, ଆତ୍ମତତ୍ତ୍ୱ ବୋଧେଚ୍ଛା ରହେ ନାହିଁ, କାରଣ ସେତେବେଳେ ଆତ୍ମାସମ୍ବନ୍ଧେ ଜାଣିବାର ଅବଶିଷ୍ଟ କିଛି ନଥାଏ । ସେହି ସମୟରେ ଚିତ୍ତ, ଦୃକ୍ ଏବଂ ଦୃଶ୍ୟର ଯେଉଁ ଭେଦ ତାହା ବୁଝିପାରିଲେ ଆଉ ତାହା ବାହ୍ୟବସ୍ତୁ ସକଳରେ ରତ ନହୋଇ ନିର୍ମଳ ବିବେକର ଅଧୀନ ହୋଇ ଧର୍ମମେଘ ନାମକ ସମାଧି ପ୍ରଭାବରେ କେବଳ ତାହାର ଆତ୍ମଦର୍ଶନ ହୋଇଥାଏ । ସମାଧିସମ୍ପନ୍ନ ହେଲେ, ଦାରୁଣ ପୂର୍ବସଂସ୍କାରବଶତଃ ଧ୍ୟାନର ଅନ୍ତରାୟରେ ଅତି ସୂକ୍ଷ୍ମ ଅହଙ୍କାର ଏବଂ ମମତା ପ୍ରଭୃତି ବିବିଧ ବିକାର ସ୍ଫୁରିତ ହୁଏ । ସେହି ସ୍ଫୁରଣଗୁଡ଼ିକର ପ୍ରତ୍ୟେକକୁ ଏକ ଏକ ପ୍ରତ୍ୟୟ ବୋଲାଯାଏ ।

ସାଧନପାଦରେ ଯେଉଁ ଉପାୟଦ୍ୱାରା ଅବିଦ୍ୟା ପ୍ରଭୃତି ପଞ୍ଚକ୍ଳେଶର କ୍ଷୟୋପାୟ କୁହାଯାଇଅଛି ସେହି ଉପାୟ ଅବଲମ୍ବନ କଲେ ଏହି ପୂର୍ବ ସଂସ୍କାରସହିତ ଚିତ୍ତ ଏବଂ ସୂକ୍ଷ୍ମ ଚିତ୍ତବୃତ୍ତିଗୁଡ଼ିକ ଦଗ୍ଧବୀଜର ଅବସ୍ଥା ପ୍ରାପ୍ତ ହୁଅନ୍ତି । ସେତେବେଳେ ଚିତ୍ତ ଅନ୍ୟ କୌଣସି ପରିଣାମଦ୍ୱାରା ବିକୃତ ହୁଏ ନାହିଁ । ଯାହାର ପରମ ବୈରାଗ୍ୟ ପ୍ରଭାବରେ ପ୍ରସଂଖ୍ୟାନ ଅଥବା ସର୍ବ ବିଜ୍ଞାନଶକ୍ତି ପ୍ରତି ଅନାସକ୍ତି ଜନ୍ମେ, ତତ୍ ପ୍ରଭାବରେସେ ପ୍ରକୃତି ଓ ପୁରୁଷର ପ୍ରଭେଦ ବୁଝିପାରେଏବଂ ବିବେକଖ୍ୟାତି ନାମ୍ନୀ ଅଦ୍ଭୁତ ଶକ୍ତିର ଅଧିକାରୀ ହୁଏ । ସେହି ଅଦ୍ଭୁତ ଶକ୍ତି ବଳରେ ଧର୍ମମେଘ ନାମକ ଅମୃତ ସାଗରରେ ନିମଗ୍ନ ହୁଏ । ଏହି ଧର୍ମମେଘ ସମାଧିବଳରେ ଅବିଦ୍ୟା ପ୍ରଭୃତି ପଞ୍ଚକ୍ଳେଶ ଓ ସର୍ବ କର୍ମର ନିବୃତ୍ତି ହୁଏ । ସେତେବେଳେ ଜ୍ଞାନର ସମସ୍ତଆବରଣ କ୍ଷୟ ହୋଇ ଜ୍ଞାନ ଅନନ୍ତ ହୁଏ । ଅନନ୍ତ ଜ୍ଞାନ ହେଲେ ଜ୍ଞେୟ ଅଳ୍ପ ହୁଏ ଏବଂ ସହଜରେ ସର୍ବଜ୍ଞ ହୁଏ । ପୁରୁଷ ଧର୍ମମେଘ ନାମକ ଅପୂର୍ବ ସମାଧିମଗ୍ନ ହୋଇ, ପ୍ରକୃତି ଏବଂ ପ୍ରାକୃତିକ ଗୁଣ ସମୂହ ସମ୍ବନ୍ଧେ ବିଶେଷ ଜ୍ଞାନ ଲାଭ କଲେ ଆଉ ସେ ପ୍ରାକୃତିକ ଲୋଭରେ ପ୍ରଲୋଭିତ ହୁଏ ନାହିଁ ।

କୌଣସି କ୍ଷଣ ପରେ ଯେତେ କ୍ଷଣ ହେଉ ସେ ସମସ୍ତ ଏହି କ୍ଷଣର ପ୍ରତିଯୋଗୀ-କ୍ଷଣ, ପ୍ରତ୍ୟେକ ପ୍ରାକୃତିକ ପଦାର୍ଥର ପରିଣାମ । ପ୍ରତ୍ୟେକ ପ୍ରାକୃତିକ ପଦାର୍ଥ ପ୍ରତିକ୍ଷଣରେ ପରିଣତ ଅର୍ଥାତ୍ ଅବସ୍ଥାନ୍ତର ପ୍ରାପ୍ତ ହୋଇଥାଏ । ପ୍ରାକୃତିକ କୌଣସି ପଦାର୍ଥର ବର୍ତ୍ତମାନ କ୍ଷଣ ପର୍ଯ୍ୟନ୍ତ କ୍ରମାନ୍ୱୟରେ କେତେଗୁଡ଼ିଏ ପରିଣାମ ହେବାର ଜାଣିଲେ ଧର୍ମମେଘ ନାମକ ସମାଧିଦ୍ୱାରା ସମସ୍ତ ପ୍ରତିଯୋଗୀ କ୍ଷଣକ୍ରମ ଅନୁସାରେ ସେହି ପଦାର୍ଥର ସମସ୍ତ ପରିଣାମ କ୍ରମ ଜଣାଯାଏ । ସେହି ସମାଧି ବଳରେ ସେହି ବସ୍ତୁର ପୂର୍ବାପର ପରିଣାମ ହେଲେ କ୍ରମାନ୍ୱୟରେ ଶେଷ ପରିଣାମ ପର୍ଯ୍ୟନ୍ତ ଯେଉଁ ରୂପ ଯେତେ ପ୍ରକାର ପରିଣାମ ହୋଇଅଛି ସେ ସମସ୍ତ ପ୍ରତ୍ୟକ୍ଷ ହୁଏ । ଚିତ୍‌ସ୍ୱରୂପ ପୁରୁଷଠାରେ ପ୍ରକୃତି ଓ ପ୍ରାକୃତିକ ଚିତ୍ତବୃତ୍ତି ସମୂହ ପ୍ରତିବିମ୍ବିତ ହୋଇ ନ ପାରିଲେ ପ୍ରକୃତି ଅସ୍ମିତା ପ୍ରଭୃତିରେ ପରିଣତ ହୋଇ ପୁରୁଷକୁ ନିଜ ଭାବରେ ବଶୀଭୂତ କରି ନପାରିଲେ ଏବଂ ପ୍ରକୃତି ନିଜ ଐଶ୍ୱର୍ଯ୍ୟ ବଳରେ ପୁରୁଷକୁ ମୁଗ୍ଧ କରିବାର ଅସମର୍ଥ ହେଲେ, ସେହି ଗୁଣମୟୀ ପ୍ରକୃତି ନିଜେ ପୁରୁଷାର୍ଥଶୂନ୍ୟା ହୁଏ । ତାହାର ପୁରୁଷ ସଙ୍ଗେ ଚିର-ବିଚ୍ଛେଦ ହୋଇଯାଏ ।

(ସୂ) ପୁରୁଷାର୍ଥଶୂନ୍ୟାନାଂ ଗୁଣାନାଂ ପ୍ରତିପ୍ରସବଃ କୈବଲ୍ୟଂ ସ୍ୱରୂପପ୍ରତିଷ୍ଠା ବା ଚିତି ଶକ୍ତିରିତି ।

ଚିତ୍‌ସ୍ୱରୂପ ପୁରୁଷଠାରେ ପ୍ରକୃତିର ସାରୂପ୍ୟ ନିବୃତ୍ତି ହିଁ କୈବଲ୍ୟ । ପ୍ରକୃତିର ସହିତ ପୁରୁଷର ନିଃସମ୍ବନ୍ଧ ହିଁ କୈବଲ୍ୟ । ତାହାହିଁ ପୁରୁଷର ସ୍ୱରୂପ ଲକ୍ଷଣ । ପ୍ରକୃତିଠାରେ ପୁରୁଷର ଦିବ୍ୟବିବେକପ୍ରସୂତ ଅସାଧାରଣ ଔଦାସୀନ୍ୟବଶତଃ ସେହି ପ୍ରକୃତି ପୁରୁଷାର୍ଥଶୂନ୍ୟା ହେଲେ, ବା ପ୍ରକୃତିର ସର୍ବ ପରିଣାମର ପରିସମାପ୍ତି ହେଲେ ପୁରୁଷ ସଙ୍ଗେ ତାହାର ଯେଉଁ ବିଯୋଗ ହୁଏ ସେହି ବିଯୋଗକୁ କୈବଲ୍ୟ କୁହାଯାଏ ।

## ଯୋଗାଙ୍ଗର ବିଚାର

ଯୋଗ ଦର୍ଶନରେ ମହର୍ଷି ପତଞ୍ଜଳି ଯୋଗସାଧନାପ୍ରଣାଳୀ ଅତି ସଂକ୍ଷିପ୍ତରେ ସୂତ୍ରାକାରେ ବ୍ୟକ୍ତ କରିଅଛନ୍ତି । ସେହି ସୂତ୍ରସମୂହର ବିଶଦ ବ୍ୟାଖ୍ୟା ବ୍ୟତୀତ ଯୋଗାଭ୍ୟାସ ପ୍ରଣାଳୀର ଜ୍ଞାନ ଦୁରୂହ ବ୍ୟାପାର । ଆଉ ଗୋଟିଏ କଥା ଯୋଗାଭ୍ୟାସ ତଥ୍ୟ ଯଥାଯଥ ରୂପେ ଅବଗତ ନହୋଇ ଯଦି ଭ୍ରାନ୍ତିମୂଳକ ଅଭ୍ୟାସ କରାଯାଏ ତାହାହେଲେ ଯୋଗସିଦ୍ଧିତ ଅସମ୍ଭବ ତା' ସଙ୍ଗେ ସଙ୍ଗେ ଭୀଷଣ ଭାବେ କ୍ଷତିଗ୍ରସ୍ତ ହେବା ସୁଦ୍ଧା ଅସମ୍ଭବ ନୁହେଁ । ଅତଏବ ମହର୍ଷି ପତଞ୍ଜଳିକୃତ ଯୋଗାଙ୍ଗ ବିଚାର ସଙ୍ଗେ, ତନ୍ତ୍ର ଓ ପୁରାଣୋକ୍ତ ତତ୍ତ୍ୱ ତୁଳନା କରି ପାଠକ ପାଠିକାଙ୍କୁ ଯୋଗାଙ୍ଗର ବିଶଦ ବିଚାର ଉପହାର ଦେବୁଁ । ଆଶାକରୁଁ ତଦ୍ୱାରା ପାଠକ ପାଠିକା ଯତ୍‌କିଞ୍ଚିତ୍ ଉପକାର ଲାଭ କରିପାରିବେ ।

ଯୋଗ ସୂତ୍ରରେ ଉଲ୍ଲେଖ କରାଯାଇଛି କି- ''ଯୋଗାଙ୍ଗାନୁଷ୍ଠାନାଦଶୁଦ୍ଧିକ୍ଷୟେ ଜ୍ଞାନଦୀପ୍ତିରାବିବେକଖ୍ୟାତେଃ'' । (ପାତଞ୍ଜଳ) ପୃଥକ୍ ପୃଥକ୍ ଯୋଗାଙ୍ଗାନୁଷ୍ଠାନ ଦ୍ୱାରା ଅପବିତ୍ରତା କ୍ଷୟ ହେଲେ ଜ୍ଞାନ ପ୍ରଦୀପ୍ତ ହୋଇଉଠେ, ପରିଶେଷରେ ବିବେକଖ୍ୟାତି ଲାଭ ହୁଏ ।

ଯମ, ନିୟମ, ଆସନ, ପ୍ରାଣାୟାମ, ପ୍ରତ୍ୟାହାର, ଧାରଣା, ଧ୍ୟାନ ଓ ସମାଧି ଏହି ଆଠୋଟି ଯୋଗର ଅଙ୍ଗ । ପ୍ରଥମଯୋଗାଙ୍ଗ ଯମ- ''ଅହିଂସାସତ୍ୟାସ୍ତେୟବ୍ରହ୍ମଚର୍ଯ୍ୟାପରିଗ୍ରହା ଯମାଃ'' ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ଏହି ପାଞ୍ଚଟିକୁ ଯମ କହି ।

ଯାଜ୍ଞବଲ୍କ୍ୟ ଗୃହ୍ୟ ସୂତ୍ରରେ କହିଅଛନ୍ତି-
ଅନୃଶଂସ କ୍ଷମା ସତ୍ୟମହିଂସାଦମମାର୍ଜବଂ
ପ୍ରୀତିଃ ପ୍ରସାଦୋ ମାଧୁର୍ଯ୍ୟଂ ମାର୍ଦବଂ ଚ ଯମା ଦଶ'' ।

ପ୍ରୀତି, ପ୍ରସାଦ, ମାଧୁର୍ଯ୍ୟ, କ୍ଷମା ପ୍ରଭୃତି ଆଉ ପୂର୍ବୋକ୍ତ ଲକ୍ଷଣରେ ଯୋଗ କରି ତାହାକୁ ଆହୁରି ଦୃଢ଼ କରିଅଛନ୍ତି । ଲକ୍ଷଣୋକ୍ତ ଅହିଂସାନୁଷ୍ଠାନ କେବଳ ପ୍ରାଣୀବଧ ପରିତ୍ୟାଗ ମାତ୍ରରେ ପର୍ଯ୍ୟବସିତ ନୁହେଁ; କିନ୍ତୁ ପ୍ରାଣୀକୁ କାୟିକ, ବାଚିକ, ମାନସିକ କୌଣସି ପ୍ରକାର ପୀଡ଼ା ନ

ଦେବା ହିଁ ଅହିଂସାନୁଷ୍ଠାନର ତାତ୍ପର୍ଯ୍ୟ । ତଦ୍ଦ୍ୱାରା ଚିତ୍ତ ନିର୍ମଳ ହୁଏ । ତତ୍ପରେ ସତ୍ୟାନୁଷ୍ଠାନ କରିବାକୁ ହେବ । ଦେହଯାତ୍ରା ନିର୍ବାହ ବ୍ୟତୀତ ଅଧିକ ଅର୍ଥୋପାର୍ଜନ ଯୋଗର ବିଘ୍ନକାରକ । ଅପରିଗ୍ରହ ଚିତ୍ତରେ ବୈରାଗ୍ୟ ବୀଜ ଉତ୍ପନ୍ନ ହୁଏ ।

ଯମ ଯୋଗାଙ୍ଗ ଦୃଢ଼ମୂଳ ହେଲେ ନିୟମ ନାମକ ଯୋଗାଙ୍ଗ ଅନୁଷ୍ଠାନ କରିବାକୁ ହେବ। ନିୟମର ଲକ୍ଷଣ- "ଶୌଚସନ୍ତୋଷତପଃସ୍ୱାଧ୍ୟାୟେଶ୍ୱରପ୍ରଣିଧାନାନି- ନିୟମାଃ" ।

ଅର୍ଥାତ୍ ବାହ୍ୟ ଓ ଅନ୍ତଃଶୌଚ, ସନ୍ତୋଷ, ତପଃ ସ୍ୱାଧ୍ୟାୟ ଓ ଈଶ୍ୱରୋପାସନା ଏଗୁଡ଼ିକ ନିୟମ ପଦବାଚ୍ୟ ।

ମୃତ୍ତିକା ଓ ଗୋମୟାଦିଦ୍ୱାରା ଶରୀର ପରିଷ୍କାର କରି ମୈତ୍ରୀ, କରୁଣା ପ୍ରଭୃତି ସଦ୍‌ଗୁଣ ଅବଲମ୍ବନ ପୂର୍ବକ କାଳ ଯାପନ କଲେ ଶରୀର ଓ ମନ ବିଶୁଦ୍ଧ ହୁଏ । ଅଯତ୍ନଲବ୍ଧ ବସ୍ତୁରେ ପରିତୃପ୍ତ ହେଲେ ଚିତ୍ତରେ ସନ୍ତୋଷ ଦୃଢ଼ୀଭୂତ ହୁଏ । ଚିତ୍ତଶୁଦ୍ଧି ପାଇଁ ଶ୍ରଦ୍ଧାପୂର୍ବକ ଶାସ୍ତ୍ରୋକ୍ତ ତୀର୍ଥପର୍ଯ୍ୟଟନ ଓ ବ୍ରତାଦି ଅନୁଷ୍ଠାନର ନାମ ତପଃ ।

ସ୍ୱାଧ୍ୟାୟ- ଈଶ୍ୱର ପ୍ରତିପାଦକ ସଦ୍‌ଗ୍ରନ୍ଥାଧ୍ୟୟନର ନାମ ସ୍ୱାଧ୍ୟାୟ । ଈଶ୍ୱରାର୍ପିତ ଚିତ୍ତହୋଇ କାର୍ଯ୍ୟ କରିବାର ନାମ ଈଶ୍ୱର ପ୍ରଣିଧାନ । ଉପରୋକ୍ତ କ୍ରିୟାସମୂହକୁ କ୍ରିୟାଯୋଗ କହି । ଏହି କ୍ରିୟାଯୋଗ ବ୍ୟତୀତ ଯୋଗସିଦ୍ଧି ଅସମ୍ଭବ । ଯେହେତୁ ମନୁଷ୍ୟ ଚିତ୍ତରେ ଅନାଦି କାଳ ବିଷୟ ବାସନା ଓ ଅବିଦ୍ୟା ବଦ୍ଧମୂଳ ହୋଇ ରହିଥାଏ । ଚିତ୍ତରେ ବାସନା ଥିବା ପର୍ଯ୍ୟନ୍ତ ଯୋଗସିଦ୍ଧି ଅସମ୍ଭବ । ଉପରୋକ୍ତ ଯୋଗାଙ୍ଗ ପ୍ରତିଷ୍ଠିତ ହେଲେ ପ୍ରତ୍ୟେକର ଗୋଟିଏ ବିଶିଷ୍ଟ ଶକ୍ତି ଲାଭ ହୁଏ । ଅହିଂସା ପ୍ରତିଷ୍ଠିତ ହେଲେ ବୈରାଗ୍ୟଶକ୍ତି ଉଦୟ ହୁଏ । ନିୟମର ପ୍ରଥମାନୁଷ୍ଠାନ ଶୌଚ । ଏହି ଶୌଚ ସିଦ୍ଧି ହେଲେ ନିଜ ଶରୀର ପ୍ରତି ତୁଚ୍ଛ ଜ୍ଞାନ ଜନ୍ମେ, ଅର୍ଥାତ୍ ଜଳବୁଦ୍‌ବୁଦୋପମ ମଳମୂତ୍ରାଦି ଅନ୍ନବିକାର ମାତ୍ର ଶରୀର ପ୍ରତି ମମତା ରହେ ନାହିଁ । ଅଭ୍ୟନ୍ତର ଶୁଚି ହେଲେ କ୍ରମେ ଏକାଗ୍ରତା ଓ ଆତ୍ମ ଦର୍ଶନ ଲାଭ ହୁଏ । ଅନ୍ତଃଶୌଚର ଚରମ ସୀମାରେ ଉପନୀତ ହେଲେ ଅନ୍ତଃକରଣ ଅଭୂତପୂର୍ବ ସୁଖମୟ ଅବସ୍ଥା ପ୍ରାପ୍ତ ହୁଏ । ଏହାର ନାମାନ୍ତର ସୌମନସ୍ୟ । ସୌମନସ୍ୟଦ୍ୱାରାଏକାଗ୍ରତା ଶକ୍ତି ଜନ୍ମେ ଓ ଇନ୍ଦ୍ରିୟ ଜୟ କରାଯାଏ । ଶ୍ରଦ୍ଧା ଭକ୍ତି ସହକାରେ ଶାସ୍ତ୍ରବିହିତ ତପସ୍ୟାରେ ରତ ହେଲେ କ୍ରମେ ଶରୀର ଓ ମନର ଶକ୍ତି ପ୍ରତିବନ୍ଧକ ଜ୍ଞାନାବରଣ ନଷ୍ଟ ହୁଏ । ସୁତରାଂ ଯୋଗୀ ଶରୀର ଓ ଇନ୍ଦ୍ରିୟ ଉପରେ ଇଚ୍ଛାନୁରୂପ ଆଧିପତ୍ୟ ବିସ୍ତାର କରିପାରେ, ଅର୍ଥାତ୍ ଇନ୍ଦ୍ରିୟଗଣକୁ ଇନ୍ଦ୍ରିୟାତୀତ ସୂକ୍ଷ୍ମାଦପି ସୂକ୍ଷ୍ମ ପଦାର୍ଥରେ ଏବଂ ଦୂରବର୍ତ୍ତୀ ପଦାର୍ଥରେ ମଧ୍ୟ ସଂଯୁକ୍ତ କରିପାରେ । ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନଦ୍ୱାରା ଅଭୀପ୍ସିତ ବସ୍ତୁ ଲାଭ କଲେ ଈଶ୍ୱରାନୁଗ୍ରହରୁ ଆତ୍ମକ୍ଲେଶ ଦଗ୍ଧହୋଇ ଯୋଗଫଳ ଲାଭ ହୁଏ । ପୁରାଣ ମତରେ ନିମ୍ନୋକ୍ତ ବିଷୟସକଳ ନିୟମ ପଦବାଚ୍ୟ, ଯଥା-

"ନିୟମାଃ ପଞ୍ଚସତ୍ୟାଦ୍ୟାଃ ବାହ୍ୟମାଭ୍ୟନ୍ତରଂ ଦ୍ୱିଧା ।
ଶୌଚଂ ତୁଷ୍ଟିଶ୍ଚ ସନ୍ତୋଷଃ ତପଶ୍ଚେନ୍ଦ୍ରିୟ ନିଗ୍ରହଃ ।।

ସ୍ନାନମୌନୋପବାସେଜ୍ୟା ସ୍ୱାଧ୍ୟାୟୟୋପସ୍ଥ ନିଗ୍ରହଃ ।
ଯମାଃ ପଞ୍ଚାର୍ଥ ନିୟମାଃ ଶୌଚ ଦ୍ୱିବିଧମୀରିତଂ ।
ସନ୍ତୋଷଃ ତପସଂ ଜପଂ ବାସୁଦେବାର୍ଚ୍ଚନଂ ଯମଃ ।।''

ଶୌଚ, ତୁଷ୍ଟି, ସନ୍ତୋଷ, ତପଃ, ଇନ୍ଦ୍ରିୟନିଗ୍ରହ, ସ୍ନାନ, ମୌନ, ଉପବାସ, ଯାଗ, ସ୍ୱାଧ୍ୟାୟ, ବ୍ରହ୍ମଚର୍ଯ୍ୟ, ଅକ୍ରୋଧ, ଗୁରୁଭକ୍ତି ଓ ଶୌଚ ଏ ସକଳକୁ ନିୟମ କହି । ତନ୍ତ୍ରରେ ସୁଦ୍ଧା ଉଲ୍ଲେଖ ଅଛି -

''ତପଃ ସନ୍ତୋଷମାସ୍ତିକ୍ୟଂ ଦାନଂ ଦେବସ୍ୟ ପୂଜନଂ ।
ସିଦ୍ଧାନ୍ତ ଶ୍ରବଣଂ ଚୈବ ହ୍ରୀ ସ୍ମୃତିଶ୍ଚ ତପୋହୁତଂ ।
ଦଶୈତେ ନିୟମାଃ ପ୍ରୋକ୍ତାଃ ଯୋଗଶାସ୍ତ୍ରସ୍ୱବିଶାରଦୈଃ ।।'' (ତନ୍ତ୍ରସାରେ)

ତପସ୍ୟା, ସନ୍ତୋଷ, ଆସ୍ତିକ୍ୟ, ଦାନ, ଦେବପୂଜା, ସିଦ୍ଧାନ୍ତ ଶ୍ରବଣ, ହ୍ରୀ, ସ୍ମୃତି, ଜପ, ହୋମ ଏ ଦଶଗୋଟି ନିୟମ । ପୂର୍ବୋକ୍ତ ବିଷୟଗୁଡ଼ିକରେ ସାମ୍ପ୍ରଦାୟିକ ଗନ୍ଧ ଲେଶ ସୁଦ୍ଧା ନାହିଁ । ନ୍ୟୂନାଧିକରେ ଏହା ସମସ୍ତ ଆର୍ଯ୍ୟଧର୍ମାନୁମୋଦିତ ।

## ଆସନ

ପ୍ରତ୍ୟହ ଯୋଗୀକୁ କେତେଗୁଡ଼ିଏ ଶାରୀରିକ ଓ ମାନସିକ ପ୍ରକ୍ରିୟାର ଅନୁଷ୍ଠାନ କରିବାକୁ ହେବ; ସୁତରାଂ ଦୀର୍ଘକାଳ ନିଶ୍ଚଳ ଭାବରେ ବସିବାପାଇଁ ଆସନ ଅଭ୍ୟାସ କରିବା ଆବଶ୍ୟକ । ଯୋଗସାଧନ ସମୟରେ ଶରୀର ଭିତରେ ନାନାପ୍ରକାର ପ୍ରକ୍ରିୟାର ଉପକ୍ରମ ହୁଏ । ସ୍ନାୟବିକ ଶକ୍ତି ପ୍ରବାହର ଗତି ପ୍ରତ୍ୟାବର୍ତ୍ତନ କରି ନୂତନ ପଥରେ ପ୍ରବାହିତ କରିବାକୁ ହେବ । ସେତେବେଳେ ଶରୀର ମଧ୍ୟରେ ନୂତନ ପ୍ରକାର କମ୍ପନ ବା କ୍ରିୟା ଆରମ୍ଭ ହେବ । ଏହି କ୍ରିୟାର ଅଧିକାଂଶ ମେରୁଦଣ୍ଡର ଅଭ୍ୟନ୍ତରରେ ହୁଏ । ସୁତରାଂ ଆସନର ଅନିବାର୍ଯ୍ୟ ପ୍ରୟୋଜନ, ମେରୁଦଣ୍ଡକୁ ସଳଖ ଭାବରେ ରଖିବ । ଏହାଦ୍ୱାରା ତେତେଦୂରଆଧ୍ୟାତ୍ମିକ ଉନ୍ନତି ନହେଲେ ହେଁ ଶରୀର ରକ୍ଷା ହୁଏ ଏବଂ ଆଧ୍ୟାତ୍ମିକ ଉନ୍ନତି ଦିଗରେ ସାହାଯ୍ୟ କରେ । ଘେରଣ୍ଡ ସଂହିତାର ମତରେ - ଜୀବ ଜନ୍ତୁର ସଂଖ୍ୟା ଯେତେ, ଆସନର ସଂଖ୍ୟା ତେତେ । ପୂର୍ବେ ଶିବ ୮୪ ଲକ୍ଷ ଆସନ ବର୍ଣ୍ଣନା କରିଅଛନ୍ତି; ତନ୍ମଧ୍ୟରୁ ୮୪ ଗୋଟି ଆସନ ମାତ୍ର ପ୍ରଧାନ । କିନ୍ତୁ ମର୍ତ୍ତ୍ୟ ଲୋକରେ ୩୨ ପ୍ରକାର ଆସନ ହିଁ ଶୁଭପ୍ରଦ । ଯଥା -

ସିଦ୍ଧଂ ପଦ୍ମଂ ତଥା ଭଦ୍ରଂ ମୁକ୍ତଂ ବଜ୍ରଂ ଚ ସ୍ୱସ୍ତିକଂ ।
ସିଂହଂଚ ଗୋମୁଖଂ ବୀରଂ ଧନୁରାସନ ମେବ ଚ ।।
ମୃତଂ ଗୁପ୍ତଂ ତଥା ମତ୍ସ୍ୟଂ ମତ୍ସ୍ୟେନ୍ଦ୍ରାସନ ମେବ ଚ ।
ଗୋରକ୍ଷଂ ପଶ୍ଚିମୋତ୍ତାନ ମୁତ୍କଟଂ ସଂକଟଂ ତଥା ।।
ମୟୂରଂ କୁକ୍କୁଟଂ କୂର୍ମଂ ତଥା ଚୋତ୍ତାନକୂର୍ମକଂ ।

ଉତ୍ତାନ ମଣ୍ଡୂକଂ ବୃକ୍ଷଂ ମଣ୍ଡୂକଂ ଗରୁଡ଼ଂ ବୃଷଂ ।।
ଶଲଭଂମକରଂ ଚୋଷ୍ଟ୍ରଂ ଭୁଜଙ୍ଗଂ ଯୋଗ ମାସନଂ ।
ଦ୍ୱାତ୍ରିଂଶଦାସନଂ ହ୍ୟେତତ୍ ମର୍ତ୍ତ୍ୟଲୋକେ ଚ ସିଦ୍ଧିଦଂ ।।''

ସିଦ୍ଧ, ପଦ୍ମ, ଭଦ୍ର, ମୁକ୍ତ, ବଜ୍ର, ସ୍ୱସ୍ତିକ, ସିଂହ, ଗୋମୁଖୀ, ବୀର, ଧନୁ, ଶବ, ଗୁପ୍ତ, ମତ୍ସ୍ୟ, ମତ୍ସ୍ୟେନ୍ଦ୍ର, ଗୋରକ୍ଷ; ପଶ୍ଚିମୋତ୍ତାନ, ଉତ୍କଟ, ସଙ୍କଟ, ମୟୂର, କୁକ୍କୁଟ, କୂର୍ମ, ଉତ୍ତାନକୂର୍ମ, ଉତ୍ତାନମଣ୍ଡୂକ, ବୃକ୍ଷ, ମଣ୍ଡୂକ, ଗରୁଡ଼, ବୃଷ, ଶଲଭ, ମକର, ଉଷ୍ଟ୍ର, ଭୁଜଙ୍ଗ ଓ ଯୋଗ ଏହି ବତ୍ରିଶ ପ୍ରକାର ଆସନ ଶୁଭପ୍ରଦ ।

ଶିବ ସଂହିତା ମତରେ ଚତୁରଶିତି ପ୍ରକାର ଆସନ ମଧ୍ୟରୁ ସିଦ୍ଧ, ପଦ୍ମ, ଉଗ୍ର, ସ୍ୱସ୍ତିକ ଏ ଚାରୋଟି ମାତ୍ର ପ୍ରଧାନ ଆସନ । ଏହାର ପ୍ରକ୍ରିୟାପ୍ରଣାଳୀ ଯୋଗଶାସ୍ତ୍ରରେ ଦ୍ରଷ୍ଟବ୍ୟ । ଦୁଃଖର ବିଷୟ ଆଧୁନିକ ଯୋଗୀଗଣ ହଠଯୋଗ ପ୍ରଭାବରେ ଯୋଗାଭ୍ୟାସ ସହାୟବିହୀନ କେତେଗୁଡ଼ିଏ ଆସନ ମାତ୍ର ଅନୁଷ୍ଠାନ କରି ଲୋକଙ୍କୁ ଚମତ୍କୃତ କରୁଅଛନ୍ତି ।

## ପ୍ରାଣାୟାମ

ପ୍ରାଣାୟାମ -

ପ୍ରାଣସ୍ୟ ବାୟୁବିଶେଷସ୍ୟ ଆୟାମଃ ରୋଧଃ, ପ୍ରାଣାନାଂ ଗତି ବିଚ୍ଛେଦକାରକ-ବ୍ୟାପାର-ଭେଦଃ ।

ଭାଗବତ କହେଁ -
''ପ୍ରାଣାୟାମୈର୍ଦହେତ୍ ଦୋଷାନ୍ ଧାରଣାଭିଷ୍ଟ କିଲ୍ବିଷାନ୍ ।
ପ୍ରାତ୍ୟାହାରେଣ ସଂସର୍ଗାନ୍ ଧ୍ୟାନେନାନୀଶ୍ୱରାନ୍‌ଗୁଣାନ୍ ।''

ଯୋଗଶାସ୍ତ୍ର ମତରେ - ତସ୍ମିନ୍‌ସତି ଶ୍ୱାସପ୍ରଶ୍ୱାସୟୋର୍ଗତି ବିଚ୍ଛେଦ ପ୍ରାଣାୟାମଃ, ଅର୍ଥାତ୍ ଶ୍ୱାସପ୍ରଶ୍ୱାସର ସ୍ୱାଭାବିକ ଗତିରୋଧ କରି ପ୍ରାଣକୁ ଆୟତ୍ତ କରିବା ପ୍ରକ୍ରିୟାକୁ ପ୍ରାଣାୟାମ କହି । ଆସନ ସିଦ୍ଧି ହେବାପରେ କୌଣସି କୌଣସି ଯୋଗୀଙ୍କ ମତରେ ନାଡ଼ୀ ଶୁଦ୍ଧି କରିବାକୁ ହେବ; କିନ୍ତୁ ଅନେକେ ଏହା ରାଜଯୋଗାନ୍ତର୍ଗତ ନୁହେ ବୋଲି ଏହାର ଆବଶ୍ୟକତା ସ୍ୱୀକାର କରନ୍ତି ନାହିଁ । କିନ୍ତୁ ଯୋଗୀଶ୍ରେଷ୍ଠ ଭାଷ୍ୟକାର ଶଙ୍କରାଚାର୍ଯ୍ୟ ଏଠାରେ ଏହାର ବିଧାନ ଦେଇଥିବା ଯୋଗୁଁ ଉକ୍ତ ବିଷୟ ଉଲ୍ଲେଖ କରିବା ଉଚିତ ମନେକରୁଁ ।

ଶ୍ରୀ ଶଙ୍କରାଚାର୍ଯ୍ୟ ଶ୍ୱେତାଶ୍ୱତରୋପନିଷତ୍ ଭାଷ୍ୟରେ ଲେଖିଛନ୍ତି, ''ପ୍ରାଣାୟାମକ୍ଷୟିତ ମନୋମଳସ୍ୟ ଚିତ୍ତଂ ବ୍ରହ୍ମଣି ସ୍ଥିତଂ ଭବତୀତି'' ପ୍ରାଣାୟାମୋ ନିର୍ଦ୍ଦିଶ୍ୟତେ- ପ୍ରଥମଂ ନାଡ଼ୀଶୋଧନଂ କର୍ତ୍ତବ୍ୟଂ, ତତଃ ପ୍ରାଣୟାମ ତଧିକାରଃ, ଦକ୍ଷିଣ ନାସାପୁଟ, ମଙ୍ଗୁଲ୍ୟା ବିଷ୍ଟଭ୍ୟ ବାମେନ ବାୟୁଂ ପୂରୟିତ୍ୱା ଯଥାଶକ୍ତିଃ । ତଥୋଃ ନ୍ତରୟୁତ୍ସୃ ଜ୍ୟୈବ ଦକ୍ଷିଣେନପୁଟେନ ସମୁତ୍ସୃ ଜେତ୍ ସବ୍ୟମପି

ଧାରୟେତ୍, ପୁନର୍ଦକ୍ଷିଣେନ ପୂରୟିତ୍ୱା ସବ୍ୟେନ ସମୁତ୍ସୃଜେତ୍ ଯଥାଶକ୍ତିଃ ତ୍ରିପଞ୍ଚକୃତ୍ୱୈବମଭ୍ୟସ୍ୟତଃ ସବନଚତୁଷ୍ଟୟ ମପରରାତ୍ରେ ମଧ୍ୟାହ୍ନେ ପୂର୍ବରାତ୍ରେଽର୍ଦ୍ଧରାତ୍ରେ ଚ ପକ୍ଷାନ୍ମାସାଦ୍ ବିଶୁଦ୍ଧିର୍ଭବତି ।

ପ୍ରାଣାୟାମଦ୍ୱାରା ଯେଉଁ ଯୋଗୀର ମନୋମଳ କ୍ଷୟ ହୋଇଥାଏ, ସେହି ଯୋଗୀର ଚିତ୍ତ ବ୍ରହ୍ମରେ ସ୍ଥିତି ଲାଭ କରେ । ଅତଏବ ଶାସ୍ତ୍ରରେ ପ୍ରାଣାୟାମ ବିଷୟ ବହୁଳ ଭାବେ ଆଲୋଚିତ ହୋଇଅଛି । ନାଡ଼ୀ ଶୁଦ୍ଧି ହେଲେ ପ୍ରାଣାୟାମ କରିବା ଶକ୍ତି ଜନ୍ମେ ।

ବୃଦ୍ଧାଙ୍ଗୁଷ୍ଠିଦ୍ୱାରା ଦକ୍ଷିଣ ନାସାପୁଟ ଧାରଣ କରି ବାମ ନାସାପୁଟରେ ଯଥାଶକ୍ତି ବାୟୁ ଗ୍ରହଣ କରିବ, ପରେ ମଧ୍ୟରେ ନିମିଷ ବିନ୍ଦୁ ବିଶ୍ରାମ ନକରି ବାମ ନାସାପୁଟ ରୋଧ କରି ଦକ୍ଷିଣ ନାସାପୁଟରେ ବାୟୁ ରେଚନ କରିବ । ପୁନର୍ବାର ଦକ୍ଷିଣନାସାପୁଟରେ ବାୟୁ ଗ୍ରହଣ କରି ଯଥାଶକ୍ତି ବାମନାସାପୁଟରେ ବାୟୁ ରେଚନ କରିବ । ଅହୋରାତ୍ର ଚାରିଥର ଅର୍ଥାତ୍ ଉଷା, ମଧ୍ୟାହ୍ନ, ସାୟାହ୍ନ, ନିଶୀଥ, ଏହି ଚାରି ସମୟରେ ପୂର୍ବୋକ୍ତ କ୍ରିୟା ତିନି ବା ପାଞ୍ଚଥର ଅଭ୍ୟାସ କଲେଏକ ପକ୍ଷ ବା ଏକମାସ ମଧ୍ୟରେ ନାଡ଼ୀ ଶୁଦ୍ଧି ହୁଏ, ତତ୍ପରେ ପ୍ରାଣାୟାମରେ ଅଧିକାର ଜନ୍ମେ ।

ପ୍ରଥମେ ଶାସ୍ତ୍ରୋକ୍ତ ପ୍ରଣାଳୀ ଅବଲମ୍ବନ କରି ଗୁରୂପଦେଶ କ୍ରମେ ନାସିକାଦ୍ୱାରା ଅମୃତମୟ ବାହ୍ୟବାୟୁ ଆକଶ କରିବ, ପରେ ପରିମିତ ଭାବରେ ଯୋଗଶାସ୍ତ୍ରୋକ୍ତ ବିଧାନ କ୍ରମେ ତାହା ଧାରଣ କରିବ; ଶେଷରେ ଧୀରେ ଧୀରେ ତାହା ପରିତ୍ୟାଗ କରିବ । ଏହି ପ୍ରକ୍ରିୟାର ନାମ ପ୍ରାଣାୟାମ । ପ୍ର-ଆ-ଯମ, ପ୍ରାଣକୁ ସମ୍ୟକସଂଯତ୍ ଅର୍ଥାତ୍ ଇଚ୍ଛାନୁରୂପେ ନିରୋଧକରଣ । ପ୍ରାଣର ଗତି ଯଦି ଇଚ୍ଛାଧୀନ ହୁଏ ତାହାହେଲେ ଚିତ୍ତ ସହଜେ ସ୍ଥିର ହୁଏ । ଯେହେତୁ ପ୍ରାଣ ହିଁ ଶ୍ୱାସ ପ୍ରଶ୍ୱାସ ରୂପେ ଗତି ଅବଲମ୍ବନ କରି ସମୁଦାୟ ଦେହଯନ୍ତ୍ର ପରିଚାଳିତ କରୁଅଛି । ପ୍ରାଣ ହିଁ ଇନ୍ଦ୍ରିୟ ଚକ୍ର, ନାଡ଼ୀ ଚକ୍ର ଓ ମନର ପରିଚାଳକ । କାମ କ୍ରୋଧାଦି ବା ମନୋଦୋଷ ବିକ୍ଷେପ ସମସ୍ତ ପ୍ରାଣ ବାୟୁର ଗତି ଦୋଷରୁ ଘଟେ । "ତସ୍ମିନ୍‌ସତି ଶ୍ୱାସପ୍ରଶ୍ୱାସୟୋର୍ଗତିବିଚ୍ଛେଦଃ ପ୍ରାଣାୟାମଃ" । (ପାତଞ୍ଜଳ) ଉପରୋକ୍ତ ଶ୍ୱାସପ୍ରଶ୍ୱାସର ଗତି ବିଚ୍ଛେଦକୁ ପ୍ରାଣାୟାମ କୁହାଯାଏ । ଏହି ପ୍ରାଣାୟାମ ତିନି ପ୍ରକାର; ଏକ ବାହ୍ୟ ବୃତ୍ତି, ଦ୍ୱିତୀୟ ଆଭ୍ୟନ୍ତର ବୃତ୍ତି ଓ ତୃତୀୟ ସ୍ତମ୍ଭବୃତ୍ତି । ଉଦରଗତ ବାୟୁକୁ ବାହାର କରିଦେବା ଅର୍ଥାତ୍ ଶ୍ୱାସ ପରିତ୍ୟାଗ କରିବା ଅଥବା ତାହାକୁ ବାହାରେ ସ୍ଥାପନ କରିବାର ନାମ ବାହ୍ୟ ବୃତ୍ତି । ଏହାର ଅପର ନାମ ରେଚକ; ବାହାରର ବାୟୁ ଆକର୍ଷଣ କରି ଶରୀର ମଧ୍ୟରେ ପୂରଣ କରିବାର ନାମ ଅଭ୍ୟନ୍ତର ବୃତ୍ତି, ଏହାର ଅପର ନାମ ପୂରକ । ଏହି ରେଚକ, ପୂରକ କିଛି ନ କରି ପ୍ରପୂରିତ ବାୟୁରାଶିକି ଅଭ୍ୟନ୍ତରେ ରୁଦ୍ଧ କରିବା ନାମ ବୃତ୍ତିର ସ୍ତମ୍ଭ । ଏହାର ଅପର ନାମ କୁମ୍ଭକ ଅର୍ଥାତ୍ କୁମ୍ଭରେ ଜଳ ପୂର୍ଣ୍ଣ ନ ହେଲେ ଯେପରି ତରଙ୍ଗାୟିତ ହୁଏ,ସେହିପରି ଶରୀରରେ ସମସ୍ତ ଶିର ପ୍ରଶିର ପ୍ରଭୃତିରେ ଯଦି ବାୟୁପୂର୍ଣ୍ଣ ଭାବେ ନରହେ ତେବେ ଆନ୍ଦୋଳନ ଉପସ୍ଥିତ ହୁଏ ।

ସାବଧାନ ହୋଇ ପ୍ରାଣାୟାମ ଅନୁଷ୍ଠାନ କରିବ ନୋଚେଭୟଙ୍କର ପୀଡ଼ାର ସମ୍ଭାବନା । ଯୋଗ ଚିନ୍ତାମଣିରେ ଲେଖାଅଛି-

ଅଯୁକ୍ତାଭ୍ୟାସଯୋଗେନ ସର୍ବବ୍ୟାଧିସମୁଦ୍ଭବଃ ।
ଭବନ୍ତି ବିବିଧାରୋଗାଃ ପବନସ୍ୟ ବ୍ୟତିକ୍ରମାତ୍ ।

ପବନ ବ୍ୟତିକ୍ରମରୁ ଓ ଅଯୁକ୍ତାଭ୍ୟାସବଶରୁ ସମସ୍ତ ବ୍ୟାଧି ଉତ୍ପନ୍ନ ହୁଏ । ନିତାନ୍ତ ଅସ୍ୱାଭାବିକ ଚାଳନରେ ପ୍ରାଣନାଶର ମଧ୍ୟ ସମ୍ଭାବନା । ଏ ସମ୍ବନ୍ଧରେ "ପବନ ବିଜୟ ସ୍ୱରୋଦୟ" ଗ୍ରନ୍ଥରେ ଉଲ୍ଲେଖ କରାଯାଇଛି- ପ୍ରାଣବାୟୁ ଦେହରୁ ବହିର୍ଗତ ହୋଇ ଦ୍ୱାଦଶାଙ୍ଗୁଳ ପର୍ଯ୍ୟନ୍ତ ବାହାରକୁ ଯିବା ସ୍ୱାଭାବିକ । ଗାନବେଳେ ୧୬ ଅଙ୍ଗୁଳି, ଭୋଜନ ସମୟରେ ୨୦ ଅଙ୍ଗୁଳ, ସବେଗଗମନବେଳେ ୨୪ ଅଙ୍ଗୁଳ, ନିଦ୍ରାବେଳେ ୩୦ ଅଙ୍ଗୁଳ, ସ୍ତ୍ରୀ ସଂସର୍ଗବେଳେ ୩୬ ଅଙ୍ଗୁଳ ଏବଂ ବ୍ୟାୟାମବେଳେ ତଦପେକ୍ଷା କିଛି ଅଧିକ ବହିର୍ଗତ ହୁଏ । ଅତଏବ ପ୍ରାଣାୟାମ ଶିକ୍ଷାର୍ଥୀ ପ୍ରାଣର ସ୍ୱାଭାବିକ ବାହ୍ୟଗତି ପ୍ରତି ଲକ୍ଷ୍ୟ ରଖି ସାଧନା କରିବ । ପ୍ରାଣାୟାମ ଅଭ୍ୟାସ କରିବା ପୂର୍ବରୁ ପ୍ରଥମେ ଉପଯୁକ୍ତ ଅଧିକାରୀ ହେବାକୁ ହେବ । ଯେଉଁମାନେ ବୃଦ୍ଧ, ବ୍ୟାଧିଗ୍ରସ୍ତ, ଦୁର୍ବଳ, କ୍ଳେଶଅସହିଷ୍ଣୁ କିମ୍ବା ଯେଉଁମାନଙ୍କର ମାନସିକ ତେଜ ନାହିଁ, ସର୍ବଦା ଗୃହବାସୀ, ସ୍ନେହମମତାଦି ପରିପୂର୍ଣ୍ଣ, କ୍ଳୀବ ସେମାନେ ନିକୃଷ୍ଟ ଅଧିକାରୀ; ଯେଉଁମାନେ ପ୍ରୌଢ଼ ନୁହନ୍ତି, ଯାହାର ବୀର୍ଯ୍ୟ, ଉତ୍ସାହ, ଅଧ୍ୟବସାୟ ଅଛି, ଯାହାର ବୁଦ୍ଧିବୃତ୍ତି ସମାନ ଏବଂ ସଂସାରରେ ଅନାସକ୍ତ, ସେମାନେ ମଧ୍ୟମାଧିକାରୀ । ଯେଉଁମାନଙ୍କର ମନ ଅତି ପବିତ୍ର ଓ ମହାନ୍, ଯେଉଁମାନେ ବୀର୍ଯ୍ୟଶାଳୀ, ଉତ୍ସାହଯୁକ୍ତ, କ୍ଷମାଶୀଳ, ସ୍ଥିରସ୍ୱଭାବ, ସୁସ୍ଥମନା, ସ୍ଥିର ବୁଦ୍ଧି, ଶାସ୍ତ୍ରଜ୍ଞାନସମ୍ପନ୍ନ, ସେମାନେ ଉତ୍ତମାଧିକାରୀ ।

ଯେଉଁମାନେ ବଳଶାଳୀ, ଯେଉଁମାନଙ୍କର ମାନସିକ ଅଧ୍ୟବସାୟ ଅତି ତୀକ୍ଷ୍ଣ, ସକଳ ଭୂତର ମଙ୍ଗଳକାମୀ, କରୁଣାଦୟା ପରିପୂର୍ଣ୍ଣ, ଅନ୍ତର ବାହ୍ୟର ମାଳିନ୍ୟଶୂନ୍ୟ, ଯୋଗୀ, ବିଦ୍ୱାନ୍ ବା ସିଦ୍ଧପୁରୁଷ ବଂଶରେ ଜାତ, ସେମାନେ ବିଶେଷ ଅଧିକାରୀ । ଘେରଣ୍ଡ ସଂହିତାରେ ଲେଖାଅଛି- "ଆଦୌ ସ୍ଥାନଂ ତତଃକାଳଂ ମିତାହାର ତତଃପରଂ । ନାଡ଼ୀଶୁଦ୍ଧିଷ୍ଚ ତତ୍ପଶ୍ଚାତ୍" ଇତ୍ୟାଦି । ଅର୍ଥାତ୍ ପ୍ରଥମରେ ସ୍ଥାନ, ତତ୍ପରେ କାଳ, ମିତାହାର, ନାଡ଼ିଶୁଦ୍ଧି ଇତ୍ୟାଦି, ପ୍ରାଣାୟାମ ବ୍ୟତୀତ କୌଣସି ଦେବପୂଜା କରଣୀୟ ନୁହେଁ । ଯଥା - "ଭୂତଶୁଦ୍ଧିଂ ତତଃକୁର୍ଯ୍ୟାତ୍ ପ୍ରାଣାୟାମ କ୍ରମେଣ ଚ" । ସଗର୍ଭ ଓ ନିଗର୍ଭ ଭେଦରେ ପ୍ରାଣାୟାମ ଦ୍ୱିବିଧ । ମନ୍ତ୍ରରୂପାତ୍ମକ ପ୍ରାଣାୟାମକୁ ସଗର୍ଭ ଏବଂ ମାତ୍ରାତ୍ମକ ପ୍ରାଣାୟାମକୁ ନିଗର୍ଭ କହି । ବୈଦିକ ଓ ତାନ୍ତ୍ରିକ ସନ୍ଧ୍ୟା ସହିତ ପ୍ରାଣାୟାମ ପ୍ରକ୍ରିୟା ସନ୍ନିହିତ ଅଛି । ଏହି ପ୍ରାଣାୟାମ ହିଁ ଆଦ୍ୟ ଓ ଶ୍ରେଷ୍ଠ ତପଃ ବୋଲି ଶାସ୍ତ୍ରରେ କଥିତ । ବ୍ରାହ୍ମଣସର୍ବସ୍ୱ କହେ -

କୁର୍ବନ୍ତୋଽପି ହି ପାପାନି ଯେତ୍ୱଂଧ୍ୟାୟନ୍ତି ପାବନି ।
ଉଭେ ସନ୍ଧ୍ୟେ ନ ତେଷାଂ ହି ବିଦ୍ୟତେ ତୁ ବିପାତକଂ ।।

ତ୍ରିଃପଠେଦାୟତଃ ପ୍ରାଣଃ ପ୍ରାଣାୟାମେନ ଯୋ ଦ୍ୱିଜଃ ।
ବର୍ତ୍ତତେ ନ ସ ଲିପ୍ୟେତ ପାତକୈରୁପପାତକୈଃ ।।

ବୃହଦ୍‌ବିଷ୍ଣୁ ଅଗ୍ନି, ଅତ୍ରି ପ୍ରଭୃତି ଋଷିଗଣ ପ୍ରାଣାୟାମ ବିଷୟରେ ବିସ୍ତର ଆଲୋଚନା କରିଅଛନ୍ତି ।

## ପ୍ରତ୍ୟାହାର ବିଚାର

ପ୍ରତ୍ୟାହାର ଶବ୍ଦର ଅର୍ଥ- ଚକ୍ଷୁରାଦି ଇନ୍ଦ୍ରିୟ ରୂପରସାଦି ପ୍ରତି ଆକୃଷ୍ଟ ହୋଇ ଧାବିତ ଓ ଆସକ୍ତ ହେଲେ ତହିଁରୁ ଫେରାଇ ଆଣିବା ଅର୍ଥାତ୍ ଚକ୍ଷୁ ଯେତେବେଳେ ରୂପରେ ଆସକ୍ତ ହେବ ତାହାକୁ ରୂପରୁ ନିବର୍ତ୍ତାଇ ମନର ନିକଟରେ ଅର୍ପଣ କରିବା । ଚକ୍ଷୁ ମନ ନିକଟରେ ରୂପ ଅର୍ପଣ ନକରି, କର୍ଣ୍ଣ ଶବ୍ଦ ଅର୍ପଣ ନକରି ନିଜ ନିଜ ଗୃହୀତବ୍ୟ ବିଷୟ ତ୍ୟାଗକରି ଅବିକୃତ ଅବସ୍ଥାରେ ଚିତ୍ତର ଅନୁଗତ ଥିବ । ଏହାର ତାତ୍ପର୍ଯ୍ୟ ଆସକ୍ତିଶୂନ୍ୟ ହେଲେ ଇନ୍ଦ୍ରିୟ ସକଳର ବ୍ୟାପାର ସ୍ୱାଧୀନ ହେବ । ପ୍ରତ୍ୟାହାର ଅଭ୍ୟାସ ସମୟରେ ଦୃଢ଼ଚିତ୍ତ ହୋଇ ରହିବ । ଯଥେଚ୍ଛାଚାରିତା ଯୋଗୁଁ ଚିତ୍ତ ଆୟତ୍ତ ହୋଇପାରେ ନାହିଁ ।

## ଧାରଣା-ଧ୍ୟାନ-ସମାଧି (ଯୋଗାଙ୍ଗ)

ଧାରଣା-ଅଦ୍ୱିତୀୟ ବସ୍ତୁ ବିଶେଷରେ ମନୋନିବେଶର ନାମ ଧାରଣା । ବିଷ୍ଣୁପୁରାଣ କହେ ଧ୍ୟେୟବସ୍ତୁ ବିଷୟରେ ଚିତ୍ତର ସ୍ଥିର ବନ୍ଧନର ନାମ ଧାରଣା । ଯଥା -

''ତସ୍ମାତ୍ ସମସ୍ତ ଶକ୍ତିନାମାଧାରେ ତତ୍ର ଚେତସଃ ।
କୁର୍ବୀତ ସଂସ୍ଥିତିଃ ସା ତୁ ବିଜ୍ଞେୟା ଶୁଦ୍ଧଧାରଣା ।।''

ଅର୍ଥାତ୍ - କୌଣସି ବିକ୍ଷେପରେ ବିଚଳିତ ନହୋଇ କେବଳ ବ୍ରହ୍ମ ବିଷୟରେ ମନଃ ସମାଧାନ କରିବାକୁ ଧାରଣା କୁହାଯାଏ । ଅଗ୍ନି ପୁରାଣର ମତ- ନିର୍ବାତଦୀପ ପରି ଚିତ୍ତ କୌଣସି ବିଷୟରେ ବିକ୍ଷିପ୍ତ ନହୋଇ ଏକମାତ୍ର ଧ୍ୟେୟ ବସ୍ତୁରେ ଅବସ୍ଥାନ କରିବ । ଧାରଣାଭ୍ୟାସଯୁକ୍ତାତ୍ମା ଅନ୍ତକାଳେ ପୁଣ୍ୟଲୋକ ପ୍ରାପ୍ତ ହୁଏ । ଏ ବିଷୟରେ ପାତଞ୍ଜଳକଙ୍କ ମତ - ''ଦେଶବନ୍ଧଶ୍ଚିତ୍ତସ୍ୟ ଧାରଣା'' । ଚିତ୍ତକୁ ଦେଶ ବିଶେଷରେ ବନ୍ଧନ କରି ରଖିବାର ନାମ ଧାରଣା । ଦେଶବିଶେଷର ତାତ୍ପର୍ଯ୍ୟ ହୃଦୟରେ ଗୋଟିଏ ପଦ୍ମର ଚିନ୍ତାକରି ସେହି ପଦ୍ମଜ୍ୟୋତିପୂର୍ଣ୍ଣ ଅଥବା ମସ୍ତିଷ୍କାଭ୍ୟନ୍ତରସ୍ଥ ସହସ୍ର ଦଳ କମଳ ଅଥବା ପୂର୍ବୋକ୍ତ ସୁଷୁମ୍ନାର ମଧ୍ୟସ୍ଥ ଚକ୍ରରେ ଜ୍ୟୋତିର୍ମୟ ରୂପରେ ଆବଦ୍ଧ କରିବା ।

ଧାରଣା ସ୍ଥାୟୀହେଲେ ଧ୍ୟାନରେ ପରିଣତ ହୁଏ । ଇଷ୍ଟ ବସ୍ତୁରେ ମନୋଃଭିନିବେଶ କରିବା ଚେଷ୍ଟାକରି ପରେ ଚିତ୍ତର ଚତୁର୍ଦ୍ଦିଗସ୍ଥ ବୃତ୍ତିଗୁଡ଼ିକ ବହିଷ୍କୃତ କରି ଧାରଣା ବସ୍ତୁରେ ଅଭିନିବେଶ କରିବ । ଧାରଣା, ଧ୍ୟାନ ଓ ସମାଧି, ଯୋଗର ପ୍ରଥମ, ଦ୍ୱିତୀୟ ଓ ଚରମାବସ୍ଥା ଭିନ୍ନ ଅନ୍ୟ କିଛି ନୁହେଁ । ଏହି ତ୍ରିବିଧ ମାନସିକ ପ୍ରକ୍ରିୟାର ନାମ ସଂଯମ । ଉକ୍ତ ସଂଯମପ୍ରବାହ ଶ୍ୱାସପ୍ରଶ୍ୱାସ

ପରି ଅନବଚ୍ଛିନ୍ନ ଭାବେ ପ୍ରବାହିତ ହେଲେ ପ୍ରଜ୍ଞା ନାମକ ଉତ୍କୃଷ୍ଟ ବୁଦ୍ଧିର ଆଲୋକ ଅର୍ଥାତ୍ ନୈର୍ମଲ୍ୟଜନିତ ଶକ୍ତିବିଶେଷ ପ୍ରାଦୁର୍ଭୂତ ହୁଏ । ଏହା ଯୋଗୀଭିନ୍ନ ଅନ୍ୟର ଅବୋଧ୍ୟ । ପତଞ୍ଜଳି କହିଅଛନ୍ତି- ଧାରଣା ଧ୍ୟାନ ସମାଧି ଏହି ପ୍ରକ୍ରିୟା ତ୍ରିତୟର ମୂଳରେ ଉତ୍ତେଜକ ଓ ବୁଦ୍ଧି ପରିଷ୍କାରକ ଇଚ୍ଛାଶକ୍ତି ବିଦ୍ୟମାନ । ଯୋଗୀମାନେ ଶିକ୍ଷାଦ୍ୱାରା ଏହାକୁ ଆୟତ୍ତ କରିଥାନ୍ତି । ସିଦ୍ଧିପାଇଁ ଏକମାତ୍ର ସଂଯମ ଅବଲମ୍ବନୀୟ । ଏହି ସଂଯମ ଧାରଣା, ଧ୍ୟାନ ଓ ସମାଧି ସାପେକ୍ଷ । ଦ୍ୱାଦଶବାର ପ୍ରାଣାୟାମ କଲେ ତାହାକୁ ପ୍ରତ୍ୟାହାର କୁହାଯାଏ । ଦ୍ୱାଦଶ ପ୍ରତ୍ୟାହାରରେ ଧାରଣା ହୁଏ । ହୃଦୟରେ ପଞ୍ଚଭୂତର ପୃଥକ୍ ପୃଥକ୍ ରୂପେ ଯେଉଁ ଧାରଣା ଏବଂ ଯାହା ମନର ନିଶ୍ଚଳତ୍ୱ ହେତୁ ତାହାକୁ ଧାରଣା କୁହାଯାଏ । କାଶୀ ଖଣ୍ଡରେ ଲେଖିଅଛନ୍ତି -

"ହରିତାଳନିଭାଂ ଭୂମିଂ ସାଳଂକାରାଂ ସୁମେଧସଂ ।
ଚତୁଷ୍କୋଣାଂ ହୃଦି ଧ୍ୟାୟେତ୍ ଏଷା ସ୍ୟାତ୍ କ୍ଷିତିଧାରଣା ।।"

ଅର୍ଥାତ୍ - ହରିତାଳ ନିଭା ଅଳଂକୃତା ଭୂମି ହୃଦୟରେ ଧ୍ୟାନ କରିବ, ଏହାହିଁ କ୍ଷିତିଧାରଣା । ବିଷ୍ଣୁଶକ୍ତି ସମନ୍ୱିତ ଅର୍ଦ୍ଧଚନ୍ଦ୍ର ସଦୃଶ ଜଳ ହୃଦୟରେ ଧ୍ୟାନ କଲେ ଜଳଧାରଣା ହୁଏ । ଇନ୍ଦ୍ରଗୋପତୁଲ୍ୟ ତ୍ରିକୋଣରେଫସଂଯୁକ୍ତ ରୁଦ୍ର ତେଜଃ ଧାରଣା କଲେ ତଦ୍ଦ୍ୱାରା ବହ୍ନିଧାରଣା ହୁଏ । ହୃଦୟର ମଧ୍ୟସ୍ଥଳରେ ବାୟୁତତ୍ତ୍ୱ ଧାରଣା କଲେ ବାୟୁଧାରଣା ହୁଏ । ଏହି ପଞ୍ଚଭୂତ ଧାରଣାରୁ ପଞ୍ଚଭୂତ ଜୟ ହୁଏ । ଏହାର ପାଞ୍ଚୋଟି ନାମ ଅଛି । ଯଥା -

"'ସ୍ତମ୍ଭନୀ ପ୍ଲାବନୀ ଚୈବ ଶୋଧନୀ ଭ୍ରାମଣୀ ତଥା ।
ଶମନୀ ଚ ଭବତ୍ୟେତା ଭୂତାନାଂ ପଞ୍ଚଧାରଣା ।"

## ଧ୍ୟାନର ବିଷୟ

ଧ୍ୟାନ ପଦରେ ଅଦ୍ୱିତୀୟ ବସ୍ତୁରେ ଚିତ୍ତର ଏକାଗ୍ରତା ବା ପରମାତ୍ମଚିନ୍ତନ । ଗରୁଡ଼ ପୁରାଣ ଏହାର ବ୍ୟୁତ୍ପତ୍ତି କରିଅଛନ୍ତି -

"ଧ୍ୟୈଚିନ୍ତାୟାଂ ସ୍ମୃତୋଧାତୁ ଶ୍ଚିନ୍ତାତତ୍ତ୍ୱେନ ନିଶ୍ଚଳା ।
ଏତଦ୍ଧ୍ୟାନମିହପ୍ରୋକ୍ତଂ ସଗୁଣଂ ନିର୍ଗୁଣଂ ଦ୍ୱିଧା
ସଗୁଣଂ ମନ୍ତ୍ରଭେଦେନ ନିର୍ଗୁଣ କେବଳଂ ମତଂ ।।"

ଅର୍ଥାତ୍ - ଧ୍ୟୈ ଧାତୁର ଅର୍ଥ ଚିନ୍ତା କରିବା । ଯେଉଁ ସ୍ଥଳରେ ତତ୍ତ୍ୱଦ୍ୱାରା ନିର୍ମଳଚିନ୍ତା କରାଯାଏ ତାହାକୁ ଧ୍ୟାନ କହି । ଏହି ଧ୍ୟାନ ସଗୁଣ ଓ ନିର୍ଗୁଣ ଭେଦରେ ଦ୍ୱିବିଧ- ମନ୍ତ୍ର ଯୁକ୍ତ ଚିନ୍ତାକୁ ସଗୁଣ ଧ୍ୟାନ ଏବଂ ମନ୍ତ୍ରଭିନ୍ନ ଧ୍ୟାନକୁ ନିର୍ଗୁଣଧ୍ୟାନ କହି । ଯେଉଁ ବସ୍ତୁରେ ତୁମ୍ଭେ ବାହ୍ୟେନ୍ଦ୍ରିୟ ନିରୋଧ ପୂର୍ବକ ଅନ୍ତରିନ୍ଦ୍ରିୟ ଧାରଣ କରିଅଛ, ସେହି ବସ୍ତୁଜ୍ଞାନ ଯଦି ଅବିଚ୍ଛେଦ ଭାବରେ ପ୍ରବାହିତ ହୁଏ ତାହାହେଲେ ତାଦୃଶ୍ୟ ବୃତ୍ତିପ୍ରବାହ ଧ୍ୟାନ ନାମେ ଅଭିହିତ । ଧ୍ୟାନ

ପରାକାଷ୍ଠା ପ୍ରାପ୍ତହେଲେ ସକଳ ପ୍ରକାର ଦୁଃଖ ନିବୃତ୍ତି ହୁଏ । ଯଥା- "ଧ୍ୟାନହେୟାଃତାଦ୍ ବୃଦୟଃ" (ଯୋଗସୂତ୍ର) ପାର୍ଥିବ ସୁଖଭୋଗ ସୁଖ ପଦବାଚ୍ୟ ନୁହେଁ ବୋଲି ଦାର୍ଶନିକଗଣ କହିଅଛନ୍ତି । ଯଥା- ତତ୍‌ଦୁଃଖପକ୍ଷେ ନିକ୍ଷେପଣୀୟଃ । ଅର୍ଥାତ୍- ତାହା ଦୁଃଖ ମଧ୍ୟରେ ପରିଗଣିତ କରିବା । ପରିପୁଷ୍ଟ କ୍ଳେଶରାଶିର ବିନାଶ ପାଇଁ ଶାସ୍ତ୍ର ସମୂହରେ ବିବିଧ ଉପାୟ ନିର୍ଦ୍ଦେଶ କରିଅଛନ୍ତି । କ୍ଳେଶ ନାମକ ଅବିଦ୍ୟା ପ୍ରବଳ ଅବସ୍ଥାରେ ରହି ମୋହାଦି ରୂପେ ବିବିଧ ଭୋଗର ସୃଷ୍ଟି କରେ । ସେ ସକଳ ସ୍ଥୂଳ ମଧ୍ୟେ ପରିଣତ ହୁଏ । ସେହି ସ୍ଥୂଳ ଅବସ୍ଥା ନଷ୍ଟ କରିବାର ଉପାୟ ଧ୍ୟାନ । ବହୁଦିନ ବ୍ୟାପୀ ବହୁବାର ଧ୍ୟାନ କରିପାରିଲେ କ୍ରମେ ସୁଖ, ଦୁଃଖ ଓ ମୋହାଦି ଚିତ୍ତବୃତ୍ତି ବିଲୁପ୍ତ ପ୍ରାୟ ହୋଇଯାଏ । ସୁତରାଂ ଅବିଦ୍ୟା, ଅସ୍ମିତା ପ୍ରଭୃତି କ୍ଳେଶପଞ୍ଚକର ବୃତ୍ତି ଧ୍ୟାନ ନାଶର ପ୍ରଧାନ କାରଣ ।

ଅଗ୍ରେ ଯେପରି ବସ୍ତ୍ରର ପ୍ରକ୍ଷାଳନ ପରେ କ୍ଷାର ସଂଯୋଗ ଓ ଉତ୍ତାପ ପ୍ରଦାନପୂର୍ବକ ନିର୍ଣ୍ଣେଜନଦ୍ୱାରା ବସ୍ତ୍ରମଳ ଅପନୀତ ହୁଏ । ସେପରି ପ୍ରଥମେ କ୍ରିୟାଯୋଗ ପରେ ଧ୍ୟାନଯୋଗ ଅବଲମ୍ବନ କରି ଚିତ୍ତମଳ ବିଦୂରିତ କରିବାକୁ ହେବ ।

କ୍ରିୟାଯୋଗ ଓ ଧ୍ୟାନଯୋଗଦ୍ୱାରା ଚିତ୍ତକ୍ଳେଶ ସକଳ ବିଦୂରିତ ହୁଏସତ୍ୟ କିନ୍ତୁଏହାର ସଂସ୍କାର ଲୟ ହୁଏ ନାହିଁ । ତାହା ସମାଧି ଭାବନାଦ୍ୱାରା ବିନଷ୍ଟ ହୁଏ । କ୍ରିୟାଯୋଗ ଓ ଧ୍ୟାନଯୋଗଦ୍ୱାରା କ୍ଳେଶ ସମୂହକୁ ଦଗ୍ଧ ନକଲେ ଅର୍ଥାତ୍ ଦଗ୍ଧବୀଜପରି ନିସ୍ତେଜ ବା ଶକ୍ତିହୀନ ନକଲେ ଚିରକାଳ ଶୁଭାଶୁଭ କର୍ମରେ ଜଡ଼ିତ ରହେ । ମହାନିର୍ବାଣତନ୍ତ୍ର ମତରେ ସ୍ୱରୂପ ଏବଂ ଅରୂପ ଭେଦରେ ଧ୍ୟାନ ଦୁଇ ପ୍ରକାର । ଅରୂପଧ୍ୟାନ ବାକ୍ୟ ଓ ମନର ଅଗୋଚର । ଏହି ଧ୍ୟାନ ବହୁ କ୍ଳେଶସାଧ୍ୟ । କୌଣସି ଗୋଟିଏ ମୂର୍ତ୍ତିକୁ ଲକ୍ଷ୍ୟକରି ଯେଉଁଥିରେ ଚିତ୍ତର ଏକାଗ୍ରତା ସାଧିତ ହୁଏ । ତାହାହିଁ ସ୍ୱରୂପ ଧ୍ୟାନ ପଦବାଚ୍ୟ ।

ଗରୁଡ଼ ପୁରାଣ କହେ-

"ବ୍ରହ୍ମାତ୍ମଚିନ୍ତାଧ୍ୟାନଂସ୍ୟାତ୍ ଧାରଣା ମନସୋଧୃତିଃ ।
ଅହଂ ବ୍ରହ୍ମେତ୍ୟବସ୍ଥାନଂ ସମାଧି ର୍ବ୍ରହ୍ମଣସ୍ଥିତି ।।"
ଅର୍ଥାତ୍- ବ୍ରହ୍ମାଣ୍ଡବିଷୟକ ଯେଉଁ ଚିନ୍ତା ତାହାର ନାମ ଧ୍ୟାନ ।

## ଶେଷ ଯୋଗାଙ୍ଗ ସମାଧିର ବିଷୟ

ସମାଧୀୟତେଽସ୍ମିନ୍ ମନୋ ଜନୈରିତି ସମାଧିଃ । ସମାଧି ଯୋଗର ଚରମଫଳ ଅଟେ । ପୂର୍ବୋକ୍ତ ଧ୍ୟାନ ଦୃଢ଼ମୂଳ ହେଲେ ତାହାକୁ ସମାଧି କହି । ଗୁରୁଡ଼ ପୁରାଣ କହେ -

"ନିତ୍ୟଂ ଶୁଦ୍ଧଂ ବୁଦ୍ଧିଯୁକ୍ତଂ ସତ୍ୟମାନନ୍ଦମବ୍ୟୟଂ ।
ତୃତୀୟମକ୍ଷରଂ ବ୍ରହ୍ମ ଅହମସ୍ମିପରଂ ପଦଂ ।।
ଅହଂ ବ୍ରହ୍ମେତ୍ୟବସ୍ଥାନଂ ସମାଧିରିତି ଗୀୟତେ ।।"

ଯେତେବେଳେ ମୁଁ ସତ୍ୟ, ଅନନ୍ତ, ଅବ୍ୟୟ, ବ୍ରହ୍ମସ୍ୱରୂପ ଏହି ଜ୍ଞାନ ଜନ୍ମେ ଏବଂ ଚିତ୍ତବୃତ୍ତିଶୂନ୍ୟ ହୋଇ ଅଖଣ୍ଡ ବ୍ରହ୍ମରେ ଅବସ୍ଥାନ କରିବାକୁ ସମର୍ଥ ହୁଏ ତେତେବେଳେ ପ୍ରକୃତ ସମାଧିପ୍ରାପ୍ତ ହୁଏ । ଏହି ଅବସ୍ଥାକୁ ନିର୍ବିକଳ୍ପ ସମାଧି କହି । "ତଦେବାର୍ଥ ମାତ୍ର ନିର୍ଭାସଂ ସ୍ୱରୂପ ଶୂନ୍ୟମିବ ସମାଧିଃ" । ପାତଞ୍ଜଳି ।। "ଧ୍ୟାନମେବ ଧେୟାକାରନିର୍ଭାସଂ ପ୍ରତ୍ୟୟାତ୍ମକେନ ସ୍ୱରୂପେଣଶୂନ୍ୟମିବା ଯଦି ଭବତି ଧ୍ୟେୟସ୍ୱଭାବାବେଶାତ୍ ତଦା ସମାଧିରୁଚ୍ୟତେ । ବ୍ୟାସଃ । ଧ୍ୟାନ ଦୀର୍ଘକାଳ ସ୍ଥାୟୀ ହେଲେ ସମାଧି ଲାଭ ହୁଏ । ମୁଁ ଏହା ଚିନ୍ତାକଲେ ଏହି ଭାବ ଧ୍ୟାନାବସ୍ଥାରେ ଥାଏ; କିନ୍ତୁ ସମାଧିରେ ତାହା ରହେ ନାହିଁ । ଜ୍ଞାନ ଧ୍ୟେୟ ବିଷୟର ଆକାରରେ ଭାସମାନ ହୁଏ । ତଦ୍ରୂପ ବିଷୟାକାରରେ ସର୍ବଥା ଲୀନହୋଇ ଚିତ୍ତବୃତ୍ତି ପୃଥକ୍ ଭାବେ ଅନୁଭୂତ ହୁଏ ନାହିଁ । ଏହି ଅବସ୍ଥାକୁ ସମାଧି କହି । ଏହି ସମାଧି ସଂପ୍ରଜ୍ଞାତ ଓ ଅସଂପ୍ରଜ୍ଞାତ ଭେଦରେ ଦ୍ୱିବିଧ । ସଂପ୍ରଜ୍ଞାତସମାଧି ବିତର୍କ ବିଚାର, ଆନନ୍ଦ ଓ ଅସ୍ମିତା ଭେଦରେ ଚାରିପ୍ରକାର । ଅଭ୍ୟାସ ବୈରାଗ୍ୟଦ୍ୱାରା ଚିତ୍ତବୃତ୍ତି ନିରୁଦ୍ଧ ହେଲେ ସଂପ୍ରଜ୍ଞାତ ସମାଧି ଲାଭ ହୁଏ ।

ଯେଉଁ ଉପାୟଦ୍ୱାରା ଚିତ୍ତର ରଜଃ ଓ ତମୋବୃତ୍ତି ତିରୋହତ ହୋଇ କେବଳ ସାତ୍ତ୍ୱିକ ବୃତ୍ତିପ୍ରବାହ ପ୍ରବାହିତ ହୁଏ, ତାଦୃଶ ପ୍ରଯତ୍ନକୁ ଅଭ୍ୟାସ କହି । ଚିତ୍ତ ସ୍ଥିର କରିବା ଅତି ଦୁରୂହ ବ୍ୟାପାର । ଗୀତା କହେ-'ଚଞ୍ଚଳଂ ହି ମନଃ କୃଷ୍ଣ ପ୍ରମାଥି ବଳବଦ୍ଦୃଢ଼ଂ' । ରାଗ ଦ୍ୱେଷ ପ୍ରଭୃତି ଚିତ୍ତର ମଳଦ୍ୱାରା ହିଁ ଇନ୍ଦ୍ରିୟଗଣ ବିଷୟାଭିମୁଖେ ଧାବିତ ହୁଅନ୍ତି ତାହାର ପ୍ରତ୍ୟାବର୍ତ୍ତନ ପ୍ରଯତ୍ନ ହିଁ ବୈରାଗ୍ୟର ପ୍ରଥମ ଭୂମିକା ଏବଂ କୌଣସି ଏକ ସ୍ଥୂଳ ବସ୍ତୁ ଅବଲମ୍ବନ କରି ଚିତ୍ତବୃତ୍ତିକୁ ତଦାକାର କରିବା ହିଁ ସବିତର୍କ ସମାଧି । ଏହି ବସ୍ତୁର ସୂକ୍ଷ୍ମ ଭାଗ ଅବଲମ୍ବନରେ ତଦାକାର ଚିତ୍ତବୃତ୍ତି ଧାରଣାର ନାମ ବିଚାର ସମାଧି । ଆନନ୍ଦ ଅର୍ଥାତ୍ ଆହ୍ଲାଦ, ମନୋଗ୍ରାହ୍ୟସ୍ଥୂଳ ବସ୍ତୁ ବିଷୟରେ ଚିତ୍ତବୃତ୍ତି ଧାରଣା କରି ଆନନ୍ଦମଗ୍ନ ହେଲେ ସେହି ସ୍ଥିତିକୁ ଆନନ୍ଦ ସମାଧି କୁହାଯାଏ । ଯେଉଁ ସମାଧିରେ ଚିତ୍ତ ଅନ୍ୟାନ୍ୟ ରୂପଶୂନ୍ୟ ହୋଇ ମହତତ୍ତ୍ୱାଦି କାରଣ ସ୍ୱରୂପ ଅହଂଭାବ ନିମଗ୍ନ ଥାଏ ତାହା ଅସ୍ମିତା ସମାଧି । ଏଥିରେ ଆତ୍ମତତ୍ତ୍ୱ ଭାସମାନ ହୁଏ । ସମାଧି ଯେତେବେଳେ ସର୍ବାବଲମ୍ବନ ଶୂନ୍ୟ ହୁଏ ତେତେବେଳେ, ତାହା ଅସଂପ୍ରଜ୍ଞାତ ନାମେ ଅଭିହିତ । ଉଲ୍ଲିଖିତ ଚାରିପ୍ରକାର ସମାଧି ପ୍ରକାରାନ୍ତରେ ତିନି ପ୍ରକାର ହୁଏ ଯଥା- ଗ୍ରାହ୍ୟବିଷୟକ, ଗ୍ରହଣ ବିଷୟକ ଓ ଗୃହୀତବିଷୟକ । ଗୁଣତ୍ରୟର ତମୋଅଂଶରୁ ପଞ୍ଚଭୂତ ଓ ସାତ୍ତ୍ୱିକାଂଶରୁ ଇନ୍ଦ୍ରିୟସମସ୍ତ ଉତ୍ପନ୍ନ ହୋଇଅଛି । ଗ୍ରାହ୍ୟବିଷୟ ମଧ୍ୟ ସ୍ଥୂଳ ସୂକ୍ଷ୍ମ ଭେଦରେ ଦ୍ୱିବିଧ । ସ୍ଥୂଳ ପଞ୍ଚମହାଭୂତ ବିଷୟରେ ସମାଧିର ନାମ ବିତର୍କ ଏବଂ ସୂକ୍ଷ୍ମ ପଞ୍ଚଭୂତ ବିଷୟରେ ସମାଧିର ନାମ ବିଚାର । ଚକ୍ଷୁଃ ପ୍ରଭୃତି ସ୍ଥୂଳଗ୍ରହୀତା ଏବଂ ଅହଂକାର ତତ୍ତ୍ୱ ସୂକ୍ଷ୍ମଗ୍ରହୀତା ।

ଇନ୍ଦ୍ରିୟସ୍ୱରୂପ ସ୍ଥୂଳ ବସ୍ତୁ ଗ୍ରହଣ ବିଷୟକ ସମାଧିର ନାମ ସାସ୍ମିତ । ସର୍ବତ୍ର କାର୍ଯ୍ୟକୁ ସ୍ଥୂଳ ଏବଂ କାରଣକୁ ସୂକ୍ଷ୍ମ ବୋଲାଯାଏ । ଅହଂକାରବିଷୟକ ସମାଧିକି ଗ୍ରହୀତା ବିଷୟକ ବୋଲାଯାଏ । କାରଣ ଏଥିରେ ଗ୍ରହୀତା ଆତ୍ମା-ଅହଂକାର ସଙ୍ଗେ ଅଭିନ୍ନ ଭାବରେ ଭାସମାନ ହେଉଥାଏ ।

କାର୍ଯ୍ୟାବସ୍ଥାରେ କାରଣ ସୂକ୍ଷ୍ମ ଭାବରେ ଥାଏ । କିନ୍ତୁ କାରଣାବସ୍ଥାରେ କାର୍ଯ୍ୟ ନଥାଏ । ସମବାୟ କାରଣକୁ ଛାଡ଼ି କାର୍ଯ୍ୟ ରହିପାରେ ନାହିଁ; କିନ୍ତୁ କାର୍ଯ୍ୟକୁ ଛାଡ଼ି ସମବାୟ କାରଣ ରହିପାରେ । ସୁତରାଂ ସ୍ଥୂଳକାର୍ଯ୍ୟବିଷୟକ ସବିତର୍କ ସମାଧିରେ ଅନ୍ୟ ତିନୋଟି ସମାଧି ରହିବା ସମ୍ଭବ । ଏହି ସ୍ଥୂଳଗ୍ରାହ୍ୟ ବିଷୟ ମଧ୍ୟରେ ସୂକ୍ଷ୍ମଗ୍ରାହ୍ୟ ଓ ଦ୍ୱିବିଧଗ୍ରହଣବିଷୟକ ସମାଧି ହୋଇପାରେ; ଏହାହିଁ ସଂପ୍ରଜ୍ଞାତ ବା ସବୀଜ ସମାଧି ।

ଅସଂପ୍ରଜ୍ଞାତ ସମାଧି- 'ବିରାମ ପ୍ରତ୍ୟାଭ୍ୟାସପୂର୍ବଃ ସଂସ୍କାରଶେଷୋଽନ୍ୟଃ' (ପତଞ୍ଜଳି) ପରବୈରାଗ୍ୟ ଅବଲମ୍ବନ କଲେ ଚିତ୍ତର ସମସ୍ତ ବୃତ୍ତି ନିରୁଦ୍ଧ ହୋଇ କେବଳ ସଂସ୍କାର ମାତ୍ର ଅବଶିଷ୍ଟ ଥାଏ । ସେହି ଅବସ୍ଥାକୁ ଅସଂପ୍ରଜ୍ଞାତ ସମାଧି କହି । ହେୟ ଓ ଉପାଦେୟ ଉଭୟରେ ଅନାସକ୍ତ ହୋଇ ସମସ୍ତ ବୃତ୍ତି ନିରୋଧ କଲେ ନିର୍ବିକଳ୍ପସ୍ଥିତି ପ୍ରାପ୍ତ ହୁଏ । ଏକାଗ୍ରତା ଅଭ୍ୟାସ ରୂପ ଅପରବୈରାଗ୍ୟଦ୍ୱାରା ଅସଂପ୍ରଜ୍ଞାତ ସମାଧି ଲାଭ ହୁଏ ନାହିଁ । ଯେଉଁ ବୈରାଗ୍ୟରେ ଚିନ୍ତନୀୟ କୌଣସି ବସ୍ତୁ ନଥାଏ ତାହାହିଁ ପରବୈରାଗ୍ୟ । ସୁତରାଂ ସେହି ବୈରାଗ୍ୟ ଆଶ୍ରୟ କରିବା ଉଚିତ । ଆସକ୍ତି ମାତ୍ରେ ଦୋଷର କାରଣ ଏବଂ ଆତ୍ମସାକ୍ଷାତ୍କାର ମୁକ୍ତିର କାରଣ । ଉପରୋକ୍ତ ସମାଧି ସ୍ଥିତିରେ ଚିତ୍ତବୃତ୍ତିର ସର୍ବନିରୋଧ ହୋଇଥାଏ, ତେଣୁ ଏହାର ନାମ ନିରୋଧ ସମାଧି । ସୂକ୍ଷ୍ମ ବିଷୟରେ ସମାଧି ଅଭ୍ୟାସ କରି ଯୋଗୀର ଚିତ୍ତ ପରମାଣୁରେ ସୁଦ୍ଧା ସ୍ଥିର ହୋଇପାରେ । ସ୍ଥୂଳ ବିଷୟରେ ସମାଧି ଅଭ୍ୟାସ କରି ପ୍ରକୃତିରୁ ପୁରୁଷ ପର୍ଯ୍ୟନ୍ତ ଗ୍ରହଣ କରି ଚିତ୍ତ ସ୍ଥିର ରହେ । ଏହିପରି ସ୍ଥୂଳ ଓ ସୂକ୍ଷ୍ମ ଉଭୟବିଧ ବସ୍ତୁ ଅବଲମ୍ବନ କରି ଅଭ୍ୟାସ କରିବାକୁ ହେବ । ଯେପରି ସ୍ୱଚ୍ଛ ସ୍ଫଟିକାଦିର ଭିନ୍ନ ଉପାଧିର ସନ୍ନିଧାନରେ ସେହି ସେହି ଉପାଧି ବିଭାଗରେ ରଞ୍ଜିତ ହୁଏ, କିନ୍ତୁ ନିଜ ରୂପ ପ୍ରକାଶ କରେ ନାହିଁ, ତଦ୍ରୂପ ଚିତ୍ତ ମଧ୍ୟ ଗ୍ରାହ୍ୟ ବିଷୟର ତଦାକାର ବିଶିଷ୍ଟ ହୋଇ ସ୍ୱକୀୟ ଅନ୍ତଃକରଣର ରୂପ ତିରୋଧାନ କରି, ଗ୍ରାହ୍ୟ ରୂପେ ହିଁ ଉଦ୍ଭାସିତ ହୁଏ; ଏହାର ନାମ ସବୀଜ ସମାଧି । ଏହି ସମାଧିଦ୍ୱାରା ଋତମ୍ଭରା ପ୍ରଜ୍ଞା ଲାଭ ହୁଏ ।

ଅନାଦିକାଳରୁ ଚିତ୍ତଭୂମିରେ ମିଥ୍ୟାସଂସ୍କାର ଦୃଢ଼ମୂଳ ହୋଇଥିଲେ ସୁଦ୍ଧା ସମାଧିଜ୍ଞାନଜନ୍ୟ ସଂସ୍କାର ତାହାକୁ ବିନାଶ କରିପାରେ । ବୁଦ୍ଧି ଥରେ ଯଥାର୍ଥ ବିଷୟକୁ ଧାରଣ କରି ପାରିଲେ ପୁନଶ୍ଚ କୌଣସି ବିଷୟଦ୍ୱାରା ବିଚଳିତ ହୁଏ ନାହିଁ ।

ନିରୁପଦ୍ରବଭୂତାର୍ଥ ସ୍ୱଭାବସ୍ୟବିପର୍ଯ୍ୟୟୈର୍ନବାଧୋଽନାଦିମାତ୍ତ୍ୱଂପି ବୁଦ୍ଧେସ୍ତତ୍ପକ୍ଷାପାତତଃ । (ପାତଞ୍ଜଳ ଭାଷ୍ୟ)

ଅନାଦି ହୋଇ ମଧ୍ୟ ମିଥ୍ୟାସଂସ୍କାର ଯଥାର୍ଥ ଜ୍ଞାନର ବାଧକ ହୁଏ ନାହିଁ । କାରଣ ଯଥାର୍ଥ ବିଷୟ ଅବଗାହନ କରିବା ହିଁ ବୁଦ୍ଧିର ସ୍ୱଭାବ । କି ଜ୍ଞାନ କି ସଂସ୍କାର କି ସୁଖ ଦୁଃଖାଦି କୌଣସି ବିଷୟ ଆରୋପିତ ହେଲେ, ପୁରୁଷର ବନ୍ଧନ ହୁଏ । ପୁରୁଷର ସ୍ୱରୂପାବସ୍ଥିତିକି ମୁକ୍ତି କହି । ସମାଧିଜନ୍ୟ ସଂସ୍କାର ଚିରକାଳ ରହିଲେ, ପୁରୁଷ ମୁକ୍ତ ହୋଇପାରେ ନାହିଁ, ଏ ବିଷୟରେ

ଭାଷ୍ୟକାର କହିଛନ୍ତି, ''ନ ତେ ଚିତ୍ତମଧିକାର ବିଶିଷ୍ଟଂ କୁର୍ବନ୍ତି'' ଚିତ୍ତର ଧର୍ମ ହିଁ ପୁରୁଷରେ ଆରୋପିତ ହୁଏ କିନ୍ତୁ ଚିତ୍ତରେ ତାହାର ପ୍ରତିବିମ୍ବ ପଡ଼େ ନାହିଁ । ଚିତ୍ତ ନିଷ୍କଳ ଏବଂ ବୁଦ୍ଧିବିହୀନ ହେଲେ, ପୁରୁଷ ନିଜସ୍ୱରୂପରେ । ସ୍ଥିର ହୋଇପାରେ ''ତସ୍ୟାପି ନିରୋଧେସର୍ବନିରୋଧାତ୍ ନିର୍ବୀଜଃ ସମାଧିଃ'' । ପାତଞ୍ଜଳ ।

ବନ୍ଧନ ଦଶାରେ ଆତ୍ମଜ୍ଞାନ ଲାଭର ସ୍ପୃହା ଥାଏ, କିନ୍ତୁ ଆତ୍ମ ଦର୍ଶନ ହେଲେ ତାହା ନଥାଏ । ଅବିଦ୍ୟାଦି କ୍ଲେଶସମୂହ ଯେପରି ଦଗ୍ଧବୀଜ ପ୍ରରୋହଜନନଯୋଗ୍ୟ ହୁଏ ନାହିଁ ସେପରି ପୂର୍ବସଂସ୍କାରସକଳ ବୈରାଗ୍ୟଜନିତ ଜ୍ଞାନାଗ୍ନିରେ ଦଗ୍ଧହେଲେ ବ୍ୟୁତ୍ଥାନଜ୍ଞାନଜନକ ହୋଇପାରେ ନାହିଁ । ଜ୍ଞାନସଂସ୍କାର ସକଳ ଚିତ୍ତର ଅଧିକାର ସମାପ୍ତି ଅପବର୍ଗ ପର୍ଯ୍ୟନ୍ତ ଅପେକ୍ଷା କରେ । ଏହି ସମାଧିରଶେଷ ଧର୍ମ ମେଘ ସମାଧି । ''ପ୍ରସଂଖ୍ୟାନେଽପ୍ୟକୁସୀଦସ୍ୟ ସର୍ବଥାବିବେକଖ୍ୟାତେ ଧର୍ମମେଘଃ ସମାଧିଃ ।'' ଯେଉଁ ସମୟରେ ତତ୍ତ୍ୱଜ୍ଞାନୀ ପ୍ରସଂଖ୍ୟାନେ ଅର୍ଥାତ୍ ବିବେକ ସାକ୍ଷାତ୍କାରରେ ମଧ୍ୟ ଅକୁସୀଦ ଅର୍ଥାତ୍ ଅନୁରାଗବିହୀନ ହୁଏ; ଏବଂ ଅଣିମାଦି ଐଶ୍ୱର୍ଯ୍ୟ କାମନା ତ୍ୟାଗ କରେ ସେତେବେଳେ ଏହି ବିବେକ ଜ୍ଞାନରେ ମଧ୍ୟ ବିରକ୍ତ ହୁଏ । ତାହାର ପ୍ରଭାବରେ ବିବେକଜ୍ଞାନ ନିଷ୍କଳ ରହେ । ଏହାହିଁ ଧର୍ମମେଘ ସମାଧିରୂପସମାଧିର ଶେଷ ସ୍ଥିତି । କୁତ୍ସିତେଷ୍ଟୁ ବିଷୟେଷ୍ଟୁ ସୀଦତୀତି କୁସୀଦୋ ରାଗଃ' ଦୁଷ୍ଟରୂ କାମନାକୁ କୁସୀଦ କହି । ତଦ୍ରହିତ ବ୍ୟକ୍ତି ଅକୁସୀଦ- ସୂତ୍ରର କୁତ୍ସିତ ଶବ୍ଦ ରୂପକ ଛଳେ ବର୍ଣ୍ଣିତ । ଯେପରି ମହାଜନ କଳନ୍ତର ଲୋଭରେ ଟଙ୍କା ଋଣ ଦିଏ ସେହିପରି ଯେଉଁମାନେ କଳନ୍ତର ପରି ଅଣିମାଦି ଐଶ୍ୱର୍ଯ୍ୟ ଲୋଭରେ ସମାଧି ଅବଲମ୍ବନ କରନ୍ତି ସେମାନଙ୍କର ଧର୍ମମେଘ ସମାଧି ହୁଏ ନାହିଁ । କିନ୍ତୁ ବିରକ୍ତ ଯୋଗୀ ମୁକ୍ତି ବିନା ଅନ୍ୟ ଫଳ କାମନା କରେ ନାହିଁ । 'ତତଃକ୍ଲେଶକର୍ମ ନିବୃତ୍ତିଃ' (ପାତଞ୍ଜଳ) । ଏହି ଧର୍ମମେଘ ସମାଧି ଲାଭହେଲେ ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ ଏହି ପଞ୍ଚବିଧ କ୍ଲେଶ ସମୂଳେ ଉତ୍ପାଟିତ ହୁଏ; ପାପ ପୁଣ୍ୟ ରୂପ କର୍ମାଶୟ ରହେନାହିଁ ଏବଂ ଯୋଗୀ ଜୀବଦ୍ଦଶାରେ ମୋକ୍ଷ ଲାଭ କରେ । ଏ ବିଷୟରେ ବାଦୀଗଣର ମତଭେଦ ଅଛି । ବାର୍ତ୍ତିକ କହେ ଦୁଃଖର ଅତ୍ୟନ୍ତ ନିବୃତ୍ତି ହିଁ ମୋକ୍ଷ । ଜୀବଦ୍ଦଶାରେ ସେହି ମୋକ୍ଷ ଲାଭ ଅସମ୍ଭବ । ଯେହେତୁ ଶ୍ରୁତି କହେ, ''ନବୈହ ଶରୀରସ୍ୟ ପ୍ରିୟାପ୍ରିୟଯୋରପହତିରସ୍ତି'' ଶରୀର ଥିଲେ ସୁଖ ଦୁଃଖର ସମ୍ବନ୍ଧ ବିନାଶ ହୁଏ ନାହିଁ । ଅତଏବ ଦୁଃଖର କାରଣ ଅବିଦ୍ୟାଦିର ନିବୃତ୍ତି, ଗୌଣ ମୁକ୍ତି ଭିନ୍ନ ଅନ୍ୟ କିଛି ବୋଲାଯାଏ ନାହିଁ । କ୍ଲେଶ ନଥିଲେ ଜନ୍ମ ହୁଏ ନାହିଁ; ଏକଥା ମହର୍ଷି ଗୌତମ ମଧ୍ୟ ସ୍ୱୀକାର କରିଅଛନ୍ତି । ଜୀବନ୍ମୁକ୍ତିବେଳେ ଅବିଦ୍ୟାର ଲେଶ ଥାଏ ଏହା ଶଙ୍କର ମଧ୍ୟ ସ୍ୱୀକାର କରିଅଛନ୍ତି । ଯୋଗବାର୍ତ୍ତିକରେ ବାର୍ତ୍ତିକକାର ଏହାକୁ ଉପହାସ କରିଏହା ମଧ୍ୟ ଅବିଦ୍ୟାମୂଳକ ବୋଲି ନିର୍ଦ୍ଦେଶ କରିଅଛନ୍ତି ।

ବେଦାନ୍ତସାରରେ ଉଲ୍ଲେଖ କରାଯାଇଛି ''ସମାଧିସ୍ତୁ ଦ୍ୱିବିଧଃ - ସବିକଳ୍ପୋ ନିର୍ବିକଳ୍ପଶ୍ଚ । ତତ୍ର ସବିକଳ୍ପୋ ନାମ ଜ୍ଞାତଜ୍ଞାନାଦି ବିକଳ୍ପଯୋନପେକ୍ଷୟା ଦ୍ୱିତୀୟ ବସ୍ତୁନି ତଦାକାର-କାରିତୟା ଚିତ୍ତବୃତ୍ତେରବସ୍ଥାନଂ, ତଦାମୃଣ୍ମୟଗଜାଦିଭାନେଽପି ମୃଭାନବତ୍, ଦ୍ୱୈତଭାନେଽପ୍ୟଦ୍ୱୈତବତ୍

ବସ୍ତୁ ଭାସତେ ।'' ଅର୍ଥାତ୍- ସବିକଳ୍ପ ନିର୍ବିକଳ୍ପ ଭେଦରେ ସମାଧି ଦ୍ୱିବିଧ । ଜ୍ଞାତ, ଜ୍ଞାନ ଓ ଜ୍ଞେୟ ଏହି ବିକଳ୍ପ ତ୍ରୟର ଜ୍ଞାନ ସତ୍ତ୍ୱେ ଅଦ୍ୱିତୀୟ ବ୍ରହ୍ମ ବସ୍ତୁରେ ଅଖଣ୍ଡାକାରରେ ଆକାରିତ ଚିତ୍ତନିବୃତ୍ତିର ଅବସ୍ଥାନକୁ ସବିକଳ୍ପ ସମାଧି କହି । ତତ୍କାଳରେ ଯେପରି ମୃଣ୍ମୟ ହସ୍ତିରେ ହସ୍ତିଜ୍ଞାନ ଥିଲେ ମଧ୍ୟ ଏହି ଜ୍ଞାନ ମଧ୍ୟରେ ସାକ୍ଷୀସ୍ୱରୂପ, ସର୍ବବ୍ୟାପୀ ଉତ୍କୃଷ୍ଟ ପ୍ରକାଶ ସ୍ୱରୂପ, ଜନ୍ମମୃତ୍ୟୁରହିତ, ଅଲିପ୍ତ, ସର୍ବଦା ବିମୁକ୍ତଭାବ, ଯେଉଁ ଅଦ୍ୱିତୀୟ ଚୈତନ୍ୟ ତାହାହିଁ 'ମୁଁ' ଏହି ଜ୍ଞାନ ହୁଏ । ଦ୍ୱୈତ ମଧ୍ୟରେ ଯେଉଁ ଅଦ୍ୱୈତ ଜ୍ଞାନ ତାହାହିଁ ସବିକଳ୍ପ ସମାଧି । ''ନିର୍ବିକଳ୍ପ ବସ୍ତୁ ଜ୍ଞାତୃ ଜ୍ଞାନାଦି ଭେଦ ଲୟାପେକ୍ଷୟା, ଦ୍ୱିତୀୟବସ୍ତୁନି ତଦାକାରାକାରିତୟା ବୁଦ୍ଧିବୃତ୍ତେରତିତରାମେକୀଭାବେନାବସ୍ଥାନଂ, ତଦାତୁ ଜଳାକାରାକାରିତ ଲବଣାବଭାସେନ ଜଳମାତ୍ରାବଭାସବତ୍ ଅଦ୍ୱିତୀୟ ବସ୍ତ୍ୱାକାରାକାରିତ ଚିତ୍ତବୃତ୍ୟନବଭାସେନ ଦ୍ୱିତୀୟ ବସ୍ତୁ ମାତ୍ରମେବାବଭାସତେ'' (ବେଦାନ୍ତସାର) ଯେତେବେଳେ ଜ୍ଞାତୃ, ଜ୍ଞାନ ଓ ଜ୍ଞେୟ ଏହି ବିକଳ୍ପତ୍ରୟ ଜ୍ଞାନର ଅଭାବରେ ଅଦ୍ୱିତୀୟ ବ୍ରହ୍ମ ବସ୍ତୁରେ ଏକୀଭୂତ ହୋଇ ଅଖଣ୍ଡାକାରାକାରିତ ଚିତ୍ତବୃତ୍ତି ଅବସ୍ଥିତ ହୁଏ ସେତେବେଳେ ନିର୍ବିକଳ୍ପ ସମାଧି ହୁଏ । ଏହି ସମାଧି ହେଲେ ଜ୍ଞାତୃ, ଜ୍ଞାନ ଓ ଜ୍ଞେୟର କୌଣସି ରୂପ ଜ୍ଞାନ ନଥାଏ । କେବଳ ଏକ ଅଦ୍ୱିତୀୟ ବ୍ରହ୍ମତ୍ୱ ହିଁ ଜ୍ଞାନ ହୁଏ । ତତ୍କାଳରେ ଯେପରି ଜଳମିଶ୍ରିତ ଜଳାକାରାକାରିତ ଲବଣର ଲବଣତ୍ୱ ଜ୍ଞାନର ଅଭାବରେ କେବଳ ଜଳମାତ୍ର ଜ୍ଞାନ ହୁଏ; ତଦ୍ବତ୍ ଅଦ୍ୱିତୀୟ ବ୍ରହ୍ମାକାରାକାରିତ ଚିତ୍ତବୃତ୍ତିର ଜ୍ଞାନ ସତ୍ତ୍ୱେ ଅଦ୍ୱିତୀୟ ବ୍ରହ୍ମବସ୍ତୁ ମାତ୍ର ଜ୍ଞାନ ହୁଏ । 'ସମାଧୀ ସୁଷୁପ୍ତିବତ୍' ଅର୍ଥାତ୍ ସୁଷୁପ୍ତି ଅବସ୍ଥାରେ ଯେପରି କୌଣସି ଜ୍ଞାନ ନଥାଏ, ସମାଧି ସ୍ଥିତିରେ ମଧ୍ୟ ତଦ୍ରୂପ ବହିର୍ଜ୍ଞାନ ନଥାଏ । ତଥାପି ଦୁହେଁ ଏକ ନୁହନ୍ତି; ସମାଧି ଓ ସୁଷୁପ୍ତିଉଭୟକାଳରେ ବୃତ୍ତି ଜ୍ଞାନ ଅଭାବ ଏକ ହେଲେ ହେଁ ବୃତ୍ତିର ସତ୍ତା ଓ ଅସତ୍ତାଦ୍ୱାରା ଉଭୟର ପାର୍ଥକ୍ୟ ସ୍ଥିର କରିବାକୁ ହେବ । ସୁଷୁପ୍ତି ଅବସ୍ଥାରେ ବୃତ୍ତିର ସତ୍ତା ଥାଏ, କିନ୍ତୁ ସମାଧି ସ୍ଥିତିରେ ଚାରିପ୍ରକାର ବିଘ୍ନ ଉପସ୍ଥିତ ହୁଏ, ଯଥା- ଲୟ, ବିକ୍ଷେପ, କଷାୟ ଓ ରସାସ୍ୱାଦନ । ସେତେବେଳେ ଚିତ୍ତଅଖଣ୍ଡ ବ୍ରହ୍ମବସ୍ତୁକୁ ଅବଲମ୍ବନ କରିବାକୁ ଅସମର୍ଥ ହୁଏ । ଅନ୍ତଃକରଣ ବୃତ୍ତିର ନିଦ୍ରାକୁ ଲୟ କହି । ଅନ୍ତଃକରଣ ବୃତ୍ତି ଯଦି ଅନ୍ୟ କୌଣସି ବସ୍ତୁକୁ ଅବଲମ୍ବନ କରେ ତାହାକୁ ବିକ୍ଷେପ କହି । ଲୟ ଓ ବିକ୍ଷେପର ଅଭାବରେ କାମନାଦ୍ୱାରା ଅନ୍ତଃକରଣ ଶୁଦ୍ଧ ନହୋଇ ଅଖଣ୍ଡ ବ୍ରହ୍ମ ବସ୍ତୁକୁ ଅବଲମ୍ବନ କରିବାକୁ ଅସମର୍ଥ ହେଲେ ତାହାକୁ କଷାୟ କହି । ନିର୍ବିକଳ୍ପ ଅଖଣ୍ଡ ବ୍ରହ୍ମବସ୍ତୁର ଅବଲମ୍ବନରେ ଅନ୍ତଃକରଣ ବୃତ୍ତିର ସବିକଳ୍ପକ ଆନନ୍ଦ ଆସ୍ୱାଦନ ବା ନିର୍ବିକଳ୍ପ ସମାଧିର ଆରମ୍ଭକାଳୀନ ସବିକଳ୍ପାନନ୍ଦ ଆସ୍ୱାଦନକୁ ରସାସ୍ୱାଦନ କହି । ''ଅନେନ୍ତ ବିଘ୍ନଚତୁଷ୍ଟୟେନ ରହିତଂ ଚିତ୍ତଂ ନିର୍ବାତଦୀପବଦଚଳଂ ସଦଖଣ୍ଡ ଚୈତନ୍ୟ ମାତ୍ରମବତିଷ୍ଠତେ ଯଦା ତଦା ନିର୍ବିକଳ୍ପକଃ ସମାଧିରୁଚ୍ୟତେ'' ତଦୁକ୍ତଂ ।

''ଲୟେ ସମ୍ବୋଧୟେତ୍ ଚିତ୍ତଂ ବିକ୍ଷିପ୍ତଂ ଶମୟେତପୁନଃ ।
ସକଷାୟଂ ବିଜାନୀୟାତ୍ ସମପ୍ରାପ୍ତଂ ନ ଚାଲୟେତ୍
ନାସ୍ୱାଦୟେଦ୍ରସଂ ତତ୍ର ନିଃସଙ୍ଗ ପ୍ରଜ୍ଞୟାଭବେତ୍''

"ଯଥା ଦୀପୋ ନିବାତସ୍ଥୋ ନେଙ୍ଗତେ" (ବେଦାନ୍ତସାର) ଏହି ଚାରିପ୍ରକାର ବିଘ୍ନରହିତ ଚିତ୍ତ ଯେତେବେଳେ ବାୟୁଶୂନ୍ୟ ପ୍ରଦୀପ ଶିଖା ପରି ନିଶ୍ଚଳ ରହି କେବଳ ଅଖଣ୍ଡ ଚୈତନ୍ୟ ମାତ୍ରର ଚିନ୍ତାରେ ରତ ହୁଏ ସେତେବେଳେ ତାହାକୁ ନିର୍ବିକଳ୍ପ ସମାଧି କୁହାଯାଏ । ପୂର୍ବୋକ୍ତ ଲୟ ରୂପ ବିଘ୍ନ ଉପସ୍ଥିତ ହେଲେ ଅନ୍ତଃକରଣ ଉଦ୍‌ବୁଦ୍ଧ କରିବ । ବିକ୍ଷେପଯୁକ୍ତ ହେଲେ ଶାନ୍ତ ଓ କଷାୟଯୁକ୍ତ ହେଲେ ନିବୃତ୍ତ ରହିବ । ଅଖଣ୍ଡ ବ୍ରହ୍ମ ବସ୍ତୁରେ ପ୍ରଣିଧାନ ହେଲେ ଅନ୍ତଃକରଣକୁ ଆଉ ଚାଳନା କରିବ ନାହିଁ । ସେ ସମୟରେ ବିକଳ୍ପଯୁକ୍ତ କୌଣସି ଆନନ୍ଦ ଆସ୍ୱାଦନ କରିବ ନାହିଁ ଏବଂ ପ୍ରଜ୍ଞାଦ୍ୱାରା ନିଃସଙ୍ଗ ହେବ । ସେତେବେଳେ ନିର୍ବାତ ପ୍ରଦୀପ ପରି ନିଶ୍ଚୟ ହୋଇ ଅବସ୍ଥାନ କରିବ । ଏହାହିଁ ସମାଧିର ଶେଷ । ଏହି ସମାଧି ହେଲେ ମୁକ୍ତି ହୁଏ; ଆଉ ପତନ ନହୋଇ ଜୀବନ୍ମୁକ୍ତ ହୋଇ ଅବସ୍ଥାନ କରେ । ଏହାହିଁ ଯୋଗଶାସ୍ତ୍ରର ମଧ୍ୟେ ଯୋଗାଙ୍ଗର ସମନ୍ୱୟ ଆଲୋଚନା ।

## ମୀମାଂସା ଦର୍ଶନ

ମହର୍ଷି ଜୈମିନୀ ଏହି ଦର୍ଶନ ପ୍ରଣୟନ କରିଥିଲେ ବୋଲି ପ୍ରଣେତାଙ୍କ ନାମାନୁସାରେ ଏହା ଜୈମିନୀ ଦର୍ଶନ ନାମେ ପରିଚିତ । ଏହି ଦର୍ଶନରେ ବେଦଗତ ସମସ୍ତ ବିଷୟ ସୁମୀମାଂସିତ ହୋଇଥିବା ଯୋଗୁଁ ଏହି ଦର୍ଶନର ନାମାନ୍ତର 'ମୀମାଂସା ଦର୍ଶନ' । ମୀମାଂସା ବିନା କୌଣସି ବିଷୟର ସିଦ୍ଧାନ୍ତ ହୋଇ ନପାରେ, ଅତଏବ ପ୍ରତ୍ୟେକର ମୀମାଂସା ପ୍ରୟୋଜନ । ଯେପରି ବେଦର ତାତ୍ପର୍ଯ୍ୟ ନିର୍ଣ୍ଣୟ କରିବା ଅତୀବ ଦୁଃସାଧ୍ୟ, ସେହିପରି ଶ୍ରୁତି ଓ ସ୍ମୃତ୍ୟାଦିର ବିରୋଧ ମତ ଖଣ୍ଡନ କରି ଉଭୟର ସାମଞ୍ଜସ୍ୟ ରକ୍ଷା ସୁଦ୍ଧା ସହଜ ବ୍ୟାପାର ନୁହେଁ; ସେଥିଲାଗି ମୀମାଂସାର ପ୍ରୟୋଜନ । ମୀମାଂସା କରିବାକୁ ଗଲେ ଏକମାତ୍ର ମୀମାଂସାଦର୍ଶନ ହିଁ ଅବଲମ୍ବନୀୟ ।

ଶ୍ରୁତିମାନଙ୍କ ମଧ୍ୟରେ ଯେଉଁ ଯେଉଁ ସ୍ଥଳରେ ଅସ୍ପଷ୍ଟତା ବା ପରସ୍ପର ବିରୋଧ ଅଥବା ତାଦୃଶ ଶ୍ରୁତିର ସହିତ ଯେଉଁ ଅଂଶ କଳ୍ପଶାସ୍ତ୍ର ବା ମନ୍ୱାଦି ସ୍ମୃତିର ବିପ୍ରତିପତ୍ତି ଥିଲା ମହର୍ଷି ଜୈମିନୀ ଏହି ଦର୍ଶନଦ୍ୱାରା ତାହାର ସୁମୀମାଂସା କରିଅଛନ୍ତି । ଏହାଙ୍କ ମତରେ ବେଦ ଅପୌରୁଷେୟ । ବେଦ ହିଁ ବ୍ରହ୍ମ, ବେଦ ଯଦି କୌଣସି ବ୍ୟକ୍ତି କର୍ତ୍ତୃକ ରଚିତ ହୁଏ ତେବେ ବେଦୋକ୍ତ ଯାବତ୍ ବିଷୟରେ ପୂର୍ଣ୍ଣ ସତ୍ୟତା ରହନ୍ତା ନାହିଁ । ଏହି ଦର୍ଶନ ଦ୍ୱାଦଶାଧ୍ୟାୟ ଓ ସହସ୍ର ସଂଖ୍ୟକ ଅଧିକରଣ ମାଳାରେ ବିଭକ୍ତ । ଏହାର ପ୍ରତ୍ୟେକ ଅଧିକରଣରେ ବିରୋଧର ମୀମାଂସା କରାଯାଇଅଛି । ପ୍ରତ୍ୟେକ ଅଧିକରଣ ପାଞ୍ଚ ପାଞ୍ଚ ଅଙ୍ଗରେ ବିଭକ୍ତ, ଯଥା-

ବିଷୟୋଃ ବିଷୟଶ୍ଚୈବ ପୂର୍ବପକ୍ଷସ୍ତଥୋତ୍ତରଂ ।
ନିର୍ଣ୍ଣୟଶ୍ଚେତି ପାଞ୍ଚାଙ୍ଗଂ ଶାସ୍ତ୍ରେ ।। ଧିକରଣଂ ସ୍ମୃତମ୍ ମୀମାଂସା ।।

ଏକ ଶ୍ରୁତିରେ ଅଛି ବୃକ୍ଷସମ୍ବନ୍ଧୀୟ କୁଶଦ୍ୱାରା ଯଜ୍ଞ କରିବ; ଏବଂ ଅପର ଶ୍ରୁତିରେ ଉଦୁମ୍ବର

ବୃକ୍ଷଜାତ କୁଶଦ୍ୱାରା ଯଜ୍ଞ କରିବା ବିଧି ବିଦ୍ୟମାନ । ଏପରି ସନ୍ଦେହ ସ୍ଥଳରେ କେବଳ କୁଶଦ୍ୱାରା ଯଜ୍ଞ କରିବା ବ୍ୟବସ୍ଥାର ନାମ ବିଷୟ ।୧।

ସକଳ ପ୍ରକାର ବୃକ୍ଷର କୁଶଦ୍ୱାରା ଯଜ୍ଞ କରିବ କିମ୍ବା ଉଦୁମ୍ବର ବୃକ୍ଷସମ୍ବନ୍ଧୀୟ କୁଶରେ ଯଜ୍ଞ କରିବ ଏହିରୂପ ସନ୍ଦେହର ନାମ ଅବିଷୟ ।୨।

ସିଦ୍ଧାନ୍ତ ବିରୁଦ୍ଧରେ ତର୍କୋପନ୍ୟାସର ନାମ ପୂର୍ବପକ୍ଷ ।୩।
ସିଦ୍ଧାନ୍ତାନୁକୂଳ ବିଚାରର ନାମ ଉତ୍ତର ପକ୍ଷ ।୪।

ନିର୍ଣ୍ଣୟ- ଶବ୍ଦେ ସଙ୍ଗତି । ଅର୍ଥାତ୍ ସିଦ୍ଧାନ୍ତସିଦ୍ଧ ବିଚାର୍ଯ୍ୟ ବାକ୍ୟର ତାତ୍ପର୍ଯ୍ୟାବଧାରଣ ।୫।

ଏହାଙ୍କ ମତରେ ଦେବଗଣ ମନ୍ତ୍ରାତ୍ମିକା ନ ତୁ ପୃଥକ୍ ଶରୀରୀ । କାରଣ ଘଟାବାହିତ କ୍ଷୁଦ୍ର ପରିସରରେ ଐରାବତ ସହ ଦେବରାଜଙ୍କର ଅବସ୍ଥାନ ଅସମ୍ଭବ ।

ମୀମାଂସା ଦ୍ୱିବିଧ, ଯଥା- ପୂର୍ବମୀମାଂସା ଓ ଉତ୍ତରମୀମାଂସା । ପୂର୍ବମୀମାଂସା ଜୈମିନୀ କୃତ ଓ ଉତ୍ତରମୀମାଂସା ବାଦରାୟଣ ପ୍ରଣୀତ । ମୀମାଂସା ଦର୍ଶନ- ପୂର୍ବକାଣ୍ଡ, କର୍ମମୀମାଂସା, କର୍ମକାଣ୍ଡ, ଯଜ୍ଞ ବିଦ୍ୟା, ଅଧ୍ୱରମୀମାଂସା ଓ ଦ୍ୱାଦଶ ଲକ୍ଷଣୀ ନାମରେ ଅଭିହିତ ।

## ମୀମାଂସା ଶାସ୍ତ୍ରର ନାମକରଣ

ବୈଦିକ ଯାଗଯଜ୍ଞାଦି ଏକ ଦର୍ଶନଦ୍ୱାରା ମୀମାଂସିତ ହୋଇଅଛି । ଧର୍ମ ନିରୂପଣ ଉଦ୍ଦେଶ୍ୟରେ ଏହାର ଉଲ୍ଲେଖ ହୋଇଥିବା ଯୋଗୁଁ ଏହାର ଅପର ନାମ ଧର୍ମମୀମାଂସା ।

ବେଦ ତ୍ରିକାଣ୍ଡବିଶିଷ୍ଟ, ଯଥା- କର୍ମକାଣ୍ଡ, ଉପାସନାକାଣ୍ଡ ଓ ଜ୍ଞାନକାଣ୍ଡ । ତନ୍ମଧ୍ୟରୁ ବେଦରେ ଯେଉଁ ଭାଗ କର୍ମକାଣ୍ଡାତ୍ମକ ତାହା ଏହି ଦର୍ଶନର ବିଚାର୍ଯ୍ୟ ବିଷୟ । ଅତଏବ ଏହି ଦର୍ଶନର ନାମ ପୂର୍ବକାଣ୍ଡ, ପୂର୍ବ ମୀମାଂସା ବା କର୍ମମୀମାଂସା ।

କର୍ମକାଣ୍ଡାତ୍ମକ ବେଦରେ ଯାଗ, ଦାନ ଓ ହୋମ ପ୍ରଭୃତି ନାନାବିଧ କର୍ମର ଉଲ୍ଲେଖ ଥିଲେ ସୁଦ୍ଧା ଯାଗର ପ୍ରାଧାନ୍ୟ ଓ ତତ୍ସମ୍ବନ୍ଧୀୟ ବିଚାର ଏହି ଦର୍ଶନରେ ସବିଶେଷ ଭାବେ ଆଲୋଚିତ ହୋଇଥିବା ଯୋଗୁଁ ଏହି ଦର୍ଶନ ଯଜ୍ଞବିଦ୍ୟା ବା ଅଧ୍ୱର ବିଦ୍ୟା ନାମରେ ଏବଂ ଦ୍ୱାଦଶାଧ୍ୟାୟରେ ଧର୍ମ ସମ୍ବନ୍ଧୀୟ ବିଚାର ବର୍ଣ୍ଣିତ ଥିବାରୁ ଏହା ଦ୍ୱାଦଶଲକ୍ଷଣୀ ନାମରେ ଖ୍ୟାତ ।

ପ୍ରତିପାଦ୍ୟ ବିଷୟ - ମୀମାଂସା ଦର୍ଶନର ଉଦ୍ଦେଶ୍ୟ - ଧର୍ମ, ଲକ୍ଷଣ ଓ ପ୍ରମାଣାଦି ନିରୂପଣ ଯଥା - "ଧର୍ମାଖ୍ୟଂ ବିଷୟଂ ବକ୍ତୁଂ ମୀମାଂସାୟାଃ ପ୍ରୟୋଜନମ୍" । ଏହି ଦର୍ଶନର ପ୍ରଥମ ଅଧ୍ୟାୟରେ ଧର୍ମଜ୍ଞାନର ପ୍ରୟୋଜନୀୟତା, ଧର୍ମର ଲକ୍ଷଣ, ପ୍ରମାଣ ଓ ବେଦବିହିତ କ୍ରିୟାକଳାପ, ଉପବର୍ଣ୍ଣିତ ।

ଦ୍ୱିତୟାଧ୍ୟାୟରେ - ଧର୍ମକର୍ମ ଅର୍ଥାତ୍ ଯାଗଯଜ୍ଞାଦିର ପ୍ରଭେଦ ବା ନାନାତ୍ୱ ନିର୍ଦ୍ଦେଶ,

ତୃତୀୟାଧ୍ୟାୟରେ - ଯାଗଯଜ୍ଞାଦିର ପ୍ରଧାନ ଅଙ୍ଗ ଭାବନା ନିର୍ଣ୍ଣୟ ଅର୍ଥାତ୍ କେଉଁ ଯାଗର କି ଅଙ୍ଗ, ତାହାର ନିରୂପଣ ଏବଂ କେଉଁ ଅଂଶ ପ୍ରଧାନ ଓ କେଉଁ ଅଂଶ ଅପ୍ରଧାନ ତାହାର ଅବଧାରଣ, ଚତୁର୍ଥାଧ୍ୟାୟରେ- ଯଜମାନର ଲକ୍ଷଣ ଏବଂ ଯେଉଁ ଯାଗ ଯେଉଁ ରୀତିରେ ସମ୍ପନ୍ନ କରାଯିବ ସେହି ବିଷୟ ନିର୍ଣ୍ଣୟ କରାଯାଇଛି । ପଞ୍ଚମାଧ୍ୟାୟରେ ଯଜ୍ଞାଦି କର୍ମର କ୍ରମ ନିର୍ଣ୍ଣୟ, ଷଷ୍ଠାଧ୍ୟାୟରେ ଅଧିକାର ନିର୍ବାଚନ, ସପ୍ତମାଧ୍ୟାୟରେ ସାମାନ୍ୟତଃ ଅତିଦେଶ ବାକ୍ୟର ବିବେଚନା ଅର୍ଥାତ୍ ଅମୁକ କର୍ମ, ଅମୁକ ପ୍ରକାରେ କର, ଏହାର ନାମ ଅତିଦେଶ, ଅଷ୍ଟମାଧ୍ୟାୟରେ ବିଶେଷାତିଦେଶ ବାକ୍ୟର ମୀମାଂସା, ନବମାଧ୍ୟାୟରେ 'ଉହ' ବିଚାର ଅର୍ଥାତ୍ ଅପୂର୍ବୋତ୍ପ୍ରେକ୍ଷଣଂ ଉହଃ । ମନ୍ତ୍ର ନିର୍ଦ୍ଦିଷ୍ଟ ଅପ୍ରାପ୍ତ ପଦାର୍ଥର ଅନ୍ୟବିଧ ଆୟୋଜନ ଅର୍ଥାତ୍ ଯେଉଁସ୍ଥଳରେ ବିହିତ ଦ୍ରବ୍ୟର ଅଭାବରେ ପ୍ରତିନିଧି ଦ୍ରବ୍ୟାଦିରେ କାର୍ଯ୍ୟ ଚଳାଇବାର ବିଧାନ, ଯଥା- ମଧୁ ଅଭାବରେ ଗୁଡ଼ର ବ୍ୟବସ୍ଥାବେଳେ 'ଓଁ ମଧୁବାତା ଋତାୟତେ' ଏହି ମନ୍ତ୍ର ପାଠ ହେବ ନାହିଁ, ଏହିସବୁର ବିଚାର ଉହ ପଦବାଚ୍ୟ । ଏହାକୁ ଅର୍ଥ ଉହ କହନ୍ତି । ଶବ୍ଦ ଉହ, ଯଥା- "ଅଗ୍ନୟେ ଜୁଷ୍ଟଂ ନିର୍ବପାମି" ଅର୍ଥାତ୍ ଶେଷ ହବି ଅଗ୍ନିଙ୍କୁ ପ୍ରଦାନ କରୁଅଛି । ଏହି ମନ୍ତ୍ର ସାୟଂ ହୋମରେ ବିନିଯୋଜ୍ୟ; କିନ୍ତୁ ପ୍ରଭାତ ହୋମରେ ଅଗ୍ନିଶବ୍ଦର ପରିବର୍ତ୍ତେ ସୂର୍ଯ୍ୟଶବ୍ଦ ନିଯୋଗ କରିବାକୁ ହେବ । ଏହାର ନାମ ଶବ୍ଦ ଉହ । ଦଶମାଧ୍ୟାୟରେ ବାଧ ନିର୍ଣ୍ଣୟ - ବାଧ ଶବ୍ଦର ଅର୍ଥ ନିବୃତ୍ତି; କେଉଁଠାରେ କେଉଁ ମନ୍ତ୍ର ବା କେଉଁ ଦ୍ରବ୍ୟର ନିବୃତ୍ତି ଅର୍ଥାତ୍ ପରିତ୍ୟାଗ କରାଯିବ, ତାହାର ଅବଧାରଣ କରିବା ବାଧ ବିଚାରର ଉଦ୍ଦେଶ୍ୟ । ଏକାଦଶାଧ୍ୟାୟରେ "ତନ୍ତ୍ରତା" ଏହାର ଲକ୍ଷଣ "ଅନେକମୁଦ୍ଦିଶ୍ୟ ସକୃତ୍ ପ୍ରବୃତ୍ତିସ୍ତନ୍ତ୍ରତା" । ଅର୍ଥାତ୍ ବହୁ କର୍ମର ଉଦ୍ଦେଶ୍ୟରେ ଅଙ୍ଗୀଭୂତ ଏକ କର୍ମକରଣ ତନ୍ତ୍ରସିଦ୍ଧ ।

ସ୍ନାନ କ୍ରିୟାର ଅଙ୍ଗ, ତଥାପି କର୍ତ୍ତା ଥରେ ସ୍ନାନ କଲାପରେ ପାଞ୍ଚଗୋଟି କର୍ମ କଲେ ସୁଦ୍ଧା, ଯଥା ଅପର ସ୍ନାନର ଅନାବଶ୍ୟକତାରେ ସେହି ପୂର୍ବ ସ୍ନାନର ଫଳ ଲାଭ କରେ । ଏହି ରୂପ ବିଚାର ହିଁ ସ୍ୱତନ୍ତ୍ରତା ବିଚାରର ଉଦ୍ଦେଶ୍ୟ ।

ଦ୍ୱାଦଶାଧ୍ୟାୟରେ ପ୍ରସଙ୍ଗ ନିର୍ଣୟ, ଯଥା- "ଅନ୍ୟୋଦ୍ଦେଶ୍ୟେଃ ନ୍ୟସିଦ୍ଧିଃ ପ୍ରସଙ୍ଗଃ" । ଅର୍ଥାତ୍- ଏକ କାର୍ଯ୍ୟୋଦ୍ଦେଶ୍ୟରେ କୌଣସି କଥା କରାଗଲେ ଯଦି ଅନ୍ୟ କୌଣସି ଫଳ ସିଦ୍ଧି ହୁଏ, ତାହାର ନାମ ପ୍ରସଙ୍ଗ ନିର୍ଣ୍ଣୟ । ଯେପରି ଆମ୍ର ଲାଗି ବୃକ୍ଷରୋପଣ କରାଯାଏ କିନ୍ତୁ ଛାୟା ପ୍ରସଙ୍ଗତଃ ଆସିଯାଏ । ଯାଗ ଲାଗି ପ୍ରସ୍ତୁତ ହୋଇଥିବା ପୁରୋଡ଼ାଶ ଅନ୍ୟ ଅଙ୍ଗଯାଗ ନିମିତ୍ତ ବ୍ୟବହୃତ ହେଲେ ଅଙ୍ଗଯାଗର ପୁରୋଡ଼ାଶ ପ୍ରସଙ୍ଗ ସିଦ୍ଧ ହେଲା ।

ଉକ୍ତ ଦ୍ୱାଦଶ ଅଧ୍ୟାୟ ବ୍ୟତୀତ ଅନ୍ୟ ଚାରି ଅଧ୍ୟାୟର ସୂଚନା ମିଳେ, ଏହାର ନାମ ସଂଘର୍ଷକାଣ୍ଡ, କିନ୍ତୁ ଭାଷ୍ୟକାର ଶବରସ୍ୱାମୀ ଏବଂ ବାର୍ତ୍ତିକକାର କୁମାରିଲ୍ଲ ଶେଷ ଚାରି ଅଧ୍ୟାୟର କଥା ଉଲ୍ଲେଖ କରି ନାହାନ୍ତି । ଅତଏବ ଶଙ୍କର ମତାବଲମ୍ବୀଗଣ ଉକ୍ତ ଚାରି ଅଧ୍ୟାୟକୁ ମୀମାଂସାସୂତ୍ର ମଧ୍ୟରେ ପରିଗଣିତ କରନ୍ତି ନାହିଁ, କିନ୍ତୁ ରାମାନୁଜ ସମ୍ପ୍ରଦାୟ ସେହି ଚାରି ଅଧ୍ୟାୟର ମୌଳିକତା ସ୍ୱୀକାର କରନ୍ତି ।

ଏହି ଦର୍ଶନର ଆବଶ୍ୟକତା - ମହାମୁନି ଜୈମିନୀ ପୂର୍ବୋକ୍ତ ବିଷୟ ବ୍ୟତୀତ ଏହି ଦର୍ଶନରେ ଅନ୍ୟାନ୍ୟ ଅନେକ ବିଷୟର ଅବତାରଣା କରିଅଛନ୍ତି; ସେ ସମସ୍ତ ବୈଦିକ । ବେଦରେ ଯାଗ, ଦାନ ଏବଂ ହୋମାଦିର ବିଷୟ ବିଭିନ୍ନ ସ୍ଥାନରେ ଅସଂବଦ୍ଧ ଭାବରେ ଲିଖିତ ହୋଇଅଛି । ଏହା ଦେଖି ଯାଗାଦି ନିର୍ବାହ କରିବା ଅତ୍ୟନ୍ତ କଠିନ ଓ ପଦେ ପଦେ ଭ୍ରମ ହେବାର ସମ୍ଭାବନା; କିନ୍ତୁ ଏହି ଦର୍ଶନଦ୍ୱାରା ଯାଜ୍ଞିକଗଣ ଅକ୍ଳେଶରେ ସନ୍ଦେହ ଦୂର କରିପାରିବେ । ମୀମାଂସା ଦର୍ଶନର ପ୍ରଣୟନ ପରେ କର୍ମକାଣ୍ଡ ପଦ୍ଧତିର ଶିକ୍ଷା ସୁଗମ ହୋଇଅଛି ।

## ବେଦ

ଜୈମିନୀ ବେଦକୁ ମନ୍ତ୍ର ଓ ବ୍ରାହ୍ମଣ ରୂପେ ଦୁଇଭାଗରେ ବିଭକ୍ତ କରିଅଛନ୍ତି । ଯଥା- "ମନ୍ତ୍ର ବ୍ରାହ୍ମଣୟୋ ର୍ବେଦ ନାମଧେୟମ୍" । ମନ୍ତ୍ର ଓ ବ୍ରାହ୍ମଣ ଉଭୟ ଭାଗ ବେଦ ନାମରେ ପ୍ରସିଦ୍ଧ । ଏହି ଦୁଇ ଭାଗକୁ ଋକ୍, ଯଜୁ, ସାମ ଭେଦରେ ଅବାନ୍ତର ତିନିଭାଗ କରିଅଛନ୍ତି ।

ମନ୍ତ୍ର ଓ ବ୍ରାହ୍ମଣର ଲକ୍ଷଣ ଯଥା - "ତଚ୍ଚୋଦକେଷୁ ମନ୍ତ୍ରାଖ୍ୟାଃ ଶେଷେ ବ୍ରାହ୍ମଣ ଶବ୍ଦଃ" । ଯାହା ପ୍ରୟୋଗ କଲେ ଅର୍ଥାତ୍ ଅନୁଷ୍ଠାନ କଲେ ଉପଯୁକ୍ତ ଅନୁଷ୍ଠେୟ ଅର୍ଥବୋଧ ଜନ୍ମାଏ ତାହାକୁ ମନ୍ତ୍ରଏବଂ ତଦବିଶିଷ୍ଟ ବାକ୍ୟ ସନ୍ଦର୍ଭକୁ ବ୍ରାହ୍ମଣ କହନ୍ତି । ଏହାଛଡ଼ା ବେଦର ଆହୁରି କେତେକ ଅବାନ୍ତର ଭେଦ ମଧ୍ୟ ଅଛି । ଯଥା- ଇତିହାସ, ପୁରାଣ, କଳ୍ପ, ଗାଥା ଓ ନାରାଶଂସୀ ଇତ୍ୟାଦି । ୧-ପ୍ରାଚୀନ ଘଟନାପ୍ରକାଶକ ବେଦାଂଶ- ଇତିହାସ, ୨-ପୂର୍ବାବସ୍ଥା ପ୍ରକାଶକ ବେଦାଂଶ-ପୁରାଣ, ୩-କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟ ବିଷୟକ ବେଦଭାଗ-କଳ୍ପ, ୪-ପ୍ରଶଂସା ଓ ଜ୍ଞାନଯୋଗ ପ୍ରତିପାଦିତ ବେଦାଂଶ-ଗାଥା, ୫-ମନୁଷ୍ୟ ବୃତ୍ତାନ୍ତବୋଧକ ସନ୍ଦର୍ଭ-ନାରାଶଂସୀ ।

ବେଦର ଋଗାଦି ତିନି ଭାଗର ଲକ୍ଷଣ, ଯଥା- ୧-ତେଷାମୃକ୍ ଯତ୍ରାର୍ଥବଶେନ ପାଦବ୍ୟବସ୍ଥା, ୨-ଗୀତୀଷୁ ସାମାଖ୍ୟା, ୩-ଶେଷେ ଯଜୁଃଶବ୍ଦଃ । ମନ୍ତ୍ର ଓ ବ୍ରାହ୍ମଣ ଉଭୟବିଧ ବେଦବାକ୍ୟ ମଧ୍ୟରେ ଯେଉଁ ବାକ୍ୟ ସକଳ ଅର୍ଥାନୁସାରେ ପାଦବଦ୍ଧ ସେହି ବାକ୍ୟସମୂହ 'ଋକ୍' ନାମରେ ପ୍ରସିଦ୍ଧ । ଯେଉଁ ବାକ୍ୟସମୂହ ଗୀତ ହୁଏ ତାହାର ନାମ 'ସାମ' ଏବଂ ଅବଶିଷ୍ଟ ଯଜୁ ।

ବେଦାର୍ଥ ବୁଝାଇବା ଲାଗି ମୀମାଂସାର ସୃଷ୍ଟି । ଏହି ଦର୍ଶନର ସାହାଯ୍ୟ ଭିନ୍ନ ବେଦ ପ୍ରତିପାଦିତ ଅର୍ଥ ବୁଝିବା ସର୍ବଥା ଅକ୍ଷମ । ସେଥିଲାଗି ଉକ୍ତ ଦର୍ଶନକୁ ବେଦର ଭାଷ୍ୟ ବା ଟୀକା ଆଖ୍ୟା ଦେବା ଅସଂଗତ, କାରଣ ଏହାର ଗୋଟିଏ ସୂତ୍ରରେ ସୁଦ୍ଧା ବୈଦିକ ପଦର ବ୍ୟାଖ୍ୟା ନାହିଁ । ଅନାଦି କାଳରୁ ପ୍ରଚଳିତ ଯେଉଁ କେତୋଟି ଉପଦେଶ ବାକ୍ୟ ପ୍ରମାଣ ସ୍ୱରୂପ ଆମ୍ଭମାନଙ୍କର କର୍ତ୍ତବ୍ୟ ସ୍ଥିର କରିଅଛି ତାହାହିଁ ବେଦ ନାମରେ ପ୍ରସିଦ୍ଧ; ଏବଂ ସେହି ବେଦ ନିଃଶ୍ରେୟସ ଲାଭର ଏକମାତ୍ର ଉପାୟ ।

ପୂର୍ବମୀମାଂସକମାନେ ବେଦକୁ କର୍ମର ଅର୍ଥ କହନ୍ତି । ଯେଉଁ କର୍ମଦ୍ୱାରା କୌଣସି ଲୌକିକ ପ୍ରୟୋଜନ ସାଧିତ ହୁଏ ନାହିଁ ଏବଂ ଯେଉଁ ଲୌକିକ ପ୍ରମାଣଦ୍ୱାରା ସକଳ କର୍ତ୍ତବ୍ୟ କର୍ମ ବୁଝିବାର

ଶକ୍ତି ଆମ୍ଭର ନାହିଁ; ସେହି କର୍ମର ପ୍ରତିପାଦନ ହିଁ ବେଦର ମୁଖ୍ୟ ପ୍ରୟୋଜନ । ବିଧି, ମନ୍ତ୍ର, ନାମଧେୟ, ନିଷେଧ ଓ ଅର୍ଥବାଦ ଭେଦରେ ବେଦ ପଞ୍ଚବିଧ ।

ମୀମାଂସକଙ୍କ ମତରେ ଯେଉଁ ବୈଦିକ ବାକ୍ୟରେ ଯାଗ, ଦାନ ଓ ହୋମରୂପ ଅର୍ଥପ୍ରକାଶକ ଶକ୍ତି ନାହିଁ ଓ ତାହାର ପ୍ରମାଣ ନାହିଁ, ତାହା ବେଦ ପଦବାକ୍ୟ ନୁହେଁ ।

ମୀମାଂସା ଦର୍ଶନର ପ୍ରଥମ ସୂତ୍ରରେ ଧର୍ମ ବିଚାରର ପ୍ରୟୋଜନୀୟତା ଓ ଦ୍ୱିତୀୟ ସୂତ୍ରାବଧି ପାଦଶେଷ ପର୍ଯ୍ୟନ୍ତ ଧର୍ମର ଲକ୍ଷଣ ଓ ପ୍ରମାଣର ପ୍ରମେୟ କ'ଣ ସେହି ସମସ୍ତ ମୀମାଂସିତ ହୋଇଅଛି । ଦ୍ୱିତୀୟ ପାଦର ପ୍ରାରମ୍ଭାବଧି ଶେଷ ପର୍ଯ୍ୟନ୍ତ ଧର୍ମର ସାଧନ, ଫଳ ଓ ଧର୍ମମୂଳ ବେଦର ପ୍ରାମାଣ୍ୟ ସ୍ଥିରୀକୃତ ହୋଇଅଛି । ଏହି ଦର୍ଶନର ପ୍ରଧାନ ଆଲୋଚ୍ୟ ବିଷୟ- ''ଅଥାତୋ ଧର୍ମ ଜିଜ୍ଞାସା'' । ୧ମ ସୂତ୍ର । ଅଥ ଶବ୍ଦର ଅର୍ଥ ଆନନ୍ତର୍ଯ୍ୟ, ଏଠାରେ ଅଥ ଶବ୍ଦ ପ୍ରୟୋଗର ପ୍ରୟୋଜନ- ସାଙ୍ଗବେଦାଧ୍ୟୟନ ସମ୍ପନ୍ନ ହୋଇ ଅତଃ ଶବ୍ଦର ଅର୍ଥ- ଏଣିକି ଅଧ୍ୟୟନ ଅର୍ଥାତ୍ ସାଙ୍ଗବେଦାଧ୍ୟୟନାନନ୍ତର ତଦର୍ଥବୋଧ ଓଁ ତତ୍ସତ୍ ଫଳ ଲାଭ ସକାଶେ ଧର୍ମଜିଜ୍ଞାସା ବା ଧର୍ମତତ୍ତ୍ୱ ବିଚାର କରିବା କର୍ତ୍ତବ୍ୟ । ତାତ୍ପର୍ଯ୍ୟ ଏକମାତ୍ର ବେଦବୋଧ୍ୟ ଅର୍ଥ ହିଁ ଧର୍ମ ଏବଂ ବେଦ ହିଁ ଧର୍ମର ପ୍ରମାଣ ।

ଅଧିକରଣ - ବିଷୟ-''ସ୍ୱାଧ୍ୟାୟୋଽଧ୍ୟେତବ୍ୟଃ'' । ବେଦମଧୀତ୍ୟ ସ୍ନାୟାତ୍ । ଅର୍ଥାତ୍ ବେଦ ଅଧ୍ୟୟନ କରିବ, ବେଦାଧ୍ୟୟନ ପରେ ସ୍ନାନ ଅର୍ଥାତ୍ ସମାବର୍ତ୍ତନ କରିବ । ବେଦାଧ୍ୟାୟୀ ବ୍ରହ୍ମଚର୍ଯ୍ୟବ୍ରତ ଉଦ୍ଯାପନ କରି ଗାର୍ହସ୍ଥ୍ୟ ଗ୍ରହଣ ପୂର୍ବକ ଯେଉଁ ବିଧିବୋଧିତ କର୍ମ କରେ ତାହାକୁ ସ୍ନାତକ ବା ସମାବର୍ତ୍ତନ କହି । ଏହା ବିଧିବାକ୍ୟ ବିଷୟ ।

ସଂଶୟ - ବେଦାଧ୍ୟୟନ ପରେ ସମାବର୍ତ୍ତନ କରିବ? ଅଥବା ଧର୍ମ ନିର୍ଣ୍ଣୟାର୍ଥ ଗୁରୁକୁଳରେ ଅଧିବାସ କରିବ । ପୂର୍ବପକ୍ଷ- ଅଧୀତ୍ୟପଦ ହେତୁ । ବେଦାଧ୍ୟୟନର ଉତ୍ତର କ୍ଷଣରେ ହିଁ ସମାବର୍ତ୍ତନ କର୍ତ୍ତବ୍ୟ କି? ଉତ୍ତର- ''ସ୍ୱାଧ୍ୟାୟୋଽଧ୍ୟେତବ୍ୟଃ''; ଏହି ବିଧି କେବଳ ଅକ୍ଷର ଗ୍ରହଣାର୍ଥ ଫଳ ନୁହେଁ; ତାତ୍ପର୍ଯ୍ୟାର୍ଥ ବୋଧ ଲାଗି କେବଳ ଅଧ୍ୟୟନ ବିଧି । ଅକ୍ଷର ମାତ୍ର ଗ୍ରହଣ କରିବା ଲାଗି ଅଧ୍ୟୟନ ବିଧିର ଶ୍ରୁତିରେ ଦୋଷ ପ୍ରତିପାଦିତ ହୋଇଅଛି ।

ଯଥା-

ସ୍ଥାଣୁରଯଂ ଭାରହାରଃ କିଲାଭୂତ୍ ଅଧୀତ୍ୟ ବେଦଂ ନ ବିଜାନାତି ଯୋଽର୍ଥଂ ।
ଯୋଽର୍ଥଜ୍ଞବିତ୍ ସକଳଂ ଭଦ୍ରମଶ୍ନୁତେ ସ ନାକମେତି ଜ୍ଞାନବିଧୂତପାପ୍ମା ।।

ଅଧୀତ ବେଦ ବିଷୟର ଅର୍ଥ ଯେଉଁ ଲୋକ ବୁଝେ ନାହିଁ, ସେ ଭାରବାହ ସ୍ତମ୍ଭପରି । ଏବଂ ଯେଉଁ ଲୋକ ଅର୍ଥ ଅବଗତ ହୁଏ ସେ ଜ୍ଞାନଦ୍ୱାରା ପାପରହିତ ହୋଇ ସ୍ୱର୍ଗ ଲାଭ କରେ । ଏଥିରୁ ସ୍ପଷ୍ଟ ବୁଝାଗଲା- ଅଧ୍ୟୟନର ଉତ୍ତର କ୍ଷଣରେ ସମାବର୍ତ୍ତନ ହେବାର ଅବୈଧ ସିଦ୍ଧାନ୍ତ । ଅତଏବ ଅଧ୍ୟୟନ ପରେ କେତେକ ସମୟ

ଧର୍ମଜିଜ୍ଞାସାର୍ଥ ଗୁରୁ ଗୃହରେ ବାସ କରିବା ବିଧେୟ । ଏହି ଦର୍ଶନ ସର୍ବତ୍ର ପୂର୍ବୋକ୍ତ ପ୍ରଣାଳୀ ଅବଲମ୍ବନ କରିଅଛି ।

"ଅଥାତୋ ଧର୍ମଜିଜ୍ଞାସା" ଏହି ସୂତ୍ରସ୍ଥିତ ଧର୍ମଶବ୍ଦ ଅଧର୍ମର ଉପଲକ୍ଷକ । ଅର୍ଥାତ୍ ଧର୍ମବତ୍ ଅଧର୍ମ ମଧ୍ୟ ଜିଜ୍ଞାସ୍ୟ । ଯଥା- ଧର୍ମ ଅର୍ଜନ ଲାଗି ଜିଜ୍ଞାସ୍ୟ ଏବଂ ଅଧର୍ମ ବର୍ଜନ ଲାଗି ଜିଜ୍ଞାସ୍ୟ । ଫଳତଃ ଧର୍ମର ଲକ୍ଷଣ ସ୍ଥିର କରିବା ଦ୍ୱାରା ତଦ୍‌ବିପରୀତ ଅଧର୍ମର ଲକ୍ଷଣ ବୁଝାଗଲା ।

ଧର୍ମ - "ଚୋଦନା ଲକ୍ଷଣୋଽର୍ଥୋ ଧର୍ମଃ" । ଚୋଦନା ଅର୍ଥାତ୍ ପ୍ରବର୍ତ୍ତକ ବାକ୍ୟ । ଏହାର ଅନ୍ୟ ନାମ ବିଧି, ନିଯୋଗ ଓ ଲକ୍ଷଣ । ଏହାର ଅର୍ଥ ଜ୍ଞାପକ ବା ବୋଧକ । ଅର୍ଥ ଶବ୍ଦର ଅର୍ଥ ଅନିଷ୍ଟ ବିପରୀତ ଅର୍ଥାତ୍ ଶ୍ରେୟସ୍କର । ଯାହାର ଜ୍ଞାପକ ବା ବୋଧକ ବିଧିବାକ୍ୟ, ଯାହା ଅନର୍ଥର ବିପରୀତ ଅର୍ଥାତ୍ ଶ୍ରେୟସ୍କର ବା ଇଷ୍ଟ ତାହାହିଁ ଧର୍ମ । ଏହାର ତାତ୍ପର୍ଯ୍ୟ ଏହି ଯେ ବିଧିବୋଧିତ ଭବିଷ୍ୟତ୍ ଶ୍ରେୟସ୍କର କ୍ରିୟାକଳାପ, ଯାଗ, ଦାନ, ହୋମାଦି ଧର୍ମ ନାମରେ ଅଭିହିତ । ଏହାର ପ୍ରମାଣ ଚୋଦନା ବା ବୈଦିକ ବିଧିବାକ୍ୟ । କ୍ରିୟାର ପ୍ରଭାବରେ ଆତ୍ମାର ସମୁତ୍ପତ୍ତି । ଭବିଷ୍ୟତ୍ ମଙ୍ଗଳର କାରଣ ସ୍ୱରୂପ ଗୁଣ ବିଶେଷ ବା ସଂସ୍କାର ବିଶେଷକୁ ଧର୍ମ ଆଖ୍ୟା ଦିଆଯାଇଛି । ଏହି ଧର୍ମ ଶାସ୍ତ୍ରାନ୍ତରେ ପୁଣ୍ୟ ବା ଶୁଭାଦୃଷ୍ଟ ନାମରେ କଥିତ । ଏହି ସୂତ୍ର ଅଧିକରଣାନୁସାରେ ମୀମାଂସିତ ।

ସଂଶୟ - ଧର୍ମର ଅସ୍ତିତ୍ୱର ପ୍ରମାଣ କ'ଣ? ଯଦି ଧର୍ମ ଅଛି ତେବେ ତାହା ପ୍ରସିଦ୍ଧ ପ୍ରତ୍ୟକ୍ଷାଦି ପ୍ରମାଣର ଗୋଚର ହୋଇପାରେ କି? ନା ବିଧିବାକ୍ୟର ପ୍ରତ୍ୟକ୍ଷୀଭୂତ? ଏଥିରେ ପ୍ରତ୍ୟକ୍ଷାଦି ପ୍ରମାଣର ସାହାଯ୍ୟ ଅଛି ନା ନାହିଁ ?

ପୂର୍ବପକ୍ଷ- ବିଧିବାକ୍ୟ ପ୍ରମାଣ ନୁହେଁ । ବାକ୍ୟ ମାତ୍ରେ ପ୍ରତ୍ୟକ୍ଷାଦି ପ୍ରମାଣ ସମର୍ପିତ ପଦାର୍ଥର ଅନୁବାଦକ, ଅତଏବ ତାହା ପୃଥକ ପ୍ରମାଣ ନୁହେଁ; ସୁତରାଂ ଧର୍ମରେ ପ୍ରମାଣ ନାହିଁ ଅଥବା ଧର୍ମ ପ୍ରତ୍ୟକ୍ଷ ଓ ଅନୁମାନ ବା ଅନ୍ୟତର ପ୍ରମାଣର ପ୍ରମେୟ; ଅଥବା ଧର୍ମ ଯୋଗୀମାନଙ୍କର ପ୍ରତ୍ୟକ୍ଷ, ଆମ୍ଭମାନଙ୍କର ଅନୁମେୟ ଓ ଚୋଦନାଗମ୍ୟ । କୌଣସି ଏକ ଦୃଷ୍ଟ କାରଣ ନଥିଲେ ଜଗତ ଏପରି ବିଚିତ୍ର ବା ତାରତମ୍ୟବିଶିଷ୍ଟ ହୁଅନ୍ତା ନାହିଁ । ଜଗତର ବିଚିତ୍ରତା ଅନ୍ୟ କୌଣସି ପ୍ରକାରେ ଉତ୍ପନ୍ନ ନ ହେବାର ଧର୍ମ ହିଁ ଏକମାତ୍ର କାରଣ ବୋଲି ନିର୍ଦ୍ଦିଷ୍ଟ ହୋଇଅଛି । ଧର୍ମ କେବଳ ଚୋଦନାଗମ୍ୟ ନୁହେଁ, ଅଥଚ ଅର୍ଥାପତ୍ତି ସହ କୃତ ଚୋଦନାଗମ୍ୟ ।

ଉତ୍ତର- ବିଧିଶବ୍ଦ ଶ୍ରବଣରେ ଯେଉଁ ଜ୍ଞାନ ଜନ୍ମେ ସେହି ଜ୍ଞାନ ବିରୁଦ୍ଧରେ ପ୍ରମାଣାନ୍ତର ନଥିବା ଯୋଗୁଁ ଶବ୍ଦଜ୍ଞାନ ହିଁ ଅସଂଦିଗ୍ଧ ପ୍ରମାଣ । ଅତଏବ ଶବ୍ଦ ପ୍ରମାଣ ସତ୍ତ୍ୱେ ଧର୍ମର ପ୍ରମାଣ ନାହିଁ କହିବା ଅସଂଗତ । ପୁରୁଷର ଦୋଷରେ ପୌରୁଷେୟ ବାକ୍ୟ ଅପ୍ରମାଣ ହୋଇପାରେ କିନ୍ତୁ ଅପୌରୁଷେୟ ବେଦବାକ୍ୟରେ ଏହି ଆଶଙ୍କାର ଅବସର ନଥିବା କାରଣ ଧର୍ମ ବିଷୟରେ ତାହା ସ୍ୱତଃସିଦ୍ଧ ଓ ଆଦି ପ୍ରମାଣ ।

ପ୍ରତ୍ୟକ୍ଷାଦି ପ୍ରମାଣ; ବିଦ୍ୟମାନ ପଦାର୍ଥର ବୋଧକ; କିନ୍ତୁ ଭବିଷ୍ୟତ ପଦାର୍ଥର ବୋଧକ ନୁହନ୍ତି । ଅତଏବ ଅବିଦ୍ୟମାନ, ଭବିଷ୍ୟତ ପଦାର୍ଥର ଧର୍ମ (ଯେହେତୁ ତାହାକୁ ଜନ୍ମାଇବାକୁ ହୁଏ) ତାହା ପ୍ରତ୍ୟକ୍ଷାଦି ପ୍ରମାଣଦ୍ୱାରା ସ୍ଥିର ହୋଇ ନପାରେ । ଯୋଗୀମାନଙ୍କର ଯୋଗଜ୍ଞାନ ମଧ୍ୟ ଭାବନାପ୍ରସୂତ ଏବଂ ତାହା ପୂର୍ବାନୁଭୂତ ବା ପୂର୍ବଚିନ୍ତିତ ପଦାର୍ଥର ସ୍ମୃତିବିଶେଷ, ସୁତରାଂ ଅନନୁଭୂତ, ଅଚିନ୍ତିତ ଓ ଉତ୍ପଦ୍ୟମାନ ପଦାର୍ଥ ଧର୍ମରେ ପ୍ରମିତି ଉତ୍ପାଦନ କରିପାରିବ ନାହିଁ ।

**ସିଦ୍ଧାନ୍ତ** : ଉପରୋକ୍ତ କାରଣଦ୍ୱାରା ସ୍ଥିର ହେଲା ଯେ ବୈଦିକ ବିଧିବାକ୍ୟ ହିଁ ଧର୍ମର ପ୍ରମାଣ । ମୀମାଂସାଶାସ୍ତ୍ରୀୟ ଅଧିକରଣ ଅର୍ଥାତ୍ ବିଧିବାକ୍ୟର ବିଚାର ପ୍ରଣାଳୀର ଦୁଇଟି ଉଦାହରଣ ପ୍ରଦର୍ଶିତ ହେଲା । ଏହିପରି ଅଧିକରଣ ଅନୁସାରେ ସମସ୍ତ ସୂତ୍ରର ଅର୍ଥ ସ୍ଥିର କରିବାକୁ ହେବ ।

ଚୋଦନା ହିଁ ଧର୍ମର ପ୍ରମାଣ । ଚୋଦନାଗମ୍ୟ ଅର୍ଥ ହିଁ ଧର୍ମ । ଏହି ପ୍ରତିଜ୍ଞା ଦ୍ୱୟ ସ୍ୱୀକୃତ ହୋଇଥିବା ଯୋଗୁଁ "ଚୋଦନାଲକ୍ଷଣୋଽର୍ଥୋ ଧର୍ମଃ" । ଏହି ରୂପ ସୂତ୍ର ନିର୍ଦ୍ଦିଷ୍ଟ ହୋଇଅଛି । ଏହି ଧର୍ମ ପ୍ରମାଣଦ୍ୱାରା ନିର୍ଣ୍ଣୟ କରିବା ଆବଶ୍ୟକ । କେଉଁ ଧର୍ମ କେଉଁ ପ୍ରମାଣର ପ୍ରମେୟ, ତାହା ପ୍ରଥମେ ବିଚାର୍ଯ୍ୟ । ଧର୍ମ ପ୍ରତ୍ୟକ୍ଷ ଜ୍ଞାନର ଗୋଚର କି ନା, ତାହା ନିର୍ଣ୍ଣୟ କରିବାକୁ ଗଲେ ପ୍ରଥମେ ପ୍ରତ୍ୟକ୍ଷ ଜ୍ଞାନ କାହାକୁ କହନ୍ତି ତାହା ସ୍ଥିର କରିବା କର୍ତ୍ତବ୍ୟ । ବିଦ୍ୟମାନ ପଦାର୍ଥରେ ଇନ୍ଦ୍ରିୟ ସଂଯୁକ୍ତ ହେଲେ ଆତ୍ମାରେ ଯେଉଁ ଜ୍ଞାନ ଜନ୍ମେ, ସେହି ଜ୍ଞାନକୁ ପ୍ରତ୍ୟକ୍ଷ ଜ୍ଞାନ କୁହାଯାଏ । ଏତାଦୃଶ ପ୍ରତ୍ୟକ୍ଷ ଜ୍ଞାନ ବିଦ୍ୟମାନରବୋଧକ ଓ ଅବିଦ୍ୟମାନର ଅବୋଧକ । ଏଣୁ ଏହାର ଧର୍ମରେ ପ୍ରମାଣ ନାହିଁ, କାରଣ ଧର୍ମ ଉତ୍ପାଦ୍ୟ, ଅତଃ ପ୍ରତ୍ୟକ୍ଷମୂଳକ ଅନୁମାନାଦିଦ୍ୱାରା ତାହା ସ୍ଥିର କରାଯାଏ ନାହିଁ ।

**ଶବ୍ଦବାଦ** - ଶବ୍ଦ ଓ ଅର୍ଥ ଉଭୟେ ନିତ୍ୟ ବସ୍ତୁ । ସେ ଦୁହିଁଙ୍କର ବୋଧ୍ୟ ବୋଧକ ସମ୍ବନ୍ଧ ମଧ୍ୟ ନିତ୍ୟ । ଗୌତମ ଓ କଣାଦ ଏ ବିଷୟରେ ଛଅଗୋଟି ଆଶଙ୍କା କରିଅଛନ୍ତି । ତାହା ପ୍ରଶ୍ନୋତ୍ତର କ୍ରମରେ ନିମ୍ନରେ ବିବୃତ ହେଲା ।

ପ୍ରଶ୍ନ- ଶବ୍ଦରେ ଏକ ପ୍ରକାର ଉଚ୍ଚାରଣ ପ୍ରକ୍ରିୟା ଅଛି । ତାହା କ୍ଷଣସ୍ଥାୟୀ ଓ ପ୍ରଯତ୍ନ ବିଶେଷ ନିଷ୍ପାଦ୍ୟ, ଯଥା- ଉଚ୍ଚାରଣର ପୂର୍ବେ ଶବ୍ଦ ନଥାଏ, ପରେ ଉପଲବ୍ଧ ହୁଏ । ଅତଏବ ଜାୟମାନ ଓ କ୍ଷଣସ୍ଥାୟୀ ଶବ୍ଦର ସହିତ, ଉଚ୍ଚାରଣରେ ଅଜାୟମାନ ଓ ସ୍ଥାୟୀ ପଦାର୍ଥର ନିତ୍ୟ ସମ୍ବନ୍ଧ ଅନୁପପନ୍ନ ।

ଉତ୍ତର- ଶବ୍ଦ ଉଚ୍ଚାରଣର ପୂର୍ବେ ଉପଲବ୍ଧ ନହୋଇ ପରେ ହୁଏ, ଏତିକିରେ ଶବ୍ଦର କୃତ୍ରିମତ୍ୱ ବୁଝିବା ନ୍ୟାଯ୍ୟ ନୁହେଁ । କାରଣ ଶବ୍ଦ ଉଚ୍ଚାରଣର ପୂର୍ବେ ଅବ୍ୟକ୍ତ ଥାଏ, ଉଚ୍ଚାରଣର ପ୍ରଯତ୍ନରେ ତାହା କେବଳ ବ୍ୟକ୍ତ ହୁଏ ତେଣୁ ଉଚ୍ଚାରଣ ପ୍ରକ୍ରିୟାନନ୍ତର ଶବ୍ଦର ଉପଲବ୍ଧି ହେବାର ଦେଖାଯାଏ; କିନ୍ତୁ ତାହା ଶବ୍ଦର କୃତକତ୍ୱସାଧକ ପୁଷ୍କଳ ହେତୁ ନୁହେଁ ।

ପ୍ରଶ୍ନ - ଶବ୍ଦ ପ୍ରଥମ କ୍ଷଣରେ ଜାତ ହୋଇ ଦ୍ୱିତୀୟ କ୍ଷଣରେ ରହେ ଓ ତୃତୀୟ କ୍ଷଣରେ ନାଶ ହୁଏ; ଅତଏବ ଶବ୍ଦ ଅନିତ୍ୟ ।

ଉ- ଶବ୍ଦ ବିନାଶୀ ନୁହେଁ । ବ୍ୟଞ୍ଜକ ନଥିବା କାରଣ ପୂର୍ବାପର କାଳରେ ତାହାର ଉପଲବ୍ଧି ହୁଏ ନାହିଁ । ବ୍ୟଞ୍ଜକ ପଦରେ- ପ୍ରକାଶକ ହେତୁ, ଯଥା- ଅନ୍ଧକାରସ୍ଥ ଘଟର ଦୀପଶିଖା ପ୍ରକାଶକ ।

ପ୍ର- ଶବ୍ଦ କର, ଶବ୍ଦ କର ନାହିଁ ଏହି ରୂପ ଶବ୍ଦ ପ୍ରଥମାବଧି ପ୍ରଚଳିତ ଥିବାରୁ ଶବ୍ଦ ମନୁଷ୍ୟକୃତ ଅତଏବ ନିତ୍ୟାବସ୍ଥିତ ନୁହେଁ ।

ଉ- ଶବ୍ଦ କର, ଶବ୍ଦ କର ନାହିଁ, ଇତ୍ୟାଦି ବ୍ୟବହାର କେବଳ ଧ୍ୱନିପର; କିନ୍ତୁ ବର୍ଣ୍ଣପର ନୁହେଁ ।

ପ୍ର- ଏକମାତ୍ର ଶବ୍ଦ ଏକକାଳରେ ପ୍ରତ୍ୟେକ ଦେଶ ଓ ପ୍ରତ୍ୟେକ ମନୁଷ୍ୟଠାରେ ଉଚ୍ଚାରିତ ହେଉଅଛି । ଶବ୍ଦ ନିତ୍ୟ ହୋଇଥିଲେ ପ୍ରତ୍ୟେକ ସ୍ଥଳରେ ଯୌଗପଦ୍ୟ ରହନ୍ତା ନାହିଁ ଏବଂ ବ୍ୟାକରଣରେ ସୁଦ୍ଧା ଦଧି+ଆନୟ ସ୍ଥଳରେ ଇକାରର 'ଯ' କାର ହେଉଅଛି, (ଅର୍ଥାତ୍ ଇକାର ପ୍ରକୃତି) 'ଯ' କାର ବିକୃତି, ନିତ୍ୟ ବସ୍ତୁର ପ୍ରକୃତି ବିକୃତି ଭାବ ଅସମ୍ଭବ ।

ଉ : ଯଥା- ନିତ୍ୟାବସ୍ଥିତ ସୂର୍ଯ୍ୟଙ୍କୁ ଏକ ସମୟରେ ବହୁ ଦେଶରେ ବହୁଲୋକ ଦେଖନ୍ତି; ତଥା ଏକ ନିତ୍ୟାବସ୍ଥିତ ବର୍ଣ୍ଣ ଶବ୍ଦକୁ ଏକକାଳୀନ ବହୁ ଲୋକ ଶ୍ରବଣ କରନ୍ତି । ବ୍ୟାକରଣର ଇକାର 'ଯ' ଆଦେଶ ଆଶଙ୍କା ପ୍ରକୃତି ବିକୃତି ଭାବ ନୁହେଁ; ଉକ୍ତ ବର୍ଣଦ୍ୱୟ ସମ୍ପୂର୍ଣ୍ଣ ପୃଥକ୍, କେହି କାହାର ପ୍ରକୃତି ବା ବିକୃତି ନୁହନ୍ତି ।

ପ୍ର - ଶବ୍ଦ ବୃଦ୍ଧି ହ୍ରାସ ଦେଖାଯାଏ । ଉଚ୍ଚାରଣକାରୀ ବହୁତ ହେଲେ ବୃଦ୍ଧି ତଥା ଅଳ୍ପ ହେଲେ ହ୍ରାସ ହୁଏ । ତେବେ ତାହା ନିତ୍ୟ କିପରି?

ଉ - ଶବ୍ଦର କ୍ଷୟ ବୃଦ୍ଧି ବ୍ୟାପାର କଣ୍ଠଧ୍ୱନି ମାତ୍ର, ତାହା ବର୍ଣ୍ଣାତ୍ମକ ଶବ୍ଦ ନୁହେଁ । ବର୍ଣ୍ଣାତ୍ମକ ଶବ୍ଦ ସମସ୍ତ ସମୟରେ ସମାନ ଥାଏ ଅତଏବ ଶବ୍ଦ ନିତ୍ୟ । ଗୋ ଶବ୍ଦ ଉଚ୍ଚାରଣ ମାତ୍ରେ ନିଖିଳ ଗୋପିଣ୍ଡର ଜ୍ଞାନ ହୁଏ । ଶବ୍ଦର ନିତ୍ୟାବସ୍ଥାନ ବ୍ୟତୀତ ତାହାର ଯୌଗପଦ୍ୟ ପ୍ରତୀତି ଅର୍ଥାତ୍ ଏକକାଳୀନ ପ୍ରତୀତି ହୁଅନ୍ତା ନାହିଁ । ଏହି ସାର୍ବଜନୀନ ଅନାଦି ସିଦ୍ଧ ବ୍ୟବହାର ଶବ୍ଦ ଏକତ୍ୱ ଓ ନିତ୍ୟତ୍ୱର ପରିଚାୟକ; ଉତ୍ପନ୍ନ ଦ୍ରବ୍ୟମାତ୍ରର ଉପାଦାନ କାରଣ ଅଛି; କିନ୍ତୁ ଶବ୍ଦ ଉତ୍ପାଦନର ଉପାଦାନ ଦୁର୍ଲଭ । ସୁତରାଂ ଶବ୍ଦ ଅନାଦିନିଧନ, ନିତ୍ୟ, ନିତ୍ୟାବସ୍ଥିତ ଓ ନିରାକାର ।

କେହି କେହି ଆଚାର୍ଯ୍ୟ 'ଶବ୍ଦ' ବାୟୁ କାରଣକ, ଅର୍ଥାତ୍ ଶବ୍ଦ ବାୟୁରୁ ଉତ୍ପନ୍ନ ବୋଲି ଆଶଙ୍କା କରନ୍ତି; କିନ୍ତୁ ତାହା ଭ୍ରମ ମାତ୍ର, କାରଣ ଧ୍ୱନି ବାୟୁ କାରଣକ । ବାୟୁ ଘାତ ପ୍ରତିଘାତାଦିଜନିତ ସଂଯୋଗ ବିଯୋଗର କାରଣ ଧ୍ୱନିଗୁଣର ଗୁଣୀ ହୁଏ । ଶ୍ରୁତିରେ ମଧ୍ୟ ଶବ୍ଦର ନିତ୍ୟର ପ୍ରତିପାଦିତ ହୋଇଅଛି, ଯଥା- ''ଦ୍ୱେବିଦ୍ୟେ ବେଦିତବ୍ୟେ ପରା ଚୈବାପରା

ଚ'' ଇତ୍ୟାଦି । ଅର୍ଥାତ୍ ପରାବିଦ୍ୟା- ବେଦବିଦ୍ୟା, ଅପରା ପ୍ରକୃତି ପୁରାଣାଦି ରୂପା ଏବଂ ଲୌକିକ ଶବ୍ଦସମୂହ ଭାରତାଦି ରୂପ ଶବ୍ଦାଦି ପୁରୁଷ ବୁଦ୍ଧିଜନିତ । ପୁରୁଷ ଭ୍ରମସଙ୍କୁଳ, ଅତଏବ କଦାଚିତ୍ ଶବ୍ଦମାନଙ୍କର ଅପ୍ରାମାଣ୍ୟ ହୋଇପାରେ । କିନ୍ତୁ ବେଦ ଅପୌରୁଷେୟ ହେବା ହେତୁ ତାହାର ନିତ୍ୟତ୍ୱ ସ୍ୱତଃ ପ୍ରମାଣିତ ।

ଆଉ ଗୋଟିଏ ଆଶଙ୍କା - ବେଦ ଅପୌରୁଷେୟ ହେଲେ ଋଷି ପ୍ରଣୀତ-କାଠକ, କାଳାପକ, ଗୋଧୂମ, ପୈପ୍ପଳାବକ ଇତ୍ୟାଦି ନାମକରଣ ଅସଙ୍ଗତ? ତାହାର ଉତ୍ତରରେ କୁହାଗଲା - ପୂର୍ବୋକ୍ତ ନାମଗୁଡ଼ିକ କୃତିମୂଳକ ବୋଧକ ନୁହେଁ; ସୁତରାଂ ପ୍ରବଚନ ମୂଳକ, ଅର୍ଥାତ୍ ସେ ସେହି ଶାଖାକୁ ପ୍ରଥମେ ଅନ୍ୟ କାହାକୁ ପାଠ କରାଇଥିଲେ; ଅତଏବ କଠେନ କୃତଂ କାଠକଂ ନୁହେଁ, କଠେନ ପ୍ରୋକ୍ତଂ କାଠକମ୍ ଇତି । ଲୋକରେ ସକାରଣ ବସ୍ତୁର କାରଣ କଦାଚିତ୍ କୌଣସି ଦେଶରେ କେହି ଉପଲବ୍ଧି କରିଥିବ; କିନ୍ତୁ ବେଦର କାରଣ କେହି କୁତ୍ରାପି ଉପଲବ୍ଧି କରିନାହିଁ । ଅନୁପଲବ୍ଧି ହେତୁ ତାହାର କାରଣ ନାହିଁ, ଅତଏବ ବେଦ ନିତ୍ୟ ।

ମୀମାଂସକମାନେ ଷଟ୍ ପ୍ରମାଣ ମାନନ୍ତି, ଯଥା - ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶବ୍ଦ, ଅର୍ଥାପତ୍ତି ଓ ଅନୁପଲବ୍ଧି । ପ୍ରତ୍ୟକ୍ଷ ପଦରେ ଇନ୍ଦ୍ରିୟ, ଅନୁମାନ ପଦରେ ଲିଙ୍ଗଜ୍ଞାନ, ଉପମାନ ସାଦୃଶ୍ୟ ଜ୍ଞାନ । ଶବ୍ଦ-ଶବ୍ଦ, ଅର୍ଥାପତ୍ତି ପଦରେ ଅନୁପପତ୍ତିଜ୍ଞାନ, ଯଥା- ହୃଷ୍ଟପୁଷ୍ଟ ଦେବଦତ୍ତ ଦିବା ଭୋଜନ କରେ ନାହିଁ । ଏତଦ୍ଦ୍ୱାରା ଦେବଦତ୍ତ ରାତ୍ରିରେ ଭୋଜନ କରୁଥିବା ସିଦ୍ଧ ହେଲା । ଅନୁପଲବ୍ଧି ପଦରେ ଜ୍ଞାନାଭାବ, ଯଥା- ଘଟଜ୍ଞାନ ଅଦୃଶ୍ୟରେ ଘଟାଭାବ ଦୃଷ୍ଟ ହୁଏ । ଏହି ଘଟ ଦର୍ଶଦାଭାବ ଜ୍ଞାନକୁ ଅନୁପଲବ୍ଧି କହି ।

## ସାମର୍ଥ୍ୟ ବା ଅପୂର୍ବ

''ଯଜେତ ସ୍ୱର୍ଗକାମଃ'' ଅର୍ଥାତ୍ ସ୍ୱର୍ଗକାମୀ ଯାଗ କରିବ । ଏହି ବେଦ ବାକ୍ୟଦ୍ୱାରା ଯାଗର ସ୍ୱର୍ଗଜନକତ୍ୱ ପ୍ରତୀୟମାନ ହୁଏ । ସ୍ୱର୍ଗ କାଳାନ୍ତରଭାବୀ ଯାଗ କ୍ରିୟାରୂପ ଓ କ୍ଷଣିକ । ଅତଏବ କାଳାନ୍ତରଭୋବୀ ଫଳଜନକତ୍ୱ ଯାଗରେ ବିଦ୍ୟମାନ । ଇତିମଧ୍ୟରେ ସମୟର ବ୍ୟବଧାନବଶତଃ ଯାଗ କ୍ରିୟା ଓ ସ୍ୱର୍ଗ ଲାଭ ମଧ୍ୟରେ ଗୋଟିଏ ବ୍ୟାପାର କଳ୍ପନା କରିବାକୁ ହୁଏ । ସେହି ବ୍ୟାପାରରକେତେକ ପାପ, ପୁଣ୍ୟକୁ ଅଦୃଷ୍ଟ କହନ୍ତି । ଆମ୍ଭେ କିନ୍ତୁ ତାହାକୁ ଶକ୍ତି ବା ସାମର୍ଥ୍ୟ କହୁଁ । ବସ୍ତୁତଃ ତାହାହିଁ ଧର୍ମ । କାରଣ ଫଳସାଧନ ଦ୍ୟୋତକ ହେତୁ- ତାଦୃଶ ଅଦୃଷ୍ଟ ରୂପ ଧର୍ମ ସାଧନତ୍ୱ କର୍ମରେ ଧର୍ମ ଶବ୍ଦ ପ୍ରୟୋଗ ହୋଇଅଛି । ଲୋକରେ ଓ ଶାସ୍ତ୍ରରେ ମଧ୍ୟ ଯାଗ, ଦାନାଦି କଥିତ ହୋଇଅଛି, ଅତଏବ ଯାଗ ଦାନାଦି ହିଁ ଧର୍ମ ।

ତେବେ ପୂର୍ବୋକ୍ତ ଉଭୟ ବିଷୟର ସାମଞ୍ଜସ୍ୟ କିପରି? 'ଆୟୁର୍ଘୃତଃ', ଯେପରି ଘୃତକୁ ଆୟୁ କୁହାଯାଏ । ସେପରି ଧର୍ମଜନକ କ୍ରିୟାକୁ ଧର୍ମ କୁହାଯାଏ । କିନ୍ତୁ ଧର୍ମାଧର୍ମ, କାୟିକ, ବାଚିକ ଓ ମାନସିକ କ୍ରିୟାର ଉତ୍ପାଦ୍ୟ ଏବଂ ତାହା ଭବିଷ୍ୟତ୍ ସୁଖଦୁଃଖର ବୀଜ ସ୍ୱରୂପ ।

ତାହାର ଫଳ ଜନ୍ମାନ୍ତରଭୋବୀ ଓ ଲୌକିକ ପ୍ରତ୍ୟକ୍ଷାଦିର ଅବକ୍ଷୟ, କିନ୍ତୁ ବୈଦିକ ଚୋଦନାଗମ୍ୟ ।

ପ୍ରାମାଣ୍ୟ ବାଦ - ''ବେଦବାକ୍ୟାନାଂ ନିତ୍ୟନିର୍ଦୋଷତ୍ୱେନ ସ୍ୱତଃ ପ୍ରାମାଣ୍ୟମ୍'' । ଏପରି ସ୍ଥିତିରେ ପ୍ରମାଣ ରୂପେ ପ୍ରମାଣାନ୍ତର ସାପେକ୍ଷ ଯୋଗୁଁ ଅନବସ୍ଥା ପ୍ରସଙ୍ଗରେ କୌଣସି ପ୍ରାମାଣ୍ୟ ସିଦ୍ଧ ହେବ ନାହିଁ । ଜ୍ଞାନଜନନସମର୍ଥ ବାକ୍ୟ, ପ୍ରମାଣ; ଏହା ସ୍ୱତନ୍ତ୍ର ଓ ସ୍ୱତଃ ପ୍ରମାଣ ।

''ତେବେ ବନସ୍ପତୟଃ ସତ୍ରମାସତ''। ''ଶୃଣୋତୁ ଗ୍ରାବାଣଃ'' । ''ଯଜମାନଃ ପ୍ରସ୍ତରଃ'' । ଇତ୍ୟାଦି ଅସଂବଦ୍ଧାର୍ଥ ବୋଧକ ବାକ୍ୟମାନଙ୍କର ପ୍ରାମାଣ୍ୟ କେଉଁଠାରେ? ଏମାନଙ୍କର ଶ୍ରୁତାର୍ଥ ପ୍ରାମାଣ୍ୟ ନଥିଲେ ସୁଦ୍ଧା ତାତ୍ପର୍ଯ୍ୟାର୍ଥର ପ୍ରାମାଣ୍ୟ ଅଛି ।

## ପ୍ରମାଣ

ଏପରି କୌଣସି ପ୍ରବଳ ପ୍ରମାଣ ନାହିଁ, ଯାହା ବେଦବୋଧ୍ୟ ଅର୍ଥର ମିଥ୍ୟାତ୍ୱ ପ୍ରତିପାଦନ କରିବ । ଅଶ୍ୱମେଧ ଯାଗରେ ସ୍ୱର୍ଗଲାଭ ହୁଏ, ଏହା ଏକ ବେଦବାକ୍ୟାର୍ଥ, ଏହି ଅର୍ଥ ବିରୁଦ୍ଧରେ ବି ପ୍ରତ୍ୟକ୍ଷ କି ଅନୁମାନ କୌଣସି ପ୍ରମାଣର ଉପସ୍ଥିତି ନାହିଁ । ଏଠାରେ କେହି କେହି କହନ୍ତି ଶବ୍ଦ କେବଳ ବକ୍ତାର ଅନ୍ତରାଭିପ୍ରାୟର ଅନୁବାଦକ । ବାକ୍ୟ ଶ୍ରବଣ ପରେ ଶ୍ରୋତାର ଅନ୍ତରେ ବକ୍ତାର ଅନ୍ତସ୍ଥ ଜ୍ଞାନ ଅନୁମିତ ହୁଏ । ଯେଉଁ ଜ୍ଞାନର ଆକାର ବକ୍ତାର ଅନ୍ତରେ ଅଙ୍କିତ ଥାଏ ସେ ସମସ୍ତ ବକ୍ତାର ପ୍ରତ୍ୟକ୍ଷାଦିର ଅନତିରିକ୍ତ । ବକ୍ତା ଯାହା ଦେଖେ ବା ଶୁଣେ ତାହାହିଁ ବୁଝାଇବା ବା ବ୍ୟକ୍ତ କରିବା ଉଦ୍ଦେଶ୍ୟରେ ଶବ୍ଦ ବିଶେଷ ଉଚ୍ଚାରଣ କରେ । ଶ୍ରୋତା ତାହା ଶ୍ରବଣ କରି ଅନୁମାନରେ ବୁଝିନିଏ; ସୁତରାଂ ବକ୍ତାର ବାକ୍ୟ ପ୍ରତ୍ୟକ୍ଷାଦି ଜ୍ଞାନର ଅନୁବାଦ ବ୍ୟତୀତ ଆଉ କିଛି ନୁହେଁ ।

ଏହାର ଉତ୍ତର- ମୀମାଂସକର ଅଭିପ୍ରାୟ ତାହା ନୁହେଁ । ଶବ୍ଦ ମଧ୍ୟ ପ୍ରତ୍ୟକ୍ଷାଦିବତ୍ ସ୍ୱତଃ ପ୍ରମାଣ । ମନୁଷ୍ୟର ସମ୍ଭାଷଣର ଅର୍ଥ କ'ଣ? ଯଥାବସ୍ଥିତ ଶବ୍ଦ କଣ୍ଠଧ୍ୱନିରେ ଆରୋହଣ କରେ; କିନ୍ତୁ ଉତ୍ପାଦନ କରେ ନାହିଁ । ବର୍ଣ୍ଣ ଅନାଦି ନିଧନ, ପଦ ଅନାଦି ନିଧନ, ପଦାର୍ଥ ଅନାଦି ନିଧନ ଓ ବୋଧ୍ୟ ବୋଧକ ସମ୍ବନ୍ଧ ମଧ୍ୟ ଅନାଦି ନିଧନ । ବେଦ ଅପୌରୁଷେୟ, ଅତଏବ ଲୋକବାକ୍ୟ ଅପ୍ରମାଣ ହେଲେ ସୁଦ୍ଧା ବେଦବାକ୍ୟ ପ୍ରମାଣ । ଏକଥା ଉପରୋକ୍ତ ଯୁକ୍ତିଦ୍ୱାରା ସ୍ଥିର କରାଗଲା । କାରଣ ଦୋଷ ଓ ବାଧକ ଜ୍ଞାନବର୍ଜିତ ଅଗୃହୀତ ଗ୍ରାହୀ ଜ୍ଞାନ ହିଁ ପ୍ରମାଣ । ଅର୍ଥାତ୍ ଅଜ୍ଞାତ ଜ୍ଞାପକ, ଅବାଧିତ ବା ଅବିସମ୍ବାଦୀ ବିଜ୍ଞାନ ପ୍ରମାଣ । ଏହି ଲକ୍ଷଣ ଶାବ୍ଦ ଜ୍ଞାନରେ ସମ୍ପୂର୍ଣ୍ଣ ରୂପେ ବିଦ୍ୟମାନ ।

''ଶାସ୍ତ୍ରଂ ସର୍ବବିଜ୍ଞାନାତ୍'' ''ଅସନ୍ନିକୃଷ୍ଟୋଽର୍ଥେ ବିଜ୍ଞାନଂ'' । ଜ୍ଞାତାର୍ଥ ଶବ୍ଦ ଶ୍ରବଣ ପରେ ପଦାର୍ଥ ବୋଧଦ୍ୱାରା ଯେଉଁ ବାକ୍ୟାର୍ଥର ବିଜ୍ଞାନ ଜନ୍ମେ ସେହି ବାକ୍ୟାର୍ଥ ବିଜ୍ଞାନକୁ ଅବିସମ୍ବାଦୀ ବା ଅବାଧିତ, ଅସନ୍ନିକୃଷ୍ଟ ଓ ଅଜ୍ଞାତ ବିଷୟରେ ଅବ୍ୟଭିଚାରୀ ବୁଝନ୍ତି; ସୁତରାଂ ତାହା ପ୍ରମାଣ, ଏହି ଶବ୍ଦ ବିଜ୍ଞାନ ଶ୍ରେଷ୍ଠ ଓ ପୂର୍ଣ୍ଣ ପ୍ରମାଣ ନାମରେ ପ୍ରସିଦ୍ଧ ।

ଏହି ପ୍ରମାଣ ଦ୍ୱିବିଧ ଯଥା- ପୌରୁଷେୟ ଓ ଅପୌରୁଷେୟ । ଆପ୍ତବାକ୍ୟ ପୌରୁଷେୟ ଏବଂ ବେଦବାକ୍ୟ ଅପୌରୁଷେୟ । ଶବ୍ଦ କଦାପି ଦୋଷଗ୍ରସ୍ତ ନୁହେଁ; ଦୋଷ ବକ୍ତାର । ବକ୍ତାର ଦୋଷରେ ଶବ୍ଦରେ ଦୋଷ ସଂଘଟିତ ହୁଏ, ଆପ୍ତପ୍ରାଣୀବାକ୍ୟ କଦାଚିତ୍ ଦୋଷରୁ ବିସମ୍ବାଦିନୀ ଯେହେତୁ ବୁଦ୍ଧି ତାହା ଉତ୍ପାଦନ କରେ; କିନ୍ତୁ ଅନାଦି ଅପୌରୁଷେୟ ବାକ୍ୟ ସମ୍ବାଦିନୀ ହୁଏ । ସେ କେବେହେଲେ ଅବିସମ୍ବାଦୀ ବୁଦ୍ଧି ବା ମିଥ୍ୟାଜ୍ଞାନ ଜନ୍ମାଏ ନହିଁ ।

ଅପୌରୁଷେୟ ଦ୍ୱିବିଧ- ଏକ ସିଦ୍ଧାର୍ଥ ଓ ଅପର ବିଧାୟକ । ଯାହା ସିଦ୍ଧବସ୍ତୁ ବିଷୟକ ଜ୍ଞାନ ଜନ୍ମାଏଁ ତାହା ସିଦ୍ଧାର୍ଥ ଯଥା- ''ଇନ୍ଦ୍ରୋ ବୃତ୍ରାୟ ବଜ୍ରମୁଦୟେତ୍କୃତ୍'' ଯାହା କିଛି କରିବାକୁ ହୁଏ ତାହା ବିଧାୟକ ଯଥା- ''ସ୍ୱର୍ଗକାମୋ ଯଜେତ'' ।

ବିଧାୟକ ବାକ୍ୟ ଦ୍ୱିବିଧ ଯଥା- ଉପଦେଶ ଓ ଅତିଦେଶ । ଏହା ଏପରି କରିବ; ଏହା ଉପଦେଶ, ଅମୁକ କାର୍ଯ୍ୟ କର ଅମୁକ କାର୍ଯ୍ୟ କରିବ; ଏହାର ନାମ ଅତିଦେଶ । କାଳ, ଦିଗ, ଆତ୍ମା, ପରମାଣୁ ପ୍ରଭୃତି ଯେପରି ଅନାଦି ନିଧନ ନିରବୟବ ଦ୍ରବ୍ୟ ତଦ୍‌ବତ୍ ଶବ୍ଦ ମଧ୍ୟ ଅନାଦି ନିଧନ ଓ ନିରବୟବ ଦ୍ରବ୍ୟ । ଅନ୍ୟାନ୍ୟ ଦର୍ଶନ ମତରେ ଶବ୍ଦ ଆକାଶ ଅନିତ୍ୟ ଓ ଉତ୍ପନ୍ନ ପ୍ରଧ୍ୱଂସୀ; କିନ୍ତୁ ମୀମାଂସକଙ୍କ ମତରେ ଅନାଦି ଓ ଅବିନାଶୀ ।

## ସ୍ଫୋଟବାଦ

ବେଦର ନିତ୍ୟତ୍ୱ ସମ୍ବନ୍ଧରେ ବୈୟାକରଣମାନେ ଆଶଙ୍କା କରନ୍ତି ଯେ ସ୍ଫୋଟ ହିଁ କେବଳ ନିତ୍ୟ, ଅନ୍ୟ ସମସ୍ତ ଶବ୍ଦ ଅନିତ୍ୟ, ଅତଏବ ବେଦ ଅନିତ୍ୟ । ସ୍ଫୋଟ ପଦରେ ସର୍ବବର୍ଣ୍ଣ ଅଭିବ୍ୟକ୍ତ କ ଅନ୍ତ୍ୟବର୍ଣ୍ଣନିଷ୍ଠ; ଅଲୌକିକ ସ୍ଫୋଟ ଶବ୍ଦରୂପ ନିତ୍ୟ । ଅର୍ଥାତ୍ ଘଟ ଶବ୍ଦରେ ଘ, ଅ, ଟ, ଅ ଏହି ବର୍ଣ୍ଣ ଚତୁଷ୍ଟୟ ବିଦ୍ୟମାନ । ବର୍ଣ୍ଣମାନେ କ୍ଷଣସ୍ଥାୟୀ କାରଣ ଦ୍ୱିତୀୟ ବର୍ଣ୍ଣୋଚ୍ଚାରଣାନନ୍ତର ପ୍ରଥମ ବର୍ଣ୍ଣ ନାଶ ହୁଏ । ଅତଏବ ସମସ୍ତ ବର୍ଣ୍ଣମାନଙ୍କର ଏକତ୍ରାବସ୍ଥାନ ଅସମ୍ଭବ । ବର୍ଣ୍ଣର ଅଭାବରେ ପଦବୁଦ୍ଧି ହୁଏ ନାହିଁ, ତେଣୁ ଅର୍ଥ ପ୍ରତୀତି ମଧ୍ୟ ହୁଏ ନାହିଁ । ସ୍ଫୋଟ ଅଙ୍ଗୀକାର କଲେ ତଦ୍ଦ୍ୱାରା ସମସ୍ତ ବର୍ଣ୍ଣର ସ୍ମୃତି ଜାଗୃତ ହେବ, ତେଣୁ ପଦବୁଦ୍ଧି ଜାତ ହେବ; ପରେ ଅର୍ଥଜ୍ଞାନ ହେବ ।

ସିଦ୍ଧାନ୍ତ- ପୂର୍ବ ପୂର୍ବ ବର୍ଣ୍ଣାନୁଭବଜନିତ ସଂସ୍କାର ସହିତ ଅନ୍ତ୍ୟବର୍ଣ୍ଣ ଜ୍ଞାନରୁ ବୁଦ୍ଧିର ବିକାଶ ହୁଏ; ଅତଏବ ପ୍ରମାଣହୀନ ଅତିରିକ୍ତ ସ୍ଫୋଟ ଅନାବଶ୍ୟକ ବୋଲି ମୀମାଂସକମାନେ ତାହା ସ୍ୱୀକାର କରନ୍ତି ନାହିଁ । ଅପୌରୁଷେୟ ବେଦ ହିଁ ନିତ୍ୟ ।

ବେଦ ବିଭାଗ - ''ସୋଽରୋଦୀତ୍‌ତଦ୍ରୁଦ୍ରସ୍ୟ ରୁଦ୍ରତ୍ୱଂ'' । ରୋଦନ କରିବା ଲାଗି ରୁଦ୍ରଙ୍କୁ ରୁଦ୍ର ନାମ ଦିଆଗଲା । ଇତ୍ୟାଦି ସ୍ଥଳରେ କର୍ତ୍ତବ୍ୟତାବୋଧକତ୍ୱ ପୂର୍ବୋକ୍ତ କର୍ମ ମୀମାଂସକଙ୍କ ମତ, ଯଥା - ପୂର୍ବ ଶ୍ରୁତିବାକ୍ୟ ଯଥାର୍ଥାର୍ଥଦ୍ୟୋତକ ନହେଲେ ସୁଦ୍ଧା ପ୍ରକାରାନ୍ତରେ ନିନ୍ଦାବୋଧକ ଅର୍ଥବାଦ ବ୍ୟକ୍ତ ହେଉଅଛି ଯଥା- ''ବର୍ହିଷି ରଜତଂ ନ ଦେୟଂ'', ଯାଗରେ ରଜତ ଦକ୍ଷିଣା

ଦେବ ନାହିଁ । ଏହା ନିଷେଧ ବାକ୍ୟ, କାରଣ ''ଅସୃଙ୍ଗ ହି ରଜତଂ ଯୋ ବର୍ହିଷି ରଜତଂ ଦଦାତି । ଆସମ୍ବତ୍ସରାତ୍ତସ୍ୟ ଗୃହେ ରୁଦନ୍ତି'' । ପୂର୍ବୋକ୍ତ ରୁଦ୍ରରୋଦନାଶ୍ରୁଜନିତ ରଜତ ଦକ୍ଷିଣା ଯେଉଁ ଯଜମାନ ଦିଏ ତା'ର ଗୃହରେ ସମ୍ବତ୍ସରାବଧି ରୋଦନ ହୁଏ । ଏହି ପୂର୍ବାପର ସମନ୍ୱୟ ବାକ୍ୟରୁ 'ସୋଽରୋଦୀତ୍' ଶ୍ରୁତି ସୁଦ୍ଧା ରଜତ ନିନ୍ଦାବୋଧକ ଅର୍ଥବାଦରେ ସମନ୍ୱିତ ହେଲା । ଅତଏବ ସମସ୍ତ ବେଦବାକ୍ୟ କର୍ମରେ ଅପେକ୍ଷିତ ଦ୍ରବ୍ୟ, ଦେବତା, ସ୍ତୁତି, ନାମଧେୟ, ନିଷେଧ ଇତ୍ୟାଦି କୌଣସି ନା କୌଣସି କର୍ମ ସମ୍ବନ୍ଧୀୟ ଅର୍ଥବୋଧକ ହୋଇ ଧର୍ମରେ ପରିଣତ ହୁଏ ।

ପୂର୍ବୋକ୍ତ ବେଦବାକ୍ୟ ଚାରିଭାଗରେ ବିଭକ୍ତ ଯଥା- ବିଧି, ଅର୍ଥବାଦ, ମନ୍ତ୍ର ଓ ନାଧେୟ । ବିଧି - ''ସ୍ୱର୍ଗକାମୋ ଯଜେତ୍'', ଅର୍ଥାତ୍ ସ୍ୱର୍ଗକାମୀ ଯାଗ କରିବ । ଏଠାରେ 'ଯଜେତ' ଅଂଶକୁ ବିଧି କୁହାଗଲା । ଉକ୍ତ ବିଧି ତିନି ପ୍ରକାର - ଉତ୍ପତ୍ତିବିଧି, ନିୟମବିଧି ଓ ପରିସଂଖ୍ୟାବିଧି । ଉତ୍ପତ୍ତିବିଧି- ଯେଉଁ କର୍ତ୍ତବ୍ୟ କର୍ମର ସ୍ୱରୂପ, ପୂର୍ବେ ଅନ୍ୟ କୌଣସି ପ୍ରମାଣଦ୍ୱାରା ପ୍ରତିପାଦିତ ହୋଇନାହିଁ, ସେହି କର୍ମ କର୍ତ୍ତବ୍ୟ ବୋଲି ପ୍ରଥମେ ଯେଉଁ ବାକ୍ୟଦ୍ୱାରା ବୁଝାଯାଏ, ସେହି ବିଧିବାକ୍ୟକୁ ଉତ୍ପତ୍ତିବିଧି କୁହାଯାଏ । ''ଅଗ୍ନିହୋତ୍ରଂ ଜୁହୁୟାତ୍'', ଅର୍ଥାତ୍ ଅଗ୍ନିହୋତ୍ର ନାମକ ହୋମ କରିବ; ଅଗ୍ନିହୋତ୍ର ନାମକ ହୋମ ଏକପ୍ରକାର କ୍ରିୟା, ଏହି କ୍ରିୟାକୁ କର୍ତ୍ତବ୍ୟ ବୋଲି ବୁଝିଲେ, ''ଅଗ୍ନିହୋତ୍ରଂ ଜୁହୁୟାତ୍'' । ଏତଦ୍‌ବ୍ୟତୀତ ଅନ୍ୟ କୌଣସି ପ୍ରମାଣ ନାହିଁ; ସୁତରାଂ ତାହାକୁ ଉତ୍ପତ୍ତିବିଧି ବୋଲାଯାଏ ।

ନିୟମବିଧି - ଲୌକିକ ପ୍ରମାଣ ସାହାଯ୍ୟରେ ଯାହା ବୁଝାଯାଏ, ସେସବୁ ବୁଝାଇବା ଲାଗି ଯେଉଁ ବିଧିବାକ୍ୟ ବିଦ୍ୟମାନ ତାହାର ନାମ ନିୟମବିଧି । ଯଥା- 'ବ୍ରୀହୀନ୍ ଅବହନ୍ତି' ଅର୍ଥାତ୍ ଧାନଗୁଡ଼ିକ ଅବଘାତ କରିବ । ତଣ୍ଡୁଳ, ଘୃତ ଓ ଦୁଗ୍ଧର ମିଶ୍ରଣରେ ଚରୁ ପ୍ରସ୍ତୁତ ହୁଏ । ଦର୍ଶପୂର୍ଣ୍ଣମାସ ନାମ ଯାଗରେ ଚରୁ ଆବଶ୍ୟକ । ସେଥିଲାଗି ତଣ୍ଡୁଳ ପ୍ରସ୍ତୁତ ପ୍ରଣାଳୀ ପାଇଁ 'ବ୍ରୀହୀନ ଅବହନ୍ତି' ଏହି ବାକ୍ୟ ବ୍ୟବହୃତ ହୋଇଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ, ନଖରେ ଧାନ ଛଡ଼ାଇ ତଣ୍ଡୁଳ ପ୍ରସ୍ତୁତ କରିବା ପ୍ରଭୃତି ନିୟମ ଥିଲେ ସୁଦ୍ଧା ତାହା ନିଷେଧପର ହେତୁ ଏବଂ ଅବଘାତ ହିଁ ନିୟମବିଧି । ଏହି ନିୟମବିଧିର ଗୋଟିଏ ଅଦୃଷ୍ଟ ଫଳ ଅଛି, ଯଥା- ଅବଘାତଦ୍ୱାରା ତଣ୍ଡୁଳନିଷ୍ପତ୍ତି ରୂପ ଦୃଷ୍ଟ ଫଳ ଯେପରି ପ୍ରତ୍ୟକ୍ଷ ସିଦ୍ଧ, ସେହିପରି ସେହି ତଣ୍ଡୁଳଦ୍ୱାରା ଯଜ୍ଞ ସମ୍ପନ୍ନ ହେଲେ ଯଜ୍ଞର ସମ୍ପୂର୍ଣ୍ଣତା ରୂପ ଫଳ ଲାଭ ହୁଏ, ନତୁ ନଖାଦି ନିସ୍ତୁଷ ତଣ୍ଡୁଳରେ ।

ପରିସଂଖ୍ୟାବିଧି - ଏକକାଳୀନ ଦୁଇଗୋଟି କାର୍ଯ୍ୟସାଧନ ଉପସ୍ଥିତି ହେଲେ ତନ୍ମଧ୍ୟରୁ ଗୋଟିଏ ସାଧନର ନିବୃତ୍ତିବୋଧକକୁ ପରିସଂଖ୍ୟାବିଧି କୁହାଯାଏ, ଯଥା- ''ଇମାମଶୃଣ୍‌ଭାନ୍ ରସନାମୃତସ୍ୟେତ୍ୟଶ୍ୱାଭିଧାନୀମାଧତ୍ତେ' ଅର୍ଥାତ୍ ଯାଗ ପାଇଁ ଆବଶ୍ୟକ ହେବା ଇଷ୍ଟକ ନିର୍ମାଣ ସକାଶେ ମୃତ୍ତିକା ଆନୟନ କଲାବେଳେ ଶକଟରେ ମୃତ୍ତିକା ରଖି ଗୋଟିଏ ଅଶ୍ୱ ଓ ଗର୍ଦ୍ଦଭ ଯୋଡ଼ି ସେ ଦୁହେଁ ଶକଟ ଟାଣିଲାବେଳେ ପୂର୍ବୋକ୍ତ ମନ୍ତ୍ରଦ୍ୱାରା ଅଶ୍ୱରଶ୍ମି ଗ୍ରହଣ କରିବ, ଏହି ଅର୍ଥ ବୁଝାଯାଉଅଛି; କିନ୍ତୁ ତାହା ନୁହେଁ; ଏହି ମନ୍ତ୍ରଦ୍ୱାରା ଗର୍ଦ୍ଦଭ ରସନା ଗ୍ରହଣ କରିବ ନାହିଁ;

କିନ୍ତୁ ବିନା ମନ୍ତ୍ରରେ ତୁଷ୍ଣୀଭୂତ ହୋଇ ଟାଣିବ ଏବଂ "ପଞ୍ଚ ପଞ୍ଚନଖାଃ ଭକ୍ଷ୍ୟାଃ" ପଦରେ ପଞ୍ଚନଖବିଶିଷ୍ଟ ପଞ୍ଚଜନ୍ତୁ ଭକ୍ଷଣ କରିବ, ଏହି ଅର୍ଥ ପ୍ରତୀତି ହୁଏ । ପଞ୍ଚନଖ ପଦରେ "ଶଶକଃ ଶଲ୍ଲକୀ ଗୋଧା ଖଡ୍‌ଗୀ କୂର୍ମୋଃ ଥପଞ୍ଚମଃ' । ଏତଦ୍ଦ୍ୱାରା ପଞ୍ଚନଖବିଶିଷ୍ଟ ପଞ୍ଚଜନ୍ତୁ ବିନା ଅନ୍ୟ ପଞ୍ଚନଖବିଶିଷ୍ଟ ଜନ୍ତୁ ଭକ୍ଷଣ କରିବ ଏହାହିଁ ତାତ୍ପର୍ଯ୍ୟାର୍ଥ ଏବଂ ଏହାହିଁ ପରିସଂଖ୍ୟାବିଧି ।

ଏହି ପରିସଂଖ୍ୟାବିଧି ତ୍ରିଦୋଷଜୁଷ୍ଟ, ଯଥା - ଶ୍ରୁତାର୍ଥହାନଂ, ଅଶ୍ରୁତାର୍ଥକଳ୍ପନା ପ୍ରାପ୍ତବାଧା । ଏ ବିଷୟରେ ବାର୍ତ୍ତିକ, ଯଥା-

ଶ୍ରୁତାର୍ଥସ୍ୟ ପରିତ୍ୟାଗାଦଶ୍ରୁତାର୍ଥ ପ୍ରକଳ୍ପନାତ୍ ।
ପ୍ରାପ୍ତସ୍ୟ ବାଧାଦିତ୍ୟେଷା ପରିସଂଖ୍ୟା ତ୍ରିଦୂଷଣା ।।

ଶ୍ରୁତାର୍ଥ - ପଞ୍ଚନଖ ଭକ୍ଷଣ ହୀନ, ତାହା ପରିତ୍ୟାଗ କରିବ । ଅଶ୍ରୁତାର୍ଥ ଅନ୍ୟ ପଞ୍ଚନଖ ଭକ୍ଷଣ ନିବୃତ୍ତି । ତାହାର କଳ୍ପନା ଆଶାରେ ପଞ୍ଚନଖ ଭକ୍ଷଣ ପରି ଅପଞ୍ଚନଖ ଭକ୍ଷଣ ବିଧି ମଧ୍ୟ ପ୍ରାପ୍ତ ହେଲା । ତାହାର ବାଧା ପଦରେ ନିଷେଧ, ବିଧିପଦରେ- ପ୍ରବର୍ତ୍ତନାବୋଧକ ଶବ୍ଦ, ପ୍ରବର୍ତ୍ତନା ପଦରେ ପ୍ରବୃତ୍ତିଜନକ ଶବ୍ଦନିଷ୍ଠ ବ୍ୟାପାର ବିଶେଷ । ଅର୍ଥାତ୍ 'ଯଜେତ' ଏଠାରେ 'ଯଜଧାତୁ' ଓ ବିଧିଲିଙ୍ଗାଦି ପ୍ରତ୍ୟୟର ସମ୍ମିଳନରେ ରୂପସିଦ୍ଧି ହୋଇଅଛି । ପ୍ରତ୍ୟୟରେ ଦୁଇଗୋଟି ଧର୍ମ ଅଛି ଯଥା- ଆଖ୍ୟାତତ୍ତ୍ୱଂ ଲିଙ୍ଗତ୍ୱଂ, ଗୋଟିଏ ଧର୍ମରେ ଆଖ୍ୟାତତ୍ତ୍ୱରେ ଆର୍ଥୀଭାବନା ବୋଧହୁଏ । ଆର୍ଥୀଭାବନା ପଦରେ ପୁରୁଷ ପ୍ରଯତ୍ନ ଶବ୍ଦାଂଶରେ ଶାବ୍ଦୀଭାବନା ଜନ୍ମେ ।

## ଭାବନାର ଲକ୍ଷଣ

ଫଳୋତ୍ପତ୍ୟନୁକୂଳ ଭାବକ ବ୍ୟାପାରୋ ନାମ ଭାବନା । ଭାବନା ଚତୁର୍ବିଧ, ଯଥା- ପୁରୁଷଗତ ଭାବନା, ଆର୍ଥୀଭାବନା, ତାହାର ଫଳ ସ୍ୱର୍ଗାଦି, ଶବ୍ଦନିଷ୍ଠ ଭାବନା, ଶବ୍ଦୀଭାବନା, ତାହାର ଫଳ ଆର୍ଥୀଭାବନା । 'ଯଜେତ' ଏହି ବାକ୍ୟ ଶ୍ରବଣ କଲାପରେ ପ୍ରବୃତ୍ତିର ଅନୁକୂଳ ଗୋଟିଏ ବ୍ୟାପାର ଜନ୍ମେ । ସେଥିଯୋଗୁଁ ପୁରୁଷର ପ୍ରବୃତ୍ତି ଉଦୟ ହୁଏ । ସେହି ପ୍ରବୃତ୍ତିର ଫଳ ସ୍ୱରୂପ କର୍ମଦ୍ୱାରା ସ୍ୱର୍ଗାଦି ଲାଭ ଭାବନା । ଉକ୍ତ ଭାବନା ଅଂଶତ୍ରୟକୁ ଅପେକ୍ଷା କରେ, ଯଥା-

| | | |
|---|---|---|
| ସାଧ୍ୟ, | ସାଧନା, | ଉପକାର, |
| କିଂ ଭାବୟେତ୍ ? | କେନ ଭାବୟେତ ? | କଥଂ ଭାବୟେତ୍? |
| କ'ଣ ଭାବନା କରିବ? | କାହାଦ୍ୱାରା ଭାବନା କରିବ? | କିପରି ଭାବିବ? |
| ସ୍ୱର୍ଗ ଭାବନା କରିବ । | ଯାଗଦ୍ୱାରା । | ଅଗ୍ନ୍ୟାଧାନାଦିଭିଃ ଉପକାରଂ । |

କୃତ୍ୱା ଯାଗେନ ସ୍ୱର୍ଗଂ ଭାବୟେତ୍ । ପୂର୍ବୋକ୍ତ କ୍ରିୟାକଳାପଦ୍ୱାରା ଯାଗ ଏବଂ ଯାଗଦ୍ୱାରା ସ୍ୱର୍ଗ ଭାବନା କରିବ ।

ଉପରୋକ୍ତ ଲକ୍ଷଣାକ୍ରାନ୍ତ ବିଧି ପ୍ରକାରାନ୍ତରେ ଚାରିପ୍ରକାର । ଯଥା- ୧-ଉତ୍ପତ୍ତିବିଧି,

୨-ବିନିଯୋଗବିଧି, ୩-ଅଧିକାରବିଧି, ୪-ପ୍ରୟୋଗବିଧି । ୧- ଯାହା କର୍ତ୍ତବ୍ୟକର୍ମବୋଧକ ତାହା ଉତ୍ପତ୍ତିବିଧି । ଯଥା- ''ଅଗ୍ନିହୋତ୍ରଂ ଜୁହୋତି'' । ଏଠାରେ ଅଗ୍ନିହୋତ୍ରବାକ୍ୟ କେବଳ ଅଗ୍ନିହୋତ୍ର ନାମକ କର୍ମର ବିଧାନ କରେ; ଅନ୍ୟ କୌଣସି ଫଳାଦିର ବିଷୟ ନାହିଁ । ୨- ଯାହା ଅଙ୍ଗ କର୍ମର ବିଧାୟକ ତାହା ବିନିଯୋଗବିଧି । ଯଥା- ''ବ୍ରୀହୀଭିର୍ଯଜେତ, ଦଧ୍ନା ଜୁହୋତି'' । ବ୍ରୀହୀହୋମ ଓ ଦଧିହୋମ ଅଗ୍ନିହୋତ୍ର ଯାଗର ଅଙ୍ଗ । ୩- ଯାହା ଫଳସାମ୍ୟବୋଧକ ତାହା ଅଧିକାରବିଧି । ଯଥା-''ସ୍ୱର୍ଗକାମୋ ଯଜେତ'' । ଏହି ବିଧିଦ୍ୱାରା ବୁଝାଗଲା ଯେ ସ୍ୱର୍ଗକାମୀ ଯଜ୍ଞାନୁଷ୍ଠାନ କରିବ ।

## ଅଙ୍ଗ ଓ ପ୍ରଧାନ

ଯାହା ଅନ୍ୟାର୍ଥ ତାହା ଅଙ୍ଗ, ଯାହା ଅନ୍ୟାର୍ଥ ନୁହେଁ ତାହା ପ୍ରଧାନ । ଅଙ୍ଗ ମାତ୍ରେ ପ୍ରଧାନ କର୍ମର ଉପକାରକ, ଅର୍ଥାତ୍ ମୂଳ କର୍ମର ସହାୟ ବା ସ୍ୱରୂପ ସମ୍ପାଦକ ଏବଂ ପ୍ରଧାନ ମାତ୍ରେ ସ୍ୱୟଂ ଫଳଜନକ, ଯଥା - କାଳୀପୂଜା ଗୋଟିଏ ପ୍ରଧାନ କ୍ରିୟା, ସ୍ନାନାଚମନ ସଂକଳ୍ପାଦି ତାହାର ଅଙ୍ଗକ୍ରିୟା, ଦ୍ରବ୍ୟ ଓ ସଂଖ୍ୟା ପ୍ରଭୃତି ସିଦ୍ଧରୂପ ଏବଂ ଅବଶିଷ୍ଟ କ୍ରିୟାରୂପ । ଏହି ଅଙ୍ଗ ଦ୍ୱିବିଧ- ସିଦ୍ଧରୂପ ଓ କ୍ରିୟାରୂପ, ଯଥା - ସନ୍ନିପାତ୍ୟୋପକାରକ ଏବଂ ଆରାଦୁପକାରକ । ସିଦ୍ଧରୂପ ଦ୍ରବ୍ୟାଦି ଉଦ୍ଦେଶ୍ୟରେ ଯେଉଁ କ୍ରିୟାର ବିଧାନ କରାଯାଏ ସେହି କ୍ରିୟାର ନାମ ସନ୍ନିପାତ୍ୟୋପକାରକ ଯଥା - ''ବ୍ରୀହୀନ୍ ଅବହନ୍ତି'', ''ସୋମଂ ଅଭିଷୁନୋତି'' ଇତ୍ୟାଦି ବାକ୍ୟରେ ବ୍ରୀହୀ ଓ ସୋମ ଦ୍ରବ୍ୟର ଅବଘାତ ଓ ଅଭିଷବ (କୁଟିବା, ଚିପୁଡ଼ିବା) ଇତ୍ୟାଦି କ୍ରିୟାର ବିଧାନ ଅଛି । ଯେଉଁ ସ୍ଥଳରେ ଦ୍ରବ୍ୟାଦିର ଉଦ୍ଦେଶ୍ୟ ଦୃଷ୍ଟ ନହୋଇ କ୍ରିୟାର ବିଧାନ ଅଛି ସେହି ଅଙ୍ଗର ନାମ ଆରାଦୁପକାରକ, ଯଥା- ପ୍ରଯାଜ, ଅନୁଯାଜ ଓ ଆଜ୍ୟଭାଗ ।

ପ୍ରଯାଜ ଅନୁଯାଜ କର୍ମ ବିଶେଷ ଆଜ୍ୟଭାଗ ।
ଆଜ୍ୟଭାଗୋ ଯଜତି

ସମିଧୋ ଯଜତି
ଇଡ଼ୋ ଯଜତି ଏ ସମସ୍ତ ଆରାଦୁପକାରକକର୍ମ ସମୂହ
ତନୂନପାତଂ ଯଜତି ଏହି ପାଞ୍ଚ ବିଧ ପ୍ରଯାଜ
ବର୍ହିର୍ଯଜତି
ସ୍ୱାହାକାରଂ ଯଜତି

ଅର୍ଥବାଦ - କେଉଁଟି ବିହିତକର୍ମ ଏବଂ କେଉଁଟି ନିଷିଦ୍ଧାଚରଣ ଯଥାକ୍ରମେ ପ୍ରଶଂସା ବା ନିନ୍ଦା କରି ବିଧି ବା ନିଷେଧ ସ୍ୱରୂପେ ବେଦଭାଗର ପ୍ରାମାଣ୍ୟ ବ୍ୟବସ୍ଥାପନ କରିବା ହିଁ ବେଦର ଯେଉଁ ଅଙ୍ଗର ଉଦ୍ଦେଶ୍ୟ ସେହି ଅଙ୍ଗକୁ ଅର୍ଥବାଦ କହନ୍ତି । ଏହି ଅର୍ଥବାଦବାକ୍ୟ ଗୁଣବାଦ, ଅନୁବାଦ ଓ ଭୂତାର୍ଥବାଦ ଭେଦରେ ତ୍ରିବିଧ, ଯଥା-

"ବିରୋଧେ ଗୁଣବାଦସ୍ୟା ଦନୁବାଦୋଽବଧାରିତେ ।
ଭୂତାର୍ଥ ବାଦସ୍ତଦ୍ଧାନାଦର୍ଥବାଦ ସ୍ତ୍ରିଧା ମତଃ ।।"

ଯାହା ପ୍ରମାଣ ବିରୁଦ୍ଧ ଅର୍ଥର ଅଭିଧାୟକ, ତାହା ଗୁଣବାଦଏ ଯଥା- "ଆଦିତ୍ୟୋ ଯୂପଃ" । ଏହି ବାକ୍ୟର ଯୁପ ହିଁ ଆଦିତ୍ୟ, ଏହି ଅର୍ଥ ପ୍ରତ୍ୟକ୍ଷ ବିରୁଦ୍ଧ; ସୁତରାଂ ଏହି ଉକ୍ତି କୌଣସି ଏକ ସାଦୃଶ୍ୟାନୁସାରିଣୀ । ଆଦିତ୍ୟ ଯେପରି ଦିନ ଉତ୍ପାଦନ କରି ଯାଗ ନିର୍ବାହ କରନ୍ତି ସେପରି ଯୂପ ମଧ୍ୟ ପଶୁବନ୍ଧନାଶ୍ରୟାଦି କ୍ରିୟାଦ୍ୱାରା ଯାଗ ନିର୍ବାହ କରେ ।

ଯାହା ପ୍ରମାଣସିଦ୍ଧ ବାକ୍ୟାର୍ଥ ପ୍ରକାଶ କରେ ତାହାର ନାମ ଅନୁବାଦ, ଯଥା- "ବାୟୁର୍ବୈକ୍ଷେପିଷ୍ଠା ଦେବତା, ବାୟୁମେବ ସ୍ୱେନଭାଗେନୋପଦଧାତି" । ସ ଏନଂ ଭୂତିଂ ଗମୟତି ଇତ୍ୟାଦି । ବାୟୁ କ୍ଷୀପ୍ରଗାମୀ ଦେବତା, ଏହା ପ୍ରତ୍ୟକ୍ଷ ପ୍ରମାଣଲଭ୍ୟ । ଅତଏବ ବାୟୁକୁ ତଦୁଚିତ ଭାଗ ଦେଇ ପରିତୁଷ୍ଟ କଲେ, ସେ ଐଶ୍ୱର୍ଯ୍ୟପ୍ରଦ ହେବେ ଏପରି ଅର୍ଥ ବୁଝି, "ବାୟବ୍ୟଂ ଶ୍ୱେତମାଲଭେତ ଭୂତିକାମଃ" ଏହି ବିଧିବାକ୍ୟର ପୋଷଣ କରିବାକୁ ହେବ । ଅଗ୍ନିର୍ହିମସ୍ୟ ଭେଷଜଂ, ଅଗ୍ନିହିମନାଶକ, ଏହି ପ୍ରମାଣସିଦ୍ଧ ଅର୍ଥ ପ୍ରକାଶ କରେ; ଅତଏବ ତାହା ଅନୁବାଦ ।

ଯାହା ପ୍ରତ୍ୟକ୍ଷପ୍ରମାଣ ବିରୁଦ୍ଧ ନୁହେଁ; ଅଥଚ ଅପ୍ରାପ୍ତ ବା ଅଜ୍ଞାତାର୍ଥବୋଧକ ତାହା ଭୂତାର୍ଥବାଦ, ଯଥା- "ଇନ୍ଦ୍ରୋ ବୃତ୍ରାୟ ବଜ୍ରମୁଦଯଚ୍ଛଂ" ଇତ୍ୟାଦି । ଏହା ଭାରତାଦି ପ୍ରସିଦ୍ଧ ବୃତ୍ତାନ୍ତଲବ୍ଧ ଏବଂ ପ୍ରମାଣ ବିରୁଦ୍ଧ ନୁହେଁ; ପ୍ରମାଣାନ୍ତରପ୍ରାପ୍ତ ମଧ୍ୟ ନୁହେଁ ଅତଏବ ଏହା ଭୂତାର୍ଥବାଦ । ଅର୍ଥବାଦ ମାତ୍ରେ ବିଧିଶକ୍ତିର ଉତ୍ତେଜକ ଓ ବିଧିସହିତ ଏକ ହୋଇ ବିଧିର ଅନୁକୂଳାର୍ଥ ପ୍ରକାଶ କରେ । ମୀମାଂସକ ମତରେ ଅର୍ଥବାଦ ବାକ୍ୟର ଯଥାଶ୍ରୁତ ଆକ୍ଷରିକ ପ୍ରାମାଣ୍ୟ ସମ୍ପୂର୍ଣ୍ଣ ରୂପେ ଅସ୍ୱୀକୃତ, କେବଳ ଭୂତାର୍ଥବାଦର ପ୍ରାମାଣ୍ୟ ଅଙ୍ଗୀକୃତ । ଅର୍ଥବାଦ ବାକ୍ୟରେ ଯେଉଁ ଫଳଲାଭ ବିଷୟ ଉଲ୍ଲେଖ ଅଛି ତାହା ପ୍ରଲୋଭନ ମାତ୍ର ଏବଂ କେତେକ ସ୍ଥାନରେ ଯେଉଁ ନିନ୍ଦାତ୍ମକ ଶ୍ରୁତି ଦେଖାଯାଏ, ତାହା ଭୟ ପ୍ରଦର୍ଶନ ମାତ୍ର । ଯଥା-

ପିବ ନିମ୍ବଂ ପ୍ରଦାସ୍ୟାମି ଖଲୁ ତେ ଖଣ୍ଡଲଡ୍ଡୁକଂ ।
ପିତ୍ରୈବ ମୁକ୍ତଃ ବିପତି ନ ଫଳଂ ତାବଦେବତୁ ।।

ଯେପରି ଆରୋଗ୍ୟକାମୀ ପିତା ଲଡୁର ପ୍ରଲୋଭନ ଦେଖାଇ ଶିଶୁପୁତ୍ରର ତିକ୍ତଭୋଜନ ପ୍ରବୃତ୍ତି ଉତ୍ତେଜିତ କରାଏ, ସେପରି କୁଶଳକାମୀ ଶାସ୍ତ୍ର ମଧ୍ୟ ଫଳ ଲୋଭ ଦେଖାଇ ମନୁଷ୍ୟର ସତ୍‌ପ୍ରବୃତ୍ତି ଉନ୍ମେଷଣ ଏବଂ ଅସତ୍ ପ୍ରବୃତ୍ତି ନିବାରଣର ଚେଷ୍ଟା କରେ ।

ବାଳକ ମୋଦକ ଲୋଭରେ ତିକ୍ତ ପାନ କରେ ସତ୍ୟ; କିନ୍ତୁ ପିତା ତାହାକୁ ମୋଦକ ଦିଏ ନାହିଁ, ସେହିପରି ଶାସ୍ତ୍ର ମଧ୍ୟ ଅନୁଷ୍ଠାତାକୁ ସ୍ୱୋପଦିଷ୍ଟ ଅର୍ଥର ଫଳ ପ୍ରଦାନ କରେ ନାହିଁ । ପିତାର ଇଚ୍ଛା ପୁତ୍ର ଆରୋଗ୍ୟବାନ୍ ହେଉ । ଶାସ୍ତ୍ରର ଇଚ୍ଛା ମାନବସମାଜ ଐହିକ ଓ ପାରତ୍ରିକ

ସୁଖ ଲାଭ କରୁ । ପିତାର ପ୍ରରୋଚନାରେ ପୁତ୍ର ତିକ୍ତ ଭୋଜନ କଲେ ଆରୋଗ୍ୟ ବ୍ୟତୀତ ଅନ୍ୟ ଅଶୁଭ ଫଳ ନ ପାଇଲା ପରି ଶାସ୍ତ୍ର ପ୍ରରୋଚନାରେ ଶାସ୍ତ୍ରୋପଦିଷ୍ଟ ପଥରେ ଅବସ୍ଥାନ କଲେ ଜୀବ ଐହିକ ଓ ପାରତ୍ରିକ କୁଶଳ ବ୍ୟତୀତ ଅନ୍ୟ ଅଶୁଭ ଫଳ ପାଏ ନାହିଁ ।

ମନ୍ତ୍ର- ''ପ୍ରୟୋଗ ସମବେଦାର୍ଥସ୍ମାରକାଃ ମନ୍ତ୍ରାଃ'' । ଅର୍ଥାତ୍ ଅନୁଷ୍ଠାନ ସମ୍ବନ୍ଧୀୟ ଦ୍ରବ୍ୟ ଓ ଦେବତାଦିର ସ୍ମାରକ ଏବଂ ତଦର୍ଥ ପ୍ରକାଶକ ସମସ୍ତ ବେଦର ମନ୍ତ୍ର । ଯଜ୍ଞବେଳେ ହୋତା କୌଣସି ଦେବତାଙ୍କୁ ଲକ୍ଷ୍ୟ କରି ପ୍ରଜ୍ୱଳିତ ଅଗ୍ନିରେ ଯାଜ୍ୟ ଦ୍ରବ୍ୟ ନିକ୍ଷେପ କଲାବେଳେ ବେଦର ଯେଉଁ ଅଂଶ ଉଚ୍ଚାରଣ କରେ ସେହି ଅଂଶର ନାମ ମନ୍ତ୍ର। ''ଅଗ୍ନିମୀଡ଼େ ପୁରୋହିତଂ ଯଜ୍ଞସ୍ୟ ଦେବମୃତ୍ୱିଜଂ ହୋତାରଂ ରତ୍ନଧାତମଂ'' । ଋକ୍ । ଏହି ଅଂଶ ପାଠ କଲେ ଅଗ୍ନିଦେବତା ସ୍ମରଣ ହୁଅନ୍ତି; ସୁତରାଂ ଏହି ବାକ୍ୟାଂଶକୁ ଅଗ୍ନିଦେବତାଙ୍କର ମନ୍ତ୍ର ବୋଲି ଗ୍ରହଣ କରାଯାଏ । ଅପର ମନ୍ତ୍ର ସକଳର ଲକ୍ଷଣ ମଧ୍ୟ ଏହିପରି ।

ଏହି ମନ୍ତ୍ର ଋକ୍, ଯଜୁ, ସାମ ଭେଦରେ ତ୍ରିବିଧ । ଅନୁଷ୍ଠାନ କାଳରେ ମନ୍ତ୍ରର ଆବୃତ୍ତିରେ ଦ୍ରବ୍ୟ ଓ ଦେବତାଦି ଆତ୍ମାର କ୍ରମ ବିଶେଷର ସ୍ମରଣ ହୁଏ । ତଦ୍ୱାରା ଅଦୃଷ୍ଟ ବିଶେଷ ସମୁତ୍ପନ୍ନ ମନ୍ତ୍ରର ପ୍ରାମାଣ୍ୟ ଓ ପ୍ରୟୋଗବିଧିର ସହିତ ଐକ୍ୟ ହୋଇ ପରିଗୃହୀତ ହୁଏ; ସ୍ୱାତନ୍ତ୍ର୍ୟର ହୁଏ ନାହିଁ ।

ନାମଧେୟ - ଉଦ୍‌ଭିଦା ଯଜେତ ପଶୁକାମଃ; ବିଶ୍ୱଜିତା ଯଜେତ ସ୍ୱର୍ଗକାମଃ; ଗୋମେଧେନ ଯଜେତ'' ଇତ୍ୟାଦି ବାକ୍ୟରେ ଯେଉଁ ଉଦ୍ଭିଦ, ବିଶ୍ୱଜିତ୍, ଗୋମେଧ ପ୍ରଭୃତି ଶବ୍ଦ ଅଛି ସେହି ସକଳ ନାମଧ୍ୟେୟ ଅର୍ଥାତ୍ ବିଶେଷ ବିଶେଷ ଯାଗର ନାମ । ଏହି ସମସ୍ତ ଅଂଶରେ ଅର୍ଥାତ୍ ବାକ୍ୟରେ ବିଧି ଲକ୍ଷଣ ନଥିବା କାରଣ ତାହା ବିଧି ନୁହେଁ, ସ୍ତୁତି ଓ ନିନ୍ଦା ନଥିବା କାରଣ ଅର୍ଥବାଦ ନୁହେଁ ଓ ମନ୍ତ୍ରଚିହ୍ନ ନଥିବା କାରଣ ମନ୍ତ୍ର ନୁହେଁ, ସୁତରାଂ କେବଳ ନାମ ମାତ୍ର । ଏ ସକଳ ନାମ ଭାଗ ବିଧି ଅଂଶେ ଅବସ୍ଥିତ ଯାଗାଦିର ସହିତ ଅଭେଦାନ୍ୱୟ ପ୍ରାପ୍ତ ହୁଏ ।

ଯାଗ, ବୈଦିକହୋମ ଓ ଦାନ ଏହି ତ୍ରିବିଧ କର୍ମ ହିଁ ନାମଧେୟ, ଏହି ଦର୍ଶନରେ ଶବ୍ଦପ୍ରାମାଣ୍ୟ, ବିଧି, ଅର୍ଥବାଦ, ମନ୍ତ୍ର ଓ ନାମଧେୟ ପ୍ରଭୃତି ଆଲୋଚିତ ହୋଇଅଛି । ଅନ୍ୟାନ୍ୟ ଦର୍ଶନ ପରି ଏଥିରେ ଶରୀର, ଇନ୍ଦ୍ରିୟ, ମନ, ଜୀବ, ଈଶ୍ୱର, ବ୍ରହ୍ମ, ସୃଷ୍ଟିର ମୂଳପଦାର୍ଥ, ସ୍ୱର୍ଗ, ନରକ, ମୋକ୍ଷ, ସୁଖ, ଦୁଃଖ, ପ୍ରମାଣ, ପ୍ରମେୟ, ସୃଷ୍ଟି, ସ୍ଥିତି ଓ ପ୍ରଳୟ ପ୍ରଭୃତିର ବିଷୟ ଅତି ସଂକ୍ଷିପ୍ତ ଭାବରେ ଆଲୋଚିତ ହୋଇଅଛି ।

ଧର୍ମରେ ସେପରିବେଦର ସମସ୍ତ ଅଂଶ ପ୍ରମାଣ ସେପରି ଆଚାରରେ ସ୍ମୃତି ମଧ୍ୟ ପ୍ରମାଣ । ଅତଏବ ଉକ୍ତି- ''ବେଦୋଽଖିଳୋ ଧର୍ମମୂଳେ ସ୍ମୃତିଶୀଳେ ଚ ତଦ୍‌ବିଦାଂ'' , ସମସ୍ତବେଦ ଧର୍ମର ପ୍ରମାଣ, ବେଦବିତ୍‌ମାନଙ୍କର ସ୍ମୃତିଶୀଳ ନାମ ଆଚାର ମଧ୍ୟ ଧର୍ମର ପ୍ରମାଣ । ଯେଉଁ ପ୍ରମାଣ ସ୍ମୃତି ଓ ବେଦ ବିରୁଦ୍ଧ ତାହା ପ୍ରମାଣ ନୁହେଁ । ଯଥା ''ଔଦୁମ୍ବରୀଂ ସ୍ପୃଷ୍ଟ୍ୱା ଉଦ୍‌ଗାୟେତ୍''

ତାତ୍ପର୍ଯ୍ୟ- ଉଦୁମ୍ବର ଶାଖା ସ୍ପର୍ଶ କରି ଗାନ କରିବ ।

ଏ ବିଷୟରେ ସ୍ମୃତି, ଯଥା- 'ଔଦୁମ୍ବରୀ ସର୍ବା ବେଷ୍ଟୟିତବ୍ୟା' ଏହି ସ୍ମୃତିଦ୍ୱାରା ଉଦୁମ୍ବର ଶାଖାର ସର୍ବବେଷ୍ଟନ ଉକ୍ତ ହୋଇଅଛି, କିନ୍ତୁ ସର୍ବବେଷ୍ଟନ କଲେ ଶ୍ରୁତ୍ୟୁକ୍ତ ସ୍ପର୍ଶନ ଅସମ୍ଭବ । ଅତଏବ ଏହି ସ୍ମୃତି ଅପ୍ରମାଣ ଏବଂ କେଉଁ ସ୍ଥାନରେ ଶ୍ରୁତି ବିରୋଧ ନଥିଲେ ସୁଦ୍ଧା ଲୋଭାଦି ମୂଳକ ସ୍ମୃତିବାକ୍ୟ ମଧ୍ୟ ଅପ୍ରମାଣ । ଯଥା-''ବୈସର୍ଜନହୋମୀୟଂ ବାସୋ ଅଧ୍ୱର୍ଯ୍ୟୁର୍ଗୃହ୍ଣାତି'' । ବୈସର୍ଜନ ହୋମାଖ୍ୟେ କର୍ମଣି ପତ୍ନୀଂ ପୁତ୍ରାଂଶ୍ଚ ଆହତେନ ବାସସା ସଂବେଷ୍ଟ୍ୟ, ବାସସୋ ଅନ୍ତେ ଶୃଦୂତ୍ରଂ ନିବଧ୍ୟ ହୋମଂ କୃତ୍ୱା ପଶ୍ଚାତ୍ ଏତଦ୍‌ବାସଃ ଅଧ୍ୱର୍ଯ୍ୟୁର୍ଗୃହ୍ଣୀୟାତ୍ । ଅର୍ଥାତ୍- ହୋମ ପରେ ସେହି ବାସ ଅଧ୍ୱର୍ଯ୍ୟୁ ନେବେ; ଇତ୍ୟାଦି ସ୍ମୃତି ଲୋଭମୂଳକ ହେତୁ ତାହା ଅପ୍ରମାଣ ।

ଅଥ ଆଚାର- ମାତୁଳକନ୍ୟାବିବାହ ଆଚାର ସ୍ମୃତି ବିରୁଦ୍ଧ । ଅତଏବ ଅପ୍ରମାଣ, ଯଥା-
ମାତୁଳସ୍ୟ ସୁତାମୂଢ୍ୱା ମାତୃଗୋତ୍ରାଂ ତଥୈବ ଚ ।
ସମାନ ପ୍ରବରାଂଚୈବ ତ୍ୟକ୍ତ୍ୱା ଚାନ୍ଦ୍ରାୟଣଂ ଚରେତ୍ ।।

ଅତଏବ ଶ୍ରୁତି ଅବିରୁଦ୍ଧ ସ୍ମୃତି ଏବଂ ସ୍ମୃତି ଅବିରୁଦ୍ଧ ଆଚାର ମଧ୍ୟ ଧର୍ମ ରୂପେ ପ୍ରମାଣିତ ।

## ଶରୀର, ଇନ୍ଦ୍ରିୟ ଓ ମନ

ଶରୀର ପଞ୍ଚଭୌତିକ, ଇନ୍ଦ୍ରିୟସମୂହ ମଧ୍ୟ ଭୌତିକ । ଘ୍ରାଣ, ରସନା, ଚକ୍ଷୁ, ତ୍ୱକ୍ ଏହି ଚାରି ଇନ୍ଦ୍ରିୟ ଯଥାକ୍ରମେ ପୃଥିବୀ, ଜଳ, ତେଜ ଓ ବାୟୁ ଏହି ଚାରିଭୂତର ବିକୃତି ମାତ୍ର ଏବଂ ଶ୍ରୋତ୍ର ଦିଗାତ୍ମକ । ଦିଗ ହିଁ କର୍ଣ୍ଣଶଷ୍କୁଳାବଛିନ୍ନ ହୋଇ ଶବ୍ଦଜ୍ଞାନର କାରଣ ହୁଏ, ଶ୍ରୁତି, ''ଦିଶଃ ଶ୍ରୋତ୍ରଂ'' ଏହାହିଁ ତାହାର ପ୍ରମାଣ । ମନ ମଧ୍ୟ ଭୌତିକ; କିନ୍ତୁ ତାହା ପୃଥିବ୍ୟାଦିର ଅନ୍ୟତମ ଓ ନଶ୍ୱର ।

ଜୀବ ନାନାବିଧ ଏବଂ ତାହା ଆତ୍ମାର ଅବସ୍ଥା ବିଶେଷ । ଅଦ୍ୱିତୀୟ ବ୍ରହ୍ମବୋଧକ ଶ୍ରୁତିସକଳ ଅର୍ଥବାଦ ମାତ୍ର । ସାଂଖ୍ୟ ପରି ମୀମାଂସା ମଧ୍ୟ ଦ୍ୱୈତବାଦ ଓ ନିତ୍ୟ ଜଗଦ୍‌ବାଦ ପ୍ରତିପାଦନ କରେ ।

ଦ୍ରବ୍ୟ, ଗୁଣ, କର୍ମଳ ସାମାନ୍ୟ, ବିଶେଷ, ସମବାୟ ଓ ଅଭାବ ଏହି ସପ୍ତପଦାର୍ଥ । କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ, କାଳ, ଦିକ୍, ଦେହ, ମନ ଓ ତମ ଏହି ଦଶ ଦ୍ରବ୍ୟବାଦୀ । କେତେକ ପୁଣି ଏକାଦଶ ଦ୍ରବ୍ୟବାଦୀ, ଯଥା- ଶବ୍ଦ ଏକାତିରିକ୍ତ ନିତ୍ୟଦ୍ରବ୍ୟ ।

ଯାହା ଧ୍ୱନିଦ୍ୱାରା ବ୍ୟକ୍ତ ହୁଏ ତାହା ଶବ୍ଦ; ଧ୍ୱନି ଶବ୍ଦର ବ୍ୟଞ୍ଜକ ମାତ୍ର । ଶବ୍ଦବ୍ୟଞ୍ଜକ ଧ୍ୱନି ବୁଦ୍ଧିର ଗ୍ରାହ୍ୟ ଅର୍ଥାତ୍ ଧ୍ୱନିଗୁଣ ହେଲେ ମଧ୍ୟ ତାହାର ବ୍ୟଙ୍ଗ୍ୟ ଶବ୍ଦ ପଦାର୍ଥ; ଅତଏବ ତାହା ଗୁଣ ନୁହେଁ ଦ୍ରବ୍ୟ । ଏହି ମତରେ ଶବ୍ଦ ନିତ୍ୟ, ବୋଧ୍ୟବୋଧକ ସମ୍ବନ୍ଧ ମଧ୍ୟ ନିତ୍ୟ । କେବଳ ମାତ୍ର ବ୍ୟକ୍ତକରଣେ ପୁରୁଷର କର୍ତ୍ତୃତ୍ୱ ଶେଷ ହୁଏ । ବୈଦିକ ସନ୍ଦର୍ଭ ଅଲୌକିକ ଅର୍ଥାତ୍

ଅପୌରୁଷେୟ; ସୁତରାଂ ତାହାର ଉଚ୍ଚାରଣ ବା ଅନୁବାଦ ବ୍ୟତୀତ ଅନ୍ୟ କୌଣସି ବିଷୟରେ ପୁରୁଷର କର୍ତ୍ତୃତ୍ୱ ନାହିଁ ।

ଶରୀର ଭୌତିକ, ଆତ୍ମା ତଦତିରିକ୍ତ । ଆତ୍ମା ନାନାବିଧ ଏବଂ ପ୍ରତି ଶରୀରରେ ଭିନ୍ନ, ଅଜର, ଅମର ଓ ଜ୍ଞାନ ଶକ୍ତିବିଶିଷ୍ଟ । ଆତ୍ମା ସୁଖ ଦୁଃଖ ଭୋକ୍ତା ଏବଂ ମାନସ ଅହଂ ପ୍ରତ୍ୟୟର ଅଧିଗମ୍ୟ । ଆତ୍ମା ବିଭୁ । ତାହାର ଜ୍ଞାନ ଶକ୍ତ୍ୟାଦି ବାହ୍ୟରେ ନ ହୋଇ ଶରୀର ମଧ୍ୟରେ ସ୍ଫୁରଣ ହୁଏ ।

ଜ୍ଞାନ - ଆତ୍ମାର ଅନ୍ୟତମ ଶକ୍ତି ବା ଗୁଣ । ମୋକ୍ଷ କାଳରେ ଆତ୍ମାର ଇନ୍ଦ୍ରିୟାତୀତ ଆଗମାପାୟିନୀ ବୁଦ୍ଧି ଓ ସୁଖାଦି ନିବୃତ୍ତ ହୁଏ ଏବଂ ସ୍ୱରୂପଗତ ଜ୍ଞାନଶକ୍ତି ଓ ସୁଖ ଆବିଷ୍କୃତ ହୁଏ । ଏହି ମତରେ 'ସ୍ୱର୍ଗ' ସୁଖ ବିଶେଷ ଓ ନରକ ଦୁଃଖ ବିଶେଷ । ତାହା ଶରୀରର ସ୍ଥାନ ଭେଦରେ ଭୋଗ୍ୟ । ସ୍ୱର୍ଗସୁଖ ଓ ନରକ ଯନ୍ତ୍ରଣାର ଉପଭୋଗ ଓ ଭୋଗ୍ୟସ୍ଥାନ ମଧ୍ୟ ଅଛି । ଶରୀର ମଧ୍ୟ ଅଛି । ଯାହା ନିରତିଶୟ ଆନନ୍ଦ ସ୍ୱରୂପ ଏବଂ ଦୁଃଖ ବିବର୍ଜିତ ତାହାହିଁ ସ୍ୱର୍ଗ । ଅଥବା ଯାହା କେବେହେଲେ ଦୁଃଖ ସଂଯୁକ୍ତ ହୁଏ ନାହିଁ, ଏବଂ ଅଭିଳାଷୋପନୀତ ଅର୍ଥାତ୍ ଇଚ୍ଛା ମାତ୍ରେ ଉପସ୍ଥିତ ହୁଏ, ତାହା 'ସ୍ୱର୍ଗ' ଏବଂ ଏହି ସ୍ୱର୍ଗ ହିଁ ଜୀବର ପ୍ରାର୍ଥନୀୟ । ଏହି ଦର୍ଶନ ମତରେ ଯାଗାଦିଦ୍ୱାରା ସ୍ୱର୍ଗ ଲାଭ ହୁଏ । ସୁଖ, ଦୁଃଖାଦି ସମସ୍ତ ବିଶେଷ ଗୁଣର ଉଚ୍ଛେଦରେ ମୋକ୍ଷ । ଭୋଗାୟତନ ଶରୀର ଭୋଗସାଧନ ଓ ଭୋଗ୍ୟ ବିଷୟ ଏହି ସମସ୍ତ ପ୍ରପଞ୍ଚାନ୍ତର୍ଗତ; ସୁତରାଂ ପ୍ରପଞ୍ଚ ତ୍ରିଧା ବିଭକ୍ତ । ଉକ୍ତ ତିନି ପ୍ରକାର ବିଷୟ ପୁରୁଷକୁ ବନ୍ଧନ କରେ, ଅର୍ଥାତ୍ ଭୋଗ କରାଏ । ଭୋଗ ଶବ୍ଦର ଅର୍ଥ - ସୁଖଦୁଃଖ ସାକ୍ଷାତକାର, ଜୀବ ଉକ୍ତ ପ୍ରପଞ୍ଚତ୍ରୟର ସମ୍ବନ୍ଧରୁ ନିଜକୁ ମୁକ୍ତ କରିପାରିଲେ ମୋକ୍ଷ ଲାଭ କରେ । ସଂସାର ଦଶାରେ ଆତ୍ମାର ଆନନ୍ଦ ଆବୃତ ହୋଇଥାଏ, ମୋକ୍ଷ ଲାଭବେଳେ ତାହାର ସ୍ଫୁରଣ ହୁଏ । ମୋକ୍ଷ ଲାଭହେଲେ ଶରୀର ଓ ଇନ୍ଦ୍ରିୟ ରହେ ନାହିଁ; କେବଳ ମନ ଥାଏ ।

ଅନ୍ୟାନ୍ୟ ଦାର୍ଶନିକଙ୍କ ମତରେ ମନ ମଧ୍ୟ ରହେ ନାହିଁ; କାରଣ ମନ ମଧ୍ୟ ଇନ୍ଦ୍ରିୟ, ସୁତରାଂଏହା ପ୍ରାକୃତିକ । ପ୍ରାକୃତିକ କୌଣସି ସମ୍ବନ୍ଧ ଥିଲେ ମୋକ୍ଷ ଲାଭ ଅସମ୍ଭବ । ପ୍ରକୃତି ବା ମାୟାର ବନ୍ଧନରେ ଆବଦ୍ଧ ହେଲେ ମୋକ୍ଷଲାଭ ହେବ ନାହିଁ ।

ମୀମାଂସା ମତରେ ମନର ବିଦ୍ୟମାନତା ଯୋଗୁଁ ମୁକ୍ତଜୀବ ଅନନ୍ତ କାଳ ଲାଗି ଅପରିଚ୍ଛିନ୍ନ ସୁଖାସ୍ୱାଦନ ସମର୍ଥ ହୁଏ । ଚୈତନ୍ୟ ଅର୍ଥାତ୍ ଜ୍ଞାନଶକ୍ତି, ଆନନ୍ଦ ପଦରେ ସୁଖ ନିତ୍ୟତ୍ୱ, ବିଭୁତ୍ୱ ଅର୍ଥାତ୍ ସର୍ବବ୍ୟାପୀତ୍ୱ ଏ ସମସ୍ତ ଆତ୍ମାର ଧର୍ମ । ଯେତେବେଳେ ଜୀବର ମୋକ୍ଷ ଲାଭ ହୁଏ ତେତେବେଳେ ଏହି ସକଳ ବିଦ୍ୟମାନ ଥାଏ, ଉଚ୍ଛେଦ ପ୍ରାପ୍ତ ହୁଏ ନାହିଁ ।

ମୋକ୍ଷ ପ୍ରଣାଳୀ- କାମ୍ୟ, ନିଷିଦ୍ଧ, ଶାରୀରିକ ଓ ମାନସିକ କ୍ରିୟା ବର୍ଜନ କରି କେବଳ ନିଷ୍କାମ ନିତ୍ୟ ନୈମିତ୍ତିକ କର୍ମରେ ରତ ହେଲେ ଅଥବା ଆତ୍ମତତ୍ତ୍ୱ ଜ୍ଞାନରେ ପରିପୂର୍ଣ୍ଣ ହୋଇ

ରହି ପାରିଲେ, ପୁନର୍ଜନ୍ମର କାରଣୀଭୂତ ଧର୍ମାଧର୍ମ ଉତ୍ପତ୍ତିରହିତ ହୁଏ । ସଞ୍ଚିତ ଧର୍ମାଧର୍ମ ମଧ୍ୟ ଦଗ୍ଧବୀଜ ପରି ଶକ୍ତିହୀନ ହୋଇଥାଏ । ଯାବତ୍ପର୍ଯ୍ୟନ୍ତ ଦେହ ବିଦ୍ୟମାନ ତାବତ୍ ପର୍ଯ୍ୟନ୍ତ ଭୋଗ ବିଦ୍ୟମାନ ଥାଏ । ସେହି ଭୋଗରେ ପ୍ରାରବ୍ଧ କର୍ମ କ୍ଷୟ ହୁଏ; ସୁତରାଂ ସୁଖ ଦୁଃଖ ଓ ଶରୀରୋତ୍ପତ୍ତିର କାରଣୀଭୂତ ପ୍ରାରବ୍ଧ ସଞ୍ଚିତ ଓ ଆଗାମୀ ଧର୍ମାଧର୍ମର ଅଭାବରେ ସୁଖ ଦୁଃଖାଦି ପୁନଶ୍ଚ ଉତ୍ପନ୍ନ ହୁଅନ୍ତି ନାହିଁ; ସେତେବେଳେ ହିଁ ମୋକ୍ଷ ଲାଭ ହୁଏ । ମୁକ୍ତଜୀବ ଶରୀରହୀନ ହେଲେ କେବଳ ମୂଳ ମନ ଯୋଗେ ଅନବରତ ଆତ୍ମସୁଖାସ୍ୱାଦନରେ ପରିତୃପ୍ତ ହୁଏ ।

ଶାସ୍ତ୍ରରେ ଯେଉଁ ତତ୍ତ୍ୱଜ୍ଞାନର ପ୍ରଶଂସା ଦେଖାଯାଏ ତାହା ଯଜ୍ଞାଙ୍ଗ ଓ ମୋକ୍ଷାଙ୍ଗ ଉଭୟ ପ୍ରକାର । ଯଜ୍ଞାଦିକାଳୀନ ଆତ୍ମଜ୍ଞାନ ଯଜ୍ଞ ଫଳର ପୋଷଣ କରେ, ଆଧିକ୍ୟ ଜନ୍ମାଏ ଏବଂ ସାର୍ବଭୌମିକ ଆତ୍ମଜ୍ଞାନ ମୋକ୍ଷଫଳର କାରଣତ୍ୱ ପ୍ରାପ୍ତ ହୁଏ ।

କର୍ମର ଫଳ ଅଦୃଷ୍ଟ, ତାହା ଶୁଭାଶୁଭ ଭେଦରେ ଦ୍ୱିବିଧ । ବିହିତ କର୍ମର ଫଳ ଶୁଭାଦୃଷ୍ଟ ଏବଂ ନିଷିଦ୍ଧ କର୍ମର ଫଳ ଅଶୁଭାଦୃଷ୍ଟ, ଏହାକୁ ପୁଣ୍ୟ ଓ ପାପ କୁହାଯାଏ ।

ଶୁଭାଦୃଷ୍ଟ ଦୁଇ ପ୍ରକାର- ଏକ ଅଭ୍ୟୁଦୟର ହେତୁ, ଅପର ନିଃଶ୍ରେୟସର ଉପାୟ । କାମ୍ୟ କର୍ମରେ ଅଭ୍ୟୁଦୟ ଲାଭ ହୁଏ ଏବଂ ନିଷ୍କାମ କର୍ମରେ ନିଃଶ୍ରେୟସ ଅର୍ଥାତ୍ ମୋକ୍ଷ ଲାଭ ହୁଏ । ନିଷ୍କାମ କର୍ମ ଯେଉଁ ଅଦୃଷ୍ଟ ଉତ୍ପାଦନ କରେ କର୍ମୀ ତାହାରି ବଳରେ ମୋକ୍ଷ ଲାଭ କରି କୃତାର୍ଥ ହୁଏ । ଯାହା ନିଃଶ୍ରେୟସଜନକ ନୁହେଁ ତାହା ଅଭ୍ୟୁଦୟ ଅର୍ଥାତ୍ ଐହିକ ଓ ପାରଲୌକିକ ଉନ୍ନତିଜନକ । ଏହି ଦର୍ଶନ ମତରେ ସୁଖ ଓ ଦୁଃଖ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ଅଛି । ସୁଖାଭାବ ଦୁଃଖ ଏବଂ ଦୁଃଖାଭାବ ସୁଖ । ସୁଖ ଓ ଦୁଃଖ ସଂସାରାବସ୍ଥାରେ ବୈଷୟିକ, ଆଭ୍ୟସିକ ସଂକଳ୍ପାତ୍ମକ, ଆନୁମାନିକ ଏହି ଚାରି ପ୍ରକାରେ ଭୋଗ ହେବାର ଦେଖାଯାଏ । ଆତ୍ମସୁଖ ଏ ସମସ୍ତ ସୁଖର ଅତିରିକ୍ତ । ଦୁଃଖ ଆତ୍ମାର ସ୍ୱାଭାବିକ ଗୁଣ ନୁହେଁ, ତାହା ଆରୋପିତ ଓ କଳ୍ପିତ; ପ୍ରକୃତ ପକ୍ଷେ ଏହା ବୁଦ୍ଧିର ଗୁଣ । ଏମାନେ ଷଟ୍ ପ୍ରମାଣବାଦୀ । ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶବ୍ଦ, ଅର୍ଥାପତ୍ତି ଓ ଯୋଗ୍ୟାନୁପଲବ୍ଧି । ଏମାନେ ସର୍ବଧ୍ୱଂସରୂପ ମହାପ୍ରଳୟ ସ୍ୱୀକାର କରନ୍ତି ନାହିଁ । ପରିଦୃଶ୍ୟମାନ ଜଗତର ଅସ୍ତିତ୍ୱ ବା ପରେ ହେବାର କଥା ଅନୁମୋଦନ କରନ୍ତି ନାହିଁ । ସେମାନେ ମତରେ "ନ କଦାଚିଦନୀଦୃଶଂ" । ଅର୍ଥାତ୍ ଏହି ପରିଦୃଶ୍ୟମାନ ଜଗତର ଆତ୍ୟନ୍ତିକ ଓ ସର୍ବଥା ଅନ୍ୟଥାଭାବ କୌଣସି କାଳରେ ନଥିଲା । ସର୍ବଧ୍ୱଂସ ରୂପ ମହାପ୍ରଳୟ ଯୁକ୍ତିବିରୁଦ୍ଧ; ସୁତରାଂ ଶାସ୍ତ୍ରରେ ଯେଉଁ ପ୍ରଳୟର ଉଲ୍ଲେଖ ଅଛି ତାହା ମିଥ୍ୟା ଏବଂ ଖଣ୍ଡପ୍ରଳୟବୋଧକ । ମହାପ୍ରଳୟବାକ୍ୟ ମୀମାଂସକର ଅର୍ଥବାଦ ମାତ୍ର ।

## ଉପସଂହାର

ମୀମାଂସାର ସଂକ୍ଷିପ୍ତ ଇତିବୃତ୍ତ କେଉଁ ସମୟରେ ମୀମାଂସା ଶାସ୍ତ୍ରର ସୂତ୍ରପାତ ହେଲା ତାହା ନିର୍ଣ୍ଣୟ କରିବା ଅସମ୍ଭବ । ପ୍ରାଚୀନ ଉପନିଷଦ୍ ସମୂହରେ ସାଂଖ୍ୟଯୋଗ ଓ ବେଦାନ୍ତରେ

ଉଲ୍ଲେଖ ଅଛି, କିନ୍ତୁ ମୀମାଂସା, ନ୍ୟାୟ, ବୈଶେଷିକର ନାମ ପର୍ଯ୍ୟନ୍ତ ନାହିଁ । ଉପନିଷଦ୍‌ରେ ବାଦରାୟଣ, ଜୈମିନୀ, ପତଞ୍ଜଳି ବା କଣାଦ ପ୍ରଭୃତିଙ୍କ ନାମ ନାହିଁ । ଉପନିଷଦରେ ଯେଉଁ ମୀମାଂସା ଶବ୍ଦ ମିଳେ ତାହା କୌଣସି ଶାସ୍ତ୍ର ବିଶେଷର ନାମକରଣାର୍ଥେ ସୂଚିତ ନ ହୋଇ ତତ୍ତ୍ୱ ନିର୍ଣ୍ଣୟ ଅର୍ଥରେ ବ୍ୟବହୃତ; କିନ୍ତୁ ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ ଉପନିଷଦ୍ ଯୁଗରେ ଜୈମିନୀଙ୍କର ମୀମାଂସାଦର୍ଶନର ପ୍ରଚଳନ ନଥିଲା ।

ପ୍ରଥମେ କେବଳ କର୍ମକାଣ୍ଡାତ୍ମକ ମୀମାଂସାର ପ୍ରଚଳନ ଥିଲା । ଛାନ୍ଦୋଗ୍ୟ ଓ ଆଶ୍ୱଳାୟନ ଗୃହ୍ୟସୂତ୍ରରେ ମାତ୍ର ଏହାର ଉଲ୍ଲେଖ ଅଛି । ପ୍ରତ୍ୟେକ ଆର୍ଯ୍ୟଶାସ୍ତ୍ର ସ୍ୱୀକାର କରନ୍ତି ଯେ ଜୈମିନୀ ମୀମାଂସା ସୂତ୍ରର ରଚୟିତା । ଜୈମିନୀପ୍ରଣୀତ ମୀମାଂସା ଶାସ୍ତ୍ର ପୂର୍ବମୀମାଂସା ନାମେ ଖ୍ୟାତ ଏବଂ ବାଦରାୟଣ ପ୍ରଣୀତ ମୀମାଂସା ଶାସ୍ତ୍ର ଉତ୍ତରମୀମାଂସା ନାମେ ଖ୍ୟାତ । ବର୍ତ୍ତମାନ ପ୍ରଚଳିତ ଜୈମିନୀ ସୂତ୍ର ଆଲୋଚନା କଲେ ଦେଖାଯାଏ ଯେ ଜୈମିନୀ ଯେପରି ନିଜ ସୂତ୍ରରେ ଆତ୍ରେୟ, ବାଦରାୟଣ, ବାଦରି, ଲାବୁକାୟନ, ଐତିଶାୟନ ପ୍ରଭୃତିଙ୍କ ମତ ଉଦ୍ଧୃତ କରିଅଛନ୍ତି,ସେହିପରି ବାଦରାୟଣ ମଧ୍ୟ ତାହାଙ୍କ ବ୍ରହ୍ମସୂତ୍ରରେ ଜୈମିନୀଙ୍କ ମତ ଉଦ୍ଧୃତ କରିଅଛନ୍ତି; ସୁତରାଂ ପ୍ରଚଳିତ ପୂର୍ବମୀମାଂସା ବା ଜୈମିନୀ ସୂତ୍ରକୁ ''ଆଦିମୀମାଂସାଗ୍ରନ୍ଥ'' ବୋଲି ସ୍ୱୀକାର କରିବାକୁ ହେବ ନାହିଁ ।

ଏଥିରୁ ଅନୁମିତ ହୁଏ ଯେ ଜୈମିନୀ ଓ ବାଦରାୟଣ ଉଭୟ ଋଷି ସାମସମୟିକ । ଯେଉଁ ସମୟରେ ବିଭିନ୍ନ ସମ୍ପ୍ରଦାୟର ଅଭ୍ୟୁଦୟରୁ ଜ୍ଞାନ ଓ କର୍ମକାଣ୍ଡାନୁରାଗୀ ବିଭିନ୍ନ ରୁଚିସମ୍ପନ୍ନ ଲୋକ ମଧ୍ୟରେ ବୈଦିକ କ୍ରିୟାକଳାପାନୁଷ୍ଠାନ ନେଇ ମତଭେଦ ପ୍ରଚଳିତ ଥିଲା ଏବଂ କାଳକ୍ରମେ ଜନସାଧାରଣ ମୂଳନୀତି ବିସ୍ମୃତ ହୋଇ ଭିନ୍ନ ଭିନ୍ନ ପ୍ରଣାଳୀରେ ଯଜ୍ଞାନୁଷ୍ଠାନ ଆରମ୍ଭ କଲେ, ସେହି ସଂକଟାପନ୍ନ ଅବସ୍ଥାରେ ପ୍ରତ୍ୟେକ ଅନୁମାନର ସୁବିଧାନ ପାଇଁ ଯେଉଁ ଯେଉଁ ଗ୍ରନ୍ଥ ପ୍ରଣୟନ କରାଗଲା ତାହା ମୀମାଂସା ଶାସ୍ତ୍ର ନାମେ ବିଦିତ । ଆତ୍ରେୟ, ଲାବୁକାୟନ, ଐତିଶାୟନ ପ୍ରଭୃତି ମୁନିପୁଙ୍ଗବ ଉକ୍ତ ମୀମାଂସା ଶାସ୍ତ୍ରର ବିଶ୍ଳେଷଣ କଲେ କିନ୍ତୁ ଏହି ବିଶ୍ଳେଷଣ ସତ୍ତ୍ୱେ ସୁଦ୍ଧା ମୀମାଂସା ଶାସ୍ତ୍ର ପୂର୍ଣ୍ଣାଙ୍ଗ ପ୍ରାପ୍ତ ହୋଇପାରିଲା ନାହିଁ । ପରିଶେଷରେ ମହର୍ଷି ଜୈମିନୀ ସମସ୍ତ ମତର ସମାଲୋଚନା କରି ବୈଦିକ କର୍ମକାଣ୍ଡର ଗୋଟିଏ ଅଭ୍ରାନ୍ତ ନିର୍ଦ୍ଦିଷ୍ଟ ପନ୍ଥା ସ୍ୱରୂପ ସୂତ୍ର ପ୍ରଣୟନ କଲେ । ଏହାହିଁ ଜୈମିନୀ ସୂତ୍ର ନାମେ ଖ୍ୟାତ ।

ବେଦର ଶବ୍ଦବାଦ ହିଁଜୈମିନୀଙ୍କ ପ୍ରଧାନ ଲକ୍ଷ୍ୟ । ତାହାଙ୍କ ମତରେ ବେଦର ପ୍ରତ୍ୟେକ ଶବ୍ଦ ଅପୌରୁଷେୟ । ''ଆପ୍ତବାକ୍ୟ'' ଏହି ଶବ୍ଦତତ୍ତ୍ୱ ବୋଧରେ ବୈଦିକ-ଧର୍ମତତ୍ତ୍ୱ ବୋଧର ପଥ ସୁଗମ ହୁଏ; ଅତଏବ ବେଦର ବ୍ରାହ୍ମଣ ଭାଗରେ ଯେଉଁ ସମସ୍ତ ଯାଗଯଜ୍ଞାଦି ନିହିତ ଅଛି ତାହା ବିଧିପୂର୍ବକ ମୀମାଂସା ଶାସ୍ତ୍ରରେ ଉଲ୍ଲେଖ କରାଗଲା । ମୀମାଂସା ଶାସ୍ତ୍ରବୋଧନ ନିମନ୍ତେ ଯେଉଁମାନେ ଲେଖନୀ ଧାରଣ କରିଥିଲେ ସେମାନଙ୍କ ମଧ୍ୟରେ ମହାତ୍ମା ଉପବର୍ଷଙ୍କ ନାମ ସର୍ବପ୍ରଥମେ ଉଲ୍ଲେଖଯୋଗ୍ୟ । ଆଚାର୍ଯ୍ୟ ଶବର ସ୍ୱାମୀ ଓ ତାହାଙ୍କର ପରବର୍ତ୍ତୀ ବାର୍ତ୍ତିକ ଓ

ଟୀକାକାର ପ୍ରଭୃତି ଆଚାର୍ଯ୍ୟଗଣ ଏହି ଉପବର୍ଗଙ୍କୁ ବୃତ୍ତକାର ନାମେ ଅଭିହିତ କରିଅଛନ୍ତି । ଏହାଙ୍କ ପରେ କୁମାରିଲ୍ଲ, ପ୍ରଭାକର, ମାଧ୍ୱାଚାର୍ଯ୍ୟ, ପାର୍ଥ, ମିଶ୍ର ଓ ଖଣ୍ଡଦେବ ପ୍ରଭୃତି ଅନେକ ପଣ୍ଡିତ ମୀମାଂସାର ବ୍ୟାଖ୍ୟା କରିଅଛନ୍ତି । ସେମାନଙ୍କୁ ମଧ୍ୟରୁ ରାଘବାନନ୍ଦଙ୍କ ନ୍ୟାୟାବଳୀ ଦିଧିତି ଉଲ୍ଲେଖଯୋଗ୍ୟ ।

ଜୈମିନୀ ବ୍ୟାସଦେବଙ୍କଠାରୁ ସାମବେଦ ଓ ମହାଭାରତ ଶିକ୍ଷା ଲାଭ କରିଥିବା ବିଷୟ ପୁରାଣାଦିରେ ଦେଖାଯାଏ । ସେ ଗୋଟିଏ ମହାଭାରତ ପ୍ରଣୟନ କରିଥିଲେ, ତାହା ଜୈମିନୀ ଭାରତ ନାମେ ଖ୍ୟାତ । ଜୈମିନୀ ବଜ୍ରବାରକଙ୍କ ମଧ୍ୟରେ ଗଣ୍ୟ ।

''ଜୈମିନୀ ଚ ସୁମନ୍ତୁଷ୍ଟ ବୈଶମ୍ପାୟନ ଏବ ଚ ।

ପୁଲସ୍ତ୍ୟ ପୁଲହର୍ଷ୍ଟେବ ପଞ୍ଚୈତେ ବଜ୍ରାବାରକାଃ ।।''

ଏହାଙ୍କ ପୁତ୍ରର ନାମ ସୁମନ୍ତୁ ଓ ପୌତ୍ରର ନାମ ସୁତ୍ୱାନ୍ । ଏହାଙ୍କର ତିନିଜଣ ଶିଷ୍ୟ ଥିଲେ- ହିରଣ୍ୟନାଭ,ପୈଷ୍ଟର୍ଶୀ ଓ ଆବନ୍ତ୍ୟ । ଏହି ଶିଷ୍ୟତ୍ରୟ ବେଦର ତିନିଗୋଟି ସଂହିତା ରଚନା କରିଅଛନ୍ତି । ଏହାଙ୍କ ରଚିତ ପୂର୍ବମୀମାଂସା ସଂକର୍ଷଣ କାଣ୍ଡ ଅଧ୍ୟାୟ ଚତୁଷ୍ଟୟ ବ୍ୟତୀତ ଦ୍ୱାଦଶ ଅଧ୍ୟାୟ ଓ ଷଷ୍ଟିତମ ପାଦବିଶିଷ୍ଟ ଆଲୋଚନା ଏବଂ ସହସ୍ର କାରଣ ଓ ଦ୍ୱିସହସ୍ର ଶ୍ଳୋକଯୁକ୍ତ ।

## ଆଲୋଚନା

ସଭ୍ୟତାର ଅରୁଣାଲୋକ ପାଶ୍ଚାତ୍ୟବାସୀଙ୍କ ହୃଦୟ ସ୍ପର୍ଶ କରିବା ବହୁପୂର୍ବରୁ ପ୍ରାଚ୍ୟ ବିଶେଷତଃ ଭାରତବର୍ଷ ସେହି ବିମଳ ଜ୍ୟୋତିରେ ଉଦ୍ଭାସିତ ହୋଇଥିଲା । ପାଶ୍ଚାତ୍ୟ ଦେଶବାସୀଙ୍କ ପୂର୍ବପୁରୁଷମାନେ ଯେତେବେଳେ ଶାଖାମୃଗ ପରି ତରୁଶାଖାରେ ଆଶ୍ରୟ ଗ୍ରହଣ କରିଥିଲେ ତେତେବେଳେ ଭାରତରେ ଜ୍ଞାନ ବିଜ୍ଞାନର ବିଜୟକେତନ ଅଭ୍ରଭେଦୀ ଉଡ୍ଡୀୟମାନ ହେଉଥିଲା । ଖ୍ରୀଷ୍ଟଧର୍ମ କାହିଁକି ସ୍ୱୟଂ ଯୀଶୁ ମାତୃଗର୍ଭସ୍ଥ ହେବା ସହସ୍ରାଧିକ ବର୍ଷ ପୂର୍ବରୁ ଏପରିକି ଜଗତରେ ଇହୁଦିଧର୍ମ ପ୍ରଚାର ହେବାପୂର୍ବରୁ ସଂସ୍କୃତ ସାହିତ୍ୟ ତଥା ଆର୍ଯ୍ୟଗଣର ଦର୍ଶନ, ବିଜ୍ଞାନ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇ ପାରିଥିଲା । ଜ୍ଞାନାନନ୍ଦ ରସାପ୍ଲୁତ ଚିନ୍ତାର ମନ୍ଦାକିନୀଧାରା ପ୍ରଥମେ ଆର୍ଯ୍ୟଋଷିଙ୍କ ମସ୍ତିଷ୍କରୁ ବହିର୍ଗତ ହୋଇ କ୍ରମେ କ୍ରମେ ସମଗ୍ର ଜଗତ ବ୍ୟାପ୍ତ ହେଲା । ଆର୍ଯ୍ୟଭୂମି ଭାରତର ପର୍ବତରାଜ ହିମାଳୟ ଦର୍ଶନ ତତ୍ତ୍ୱଗଙ୍ଗାର ଆଧାର ଏବଂ ତାହାଠାରୁ ଅସଂଖ୍ୟ ଶାଖା ପ୍ରଶାଖା କାଳକ୍ରମେ ନିର୍ଗତ ହୋଇଅଛି । ଏହି ଅଭ୍ରାନ୍ତ ସତ୍ୟ ଅଧ୍ୟାପକ ମାକ୍ସମୁଲାର ଓ ପଲଡ଼ାସନ ପ୍ରଭୃତି ପାଶ୍ଚାତ୍ୟ ମନୀଷୀଗଣ ମଧ୍ୟ ସ୍ୱୀକାର କରିଅଛନ୍ତି । ଉପରୋକ୍ତ ବିଷୟରେ ଆମ୍ଭମାନଙ୍କର ଶାସ୍ତ୍ରୀୟ ପ୍ରମାଣ ଶତ ସହସ୍ର ବିଦ୍ୟମାନ ଥିଲେ ହେଁ ପାଶ୍ଚାତ୍ୟ ଦେଶବାସୀଙ୍କ ଅଭିମତର ମୂଲ୍ୟ ତଦପେକ୍ଷା ଅଧିକ ବୋଲି ଧରା ଯାଉଛି । ଅତଏବ ଆମ୍ଭେମାନେ ୟୁରୋପୀୟ ଦର୍ଶନତତ୍ତ୍ୱ-ଇତିହାସଙ୍କ ଲବ୍ଧପ୍ରତିଷ୍ଠ ଫରାସୀ ଦାର୍ଶନିକ ଭିକ୍ଟରଯୁଜ୍ୟାଙ୍କ ଉକ୍ତି ପ୍ରତି ପାଠକ ପାଠିକାଙ୍କର

ଦୃଷ୍ଟି ଆକର୍ଷଣ କରୁଅଛି । ସେ କହିଛନ୍ତି ପ୍ରାଚ୍ୟର ବିଶେଷତଃ ଭାରତୀୟ ଦର୍ଶନର ଗୌରବମୟ ଅମରତ୍ୱ ଏପରି ଗଭୀରଓ ମହାନ୍ ଯେ ତାହା ସହିତ ତୁଳନା କଲେ ୟୁରୋପୀୟ ପ୍ରତିଭାପ୍ରସୂତ ତଥ୍ୟ ଅତୀବ ଅକିଂଚିତ୍କର ବୋଧହୁଏ । ଅତଏବ ଆମ୍ଭେମାନେ ପ୍ରାଚ୍ୟଦର୍ଶନ ସମ୍ମୁଖରେ ନତଜାନୁ ହେବା ସମୁଚିତ । ମନୁଷ୍ୟ ଜାତିର ଆଦିମ ଆବାସଭୂମି ଏହି ପ୍ରାଚ୍ୟରେ ହିଁ ମହତ୍ତମ ଦର୍ଶନର ପ୍ରଥମ ବିକାଶ ଏବଂ ଦାର୍ଶନିକ ଇତିବୃତ୍ତର ସଂକ୍ଷିପ୍ତସାର ପ୍ରତିଷ୍ଠା ଭାରତର ହିଁ ପ୍ରାପ୍ୟ । ସ୍ମରଣାତୀତ ଯୁଗରୁ ଆରମ୍ଭ କରି ବର୍ତ୍ତମାନ ଯୁଗ ପର୍ଯ୍ୟନ୍ତ ଭାରତର ଜାତୀୟ ଜୀବନରେ ଧର୍ମ ଓ ଦର୍ଶନର ସମନ୍ୱୟ ଯେପରି ପ୍ରଭାବ ବିସ୍ତାର କରିଅଛି ପୃଥିବୀର ଅନ୍ୟତ୍ର ତାହା ବିରଳ ।

ସେହି ପ୍ରାଚୀନ ବୈଦିକ ଯୁଗରେ ଯୋଗମାର୍ଜିତ ବୁଦ୍ଧି ଅଧ୍ୟାତ୍ମବାଦୀ ଋଷିଗଣ ଧର୍ମ ମହାସଭାରେ ଯେଉଁ ସକଳ ଗୁରୁତର ପ୍ରଶ୍ନ ଉତ୍ପନ୍ନ କରିଥିଲେ ତାହାର ମୀମାଂସାଲାଗି ସବୁ ଯୁଗର ଦର୍ଶନବିଦ୍‌ଗଣ ସର୍ବଦା ଉଦ୍‌ଗ୍ରୀବ । ସେମାନେ କିପରି ଧୀଶକ୍ତିସମ୍ପନ୍ନ ଥିଲେ, ବସ୍ତୁର ପ୍ରକୃତ ସତ୍ତା ଓ ପ୍ରକୃତି ନିର୍ଣ୍ଣୟରେ ସେମାନଙ୍କର କିପରି ଗଭୀର ଜ୍ଞାନ ଥିଲା ନିମ୍ନଲିଖିତ ଅଂଶରୁ ସହଜରେ ବୋଧଗମ୍ୟ ହେବ । ଯଥା- ଏକଦା ଜନକଙ୍କ ଯଜ୍ଞସଭାରେ ଆର୍ତ୍ତଭାଗ ଯାଜ୍ଞବଲ୍‌କ୍ୟଙ୍କୁ ପ୍ରଶ୍ନ କଲେ- ଯେତେବେଳେ କାଳ ସମଗ୍ର ଜଗତ ଗ୍ରାସ କରିବ ସେତେବେଳେ କେଉଁ ଦେବତା ଆସି କାଳକୁ ଗ୍ରାସ କରିବ ? ମନୁଷ୍ୟର କେଉଁ ଅଂଶ ତାହାର ମୃତ୍ୟୁର ପରେ ମଧ୍ୟ ରହେ ? ମୃତ୍ୟୁର ପରେ ମନୁଷ୍ୟର ଜୀବନୀ ଶକ୍ତିର କି ଅବସ୍ଥା ହୁଏ ? ଆତ୍ମାର ସ୍ୱରୂପ କ'ଣ ? ସତ୍ତାର ମୂଳତତ୍ତ୍ୱ କ'ଣ ? ସକଳ ପଦାର୍ଥର ନିୟନ୍ତା ହେଲେ ମଧ୍ୟ ଯେ ସ୍ୱୟଂ ନିର୍ଲିପ୍ତ ସେ କିଏ ? ଏବଂବିଧ ସମସ୍ୟାର ସମାଧାନ ଲାଗି ପ୍ରାକ୍‌କାଳୀନ ମନୀଷୀଗଣ ପଦେ ପଦେ ନ୍ୟାୟାନୁମୋଦିତ ଯୁକ୍ତିତର୍କର ଆଶ୍ରୟ ନେଇ ପ୍ରକୃତି ଓ ନୀତି ଏବଂ ଘଟନା ଓ କାର୍ଯ୍ୟ ପରମ୍ପରାର କାରଣ ନିର୍ଦ୍ଧାରଣ କରିବାପାଇଁ ସମର୍ଥ ହୋଇଥିଲେ । ଏହାହିଁ ଭାରତରେ ଦର୍ଶନର ପ୍ରଥମ ବା ଆଦିମ ବିକାଶ । ସ୍ମରଣ ରଖିବା ଉଚିତ ଯେ ଏହି ତତ୍ତ୍ୱଜିଜ୍ଞାସୁଗଣଙ୍କ ମନରେ କୌଣସି ପ୍ରକାର ସାମ୍ପ୍ରଦାୟିକ ସଂକୀର୍ଣ୍ଣତା ଲେଶମାତ୍ର ସ୍ଥାନ ପାଇ ନଥିଲା । ସେମାନଙ୍କର ପ୍ରଧାନ ଉଦ୍ଦେଶ୍ୟ ଥିଲା, କିପରିଏ ବିଶ୍ୱବ୍ରହ୍ମାଣ୍ଡର ପ୍ରକୃତ ତତ୍ତ୍ୱ ଅବଗତ ହୋଇପାରିବେ ? ଏହାରଉତ୍ପତ୍ତି ଓ କାରଣ କେଉଁଠାରେ ? ଆତ୍ମାର ପ୍ରକୃତ ପରିଚୟ କ'ଣ ? ଜନ୍ମମୃତ୍ୟୁର ରହସ୍ୟଭେଦ ହିଁ ସେମାନଙ୍କର ପ୍ରଧାନ ଆଲୋଚ୍ୟ ବିଷୟ ଥିଲା । ତତ୍କାଳୀନ ଉଦାରନୈତିକ ମନୀଷୀଗଣ ଦର୍ଶନଶାସ୍ତ୍ରରଏ ଜଟିଳ ପ୍ରଶ୍ନର ସମାଧାନ କରିଅଛନ୍ତି । ବସ୍ତୁତଃ ଅତି ପ୍ରାଚୀନ କାଳରୁ ଆର୍ଯ୍ୟଦାର୍ଶନିକଗଣ ଜାଗତିକ ନିତ୍ୟ ପଦାର୍ଥର ତତ୍ତ୍ୱାନ୍ୱେଷଣରେ ରତ ଥିଲେ । ଦର୍ଶନଶାସ୍ତ୍ରର ପ୍ରକୃତ ଉଦ୍ଦେଶ୍ୟ ଏହିକି ବହିର୍ଜଗତରେ ଘଟନା ପରମ୍ପରାର କାର୍ଯ୍ୟକାରଣ ସମ୍ବନ୍ଧ ନିର୍ଦ୍ଧାରଣଦ୍ୱାରା କେବଳ ସାର୍ବଭୌମିକ ନିୟମାବିଷ୍କାରରେ କ୍ଷାନ୍ତ ନହୋଇ ସ୍ଥୂଳ ଇନ୍ଦ୍ରିୟଗ୍ରାହ୍ୟ ଜଗତରୁ ଅତୀନ୍ଦ୍ରିୟ ବସ୍ତୁର ସନ୍ଧାନ କରିବା ।

ସାଧାରଣତଃ ମାନବର ମନ ଇନ୍ଦ୍ରିୟଗ୍ରାହ୍ୟ ଜ୍ଞାନଭୂମିରେ ବିଚରଣ କରେ । ପ୍ରୋକ୍ତ ମନକୁ ବିଷୟଜ୍ଞାନରେ ଆବଦ୍ଧ ନରଖି ଅସୀମର ଅନୁସନ୍ଧାନରେ ନିଯୁକ୍ତ କରିବା ହିଁ ପ୍ରକୃତ ଦର୍ଶନର ମୁଖ୍ୟ

ଉଦ୍ଦେଶ୍ୟ । ଦୃଶ୍ୟପ୍ରପଞ୍ଚର ସମସ୍ତ ସୂକ୍ଷ୍ମତତ୍ତ୍ୱର ସନ୍ଧାନଦ୍ୱାରା ମାନବାତ୍ମାକୁ କ୍ରମେ ସ୍ଥୂଳ ଜଗତର ବହୁ ଉର୍ଦ୍ଧ୍ୱେ ଏକ ଅତୀନ୍ଦ୍ରିୟ ସତ୍ତାର ଜ୍ଞାନ ପ୍ରଦାନରେ ଦର୍ଶନ ଶାସ୍ତ୍ରର ବିଶେଷତ୍ୱ ।

ବ୍ୟାପକ ଭାବେ ଦର୍ଶନ ଶାସ୍ତ୍ରର ତିନୋଟି ହିଁ ମୁଖ୍ୟ କାର୍ଯ୍ୟ । ପ୍ରଥମେ ଜଡ଼ ବିଜ୍ଞାନର ଚରମସିଦ୍ଧାନ୍ତଗୁଡ଼ିକ ମଧ୍ୟରେ ସାମଞ୍ଜସ୍ୟ ସ୍ଥାପନ କରି କେତେଗୁଡ଼ିଏ ନିୟମାବିଷ୍କାରଦ୍ୱାରା ଜଗଦ୍ରହସ୍ୟର୍ ବିଶ୍ଳେଷଣ, ସୁତରାଂ ଏ ସମସ୍ତ ତତ୍ତ୍ୱର ସାଧନା ଉପରେ ହିଁ ମାନବ ଜୀବନର ଭବିଷ୍ୟତ୍ ଅନେକ ପରିମାଣରେ ନିର୍ଭର କରେ । ଏ ସମସ୍ତ ଜଟିଳ ପ୍ରଶ୍ନ ମୀମାଂସା ହିଁ ଦର୍ଶନର ପ୍ରୟୋଜନୀୟତା - ଦ୍ୱିତୀୟତଃ ଜ୍ଞାନର ଉତ୍ପତ୍ତି ସ୍ଥିତି ଓ ସୀମାନିର୍ଦ୍ଧାରଣ ଅର୍ଥାତ୍ ମନେକର ତୁମ୍ଭେ ଅଧ୍ୟୟନ କରୁଅଛ; କିନ୍ତୁ ଏହି ଜ୍ଞାନର ଉତ୍ପତ୍ତି ହେଲା କେଉଁଠାରୁ ? ଏ ସମ୍ବନ୍ଧେ ଅଧିକାଂଶ ବ୍ୟକ୍ତି ଅଜ୍ଞ, ଚିନ୍ତାଶୀଳ ମନୀଷୀଗଣ ମଧ୍ୟ ଏହି ପ୍ରଶ୍ନର ସମାଧାନରେ ବିଭ୍ରାନ୍ତ; ମନ କେଉଁ ଭାବେ ଏ ସମସ୍ତ ଆୟତ୍ତ କରୁଅଛି ଇତ୍ୟାଦି ଦର୍ଶନ ଶାସ୍ତ୍ର ମୀମାଂସା କରେ ଏବଂ ଯେଉଁଠାରେ ବିଜ୍ଞାନର ପରିସମାପ୍ତି ସେହିଠାରୁ ଦାର୍ଶନିକ ତତ୍ତ୍ୱାଲୋଚନାର ପ୍ରାରମ୍ଭ । ପରିଦୃଶ୍ୟମାନ ଜଗତରେ ପ୍ରତ୍ୟକ୍ଷ ଜ୍ଞାନରେ ସୀମାବଦ୍ଧ ମାନବ ମନକୁ ଅନିର୍ବଚନୀୟ ଅନନ୍ୟସାପେକ୍ଷ ଓ ବାକ୍ୟମନର ଅଗୋଚର ଭୂମିରେ ପରିଚାଳିତ କରିବା ଦର୍ଶନ ଶାସ୍ତ୍ରର ତୃତୀୟ କର୍ତ୍ତବ୍ୟ । ଏବଂ ଚ ବୈଦିକ ଯୁଗାବଧି ଆର୍ଯ୍ୟଜାତିର ଆଲୋଚ୍ୟ ବିଷୟ ଥିଲା; ପରିଦୃଶ୍ୟମାନ ଘଟଣାବଳିର ଆଦିକାରଣ ଅନୁସନ୍ଧାନ । ବଦ୍ଧଜୀବର ପରମ ପୁରୁଷାର୍ଥ ଲାଭାକାଂକ୍ଷା ଓ ଜୀବର ସହିତ ବ୍ରହ୍ମର ସମ୍ବନ୍ଧ କିପରି? ଏହାହିଁ ଆର୍ଯ୍ୟଜୀବନର ବୈଶିଷ୍ଟ୍ୟ; ଏବଂବିଧ ପୂଜନୀୟ ମହାନୁଭାବଗଣର ସତ୍ୟସ୍ୱରୂପ ବ୍ରହ୍ମରେ ଅଚଳାଭକ୍ତି, ସତ୍ୟାନ୍ୱେଷଣରେ ତୀବ୍ର ସମ୍ବେଗ ବିଶ୍ୱଦୁର୍ଲଭ । ସେମାନେ ନିର୍ଯାତନାରେ ଭୀତ ହୋଇ ସତ୍ୟପଥରୁ ଲେଶ ସ୍ଖଳିତ ହେଉ ନଥିଲେ । ଜାତି ନିର୍ବିଶେଷରେ ସର୍ବଶ୍ରେଣୀ ମଧ୍ୟରେ ସ୍ୱାଧୀନ ଚିନ୍ତାର ବିକାଶ ଥିଲା ଏକ ଅଖଣ୍ଡ ଆଦିଭୂତ ମୌଳିକ ସତ୍ତାରୁ ଏହି ଶୃଙ୍ଖଳାପୂର୍ଣ୍ଣ ବିଶ୍ୱର ଘଟନ ଓ କ୍ରମବିକାଶ, ଏହା ତତ୍ତ୍ୱବିଦ୍ ଋଷିଗଣର ଅଜ୍ଞାତ ନଥିଲା । ଜାଗତିକ କ୍ରମବିକାଶ ତତ୍ତ୍ୱର (Evolution) ବା ଧାରଣା ପ୍ରକାଶିତ ହେବା ବହୁ ପୂର୍ବେ ପ୍ରାଚ୍ୟପ୍ରତିଭା ଏହି କ୍ରମବିକାଶ ତତ୍ତ୍ୱ ସ୍ପଷ୍ଟତଃ ପ୍ରକାଶ କରିଥିଲା । ତଦୀୟ ଗବେଷଣାପ୍ରସୂତ ଗୂଢ଼ଦାର୍ଶନିକ ତତ୍ତ୍ୱ ଦାର୍ଶନିକ ଜଗତରେ ଅତ୍ୟନ୍ତ ଶ୍ଳାଘ୍ୟତର । ଭାରତରେ ସାଂଖ୍ୟଦର୍ଶନ ପ୍ରଣେତା କପିଳ ହିଁ କ୍ରମବିକାଶ ବାଦର ଜନ୍ମଦାତା । ସୁବିଖ୍ୟାତ ଦାର୍ଶନିକ ହାର୍ବର୍ଟ ସ୍ପେନସରଙ୍କ ମତ ସହିତ କପିଳଙ୍କ ସିଦ୍ଧାନ୍ତ ସମ୍ପୂର୍ଣ୍ଣ ମିଳୁଅଛି । କପିଳ କହନ୍ତି ପରମାଣୁ ଏହି ସୁବ୍ୟବସ୍ଥିତ ଜଗତର ଆଦିକାରଣ ନୁହେଁ । ଜଗଦୁତ୍ପତ୍ତିର ମୂଳ ପ୍ରକୃତି ବା ଆଦ୍ୟାଶକ୍ତିଏହି ଇନ୍ଦ୍ରିୟଗ୍ରାହ୍ୟ ବିଶାଳ ବ୍ରହ୍ମାଣ୍ଡ ଶକ୍ତିରୁ ଉଦ୍ଭୁତ । ଏହି ଶକ୍ତି ନିତ୍ୟ । ସେ ଅଣୁଗୁଡ଼ିକୁ ଶକ୍ତିର କେନ୍ଦ୍ର ବୋଲି ନିର୍ଦ୍ଦେଶ କରିଅଛନ୍ତି । ପ୍ରାକୃତିକ ଆକର୍ଷଣ ଓ ବିକର୍ଷଣ ଫଳରେ ଏହି ବିଶ୍ୱର ଉତ୍ପତ୍ତି ବୋଲି ସର୍ବପ୍ରଥମେ ବୈଜ୍ଞାନିକ ଯୁକ୍ତିଦ୍ୱାରା ପ୍ରତିପାଦନ କରିଅଛନ୍ତି ।

ଅଧ୍ୟାପକ ଇଂ. ଡାବ୍ଲିୟୁ ହାପ୍‌କିନ୍‌ସ କହନ୍ତି- ପ୍ଲେଟୋ ଏବଂ ତଦୀୟ ଶିଷ୍ୟଗଣଙ୍କ ପ୍ରଚାରିତ ଦାର୍ଶନିକ ତତ୍ତ୍ୱସମୂହ ଓ ଖ୍ରୀଷ୍ଟୀୟ ଜ୍ଞାନଯୋଗ ପ୍ରଧାନତଃ ଭାରତୀୟ ସମ୍ପତ୍ତି । ସାଂଖ୍ୟଦର୍ଶନର

ଶେଷ ନିଷ୍ପତ୍ତିଏବଂ ପାଶ୍ଚାତ୍ୟ ବିଜ୍ଞାନର ଚରମ ସିଦ୍ଧାନ୍ତ ଉଭୟ ମଧ୍ୟରେ ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଓ ଐକ୍ୟ ଦେଖାଯାଏ । ସାଂଖ୍ୟର ସିଦ୍ଧାନ୍ତ - ଅସତ୍ ବା ଅଭାବରୁ କୌଣସି ପଦାର୍ଥର ଉତ୍ପତ୍ତି ଅସମ୍ଭବ "ନାସଦୁତ୍ପାଦୋନୃଶୃଙ୍ଗବତ୍" କାର୍ଯ୍ୟକାରଣ ମଧ୍ୟରେ ସୂକ୍ଷ୍ମଭାବେ ଅବସ୍ଥିତ ଅର୍ଥାତ୍ କାର୍ଯ୍ୟ କାରଣର ଅଭିବ୍ୟକ୍ତି ବା ରୂପାନ୍ତର ମାତ୍ର । "ଉପାଦାନନିୟମାତ୍" କାର୍ଯ୍ୟ ଯେବେ କାରଣର ଅବସ୍ଥାରେ ଲୟ ପ୍ରାପ୍ତ ହୁଏ ତାହାର ହିଁ ନାଶ । "ନାଶଃ କାରଣଲୟଃ" କପିଳ କହନ୍ତି ପ୍ରାକୃତିକ ନିୟମ ସକଳ ସର୍ବାବସ୍ଥାରେଏକ ଓ ଅପରିବର୍ତ୍ତନୀୟ; ଏହି ମୂଳ ପ୍ରକୃତି ହିଁ ଜଗତର ଉପାଦାନ ଏବଂ ଏହାର କ୍ରମ ବିକାଶରେ ଜଗତର ସୃଷ୍ଟି । ବିଭିନ୍ନ ବୌଦ୍ଧଦର୍ଶନର ମତ ସକଳ ସାଂଖ୍ୟରେ ପ୍ରତିଷ୍ଠିତ; କିନ୍ତୁ କଣାଦଙ୍କର ଏହା ଅଭିମତ ନୁହେଁ । ସେ କହନ୍ତି,ଅଣୁପରମାଣୁର ସଂଯୋଗରେ ବ୍ରହ୍ମାଣ୍ଡର ସୃଷ୍ଟିତତ୍ତ୍ୱ ସନ୍ନିହିତ । ଅଣୁ ସକଳ ପଦାର୍ଥର ଅବିଭବ୍ୟ ଅଂଶ । ପରମାଣୁ ତତ୍ତ୍ୱ ସମ୍ବନ୍ଧେ ପାଶ୍ଚାତ୍ୟ ବିଜ୍ଞାନର ଶେଷ ସିଦ୍ଧାନ୍ତ କଣାଦଙ୍କ ନିଷ୍ପତ୍ତିଠାରୁ ଏକ ପଦ ସୁଦ୍ଧା ଅଧିକ ଅଗ୍ରସର ହୋଇ ପାରିନାହିଁ । ବୈଶେଷିକ କହେ- "ପରମାଣୁ" ସକଳ ଈଶ୍ୱରସୃଷ୍ଟ ନୁହେଁ । ଈଶ୍ୱରବତ ନିତ୍ୟ ସନାତନ, କିନ୍ତୁ ଯେଉଁ ଶକ୍ତିର ପ୍ରଭାବରେ ଦୁଇ ବା ତତୋଽଧିକ ପରମାଣୁର ସଂଯୋଗ ଘଟିଥାଏ ତାହା ଐଶ୍ୱରିକ ମାତ୍ର, ଯେହେତୁ ଈଶ୍ୱର ହିଁ ଦୃଶ୍ୟ ମାନବ ପ୍ରପଞ୍ଚର ଏକମାତ୍ର ପ୍ରଭୁ ଓ ଶାସନକର୍ତ୍ତା । ଏହି ଜାଗତିକ କାରଣ ପରମେଶ୍ୱରର ପ୍ରକୃତ ଜ୍ଞାନଲାଭ ଦ୍ୱାରା ସମ୍ପୂର୍ଣ୍ଣତା ପ୍ରାପ୍ତି ଏବଂ ଆତ୍ମାର କୈବଲ୍ୟ ଲାଭ ହିଁ ବୈଶେଷିକ ଦର୍ଶନର ଚରମ ଲକ୍ଷ୍ୟ । ନ୍ୟାୟ ଦର୍ଶନର ଭିତ୍ତିମଧ୍ୟ କଣାଦଙ୍କ ପରମାଣୁ ତତ୍ତ୍ୱଉପରେ ପ୍ରତିଷ୍ଠିତ । ଆଧୁନିକ ବୈଜ୍ଞାନିକ ଜଗତ୍ ଗୌତମଙ୍କ ଭାରତରଏରିଷ୍ଟୋଟଲର ଆଖ୍ୟା ପ୍ରଦାନ କରିଅଛନ୍ତି ।

ଗୌତମପ୍ରଣୀତ ନ୍ୟାୟ ଶାସ୍ତ୍ରର ଉଦ୍ଦେଶ୍ୟ ଯୁକ୍ତିତର୍କର ଗୋଟିଏ ଅଭ୍ରାନ୍ତ ପ୍ରଣାଳୀ ସୃଷ୍ଟି କରିବା । ମିଷ୍ଟର ଡେଭିଡ୍ କହିଛନ୍ତି- ଯୁକ୍ତିତର୍କର ନିୟମଗୁଡ଼ିକ ପ୍ରାଚୀନ ହିନ୍ଦୁ ତର୍କଶାସ୍ତ୍ରବିତ୍ ପଣ୍ଡିତଗଣ ପାଶ୍ଚାତ୍ୟ ତାର୍କିକଙ୍କ ପରି ଅତି ସୂକ୍ଷ୍ମ ଭାବରେ ଆଲୋଚନା କରି ଯାଇଅଛନ୍ତି । ପିଥାଗୋରସଙ୍କଠାରୁ ହିଁ ହିନ୍ଦୁ ଓ ଗ୍ରୀକ୍‌ମାନଙ୍କ ମଧ୍ୟରେ ଗୋଟିଏ ମଧୁର ସମ୍ବନ୍ଧର ପ୍ରାରମ୍ଭ । ଏହା ଅଭ୍ରାନ୍ତ ଐତିହାସିକ ସତ୍ୟ ସୁତରାଂ ହିନ୍ଦୁ ମନୀଷୀଗଣ ତର୍କଶାସ୍ତ୍ରର ପ୍ରତିଷ୍ଠାତା ହେଲେ ସୁଦ୍ଧା ଗ୍ରୀକ୍‌ଗଣ ହିଁ ଏହାର ବହୁ ମୂଲ୍ୟ ଉତ୍କର୍ଷ ସାଧନ  କରି ସମ୍ପୂର୍ଣ୍ଣତା ଆନୟନ କରିଅଛନ୍ତି । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଆତ୍ମତତ୍ତ୍ୱ ଜିଜ୍ଞାସାବେଳେ ଆର୍ଯ୍ୟ ବୈଜ୍ଞାନିକଙ୍କର ପ୍ରାଣ ଉତ୍ଫୁଲ୍ଲ ହେଲା ପରି ପାଶ୍ଚାତ୍ୟ ବୈଜ୍ଞାନିକର ପ୍ରାଣରେ ସେ ଉନ୍ମାଦନା ଆସେ ନାହିଁ; ସେ ଏ କ୍ଷେତ୍ରରେ ନିରବ ଓ ନିଷ୍ପନ୍ଦ- ଉଭୟ ମଧ୍ୟରେ ଏହାହିଁ ଘୋର ବ୍ୟବଚ୍ଛେଦ । ବୈଶେଷିକ ଏବଂ ନ୍ୟାୟ ଦର୍ଶନ ପରସ୍ପର ପରସ୍ପରର ଅନୁପୂରକ କେବଳ ଏବଂ ଯୋଗ ଦର୍ଶନ ଦିଗରେ ଭାରତୀୟ ଋଷିବୃନ୍ଦ ସମଧିକ ଅଗ୍ରସର ହୋଇ ଯେତେଦୂର କୃତିତ୍ୱ ପ୍ରଦର୍ଶନ କରିଅଛନ୍ତି ଅଦ୍ୟାପି ପୃଥିବୀର କୌଣସି ପ୍ରାନ୍ତରେ ସୁଦ୍ଧା ତାଦୃଶ ପ୍ରତିପତ୍ତି ଦେଖାଯାଏ ନାହିଁ ସେ ଅଦମ୍ୟ ଶ୍ରଦ୍ଧା, ସେ ଅନବଚ୍ଛିନ୍ନ ଅଭ୍ୟାସ ସେ ଅଖଣ୍ଡ ସଂଯମ, ସେ ବିଶୁଦ୍ଧସାଧନା, ସେ କଠୋର ବୈରାଗ୍ୟ ତ୍ୟାଗପୂତ ଆର୍ଯ୍ୟମୁନିବଂଶର ହିଁ ଅତ୍ୟଧିକ ପ୍ରିୟତମ ପୈତୃକ ସମ୍ପତ୍ତି । ପତଞ୍ଜଳି କପିଳବର୍ଣ୍ଣିତ କ୍ରମବିକାଶତତ୍ତ୍ୱ ସ୍ୱୀକାର କରିଅଛନ୍ତି ସତ୍ୟ; କିନ୍ତୁ ଉଭୟଙ୍କ ମଧ୍ୟରେ ପ୍ରଭେଦ ଏତିକି ଯେ ପତଞ୍ଜଳି ପ୍ରତିପାଦିତ ଈଶ୍ୱର ନିରାକର,ଅନନ୍ତ, ସର୍ବଜ୍ଞ, କ୍ଲେଶାଦି ସମ୍ପର୍କରହିତ, ନିଷ୍କ୍ରିୟ

ନିସ୍ପୃହ ଏବଂ ନିଷ୍କାମ । ଭଗବାନ୍ ଶ୍ରୀକୃଷ୍ଣ ମଧ୍ୟ କହିଛନ୍ତି- "ସାଂଖ୍ୟାଯୋଗୌ ପୃଥକ୍, ବାଳାଃ ପ୍ରବଦନ୍ତି ନ ପଣ୍ଡିତାଃ" ଅର୍ଥାତ୍ ସାଂଖ୍ୟ ଓ ଯୋଗ ପ୍ରଥକ୍ ବୋଲି ବାଳକମାନେ ମାତ୍ର କହନ୍ତି ନତୁ ପଣ୍ଡିତଗଣଃ ମନୋବିଜ୍ଞାନ ଆବିଷ୍କର୍ତ୍ତା ପତଞ୍ଜଳି ଅତି ବିଶୁଦ୍ଧ ଭାବରେ ଚିତ୍ତବୃତ୍ତି ନିଚୟର ଆଲୋଚନା କରିଅଛନ୍ତି । ଅତଏବ ଯୋଗଦର୍ଶନ ହିଁ ଅତ୍ୟୁଚ୍ଚ ମନୋବିଜ୍ଞାନ ଗ୍ରନ୍ଥ । କପିଳ ଓ ପତଞ୍ଜଳି ଉଭୟେ ମନକୁ ପ୍ରକୃତିର ସୂକ୍ଷ୍ମ କାର୍ଯ୍ୟ ବୋଲି ସ୍ୱୀକାର କରିଅଛନ୍ତି । କେଉଁ ପ୍ରକ୍ରିୟାଦ୍ୱାରା ମନ, ବୁଦ୍ଧି, ଅହଂକାର ଓ ଚିତ୍ତକୁ ସମ୍ପୂର୍ଣ୍ଣ ରୂପେ ଆୟତ୍ତ କରାଯିବ ଏବଂ ପ୍ରକୃତିର ସହିତ ପୁରୁଷ ଘନିଷ୍ଠ ଭାବେ ସଂଯୁକ୍ତ ହେବ ଏବଂ ଉପଯୁକ୍ତ ପୁରୁଷକୁ ପ୍ରକୃତି ଓ ତାହାର ଗୁଣାବଳୀର ବନ୍ଧନରୁ ବିଚ୍ଛିନ୍ନ କରିବା ଉପାୟ ନିର୍ଦ୍ଧାରଣ ହିଁ ପାତଞ୍ଜଳ ଯୋଗଶାସ୍ତ୍ରର ଚରମ ଲକ୍ଷ୍ୟ । ଏହାର ନାମ ହିଁ କୈବଲ୍ୟସିଦ୍ଧି । ଅତୀନ୍ଦ୍ରିୟ ବିଭୂତି ଓ ଆଧ୍ୟାତ୍ମିକ ଶକ୍ତି ଲାଭୋପାୟ ପାତଞ୍ଜଳ ଦର୍ଶନ ବିନା ଅନ୍ୟତ୍ର ଦୁର୍ଲଭ ।

ହଠଯୋଗ, ରାଜଯୋଗ ଏବଂ ଜ୍ଞାନଯୋଗାଦି ଭେଦରେ ନାନା ଭାଗରେ ଯୋଗ ଶାସ୍ତ୍ର ବିଭକ୍ତ । ଆଜି ଭାରତର କେତେକ ଯୋଗୀଧ୍ୱଜଧାରି ସନ୍ୟାସୀ ମାତ୍ର ପ୍ରକୃତଜ୍ଞାନ ଯୋଗୀର ଚକ୍ଷୁରେ ଅତି ନଗଣ୍ୟ ହଠକ୍ରିତଦ୍ୱାରା ଚମତ୍କାର କେତେକ ଆସନ ଅନୁଷ୍ଠାନ କରି ଜ୍ଞାନଯୋଗର ବିଶୁଦ୍ଧ ରାଜମାର୍ଗ କର୍ଦମାକ୍ତ କରିଦେଲେଣି । ଅନେକଙ୍କର ଅଭିପ୍ରାୟ ପୂର୍ବ ମୀମାଂସାକୁ କର୍ମଦର୍ଶନ ମଧ୍ୟରେ ଗଣନା କରାଯାଇପାରେ; ଯେହେତୁ ମାନବର ଦୈନନ୍ଦିନ କର୍ତ୍ତବ୍ୟ କର୍ମରେ ଯଜ୍ଞ, ପୂଜା, କ୍ରିୟାକାଣ୍ଡ ସମ୍ବନ୍ଧୀୟ ପଦ୍ଧତି, ଜୈମିନୀ ଉକ୍ତ ଦର୍ଶନରେ ଆଲୋଚନା କରିଅଛନ୍ତି । ପୂର୍ବ ମୀମାଂସା ବେଦର ମନ୍ତ୍ର ଓ ବ୍ରାହ୍ମଣ ଭାଗରେ ହିଁ ପ୍ରକୃତ ଅର୍ଥ ଯୁକ୍ତିଦ୍ୱାରା ବ୍ୟାଖ୍ୟାକରି ଗୋଟିଏ ଅବିରୋଧ ସୂକ୍ଷ୍ମବିଚାର ଦର୍ଶାଇଅଛି । ଅତଏବ ଉକ୍ତ ଦର୍ଶନ ବୈଦିକ ମତାବଲମ୍ବୀଙ୍କ ନିକଟରେ ଅର୍ଥାତ୍ ହିନ୍ଦୁ ପୁରୋହିତଗଣର ଅତ୍ୟନ୍ତ ପ୍ରିୟବସ୍ତୁ, କିନ୍ତୁ ଆଧୁନିକ ବୈଜ୍ଞାନିକ ଜଗତରେ ତେତେଦୂର ସମାଦୃତ ନୁହେଁ । ନିର୍ବାଣଲାଳସୀ ବୌଦ୍ଧ ପ୍ରଭୃତିଙ୍କର ଅସୂୟା ଦୃଷ୍ଟି ଏ ଦର୍ଶନ ପ୍ରତି ହିଁ ବିଶେଷ ଭାବେ ପତିତ ହୋଇଥିଲା । ଅନେକ ପ୍ରାଜ୍ଞଙ୍କର ଅଖଣ୍ଡ ବିଶ୍ୱାସ, ଜୈମିନୀଙ୍କ ହୃଦୟ ସାମ୍ପ୍ରଦାୟିକ ପଙ୍କିଳତାପୂର୍ଣ୍ଣ । ସେମାନଙ୍କର ସ୍ମରଣ ରଖିବା ଉଚିତ ଯେ, ପ୍ରତ୍ୟେକ ଦାର୍ଶନିକଙ୍କ ପରି ଜୈମିନୀ ଲକ୍ଷ୍ୟଭ୍ରଷ୍ଟ ହୋଇ ନାହାନ୍ତି । ଅଖଣ୍ଡ କାଳସ୍ରୋତର ଗତିବିଧି ପ୍ରତି ଲକ୍ଷ୍ୟ ରଖି ଜୈମିନୀ ଗୋଟିଏ ସୁଚିନ୍ତିତ ବ୍ୟବସ୍ଥା ପ୍ରଣୟନ କରି ତତ୍କାଳୀନ ସମାଜର ରୁଚି, ଆଧ୍ୟାତ୍ମିକ ଦିଗାଭିମୁଖୀନ କରିଥିଲେ । ସନ୍ତାନବତ୍ସଳା ଜନନୀ ଯେପରି ପ୍ରାଣାଧିକ ପୁତ୍ରଙ୍କର ସ୍ୱାସ୍ଥ୍ୟୋନ୍ନତି ପ୍ରତି ଦୃଷ୍ଟି ରଖି, ରୁଚିଭେଦରେ, ପାକଭେଦରେ, ପୁଷ୍ଟିକର ଖାଦ୍ୟ ଯୋଗାଇଲା ପରି ବିଶ୍ୱକଲ୍ୟାଣାକାଂକ୍ଷୀ ଆର୍ଯ୍ୟଋଷିମାନେ ଜରାମରଣ ରୂପ ପାପତାପକ୍ଲିଷ୍ଟ ବଦ୍ଧଜୀବତ୍ୱ ଉଦ୍ଧାର ଲାଗି ନାନା ଉପାୟ ଉଦ୍ଭାବନ କରିଯାଇଅଛନ୍ତି । ପ୍ରତ୍ୟେକ ଦାର୍ଶନିକ ସିଦ୍ଧାନ୍ତ କୋଟିର ମୂଳରେ ଏକ ଅଖଣ୍ଡ ସଚ୍ଚିଦାନନ୍ଦ ସତ୍ତା ବିଦ୍ୟମାନ । ଏହି ବଦ୍ଧ ଧାରଣା ବା ଅନୁକୂଳ ସଂସ୍କାର ଶ୍ଳାଘ୍ୟତର ଅଟେ ।



"ପୁରାଣଂ ମାନବୋ ଧର୍ମଃ ସାଙ୍ଗବେଦଂ ଚିକିତ୍ସିତଂ ।
ଆଜ୍ଞା ସିଦ୍ଧାନି ଚତ୍ୱାରି ନ ହନ୍ତବ୍ୟାନି ହେତୁଭିଃ ।।
ଗଭୀର-ତତ୍ତ୍ୱ-ପୀୟୂଷ-ସ୍ୱଚ୍ଛଧାରା-ପରିପ୍ଲୁତୌ ।
ତନ୍ତ୍ରେତିହାସୌ ନିତରାଂ ବିଦ୍ୱଦ୍ଭିରଭିନନ୍ଦିତୌ ।।"

ଅର୍ଥାତ୍ - ବେଦାଙ୍ଗାନୁଶୀଳିତ ପୁରାଣ ମାନବର ଧର୍ମ। ଆଜ୍ଞାସିଦ୍ଧ ପ୍ରମାଣ ଚତୁଷ୍ଟୟ ଯୁକ୍ତିଦ୍ୱାରା ଖଣ୍ଡନଯୋଗ୍ୟ ନୁହେଁ । ଗଭୀର ତତ୍ତ୍ୱପୀୟୂଷ-ସ୍ୱଚ୍ଛ-ଧାରାପରି ପ୍ଲାବିତ ତନ୍ତ୍ର, ଇତିହାସ ପଣ୍ଡିତମାନଙ୍କଦ୍ୱାରା ବିଶେଷ ଭାବେ ସମ୍ମାନିତ ।

ଅତି ପ୍ରାଚୀନ ଯୁଗର ଇତିହାସରୁ ଜଣାଯାଏ ଯେ, ଯେତେବେଳେ ଅନ୍ୟାନ୍ୟ ଦେଶବାସୀ ଆମ ମାଂସ ଭକ୍ଷଣ କରି ଗର୍ତ୍ତାଭ୍ୟନ୍ତରରେଏବଂ ଗିରିଗହ୍ୱରରେ ବାସ କରୁଥିଲେ, ଉଲ୍ଲଗ୍ନ ରହି ସ୍ନାନ ଓ ଶୌଚର ଆବଶ୍ୟକତା ଅନୁଭବ କରୁ ନଥିଲେ ଏବଂ ମାନବ ଜୀବନର ଉଦ୍ଦେଶ୍ୟ କେବଳ ଆହାର, ମୈଥୁନ, ନିଦ୍ରାରେ ପର୍ଯ୍ୟବସିତ ମନେ କରୁଥିଲେ ତେତେବେଳେ ଭାରତବାସୀର ହୃଦୟରେ ଧର୍ମଭାବ ପୂର୍ଣ୍ଣବିକାଶ ଲାଭ କରିଥିଲା । କୋଟି ଜନ୍ମାନ୍ତବଲବ୍ଧ ମାନବ ଜନ୍ମର ସଦ୍‌ବ୍ୟବହାର ନିମନ୍ତେ ମାନବ ସଭ୍ୟତାର ପ୍ରାକ୍‌କାଳୀନ ଆର୍ଷପ୍ରତିଭା ଯେତେଦୂର ଯତ୍ନଶୀଳ ହୋଇଥିଲା ଅନ୍ୟ କୌଣସି ଜାତି ତାହାର ସହସ୍ରାଂଶରୁ ଅଂଶେ ସୁଦ୍ଧା ଯତ୍ନବାନ୍ ହୋଇନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ । ଆର୍ଯ୍ୟଜାତିର ଶଯ୍ୟାତ୍ୟାଗଠାରୁ ଶୟନ ପର୍ଯ୍ୟନ୍ତ କି କାୟିକ, ବାଚିକ, ମାନସିକ ସକଳ ଦୈନନ୍ଦିନ କ୍ରିୟାକଳାପ ସୁଶୃଙ୍ଖଳ ଧର୍ମ ଭାବରେ ନିୟନ୍ତ୍ରିତ ଥିଲା ।

ଭାରତବାସୀଙ୍କର କି ପାରିବାରିକ, କି ସାମାଜିକ, କି ରାଷ୍ଟ୍ରୀୟ ସକଳ ବ୍ୟାପାରରେ ଧର୍ମ ହିଁ ପ୍ରାଧାନ୍ୟ ଲାଭ କରିଥିଲା । ମାନବ ଜୀବନକୁ ଶୃଙ୍ଖଳିତ କରିବା ସକାଶେ ପାଶ୍ଚାତ୍ୟ ସଭ୍ୟତା ଜଡ଼ବିଜ୍ଞାନ ଅବଲମ୍ବନରେ ଯେଉଁ ସମସ୍ତ ନିୟମ ପ୍ରଣୟନ କରିଛି ତାହାକୁ ପ୍ରାଚୀନ ଭାରତର ଆର୍ଯ୍ୟ ଋଷିଗଣ ଆଧ୍ୟାତ୍ମିକ ସୂକ୍ଷ୍ମ ବିଚାରଦ୍ୱାରା ପାର୍ଥିବ ଏବଂ ପାରମାର୍ଥିକ ଉଭୟ ଜୀବନର ସାଧନ ବୋଲି ନିର୍ଦ୍ଦେଶ କରିଅଛନ୍ତି । ଭୌତିକ ଶରୀରରକ୍ଷା ହିଁ ଜଡ଼ବିଜ୍ଞାନର ଶେଷସୀମା; କିନ୍ତୁ ଆର୍ଯ୍ୟ ଋଷିଗଣ ଇହଜନ୍ମରେ ଭୌତିକ ଶରୀର ରକ୍ଷା ସଙ୍ଗେ ସଙ୍ଗେ ପରଜନ୍ମର ଉପାଦେୟ ସାଧନ ସୁଦ୍ଧା ବୁଝାଇଥିଲେ।

ଭାରତବାସୀ ମାନବ ଶରୀରକୁ ଦେବମନ୍ଦିର ରୂପେ ଗ୍ରହଣ କରିଥିଲେ । ହୃଦୟ ପୀଠରେ ଆରାଧ୍ୟ ଦେବତାଙ୍କର ଆରାଧନା ପାଇଁ ସୁଗନ୍ଧବୈଭବ ଓ ବର୍ଣ୍ଣବୈଚିତ୍ର୍ୟରେ ପ୍ରଲୋଭନୀୟ ଏବଂ ପ୍ରାଣୋଲ୍ଲାସକର ଶାସ୍ତ୍ରପ୍ରସୂନସମ୍ଭାରରେ ଭାରତୀୟ ଧର୍ମୋଦ୍ୟାନ ଯେପରି ପରିପୂର୍ଣ୍ଣ ଥିଲା ଅନ୍ୟ କୌଣସି ଦେଶରେ ସେପରି ନଥିଲା । ଏକଦା ଈଶ୍ୱର ପ୍ରଦତ୍ତ ଜ୍ଞାନ ଗରିମାରେ ଭାରତ ହିଁ ସୌଭାଗ୍ୟଶାଳୀ ଥିଲା ।

ଜନ୍ମମରଣଶୀଳ ଦୁର୍ବଳ ମାନବ ମନରେ ଅଖଣ୍ଡ ସାଧନୋପଲବ୍ଧ ସୁଗଭୀର ଜ୍ଞାନଗହ୍ୱରନିହିତ ଆଧ୍ୟାତ୍ମିକ ତତ୍ତ୍ୱ ଯେକୌଣସି ମତେ ଚିର ଅଙ୍କିତ କରାଇବା ହିଁ ପ୍ରାଚ୍ୟ ପ୍ରତିଭାର ଚରମ ଲକ୍ଷ୍ୟ । ସେଥିଲାଗି ଶ୍ରୁତି ପ୍ରଦର୍ଶିତ ସରଣୀ ଅନୁସରଣ କରି ସଦାଚାର ଓ ସତ୍ ପ୍ରବର୍ତ୍ତନୋପଦେଶପୂର୍ଣ୍ଣ ସାମୟିକ, ସାମାଜିକ ଓ ରାଜନୈତିକ ବିଧିବଦ୍ଧ ପଦ୍ଧତି ରୂପ ସ୍ମୃତିଶାସ୍ତ୍ର, ଗାର୍ହସ୍ଥ୍ୟଧର୍ମ ସିଦ୍ ପ୍ରଣାଳୀ ସୁନିୟନ୍ତ୍ରିତ ଗୃହ୍ୟସୂତ୍ର, ପ୍ରବୃତ୍ତି ନିବୃତ୍ତି ପଥ ପ୍ରଦର୍ଶକ ପୌରାଣିକ ସରସ ଆଖ୍ୟାନ, ଉତ୍‌ଥାନ ପତନ ରୂପ ଜାଗତିକ ଇତିହାସ କଥା ପ୍ରସଙ୍ଗ, ଅନିର୍ବଚନୀୟ ବିଶ୍ୱ ପ୍ରକୃତିର ମହିମା ରହସ୍ୟମଣ୍ଡିତ ସ୍ୱତନ୍ତ୍ର ତନ୍ତ୍ରାଦି ରୂପ ଅପର୍ଯ୍ୟାପ୍ତ ଶାସ୍ତ୍ର ପ୍ରଣୟନ କରିଥିଲେ ।

ଉପରୋକ୍ତ ଶାସ୍ତ୍ରୋକ୍ତି ପ୍ରତି ଅଦ୍ୟାପି ଜନସାଧାରଣଙ୍କରଯେଉଁ ଅଗାଧ ବିଶ୍ୱାସ ଓ ଅଚଳା ଭକ୍ତି ତାହା ଆଧୁନିକ ଶିକ୍ଷିତମନ୍ୟ ବ୍ୟକ୍ତିଗଣ ପଞ୍ଜିକାନିର୍ଦ୍ଦିଷ୍ଟ ଶୁଭଦିବସୋପଲକ୍ଷେ ତୀର୍ଥସ୍ଥାନସମାଗତ କୋଟି କୋଟି ନରନାରୀର ହୃଦୟାବେଗରୁ ଉପଲବ୍ଧି କରି ପାରୁଥିବେ । ଏହି ମହତ୍ ପ୍ରେରଣାରେ ଭାରତୀୟ ମୁନିଗଣଙ୍କଣ ଇଙ୍ଗିତ ହିଁ ଧର୍ମୋନ୍ମାଦନାର ମୂଳ କାରଣ । ପ୍ରାଚୀନ ଯୁଗରେ ଏହାର ପ୍ରାଧାନ୍ୟ ଯେ କିପରି ଥିବ ତାହା ସହଜେ ଅନୁମେୟ ।

ଏକମାତ୍ର ଜଳୀୟସତ୍ତା ଔପାଧିକ ଭେଦରେ ଜମ୍ବୀର ନାରିକେଳାଦି ଫଳରେ ଅମ୍ଳ ଓ ମଧୁର ରସରୂପ ବିକାର ପ୍ରାପ୍ତ ହେଲାପରି ଏକ ଅଖଣ୍ଡ ଚିତ୍ ସ୍ୱରୂପ ବ୍ରହ୍ମମହିମା ହିଁ ସମସ୍ତ ଆର୍ଯ୍ୟଶାସ୍ତ୍ରରେ ବିଭିନ୍ନ ଭାବେ ଉପବର୍ଣ୍ଣିତ । ଅତଏବ ସେ ସମସ୍ତ ଶାସ୍ତ୍ରମାନଙ୍କର ସଂକ୍ଷିପ୍ତ ପରିଚୟ ଯଥାକ୍ରମେ ଦେବାଲାଗି ଏହି ତରଙ୍ଗର ଅବତାରଣା ।

## ସ୍ମୃତି ବା ଧର୍ମଶାସ୍ତ୍ର

ସ୍ମରତି ବେଦମନୟା ସ୍ମୃତ୍ୟା ଇତି ସ୍ମୃତିଃ । ମନ୍ୱାଦି ମୁନିପ୍ରଣୀତ ଶାସ୍ତ୍ର ବିଶେଷ । "ମହର୍ଷିଭିର୍ବେଦାର୍ଥଚିନ୍ତନଂ ସ୍ମୃତିଃ" । ଋଷିଗଣ ଯେଉଁ ବେଦାର୍ଥ ଚିନ୍ତା କରିଥିଲେ ତାହାର ନାମ ସ୍ମୃତି । ଶ୍ରୁତି ଓ ସ୍ମୃତିର ଅନୁଶାସନରେ ଭାରତୀୟ ଆର୍ଯ୍ୟସମାଜ ଗଠିତ ଓ ପରିଚାଳିତ । ଋଷି ବା ଋଷିକଳ୍ପ ବିଦ୍ୱାନ୍‌ଗଣ ବେଦମୂଳକ ଅବଶ୍ୟ କର୍ତ୍ତବ୍ୟତତ୍ତ୍ୱ ସମୂହର ଅବଲମ୍ବନରେ ଯେଉଁ ବ୍ୟବସ୍ଥା ପ୍ରଣୟନ କରିଅଛନ୍ତି, ତାହାକୁ ମଧ୍ୟ ସ୍ମୃତି କୁହାଯାଏ । ଯଜ୍ଞ ଓ ଗାର୍ହସ୍ଥ୍ୟ ଧର୍ମ ନିର୍ବାହାର୍ଥ ସୂତ୍ରାକାରେ ରଚିତ ଶ୍ରୌତସୂତ୍ର, ଗୃହ୍ୟସୂତ୍ର ଓ ଧର୍ମସୂତ୍ର ସକଳ ଏବଂ ମନ୍ୱାଦି ପ୍ରଣୀତ

ଧର୍ମଶାସ୍ତ୍ର ସମୂହ, ମହାଭାରତାଦି ପୁରାଣ ଓ ଇତିହାସ ମଧ୍ୟ ସ୍ମୃତି ମଧ୍ୟେ ପରିଗଣିତ ।

ସ୍ମୃତିର ଉପାଦେୟତା ପ୍ରତିପାଦନ କରିବା ଲାଗି ପ୍ରଥମେ କୁହାଯାଇଅଛି -
"ପୁରାଣଂ ମାନବୋ ଧର୍ମଃ ସାଙ୍ଗବେଦଂ ଚିକିତ୍ସିତଂ ।
ଆଜ୍ଞା ସିଦ୍ଧାନି ଚତ୍ୱାରି ନ ହନ୍ତବ୍ୟାନି ହେତୁଭିଃ" ।।

ହେତୁଭିର୍ନାମ ବିରୋଧିଭିର୍ବୌଦ୍ଧାଦୀନାଂ ତର୍କୈରିତିଭାବଃ । ଅନୁକୂଳସ୍ତୁ ମୀମାଂସାଦି ତର୍କଃ ପ୍ରବର୍ତ୍ତନୀୟଃ, ଅତଏବ ବକ୍ଷତି ।

ଆର୍ଷଂ ଧର୍ମୋପଦେଶଂଚ ବଦଶାସ୍ତ୍ରାବିରୋଧିନା ।
ଯସ୍ତର୍କେଣାନୁସନ୍ଧତ୍ତେ ସ ଧର୍ମଂ ବେଦ ନେତରଃ ।।

ଅର୍ଥାତ୍ ଯେ ବେଦାନୁପ୍ରାଣିତ ଅନୁକୂଳ ଆର୍ଷଧର୍ମୋପଦେଶ ଅନୁକୂଳ ତର୍କଦ୍ୱାରା ପ୍ରମାଣିତ କରେ ସେ ହିଁ ପ୍ରକୃତ ଧର୍ମତତ୍ତ୍ୱବିତ୍ । ସ୍ମୃତିର ପ୍ରାମାଣ୍ୟ ସମ୍ବନ୍ଧେ ଜଗତ୍‌ଗୁରୁ ଶଙ୍କରାଚାର୍ଯ୍ୟ ସ୍ୱକୃତ ଶାରୀରିକ ମୀମାଂସା ଭାଷ୍ୟରେ ବିଚାର କରିଅଛନ୍ତି - "ସ୍ମୃତିଶ୍ଚ ତନ୍ତ୍ରାଖ୍ୟା ପରମର୍ଷି ପ୍ରଣୀତା ଶିଷ୍ଟପରିଗୃହୀତା ଚ" । ସ୍ମୃତିତନ୍ତ୍ର ନାମେ ଆଖ୍ୟାତ ଓ ଶିଷ୍ଟସମାଦୃତ । ଅନ୍ୟତ୍ର ଲେଖାଅଛି- ବିଭିନ୍ନ ସ୍ମୃତିର ପରସ୍ପର ବିରୋଧ ଉପସ୍ଥିତ ହେଲେ ପାଳନୀୟ ସ୍ମୃତି ହିଁ ସର୍ବଥା ଗ୍ରାହ୍ୟ । ଅର୍ଥାତ୍ ଶ୍ରୁତିର ଅନନୁକୂଳ ସ୍ମୃତି ଅଗ୍ରାହ୍ୟ ।

## ଶ୍ରୌତ, ଗୃହ୍ୟସୂତ୍ର ଓ ଧର୍ମସୂତ୍ର

ବେଦାଙ୍ଗାନ୍ତର୍ଗତ କଳ୍ପସୂତ୍ର ଶ୍ରୌତସୂତ୍ର ନାମେ ପରିଚିତ । ବିଭିନ୍ନ ବେଦର ବିଭିନ୍ନ ଶାଖାରେ ବେଦାଚାର୍ଯ୍ୟଗଣ ସ୍ୱ ସ୍ୱ ଚରଣରେ ଯାଗଯଜ୍ଞାଦିର ନିୟମ ନିର୍ଦ୍ଧାରଣ କରିବା ପାଇଁ କଳ୍ପ ବା ଶ୍ରୌତସୂତ୍ର, ଗୃହକାର୍ଯ୍ୟ ନିରୂପଣ କରିବା ଲାଗି ଗୃହ୍ୟସୂତ୍ର ଏବଂ ସାମୟିକ ଆଚାରବ୍ୟବହାରର ବିଧିନିଷେଧାଦି ନିର୍ଣ୍ଣୟାର୍ଥେ ଧର୍ମସୂତ୍ର ପ୍ରଣୟନ କରିଅଛନ୍ତି । ଗୃହ୍ୟସୂତ୍ର ଓ ଧର୍ମସୂତ୍ରଗୁଡ଼ିକ ସାଧାରଣତଃ ସ୍ମାର୍ତ୍ତସୂତ୍ର ନାମେ ଅଭିହିତ । ସ୍ମାର୍ତ୍ତସୂତ୍ରର ଭିତ୍ତି ଉପରେ ଧର୍ମଶାସ୍ତ୍ର ପ୍ରତିଷ୍ଠିତ । ଗାର୍ହସ୍ଥ୍ୟଧର୍ମ ଓ ସାମୟିକ ଆଚାରବ୍ୟବହାର ବିଧାନ ସକାଶେ ପ୍ରଣୀତ ସୂତ୍ର ସମୂହକୁ ସ୍ମାର୍ତ୍ତସୂତ୍ର କହି ।

ବେଦ ଚତୁଷ୍ଟୟର ମତବୈଷମ୍ୟ ସ୍ମାର୍ତ୍ତ ସୂତ୍ରରେ ସଂଗୃହୀତ ହୋଇଅଛି । ଯଥା- ଋଗ୍‌ବେଦର ଆଶ୍ୱଳାୟନ ଏବଂ ସାଂଖ୍ୟାୟନ, ସାମବେଦର ଗୋଭିଲ, ବାଜସନେୟ ସଂହିତା ବା ଶୁକ୍ଳଯଜୁର୍ବେଦର ପାରସ୍କର, ତୈତ୍ତରୀୟ ବା କୃଷ୍ଣଯଜୁର୍ବେଦର ମାନବ, କାଠକ, ବୌଧାୟନ ଭାରଦ୍ୱାଜ, ଆପସ୍ତମ୍ବ ଓ ମୈତ୍ରାବରଣୀୟ ଏବଂ ଅଥର୍ବ ବେଦର କୌଶିକ ପ୍ରଭୃତି ସୂତ୍ର ସମୂହ ପ୍ରୋକ୍ତ ଗ୍ରନ୍ଥରେ ସଂଗୃହୀତ ହୋଇଅଛି । ବର୍ତ୍ତମାନ ସୁଦ୍ଧା କେତେକ ପରିବାରର ପାରିବାରିକ କ୍ରିୟାବିଶେଷ ତଦୀୟ ବଂଶପରମ୍ପରାନୁବର୍ତ୍ତିତ ବେଦର ପଦ୍ଧତି ଅନୁସାରେ ଅନୁଷ୍ଠିତ ହୁଏ ।

ସୁତରାଂ ଉକ୍ତ ଗୃହ୍ୟସୂତ୍ରଗୁଡ଼ିକ ମନୁସ୍ମୃତିର ପୂର୍ବପ୍ରଣୀତ, ଯେହେତୁ ମନୁ କହିଅଛନ୍ତି :-

ବୈବାହିକେଽଗ୍ନୌ କୁର୍ବୀତ ଗୃହ୍ୟ କର୍ମ ଯଥାବିଧି ।
ପଞ୍ଚଯଜ୍ଞବିଧାନଂ ଚ ପକ୍ତିଂ ଚାନ୍ୟାହିକୀଂ ଗୃହୀ" ।।

ବିବାହବେଳେ ଗୃହସ୍ଥ ଗାର୍ହପତ୍ୟ ନାମକ ଅଗ୍ନି ପ୍ରଜ୍ୱଳିତ କରି ତଦ୍ୱାରା ପାରିବାରିକ କ୍ରିୟା, କର୍ମ ଓ ପଞ୍ଚଯଜ୍ଞାଦି କାର୍ଯ୍ୟ ସମ୍ପନ୍ନ କରିବ । ବୋଧହୁଏ ଗୃହବିଷୟକ କାର୍ଯ୍ୟକଳାପ ନେଇ ଗୃହ୍ୟ ପଦର ଉଦ୍ଭବ । ଗୃହ୍ୟ ସୂତ୍ରଗୁଡ଼ିକ ପାଠକଲେ ସେଥିରୁ ତତ୍କାଳୀନ ସମାଜର ଆଚାରବ୍ୟବହାରଗତ ଚିତ୍ର ସୁନ୍ଦର ରୂପେ ପରିସ୍ଫୁଟ ହୁଏ ।

## ଧର୍ମସୂତ୍ର

ଧର୍ମସୂତ୍ର ହିଁ ପ୍ରଚଳିତ ଧର୍ମଶାସ୍ତ୍ରସମୂହର ମୂଳ; ତନ୍ମଧ୍ୟରେ ମନୁ ପ୍ରଣୀତ ମାନବଧର୍ମ ସୂତ୍ର ସର୍ବପ୍ରଥମ । ଉକ୍ତ ଗ୍ରନ୍ଥର ଅସ୍ତିତ୍ୱ ବିଲୁପ୍ତ ହେଲେ ମଧ୍ୟ ଅନେକଙ୍କର ବିଶ୍ୱାସ ଯେ ପ୍ରଚଳିତ ମନୁସଂହିତା ସେହି ସର୍ବାଦିମ ସଂହିତା; ତତ୍ପରେ ଗୌତମ ସୂତ୍ର, ଅତଃପର ବଶିଷ୍ଠ ଓ ବୋଧାୟନ ସୂତ୍ର, ଏହି ସୂତ୍ରକାରଙ୍କ ବହୁକାଳ ପରେ ସତ୍ୟାସାଢ, ହିରଣ୍ୟକେଶୀ ପ୍ରଭୃତି ସୂତ୍ର ପ୍ରଣୟନ କରିଥିଲେ ।

ଆପସ୍ତମ୍ବ ସୂତ୍ରରେ କଣ୍ୱ, କାଣ୍ୱ, କୁଣିକ, କୁତ୍ସ, କୌତ୍ସ, ପୁଷ୍କରସାଦି ବାର୍ଷାୟଣି, ଶ୍ୱେତକେତୁ, ହାରୀତ ଏହି କେତେକ ଧର୍ମଶାସ୍ତ୍ରବିଦ୍‌ଙ୍କର ମଧ୍ୟ ନାମ ମିଳେ । ବର୍ତ୍ତମାନ ଧ୍ୱଂସାବଶିଷ୍ଟ ଯେଉଁ କେତୋଟି ଧର୍ମସୂତ୍ର ପ୍ରଚଳିତ ଅଛି; ତନ୍ମଧ୍ୟରେ ଗୌତମ ସୂତ୍ର ଅନ୍ୟାନ୍ୟ ଧର୍ମସୂତ୍ର ଅପେକ୍ଷା ପ୍ରାଚୀନ ବୋଲି ସମସ୍ତେ ସ୍ୱୀକାର କରନ୍ତି । ବର୍ତ୍ତମାନ ସାଧାରଣତଃ ୪୮ ଖଣ୍ଡ ପ୍ରଧାନ ଧର୍ମଶାସ୍ତ୍ର ଥିବା କଥା ଉଲ୍ଲେଖ ଅଛି; କିନ୍ତୁ ଯାଜ୍ଞବଲ୍କ୍ୟଙ୍କ ମତରେ ସ୍ମୃତିଶାସ୍ତ୍ର ୨୭ ଖଣ୍ଡ ମାତ୍ର । ମନୁ, ଯାଜ୍ଞବଲ୍କ୍ୟ, ଅତ୍ରି, ବିଷ୍ଣୁ, ହାରୀତ, ଉଶନସ, ଅଙ୍ଗିରା, ଯମ, ଆପସ୍ତମ୍ବ, ସମ୍ବର୍ତ୍ତ, କାତ୍ୟାୟନ, ବୃହସ୍ପତି, ପରାଶର, ବ୍ୟାସ, ଶଙ୍ଖ, ଲିଖିନ, ଦକ୍ଷ, ଗୌତମ, ଶାତାତପ, ବଶିଷ୍ଠ, ନାରଦ, ଭୃଗୁ, ବୌଧାୟନ ପ୍ରଭୃତି ପ୍ରଣୀତ ଧର୍ମଶାସ୍ତ୍ର ଉଲ୍ଲେଖଯୋଗ୍ୟ ।

ବେଦ ଓ ସୂତ୍ର ଗ୍ରନ୍ଥାଦି ପରେ ବୋଧହୁଏ ମନୁସଂହିତା ସଂସ୍କୃତର ସର୍ବାପେକ୍ଷା ପ୍ରାଚୀନ ଓ ପବିତ୍ର ସ୍ମୃତି ଗ୍ରନ୍ଥ । ବେଦ ଓ ଉପନିଷତ୍ ସଙ୍ଗେ ଦର୍ଶନଶାସ୍ତ୍ରର ଯେପରି ସମ୍ବନ୍ଧ ସେପରି ସୂତ୍ର ସମୂହର ସଙ୍ଗେ ମନୁସଂହିତାର ଘନିଷ୍ଠ ସମ୍ପର୍କ ରହିଅଛି । ପ୍ରାଚୀନ ଆର୍ଯ୍ୟସମାଜର କ୍ରିୟାକର୍ମ, ଆଚାରବ୍ୟବହାର, ରୀତିନୀତି ଓ ମାନସିକ ଉନ୍ନତିର ଇତିହାସ ଦୃଷ୍ଟିରେ ଏହା ବିଶେଷ ମୂଲ୍ୟବାନ୍ । ବ୍ରାହ୍ମଣଗଣ ଅନ୍ୟାନ୍ୟ ଜାତି ମଧ୍ୟରେ ନିଜର ପ୍ରାଧାନ୍ୟ ରକ୍ଷା କରିବାପାଇଁ ବିବିଧ ବିଧିବ୍ୟବସ୍ଥା ପ୍ରଣୟନ କରିଥିବା ବିଷୟର ଗୋଟିଏ ସୁନ୍ଦର ଚିତ୍ର ଏଥିରୁ ପରିସ୍ଫୁଟ ହୁଏ । ବିଭିନ୍ନ ଋଷି ବା ମହାପୁରୁଷ କର୍ତ୍ତୃକ ପ୍ରଣୀତ ହୋଇ ଯେ ସକଳ ଜ୍ଞାନଗର୍ଭ ପ୍ରମାଣ ଓ ନିୟମାବଳୀ ପୁରୁଷ ପରମ୍ପରା କ୍ରମେ ମୁଖେ ମୁଖେ ପ୍ରଚଳିତ, ବର୍ତ୍ତମାନ ମନୁସଂହିତା ତାହାର ଗୋଟିଏ ଶୃଙ୍ଖଳାରହିତ ସଂଗ୍ରହ

ମାତ୍ର । ଟୀକାକାରଗଣ କହନ୍ତି ଯେ ବୃଦ୍ଧ ଓ ବୃହତ୍ ଏହି ଦୁଇଟି ସ୍ମୃତିରୁ ଏହାର ମୂଳ ସଂଗୃହୀତ ହୋଇଅଛି । ଏମାନଙ୍କ ଉକ୍ତି ଅନୁସାରେ ତାହା ୨୪ ବିଭାଗ, ଏକ ହଜାର ଅଧ୍ୟାୟ ଓ ଏକ ଲକ୍ଷ ଶ୍ଳୋକାତ୍ମିକା । ବର୍ତ୍ତମାନ ପ୍ରଚଳିତ ଗ୍ରନ୍ଥରେ ୨୬୮୫ ଶ୍ଳୋକ ମାତ୍ର ଅଛି । ସମ୍ଭବତଃ ପରବର୍ତ୍ତୀ ଯୁଗାନୁକ୍ରମେ ଗ୍ରନ୍ଥମାନଙ୍କର ସଂକ୍ଷିପ୍ତ ସଂସ୍କରଣ ପ୍ରସ୍ତୁତ ହୋଇ ତହିଁରେ ଆବଶ୍ୟକୀୟ ନୂତନ ନୂତନ ବିଷୟ ସନ୍ନିବେଶିତ ହୋଇଅଛି । ମନୁସଂହିତାରେ ପୌରାଣିକ ଆଖ୍ୟାୟିକାର ଉଲ୍ଲେଖ ଅଛି । ଯଥା- ବ୍ରହ୍ମା ସ୍ୱୟଂ ଏ ସକଳ ବିଧିବ୍ୟବସ୍ଥା ପ୍ରଣୟନ କରି ସର୍ବପ୍ରଥମେ ମୋତେ ଶିକ୍ଷାଦେଲେ, ମୁଁ ମୋର ପୁତ୍ର ମରୀଚି ଓ ଅନ୍ୟ ନ'ଜଣ ମହର୍ଷିଙ୍କୁ ଶିକ୍ଷା ଦେଲି । ତନ୍ମଧ୍ୟେ ଭୃଗୁ ତୁମ୍ଭଙ୍କୁ ଆଦ୍ୟନ୍ତ ସଂହିତା ଶୁଣାଇବେ । ଏତଦ୍ଦ୍ୱାରା ଜଣାଯାଏ ଯେ ମନୁ ପ୍ରଥମେ କେତେକ ଶ୍ଳୋକ ନିଜ ମୁଖରେ କହିଅଛନ୍ତି, ପରେ ଭୃଗୁଙ୍କଦ୍ୱାରା ସମସ୍ତ ଗ୍ରନ୍ଥ ବ୍ୟକ୍ତ ହୋଇଅଛି । ଅତଏବ ଏହାକୁ ଭୃଗୁ ଉକ୍ତ ମାନବ ଶାସ୍ତ୍ର ବୋଲାଯାଏ ଏବଂ ପ୍ରକାରାନ୍ତରେ ଉକ୍ତ ହୋଇଅଛି କି ତପଃପ୍ରଭାବରେ ବ୍ରହ୍ମା ଏ ଗ୍ରନ୍ଥ ସୃଷ୍ଟି କରିଅଛନ୍ତି । ଉଭୟ ଉକ୍ତି ମଧ୍ୟରେ ସମ୍ପୂର୍ଣ୍ଣ ଅସାମଞ୍ଜସ୍ୟ ବିଦ୍ୟମାନ । ବୋଧହୁଏ ବ୍ରାହ୍ମଣଙ୍କ ପ୍ରାଧାନ୍ୟ ପ୍ରତି ସବିଶେଷ ଦୃଷ୍ଟିଦେଇ ଏହି ଗ୍ରନ୍ଥ ପ୍ରଣୀତ ହୋଇଅଛି । କ୍ଷତ୍ରିୟଙ୍କ ବାହୁବଳ ସାହାଯ୍ୟ ବ୍ୟତୀତ ବ୍ରାହ୍ମଣର ପ୍ରାଧାନ୍ୟ ରକ୍ଷିତ ହୋଇପାରିବ ନାହିଁ ବୋଲି କ୍ଷତ୍ରିୟର କର୍ତ୍ତବ୍ୟ ଓ କାର୍ଯ୍ୟ ସମ୍ବନ୍ଧେ ଲେଖାଯାଇଅଛି, ଯଥା -

''ନାବ୍ରହ୍ମକ୍ଷତ୍ରମୃଧ୍ନୋତି ନାକ୍ଷେତ୍ରଂ ବ୍ରହ୍ମ ବର୍ଦ୍ଧନେ
ବ୍ରହ୍ମକ୍ଷତ୍ରଂ ଚ ସଂପୃକ୍ତମିହଚାମୂତ୍ର ବର୍ଦ୍ଧତେ ।''

ଅର୍ଥାତ୍ କ୍ଷତ୍ରିୟ ବିନା ବ୍ରାହ୍ମଣର ଶ୍ରୀବୃଦ୍ଧି ହୁଏନାହିଁ । ବ୍ରାହ୍ମଣ ବିନା କ୍ଷତ୍ରିୟର ମଧ୍ୟ ସମୃଦ୍ଧି ଅସମ୍ଭବ, ଉଭୟେଏକତ୍ରିତ ହେଲେ ଇହ ଓ ପରଲୋକରେ ସମୃଦ୍ଧି ଲାଭ କରନ୍ତି । ବାସ୍ତବିକ ବ୍ରାହ୍ମଣ କ୍ଷତ୍ରିୟ ଉଭୟ ଆର୍ଯ୍ୟ ସମାଜର ମେରୁଦଣ୍ଡ ସ୍ୱରୂପ । ମନୁଙ୍କ ଯୁଗରେ ତ୍ରିମୂର୍ତ୍ତି ବା ଦୁର୍ଗା ପ୍ରଭୃତି ଶକ୍ତି ବା କୃଷ୍ଣ ଭକ୍ତିର ପ୍ରସଙ୍ଗ ଆଦୌ ନଥିଲା । ଚୈତ୍ୟରେ ଉଲ୍ଲେଖ ଥିଲେ ମଧ୍ୟ ମନୁ କୌଣସି ସ୍ଥାନରେ ଦେବମନ୍ଦିର ନିର୍ମାଣର କଥା ଲେଖିନାହାନ୍ତି; କିନ୍ତୁ ଦେବଳକ- ଅପାଙ୍କ୍ତେୟ ଓ ପ୍ରତିମାଭେଦକର ଦଣ୍ଡବ୍ୟବସ୍ଥା ଥିବାରୁ ମୂର୍ତ୍ତିପୂଜାର ଆଭାସ ମାତ୍ର ମିଳେ । ଯଦ୍ୟପି ମୂର୍ତ୍ତିପୂଜା ବହୁଳ ଭାବରେ ପ୍ରଚଳିତ ଥାନ୍ତା ତେବେ ନୈବେଦ୍ୟ ପ୍ରଭୃତି ଆନୁସଙ୍ଗିକ କ୍ରିୟାର ଅବଶ୍ୟ ଉଲ୍ଲେଖ ଥାନ୍ତା । ମନୁଙ୍କ ସମୟରେ ମଧ୍ୟ ଯେଉଁମାନଙ୍କର ବେଦ ବା ଧର୍ମଶାସ୍ତ୍ରରେ ବିଶ୍ୱାସ ନଥିଲା ସେମାନଙ୍କୁ ନାସ୍ତିକ, ସମାଜବହିର୍ଭୂତ ପାଷଣ୍ଡୀ ବୋଲା ଯାଉଥିଲା । ମନୁଙ୍କ ମତେ ହିଂସାସାପେକ୍ଷ କୃଷିକର୍ମ ବ୍ରାହ୍ମଣ ପକ୍ଷେ ନିନ୍ଦନୀୟ ଓ ତ୍ୟାଜ୍ୟ । ଯଥା-

''ହିଂସାପ୍ରାୟାଂ ପରାଧୀନାଂ କୃଷିଂ ଯତ୍ନେନ ବର୍ଜୟେତ୍''

କିନ୍ତୁ ମନୁସ୍ମୃତିରେ 'ଅହିଂସା ପରମୋ ଧର୍ମ'ର ଆଭାସ ସୁଦ୍ଧା ନାହିଁ, ବରଂ ଶ୍ରାଦ୍ଧରେ ନାନାପ୍ରକାର ପଶୁପକ୍ଷୀର ମାଂସଦାନ ଅତି ପୁଣ୍ୟଜନକ ବୋଲି ବ୍ୟବସ୍ଥା ପ୍ରଣୟନ କରିଅଛନ୍ତି ।

ସ୍ମୃତ୍ୟୁକ୍ତ ଆଚାରକୁ ମନୁ ସଦାଚାର ବୋଲି ନିର୍ଦ୍ଦେଶ କରି, ଉପଦେଶ ଦେଇଅଛନ୍ତି ଯେ ବ୍ରହ୍ମାର୍ଣ୍ଣବାସୀ ଅଗ୍ରଜନ୍ମାଙ୍କଠାରୁ ପୃଥିବୀର ଯାବତୀୟ ବ୍ୟକ୍ତି ସଚ୍ଚରିତ୍ର ଶିକ୍ଷା କରିବେ । ଯଥା-

''ଏତଦ୍ଦେଶପ୍ରସୂତସ୍ୟ ସକାଶା ଦଗ୍ରଜନ୍ମନଃ ।
ସ୍ୱଂ ସ୍ୱଂ ଚରିତ୍ରଂ ଶିକ୍ଷେରନ୍ ପୃଥିବ୍ୟାଂ ସର୍ବମାନବାଃ ।।

ମନୁଙ୍କ ଯୁଗରେ ଚତୁର୍ବର୍ଣ୍ଣ ବ୍ୟତୀତ ବହୁ ଶାଖୋପଶାଖାନ୍ୱିତ ଉପଜାତିର ବିଷୟ ଉଲ୍ଲେଖ ନଥିଲା; ଆଧୁନିକ ଯୁଗ ପରି ପାଣିଗ୍ରହଣ ବ୍ୟାପାର ସବର୍ଣ୍ଣ ମଧ୍ୟରେ ନିର୍ଦ୍ଦିଷ୍ଟ ଥିଲେ ମଧ୍ୟ ଅସବର୍ଣ୍ଣ ବିବାହର ନିଷେଧ ନଥିଲା । ଉଚ୍ଚବର୍ଣ୍ଣ ବ୍ୟକ୍ତି ନିମ୍ନବର୍ଣ୍ଣର କନ୍ୟାର ସହବାସରେ ଯେଉଁ ସନ୍ତାନ ଉତ୍ପାଦନ କରୁଥିଲା ତାହାକୁ ଅନୁଲୋମକ; ଏବଂ ନିମ୍ନ ବର୍ଣ୍ଣର ଔରସରେ ଉଚ୍ଚ ବର୍ଣ୍ଣର କନ୍ୟା ଯେଉଁ ସନ୍ତାନ ଜନ୍ମ କରୁଥିଲା, ତାହାକୁ ପ୍ରତିଲୋମକ କହୁଥିଲେ । ଅନୁଲୋମ କ୍ରମେ ଉତ୍ପନ୍ନ ସନ୍ତାନ ଅମ୍ବଷ୍ଠ, ନିଷାଦ, ଉଗ୍ର, ଏବଂ ପ୍ରତିଲୋମ କ୍ରମେ ଉତ୍ପନ୍ନ ସନ୍ତାନ ସୂତ, ମାଗଧ, ବୈଦେହ, ବେତ୍ତା ପ୍ରଭୃତି ନାମେ ଅଭିହିତ ହେଉଥିଲେ । ଉପରୋକ୍ତ ଉଭୟ ଶ୍ରେଣୀ ସଂଶ୍ରବରୁ ଉତ୍ପନ୍ନ ସନ୍ତାନମାନେ ମାର୍ଗବ, ଦାସ, କୈବର୍ତ୍ତ, ଆହିଣ୍ଡିକ ପ୍ରଭୃତି ନାମରେ ଅଭିହିତ ହେଉଥିଲେ, କିନ୍ତୁ ଏମାନେ ଅସ୍ପୃଶ୍ୟ ବୋଲି କୁତ୍ରାପି ଦେଖାଯାଏ ନାହିଁ । ଅସଂସ୍କୃତ ଦ୍ୱିଜକୁ ମନୁ ବ୍ରାତ୍ୟ ଆଖ୍ୟା ଦେଇଥିଲେ । ବ୍ରାତ୍ୟ ବ୍ରାହ୍ମଣଙ୍କଠାରୁ ଭୁର୍ଜକଣ୍ଟକ ଅବନ୍ତ୍ୟ, ବାଟଧାନ ଓ ପୁଷ୍କରଶେଖର, ବ୍ରାତ୍ୟ କ୍ଷତ୍ରିୟଙ୍କଠାରୁ ଝଲ୍ଲ, ମଲ୍ଲ, ଲିଚ୍ଛକ, ନଟ, କର, ଖସ ଓ ଦ୍ରାବିଡ଼, ଏବଂ ବ୍ରାତ୍ୟ ବୈଶ୍ୟଠାରୁ, ସୁଧନ୍ୱାଚାର୍ଯ୍ୟ, କରିଷ, ବିଜନ୍ମା, ମୈତ୍ର ଓ ଶାଶ୍ୱତ ଜାତି ଉତ୍ପନ୍ନ ହେବା କଥା ଉଲ୍ଲେଖ ଅଛି । ବର୍ତ୍ତମାନ ପ୍ରଚଳିତ ଜାତି ସଙ୍ଗେ ପ୍ରୋକ୍ତ ନାମଗୁଡ଼ିକର କୌଣସି ସୌସାଦୃଶ୍ୟ ପରିଲକ୍ଷିତ ହୁଏ ନାହିଁ । ଅତଏବ ବୃଦ୍ଧ ମନୁ କଥିତ ଜାତିନିର୍ଣ୍ଣୟ ଅତି ଦୁଷ୍କର । ଆର୍ଯ୍ୟସମାଜରେ ମନୁ ହିଁ ସର୍ବପ୍ରଧାନ ସ୍ମୃତିକାର । ନିବନ୍ଧକାରଙ୍କ ମତେ ମନୁଙ୍କ ବଚନ ହିଁ ସର୍ବାପେକ୍ଷା ପ୍ରାମାଣ୍ୟ । ଯଥା-

''ବେଦାର୍ଥୋପନିବନ୍ଧତ୍ୱାତ୍ ପ୍ରାଧାନ୍ୟଂ ହି ମନୋଃ ସ୍ମୃତଂ ।
ମନ୍ୱର୍ଥବିପରୀତା ତୁ ଯା ସ୍ମୃତିଃ ସା ନଶସ୍ୟତେ'' ।।

ଅର୍ଥାତ୍ ମନ୍ୱର୍ଥ ବିପରୀତ ସ୍ମୃତି ଅପ୍ରଶସ୍ତ, କିନ୍ତୁ ମନୁଙ୍କ ଏ ବାକ୍ୟ ପ୍ରତି ପରବର୍ତ୍ତୀ ଯୁଗରେ ବିଶ୍ୱାସ ନଥିଲା, କାରଣ ପରବର୍ତ୍ତୀ ସ୍ମୃତିକାରଗଣ ବ୍ରାହ୍ମଣାଦି ଜାତିର ସ୍ୱ ସ୍ୱ ନିମ୍ନତର ଜାତିର କନ୍ୟା ସହିତ ବିବାହ ଅନୁମୋଦନ କରି ନାହାନ୍ତି । କେତେକ ସ୍ମୃତିରେ ଉକ୍ତ ମତର ସମର୍ଥନ ଥିଲେ ସୁଦ୍ଧା ସମାନ ପ୍ରୋକ୍ତ ପ୍ରଥାର ପ୍ରଚଳନ ଅନୁମୋଦନ କରିନାହିଁ । ଏଣୁ ସାମୟିକ ଅବସ୍ଥା ଭେଦରେ ସାମାଜିକ ତଥା ଶିଷ୍ଟ ବ୍ୟବହାରର ଚିର ବଶବର୍ତ୍ତୀ ହୋଇ ଅପରାପର ସ୍ମୃତି ପ୍ରଣୀତ ହୋଇଅଛି । ମନୁ ସ୍ମୃତିର ପରେ ଯାଜ୍ଞବଲ୍କ୍ୟ ସ୍ମୃତିର ଆବିର୍ଭାବ ହୋଇ ଭାରତରେ ପ୍ରାଧାନ୍ୟ ଲାଭ କରିଥିଲା । ମନୁରେ ଚତୁର୍ଦ୍ଦଶ ବିଦ୍ୟାର ସ୍ପଷ୍ଟ ଉଲ୍ଲେଖ ନାହିଁ, କିନ୍ତୁ ଯାଜ୍ଞ ବଲ୍କ୍ୟ ତାହାର ଉଲ୍ଲେଖ କରିଅଛନ୍ତି । ମନୁ ବ୍ରାହ୍ମଣ ପକ୍ଷେ ଚତୁର୍ବର୍ଣ୍ଣ

କନ୍ୟାର ପାଣିଗ୍ରହଣ ବ୍ୟବସ୍ଥା ଦେଇଅଛନ୍ତି । ଯାଜ୍ଞବଲ୍‌କ୍ୟ ବ୍ରାହ୍ମଣର ଶୂଦ୍ର କନ୍ୟା ବିବାହ ନିଷେଧ କରିଅଛନ୍ତି । ଆମ୍ଭେ ପୂର୍ବେ କହିଅଛୁ ପରବର୍ତ୍ତୀ ସ୍ମୃତି ପ୍ରଣେତାଙ୍କ ଏବଂବିଧ ସାମୟିକୀ ସଂସ୍କାର ଯୋଜନା ମନୁ ସ୍ମୃତିରେ ବୌଦ୍ଧ ପ୍ରସଙ୍ଗର ଉଲ୍ଲେଖ ନାହିଁ । ଯାଜ୍ଞବଲ୍କ୍ୟ ମୁଣ୍ଡିତ ମସ୍ତକ, କାଷାୟ ପରିଧାନ ପ୍ରଭୃତିରୁ ବୌଦ୍ଧଭାବ ଗ୍ରହଣ କରି ବୌଦ୍ଧ ବିହାର ବା ସଂଘାରାମର ଆଦର୍ଶରେ ବ୍ରାହ୍ମଣଙ୍କ ପାଇଁ ଅଗ୍ରହାର ବା ମଠ ସ୍ଥାପନର ବ୍ୟବସ୍ଥା ପ୍ରଣୟନ କରିଅଛନ୍ତି । ଅନ୍ୟାନ୍ୟ ସ୍ମୃତି ମଧ୍ୟରେ ପରାଶର, ଗୌତମ, ଶଙ୍ଖ, ଲିଖନ, ବିଷ୍ଣୁ, ନାରଦ ପ୍ରଭୃତି ସ୍ମୃତି ଦେଶ ଓ ଯୁଗ ଭେଦରେ ପ୍ରଣୀତ ହୋଇ ପ୍ରସିଦ୍ଧି ଲାଭ କରିଅଛି । ଯଥା-

କୃତେ ତୁ ମାନବୋ ଧର୍ମଃ ତ୍ରେତାୟାଂ ଗୌତମଃ ସ୍ମୃତଃ ।
ଦ୍ୱାପରେ ଶଙ୍ଖଲିଖନୌ କଲୌ ପାରାଶରଃ ସ୍ମୃତିଃ ।।

ମନ୍ୱାଦି ପ୍ରାଚୀନ ସ୍ମୃତିରେ ବିଧବାର ପତ୍ୟନ୍ତର ଗ୍ରହଣ ନିଷେଧ କରାଯାଇଥିଲା କହିଲେ ଚଳେ; କିନ୍ତୁ ପରାଶର ବିଧବାର ପୁନର୍ବିବାହ ସମ୍ବନ୍ଧେ ସ୍ପଷ୍ଟ ଲେଖିଅଛନ୍ତି, ଯଥା-

ନଷ୍ଟେ ମୃତେ ପ୍ରବ୍ରଜତେ କ୍ଳୀବେ ଚ ପତିତେ ପତୌ ।
ପଞ୍ଚସ୍ୱାପତ୍ସୁ ନାରୀଣାଂ ପତିରନ୍ୟୋବିଧୀୟତେ ।।
ଅନ୍ୟ କେତେକ ସ୍ମୃତିରେ ବିଚିତ୍ର ବ୍ୟବସ୍ଥା ଅଛି । ଯଥା-
ବର୍ଦ୍ଧକୀ ନାପିତୋ ଗୋପୋଃ ଦାସୋ ବୈ କୁମ୍ଭକାରକଃ ।
ବଣିକ୍ ବିରାଟ କାୟସ୍ଥୋ ମାଳାକାରଃ କୁଟିମ୍ବିନଃ ।।
ଏତେ ଚାନ୍ୟେ ଚ ବହବୋ ଶୂଦ୍ରା ଭିନ୍ନାଃ ସ୍ୱକର୍ମଭିଃ ।
ଚର୍ମକାର ସ୍ତଥା ଭିଲ୍ଲୋ ରଜକଃ ପୁଷ୍କସୋ ନଟଃ ।।
ବରାଟୋ ମେଦ ଚଣ୍ଡାଲୋଦାଳସଶ୍ଚୈବ ଲୌକିକାଃ ।
ଏଷାଂ ସମ୍ଭାଷଣାତ୍ ସ୍ନାନଂ ଦର୍ଶନାଦର୍କବୀକ୍ଷଣାଂ ।। ଇତ୍ୟାଦି ।

ଅର୍ଥାତ୍ ବଢ଼େଇ, ଭଣ୍ଡାରି, ଗୌଡ଼, କୁମ୍ଭାର, ବଣିକ, କାୟସ୍ଥ, ମାଳୀ ପ୍ରଭୃତି କର୍ମଭ୍ରଷ୍ଟ, ଶୂଦ୍ର, ମୋଚି, ଧୋବା, ଚଣ୍ଡାଳ ପ୍ରଭୃତି ଅନ୍ତ୍ୟେଜ,ଏମାନଙ୍କ ସହ ସମ୍ଭାଷଣ ମାତ୍ରେ ସ୍ନାନ ଏବଂ ଦର୍ଶନ ମାତ୍ରେ ସୂର୍ଯ୍ୟ ଦର୍ଶନ କରିବା କର୍ତ୍ତବ୍ୟ । ଏଣେ ଅନ୍ୟ ସ୍ମୃତି କହେ- "ସଚ୍ଛୂଦ୍ରୌ ଗୋପନାପିତୌ" । ଗୌଡ଼, ଭଣ୍ଡାରି ସତ୍‌ଶୂଦ୍ର, ଏମାନଙ୍କ ସ୍ପୃଷ୍ଟ ଜଳ ବ୍ୟବହାର୍ଯ୍ୟ । ଏପରି ବିଭିନ୍ନ ସ୍ମୃତିରେ ବିଭିନ୍ନ ବ୍ୟବସ୍ଥା ଦେଖାଯାଏ । ପ୍ରୋକ୍ତ ସ୍ମୃତି ବ୍ୟତୀତ ଦକ୍ଷ, ବୃଦ୍ଧାତ୍ରେୟ, ଲଘୁ ହାରୀତ, ବୃହତ୍ ପରାଶର, ବୃଦ୍ଧ ଗୌତମ, ଲଘୁବ୍ୟାସ ପ୍ରଭୃତି ଅନେକ ସ୍ମୃତି ବିଦ୍ୟମାନ, କିନ୍ତୁ ଲଘୁ ବୃହତ୍ ବୃଦ୍ଧ ବିଶେଷଣର ସାର୍ଥକତା ଦେଶକାଳାନୁରୂପ ଆଶୟାନୁସରଣ କେବଳ ।

ଏହାଛଡ଼ା ଭରଦ୍ୱାଜ, କୁଣୀନ, ବିଶ୍ୱାମିତ୍ର, ସୁମନ୍ତୁ,ଜୈମିନୀ, ଶାକଳ, ପୁଲସ୍ତ୍ୟ, ପୁଲହ, ଅଗସ୍ତ୍ୟ, ମୌଦ୍ଗଲ୍ୟ, ଶାଣ୍ଡିଲ୍ୟ, ତୁଲହାୟନ, ବାଳଖିଲ୍ୟ, ସପ୍ତର୍ଷି, ଆପସ୍ତମ୍ବ, ବୈଶ୍ୱାନର,

ବିଭାଣ୍ଡକ, କପୋତ, ଅଙ୍ଗିରା, କ୍ରୌଞ୍ଚ, ମାତଙ୍ଗ, ସୌଭ, ହାରୀତ, ପିଙ୍ଗବର୍ଣ୍ଣ, ବସୁପାଳିତ, ଉଦ୍ଧାଳକ, ଔଖନେୟ, ମାଗଧ ପ୍ରଭୃତି ଅନେକ ସ୍ମୃତି ମଧ୍ୟ ଦେଖାଯାଏ । ମହାଭାରତ ଓ ରାମାୟଣ ପ୍ରଭୃତି ପୁରାଣରୁ ଆମ୍ଭେମାନେ କେତେଗୁଡ଼ିଏ ଋଷିଙ୍କର ନାମ ଅବଗତ ହେଉଁ; ଏମାନଙ୍କର ନାମରେ ମଧ୍ୟ ଗୋଟିଏ ଗୋଟିଏ ସ୍ମୃତି ଥିବାର ଦେଖାଯାଏ । ଉପରୋକ୍ତ ଋଷିମାନେ ଏହି ସ୍ମୃତିଗୁଡ଼ିକର ପ୍ରଣେତା ହୋଇପାରନ୍ତି ଅଥବା ଏହାଙ୍କ ପରବର୍ତ୍ତୀ ଲେଖକମାନେ ନିଜ ନିଜ ଗ୍ରନ୍ଥର ମର୍ଯ୍ୟାଦା ବଢ଼ାଇବାପାଇଁ ସ୍ମୃତି ପ୍ରଣୟନ କରି ଏମାନଙ୍କ ନାମରେ ଅଭିହିତ କରିପାରିଥାନ୍ତି । ସେ ଯାହାହେଉ ପ୍ରୋକ୍ତ ଗ୍ରନ୍ଥଗୁଡ଼ିକ ଯେ ସନାତନ ଧର୍ମର ଚିତ୍ତସ୍ୱରୂପ ଏଥିରେ ମତଦ୍ୱୈଧ ନାହିଁ । ଉପରୋକ୍ତ ସ୍ମୃତି ବ୍ୟତୀତ ଭାରତରେ ଅନ୍ୟାନ୍ୟ ସ୍ମୃତି ମଧ୍ୟ ଦେଖାଯାଏ । ଉତ୍କଳରେ ଗଦାଧର ଓ ପଣ୍ଡିତସର୍ବସ୍ୱ ଏବଂ ବଙ୍ଗରେ ରଘୁନନ୍ଦନ ପ୍ରଭୃତିର ବିଶେଷ ସମାଦର ଦେଖାଯାଏ । ପ୍ରତ୍ୟେକ ସ୍ମୃତି ବର୍ଣ୍ଣାଶ୍ରମଧର୍ମ ନିୟମ ପାଳନ କରି ଉପନୟନ, ବିବାହାଦି ସଂସ୍କାର ଓ ସଦାଚାର ସମ୍ବନ୍ଧେ ଯଥେଷ୍ଟ ବ୍ୟବସ୍ଥା କରିଅଛନ୍ତି । ବୋଧହୁଏ ଏଗୁଡ଼ିକ ପ୍ରାଚୀନ ଆର୍ଯ୍ୟ ଜାତିର ସାମାଜିକ ବିଧିବଦ୍ଧ ପଦ୍ଧତି ।

## ପୁରାଣଗତ ବିଷୟର ପରସ୍ପର ସାମଞ୍ଜସ୍ୟ

ସନାତନ ଧର୍ମର ପ୍ରାମାଣିକ ଗ୍ରନ୍ଥମାନଙ୍କ ମଧ୍ୟରେ ବେଦ, ସ୍ମୃତି ଓ ପୁରାଣ ପ୍ରଭୃତି ମୁଖ୍ୟ ଗ୍ରନ୍ଥରୂପେ ପରିଗୃହୀତ । ଅଦ୍ୟାପି ଭାରତର ପୁରପଲ୍ଲୀରେ ପୁରାଣ ପାଠର ସମଧିକ ସମାଦର ଅଛି । ପୁରାଣର କେତେକ ବିଖ୍ୟାତ ଆଖ୍ୟାୟିକା ସାଧାରଣ ଶିଶୁମୁଖରୁ ସୁଦ୍ଧା ଶୁଣାଯାଏ । ପ୍ରତ୍ୟେକ ଆର୍ଯ୍ୟ ପରିବାରରେ ପୁରାଣ ଗ୍ରନ୍ଥ ଦେବତାତୁଲ୍ୟ ପୂଜାପାଏ । ପ୍ରତ୍ୟେକ ଗ୍ରାମରେ ପୁରାଣ ପାଠ ନିମନ୍ତେ ପୁରାଣ ମଣ୍ଡପ ପ୍ରତିଷ୍ଠିତ, ବିଶେଷତଃ ଉତ୍କଳ ପ୍ରଦେଶରେ ଶ୍ରୀମଦ୍ଭାଗବତ ଗ୍ରନ୍ଥର ଅର୍ଚ୍ଚନ ଓ ପଠନ ନିମନ୍ତେ ଗ୍ରାମେ ଗ୍ରାମେ ଭଗବତ ମନ୍ଦିର (ଭାଗବତ ଘର) ନିର୍ମିତ ହୋଇ ଷୋଡ଼ଶୋପଚାରରେ ଧର୍ମଗ୍ରନ୍ଥର ନିତ୍ୟ ପୂଜା ଓ ପାରାୟଣ ହୁଏ ।

ପୁରାଣ ଶବ୍ଦ ଅର୍ଥ ପୂର୍ବତନ । ବ୍ୟାସାଦି ଋଷିପ୍ରଣୀତ ବେଦାର୍ଥବର୍ଣ୍ଣିତ ପ୍ରାଚୀନ ଆଖ୍ୟାୟିକାସମ୍ବଳିତ ବ୍ରହ୍ମ, ପଦ୍ମ, ବୈଷ୍ଣବାଦି ଗ୍ରନ୍ଥ ବିଶେଷକୁ ସୁଦ୍ଧା ପୁରାଣ କୁହାଯାଏ ।

ଅଥର୍ବ ବେଦ, ଶତପଥ ବ୍ରାହ୍ମଣ, ବୃହଦାରଣ୍ୟକ, ଛାନ୍ଦୋଗ୍ୟୋପନିଷତ୍, ତୈତ୍ତରୀୟ, ଆରଣ୍ୟକ, ଆଶ୍ୱଳାୟନ, ଗୃହ୍ୟସୂତ୍ର, ଆପସ୍ତମ୍ବ, ଧର୍ମସୂତ୍ର, ମନୁସଂହିତା ପ୍ରଭୃତି ଆର୍ଯ୍ୟ ଜାତିର ସୁପ୍ରାଚୀନ ଶାସ୍ତ୍ରର ତାତ୍ପର୍ଯ୍ୟ ରାମାୟଣ ଓ ମହାଭାରତାଦି ପୁରାଣରେ ବର୍ଣ୍ଣିତ ହୋଇଅଛି ।

## ପୁରାଣର ଉତ୍ପତ୍ତି ନିର୍ଣ୍ଣୟ

ଅଥର୍ବ ସଂହିତା ମତରେ ଯଜ୍ଞର ଉଚ୍ଛିଷ୍ଟରୁ ଯଜୁର୍ବେଦ ସହିତ ଋକ୍, ସାମଛନ୍ଦ ଓ ପୁରାଣାଦି ଉତ୍ପନ୍ନ ହୋଇଅଛି । ଯଥା- "ଋଚଃ ସାମନି ଛନ୍ଦାଂସି ପୁରାଣଂ ଯଜୁଷା ସହ" ଅଥର୍ବ- ୧୧,୭,୨୪ ।

ପୁରାଣ ବେଦ ବୋଲି ଅଧ୍ୱର୍ଯ୍ୟୁପୁରାଣ କୀର୍ତ୍ତନ କରନ୍ତି । "ପୁରାଣଂ ବେଦଃ ସୋଽୟମିତି କିଞ୍ଚିତ୍ ପୁରାଣ ମାଚକ୍ଷେତ । ଶତପଥ ବ୍ରାହ୍ମଣ ୧୩, ୪, ୩, ୧୩ ।

ଆର୍ଦ୍ରକାଷ୍ଠ ସଂଯୋଗରେ ସମୁତ୍ପନ୍ନ ଅଗ୍ନିରୁ ଯେପରି ପୃଥକ୍ ପୃଥକ୍ ଧୂମ ବିନିର୍ଗତ ହୁଏ ସେପରି ଏହି ମହାନ୍ ଭୂତର ନିଃଶ୍ୱାସରୁ, ଋକ, ଯଜୁଃ, ସାମ, ଅଥର୍ବ ଅଙ୍ଗିରସ, ଇତିହାସ, ପୁରାଣ, ବିଦ୍ୟା, ଉପନିଷତ୍, ଶ୍ଳୋକ, ସୂତ୍ର, ବ୍ୟାଖ୍ୟାନ ଓ ଅନୁବ୍ୟାଖ୍ୟାନ ଉତ୍ପନ୍ନ ହୋଇଅଛି । ଯଥା- "ଆର୍ଦ୍ରୈନ୍ଧନାଗ୍ନେ ରଭ୍ୟାହିତାତ୍ ପୃଥକ୍ ଧୂମା ବିନିଶ୍ଚରନ୍ତି ଏବଂ ବା ଅରେଽସ୍ୟ ମହତୋ ଭୂତସ୍ୟ ନିଶ୍ୱସିତ ମେତତ୍ ଯତ୍ ଋକ୍ ଯଜୁର୍ବେଦଂ ସାମବେଦୋଽଥର୍ବାଙ୍ଗିରସ ଇତିହାସଂ, ପୁରାଣଂ, ବିଦ୍ୟା, ଉପନିଷଦଃ, ଶୋକାଃ ସତାଣ୍ୟନବ୍ୟାଖ୍ୟାନାନି ଅସ୍ୟୈବ ଏତାନି ସର୍ବାଣି ନିଃଶ୍ୱସିତାନି, ବୃହଦାରଣ୍ୟକ ୨୪।୧୦' । ଏହାର ଭାଷ୍ୟ ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ଲେଖି ଅଛନ୍ତି- ନିଃଶ୍ୱାସ ପରି ଅର୍ଥାତ୍ ବିନାଯତ୍ନେ ଯାହା ପୁରୁଷଙ୍କଠାରୁ ସମୁତ୍ପନ୍ନ ତାହା ପୁରାଣ । ଯଥା-

ଅପ୍ରଯତ୍ନେନୈବ ପୁରୁଷନିଃଶ୍ୱାସା ଭବତ୍ୟେବ ବା-
ପୁରାଣଂ ଅସଦ୍‌ବା ଇଦମଗ୍ରେ ଆସୀତ୍ ।

ଇତିହାସ ଓ ପୁରାଣ ପଞ୍ଚମ ବେଦ, ଯଥା- ସହୋବାଚ ଋକ୍‌ବେଦଂ ଭଗବୋଽଧ୍ୟେମି ଯଜୁର୍ବେଦଂ ସାମବେଦ ମାଥର୍ବଣଂ ଚତୁର୍ଥ ମିତିହାସଂ ପୁରାଣଂ ପଞ୍ଚମଂ ବେଦାନାଂ ବେଦଂ, ଛନ୍ଦୋଗ୍ୟା ୭।୧।୧ । ଉପରୋକ୍ତ ଆର୍ଷ ବଚନ ସମୂହରୁ ପ୍ରତୀତ ହୁଏ ଯେ ପୁରାଣ ଗ୍ରନ୍ଥଗୁଡ଼ିକ ପ୍ରାଚୀନ । ବୈଦିକ ଯୁଗର ପୁରାଣ ପଞ୍ଚମ ବେଦ ରୂପେ ଆର୍ଯ୍ୟ ସମାଜରେ ଆଦୃତ ହେଉଥିଲା । ବ୍ରହ୍ମସୂତ୍ର ଭାଷ୍ୟରେ ଶଙ୍କର କହିଅଛନ୍ତି, "ଇତିହାସ ପୁରାଣମପି ପୌରୁଷେୟତ୍ୱାତ୍ ପ୍ରମାଣାନ୍ତରମୂଳତାମାକାଂକ୍ଷତେ"; ୧, ୩, ୩୨; ଅର୍ଥାତ୍ ଇତିହାସ ଓ ପୁରାଣ ମଧ୍ୟ ପୌରୁଷେୟ ହେବା ହେତୁ ବେଦ ପରେ ଏହାକୁ ପ୍ରମାଣାନ୍ତର ରୂପେ ଗ୍ରହଣ କରିବାକୁ ହେବ ।

ସାୟନାଚାର୍ଯ୍ୟ ବେଦର ଭାଷ୍ୟରେ ଲେଖିଅଛନ୍ତି - ଦେବାସୁରାଃ ସଂଯତ୍ତାଃ ଆସନ୍ନିତ୍ୟାଦୟଃ ଇତିହାସାଃ ଇଦଂ ବା ଅଗ୍ରେଣୈବ କିଂଚିଦାସୀଦିତ୍ୟାଦି ଜଗତଃ ପ୍ରାଗବସ୍ଥା ମୁପକ୍ରମ୍ୟ ସ୍ୱର୍ଗ ପ୍ରତିପାଦଂ ବାକ୍ୟଜାତଂ ପୁରାଣଂ । (ଐତରୀୟ ବ୍ରାହ୍ମଣୋପକ୍ରମ)

ବେଦାନ୍ତର୍ଗତ ଦେବାସୁର ଯୁଦ୍ଧ ବର୍ଣ୍ଣିତ ଗ୍ରନ୍ଥର ନାମ ଇତିହାସ ଏବଂ ଚ ସୃଷ୍ଟି ପ୍ରକ୍ରିୟା ଇତିହାସ ବର୍ଣ୍ଣିତ ଗ୍ରନ୍ଥକୁ ପୁରାଣ କହି ।

ଶଙ୍କରାଚାର୍ଯ୍ୟ ମଧ୍ୟ ବୃହଦାରଣ୍ୟକ ଭାଷ୍ୟରେ ଲେଖିଅଛନ୍ତି, "ଇତିହାସ, ଇଭୁର୍ବଶୀ ପୁରୁରବସୋଃ ସମ୍ବାଦାଦିର୍ବୁର୍ବଶୀହାପ୍ସରା ବ୍ରାହ୍ମଣମେବ ପୁରାଣମଶଦା ଇଦମଗ୍ର ଆସୀଦିତ୍ୟାଦି" । ଉର୍ବଶୀ ପୁରୁରବା ଆଖ୍ୟାନ ସମ୍ବଳିତ ବ୍ରାହ୍ମଣ ଭାଗର ନାମ ଇତିହାସ ଏବଂ ସୃଷ୍ଟି ପ୍ରକ୍ରିୟା

ବିବରଣାତ୍ମକ ଗ୍ରନ୍ଥର ନାମ ପୁରାଣ । ଏତଦ୍ଦ୍ୱାରା ସ୍ପଷ୍ଟ ହେଉଅଛି ଯେ ସୃଷ୍ଟିପ୍ରକ୍ରିୟା ବିବରଣମୂଳକ ପୁରାଣ ବୈଦିକ ଯୁଗରେ ପ୍ରଚଳିତ ଥିଲା । ବିଷ୍ଣୁ, ବ୍ରହ୍ମାଣ୍ଡ ମତ୍ସ୍ୟ ପ୍ରଭୃତି ମହାପୁରାଣରେ ପୁରାଣର ପଞ୍ଚଲକ୍ଷଣ ନିର୍ଦ୍ଦିଷ୍ଟ ଅଛି, ଯଥା-

'ସର୍ଗଂଚ ପ୍ରତିସର୍ଗଂ ଚ ବଂଶୋ ମନ୍ୱନ୍ତରାଣି ଚ ।
ବଂଶାନୁଚରିତଂ ଚୈବ ପୁରାଣଂ ପଞ୍ଚଲକ୍ଷଣଂ '।।

ସର୍ଗ ପ୍ରତିସର୍ଗ, ବଂଶ, ମନ୍ୱନ୍ତର ଓ ବଂଶାନୁଚରିତ ପୁରାଣର ଏହି ପଞ୍ଚଲକ୍ଷଣ । ଶଙ୍କରାଚାର୍ଯ୍ୟ ପ୍ରଭୃତିଙ୍କ ମତରେ ବୈଦିକ ପୁରାଣରେ କେବଳ ସୃଷ୍ଟିତତ୍ତ୍ୱ ବିଷୟର ଉଲ୍ଲେଖ ଥିଲା । ଅନ୍ୟାନ୍ୟ ଲକ୍ଷଣସମୂହ ପରବର୍ତ୍ତୀ କାଳରେ ପୁରାଣର ବିଷୟୀଭୂତ ହୋଇଥିବ, କିନ୍ତୁ ମହାଭାରତରୁ ଜଣାଯାଏ ଯେ, ସୃଷ୍ଟିତତ୍ତ୍ୱ ଛଡ଼ା ଅନ୍ୟ ବିଷୟ ମଧ୍ୟ ପୁରାଣମାନଙ୍କରେ ବର୍ଣ୍ଣିତ ହୋଇଅଛି । ଯଥା-

ଆଦିପର୍ବରେ ମହର୍ଷି ଶୌନକ କହୁଅଛନ୍ତି -
'ପୁରାଣେ ହି କଥାଦିବ୍ୟା ଆଦିବଂଶୀଷ୍ଟ ଧୀମତାଂ
କଥ୍ୟନ୍ତେ ହି ପୁରାସ୍ମାଭିଃ ଶ୍ରୁତପୂର୍ବ ପିତୁସ୍ତବ'

'ପୁରାଣରେ ଦିବ୍ୟ ଆଖ୍ୟାନ, ବୁଦ୍ଧିମାନ ବ୍ୟକ୍ତିଙ୍କର ବଂଶାନୁଚରିତ ଆମ୍ଭେ ତୁମ୍ଭ ପିତାଙ୍କ ନିକଟରୁ ପୂର୍ବେ ଶୁଣିଅଛୁ' । ଉକ୍ତ କଥନରୁ ସ୍ପଷ୍ଟ ହେଉଅଛି ଯେ ମହାଭାରତ ରଚନା ପୂର୍ବରୁ ମଧ୍ୟ ବିଭିନ୍ନ ଲକ୍ଷଣଯୁକ୍ତ ପୁରାଣ ରଚିତ ହୋଇଥିଲା ।

ଅନ୍ୟଚ୍ଚ-ମନୁସଂହିତାରେ ମଧ୍ୟ ସ୍ପଷ୍ଟ ଲେଖାଅଛି -
''ସ୍ୱାଧ୍ୟାୟଂ ଶ୍ରାବୟେତ୍‌ପିତ୍ରେ ଧର୍ମଶାସ୍ତ୍ରାଣି ଚୈବ ହି
ଆଖ୍ୟାନାନୀତିହାସାଂଶ୍ଚ ପୁରାଣାନ୍ୟଖିଳାନି ଚ'' ।

ଶ୍ରାଦ୍ଧାଦି ପିତୃକାର୍ଯ୍ୟରେ ବେଦାଦି ଧର୍ମଶାସ୍ତ୍ର ସମୂହ, ଆଖ୍ୟାନାବଳୀ, ଇତିହାସ ଓ ପୁରାଣ ସକଳ ଶୁଣାଇବ । ଆଶ୍ୱଳାୟନ ଗୃହ୍ୟସୂତ୍ରରେ ମଧ୍ୟ ଏହି କଥା ଦେଖାଯାଏ, ଯଥା- ''ଆୟୁଷ୍ମତାଂ କଥାଃ କୀର୍ତ୍ତୟନ୍ତୋ ମାଙ୍ଗଲ୍ୟନୀତିହାସପୁରାଣାନୀତ୍ୟାଖ୍ୟାପୟମାନାଃ'' ।

## ପୁରାଣ ରଚୟିତା କିଏ ?

ବୈଦିକ ଯୁଗରୁ ପୁରାଣ ପ୍ରଚଳନ ଥିଲେ ସୁଦ୍ଧା ସେ ସକଳର ରଚୟିତା କିଏ ତାହାର ତଥ୍ୟ ଅଦ୍ୟାବଧି ନିର୍ଣ୍ଣୀତ ହୋଇପାରି ନାହିଁ । କିନ୍ତୁ ବୃହଦାରଣ୍ୟକ ଭାଷ୍ୟରୁ ଧରାଯାଇ ପାରେ ଯେ ବେଦ ପରି ପୁରାଣ ମଧ୍ୟ ଆର୍ଯ୍ୟଋଷିମାନଙ୍କର ହୃଦୟରୁ ସ୍ଫୁରିତ ହୋଇଥିଲା । ରେବା ମାହାତ୍ମ୍ୟରେ ଲେଖାଅଛି,-

ପୁରାଣମେକମେବାସୀଦସ୍ମିନ୍ କଳ୍ପାନ୍ତରେ ମୁନେ ।
ତ୍ରିବର୍ଗସାଧନଂ ପୁଣ୍ୟଂ ଶତକୋଟି ପ୍ରବିସ୍ତରଂ ।।

ଏଥିରୁ ସ୍ପଷ୍ଟ ପ୍ରତୀତ ହୁଏ ଯେ, ସତ୍ୟବତୀନନ୍ଦନ ବ୍ୟାସ ଅଷ୍ଟାଦଶ ପୁରାଣ ବକ୍ତା । ପଦ୍ମପୁରାଣର ସୃଷ୍ଟି ଖଣ୍ଡ ମଧ୍ୟ ରେବା ମାହାତ୍ମ୍ୟର ମତ ସମର୍ଥନ କରୁଅଛି ।

"ପ୍ରବୃତ୍ତିଃ ସର୍ବଶାସ୍ତ୍ରାଣାଂ ପୁରାଣସ୍ୟାଭବତ୍ତଦା ।
କାଳେନାଗ୍ରହଣଂ ଦୃଷ୍ଟ୍ୱା । ପୁରାଣସ୍ୟତଦାବିଭୁଃ ।।
ବ୍ୟାସରୂପୀ ତଦା ବ୍ରହ୍ମା ସଂଗ୍ରହାର୍ଥଂ ଯୁଗେ ଯୁଗେ ।
ଚତୁର୍ଲକ୍ଷ୍ୟ ପ୍ରମାଣେନ ଦ୍ୱାପରେ ଦ୍ୱାପରେ ବିଭୁଃ ।।
ତଦଷ୍ଟାଦଶଧା କୃତ୍ୱା ଭୂର୍ଲୋକେଽସ୍ମିନ୍ ପ୍ରକାଶତେ ।"

ଉପରୋକ୍ତ ପ୍ରମାଣରେ ନିର୍ଭର କରି ଅନେକ ବ୍ୟକ୍ତି କୃଷ୍ଣଦ୍ୱୈପାୟନ ବେଦବ୍ୟାସଙ୍କୁ ଅଷ୍ଟାଦଶ ପୁରାଣ ରଚୟିତା ବୋଲି ମନେକରନ୍ତି । ଅନେକେ ସନ୍ଦେହ କରନ୍ତି ଯେ, ଏତେଗୁଡ଼ିଏ ଗ୍ରନ୍ଥ ଜଣକଦ୍ୱାରା ଏକ ସମୟରେ ରଚିତ ହୋଇଅଛି କି ? ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ଲେଖିଅଛନ୍ତି - ସମସ୍ତ ପୁରାଣ ଅପେକ୍ଷା ବିଷ୍ଣୁପୁରାଣର ରଚନା ପ୍ରାଚୀନ । କେହି କେହି ମନୀଷୀ ସମସ୍ତ ପୁରାଣ ଅଭିନିବେଶପୂର୍ବକ ଆଲୋଚନା କରି କହନ୍ତି ଯେ, ସେଗୁଡ଼ିକର ଭାଷାବୈଭବ ଓ ରଚନା ପରିପାଟିରେ ଘୋରତର ପାର୍ଥକ୍ୟ ରହିଅଛି, ଏଣୁ ଏହା କୌଣସି ଏକ ବ୍ୟକ୍ତି ତଥା ଏକକାଳୀନ ରଚନା ନୁହେଁ । ମତ୍ସ୍ୟ ପୁରାଣରେ ଲେଖାଅଛି -

"ପୁରାଣ ମେକମେବାସୀତ୍ ତଦା କଳ୍ପାନ୍ତରେଽନଘ ।
ତ୍ରିବର୍ଗସାଧନଂ ପୁଣ୍ୟ ଶତକୋଟି ପ୍ରବିସ୍ତରଂ ।।
ନିର୍ଦ୍ଦଗ୍ଧେଷୁ ଚ ଲୋକେଷୁ ବାଜିରୂପେଣ ବୈମୟା ।
ଅଙ୍ଗାନି ଚତୁରୋବେଦାଃ ପୁରାଣଂ ନ୍ୟାୟ ବିସ୍ତରଂ ।।
ମୀମାଂସା ଧର୍ମଶାସ୍ତ୍ରଂ ଚ ପରିଗୃହ୍ୟ ମୟା କୃତଂ ।
ମତ୍ସ୍ୟରୂପେଣ ଚ ପୁନଃ କଳ୍ପାଦାବୁଦକାର୍ଣ୍ଣବେ ।।"

ସର୍ବାଦୌ ଖଣ୍ଡିଏ ମାତ୍ର ପୁରାଣ ଥିଲା, ତହିଁରୁ ଅଷ୍ଟାଦଶପୁରାଣ ଉତ୍ପନ୍ନ ହେଲା । ଏଥିରେ ତ ବ୍ୟାସ ଅଷ୍ଟାଦଶ ପୁରାଣ ଲେଖିଥିବା ସ୍ପଷ୍ଟହେଉ ନାହିଁ । ବ୍ରହ୍ମାଣ୍ଡ ପୁରାଣରେ ଲେଖାଅଛି -

"ପ୍ରଥମଂ ସର୍ବଶାସ୍ତ୍ରାଣାଂ ପୁରାଣାଂ ବ୍ରହ୍ମଣାସ୍ମୃତଂ ।
ଅନନ୍ତରଂ ଚ ବକ୍ତ୍ରେଭ୍ୟଃ ବେଦାସ୍ତସ୍ୟ ବିନିଶ୍ରୁତାଃ"-

ସର୍ବପ୍ରଥମେ ବ୍ରହ୍ମ କର୍ତ୍ତୃକ ଏହି ପୁରାଣ ଉକ୍ତ ହେଲା, ପରେ ତାହାଙ୍କ ମୁଖରୁ ବେଦ ସମୂହ ବିନିର୍ଗତ ହୋଇଅଛି । ଅନ୍ୟତ୍ର ଦୃଷ୍ଟ ହୁଏ ବେଦବ୍ୟାସ ଖଣ୍ଡିଏ ମାତ୍ର ପୁରାଣ ସଂହିତା ପ୍ରଚାର କଲେ । ବିଷ୍ଣୁ ପୁରାଣରେ ସ୍ପଷ୍ଟ ଲେଖାଅଛି-

''ଅଖ୍ୟାନୈଶ୍ଚାପ୍ୟୁପାଖ୍ୟାନୈ ର୍ଗାଥାଭିଃ କଳ୍ପ ଶୁଦ୍ଧିଭିଃ
ପୁରାଣ ସଂହିତାଚକ୍ରେ ପୁରାଣାର୍ଥବିଶାରଦଃ ।
ପ୍ରଖ୍ୟାତୋ ବ୍ୟାସଶିଷ୍ୟୋଽଭୂତ୍ ସୂତୋ ବୈ ରୋମହର୍ଷଣଃ ।
ପୁରାଣ ସଂହିତା ତସ୍ମୈ ଦଦୌ ବ୍ୟାସୋ ମହାମୁନିଃ ।
ସୁମତିଶ୍ଚାଗ୍ନିବର୍ଚାଶ୍ଚ ମିତ୍ରୟୁଃ ଶଂସପାୟାନାଃ ।
ଅକୃତ ବ୍ରଣୋଽଥସାବର୍ଣ୍ଣିଃ ଷଟ୍ ଶିଷ୍ୟାସ୍ତସ୍ୟ ଚାଭବନ୍ ।
କାଶ୍ୟପଃ ସଂହିତା କର୍ତ୍ତା ସାବର୍ଣ୍ଣିଃ ଶାଂସପାୟନଃ ।
ରୋମ ହର୍ଷଣିକାଶ୍ଚାନ୍ୟା ତ୍ରିସୃଣାଂ ମୂଳସଂହିତା ।
ଚତୁଷ୍ଟୟେନାପ୍ୟେତେନ ସଂହିତାନାମିଦଂ ମୁନେଃ ।
ଆଦ୍ୟଂ ସର୍ବ ପୁରାଣାନାଂ ପୁରାଣଂବ୍ରାହ୍ମ ମୁଚ୍ୟତେ ।
ଅଷ୍ଟାଦଶ ପୁରାଣାନି ପୁରାଣାଜ୍ଞାଃ ପ୍ରଚକ୍ଷତେ ।

ପୁରାଣଶାସ୍ତ୍ର ବିଶାରଦ ବ୍ୟାସ ଆଖ୍ୟାନ, ଉପାଖ୍ୟାନ, ଗାଥା, କଳ୍ପ, ଶୁଦ୍ଧି, ସଂହିତା ଓ ପୁରାଣ ରଚନା କଲେ । ବ୍ୟାସଙ୍କ ସୂତ ଜାତୀୟ ରୋମହର୍ଷଣ ନାମରେ ଜଣେ ବିଖ୍ୟାତ ଶିଷ୍ୟ ଥିଲେ । ବ୍ୟାସ ତାହାଙ୍କୁ ପୁରାଣ ସଂହିତା ଦେଲେ । ରୋମହର୍ଷଣଙ୍କର ସୁମତି, ଅଗ୍ନିବର୍ଚା, ମିତ୍ରୟୁ, ଶାଂସପାୟନ, ଅକୃତବ୍ରଣ, ଏବଂ ସାବର୍ଣ୍ଣି ନାମକ ଛ ଜଣ ଶିଷ୍ୟ ଥିଲେ, ସେମାନଙ୍କ ମଧ୍ୟରୁ କାଶ୍ୟପବଂଶୀୟ ଅକୃତବ୍ରଣ ସାବର୍ଣ୍ଣି ଓ ଶାଂସପାୟନ ଏହି ତିନି ଜଣ ରୋମହର୍ଷଣଠାରୁ ଅଧୀତ ମୂଳ ସଂହିତାବଲମ୍ବନରେ ପ୍ରତ୍ୟେକେ ଖଣ୍ଡିଏ ଖଣ୍ଡିଏ ପୁରାଣ ସଂହିତା ରଚନା କଲେ । ପୂର୍ବୋକ୍ତ ଚତୁଃସଂହିତାର ସାର ସଂଗ୍ରହ କରି ଏହି ପୁରାଣ ସଂହିତା ରଚିତ ହେଲା । ବ୍ରହ୍ମପୁରାଣ ସକଳ ପୁରାଣର ଆଦି । ବିଷ୍ଣୁ ଓ ବ୍ରହ୍ମାଣ୍ଡ ପୁରାଣରେ ବ୍ୟାସ ପୁରାଣ ସଂହିତାର ରଚୟିତା ବୋଲି ଅଭିହିତ ହୋଇଥିଲେ ସୁଦ୍ଧା ସେ ଅଷ୍ଟାଦଶ ପୁରାଣ ପ୍ରଚାର କରିବା ପ୍ରସଙ୍ଗର ଉଲ୍ଲେଖ ନାହିଁ, ସୁତରାଂ ତଦୀୟ ଶିଷ୍ୟାନୁଶିଷ୍ୟ ପ୍ରବର୍ତ୍ତିତ ପୁରାଣ ସଂହିତା ସାହାଯ୍ୟରେ ବର୍ତ୍ତମାନ ପ୍ରଚଳିତ ପୁରାଣସମୂହ ରଚିତ ହୋଇଥିବା ଅସମ୍ଭବ ନୁହେଁ ।

ପୂର୍ବେ କୁହାଯାଇଅଛି ବିଷ୍ଣୁ ଓ ବ୍ରହ୍ମାଣ୍ଡ ପୁରାଣର ରଚନା ଅନ୍ୟାନ୍ୟ ସକଳ ପୁରାଣ ଅପେକ୍ଷା ପ୍ରାଚୀନ । ଏପରିସ୍ଥଳେ ପଦ୍ମପୁରାଣୋକ୍ତ ବ୍ୟାସ କର୍ତ୍ତୃକ ଅଷ୍ଟାଦଶ ପୁରାଣ ରଚନା ପ୍ରସଙ୍ଗ ଯେ ପରବର୍ତ୍ତୀ କାଳରେ ସଂଯୋଜିତ ତହିଁରେ ସନ୍ଦେହ ନାହିଁ । ଯେ ବେଦ ସମୁଦାୟ ସଂଗ୍ରହ ଓ ବିଭାଗ କରିଅଛନ୍ତି, ତାହାଙ୍କ ପକ୍ଷେ ପୁରାଣ ଓ ଇତିହାସ ସଙ୍କଳନ ଅସମ୍ଭବ ନୁହେଁ । ବୋଧହୁଏ ସେ ସମୟରେ ସୂତମାନେ ଯେଉଁ ସକଳ ପୂରା କାହାଣୀ କୀର୍ତ୍ତନ କରୁଥିଲେ ବେଦବ୍ୟାସ ତାହାହିଁ ସୁଶୃଙ୍ଖଳିତ କରି ପ୍ରଚାର କରିଥିବେ । ବିଷ୍ଣୁ ଓ ବ୍ରହ୍ମାଣ୍ଡ ପୁରାଣକୁ ଏହାର ଆଭାସ ମିଳେ ।

## ପୁରାଣ ବିଭାଗ

ପୁରାଣ ପାଠରୁ ଜଣାଯାଏ ଯେ ଆଦିପୁରାଣ ସଂହିତାରୁ ସମସ୍ତ ପୁରାଣ ସଂକଳିତ ହୋଇଅଛି । ବିଷ୍ଣୁ, ମତ୍ସ୍ୟ, ପଦ୍ମ ଓ ବ୍ରହ୍ମାଣ୍ଡ ପ୍ରଭୃତି ପୁରାଣଗତ ସୃଷ୍ଟି ପ୍ରକ୍ରିୟା ବିଷୟ ପାଠ କଲେ ଜଣାଯାଏ ଯେ ସମସ୍ତ ପୁରାଣରେ ସେହି ଏକ କଥା ଏକ ବିଷୟ ଏପରିକି ଅନେକ ଶ୍ଳୋକର ସୁଦ୍ଧା ସୌସାଦୃଶ୍ୟ ଦେଖାଯାଏ । ବିଭିନ୍ନ ପୁରାଣରେ ବିଷୟଗତ ପାର୍ଥକ୍ୟ ଥିଲେ ସୁଦ୍ଧା ପ୍ରତ୍ୟେକ ପୁରାଣ ଏକ ଆଦର୍ଶରେ ଲିଖିତ । ଯଦି ବିଭିନ୍ନ ପୁରାଣ ପ୍ରାଚୀନ ଯୁଗରୁ ଚଳିଥାନ୍ତା ଏବଂ ସେହି ବିଭିନ୍ନ ପୁରାଣ ଅବଲମ୍ବନରେ ଆଧୁନିକ ପୁରାଣଗୁଡ଼ିକ ସଂକଳିତ ହୋଇଥାନ୍ତା ତାହାହେଲେ ପରସ୍ପର ମଧ୍ୟରେ ଏତେ ସାଦୃଶ୍ୟ ରହନ୍ତା ନାହିଁ ।

ବିଷ୍ଣୁ ପୁରାଣରେ ଯଥାକ୍ରମେ ନିମ୍ନୋକ୍ତ ଅଷ୍ଟାଦଶ ପୁରାଣର ନାମ ଲେଖାଅଛି । ୧-ବ୍ରହ୍ମ, ୨-ପଦ୍ମ, ୩-ବିଷ୍ଣୁ, ୪-ଶିବ, ୫-ଭାଗବତ, ୬-ନାରଦ, ୭-ମାର୍କଣ୍ଡ, ୮-ଅଗ୍ନି, ୯-ଭବିଷ୍ୟ, ୧୦-ବ୍ରହ୍ମବୈବର୍ତ୍ତ, ୧୧-ଲିଙ୍ଗ, ୧୨-ବରାହ, ୧୩-ସ୍କନ୍ଦ, ୧୪-ବାମନ, ୧୫-କୂର୍ମ, ୧୬-ମତ୍ସ୍ୟ, ୧୭-ଗରୁଡ଼ ଏବଂ ୧୮-ବ୍ରହ୍ମାଣ୍ଡ । ଏହି ସମସ୍ତ ପୁରାଣ ପଞ୍ଚ ଲକ୍ଷଣଯୁକ୍ତ । ବିଷ୍ଣୁ ପୁରାଣ, ପଦ୍ମ ପୁରାଣ ପରେ ରଚିତ ହେଲା ।

ଶିବ ଭାଗବତ, ନାରଦ, ଅଗ୍ନି ବ୍ରହ୍ମବୈବର୍ତ୍ତ, ଲିଙ୍ଗ, ବରାହ, କୂର୍ମ ମତ୍ସ୍ୟ ଓ ପଦ୍ମପୁରାଣ ମଧ୍ୟରୁ କେଉଁଟି ପ୍ରଥମ ରଚନା ଏବଂ କେଉଁଟି ପରବର୍ତ୍ତୀ ରଚନା ଏହି ବିଷୟ ନେଇ ବିଭିନ୍ନ ମନୀଷୀଙ୍କ ମଧ୍ୟରେ ମତବୈଷମ୍ୟ ପରିଲକ୍ଷିତ ହୁଏ । ଅତଏବ କେଉଁଟି ପ୍ରଥମେ ଏବଂ କେଉଁଟି ପରେ ରଚିତ ହୋଇଅଛି ତାହା ନିର୍ଣ୍ଣୟ କରିବା କଠିନ ବ୍ୟାପାର । ଯେଉଁ ସ୍ଥଳରେ ବିଷ୍ଣୁପୁରାଣ ସହିତ ଅନ୍ୟାନ୍ୟ ପୁରାଣ ଏକମତ ହୁଅନ୍ତି ସେହି ସ୍ଥଳରେ ବିଷ୍ଣୁପୁରାଣଗତ ବିଷୟ ପ୍ରାମାଣିକ ବୋଲି ଗ୍ରହଣ କରିବା ଉଚିତ ଆଉ ଗୋଟିଏ କଥା ବିଷ୍ଣୁପୁରାଣରେ ଲିଖିତ ବିଷୟ ବ୍ରହ୍ମ ଓ ପଦ୍ମପୁରାଣରେ ତତ୍ ପୂର୍ବରୁ ସଙ୍କଳିତ ହୋଇଅଛି । ସକଳ ପୁରାଣର ନାମ ବିଷ୍ଣୁ ପୁରାଣରେ ଉଲ୍ଲେଖ କରାଯାଇଛି । ନାରଦ ଓ ମତ୍ସ୍ୟ ପୁରାଣରେ ମଧ୍ୟ ଅଷ୍ଟାଦଶ ପୁରାଣର ପ୍ରତିପାଦ୍ୟ ବିଷୟାଦିର ଉଲ୍ଲେଖ ଅଛି । ଏହି ରୂପେ ପୁରାଣର ପରସ୍ପର ଅସାମଞ୍ଜସ୍ୟ ପ୍ରତି ଲକ୍ଷ କରି ପାଶ୍ଚାତ୍ୟ ପଣ୍ଡିତଗଣ ଓ ଭାରତୀୟ ପୁରାତତ୍ତ୍ୱବିଦ୍‌ଗଣ ପୁରାଣ ସକଳ ଆଧୁନିକ ବୋଲି କହନ୍ତି ।

ଅଧ୍ୟାପକ ଉଇଲସନ୍ ସାହେବଙ୍କ ମତାନୁଯାୟୀ ପ୍ରଚଳିତ ପୁରାଣଗୁଡ଼ିକ ନିତାନ୍ତ ଆଧୁନିକ । ବୈଦିକ ଗ୍ରନ୍ଥରେ ଓ ପ୍ରାଚୀନ ସ୍ମାର୍ତ୍ତ ଗ୍ରନ୍ଥରେ ଯେଉଁ ପୁରାଣ ପ୍ରସଙ୍ଗ ଅଛି ସତେ କ'ଣ ସେ ସମସ୍ତ କାଳଗର୍ଭରେ ବିଲୁପ୍ତ ହୋଇ ବର୍ତ୍ତମାନ ପ୍ରଚଳିତ ପୁରାଣଗୁଡ଼ିକ ଅଧୁନା ରଚିତ ହୋଇଅଛି ।

## ପ୍ରଚଳିତ ପୁରାଣ ସମୂହର ସଂକଳନ କାଳ

ବେଦବ୍ୟାସ ପୁରାଣକୁ ଅଷ୍ଟାଦଶ ଭାଗରେ ବିଭକ୍ତ କରିଥିଲେ । ଏ ବିଷୟ ପ୍ରାଚୀନ ପୁରାଣରେ ଉଲ୍ଲେଖ ନାହିଁ । ଅଧ୍ୟାପକ ଉଇଲସନ୍ ଓ ଅକ୍ଷୟ କୁମାର ଦତ୍ତ ପ୍ରଭୃତିଙ୍କ ମତ ପର୍ଯ୍ୟାଲୋଚନା କଲେ ଜଣାଯିବ ଯେ ଧର୍ମଶାସ୍ତ୍ର ରଚନା ସମୟରେ ଏତେଗୁଡ଼ିଏ ପୁରାଣ ବା ପୁରାଣ ବିଭାଗ ନଥିଲା; କିନ୍ତୁ ପୁରାଣ ନାମରେ ପ୍ରାଚୀନ ଯୁଗରେ ଯେଉଁ ଶାସ୍ତ୍ର ପ୍ରଚଳିତ ଥିଲା ତାହା ବର୍ତ୍ତମାନ ପୁରାଣଠାରୁ ସମ୍ପୂର୍ଣ୍ଣ ପୃଥକ୍, କିନ୍ତୁ ସମାଲୋଚକ ପଣ୍ଡିତଗଣ ପୁରାଣକୁ ଯେତେ ଆଧୁନିକ ମନେକରନ୍ତି ପ୍ରକୃତରେ ତାହା ତେତେ ଆଧୁନିକ ନୁହେଁ । କାରଣ କୌଣସି ପୁରାଣରେ ଆଧୁନିକ ବିଷୟ ପ୍ରକ୍ଷିପ୍ତ ଥିଲେ ମଧ୍ୟ ତାହାର ଅନ୍ୟଭାଗ ଅତି ପ୍ରାଚୀନ । ଆପସ୍ତମ୍ବ ସୂତ୍ରର ପୂର୍ବେ ଏକାଧିକ ପୁରାଣ ଥିବା ସ୍ପଷ୍ଟ ହୁଏ ଯେହେତୁ ଭବିଷ୍ୟତ ପୁରାଣର ଶ୍ଳୋକ ଏହି ଧର୍ମ ସୂତ୍ରରେ ଉଦ୍ଧୃତ ହୋଇଅଛି । ଆଭୂତ ସଂପ୍ଲବାତ୍ତେ ସ୍ୱର୍ଗଜିତଃ ପୁସର୍ଗେ ବୀଜାର୍ଥାଭବନ୍ତୀତି ଭବିଷ୍ୟ ପୁରାଣେ (ଆପସ୍ତମ୍ବ ସୂତ୍ର) ପିତୃଗଣ ପ୍ରଳୟ ପର୍ଯ୍ୟନ୍ତ ସ୍ୱର୍ଗରେ ବାସ କରନ୍ତି ପୁଣି ସୃଷ୍ଟି କାଳେ ବୀଜାର୍ଥ ହୋଇଥାନ୍ତି । ଏହି ବିଷୟ ଭବିଷ୍ୟତ ପୁରାଣରେ ଅଛି; ପୁଣି ବ୍ରହ୍ମାଣ୍ଡ ପୁରାଣରେ ଏହାର ବିସ୍ତୃତ ପ୍ରସଙ୍ଗ ଦେଖାଯାଏ । ଆପସ୍ତମ୍ବର ରଚନା ସମୟରେ ଭବିଷ୍ୟତ ପୁରାଣ ଯଦି ନଥିଲା ଆପସ୍ତମ୍ବରେ ପ୍ରୋକ୍ତ ବିଷୟ ଲେଖା ହେଲା କିପରି ?

ଆପସ୍ତମ୍ବ ଧର୍ମ ସୂତ୍ରର ଅନୁବାଦକ ସୁପ୍ରସିଦ୍ଧ ଡାକ୍ତର ବୁହ୍‌ଲାର (Dr. Buhler)ସାହେବ କହିଛନ୍ତି, ଏହି ଧର୍ମସୂତ୍ର ପାଣିନିଙ୍କ ପୂର୍ବେ ଓ ଖ୍ରୀଷ୍ଟ ପୂର୍ବ ତୃତୀୟ ଶତାବ୍ଦୀରେ ରଚିତ ହୋଇଥାଇ ପାରେ, କିନ୍ତୁ ଆପସ୍ତମ୍ବ ସୂତ୍ରରେ ବୌଦ୍ଧ ବା ଜୈନ ପ୍ରଭାବ କିଛି ମାତ୍ର ଉଲ୍ଲେଖ ନଥିବାରୁ ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ପୂର୍ବେ ତାହା ପ୍ରଚଳିତ ଥିବା ଅନୁମାନ ହୁଏ । ସୁତରାଂ ଏହା ପୂର୍ବରୁ ବିଭିନ୍ନ ପୁରାଣ ରଚିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ଧର୍ମ ସୂତ୍ରର ପୂର୍ବେ ଏକାଧିକ ପୁରାଣ ଲେଖା ଯାଇଅଛି; କେବଳ ଭବିଷ୍ୟତ ପୁରାଣର ପ୍ରାଚୀନତା ସମ୍ବନ୍ଧେ ଅନେକେ ସନ୍ଦିହାନ । ପ୍ରଚଳିତ ପ୍ରାୟ ସକଳ ପୁରାଣମତେ ବ୍ରହ୍ମାଣ୍ଡ ପୁରାଣ ହିଁ ଅର୍ବାଚୀନ । ଅତଏବ ଏହି ଶେଷ ପୁରାଣ ବିଷୟ ବର୍ତ୍ତମାନ ଆଲୋଚନା କରାଯାଉ । ଖ୍ରୀଷ୍ଟୀୟ ୫ମ ଶତାବ୍ଦୀରେ ହିନ୍ଦୁଗଣ ଜାବାଦ୍ୱୀପରେ ଉପନିବେଶ ସ୍ଥାପନ କରିଥିଲେ । ତେତେବେଳେ ସେମାନଙ୍କ ନିକଟରେ ବ୍ରହ୍ମାଣ୍ଡ ପୁରାଣ, ରାମାୟଣ, ମହାଭାରତ ପ୍ରଭୃତି ଗ୍ରନ୍ଥ ଥିଲା । ଏ ଗ୍ରନ୍ଥ ସକଳ କ୍ରମେ ଜାବାଦ୍ୱୀପରୁ ବାଲିଦ୍ୱୀପରେ ପ୍ରଚଳିତ ହେଲା; ବ୍ରହ୍ମାଣ୍ଡ ପୁରାଣ ଅଦ୍ୟାପି ବାଲି ଦ୍ୱୀପରେ ଶୈବ ସମ୍ପ୍ରଦାୟର ବ୍ରାହ୍ମଣଙ୍କ ମଧ୍ୟରେ ବେଦପରି ପୂଜା ପାଉଅଛି । ଇତିହାସ ବିଚାରର ଏ ସ୍ଥଳ ନୁହେଁ ବୋଲି ବିସ୍ତୃତ ଆଲୋଚନାରୁ ବିରତ ହେଲୁ । ସାର ବିଷୟ ଏହି ଯେ ବିଭିନ୍ନ ପୁରାଣ ବିଭିନ୍ନ ସାମ୍ପ୍ରଦାୟିକ ପଙ୍କିଳତାରେ ଦୂଷିତ ହୋଇ ସାର ଯାଇ ବର୍ତ୍ତମାନ ଅସାର ରହିଥିବା ବିଚିତ୍ର ନୁହେଁ । ବିଶେଷତଃ ସାମ୍ପ୍ରଦାୟିକ ମତବାଦ ପୁରାଣ ବଚନ ମଧ୍ୟରେ ପରସ୍ପର ବିରୋଧର ମୂଳ କାରଣ । ଏହି ବିରୋଧ ଭାବ

ନିରାକରଣ ନିମନ୍ତେ କେତେକ ନବ୍ୟ ପୌରାଣିକ କହନ୍ତି, କଳ୍ପଭେଦରେ ଏହିପରି ରଚନା ଭେଦ ଘଟିଅଛି । ଯଥା-

"କ୍ୱଚିତ୍ କ୍ୱଚିତ୍ ପୁରାଣେଷୁ ବିରୋଧୋ ଯଦି ଲଭ୍ୟତେ ।

କଳ୍ପଭେଦାଦିଭିସ୍ତତ୍ର ବ୍ୟବସ୍ଥା ସଦ୍ଭିରିଷ୍ୟତେ ।।

## ୧-ବ୍ରହ୍ମପୁରାଣ

ବ୍ରହ୍ମପୁରାଣ ୨୪୫ ଅଧ୍ୟାୟଯୁକ୍ତ । ମତ୍ସ୍ୟପୁରାଣରେ ବ୍ରହ୍ମପୁରାଣର ଲକ୍ଷଣ ଲେଖାଅଛି-

ବ୍ରହ୍ମଣାଭିହିତଂ ପୂର୍ବଂ ଯାବନ୍ମାତ୍ରଂ ମରୀଚୟେ ।
ବ୍ରାହ୍ମଯତ୍ରିଦଶଂସାହସ୍ରଂ ପୁରାଣଂ ପରିକୀର୍ତ୍ତ୍ୟତେ ।।

ପାଶ୍ଚାତ୍ୟ ପଣ୍ଡିତଗଣ କହନ୍ତି, ବ୍ରହ୍ମପୁରାଣ ତ୍ରୟୋଦଶ ଶତାବ୍ଦୀରେ ସଙ୍କଳିତ ହୋଇଅଛି । କିନ୍ତୁ ଖ୍ରୀଷ୍ଟୀୟ ଦ୍ୱାଦଶ ଶତାବ୍ଦୀରେ ରଚିତ ଦାନସାଗର ଓ ବ୍ରାହ୍ମଣ ସର୍ବସ୍ୱରେ ବ୍ରହ୍ମପୁରାଣର ଶ୍ଳୋକ ଉଦ୍ଧୃତ କରାଯାଇଥିବାରୁ ପୂର୍ବୋକ୍ତ ମତ ଅସମୀଚୀନ ବୋଧହୁଏ । ଏହି ପୁରାଣରେ ଅନେକ ପ୍ରସଙ୍ଗ ମହାଭାରତର ଅନୁଶାସନ ପର୍ବରେ ଅବିକଳ ଦେଖାଯାଏ । ବ୍ରହ୍ମପୁରାଣର ୨୨୩ ଅଧ୍ୟାୟଠାରୁ ୨୨୫ ଅଧ୍ୟାୟ ପର୍ଯ୍ୟନ୍ତ, ଅନୁଶାସନ ପର୍ବର ୧୪୩ଠାରୁ ୧୪୫ ପର୍ଯ୍ୟନ୍ତ ଏବଂ ବ୍ରହ୍ମପୁରାଣର ୨୨୭ ଅଧ୍ୟାୟ ଅନୁଶାସନର ୧୪୭ ଅଧ୍ୟାୟ ସଙ୍ଗେ ଶ୍ଳୋକପାଠ ସମାନ ଅଛି । ଏ ସକଳ ଶ୍ଳୋକ ବ୍ରହ୍ମପୁରାଣରୁ ମହାଭାରତକାର ଆଣିଅଛନ୍ତି; ଯେହେତୁ ଅନୁଶାସନ କହେ -

ଇଦଙ୍ଗ୍ଚୈବାପରଂ ଦେବି ବ୍ରହ୍ମଣା ସମୁଦାହୃତଂ ।
ପିତାମହ ମୁଖୋତ୍କୃଷ୍ଟଂ ପ୍ରମାଣ ମିତି ମେମତିଃ ।

ଅତଏବ ମହାଭାରତ ରଚନା ପୂର୍ବରୁ ବ୍ରହ୍ମପୁରାଣ ରଚିତ ହୋଇଥିବା ସ୍ପଷ୍ଟ ଜଣାଯାଏ । ତେବେ ଅଧିକାଂଶ ପୁରାଣ ମତରେ ବ୍ରହ୍ମପୁରାଣର ଶ୍ଳୋକସଂଖ୍ୟା ଦଶହଜାର । କିନ୍ତୁ ପ୍ରଚଳିତ ବ୍ରହ୍ମପୁରାଣରେ ୧୩୭୮୩ ଶ୍ଳୋକ ଅଛି । ସେହି ବ୍ରହ୍ମପୁରାଣ ମଧ୍ୟରେ ଲେଖାଅଛି ଯେ, ତାହା ଦଶହଜାର ଶ୍ଳୋକବିଶିଷ୍ଟ । ଅତଏବ ତୀର୍ଥମହାତ୍ମ୍ୟଗୁଡ଼ିକ ପ୍ରକ୍ଷିପ୍ତ ବା ଅନ୍ୟକିଛି ନୁହେଁ । କାଳହସ୍ତୀ ମାହାତ୍ମ୍ୟ, ମଲ୍ଲିକ ମାହାତ୍ମ୍ୟ, ଶ୍ରୀରଙ୍ଗ ବେଙ୍କଟଗିରି ଓ ହସ୍ତିଗିରି ପ୍ରଭୃତି ମାହାତ୍ମ୍ୟ ଦାକ୍ଷିଣାତ୍ୟ ବ୍ରାହ୍ମଣମାନଙ୍କ କର୍ତ୍ତୃକ ସଂଯୋଜିତ ବୋଲି ବୋଧହୁଏ ।

## ମୂଳ ବ୍ରହ୍ମପୁରାଣଗତ ଚରିତ

ସ୍ୱାୟମ୍ଭୁବମନୁ ଓ ଶତରୂପାର ବିବାହ, ପ୍ରିୟବ୍ରତ ଓ ଉତ୍ତାନପାଦୋତ୍ପତ୍ତି, ଦକ୍ଷ ଓ ମରୁଦ୍ଗଣର ଜନ୍ମ, ପୃଥୁଚରିତ, ମନ୍ୱନ୍ତର କଥା, ସୃଷ୍ଟି ଓ ପ୍ରଳୟ, ସୂର୍ଯ୍ୟବଂଶ ବର୍ଣ୍ଣନ, ଛାୟା ଓ ସଜ୍ଞା ଚରିତ,

ସୂର୍ଯ୍ୟକନ୍ୟାଗଣର ଉତ୍ପତ୍ତି,ବୈବସ୍ୱତମନୁବଂଶ, କୁବଳୟାଶ୍ୱଚରିତ, ଧୁନ୍ଧୁମାର ଓ ଗାଲବ ଚରିତ୍ର, ତ୍ରିଶଙ୍କୁ ଆଖ୍ୟାନ, ସଗର ଓ ଭଗୀରଥ ବୃତ୍ତାନ୍ତ, ସୋମ ଓ ବୁଧ ଚରିତ, ପୁରୁରବା ଆଖ୍ୟାନ, ପର୍ଶୁରାମ ଓ ବିଶ୍ୱାମିତ୍ରୋତ୍ପତ୍ତି, ଧନ୍ୱନ୍ତରି ଜନ୍ମ ଓ ଆୟୁର୍ବେଦ ବିଭାଗ, ଯଯାତି ଚରିତ ଓ ପୁରୁବଂଶ, କାର୍ତ୍ତବୀର୍ଯ୍ୟାର୍ଜୁନ କଥା, ବସୁଦେବ ଜନ୍ମ, ଦେବକୀ ଓ କଂସଜନ୍ମ ବୃତ୍ତାନ୍ତ, ସ୍ୟମନ୍ତ ମଣି ହରଣ ଓ ଶ୍ରୀକୃଷ୍ଣଙ୍କର ଜାମ୍ବବତୀ ଏବଂ ସତ୍ୟଭାମା ସହ ବିବାହ ବର୍ଣ୍ଣନ, ଭୂଗୋଳ-ବର୍ଣ୍ଣନ ପ୍ରସଙ୍ଗେ ସପ୍ତଦ୍ୱୀପ ବର୍ଣ୍ଣନ, ଭାରତବର୍ଷ ଓ ପ୍ଲକ୍ଷାଦି ଦ୍ୱୀପ ବର୍ଣ୍ଣନ, ଲୋକାଲୋକପର୍ବତ ଓ ପାତାଳାଦି ସପ୍ତଲୋକ ବର୍ଣ୍ଣନ, ସ୍ୱର୍ଗ ଓ ରୌରବାଦି ନରକ କଥନ, ଆକାଶ ଓ ପୃଥିବୀର ପ୍ରମାଣ, ସୌରମଣ୍ଡଳ ଓ ଭୂରାଦି ସପ୍ତଲୋକ ପ୍ରମାଣ ଏବଂ ମହଦାଦି ଉତ୍ପତ୍ତି, ଶିଶୁମାର ଚକ୍ର ଓ ଧ୍ରୁବସଂସ୍ଥାନ ନିରୂପଣ, ଶରୀର ତୀର୍ଥ, ଭରତ ଖଣ୍ଡାନ୍ତର୍ଗତ ଗିରିନଦୀ ବର୍ଣ୍ଣନ ଓ ତ୍ରିଦେଶସ୍ଥ ବ୍ରାହ୍ମଣ ପ୍ରଶଂସା, କୋଣାଦିତ୍ୟ ଓ ରାମେଶ୍ୱର ଲିଙ୍ଗ ବର୍ଣ୍ଣନ, ସୂର୍ଯ୍ୟପୂଜା ଓ ଦ୍ୱାଦଶାଦିତ୍ୟ ମୂର୍ତ୍ତି, ଚୈତ୍ରାଦି କ୍ରମେ ଦ୍ୱାଦଶାଦିତ୍ୟ ବର୍ଣ୍ଣନ, ଅଦିତିଗର୍ଭେ ସୂର୍ଯ୍ୟଜନ୍ମ ଓ ସୂର୍ଯ୍ୟଙ୍କର ଅଷ୍ଟୋତ୍ତରଶତ ନାମ, ରୁଦ୍ରାଖ୍ୟାନେ ଶିବପାର୍ବତୀ ବିବାହ, ଦକ୍ଷଯଜ୍ଞ ବୃତ୍ତାନ୍ତ, ବୀରଭଦ୍ରୋତ୍ପତ୍ତି, ଯଜ୍ଞଭଙ୍ଗ, ଦକ୍ଷକୃତ ଶିବାଷ୍ଟସହସ୍ର ନାମ, ଏକାମ୍ର, ବିରଜା ଓ ପୁରୁଷୋତ୍ତମ କ୍ଷେତ୍ର ବର୍ଣ୍ଣନ, ଆଦିତୀର୍ଥ ଓ ଅବନ୍ତୀ ମାହାତ୍ମ୍ୟ, ଇନ୍ଦ୍ରଦ୍ୟୁମ୍ନାଖ୍ୟାନ, ଚିତ୍ରୋତ୍ପଳା ନଦୀ, ଇନ୍ଦ୍ରଦ୍ୟୁମ୍ନ କୃତ ପ୍ରାସାଦାରମ୍ଭ, ବିଶ୍ୱକର୍ମାକୃତ ମୂର୍ତ୍ତିତ୍ରୟ ନିର୍ମାଣ, ବ୍ରହ୍ମକର୍ତ୍ତୃକ ପଞ୍ଚତୀର୍ଥ ବର୍ଣ୍ଣନ, ମାର୍କଣ୍ଡେୟାଖ୍ୟାନ ଓ କଳକପବଟ, ବାଳମୁକୁନ୍ଦ ସ୍ତବ, ନୃସିଂହ ପୂଜା ବିଧି, ଶ୍ୱେତନୃପଙ୍କ ପ୍ରତିଜ୍ଞା, ନାରାୟଣ କବଚ ଓ ସମୁଦ୍ରସ୍ନାନ ବିଧି, ଗୁଣ୍ଡିଚାଦି ଦ୍ୱାଦଶ ଯାତ୍ରା, ବିଷ୍ଣୁଲୋକ ବର୍ଣ୍ଣନ, ପୁରୁଷୋତ୍ତମ ମାହାତ୍ମ୍ୟ, ଗୌତମୀ ମାହାତ୍ମ୍ୟ, ବାଳଖିଲ୍ୟା ଜନ୍ମ, ବଳିବାମନ ପ୍ରସଙ୍ଗ, ଗଙ୍ଗାଙ୍କ ଶିବଜଟା ଗମନ, ଗୌତମଙ୍କର ଗୋବଧ ପାପ ଓ ଗଙ୍ଗାସ୍ତୁତି, ଗୋଦାବରୀ ସ୍ନାନ ବିଧି, ବଶିଷ୍ଠଙ୍କର ପୁତ୍ର ପ୍ରାପ୍ତି ଓ ସଗରଙ୍କ ଅଶ୍ୱମେଧ, କପିଳମୁନିଙ୍କ କୋପରେ ସଗର ପୁତ୍ର ଦହନ ଓ ଭଗୀରଥ ଜନ୍ମ ଏବଂ ଗଙ୍ଗାଙ୍କୁ ଆଣିବା, ବରାହ ତୀର୍ଥ ବର୍ଣ୍ଣନ, ଲୁବ୍ଧକ ଚରିତ, କାର୍ତ୍ତିକେୟ ତୀର୍ଥ, କୃତ୍ତିକା ତୀର୍ଥ, ଦଶାଶ୍ୱମେଧ ତୀର୍ଥ କଥା, କେଶରୀ ବାନର କଥା, ଅଞ୍ଜନା, ଅଦ୍ରିକାର ପୁନର୍ଜନ୍ମ ଓ ପୈଶାଚ ତୀର୍ଥ କଥା, କ୍ଷୁଧା ତୀର୍ଥ ଉତ୍ପତ୍ତି କଥା, ବିଶ୍ୱଧର ବୈଶ୍ୟ ଓ ଚକ୍ରତୀର୍ଥ ଉତ୍ପତ୍ତି, ଅହଲ୍ୟା ଚରିତ ଓ ଇନ୍ଦ୍ରତୀର୍ଥ, ଜନ୍ମସ୍ଥାନ ତୀର୍ଥ, ଉଷା, ସୂର୍ଯ୍ୟ ସମାଗମ ଓ ଅଶ୍ୱନୀକୁମାର ଉତ୍ପତ୍ତି, ମଣିନାଗ କର୍ତ୍ତୃକ ଶିବ ସ୍ତୁତି, ଗରୁଡ଼ର ଦର୍ପ ଚୂର୍ଣ୍ଣ, ଗୋବର୍ଦ୍ଧନ ତୀର୍ଥ, ଧୌତପାପ ତୀର୍ଥ, ବିଶ୍ୱାମିତ୍ର ତୀର୍ଥ, ଶ୍ୱେତାଖ୍ୟାନ ଓ ଯମର ପୁନର୍ଜୀବନ, ଶୁକ୍ରଙ୍କ କର୍ତ୍ତୃକ ଶିବସ୍ତୁତି ଓ ଶିବଙ୍କଠାରୁ ମୃତ୍ୟୁସଞ୍ଜୀବନୀ ବିଦ୍ୟା ପ୍ରାପ୍ତି, ରାବଣ କର୍ତ୍ତୃକ କୁବେରର ପରାଭବ ଏବଂ କୁବେରର ଶିବସ୍ତୁତି, ଅଗ୍ନିତୀର୍ଥ ଉତ୍ପତ୍ତି, କକ୍ଷିବାନର ପୁତ୍ରମାନଙ୍କ ପ୍ରତି ପିତୃଗଣର ଗୌତମୀ ସ୍ନାନ ଉପଦେଶ, ସୁପର୍ଣ୍ଣ ଜନ୍ମ ଓ ଯଜ୍ଞରେ କଦ୍ରୁଙ୍କର ନଦୀ ପ୍ରତି ଅଭିଶାପ, ସରସ୍ୱତୀଙ୍କ ପ୍ରତି ବ୍ରହ୍ମାଙ୍କ ଅଭିଶାପ ଓ ସ୍ତ୍ରୀ ସ୍ୱଭାବ ବର୍ଣ୍ଣନ, ମୃଗରୂପୀ ବ୍ରହ୍ମାଙ୍କ ପ୍ରତି ବ୍ୟାଧରୂପୀ ଶିବୋକ୍ତି ଓ ସାବିତ୍ରୀ ପ୍ରଭୃତିଙ୍କର ବ୍ରହ୍ମା ସମୀପେ ଗମନ । ସୌମ୍ୟାଦି ତୀର୍ଥ ବର୍ଣ୍ଣନ, ପୁରୁରବା, ଉର୍ବଶୀ ସମ୍ବାଦ, ହରିଶ୍ଚନ୍ଦ୍ର ଉପାଖ୍ୟାନ, ଅଜିଗର୍ତ୍ତର ପୁତ୍ର ବିକ୍ରୟ, ସୁନଃଶେଫର ବିଶ୍ୱାମିତ୍ରାନୁଗ୍ରହ ଲାଭ,

ଗଙ୍ଗା ସହିତ ନଦନଦୀ ବର୍ଣ୍ଣନ, ସମୁଦ୍ର ମନ୍ଥନ ଉପାଖ୍ୟାନ, ବୃଦ୍ଧା ଗୌତମୀ ସହବାସ, ଇଳା ଚରିତ କୀର୍ତ୍ତନ, ପିପ୍ପଳେଶ୍ୱର ତୀର୍ଥ ବର୍ଣ୍ଣନ, ନାଗତୀର୍ଥ କଥା ପ୍ରସଙ୍ଗେ ସୋମ ବଂଶୀୟ ସୁରସେନ ରାଜା ଉପାଖ୍ୟାନ, ମାତୃ ତୀର୍ଥ, ବ୍ରହ୍ମତୀର୍ଥ ବର୍ଣ୍ଣନ ପ୍ରସଙ୍ଗେ ବ୍ରହ୍ମାର ଶିରଚ୍ଛେଦ ଓ ଶିବଙ୍କର ବ୍ରହ୍ମଶିର ଧାରଣ ବୃତ୍ତାନ୍ତ,ଅବିଘ୍ନ ତୀର୍ଥ ବର୍ଣ୍ଣନ, ଶେଷତୀର୍ଥ ବର୍ଣ୍ଣନ, ବାଡ଼ବତୀର୍ଥ କଥା, ଆତ୍ମତୀର୍ଥ ବର୍ଣ୍ଣନ, ଅଶ୍ୱତ୍‌ଥ ଓ ପିପ୍ପଳ ନାମକ ରାକ୍ଷସ ଉପାଖ୍ୟାନ, ସୋମ ଓ ଔଷଧି ଗଣର ବିବାହ ବୃତ୍ତାନ୍ତ, ଧାନ୍ୟ ତୀର୍ଥ ବର୍ଣ୍ଣନ, ରେବତୀର ସହିତ କଠର ବିବାହ, ଧନ୍ୱନ୍ତରି ସମ୍ବାଦ, ବୃହସ୍ପତି କର୍ତ୍ତୃକ ଇନ୍ଦ୍ରାଭିଷେକ, ରାମ ତୀର୍ଥ, ପୁତ୍ର ତୀର୍ଥ, ଯମ ତୀର୍ଥ ଓ ଅଗ୍ନି ତୀର୍ଥ ବର୍ଣ୍ଣନ, ତପଃତୀର୍ଥ କଥା, ଦେବ ତୀର୍ଥ ଓ ଆରଷ୍ଟିଶେଣ ନୃପାଖ୍ୟାନ । ନମୁଚି ବଧ, ଆପସ୍ତମ୍ବ ଚରିତ କଥନ, ସରମା ଆଖ୍ୟାନ, ଯକ୍ଷିଣୀ ସଙ୍ଗମ ମାହାତ୍ମ୍ୟ ଓ ଦୁର୍ଗା ତୀର୍ଥ ବର୍ଣ୍ଣନ, ଭରଦ୍ୱାଜ ଯଜ୍ଞ ବର୍ଣ୍ଣନ, ବଶିଷ୍ଠ କୃତ ଯଜ୍ଞ ବିବରଣ, ବାଣୀ ସଂଗମ ଆଖ୍ୟାନ ଏବଂ ଜ୍ୟୋତିର୍ଲିଙ୍ଗ ପ୍ରସଙ୍ଗ, ମୁଦ୍ଗଲାଖ୍ୟାନ, ଲକ୍ଷ୍ମୀ ଓ ଦରିଦ୍ର୍ୟାଖ୍ୟାନ, ଭାନୁ ତୀର୍ଥ ବର୍ଣ୍ଣନପ୍ରସଙ୍ଗେ ଶର୍ଯ୍ୟାତି ରାଜ ଚରିତ, ଖଡ଼୍‌ଗତୀର୍ଥେ ଔଲୁଶ୍ୟ ମୁନି ଚରିତ, ଆତ୍ରେୟ ଋଷିର ଆଖ୍ୟାନ, କପିଳା ସଙ୍ଗମ ତୀର୍ଥ ବର୍ଣ୍ଣନ, ରାହୁପୁତ୍ର ମେଘହାସ ଦୈତ୍ୟର ଚରିତ ବର୍ଣ୍ଣନ, ସିଦ୍ଧ ତୀର୍ଥେ ରାବଣ ତପଃ ପ୍ରଭାବ, ପୟୋଷ୍ଣୀ ତୀର୍ଥେ ଆତ୍ରେୟୀ ଚରିତ, କାଳଞ୍ଜର ତୀର୍ଥେ ଯଯାତି ଚରିତ, ବିଶ୍ୱାମିତ୍ର ଶାପେ ଅପ୍‌ସରା ଦ୍ୱୟର ନଦୀତ୍ୱ ପ୍ରାପ୍ତି,କୋଟି ତୀର୍ଥେ କଣ୍ୱସୁତ ବାହ୍ଲିକ ଚରିତ, ନାରସିଂହ ତୀର୍ଥ କଥା, ପିଶାଚ ତୀର୍ଥେ ଅଜିଗତାଖ୍ୟାନ, ଉର୍ବଶୀତ୍ୟକ୍ତ ପୁରୁରବାଙ୍କ ପ୍ରତି ବଶିଷ୍ଠଙ୍କ ଉପଦେଶ, ଚନ୍ଦ୍ର କର୍ତ୍ତୃକ ତାରା ହରଣ, ଭାବାଦି ସପ୍ତ ତୀର୍ଥ ବର୍ଣ୍ଣନ । ସହସ୍ର କୁଣ୍ଡ ତୀର୍ଥ ପ୍ରସଙ୍ଗେ ସଂକ୍ଷିପ୍ତ ରାମଚରିତ, ଅଙ୍ଗୀରାଙ୍କୁ ଆଦିତ୍ୟଙ୍କର ଭୂମିଦାନ, ଶଙ୍ଖତୀର୍ଥେ ବିଷ୍ଣୁ କର୍ତ୍ତୃକ ଚକ୍ରଦ୍ୱାରା ରାକ୍ଷସ ହନନ, କିଷ୍କିନ୍ଧ୍ୟା ତୀର୍ଥ ବର୍ଣ୍ଣନ, ବ୍ୟାସ ତୀର୍ଥ ଓ ଅଙ୍ଗିରାସାଖ୍ୟାୟିକା, ଦେବାସୁର ଯୁଦ୍ଧ ବର୍ଣ୍ଣନ, କୁଶ ତର୍ପଣ ତୀର୍ଥେ ବ୍ରହ୍ମା ଓ ବିରାଟ ଉତ୍ପତ୍ତି, ମନ୍ୟୁ ପୁରୁଷ ଆଖ୍ୟାନ, ସାକଲ୍ୟ ମୁନି ପ୍ରସଙ୍ଗ, ପବମାନ ନୃପ ଓ ଚିଚିକ ପକ୍ଷୀ ସମ୍ବାଦ, ଭଦ୍ର ତୀର୍ଥେ ହରଣଣର ଯମାଳୟ ଗମନ, ପତତ୍ରୀ ତୀର୍ଥ ବର୍ଣ୍ଣନ, ଭାନୁତୀର୍ଥ ପ୍ରସଙ୍ଗେ ଅଭିଷ୍ଟୁତ ରାଜାଙ୍କ ହୟମେଧ କଥା, ଦେବ, ଦ୍ୱିଜ ଓ ଶିବ, ପୂଜକ ବ୍ୟାଧ ପ୍ରସଙ୍ଗ, ଚକ୍ଷୁ ତୀର୍ଥ ପ୍ରସଙ୍ଗେ ଗୌତମ ଓ କୁଣ୍ଡଳକ ନାମକ ବୈଶ୍ୟଦ୍ୱୟୟାଖ୍ୟାନ, ଉର୍ବଶୀ ତୀର୍ଥେ ଇନ୍ଦ୍ର ଓ ପ୍ରମତୀର ବୃତ୍ତାନ୍ତଏ ଗଙ୍ଗା ସାଗର ବୃତ୍ତାନ୍ତ, ଭୀମେଶ୍ୱର ତୀର୍ଥ ଓ ସପ୍ତଧା ଗଙ୍ଗାଙ୍କ କଥା ଏବଂ ବିଶ୍ୱରୂପ ବର୍ଣ୍ଣନ, ବାର୍ହସ୍ପତ୍ୟାଦି ତୀର୍ଥ ବର୍ଣ୍ଣନ ଅନନ୍ତ ବାସୁଦେବ ମାହାତ୍ମ୍ୟ, ପୁରୁଷୋତ୍ତମ ମାହାତ୍ମ୍ୟ କୀର୍ତ୍ତନ, କଣ୍ଡୁ ମୁନି ଚରିତ, (୧୭୯ ଅଧ୍ୟାୟଠାରୁ ଶ୍ରୀକୃଷ୍ଣଙ୍କର ଜନ୍ମ, କଂସ ବଧ, ଦ୍ୱାରକା ବୈଭବ, ମହାପ୍ରସ୍ଥାନ ପରେ ୨୧୩ ଅଧ୍ୟାୟ ପର୍ଯ୍ୟନ୍ତ ପରୀକ୍ଷିତଙ୍କ ରାଜ୍ୟ ବର୍ଣ୍ଣନ ଇତ୍ୟାଦି) ବରାହାଦି ଅବତାର ବର୍ଣ୍ଣନ, ଯମ ଲୋକ ବର୍ଣ୍ଣନ, ଚିତ୍ରଗୁପ୍ତ କର୍ତ୍ତୃକ ପାପ ବର୍ଣ୍ଣନ, ବ୍ୟାସ କଥିତ ଧର୍ମାଚରଣ ଓ ସୁଗତି ପ୍ରାପ୍ତି, ଜୀବର ନାନା ଯୋନିରେ ଜନ୍ମ ପ୍ରସଙ୍ଗ, ଅନ୍ନଦାନ ଫଳରେ ଶୁଭ ପ୍ରାପ୍ତି, ଶ୍ରାଦ୍ଧ ବିଧି ନିରୂପଣ, ସୂତକ ବିଚାର, ବର୍ଣ୍ଣଧର୍ମ କଥା, ବ୍ରହ୍ମେଣର ଶୂଦ୍ରତ୍ୱ ଓ ଶୂଦ୍ରର ସଦ୍‌ଗତି ଏବଂ ସଙ୍କର ଜାତିର ଲକ୍ଷଣ, ମାନବ

ଧର୍ମ ଓ କର୍ମ ଫଳ, ଦେବ ଲୋକ ପ୍ରାପ୍ତିଓ ନିରୟ ପ୍ରାପ୍ତି କାରଣ, ବାସୁଦେବ ମହିମା ଓ ପୂଜା, ବିଷ୍ଣୁପୂଜା ପ୍ରସଙ୍ଗରେ ଉର୍ବଶୀ ଓ ମୂର୍ଖ ବ୍ରାହ୍ମଣ ସମ୍ବାଦ, କପାଳ ମୋଚନ ତୀର୍ଥ ଓ ସୂର୍ଯ୍ୟାରାଧନା, ଭବିଷ୍ୟତ କଥା, ଦ୍ୱାପର ଯୁଗାନ୍ତ, ପ୍ରାକୃତିକ ଲୟ, ମୁକ୍ତି ଜ୍ଞାନ ମହିମା, ଯୋଗାଭ୍ୟାସ ଫଳ, ଯୋଗ ଓ ସାଂଖ୍ୟ ନିରୂପଣ, ମୋକ୍ଷ ପ୍ରାପ୍ତି ଓ ପଞ୍ଚ ମହାଭୂତ କଥା, ସର୍ବଧର୍ମର ବିଶିଷ୍ଟ ଧର୍ମ ନିରୂପଣ, ଯୋଗବିଧି ନିରୂପଣ ଓ ସାଂଖ୍ୟବିଧି ନିରୂପଣ, କ୍ଷରାକ୍ଷର ବିଚାର ଓ ଚତୁର୍ବିଂଶତି ତତ୍ତ୍ୱ କଥା, ସାଂଖ୍ୟ ଜ୍ଞାନ ଓ କ୍ଷେତ୍ର- କ୍ଷେତ୍ରଜ୍ଞ ଲକ୍ଷଣ, ଅଭେଦ ସାଂଖ୍ୟଯୋଗ କଥନ, ଜନକ ଓ ବଶିଷ୍ଠଙ୍କ ମଧ୍ୟରେ ଜ୍ଞାନ ବିଚାର, ବ୍ରହ୍ମପୁରାଣ ଶ୍ରବଣ ଫଳ ବର୍ଣ୍ଣିତ ଅଛି ।

## ପଦ୍ମପୁରାଣ

ପଦ୍ମପୁରାଣ ପାଞ୍ଚ ଖଣ୍ଡରେ ବିଭକ୍ତ, ଯଥା - ସୃଷ୍ଟି, ଭୂମି, ସ୍ୱର୍ଗ, ପାତାଳ ଓ ଉତ୍ତର । ସୃଷ୍ଟି ଖଣ୍ଡ ୮୩ ଅଧ୍ୟାୟ, ଭୂମି ଖଣ୍ଡ ୧୨୫ ଅଧ୍ୟାୟ, ସ୍ୱର୍ଗ ଖଣ୍ଡ ୩୯ ଅଧ୍ୟାୟ, ପାତାଳଖଣ୍ଡ ୧୧୩ ଅଧ୍ୟାୟ ଓ ଉତ୍ତରଖଣ୍ଡ ୨୮୨ ଅଧ୍ୟାୟରେ ବିଭକ୍ତ । ମତ୍ସ୍ୟପୁରାଣରେ ମୂଳ ପଦ୍ମପୁରାଣର ଲକ୍ଷଣ ଲେଖାଅଛି -

ଏତଦେବ ଯଦା ପଦ୍ମମଭୂଦ୍ଧୈରଣ୍ମୟଂ ଜଗତ୍ ।
ତଦ୍‌ବୃତ୍ତାନ୍ତାଶ୍ରୟଂ ତଦ୍‌ବତ୍ ପାଦ୍ମମିତ୍ୟୁଚ୍ୟତେ ବୁଧୈଃ ।
ପାଦ୍ମଂ ତତ୍‌ପ୍ରଞ୍ଚପଞ୍ଚାଶତସହସ୍ରାଣୀହ ପଠ୍ୟତେ ।''

ଏଥିରେ ପଞ୍ଚ ପଞ୍ଚାଶତ ସହସ୍ର ସଂଖ୍ୟକ ଶ୍ଳୋକରେ ହିରଣ୍ମୟ ପଦ୍ମରୁ ଜଗଦୁତ୍ପତ୍ତି ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି; ଅତଏବ ଏହାକୁ ପଦ୍ମପୁରାଣ କହନ୍ତି । ଅନ୍ୟଚ ଏହି ପଦ୍ମପୁରାଣାନ୍ତର୍ଗତ ସୃଷ୍ଟି ଖଣ୍ଡରେ ଲେଖାଅଛି-

''ପୌଷ୍କରଂ ପ୍ରଥମଂ ପର୍ବଂ ଯତ୍ରୋତ୍ପନ୍ନଃ ସ୍ୱୟଂ ବିରାଟ୍ ।
ଦ୍ୱିତୀୟଂ ତୀର୍ଥପର୍ବଂ ସ୍ୟାତ୍ ସର୍ବଗ୍ରହଣାଶ୍ରୟଂ ।।
ତୃତୀୟ ପର୍ବ ଗ୍ରହଣେ ରାଜାନ୍ତର୍ଭୂରି ଦକ୍ଷିଣାଃ ।
ବଂଶାନୁଚରିତଂ ଚୈବ ଚତୁର୍ଥେ ପରିକୀର୍ତ୍ତିତଂ ।।
ପଞ୍ଚମେ ମୋକ୍ଷତତ୍ତ୍ୱଂ ଚ ସର୍ବଜ୍ଞତ୍ୱଂ ନିରଦ୍ୟତେ ।'' ଇତି ।

ପ୍ରଥମ ପୌଷ୍କର ପର୍ବରେ ବିରାଟ ପୁରୁଷର ଉତ୍ପତ୍ତି, ଦ୍ୱିତୀୟ ତୀର୍ଥପର୍ବରେ, ଗ୍ରହଗଣର କଥା, ତୃତୀୟରେ ଦାନଶୀଳ ରାଜାର କଥା, ଚତୁର୍ଥରେ ବଂଶାନୁଚରିତ ଓ ପଞ୍ଚମରେ ମୋକ୍ଷତତ୍ତ୍ୱ ବର୍ଣ୍ଣିତ ହୋଇଅଛି । ପୂର୍ବାପର ବିବେଚନା କଲେ ଉଭୟର ମତରେ ପ୍ରଭୂତ ତାରତମ୍ୟ ଦେଖାଯାଏ । ପୌଷ୍କର ପର୍ବର ନାମ ସୁଦ୍ଧା ନାହିଁ । ସାମ୍ପ୍ରଦାୟିକ ବିଦ୍ୱେଷ ଏଥିରେ ପୂର୍ଣ୍ଣମାତ୍ରାରେ ରହିଅଛି ।

## ସୃଷ୍ଟିଖଣ୍ଡଗତ ଚରିତ

ଏଥିରେ ସୂତ ବ୍ୟାସାଦିର ଉତ୍ପତ୍ତି କଥା, ପୌଲସ୍ତ୍ୟ ଭୀଷ୍ମ ସମ୍ବାଦ, ଅହଂକାରାଦି ଯାବତୀୟ ଓ ପଦାର୍ଥର ଉତ୍ପତ୍ତି, ପୃଥିବୀ କର୍ତ୍ତୃକ ବିଷ୍ଣୁସ୍ତୁତି, ବରାହରୂପେ ବିଷ୍ଣୁଙ୍କଦ୍ୱାରା ଧରଣୀ ଉଦ୍ଧାର ଓ ରୁଦ୍ରୋତ୍ପତ୍ତି, ଇନ୍ଦ୍ରଙ୍କ ପ୍ରତି ଦୁର୍ବାସାଙ୍କର ଅଭିଶାପ, ଭୃଗୁଙ୍କ ଦ୍ୱାରା ଅଭିଶପ୍ତ ବିଷ୍ଣୁଙ୍କ ସହିତ ବ୍ରହ୍ମାଙ୍କ କଥୋପକଥନ, ନାରଦଙ୍କ ବ୍ରହ୍ମ ସ୍ତବ, ସୃଷ୍ଟିବ୍ୟାପାର, ଦେବ, ଅସୁର ଓ ଗରୁଡ଼ ଜନ୍ମକଥା, ଇନ୍ଦ୍ରକର୍ତ୍ତୃକ ଦିତି ଗର୍ଭରେ ଭ୍ରୂଣଚ୍ଛେଦ, ମରୁତର ଉତ୍ପତ୍ତି ବୃତ୍ତାନ୍ତ, ପୃଥୁ ଉପାଖ୍ୟାନ, ଶନିଙ୍କର ଗ୍ରହତ୍ୱ ପ୍ରାପ୍ତି କଥା, ଇଳାର ଅବସ୍ଥାନ୍ତର ଓ ଦିଲୀପ ବଂଶ କଥା, ଶ୍ରାଦ୍ଧୋପକରଣ, ବିଷ୍ଣୁଙ୍କ ଅଙ୍ଗରୁ କୁଶତିଳାଦିର ଉଦ୍ଭବ କଥା, ବୁଧ, ପୁରୁରବାର ବଂଶ ଚରିତ, କୃଷ୍ଣଜନ୍ମ ଓ ଦଶାବତାର ପ୍ରସଙ୍ଗ ଶୁକ୍ରଙ୍କ ତପଃ, ବିଷ୍ଣୁ କର୍ତ୍ତୃକ ଶୁକ୍ରମାତା ବଧ, ଭୃଗୁଦତ୍ତ ବିଷ୍ଣୁଶାପ, ଶୁକ୍ରଙ୍କର ତପୋଭଙ୍ଗ ଉଦ୍ଦେଶ୍ୟରେ ଇନ୍ଦ୍ରଙ୍କର ଜୟନ୍ତୀ କନ୍ୟା ପ୍ରେରଣ, ଜୟନ୍ତୀ ସଙ୍ଗେ ଶୁକ୍ରଙ୍କ ଶତବର୍ଷ ରତି କ୍ରୀଡ଼ା, ଶୁକ୍ର ରୂପୀ ବୃହସ୍ପତି ଦାନବମାନଙ୍କ ନିକଟକୁ ଯାଇ ସେମାନଙ୍କୁ ନାସ୍ତିକ ମତରେ ଦୀକ୍ଷିତ କରାଇବା ଓ ସେମାନଙ୍କ ପ୍ରତି ଶୁକ୍ରଙ୍କର ଅଭିଶାପ, ବ୍ରହ୍ମାରସ୍ୱେଦ ଓ ବିଷ୍ଣୁଙ୍କ ରକ୍ତରୁ ସୁଗ୍ରୀବ ଓ ବାଳୀ ଜନ୍ମ ଏବଂ ସେମାନଙ୍କର କର୍ଣ୍ଣାର୍ଜୁନ ରୂପେ ପୁନର୍ଜନ୍ମ ବୃତ୍ତାନ୍ତ, ପୁଷ୍କର ତୀର୍ଥରେ ରୁଦ୍ରଙ୍କ କାପାଳିକ ବ୍ରତ ଧାରଣ, କପାଳମୋଚନ ତୀର୍ଥୋତ୍ପତ୍ତି । ବାରାଣସୀ ମାହାତ୍ମ୍ୟ ବର୍ଣ୍ଣନ, ପୁଷ୍କରତୀର୍ଥ ମାହାତ୍ମ୍ୟ ପ୍ରସଙ୍ଗେ ବ୍ରାହ୍ମଣ ଲକ୍ଷଣ ଓ ଭିକ୍ଷୁଧର୍ମ କଥନ, ବ୍ରହ୍ମାଙ୍କ ଯଜ୍ଞାନୁଷ୍ଠାନ ଓ ଗୋପକନ୍ୟାର ପାଣିଗ୍ରହଣ, ଗୋପକନ୍ୟା ସହ ଯଜ୍ଞେ ପ୍ରବୃତ୍ତ ବ୍ରହ୍ମାଙ୍କ ପ୍ରତି ସାବିତ୍ରୀଙ୍କ ଅଭିଶାପ, ବିଷ୍ଣୁକୃତ ସାବିତ୍ରୀ ସ୍ତୋତ୍ର, ରୁଦ୍ରକୃତ ଗାୟତ୍ରୀ ସ୍ତବ, ପ୍ରାଚୀନ ସରସ୍ୱତୀ ଚରିତ ଓ ମାହାତ୍ମ୍ୟ, ବାଡ଼ବାନଳ ଗ୍ରହ ବର୍ଣ୍ଣନ, ସରସ୍ୱତୀର ନନ୍ଦା ନାମ ପ୍ରାପ୍ତି, ପ୍ରଭଞ୍ଜନ ରାଜାର ଉପାଖ୍ୟାନ, ବୃତ୍ରାସୁର ଉପାଖ୍ୟାନ, ଅଗସ୍ତିଙ୍କ ସମୁଦ୍ର ଶୋଷଣ, ଦାନୀ ପୁଷ୍ପବାହନ ନୃପତିର ଆଖ୍ୟାନ, ଶୌଚଧର୍ମ କଥନ ଓ ବିଶୋକାଦି ସପ୍ତମୀ ବ୍ରତକଥା, ଅଗସ୍ତି ଚରିତ, ଗୌରୀବ୍ରତ ଓ ସାରସ୍ୱତ ବ୍ରତ ବିଧି, ଭୀମ ଦ୍ୱାଦଶୀ ବ୍ରତ ପ୍ରସଙ୍ଗେ କୃଷ୍ଣ ପତ୍ନୀଙ୍କ ନିକଟେ ଦାଲଭ୍ୟ ମୁନିଙ୍କର ବେଶ୍ୟାଧର୍ମ କଥନ, ଅଶୂନ୍ୟ ଶୟନ ବ୍ରତବିଧି, ବୀରଭଦ୍ର ଜନ୍ମ, ଆଦିତ୍ୟ, ରୋହିଣୀ, ଲଳିତା ଓ ସୌଭାଗ୍ୟ ବ୍ରତବିଧି, ବାମନାବତାର, ନାଗତୀର୍ଥ, ପ୍ରେତପଞ୍ଚକର ଆଖ୍ୟାନ, ସୁଧାବଟ ତୀର୍ଥ, ମାର୍କଣ୍ଡେୟୋତ୍ପତ୍ତି, ଯଜ୍ଞେ ଋତ୍ୱିଜର ଲକ୍ଷଣ, ଯମଙ୍କର ସ୍ତୋତ୍ର ଏବଂ ବ୍ରହ୍ମା, ବିଷ୍ଣୁ, ରୁଦ୍ର ଓ ଶକ୍ତି ପ୍ରଭୃତିଙ୍କର ବହୁବିଧ କଥା, ବୈଷ୍ଣବୀ ଶକ୍ତି କର୍ତ୍ତୃକ ମହିଷାସୁର ବଧ, ନବଗ୍ରହ ବ୍ରତ ଓ ବ୍ରହ୍ମାଣ୍ଡ ଦାନବିଧି, ରାମଚନ୍ଦ୍ର କର୍ତ୍ତୃକ ଶୂଦ୍ରକ ବଧ, ଅଗସ୍ତି ରାମ ସମ୍ବାଦ ଓ କ୍ଷତ୍ରିୟଙ୍କର ପ୍ରତି ଗ୍ରହାଧିକାର,ଶ୍ୱେତ ରାଜାର ଉପାଖ୍ୟାନ, ଗୃଧ୍ର, ଉଲ୍ଲୁକ ଉପାଖ୍ୟାନ, କାନ୍ୟକୁବ୍ଜ ରାଜା କର୍ତ୍ତୃକ ବାମନ ପ୍ରତିଷ୍ଠା, ବିଷ୍ଣୁଙ୍କ ନାଭିରୁ ହିରଣ୍ମୟ ପଦ୍ମ ଉତ୍ପତ୍ତି, ମଧୁକୈଟଭ ବଧ, ପାର୍ବତୀଙ୍କର ବିବାହ, କୁମାରୋତ୍ପତ୍ତି, ତାରକାସୁର ବଧ, ହିରଣ୍ୟକଶିପୁ ବଧ, ଅନ୍ଧକାସୁର ଚରିତ, ଗାୟତ୍ରୀ ଜପ ବିଧି, ଅଧମ ବ୍ରାହ୍ମଣ ଲକ୍ଷଣ ପ୍ରସଙ୍ଗେ ଗରୁଡ଼ ଜନ୍ମ କଥା, ଅଗ୍ନିଦ ଗରଦାଦି ବ୍ରାହ୍ମଣ ବଧେ ପାପାଭାବ, ସତ୍ୟ ଓ ଗୋ ମାହାତ୍ମ୍ୟ, ସଦାଚାର କଥା, ପବିତ୍ରତା ଧର୍ମ କଥନେ ମାଣ୍ଡବ ଚରିତ, ସହଗମନ ବିଧି ଓ ସ୍ତ୍ରୀ ଧର୍ମ, ତୁଳାଧାର ଚରିତ, ଅଲୋଭ ପ୍ରଶଂସା, ଅହଲ୍ୟା ଧର୍ଷଣ, ପରମହଂସ ଉପାଖ୍ୟାନ

ଓ ଲୌହିତ ମାହାତ୍ମ୍ୟ, ଜଳ ଓ ଅଶ୍ୱତ୍ଥ ଦାନ ବିଧି, ସେତୁବନ୍ଧ କଥା, ଶ୍ରୋତ୍ରିୟ ଗୃହ କରଣ ଫଳ, ରୁଦ୍ରାକ୍ଷ ମାହାତ୍ମ୍ୟ, ଧାତ୍ରୀ, ତୁଳସୀ, ଗଙ୍ଗା ମାହାତ୍ମ୍ୟ, ଗଣେଶ ସ୍ତୋତ୍ର, କାଳକେୟ, ବଳ, ନମୁଚି ବଧ, ତାରକ ଓ ଦୁର୍ମୁଖ ବଧ, ଗଣେଶ କର୍ତ୍ତୃକ ତ୍ରିପୁର ବଧ, ଭୀଷ୍ମ, କର୍ଣ୍ଣ, ଦ୍ରୋଣାଦିଙ୍କ ଦେବତ୍ୱ କଥା, ସୂର୍ଯ୍ୟବ୍ରତ କଥା, ସୋମ ପୂଜା ଓ ମଙ୍ଗଳ ଉତ୍ପତ୍ତି, ଚଣ୍ଡିକା ମାହାତ୍ମ୍ୟ ଓ ଦୁର୍ଗା ପୂଜା, ବୁଧ, ଶୁକ୍ରଙ୍କର ପୂଜା ଓ ନବଗ୍ରହ ସ୍ତୋତ୍ର କଥିତ ଅଛି ।

## ଭୂମିଖଣ୍ଡେ

ଦିତିଙ୍କ ପ୍ରତି କଶ୍ୟପଙ୍କର ଆତ୍ମଜ୍ଞାନ ଉପଦେଶ, ବ୍ରହ୍ମଚର୍ଯ୍ୟ ଲକ୍ଷଣ, ବଶିଷ୍ଠଙ୍କ ନିକଟରୁ ସୋମ ଶର୍ମାର ବିଭିନ୍ନ ପୁତ୍ର ଲକ୍ଷଣ ଶ୍ରବଣ, ବିପ୍ରତ୍ୱ ପ୍ରାପ୍ତିର କାରଣ, ବୃତ୍ରର ଇନ୍ଦ୍ରତ୍ୱ ଲାଭ, ସୁଶଙ୍ଖ ଗନ୍ଧର୍ବଙ୍କ ପ୍ରତି ଶାପ ବର୍ଣ୍ଣନ, ଇନ୍ଦ୍ରବତ୍ ପୁତ୍ର ଲାଭାର୍ଥ ଅଙ୍ଗର ତପସ୍ୟା ଓ ସୁନୀତିର ପାଣିଗ୍ରହଣ, ବେଣୁ ରାଜାର ପାପ ପ୍ରସଙ୍ଗେ ଜୈନ ଧର୍ମ କଥନ, ଦାନକାଳ କଥନ, ପୁତ୍ର ଭାର୍ଯ୍ୟାଦି ରୂପ ତୀର୍ଥ ପ୍ରସଙ୍ଗେ କୃକଳ ବୈଶ୍ୟ  ଉପାଖ୍ୟାନ, ସଦାଚାର ପ୍ରସଙ୍ଗେ ଇକ୍ଷ୍ୱାକୁ ଓ ତତ୍‌ପତ୍ନୀ ସୁଦୟାର କଥା, ଶୂକର ଉପାଖ୍ୟାନ, ପଦ୍ମାବତୀଙ୍କ ଗର୍ଭରେ  କଂସର ଜନ୍ମ କଥା, ଶୁକଳା ଓ ବିଷ୍ଣୁ ସମ୍ବାଦ, ଧର୍ମ କର୍ତ୍ତୃକ ପତିର କର୍ତ୍ତବ୍ୟାକର୍ତ୍ତବ୍ୟ ନିର୍ଣ୍ଣୟ, ପିତୃ ତୀର୍ଥ ପ୍ରସଙ୍ଗେ ସୁକର୍ମାର ପିପ୍ପଳଙ୍କଠାରୁ ଜ୍ଞାନଲାଭ, ସୁକର୍ମା କର୍ତ୍ତୃକ ପିତୃମାତୃ ସେବାର ଅଶେଷ ପୁଣ୍ୟ କଥା, ଯଯାତି ଉପାଖ୍ୟାନ, ମାତଳି କର୍ତ୍ତୃକ ଗର୍ଭବାସାଦି କାୟକ୍ଳେଶ କଥନ, ଶିବଧର୍ମ କଥା, ଯମ ପୀଡ଼ା ବର୍ଣ୍ଣନ, ଶିବ, ବିଷ୍ଣୁ, ବ୍ରହ୍ମାଙ୍କର ଅଶେଷ କଥା, ନାମାମୃତ କଥା, ହରିନାମ ପ୍ରଚାର, କାମ କନ୍ୟାର ସହିତ ଯଯାତିର ବିବାହ, ଗୁରୁ ତୀର୍ଥ ପ୍ରସଙ୍ଗେ ଚ୍ୟବନ କଥା, କୁଞ୍ଜଳ ନାମକ ଶୁକର କଥା, ପ୍ଲକ୍ଷଦ୍ୱୀପ ରାଜଜେମା ବିଦ୍ୟାବତୀର କଥା, ଉଜ୍ଜ୍ୱଳ ପକ୍ଷୀ ଓ ବିଦ୍ୟାବତୀ ସମ୍ବାଦ, ତୀର୍ଥ ପ୍ରଶଂସା, ପାଞ୍ଚାଳ ଦେଶବାସୀ ବିଦୁର ନାମା କ୍ଷତ୍ରିୟ କଥା, ବିଜଳ ପକ୍ଷୀ କର୍ତ୍ତୃକ ଆନନ୍ଦ କାନନସ୍ଥ ଦମ୍ପତି ବର୍ଣ୍ଣନ, ବାସୁଦେବ ସ୍ତୋତ୍ର, ରତ୍ନେଶ୍ୱର ବର୍ଣ୍ଣନ, ଅଶୋକ ସୁନ୍ଦରୀ କଥା, ଇନ୍ଦୁମତୀ ଦତ୍ତାତ୍ରେୟ କଥା, ନହୁଷ ଜନ୍ମ ବୃତ୍ତାନ୍ତ, ଇନ୍ଦୁମତୀ ଓ ଆୟୁର ଶୋକ ସମ୍ବାଦ, ଅଶୋକ ସୁନ୍ଦରୀ ସହିତ ନହୁଷର ବିବାହ, କୁଞ୍ଜଳ ପକ୍ଷୀ ଓ ଚ୍ୟବନ ସମ୍ବାଦ, ପୃଥୁଙ୍କ ପ୍ରତି ବେଣୁର ଆଦେଶ କଥିତ ଅଛି ।

## ସ୍ୱର୍ଗ ଖଣ୍ଡେ

ଶକୁନ୍ତଳା ଉପାଖ୍ୟାନ, ତତ୍‌ପୁତ୍ର ଭରତ ଓ ଭାରତ ଉପାଖ୍ୟାନ, ସୂର୍ଯ୍ୟ ଚନ୍ଦ୍ରାଦି ମଣ୍ଡଳ ପରିମାଣ, ଦୂରତ୍ୱ ଓ ଭୂଲୋକ ପରିମାଣ, ଭୂତ, ପିଶାଚ, ଗନ୍ଧର୍ବାଦି ଲୋକ ବର୍ଣ୍ଣନ, ରୁଦ୍ର ସର୍ଗ, ବରୁଣ ଉପାଖ୍ୟାନ, ସଂଜୀବନୀ ପୁରୀ, ଗନ୍ଧବତୀ ପୁରୀ ଓ ବାୟୁର ଆଖ୍ୟାନ, ନକ୍ଷତ୍ର ଓ ଗ୍ରହଲୋକ ବର୍ଣ୍ଣନ, ଧ୍ରୁବ ଚରିତ, ସ୍ୱର୍ଲୋକ, ମହର୍ଲୋକ, ବୈକୁଣ୍ଠଲୋକ, ଧୁନ୍ଧୁମାର ଚରିତ, ଶିବୀ ଓ ଉଶୀନର ଉପାଖ୍ୟାନ, ମରୁତାଖ୍ୟାନ, ଦିବୋଦାସ ଚରିତ, ହରିଶ୍ଚନ୍ଦ୍ର ଚରିତ, ମାନଧାତା ଚରିତେ ନାରଦ, ବ୍ରହ୍ମଣାଦି ବର୍ଣ୍ଣୋତ୍ପତ୍ତି

ଓ ବର୍ଣ୍ଣଧର୍ମ କଥା, ଆଶ୍ରମ ଧର୍ମ ନିରୂପଣ ଓ ଯୋଗ କଥନ, ଚାତୁର୍ବର୍ଣ୍ଣ୍ୟର ଆହ୍ନିକ କୃତ୍ୟ, ଶାଳଗ୍ରାମ ଶିଳା ମାହାତ୍ମ୍ୟ, ପରଲୋକ ସାଧନ ସମାଚାର, ବ୍ରାହ୍ମଣଗଣର ଭକ୍ଷାଭକ୍ଷ, ବ୍ରହ୍ମକେତୁର ଉପାଖ୍ୟାନ, ଦକ୍ଷଯଜ୍ଞ ଓ ଶାପ, ପରଲୋକ ବର୍ଣ୍ଣନ, ଶ୍ରାଦ୍ଧପାତ୍ର ନିର୍ଣ୍ଣୟ, ରାଜାର କର୍ତ୍ତବ୍ୟ, ପ୍ରଳୟ ଲକ୍ଷଣ, ସୌଭରି ପ୍ରୋକ୍ତ ବିବାହ ବର୍ଣ୍ଣିତ ଅଛି ।

## ପାତାଳ ଖଣ୍ଡେ

ଶେଷଙ୍କ ପ୍ରତି ବାତ୍ସ୍ୟାୟନଙ୍କର ରାମଚରିତ ପ୍ରଶ୍ନ, ରାବଣ ବଧାନ୍ତେ ରାମଙ୍କର ସୀତାଙ୍କ ସହ ନନ୍ଦୀ ଗ୍ରାମେ ପ୍ରବେଶ, ଉତ୍ତର ଚରିତେ ଅଗସ୍ତି କର୍ତ୍ତୃକ ରାବଣର ଜନ୍ମ ବୃତ୍ତାନ୍ତ କଥନ, ଅଶ୍ୱମେଧ ଯଜ୍ଞେ ବର୍ଣ୍ଣାଶ୍ରମ ଧର୍ମ କଥା, ଯଜ୍ଞାଶ୍ୱ ନିର୍ଗମେ କାମାକ୍ଷୀ ଚରିତ, ଶତ୍ରୁଘ୍ନଙ୍କର ଚ୍ୟବନାଶ୍ରମେ ପ୍ରବେଶ, ସର୍ପ୍ୟାତି ଓ ସୁକନ୍ୟାର ଚରିତ, ନୀଳଗିରି ଯାତ୍ରା ବିଧି, ହନୁମାନଙ୍କ ସହିତ ଶିବଙ୍କ ଯୁଦ୍ଧ, ଶ୍ରୀକୃଷ୍ଣ ଚରିତ, ରାଧା ମାହାତ୍ମ୍ୟ, ଅର୍ଜୁନ ଓ ନାରଦଙ୍କର ରାଧାଲୋକ ଦର୍ଶନେ, ସ୍ତ୍ରୀତ୍ୱ ପ୍ରାପ୍ତି, ବୈଷ୍ଣବ ନିୟମ ଓ ତିଳକ ବିଧି, କୃଷ୍ଣ ମନ୍ତ୍ର ଦୀକ୍ଷା ଓ ମନ୍ତ୍ରଶବ୍ଦାର୍ଥ, ବୈଶାଖ ମାହାତ୍ମ୍ୟ, ବୈଷ୍ଣବ ଧର୍ମ କଥନ, ଅମ୍ବରୀଶ ନାରଦ ସମ୍ବାଦ, ମାଧବ ମାସ ବ୍ରତବିଧି, ମହୀରଥ ରାଜାର ଚରିତ, ଶ୍ରାଦ୍ଧକାଳ ନିର୍ଣ୍ଣୟ, ଶିବଲିଙ୍ଗ ସ୍ଥାପନ, ପୂଜା, ଭସ୍ମ ମହିମା ଓ ଶୈବ ମାହାତ୍ମ୍ୟ ବର୍ଣ୍ଣିତ ଅଛି ।

## ଉତ୍ତର ଖଣ୍ଡେ

ବଦରିକାଶ୍ରମ ବର୍ଣ୍ଣନ, ଜଳନ୍ଧର ଉପାଖ୍ୟାନ, ହୀରକାଦି ନାନା ଧାତୁର ଉତ୍ପତ୍ତି, ତୁଳସୀ ତ୍ରିରାତ୍ର ବ୍ରତ, ଅନ୍ନଦା ମାହାତ୍ମ୍ୟ, ଗୋପୀଚନ୍ଦନ ମାହାତ୍ମ୍ୟ, ନାନାବିଧ ଏକାଦଶୀ ବର୍ଣ୍ଣନ, ଚତୁର୍ମାସ୍ୟା ବ୍ରତ ବିଧି, ମୁଦ୍ଗଲ ମୁନିର ଆଖ୍ୟାନ, ବୈତରଣୀ ବ୍ରତ ବିଧି, ବିଷ୍ଣୁ ସହସ୍ର ନାମ, ଋଷି ପଞ୍ଚମୀ ବ୍ରତ, ବିଷ୍ଣୁ ମହାମନ୍ତ୍ର, ନାରଦ ପୁଣ୍ଡରୀକ ସମ୍ବାଦ, ଦୋ ଉତ୍ସବ ଓ ଦମନକୋତ୍ସବ, ଦେବଶୟନ ଉତ୍ସବ, କାର୍ତ୍ତିକ ମାହାତ୍ମ୍ୟ ବିଧି, ଶ୍ରୀକୃଷ୍ଣଙ୍କ ସତ୍ୟଭାମାଙ୍କୁ କଳ୍ପବୃକ୍ଷ ପ୍ରଦାନ, ଶଙ୍ଖାସୁର କୃତ ବେଦ ହରଣ, ମତ୍ସ୍ୟରୂପୀ ବିଷ୍ଣୁଙ୍କ ଶଙ୍ଖାସୁର ବଧ, ତୁଳସୀ ମାହାତ୍ମ୍ୟ, ବିଷ୍ଣୁଙ୍କର ଆଦିମାୟା ସ୍ତୋତ୍ର, ଧାତ୍ରୀ, ତୁଳସୀ ମାହାତ୍ମ୍ୟ, ବିଷ୍ଣୁଦାସ ବ୍ରାହ୍ମଣ ଓ ଚୋଳ ନୃପତିର ଆଖ୍ୟାନ, ଜୟ ବିଜୟର ପୂର୍ବଜନ୍ମ ବୃତ୍ତାନ୍ତ, କୃଷ୍ଣବେଣୀ ନଦୀର ଉତ୍ପତ୍ତି କଥା, ମାଘସ୍ନାନ ଓ ଶୂକର କ୍ଷେତ୍ର ମାହାତ୍ମ୍ୟ, କାର୍ତ୍ତିକେ ଦୀପଦାନ ବିଧି, ଯମ ଦ୍ୱିତୀୟା କଥା, ଭୀଷ୍ମପଞ୍ଚକ ବ୍ରତ ବିଧି, ଅନନ୍ତ ବାସୁଦେବ ମାହାତ୍ମ୍ୟ, ନନ୍ଦି ଓ କପାଳଲୋଚନ ମାହାତ୍ମ୍ୟ, କୁକର୍ଦ୍ଦମ ଉପାଖ୍ୟାନ, ମାଣ୍ଡବ ଉପାଖ୍ୟାନ, କମ୍ବୁତୀର୍ଥେ ମଙ୍କି ଋଷିର ଆଖ୍ୟାନ, ଚନ୍ଦ୍ରଭାଗା ମାହାତ୍ମ୍ୟ, *୧ (୧୫୦ଠାରୁ ୧୭୦ ପର୍ଯ୍ୟନ୍ତ) ଦେବଶର୍ମା ଆଖ୍ୟାନ, ଦୁରାଚାରାଖ୍ୟାନ, ଭିଲସିଂହର ମୁକ୍ତି କଥନ, ଦିଲୀପ ଆଖ୍ୟାନ, ଶରଭର ଇନ୍ଦ୍ରପ୍ରସ୍ଥ ଗମନ, ମିତ୍ର ଲକ୍ଷଣ, ଚନ୍ଦ୍ରଙ୍କର ଗୁରୁପତ୍ନୀ ହରଣ, କାଶୀ, ଗୋକର୍ଣ୍ଣ, ଶିବ, କାଞ୍ଚି, ଦ୍ୱାରକା ଓ ଭୀମକୁଣ୍ଡ ମାହାତ୍ମ୍ୟ, ଇନ୍ଦ୍ରପ୍ରସ୍ଥ ପ୍ରଦକ୍ଷିଣ ଫଳ, ଚତୁର୍ଯୁଗ ବର୍ଣ୍ଣନ, ଶ୍ରୀକୃଷ୍ଣଙ୍କଦ୍ୱାରା

---

ଶାନ୍ତିପର୍ଣ୍ଣି ମୁନି ପୁତ୍ରର ପୁନର୍ଜୀବନ ଲାଭ, ସୁକୃତାର ସହିତ ମୁଗ ଶୃଙ୍ଗର ବିବାହ ଓ ଅଷ୍ଟବିବାହ ଲକ୍ଷଣ, ସୌଭରିଙ୍କର ୫୦ ଜଣ ରାଜକନ୍ୟାଙ୍କ ପାଣି ଗ୍ରହଣ, ଗୃହସ୍ଥାଶ୍ରମ, ପତିବ୍ରତା ଧର୍ମ, ଶ୍ୱେତ ବାରାହ କଳ୍ପେ ଗୁଭୁର ଅବତାର, ମାର୍କଣ୍ଡେୟ ଆଖ୍ୟାନ, ମୃତ୍ୟୁଞ୍ଜୟ ସ୍ତୋତ୍ର, ଶିବରାତ୍ରି ପ୍ରସଙ୍ଗେ ନିଷାଦ ଉପାଖ୍ୟାନ, ତିଳୋତ୍ତମା ପ୍ରସଙ୍ଗେ ସୁନ୍ଦ, ଉପସୁନ୍ଦ କଥା, "୧୫୧ ଅଧ୍ୟାୟଠାରୁ ୨୧୨ ଅଧ୍ୟାୟ ପର୍ଯ୍ୟନ୍ତ ଚକ୍ରାଙ୍କନ ବିଧି" ଉର୍ଦ୍ଧ୍ୱ ପୁଣ୍ଡ୍ର, ଅଷ୍ଟାକ୍ଷର ମନ୍ତ୍ର ଏବଂ ବିଷ୍ଣୁଙ୍କଠାରୁ ବ୍ରହ୍ମା ଶିବାଦିର ଉତ୍ପତ୍ତି, ସ୍ମୃତି ଓ ପୁରାଣାଦିର ତତ୍ତ୍ୱ, ବରାହ, ବାମନ, ରାମ, କୃଷ୍ଣ ପ୍ରଭୃତିଙ୍କ କଥା, ବୈଷ୍ଣବାଚାର, ରାମଚନ୍ଦ୍ରଙ୍କର ଅଷ୍ଟୋତ୍ତର ଶତନାମ ଓ ବହୁବିଧ ବିଷୟ ବର୍ଣ୍ଣିତ ଅଛି ।

## ବିଷ୍ଣୁ ପୁରାଣ

ବିଷ୍ଣୁ ପୁରାଣର ପୂର୍ବାର୍ଦ୍ଧ ଛ ଭାଗରେ ବିଭକ୍ତ, ଉତ୍ତରାର୍ଦ୍ଧ ବିଷ୍ଣୁ ଧର୍ମୋତ୍ତର ନାମେ ଖ୍ୟାତ, ସମଗ୍ର ଗ୍ରନ୍ଥର ଶ୍ଳୋକ ସଂଖ୍ୟା ତ୍ରୟବିଂଶ ସହସ୍ର । ମତ୍ସ୍ୟପୁରାଣ ମତେ ଯେଉଁ ପୁରାଣରେ ବରାହ କଳ୍ପ ବୃତ୍ତାନ୍ତରୁ ଆରମ୍ଭ କରି ପରାଶରୋକ୍ତ ଅଖିଳ ଧର୍ମ ବିଷୟ ବର୍ଣ୍ଣିତ ତାହାହିଁ ବୈଷ୍ଣବ ପୁରାଣ ନାମେ ପରିଚିତ । ଯଥା-

ବରାହକଳ୍ପବୃତ୍ତାନ୍ତମଧିକୃତ୍ୟ ପରାଶରଃ ।
ଯତ୍ପ୍ରାହ ଧର୍ମାନଖିଳାନନ୍ତଦୁକ୍ତଂ ବୈଷ୍ଣବ ବିଦୁଃ ।
ତ୍ରୟୋବିଂଶତି ସାହସ୍ରଂ ତତ୍ପ୍ରମାଣଂ ବିଦୁର୍ବୁଧାଃ ।।

ଯେଉଁ ବିଷ୍ଣୁ ଧର୍ମୋତ୍ତରର ଜ୍ୟୋତିଷାଂଶକୁ ନେଇ ବ୍ରହ୍ମଗୁପ୍ତ, ବ୍ରହ୍ମସିଦ୍ଧାନ୍ତ ରଚନା କରିଅଛନ୍ତି; ନାରଦ ପୁରାଣରେ ତାହାର ପରିଚୟ ମିଳୁଥିଲେ ସୁଦ୍ଧା ବିଷ୍ଣୁ ଧର୍ମୋତ୍ତରରେ ତାହାର ବିଶଦ ବିବରଣ ଦିଆଯାଇ ନାହିଁ । ଏହି ପୁରାଣରେ ବୌଦ୍ଧ ଓ ଜୈନ ପ୍ରସଙ୍ଗ ଥିବା ଯୋଗୁଁ ଏହା ବୌଦ୍ଧଧର୍ମ ପରେ ସଂକଳିତ ବୋଲି କେତେକ ଐତିହାସିକ ଅନୁମାନ କରନ୍ତି ।

## ପ୍ରଥମ ଅଂଶ

ସୃଷ୍ଟି ପ୍ରକ୍ରିୟା, ବ୍ରହ୍ମାର ଆୟୁ, ମାନସ ପ୍ରଜାସୃଷ୍ଟି, ଚତୁର୍ବିଧ ପ୍ରଳୟ ବୃତ୍ତାନ୍ତ, ଭୃଗୁର ଉତ୍ପତ୍ତି, ସମୁଦ୍ର ମନ୍ଥନ, ଇନ୍ଦ୍ରଙ୍କର ଲକ୍ଷ୍ମୀସ୍ତବ, ଧ୍ରୁବ ଉପାଖ୍ୟାନ, ବେଣୁ ଉପାଖ୍ୟାନ, ପ୍ରଚେତାର ତପସ୍ୟା, ଦକ୍ଷର ପ୍ରଜାସୃଷ୍ଟି, ପ୍ରହ୍ଲାଦ ଚରିତ ଓ ବଂଶ, ବିଷ୍ଣୁବିଭୂତି ବର୍ଣ୍ଣନ ଓ ପରମାତ୍ମାଙ୍କର ଚତୁର୍ବିଧିତ୍ୱ ବର୍ଣ୍ଣିତ ଅଛି ।

## ଦ୍ୱିତୀୟ ଅଂଶ

ପ୍ରିୟବ୍ରତଙ୍କର ପୁତ୍ରମାନଙ୍କ ମଧ୍ୟରୁ ତିନି ଜଣର ବୈରାଗ୍ୟୋଦୟ ଓ ଅପର ପୁତ୍ରଙ୍କର

---

*ନାନା ପ୍ରକାର ତୀର୍ଥ ମାହାତ୍ମ୍ୟ, ଏହା ବହୁବାର ପୂର୍ବେ ଉଲ୍ଲେଖ ଥିବାରୁ ପୁନରାବୃତ୍ତ କରାଗଲା ନାହିଁ ।

ସପ୍ତଦ୍ୱୀପାଧିପତ୍ୟ, ଜମ୍ବୁଦ୍ୱୀପପତି ଅଗ୍ନିଧ୍ରଙ୍କର ଶାଳଗ୍ରାମ କ୍ଷେତ୍ରେ ଗମନ, ଭାରତ ବର୍ଷ ବିସ୍ତାର, ଭୂମଣ୍ଡଳ ବର୍ଣ୍ଣନ ଓ ଭାରତ ବର୍ଷ ନିରୂପଣ, ପ୍ଲକ୍ଷ, ଶାଲ୍ମଳୀ ପ୍ରଭୃତି ଦ୍ୱୀପ ଏବଂ ପାତାଳ ଓ ନରକ ବର୍ଣ୍ଣନ, ସୂର୍ଯ୍ୟାଦି ଗ୍ରହ ସଂସ୍ଥାନ ଓ ଭୂର୍ଲୋକ, ଭୁବର୍ଲୋକର ବିବରଣ, ସୂର୍ଯ୍ୟ ରଥ ଓ ସୂର୍ଯ୍ୟଙ୍କ ଉଦୟାସ୍ତ ବର୍ଣ୍ଣନ, ଗଙ୍ଗାର ଉତ୍ପତ୍ତି, ବୃଷ୍ଟିର କାରଣ, ଚନ୍ଦ୍ରଙ୍କର ହ୍ରାସ ବୃଦ୍ଧି, ଜଡ଼ ଭରତ ଉପାଖ୍ୟାନ, ଋଭୁ ଓ ନିଦାଘ ଉଭୟଙ୍କ ମଧ୍ୟରେ ଆତ୍ମତତ୍ତ୍ୱବିଷୟକ ଉପଦେଶ ବର୍ଣ୍ଣିତ ଅଛି ।

## ତୃତୀୟ ଅଂଶେ

ସ୍ୱାରୋଚିଶାଦି ମନ୍ୱନ୍ତର କଥା, ଶାବର୍ଣ୍ଣି ମନ୍ୱନ୍ତର ଓ କଳ୍ପ ପରିମାଣ, ବ୍ୟାସଙ୍କର ନାମ ଓ ମାହାତ୍ମ୍ୟ, ଯଜୁଃ ଶାଖା ବିବରଣ, ଯାଜ୍ଞବଲ୍କ୍ୟ କୃତ ସୂର୍ଯ୍ୟ ସ୍ତୋତ୍ର, ସାମ ଓ ଅଥର୍ବଣ ଶାଖା ବିଭାଗ, ଚତୁରାଶ୍ରମ, ଜାତକର୍ମାଦି କଥା, ବିବାହଯୋଗ୍ୟା କନ୍ୟାର ଲକ୍ଷଣ, ଗୃହସ୍ଥର ସଦାଚାର, ପ୍ରେତ ଦାହ, ଅଶୌଚ, ଶ୍ରାଦ୍ଧୋପକରଣ, ପିତୃଗୀତା, ବୌଦ୍ଧ ଧର୍ମ ଉତ୍ପତ୍ତି, ନଗ୍ନ ସମ୍ପର୍କ ଦୋଷ ଓ ଶତଧନୁ ରାଜାର ଉପାଖ୍ୟାନ ବର୍ଣ୍ଣିତ ଅଛି ।

## ଚତୁର୍ଥ ଅଂଶେ

ବ୍ରହ୍ମୋତ୍ପତ୍ତି, ରେବତୀ ଜନ୍ମ ଓ ରେବତୀଙ୍କ ସହ ବଳରାମଙ୍କ ବିବାହ, ଦକ୍ଷ ଉତ୍ପତ୍ତି ଓ ପୁରୁରବା କଥା, ଉର୍ବଶୀ ବିବାହ, ରାମଚରିତ, କଂସ ବଧ, କୃଷ୍ଣ ଉପାଖ୍ୟାନ ଏବଂ ଶକୁନ୍ତଳା ଚରିତ ପ୍ରଭୃତି ପୌରାଣିକ ବିଷୟ ଏଥିପୂର୍ବେ ବହୁବାର ବର୍ଣ୍ଣିତ ହୋଇଥିବାରୁ ତାହାର ପୁନରାବୃତ୍ତି କରାଗଲା ନାହିଁ । ଇକ୍ଷ୍ୱାକୁ, କାକୁସ୍ଥ୍ୟ, ଯବନାଶ୍ୱ ଓ ସୌରଭି ଉପାଖ୍ୟାନ, ସର୍ପ ବିନାଶ ମନ୍ତ୍ର, ଅନରଣ୍ୟ, ତ୍ରିଶଙ୍କୁ ଓ ସଗର ଉତ୍ପତ୍ତି, ତିମି ଓ ବଶିଷ୍ଠଙ୍କ ପରସ୍ପର ଶାପ, ସୀତାଙ୍କ ଉତ୍ପତ୍ତି, ଚନ୍ଦ୍ରଙ୍କ ଔରସରେ ବିଶ୍ୱାମିତ୍ର ପ୍ରଭୃତିଙ୍କ ଜନ୍ମକଥା, ଯଯାତି ଉପାଖ୍ୟାନ, ଶନି, ଅନ୍ଧକ ଓ ଶିଶୁପାଳ ଜନ୍ମକଥା, କୃପ ଜନ୍ମ ବୁଧଙ୍କର ଜନ୍ମ, ପାଣ୍ଡୁ ବଂଶାବଳୀ, ନଳ ବଂଶାବଳୀ, ଭବିଷ୍ୟତ ରାଜବଂଶ କଥା, କଳିର ପ୍ରାଦୁର୍ଭାବ କାଳ ନିର୍ଣ୍ଣୟ ବର୍ଣ୍ଣିତ ଅଛି ।

## ପଞ୍ଚମ ଅଂଶେ

ଏହି ଅଂଶରେ ଯଦୁବଂଶ ଉତ୍ପତ୍ତି, ସମ୍ପୂର୍ଣ୍ଣ ଶ୍ରୀକୃଷ୍ଣ ଚରିତ ଓ ପରୀକ୍ଷିତଙ୍କର ଅଭିଷେକ ବୃତ୍ତାନ୍ତ ପର୍ଯ୍ୟନ୍ତ ବର୍ଣ୍ଣନ କରାଯାଇଅଛି ।

## ଷଷ୍ଠ ଅଂଶେ

କଳିଧର୍ମ, ତ୍ରିବିଧ ପ୍ରଳୟ କଥା, ସ୍ୱାଧ୍ୟାୟ ଯୋଗ, ନେମି-ଧ୍ୱଜ ଉପାଖ୍ୟାନ, ଦେହାତ୍ମବାଦୀଗଣର ନିନ୍ଦା, ଯୋଗ ଓ ବ୍ରହ୍ମଜ୍ଞାନ, ନିରାକାର ଓ ସାକାର ଧାରଣା, ବିଷ୍ଣୁଧର୍ମ ଉତ୍ତର, ଶ୍ରୀକୃଷ୍ଣ ଆରାଧନା, ଭକ୍ତିଯୋଗ ଓ କ୍ରିୟା ଯୋଗ ତତ୍ତ୍ୱ କଥା, ଉପବାସ ବିଚାର, ଚାତୁର୍ମାସ୍ୟ ବ୍ରତ, ସାନ୍ତରାୟଣୋପାଖ୍ୟାନ, ମୁକ୍ତାଖ୍ୟାନ, ଗୋଦାନ ମାହାତ୍ମ୍ୟ, ଦାନ ପ୍ରକରଣ, ସତ୍ୟ ପ୍ରଶଂସା, ହରିଭକ୍ତି

ଓ ଦଣ୍ଡନୀତି କଥନ, ଜନକ ଗୀତା, ଜନ୍ମ ରହସ୍ୟ, ଗଜେନ୍ଦ୍ର ମୋକ୍ଷଣ, ଅନୁସ୍ମୃତି, ସ୍ୱଧର୍ମାଚରଣ ପ୍ରଶଂସା, ଅଦିତି ଓ ବାମନସ୍ତବ, ଚନ୍ଦ୍ର ସ୍ତବ, ତ୍ରିବିକ୍ରମ ବ୍ରତ କଥା, ଜଳଧେନୁ ଦାନ, କଳଧେନୁ ଦାନ, ଦେବକୀ ବ୍ରତ, କାରୁଣ୍ୟ ସ୍ତବ, ପରମପଦାଖ୍ୟାନ, ଯୋଗ ସ୍ୱରୂପାଦି, ଯମନିୟମାଦି, ବର୍ଣ୍ଣାଶ୍ରମ ଧର୍ମ, ଉର୍ବଶୀର ଜନ୍ମ ବୃତ୍ତାନ୍ତ, ଶାସ୍ତ୍ର ମାହାତ୍ମ୍ୟ କୀର୍ତ୍ତନ ବର୍ଣ୍ଣିତ ଅଛି ।

## ଶୈବ ବା ବାୟୁ ପୁରାଣ

କେତେକଙ୍କ ମତେ ଶୈବ ଓ ବାୟୁ ପୁରାଣ ଏକ; କିନ୍ତୁ ଅନ୍ୟ କେତେକଙ୍କ ମତେ ଏହା ଭିନ୍ନ । ବିଷ୍ଣୁ, ପଦ୍ମ, ମାର୍କଣ୍ଡେୟ, କୂର୍ମ, ବରାହ, ଲିଙ୍ଗ, ବ୍ରହ୍ମବୈବର୍ତ୍ତ ଭାଗବତ ଓ ସ୍କନ୍ଦ ପୁରାଣ ଏହାକୁ ଶିବପୁରାଣ, ମତ୍ସ୍ୟ, ନାରଦ ଓ ଦେବୀଭାଗବତ ବାୟୁ ପୁରାଣ କହନ୍ତିଏବଂ ମୁଦ୍ଗଳ ଉଭୟ ନାମରେ ଅଭିହିତ କରନ୍ତି । ବାୟୁ ପୁରାଣର ରେବା ମାହାତ୍ମ୍ୟରେ ଲେଖା ଅଛି -

ପୁରାଣଂ ଯନ୍ମୟୋକ୍ତଂ ହି ଚତୁର୍ଥଂ ବାୟୁ ସଂଜ୍ଞିତଂ ।
ଚତୁର୍ବିଂଶତି ସାହସ୍ରଂ ଶିବ ମାହାତ୍ମ୍ୟ ସଂଯୁତଂ ।।
ମହିମାନଂ ଶିବସ୍ୟାହ ପୂର୍ବେ ପାରାଶରଃ କିଳ ।
ଅପରାର୍ଦ୍ଧେତୁ ରେବାୟାଃ ମାହାତ୍ମ୍ୟମତୁଳଂ ମୁନେ ।।
ଯଥା ଶିବ ସ୍ତଥା ଶୈବଂ ପୁରାଣଂ ବାୟୁନୋଦିତଂ ।
ଶିବଭକ୍ତି ସମାଯୋଗାତ୍ ନାମଦ୍ୱୟ ବିଭୂଷିତଂ ।।

ଅର୍ଥାତ୍ ବାୟୁ ପୁରାଣର ଶ୍ଳୋକ ସଂଖ୍ୟା ୨୪୦୦୦ ଓ ଶିବ ମାହାତ୍ମ୍ୟଯୁକ୍ତ । ବ୍ୟାସ ପୂର୍ବଭାଗେ ଶିବ ମହିମା ଏବଂ ଉତ୍ତର ଭାଗେ ରେବା ମାହାତ୍ମ୍ୟ ବର୍ଣ୍ଣିତ ହୋଇଅଛି । ଏହି ପୁରାଣ ଶିବ ମାହାତ୍ମ୍ୟଯୁକ୍ତ ହୋଇଥିବାରୁ ଉଭୟ ନାମେ ପରିଚିତ । କିନ୍ତୁ ନାରଦ ପୁରାଣରେ ବାୟୁପୁରାଣର ଯେ ବିଷୟାନୁକ୍ରମଣିକା ଅଛି, ତହିଁରେ ଏତିକି ମାତ୍ର ପ୍ରଭେଦ ଯେ ଗୟାମାହାତ୍ମ୍ୟ ଅଧିକ ଭାଗେ ଉଲ୍ଲିଖିତ, ଯଥା- ''ଗୟାସୁରସ୍ୟ ହନନଂ ବିସ୍ତରାତ୍ ଯତ୍ର କୀର୍ତ୍ତିତଂ ।'' ଶିବ ପୁରାଣ ବୋଲି ଅନ୍ୟ ଏକ ପୃଥକ୍ ପୁରାଣ ଅଛି, ତହିଁରେ ବାୟୁ ସଂହିତାର କଥା ମଧ୍ୟ ଅଛି, ତହିଁରେ ଲେଖାଅଛି -

ତତ୍ର ଶୈବଂ ତୃତୀୟଂ ଯତ୍ସର୍ବଂ ସର୍ବାର୍ଥ ସାଧକଂ ।
ଗ୍ରନ୍ଥଲକ୍ଷ ପ୍ରମାଣଂ ତଦ୍ ବ୍ୟସ୍ତଂ ଦ୍ୱାଦଶ ସଂହିତଂ ।। ଇତି ।।

ଏହି ମତବୈଷମ୍ୟରୁ ବହୁବିଧ ଆଶଙ୍କା ଜାତ ହୁଏ । ଶିବ ବା ବାୟୁ ପୁରାଣରେ ଗୟା ମାହାତ୍ମ୍ୟ କିପରି ସଂଯୁକ୍ତ ହେଲା ତାହା ବୁଝିବା କଠିନ । ବୋଧହୁଏ ବୈଷ୍ଣବଗଣ ବିଶେଷ ଉଦ୍ଦେଶ୍ୟ ସାଧନାର୍ଥ ଏହି ମାହାତ୍ମ୍ୟ ରଚନା କରିଥିବେ । ଗୟାରେ ବୌଦ୍ଧ ପ୍ରଭାବ ଧ୍ୱଂସପ୍ରାପ୍ତ ହେବା ପରେ ବୈଷ୍ଣବ ପ୍ରଭାବ ପ୍ରସାରିତ ହେଲା । ବୌଦ୍ଧରୂପୀ ଗୟାସୁର ଉପରେ ବିଷ୍ଣୁରୂପୀ ଗଦାଧରଙ୍କ

ପାଦପଦ୍ମ ସ୍ଥାପନ କରି ବିଷ୍ଣୁ ମାହାତ୍ମ୍ୟ ପ୍ରସାର କଲେ । ବାୟୁ ସଂହିତା ବାୟୁ ବା ଶିବ ପୁରାଣର ପ୍ରାଚୀନତମ ସଂସ୍କରଣ ।

## ବାୟୁ ବା ଶିବ ପୁରାଣଗତ ଚରିତ

### ପ୍ରଥମଜ୍ଞାନ ସଂହିତାରେ

ଜ୍ୟୋତିର୍ଲିଙ୍ଗ ଓ ଓଁକାର ପ୍ରାଦୁର୍ଭାବ, ଶିବଙ୍କର ଶବ୍ଦମୟତ୍ୱ, ବିଷ୍ଣୁକୃତ ଶିବସ୍ତବ,ବ୍ରହ୍ମା ଓ ଶିବଙ୍କର ହଂସ, ବରାହରୂପ ଧାରଣ, ସୃଷ୍ଟି ନିରୂପଣ, ଦାକ୍ଷାୟଣିଙ୍କ ଦେହତ୍ୟାଗ ଓ ଶିବ ପୂଜା, ଶିବଙ୍କର ବିବାହ ପ୍ରକରଣ, ଲିଙ୍ଗାର୍ଚ୍ଚନ ବିଧି, ଷୋଡ଼ଶୋପଚାର ଶଙ୍କର ପୂଜା, ଜାନକୀ ଶାପେ କେତକୀ ପୁଷ୍ପର ଶିବ ପୂଜା ନିଷେଧ, ଗଣେଶ ଜନ୍ମ ଓ ଶିବ ପୂଜା ଏବଂ ଶିରଚ୍ଛେଦ, ଗଣେଶଙ୍କ ବିବାହ, ରୁଦ୍ରାକ୍ଷ ମାହାତ୍ମ୍ୟ, ରାବଣ ତପସ୍ୟା ଓ ବୈଦ୍ୟନାଥ ଉତ୍ପତ୍ତି,ରାମେଶ୍ୱର ମାହାତ୍ମ୍ୟ, ପ୍ରହ୍ଲାଦ ଚରିତ, ଶିବାର୍ଜୁନ ଯୁଦ୍ଧ, ବିଲ୍ୱେଶ୍ୱର ମାହାତ୍ମ୍ୟ, ଶିବ ସହସ୍ର ନାମ, ଶିବରାତ୍ରି ବ୍ରତ କଥା, ଶିବଭକ୍ତଗଣର ତତ୍ତ୍ୱ ସାଧନା ବର୍ଣ୍ଣିତ ଅଛି ।

### ଦ୍ୱିତୀୟ ସଂହିତାରେ

ଶିବ ମାହାତ୍ମ୍ୟ, ପୂର୍ଣ୍ଣ ଲିଙ୍ଗ ନିର୍ମାଣ ଓ ମୂର୍ତ୍ତି ପୂଜା, ଶିବକ୍ଷେତ୍ର ତୀର୍ଥ ସେବା ମାହାତ୍ମ୍ୟ, ବ୍ରାହ୍ମଣଙ୍କର ସଦାଚାର ଓ ନିତ୍ୟକର୍ମ, ପାର୍ଥିବ ପ୍ରତିମା ପୂଜା ବିଧି ବର୍ଣ୍ଣିତ ଅଛି ।

### ତୃତୀୟକୈଳାସ ସଂହିତାରେ

କୈଳାସରେ ଶିବଙ୍କୁ ପାର୍ବତୀଙ୍କର ପ୍ରଣବ ଅର୍ଥ ଜିଜ୍ଞାସା, ପ୍ରଣବର ନ୍ୟାସ ପ୍ରଭୃତି, ଯୋଗ, ସଗୁଣ ଶିବ ପୂଜା, ଯତିଗଣର ଅନ୍ତ୍ୟେଷ୍ଟି ପ୍ରକାଶ କଥିତ ଅଛି ।

### ୪ର୍ଥ ଶରତ୍ କୁମାର ସଂହିତା

ଏହି ସଂହିତାରେ ସୃଷ୍ଟି, ସ୍ଥିତି, ଲୟାଦି ବର୍ଣ୍ଣନ ସଙ୍ଗେ ଲିଙ୍ଗପୂଜା ଓ ଶିବ ପ୍ରୀତିକର ଧର୍ମ ଉପଦେଶ, ଭସ୍ମ ପ୍ରଶଂସା, ପ୍ରଣବ ଉପାସନାର ଫଳ, ଶିବ ଧ୍ୟାନ ଯୋଗ, ଶରୀରର ସର୍ବଦେବମୟତ୍ୱ, ନନ୍ଦିର ବୃତ୍ତାନ୍ତ, ତ୍ରିପୁର ଦାହ, ଦେହସ୍ଥିତ ନାଡ଼ୀ ବିବରଣ, ଶୈବ ଜ୍ଞାନ ବର୍ଣ୍ଣିତ ଅଛି ।

### ବାୟବ୍ୟ ସଂହିତା

ଏଥିରେ ପାଶୁପତ ତତ୍ତ୍ୱ, ଶକ୍ତ୍ୟାଦି ସୃଷ୍ଟି, ଦକ୍ଷ ଯଜ୍ଞ ବୃତ୍ତାନ୍ତ, ଶୁମ୍ଭ ନିଶୁମ୍ଭ ବଧପାଇଁ ଗୌରୀଙ୍କର କୌଶିକୀ ରୂପେ ଆବିର୍ଭାବ, ବାୟୁର ସବିସ୍ତର ମୁକ୍ତି କାରଣ, ସଦୁପଦେଶ କର୍ମାଦିଦ୍ୱାରା ପାଶୁପତ ଯୋଗେ ମୁକ୍ତିଲାଭ ବର୍ଣ୍ଣିତ ହୋଇଅଛି ।

## ଉତ୍ତର ଭାଗେ

ଶ୍ରୀକୃଷ୍ଣଙ୍କ ପ୍ରତି ଉପମନ୍ୟୁର ପାଶୁପତ ଜ୍ଞାନ କଥନ, ସ୍ତ୍ରୀପୁଂସାତ୍ମକ ବିଶ୍ୱ ପ୍ରପଞ୍ଚ କଥା, ପରାପରାଦି ଭେଦରେ ଦ୍ୱିବିଧ ବ୍ରହ୍ମରୂପର ବାସ୍ତବିକତା, ସାଧନାଦ୍ୱାରା ଶିବ ପ୍ରାପ୍ତି କ୍ଷମତ୍ୱ, ଦେବଗଣଙ୍କ ପ୍ରତି ଶଙ୍କରଙ୍କର ବେଦସାର ଜ୍ଞାନ ଉପଦେଶ, ଦ୍ୱାଦଶାଧିକ ଶତ ଶିବାବତାର, କଳ୍ପ ଯୁଗେଶ୍ୱର କଥା, ସର୍ବ ବର୍ଣ୍ଣୋଚିତ ଶିବଧର୍ମ, ପଞ୍ଚାକ୍ଷର ମନ୍ତ୍ର ସ୍ୱରୂପ, ଶୈବମାନଙ୍କର ସାଧନା, ଅଭିଷେକ, ସଂସ୍କାର, ଆହ୍ନିକ, ଅନ୍ତର୍ଯାଗ ଓ ବହିର୍ଯାଗ, ପୂଜା ବିଧି, ହୋମ କୁଣ୍ଡ ପରିମାଣ, କାମ୍ୟ ଶିବ ପୂଜା, ଶିବସ୍ତୋତ୍ର, ଶିବ ପୂଜା ଫଳରେ ବ୍ରହ୍ମପଦ ପ୍ରାପ୍ତି, ଯୋଗ ଉପଦେଶ କଥିତ ଅଛି ।

## ଧର୍ମ ସଂହିତା

ଏଥିରେ ଶିବ ମନ୍ତ୍ର ଦୀକ୍ଷା, ଶୁକ୍ରଙ୍କ ଶିବ ଜଠର ଗମନ, ଗୌରୀବେଶରେ ଅପ୍‌ସରା ଗଣର ମହାଦେବ ସହ ବିହାର,ଉଷା ଅନିରୁଦ୍ଧ ମିଳନ, କାମତତ୍ତ୍ୱାଦି ନିରୂପଣ ଓ ଭେଦ, ଶ୍ରୀରାମଙ୍କର କାମାଧୀନତ୍ୱ ପ୍ରସ୍ତାବ, ଶିବଭକ୍ତ ପୂଜା ଫଳ, ଧର୍ମ ପ୍ରସଙ୍ଗେ ଅନ୍ନଜଳ ଦାନାଦି ମାହାତ୍ମ୍ୟ, ଶିବ ସହସ୍ର ନାମ, ନରକାଦି ବର୍ଣ୍ଣନ, ମୃତ୍ୟୁଞ୍ଜୟ ଉଦ୍ଧାର କଥା, ଅଘୋର, ବାମଦେବ, ସଦ୍ୟୋଜାତ କଳ୍ପ କଥା, ସ୍ତ୍ରୀ ସ୍ୱଭାବ ବର୍ଣ୍ଣନ, ବିବାହ ବିବରଣ, ମୃତ୍ୟୁଚିହ୍ନ ଓ ଆୟୁ ବିବରଣ, ଦେବ, ଦାନବ ଓ ଗନ୍ଧର୍ବଙ୍କର ସୃଷ୍ଟି ପ୍ରକରଣ, ସୂର୍ଯ୍ୟ ଓ ଚନ୍ଦ୍ରବଂଶ ପ୍ରକରଣ ପ୍ରଦତ୍ତ ହୋଇଅଛି ।

## ଭାଗବତ

ଭାଗବତର ମହାପୁରାଣତ୍ୱ ଓ ମୌଳିକତ୍ୱ ସମ୍ବନ୍ଧେ ନାନାମତ ପ୍ରଚଳିତ ଅଛି; ବୈଷ୍ଣବମାନେ ବିଷ୍ଣୁ ମହିମା ପ୍ରକାଶକ ଶ୍ରୀମଦ୍‌ଭାଗବତକୁ ଏବଂ ଶାକ୍ତମାନେ ଶକ୍ତି ମାହାତ୍ମ୍ୟ ପୂର୍ଣ୍ଣ ଦେବୀ ଭାଗବତକୁ ମହାପୁରାଣ ବୋଲି ସ୍ୱୀକାର କରନ୍ତି । ଉଭୟ ଭାଗବତ ୧୮୦୦୦ ଶ୍ଳୋକ ଓ ଦ୍ୱାଦଶସ୍କନ୍ଧରେ ସମ୍ପୂର୍ଣ୍ଣ ହୋଇଅଛି । ମତ୍ସ୍ୟପୁରାଣ ମତରେ-

ଯତ୍ରାଧିକୃତ୍ୟ ଗାୟତ୍ରୀଂ ବର୍ଣ୍ଣ୍ୟତେ ଧର୍ମବିସ୍ତରଃ ।
ବୃତ୍ରାସୁର ବଧୋପେତଂ ତଦ୍ଭାଗବତ ମୁଚ୍ୟତେ ।।
ସାରସ୍ୱତସ୍ୟ କଳ୍ପସ୍ୟ ମଧ୍ୟେ ଯେ ସ୍ୟୁଃ ନରାମରାଃ ।
ତଦ୍‌ବୃତ୍ତାନ୍ତୋଦ୍ଭବଂ ଲୋକେ ତଦ୍ଭାଗବତ ମୁଚ୍ୟତେ ।।'

ଅର୍ଥାତ୍ ଯେଉଁ ଗ୍ରନ୍ଥରେ ଗାୟତ୍ରୀ ଅବଲମ୍ବନପୂର୍ବକ ଧର୍ମତତ୍ତ୍ୱ ବର୍ଣ୍ଣିତ, ଯହିଁରେ ବୃତ୍ରାସୁର ବଧ ବୃତ୍ତାନ୍ତ ସଂଯୁକ୍ତ, ତାହା ହିଁ ଭାଗବତ ନାମେ ପ୍ରସିଦ୍ଧ, ଏବଂ ସାରସ୍ୱତ କଳ୍ପ ମଧ୍ୟରେ ଯେଉଁ ନର ଓ ଅମରଗଣର ବିଷୟ ଅଛି, ତଦ୍ ବୃତ୍ତାନ୍ତ ସମ୍ବଳିତ ଗ୍ରନ୍ଥ ସୁଦ୍ଧା ଭାଗବତ । ପଦ୍ମ ପୁରାଣରେ ଲେଖାଅଛି -

ପୁରାଣେଷୁ ଚ ସର୍ବୋଷୁ ଶ୍ରୀମଦ୍ଭାଗବତଂ ପରଂ ।
ଯତ୍ର ପ୍ରତିପଦଂ କୃଷ୍ଣୋ ଗୀୟତେ ବହୁଦର୍ଶିଭିଃ ।।
ଶ୍ରୀମଦ୍ଭାଗବତଂ ଶାସ୍ତ୍ରଂ କଲୌ କୃଷ୍ଣେନ ଭାଷିତଂ ।
ପରୀକ୍ଷିତେ କଥାଂ ବକ୍ତୁଂ ସଭାୟାଂ ସଂସ୍ଥିତେ ଶୁକେ ।।

ଅର୍ଥାତ୍ କୃଷ୍ଣମାହାତ୍ମ୍ୟ ବର୍ଣ୍ଣିତ ଯେଉଁ ଗ୍ରନ୍ଥ ପରୀକ୍ଷିତଙ୍କୁ ଶୁକ କହିଥିଲେ ସେହି ଭାଗବତ ଗ୍ରନ୍ଥ ସମସ୍ତ ପୁରାଣ ମଧ୍ୟରେ ଶ୍ରେଷ୍ଠ । ଉଭୟ ଭାଗବତଙ୍କୁ ମହାପୁରାଣ ରୂପେ ଗ୍ରହଣ କରିବା ବିଷୟ ନେଇ ଅନ୍ୟାନ୍ୟ ପୁରାଣରେ ନାନା ପ୍ରମାଣ ଦେଖାଯାଏ । ଭାଗବତ ନାମରେ ଅନ୍ୟ ଏକ ଉପପୁରାଣ ମଧ୍ୟ ଅଛି, ଯଥା -

ଆଦ୍ୟଂ ସନତ୍କୁମାରୋକ୍ତଂ ନରସିଂହମତଃପରଂ ।
ପରାଶରୋକ୍ତଂ ପ୍ରବରଂ ତଥା ଭାଗବତାଦ୍ୱୟଂ ।।

ଭାଗବତ ଟୀକାକାର ଶ୍ରୀଧର ସ୍ୱାମୀ ଲେଖିଅଛନ୍ତି, ''ଭାଗବତଂ ନାମ ଅନ୍ୟଦିତ୍ୟପି ନାଶଙ୍କନୀୟଂ'' ଅର୍ଥାତ୍ ଭାଗବତ ନାମରେ ଅନ୍ୟ ପୁସ୍ତକ ଥିବା ଆଶଙ୍କା କର ନାହିଁ; ବୋଧହୁଏ ସେ ସମୟରେ ସୁଦ୍ଧା ଅନ୍ୟ ଭାଗବତ ଥିଲା । ଭାଗବତର ପ୍ରଥମସ୍କନ୍ଧ, ଚତୁର୍ଥ ଓ ଷଷ୍ଠାଧ୍ୟାୟରେ ଅଛି, ''ବ୍ୟାସଦେବ ଚାରିବେଦ ବିଭାଗ, ପଞ୍ଚମ ଓ ବେଦ ସ୍ୱରୂପ ଇତିହାସ, ପୁରାଣ ସମସ୍ତ ସଂକଳନ କରି ସ୍ତ୍ରୀ ଶୂଦ୍ର ଓ ନିନ୍ଦିତ ବ୍ରାହ୍ମଣଙ୍କ ଲାଗି ମହାଭାରତ ରଚନା କରି ମଧ୍ୟ ଅତୃପ୍ତ ହୋଇ ନାରଦଙ୍କ ଉପଦେଶମତେ ହରିକଥାମୃତ ରୂପ ଭାଗବତ ରଚନା କରି ତୃପ୍ତହେଲେ'' । ଏତଦ୍ୱାରା ଜଣାଯାଏ ଯେ ପୁରାଣ ଓ ଇତିହାସ ରଚନା ପରେ ଭାଗବତ ରଚିତ ହେଲା । ତେବେ ଅନ୍ୟାନ୍ୟ ପୁରାଣମତେ ଭାଗବତ ପଞ୍ଚମ ପୁରାଣ ହେଲା କିପରି? ଶ୍ରୀମଦ୍ଭାଗବତରେ ପୁରାଣ ଲକ୍ଷଣ ଲେଖାଅଛି -

ସର୍ଗୋଽସ୍ୟାଥ ବିସର୍ଗଶ୍ଚ ବୃତ୍ତିରକ୍ଷାନ୍ତରାଣି ଚ ।
ବଂଶୋ ବଂଶାନୁଚରିତଂ ସଂସ୍ଥାହେତୁରପାଶ୍ରୟଃ ।
ଦଶଭିଃ ଲକ୍ଷଣୈର୍ୟୁକ୍ତଂ ପୁରାଣଂ ତଦ୍ବିଦୋ ବିଦୁଃ ।।

ସର୍ଗ, ବିସର୍ଗ, ସଂସ୍ଥା, ରକ୍ଷା, ମନ୍ୱନ୍ତର, ବଂଶ, ବଂଶାନୁଚରିତ, ପ୍ରଳୟ ହେତୁ ଓ ଅପାଶ୍ରୟ ମହାପୁରାଣର ଏ ଦଶଗୋଟି ଲକ୍ଷଣ । ଅନ୍ୟ ସମସ୍ତ ପୁରାଣ ମତରେ ମହାପୁରାଣ ପଞ୍ଚ ଲକ୍ଷଣଯୁକ୍ତ ଏବଂ ଅମରସିଂହାଦି ପ୍ରମୁଖ ମଧ୍ୟ ପୁରାଣର ପଞ୍ଚ ଲକ୍ଷଣ ସ୍ୱୀକାର କରନ୍ତି, ଭାଗବତ ବ୍ରହ୍ମବୈବର୍ତ୍ତ ବିନା କେହି ହେଲେ ପୁରାଣର ଦଶ ଲକ୍ଷଣ ଗ୍ରହଣ କରି ନାହାନ୍ତି । ଏପରି ସ୍ଥିତିରେ ଭାଗବତୋକ୍ତି ଅମରସିଂହଙ୍କର ପରବର୍ତ୍ତୀ ବୋଲି ସୂଚିତ ହୁଏ ଏବଂ ପ୍ରାଚୀନ ପୁରାଣ ମଧ୍ୟରେ ଭାଗବତକୁ ସ୍ଥାନ ଦେବା ଲାଗି ଆଶଙ୍କା ହୁଏ । ଅନ୍ୟଚ ଭାଗବତରେ ବଂଶ ଲକ୍ଷଣ ଲେଖା ଅଛି, ''ରାଜ୍ଞାଂ ବ୍ରହ୍ମ ପ୍ରସୂତାନାଂ ବଂଶ ସ୍ତ୍ରୈକାଳିକୋଽନ୍ୱୟଃ' । ବ୍ରହ୍ମୋଦ୍ଭବ ଶୁଦ୍ଧ ବଂଶୀୟ ରାଜଗଣର

ତୈକାଳିକ ପୁରୁଷ ପରମ୍ପରା ବର୍ଣ୍ଣନର ନାମ ବଂଶ । ଉକ୍ତ ବଂଶ ଲକ୍ଷଣର ଯେପରି ନିରୁକ୍ତି ଦିଆ ହୋଇଅଛି ତାହା ମଧ୍ୟ ପ୍ରାଚୀନ ଶାସ୍ତ୍ରସମ୍ମତ ନୁହେଁ । କୁମାରିଲ୍ଲ ଭଟ୍ଟଙ୍କ ସମୟରେ ମଧ୍ୟ ବଂଶାନୁକ୍ରମ ଓ ଭାବୀକଥନ ଏ ଦୁଇଟି ସ୍ୱତନ୍ତ୍ର ବିଷୟ ଥିଲା; କିନ୍ତୁ ଯେଉଁ ସମୟରେ ଭବିଷ୍ୟତ୍ ରାଜବଂଶ ବର୍ଣ୍ଣନ ପୁରାଣର ବିଷୟୀଭୂତ ହେଲା ଭାଗବତ ତାହାର ପରବର୍ତ୍ତୀ ରଚନା ବୋଲି ଅନୁମିତ ହୁଏ । ଅନେକ ପଣ୍ଡିତଙ୍କର ମତରେ ଭାଗବତ ଗ୍ରନ୍ଥ ଦର୍ଶନ ଶାସ୍ତ୍ର ପରିପୋଷକ ପୌରାଣିକ ଗ୍ରନ୍ଥ ମାତ୍ର । ହିନ୍ଦୁମାନେ ପୁରାଣ, ଭାଗବତ ଓ ମହାଭାରତ ଜଣକର ଲେଖନୀପ୍ରସୂତ ବୋଲି କହନ୍ତି, କିନ୍ତୁ ରଚନା ପରିପାଟୀଦ୍ୱାରା ସେପରି ବୋଧ ହେଉନାହିଁ । ବ୍ରହ୍ମା, ବିଷ୍ଣୁ, ବ୍ରହ୍ମାଣ୍ଡ ପୁରାଣ ଓ ମହାଭାରତର ଭାଷା ଯେପରି ସରଳ, ଓଜସ୍ୱିନୀ ଓ ଗାମ୍ଭୀର୍ଯ୍ୟଶାଳିନୀ ଭାଗବତର ଭାଷା ସେପରି ନୁହେଁ । ଏହାର ଅନେକ ସ୍ଥାନ କଠିନ ଅଳଂକାରଯୁକ୍ତ, ବିବିଧ ଛନ୍ଦୋବିଶିଷ୍ଟ, ଗଭୀର ଚିନ୍ତା ସମ୍ଭୂତ । ଏହି ଭାଗବତ ଯଥାର୍ଥରେ ନାନାଖ୍ୟାନଯୁକ୍ତ ଦାର୍ଶନିକ ଗ୍ରନ୍ଥ । ଗୀତାରେ ପଞ୍ଚରାତ୍ର ଓ ଭାଗବତଗଣ ଯେଉଁ ଦାର୍ଶନିକ ମତ ସ୍ୱୀକାର କରନ୍ତି, ବେଦାନ୍ତ ମତ ସହିତ ସେ ସକଳ ତତ୍ତ୍ୱ ନାନା ଉପାଖ୍ୟାନଦ୍ୱାରା ବୁଝାଇବା ଲାଗି ଭାଗବତର ସୃଷ୍ଟି । ଅତଏବ ଦାର୍ଶନିକ ଜଗତରେ ଭାଗବତର ଅତ୍ୟଧିକ ସମାଦର । ଶ୍ରୀମଦ୍ ଭାଗବତ ପ୍ରତି ହିନ୍ଦୁମାନଙ୍କର ପ୍ରଗାଢ଼ ଅନୁରାଗ, ବିଶେଷ ସମ୍ମାନ ଓ ଉତ୍କୃଷ୍ଟ ଭକ୍ତି ଥିବା ଦେଖାଯାଏ । ଲେଖାଅଛି-

''ସର୍ବବେଦାନ୍ତସାରଂ ହିଁ ଶ୍ରୀଭାଗବତ ମିଷ୍ୟତେ ।
ତଦ୍ରସାମୃତତୃପ୍ତସ୍ୟ ନାନ୍ୟତ୍ରସ୍ୟାଦ୍ରତିଃ କ୍ୱଚିତ୍ ।''

ବିଷ୍ଣୁ ଭାଗବତରେ ଯେପରି ଭଦ୍ରକାଳୀ ମାହାତ୍ମ୍ୟ ସୂଚିତ, ଦେବୀ ଭାଗବତରେ ମଧ୍ୟ ସେପରି ରାଧାଙ୍କର ମାହାତ୍ମ୍ୟ ବିବୃତ । ବିଷ୍ଣୁ ଭାଗବତ ଯେପରି ଦାର୍ଶନିକ ତତ୍ତ୍ୱପ୍ରଧାନ, ଦେବୀ ଭାଗବତ ସେପରି ତନ୍ତ୍ରାନୁସାରୀ । ଦେବୀ ଯାମଳ ପ୍ରଭୃତି ତାନ୍ତ୍ରିକ ଗ୍ରନ୍ଥରେ ଦେବୀ ଭାଗବତର ପ୍ରାଧାନ୍ୟ ସ୍ୱୀକୃତ ହୋଇଅଛି । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ତାନ୍ତ୍ରିକ ମତ ବିଶେଷ ପ୍ରଚଳିତ ଥିଲା । ସେହି ସମୟରେ ଦେବତାଦିର ମୂର୍ତ୍ତିନିର୍ମିତ ହୋଇ ପ୍ରତିଷ୍ଠା ପୂଜାଦି ତାନ୍ତ୍ରିକ କ୍ରିୟାନୁଷ୍ଠାନରେ ପ୍ରବର୍ତ୍ତିତ ଗ୍ରନ୍ଥ ଦେବୀ ଭାଗବତ ନାମେ ଖ୍ୟାତ । ଶ୍ରୀମଦ୍ଭାଗବତରେ ବହୁ ପ୍ରାଚୀନ କଥାର ଉଲ୍ଲେଖ ଥିଲେ ମଧ୍ୟ ତାନ୍ତ୍ରିକ ପ୍ରଭାବର ଫଳ, ବିଷ୍ଣୁ ଭାଗବତରେ ରାଧାର ନାମ ଗନ୍ଧ ନାହିଁ, ଗ୍ରନ୍ଥ ରଚନାବେଳେ ରାଧା ଉପାସନା ପ୍ରଚଳିତ ହୋଇଥିଲେ, ଅବଶ୍ୟ ତହିଁରେ ରାଧା ମାହାତ୍ମ୍ୟ କଥିତ ହୋଇଥାନ୍ତା । ସେତେବେଳେ ରାଧା ବୈଷ୍ଣବ ସମାଜରେ ଗୃହୀତ ହୋଇ ନାହାନ୍ତି, କିନ୍ତୁ ଦେବୀ ଭାଗବତର ଯେଉଁ ଅଂଶରେ ରାଧା ଚରିତ ଅଛି ତାହା ବିଷ୍ଣୁ ଭାଗବତର ରଚନା ପରେ ରଚିତ । ବିଷ୍ଣୁ ଭାଗବତ ସମ୍ପୂର୍ଣ୍ଣ ହେବା ପରେ ଦେବୀ ଭାଗବତର ବର୍ତ୍ତମାନ ଆକାର । ଉପରୋକ୍ତ ଉଭୟ ଭାଗବତର ଆଲୋଚନାଦ୍ୱାରା ସ୍ପଷ୍ଟ ହୁଏ ଯେ ପୂର୍ବେ ଖଣ୍ଡିଏ ମାତ୍ର ଭାଗବତ ଥିଲା । ବୌଦ୍ଧ ପ୍ରଭାବରେ ବ୍ରହ୍ମଣ୍ୟ ଧର୍ମର ଶୋଚନୀୟ ପରିଣାମ ସହିତ ସେହି ପୁରାତନ ଭାଗବତ ଲୁପ୍ତ ହେବାର ଉପକ୍ରମ ହେଲା । କାଳକ୍ରମେ ପୁନର୍ବାର ବ୍ରାହ୍ମଣ୍ୟ ଧର୍ମର ଅଭ୍ୟୁତ୍ଥାନ ସଙ୍ଗେ

ସଙ୍ଗେ ବୈଷ୍ଣବାଦି ନାନା ସମ୍ପ୍ରଦାୟ ପ୍ରବଳ ଭାବେ ଉଠି ସେହି ପୁରାତନ ପୁସ୍ତକର ଆକାର ବୈଷ୍ଣବ ଦାର୍ଶନିକଗଣ ଶ୍ରୀମଦ୍‌ଭାଗବତ ରୂପେ, ଶାକ୍ତମାନେ ଦେବୀଭାଗବତ ରୂପେ ବୃଦ୍ଧି କଲେ ସେଥିଲାଗି ଶ୍ଳୋକସଂଖ୍ୟା ଓ ସ୍କନ୍ଧ ପ୍ରଭୃତିରେଏତେ ସାମଞ୍ଜସ୍ୟ ।

## ଦେବୀ ଭାଗବତ

ଏଥିରେ ଭଗବତୀ ସ୍ତୁତି, ଗ୍ରହ ସଂଖ୍ୟା ନିର୍ଦ୍ଦେଶ, ନୈମିଷାରଣ୍ୟ ମାହାତ୍ମ୍ୟ, ଶୁକଦେବ ଜନ୍ମ ବିଷୟକ ପ୍ରଶ୍ନ, ଶକ୍ତି ସକଳର କାରଣ, ଦେବୀ ମାହାତ୍ମ୍ୟ ବର୍ଣ୍ଣନ, ବ୍ରହ୍ମାଦି ଦେବଗଣଙ୍କଦ୍ୱାରା ବିଷ୍ଣୁଙ୍କ ନିଦ୍ରାଭଙ୍ଗ ମନ୍ତ୍ରଣା, ବିଷ୍ଣୁଙ୍କ ଛିନ୍ନ ମସ୍ତକ ଅନ୍ତର୍ଦ୍ଧାନ, ମସ୍ତକ ଛେଦନ ବିଷୟରେ ଆକାଶ ବାଣୀ, ହୟଗ୍ରୀବ ଦୈତ୍ୟର ମସ୍ତକ ଛିନ୍ନ କରି ବିଷ୍ଣୁଙ୍କ ଗ୍ରୀବା ଦେଶରେ ସଂଯୋଜନ, ମଧୁକୈଟର ଉତ୍ପତ୍ତି, ବାକ୍‌ବୀଜର ଉପାସନା, ବିଷ୍ଣୁସ୍ତବ, ବ୍ରହ୍ମକର୍ତ୍ତୃକ ଭଗବତୀ ସ୍ତବ, ବିଷ୍ଣୁ ଶରୀରରୁ ଯୋଗ ନିଦ୍ରାଙ୍କର ନିଃସରଣ, ଶକ୍ତିର ପ୍ରାଧାନ୍ୟ ବର୍ଣ୍ଣନ, ବିଷ୍ଣୁ କର୍ତ୍ତୃକ ମହାମାୟା ସ୍ତବ, ମଧୁକୈଟର ବଧ, ବ୍ୟାସଙ୍କର ଘୃତାଚୀ ଅପ୍‌ସରା ଦର୍ଶନ, ସୁଦ୍ୟୁମ୍ନ ନୃପତିଙ୍କ ରମଣୀତ୍ୱ ପ୍ରାପ୍ତି, ଇଳା ନାମ ଖ୍ୟାତି, ଇଳା ବୁଧର ମିଳନରୁ ପୁରୁରବା ଜନ୍ମ, ଘୃତାଚୀର ଶୁକୀରୂପ ଧାରଣ ଓ ଶୁକଦେବୋତ୍ପତ୍ତି, ଶୁକଦେବ ଚରିତ, ବିଷ୍ଣୁ କର୍ତ୍ତୃକ ଶ୍ଳୋକାର୍ଦ୍ଧର ମାହାତ୍ମ୍ୟ ବର୍ଣ୍ଣନ, ଶୁକଦେବଙ୍କର ମିଥିଲା ଗମନ, ଜନକଙ୍କ ସହିତ ଶୁକଙ୍କ ବିଚାର, ଶୁକଦେବ ବିବାହ, ଶୁକର ପ୍ରସ୍ଥାନ, ବ୍ୟାସଙ୍କର ଦାସ ରାଜାଙ୍କ ସହିତ ମିଳନ, ଶାନ୍ତନୁ ନୃପଙ୍କ ମୃତ୍ୟୁ, ବିଚିତ୍ରବୀର୍ଯ୍ୟଙ୍କ ରାଜ୍ୟପ୍ରାପ୍ତି, ଭୀଷ୍ମ କର୍ତ୍ତୃକ କାଶୀରାଜକନ୍ୟା ସମ୍ବାଳିକା ପ୍ରଭୃତିଙ୍କ ହରଣ ଓ ଧୃତରାଷ୍ଟ୍ର ଉତ୍ପତ୍ତି ବର୍ଣ୍ଣିତ ।

## ଦ୍ୱିତୀୟ ସ୍କନ୍ଧେ

ପରାଶର ଓ ମତ୍ସ୍ୟଗନ୍ଧାଙ୍କ ମିଳନରୁ ବ୍ୟାସଦେବଙ୍କ ଜନ୍ମବୃତ୍ତାନ୍ତ, ଶାନ୍ତନୁଙ୍କ ସହ ଗଙ୍ଗାଙ୍କ ବିବାହ, ବସୁରୂପୀ ଭୀଷ୍ମଙ୍କର ଜନ୍ମ, କର୍ଣ୍ଣ ଜନ୍ମ, କୁନ୍ତୀଙ୍କର ବିବାହ, ଯୁଧିଷ୍ଠିର ପ୍ରଭୃତିଙ୍କ ଜନ୍ମ ବୃତ୍ତାନ୍ତ, ପରୀକ୍ଷିତ ଜନ୍ମ, ରାମକୃଷ୍ଣ ଚରିତ, ପରୀକ୍ଷିତଙ୍କ ପ୍ରତି ବ୍ରହ୍ମଶାପ; ରୁରୁପତ୍ନୀର ସର୍ପ ଦଂଶନେ ମୃତ୍ୟୁ ଓ ପୁନର୍ଜୀବନ ଲାଭ, ତକ୍ଷକର ବ୍ରାହ୍ମଣ ବେଶେ ଆଗମନ, ତକ୍ଷକ ଦଂଶନେ ପରୀକ୍ଷିତଙ୍କର ମୃତ୍ୟୁ, ହସ୍ତିନାରେ ଜନ୍ମେଜୟଙ୍କ ସିଂହାସନାରୋହଣ ଓ ସର୍ପ ଯଜ୍ଞ ଆରମ୍ଭ, ଆସ୍ତିକ କର୍ତ୍ତୃକ ସର୍ପ ଯଜ୍ଞ ନିବାରଣ, ଜରତ୍‌କାରୁ ମୁନି ଚରିତ ଓ ଆସ୍ତିକ ଜନ୍ମ ବୃତ୍ତାନ୍ତ ବର୍ଣ୍ଣିତ ଅଛି ।

## ତୃତୀୟ ସ୍କନ୍ଧେ

ଜନ୍ମ ଲଭିବାପାଇଁ ବ୍ରହ୍ମାଙ୍କର ପଦ୍ମନାଳ ମଧ୍ୟେ ଗମନ, ଶେଷଶାୟୀ ଜନାର୍ଦ୍ଦନ ଦର୍ଶନ, ବ୍ରହ୍ମାଦି ଦେବଗଣ ଦେବୀଦତ୍ତ ବିମାନରେ ଆରୋହଣ କରି ଅନ୍ୟ ବ୍ରହ୍ମା ଶିବ ବିଷ୍ଣୁଙ୍କ ଦର୍ଶନାର୍ଥ ଯାତ୍ରା, ଭଗବତୀ ସମୀପେ ବ୍ରହ୍ମାଦିଙ୍କର ରମଣୀତ୍ୱ ପ୍ରାପ୍ତି, ତ୍ରିମୂର୍ତ୍ତି କର୍ତ୍ତୃକ ଦେବୀ

ସ୍ତବ, ବ୍ରହ୍ମାଦିଙ୍କୁ ସରସ୍ୱତୀ, ମହାଲକ୍ଷ୍ମୀ, ମହାକାଳୀ ପ୍ରଦାନ, ନିର୍ଗୁଣ ତତ୍ତ୍ୱ କଥନ, ତତ୍ତ୍ୱ ସ୍ୱରୂପ ବର୍ଣ୍ଣନ, ଗୁଣ ସମୂହର ଲକ୍ଷଣ, ବ୍ୟାସ ଓ ଯମଦଗ୍ନିଙ୍କର ତତ୍ତ୍ୱ ପ୍ରଶ୍ନ, ଲୋମଶଦ୍ୱାରା ଉକ୍ତ ପ୍ରଶ୍ନର ମୀମାଂସା, ସତ୍ୟବ୍ରତ ଋଷି ଉପାଖ୍ୟାନ, ଦେବଦତ୍ତର ପୁତ୍ରଲାଭ ଓ ଉତଥ୍ୟଙ୍କର ବୈରାଗ୍ୟ, ସତ୍ୟବ୍ରତର ସରସ୍ୱତୀ ବୀଜ ମାହାତ୍ମ୍ୟରେ ସର୍ବଜ୍ଞତ୍ୱ ପ୍ରାପ୍ତି, ଦେବୀ ମାହାତ୍ମ୍ୟ, ଅମ୍ବାଯଜ୍ଞ ବିଧି ବର୍ଣ୍ଣନ, ଧ୍ରୁବସନ୍ଧି ରାଜାର ବୃତ୍ତାନ୍ତ, ଯୋଦ୍ଧାଜିତ୍ ଓ ବୀରସେନର ଯୁଦ୍ଧ, ସୁଦର୍ଶନ ସହିତ ଲୀଳାବତୀର ପ୍ରସ୍ଥାନ, ସୁଦର୍ଶନ ବିନାଶ ଇଚ୍ଛାରେ ଯୋଦ୍ଧାଜିତ୍‌ର ଭରଦ୍ୱାଜ ଆଶ୍ରମେ ଗମନ, ଜୟଦ୍ରଥର ଦ୍ରୌପଦୀ ହରଣ ବୃତ୍ତାନ୍ତ, ବିଶ୍ୱାମିତ୍ର କଥା, କାଶୀ ରାଜକନ୍ୟା ଶଶିକଳାର ସ୍ୱୟଂବର, ସୁଦର୍ଶନ ସହିତ ବିବାହ, ସୁଦର୍ଶନ ସହିତ ଅନ୍ୟ ରାଜଗଣର ଯୁଦ୍ଧ, ଦେବୀଙ୍କର ଆବିର୍ଭାବ, ଦୁର୍ଗାଙ୍କର କାଶୀବାସ, ସୁଦର୍ଶନର ଅଯୋଧ୍ୟା ଗମନ, ନବରାତ୍ର ବ୍ରତ ବିଧି, ସୁଶୀଳ ବଣିକ ଉପାଖ୍ୟାନ, କୁମାରୀ ବିଧି, (୨୮ ଅଧ୍ୟାୟଠାରୁ ତୃତୀୟ ସ୍କନ୍ଧ ଶେଷ ପର୍ଯ୍ୟନ୍ତ ଶ୍ରୀରାମ ଚରିତେ ସୀତାହରଣ ପ୍ରସଙ୍ଗେ ନାରଦ କର୍ତ୍ତୃକ ରାମଙ୍କୁ ନବରାତ୍ର ବିଧି ଉପଦେଶ ଓ ରାବଣ ବଧ ଚରିତ ବର୍ଣ୍ଣିତ ଅଛି )।

## ଚତୁର୍ଥ ସ୍କନ୍ଧେ

କର୍ମଫଳର ପ୍ରାଧାନ୍ୟ ନିର୍ଣ୍ଣୟ, ଇନ୍ଦ୍ର କର୍ତ୍ତୃକ ବଜ୍ରଦ୍ୱାରା ଦିତିର ଗର୍ଭ ଛେଦନ, ମାୟାର ପ୍ରାଧାନ୍ୟ କୀର୍ତ୍ତନ, ନର ନାରାୟଣ ବୃତ୍ତାନ୍ତ, ବ୍ରହ୍ମାଣ୍ଡେ-ଅହଙ୍କାର ବୃତ୍ତାନ୍ତ ବର୍ଣ୍ଣନ, ପ୍ରହ୍ଲାଦର ନରନାରାୟଣ ଦର୍ଶନ, ପ୍ରହ୍ଲାଦ ସହିତ ଇନ୍ଦ୍ରଙ୍କର ଯୁଦ୍ଧ, ଦୈତ୍ୟଗଣର ଶୁକ୍ର ସମୀପେ ଗମନ, ପୁତ୍ରଲାଭାର୍ଥ ଶୁକ୍ରଙ୍କର ତପସ୍ୟା, ଦେବଗଣ କର୍ତ୍ତୃକ ଶୁକ୍ରଜନନୀ ବଧ, ବିଷ୍ଣୁଙ୍କ ପ୍ରତି ଭୃଗୁଙ୍କ ଶାପ, ଇନ୍ଦ୍ର ନିଜ କନ୍ୟା ଜୟନ୍ତୀଙ୍କୁ ଶୁକ୍ର ନିକଟକୁ ପଠାଇବା, ଶୁକ୍ରଙ୍କର ଜୟନ୍ତୀଙ୍କୁ ପତ୍ନୀ ରୂପେ ଗ୍ରହଣ, ଦୈତ୍ୟଙ୍କୁ ଶୁକ୍ର ରୂପେ ବୃହସ୍ପତି ପ୍ରବଞ୍ଚନା କରିବା, ଦୈତ୍ୟଗଣ କର୍ତ୍ତୃକ ପ୍ରକୃତ ଶୁକ୍ରାଚାର୍ଯ୍ୟଙ୍କର ପ୍ରତ୍ୟାଖ୍ୟାନ ଓ ପୁନର୍ବାର ଦୈତ୍ୟ ପକ୍ଷାବଲମ୍ବନ, ଦେବଦାନବ ଯୁଦ୍ଧ, ପ୍ରହ୍ଲାଦ କର୍ତ୍ତୃକ ଭଗବତୀ ସ୍ତୁତିପାଠ, ବିଷ୍ଣୁଙ୍କ ନାମ ଓ ଅବତାର କଥନ, ବିଷ୍ଣୁ ପ୍ରଭୃତି ଦେବଗଣ କର୍ତ୍ତୃକ ଭଗବତୀ ସ୍ତୁତି, (୨୦ ଅଧ୍ୟାୟଠାରୁ ବସୁଦେବ ବେଦଙ୍କର ବିବାହ ଓ କୃଷ୍ଣଙ୍କର ଜନ୍ମ ବୃତ୍ତାନ୍ତ ଏବଂ କଂସ ନିଧନ, ମହାମାୟା ଭଗବତୀଙ୍କ ଶ୍ରେଷ୍ଠତ୍ୱ ବର୍ଣ୍ଣିତ ଅଛି ) ।

## ପଞ୍ଚମ ସ୍କନ୍ଧେ

ସମସ୍ତ ପଦାର୍ଥର ମାୟାଧୀନତ୍ୱ ବର୍ଣ୍ଣନ, ରକ୍ତବୀର୍ଯ୍ୟ ପ୍ରଭୃତିଙ୍କର ଉତ୍ପତ୍ତି ଓ ଯୁଦ୍ଧ, ଦେବୀ ସମୀପେ ମହିଷାସୁରର ମନ୍ଦୋଦରୀ ଉପାଖ୍ୟାନ, ମନ୍ଦୋଦରୀ ଭଗ୍ନୀ ଇନ୍ଦୁମତୀର ସ୍ୱୟମ୍ବର ବୃତ୍ତାନ୍ତ, ମହିଷାସୁର ବଧ, ଶୁମ୍ଭ ନିଶୁମ୍ଭ ବଧ, ସୁରଥ ରାଜାର ଦେବୀ ଉପାସନା ବିଷୟ ବର୍ଣ୍ଣିତ ଅଛି ।

**ଷଷ୍ଠ ସ୍କନ୍ଧେ**

ବିଶ୍ୱରୂପଠାରୁ ବୃତ୍ରାସୁର ଉତ୍ପତ୍ତି, ବୃତ୍ରାସୁର ଜୃମ୍ଭିକାର ସୃଷ୍ଟି, ଭଗବତୀଙ୍କର ଦେବଗଣଙ୍କୁ ବରଦାନ, ଇନ୍ଦ୍ର କର୍ତ୍ତୃକ ବୃତ୍ରାସୁର ବଧ, ବ୍ରହ୍ମହତ୍ୟା ପାପମୋଚନାର୍ଥେ ଇନ୍ଦ୍ରଙ୍କର ମାନସ ସରୋବର ଗମନ, ନୂତନ ଇନ୍ଦ୍ର ନହୁଷଙ୍କର ଶଚୀଲାଭେଚ୍ଛା, ଅଗସ୍ତ୍ୟ ଶାପରୁ ନହୁଷଙ୍କର ଅଧଃପତନ, କର୍ମଫଳାଫଳ କଥା, ଯୁଗ ଭେଦରେ ଧର୍ମ କଥା, ସୁନଃଶେଫଙ୍କ ପ୍ରତି ବିଶ୍ୱାମିତ୍ରଙ୍କ କରୁଣା, ଆଡ଼ିବକ ଯୁଦ୍ଧ, ବଶିଷ୍ଠଙ୍କ ପଅତି ନିମିର ଶାପ ଓ ଅଗସ୍ତ୍ୟ ଉତ୍ପତ୍ତି, ହୈହୟ ପତ୍ନୀଗଣର ଗୌରୀ ପୂଜା, ଲକ୍ଷ୍ମୀଙ୍କ ପ୍ରତି ନାରାୟଣଙ୍କ ଶାପ, ବଡ଼ବା ରୂପଧାରିଣୀ ଲକ୍ଷ୍ମୀଙ୍କ ସହ ଘୋଟକରୂପୀ ବିଷ୍ଣୁଙ୍କର ସଙ୍ଗମ, ହୈହୟ ଉତ୍ପତ୍ତି, ଚମ୍ପାଖ୍ୟ ଶିଶୁ ଜନ୍ମ, କାଳକେତୁର ସହିତ ହୈହୟର ଯୁଦ୍ଧ, ଏକାବଳୀର ସହ ହୈହୟର ବିବାହ, ନାରଦ ସମୀପେ ବ୍ୟାସଙ୍କର ମୋହର କାରଣ, ନାରଦ ପର୍ବତ ଉପାଖ୍ୟାନ, ବିଷ୍ଣୁ କର୍ତ୍ତୃକ ମାୟାର ଅଜୟତ୍ୱ କଥନ, ନାରଦଙ୍କ ସ୍ତ୍ରୀ ରୂପ ପ୍ରାପ୍ତି ଓ ତାଳଧ୍ୱଜ ନୃପତି ସହିତ ବିବାହ ବୃତ୍ତାନ୍ତ ବର୍ଣ୍ଣିତ ଅଛି ।

**ସପ୍ତମ ସ୍କନ୍ଧେ**

ଚ୍ୟବନ ଉପାଖ୍ୟାନ, ସର୍ଜାତି ମହାରାଜାଙ୍କ କନ୍ୟାର ସହିତ ଚ୍ୟବନ ଋଷିଙ୍କ ବିବାହ, ଅଶ୍ୱିନୀକୁମାରଙ୍କର ପ୍ରଭାବରେ ଯୌବନ ପ୍ରାପ୍ତି, ସର୍ଜାତି ଯଜ୍ଞେ ଚ୍ୟବନଙ୍କର ଇନ୍ଦ୍ର ସହିତ ବିବାଦ, ବିଶ୍ୱାମିତ୍ର, ଗାଲବ ବୃତ୍ତାନ୍ତ, ବଶିଷ୍ଠ ଶାପେ ତ୍ରିଶଙ୍କୁର ଚଣ୍ଡାଳତ୍ୱ ପ୍ରାପ୍ତି, ଦୁର୍ଭିକ୍ଷରେ ବିଶ୍ୱାମିତ୍ରଙ୍କର କୁକ୍କୁର ମାଂସ ଭକ୍ଷଣ, ଶତାକ୍ଷୀ ମାହାତ୍ମ୍ୟ କଥନ, ଭଗବତୀଙ୍କର ଶାକମ୍ବରୀ ଓ ଦୁର୍ଗା ନାମ କଥନ, ହରିହରଙ୍କର ଶକ୍ତିଶୂନ୍ୟତା, ମହାଶକ୍ତି ଆରାଧନା, ସତ୍ୟ ଉପାଖ୍ୟାନ, ପୀଠ ସ୍ଥାପନ ମାହାତ୍ମ୍ୟ, ଦେବୀଙ୍କର ଆତ୍ମତତ୍ତ୍ୱ କଥନ, ବେଦାନ୍ତ ଦର୍ଶନ ସାର, ହ୍ରୀଂକାର ବୀଜସ୍ୱରୂପ, ଯୋଗ ସାଧନ, ପ୍ରାଣାୟାମ ଓ ବ୍ରହ୍ମତତ୍ତ୍ୱ ନିରୂପଣ ବର୍ଣ୍ଣିତ ଅଛି ।

**ଅଷ୍ଟମ ସ୍କନ୍ଧେ**

ସ୍ୱୟମ୍ଭୂବ ମନୁର ଦେବୀ ସ୍ତୁତି, ବରାହ ଅବତାର, ହିରଣ୍ୟାକ୍ଷ ବଧ, ପ୍ରଜାସର୍ଗ, ଜମ୍ବୁଦ୍ୱୀପ ବର୍ଣ୍ଣନ, ପ୍ଲକ୍ଷାଦି ଦ୍ୱୀପ ବର୍ଣ୍ଣନ, ସୂର୍ଯ୍ୟ ରଥ ଗତି ଓ ଧ୍ରୁବ ସଂସ୍ଥାନ ଓ ଜ୍ୟୋତିଷ୍କଚକ୍ର, ନରକ ବିବରଣ, ଦେଶ ବିଶେଷେ ତିଥି ପୂଜାବିଧି ବର୍ଣ୍ଣିତ ଅଛି ।

**ନବମ ସ୍କନ୍ଧେ**

ପରମ ବ୍ରହ୍ମରୂପିଣୀ ପ୍ରକୃତିର ସୃଷ୍ଟି ପ୍ରସଙ୍ଗରେ ରାଧା, ଲକ୍ଷ୍ମୀ ପ୍ରଭୃତି ପଞ୍ଚବିଧରୂପ ଧାରଣ, ପ୍ରତ୍ୟେକ ଦେବ ପତ୍ନୀର ପ୍ରକୃତି ରୂପ ଧାରଣ କଥନ, କମଳା ଓ ରାଧାଙ୍କର ଉତ୍ପତ୍ତି, ମୂଳ ପ୍ରକୃତିରୁ ମହାବିରାଟ ଉତ୍ପତ୍ତି, ସରସ୍ୱତୀଙ୍କର ପୂଜା, ସ୍ତୋତ୍ର ଓ କବଚ, ଯାଜ୍ଞବଲ୍କ୍ୟ କୃତ ସରସ୍ୱତୀ ସ୍ତୋତ୍ର, ଗଙ୍ଗାଙ୍କ ଶାପରେ ସରସ୍ୱତୀଙ୍କର ନଦୀରୂପେ ଆବିର୍ଭାବ, କଳ୍କି ଅବତାର ବର୍ଣ୍ଣନ,

ସଚ୍ଚିଦାନନ୍ଦ ପରମାତ୍ମାଙ୍କଠାରୁ ସମସ୍ତ ଶକ୍ତିର ଉତ୍ପତ୍ତି, ପୃଥିବୀର ପୂଜା, ଧ୍ୟାନ, ସ୍ତବ ଇତ୍ୟାଦି । ରାଧିକାଙ୍କ ଭୟରେ ଗଙ୍ଗାଙ୍କର କୃଷ୍ଣ ଚରଣାଶ୍ରୟ, ବୃଷଧ୍ୱଜ ଚରିତ, କୁଶଧ୍ୱଜପତ୍ନୀ ମାଳାବତୀ ଗର୍ଭରୁ ଲକ୍ଷ୍ମୀଙ୍କର ବେଦମତୀ ରୂପେ ଜନ୍ମ ଗ୍ରହଣ, ରାବଣ ପ୍ରତି ବେଦମତୀର ଶାପ ଓ ସୀତା ରୂପେ ଜନ୍ମ, ସୀତାଙ୍କର ଦ୍ରୌପଦୀରୂପେ ଜନ୍ମ ଗ୍ରହଣ, ଧର୍ମଧ୍ୱଜପତ୍ନୀ ମାଧବୀ ଗର୍ଭରୁ ତୁଳସୀଙ୍କର ଉତ୍ପତ୍ତି, ଶଙ୍ଖଚୂଡ଼ ସହ ତୁଳସୀର ବିବାହ, ତୁଳସୀର ସତୀତ୍ୱ ହରଣ, ତୁଳସୀର ଅଭିଶାପରେ ବିଷ୍ଣୁଙ୍କର ଶାଳଗ୍ରାମ ରୂପ ଗ୍ରହଣ, ତୁଳସୀ ପୂଜା, ଗାୟତ୍ରୀ ଜପର ଫଳ, ସାବିତ୍ରୀ ଅଶ୍ୱପତିଙ୍କ କନ୍ୟାରୂପେ ଜନ୍ମିବା, ଯମ ସାବିତ୍ରୀ ସମ୍ବାଦ, ସ୍ୱାହା ଉପାଖ୍ୟାନ, ମଙ୍ଗଳା ଚଣ୍ଡୀ ପୂଜା, ସୁରଭି ଉପାଖ୍ୟାନ, ରାଧାବୀଜ ମନ୍ତ୍ର ଓ ଦୁର୍ଗାଦେବୀ ପୂଜା ବର୍ଣ୍ଣିତ ଅଛି ।

## ଦଶମ ସ୍କନ୍ଧେ

ସ୍ୱାୟମ୍ଭୁବ ମନୁଙ୍କୁ ଦେବୀଙ୍କର ବରଦାନ ଓ ବିନ୍ଧ୍ୟାଚଳ ଗମନ, ବିଷ୍ଣୁଙ୍କ ନିକଟରେ ଦେବୀଙ୍କ ସୂର୍ଯ୍ୟ ଗତି ନିରୋଧ କଥା, ଅଗସ୍ତିଙ୍କଦ୍ୱାରା ବିନ୍ଧ୍ୟର ଉନ୍ନତି ନିବାରଣ, ସ୍ୱାରୋଚିଷ, ମନୁକଥା, ମଧୁକୈଟଭ ବଧାର୍ଥେ ମହାମାୟା ସ୍ତବ, ଶର୍ଯ୍ୟାତୀ ପ୍ରଭୃତି ଛଅଜଣ ରାଜାର ଭ୍ରାମରୀ ଶକ୍ତି ଆରାଧନା ବର୍ଣ୍ଣିତ ଅଛି ।

## ଏକାଦଶ ସ୍କନ୍ଧେ

ସଦାଚାର କଥନ, ପ୍ରାତଃକୃତ୍ୟ, ପ୍ରାଣାୟାମ, ଶୌଚ ଓ ସ୍ନାନବିଧି, ରୁଦ୍ରାକ୍ଷ ବିବରଣ, ଭସ୍ମଧାରଣ ମାହାତ୍ମ୍ୟ, ସନ୍ଧ୍ୟା ବିଧି, ଗାୟତ୍ରୀ ଉପାସନା, ସିଦ୍ଧାସନ ବର୍ଣ୍ଣନ, ଚତୁର୍ବିଂଶତି ମୁଦ୍ରା, ଗାୟତ୍ରୀର ଆରାଧନା, ଦେବୀପୂଜା ବିବରଣ, ସାୟାହ୍ନ, ମଧ୍ୟାହ୍ନ, ସନ୍ଧ୍ୟା, ପ୍ରାଜାପତ୍ୟାଦି ବ୍ରତ ଲକ୍ଷଣ, ଗାୟତ୍ରୀଦ୍ୱାରା ବୃଷ୍ଟ୍ୟାଦି ଲାଭ, ଅଣିମାଦି ସିଦ୍ଧି, ବ୍ରହ୍ମତ୍ୱାଦି ପ୍ରାପ୍ତି ଲକ୍ଷଣ ବର୍ଣ୍ଣିତ ଅଛି ।

## ଦ୍ୱାଦଶ ସ୍କନ୍ଧେ

ନାରାୟଣଙ୍କ ମୁଖରୁ ଗାୟତ୍ରୀଙ୍କର ଋଷି, ଛନ୍ଦ ପ୍ରଭୃତି ଶ୍ରବଣ, ଆର୍ଯ୍ୟ ସଂସ୍କାର, ହୋମ ବିଧି, ଜଗଦମ୍ବାଙ୍କ ଆବିର୍ଭାବ, ଇନ୍ଦ୍ରଙ୍କ ପ୍ରତି ମାୟା ବୀର୍ଯ୍ୟ ଜପ ଲାଗି ଆକାଶବାଣୀ, ଶକ୍ତି ଉପାସନାର ନିତ୍ୟତ୍ୱ, ଗୌତମ ସ୍ତବେ ସନ୍ତୁଷ୍ଟା ଗାୟତ୍ରୀର ପୂର୍ଣ୍ଣପାତ୍ର ପ୍ରଦାନ, ବ୍ରାହ୍ମଣଗଣର ବେଦ ଓ ଗାୟତ୍ରୀ ଆଦି ବିସ୍ମରଣ, ମଣିଦ୍ୱୀପ ବିବରଣ, ଚିନ୍ତାମଣି ରୂପ ବର୍ଣ୍ଣନ, ଦେବୀଙ୍କର ଧ୍ୟାନ ବର୍ଣ୍ଣିତ ଅଛି ।

## ନାରଦ ପୁରାଣ

ନାରଦ ପୁରାଣ କହେ -
ଶୃଣୁ ବିପ୍ର ପ୍ରବକ୍ଷ୍ୟାମି ପୁରାଣଂ ନାରଦୀୟକଂ ।
ପଞ୍ଚବିଂଶତି ସାହସ୍ରଂ ବୃହତ୍ କଳ୍ପ କଥାଶ୍ରୟଂ ।।ଇତି।।

ମତ୍ସ୍ୟପୁରାଣରେ ସୁଦ୍ଧା ଏ ଉକ୍ତି ସମର୍ଥିତ ହୋଇଅଛି, ଯଥା -
ଯତ୍ରାହ ନାରଦୋ ଧର୍ମାନ୍ ବୃହତ୍‌କଳ୍ପକଥାଶ୍ରୟାନ୍ ।
ପଞ୍ଚବିଂଶତ୍ ସହସ୍ରାଣି ନାରଦୀୟଂ ତଦୁଚ୍ୟତେ ।।

ବିଶେଷତଃ ନାରଦ ପୁରାଣେ ଆଲୋଚନାଦ୍ୱାରା ତାହା ଭକ୍ତି ଗ୍ରନ୍ଥ ବୋଲି ବୋଧହୁଏ ନାହିଁ, ଏଥିରେ ତାନ୍ତ୍ରିକ ଓ ବୈଷ୍ଣବ ଅନୁଷ୍ଠାନାଦି ଏବଂ ବିଭିନ୍ନ ସମ୍ପ୍ରଦାୟର ଦୀକ୍ଷା ବିଧାନ ମଧ୍ୟ ସମ୍ପୂର୍ଣ୍ଣ ରୂପେ ବର୍ଣ୍ଣିତ, ନାରଦ ପୁରାଣରେ ପ୍ରତ୍ୟେକ ପୁରାଣର ବିଷୟାନୁକ୍ରମଣିକା ପ୍ରଦତ୍ତ ହେବାଦ୍ୱାରା ଜଣାଯାଏ ଯେ ଦୁଇ ଏକ ଖଣ୍ଡ ପୁରାଣ ବ୍ୟତୀତ ବର୍ତ୍ତମାନ ଆକାର ଧାରଣ କଲାପରେ ଏହି ପୁରାଣ ସଂକଳିତ ହୋଇ ପୁରାଣ କ୍ରମର ଷଷ୍ଠତ୍ୱ ପୁରାଣ ସମୂହ ଲୋପ ହୋଇଅଛି । ସମ୍ଭବତଃ ଉକ୍ତ ପୁରାଣ ନିଜର ଅଧିକାଂଶ ପ୍ରାଚୀନତ୍ୱ ହରାଇ ବର୍ତ୍ତମାନ କଳେବର ଧାରଣ କରିଅଛି ।

## ନାରଦ ପୁରାଣଗତ ଚରିତ

### ପୂର୍ବାର୍ଦ୍ଧ

ଦେବ ମନ୍ଦିର ନିର୍ମାଣ ପୁଣ୍ୟ, ଧର୍ମଶାସ୍ତ୍ର ନିର୍ଦ୍ଦେଶ, ନରକ ବର୍ଣ୍ଣନ, ବର୍ଣ୍ଣାଶ୍ରମାଚାର, ସ୍ମାର୍ତ୍ତଧର୍ମ, ଶ୍ରାଦ୍ଧ ପ୍ରକରଣ, ହରିଭକ୍ତି ଲକ୍ଷଣ, ପରଲୋକ ନିରୂପଣ, ଦୁଃଖତ୍ରୟ ନିରୂପଣ, ଯୋଗ ସ୍ୱରୂପ ବର୍ଣନ, ପରମାର୍ଥ ନିରୂପଣ, ଷଡ଼ଙ୍ଗ ନିରୂପଣ, ଶାନ୍ତି ଶାସ୍ତ୍ର,ମୋକ୍ଷ ଭାଗବତ ତତ୍ତ୍ୱ, ଗଣେଶ ମନ୍ତ୍ର, ବିଷ୍ଣୁ, ରାମ ଓ ହନୁମାନଙ୍କ ମନ୍ତ୍ର, କାର୍ତ୍ତବୀର୍ଯ୍ୟାର୍ଜୁନ ମନ୍ତ୍ର ପୂଜା, ହନୁମତ୍ କବଚ, ରାଧାଙ୍କ ଅଂଶାବତାର ନିରୂପଣ, ସରସ୍ୱତୀ, ଦୁର୍ଗା ଓ ରାଧାଙ୍କ ଅବତାର, ଶକ୍ତି ସହସ୍ର ନାମ, ପ୍ରତିପଦାଦି ପ୍ରତ୍ୟେକ ତିଥିବ୍ରତ କଥା ବର୍ଣ୍ଣିତ ଅଛି ।

### ଉତ୍ତରାର୍ଦ୍ଧ

ଏଥିରେ ଦ୍ୱାଦଶୀ ମାହାତ୍ମ୍ୟ, ତିଥି ବିଚାର, ନିଯୋଗାଚରଣ ନିରୂପଣ, ମୋହିନୀ ଚରିତ, ଅହିଂସା ଧର୍ମ ଉପଦେଶ, ମୋହିନୀର ସହିତ ରୁକ୍ମାଙ୍ଗଦର ବିବାହ, ପତିବ୍ରତା ଉପାଖ୍ୟାନ, କ୍ଷମାହିନୀ ପ୍ରତି ବିଷ୍ଣୁଗଣର ଶାପ ପ୍ରଦାନ, ୪୩ ଅଧ୍ୟାୟଠାରୁ ୮୧ ଅଧ୍ୟାୟ ପର୍ଯ୍ୟନ୍ତ ଗଙ୍ଗା, ଗୟା, ପୁରୁଷୋତ୍ତମ, ହରିଦ୍ୱାର, ପ୍ରଭାସ, ସେତୁ ପ୍ରଭୃତି ତୀର୍ଥ ମାହାତ୍ମ୍ୟ ବର୍ଣ୍ଣିତ ଅଛି ।

## ମାର୍କଣ୍ଡେୟ ପୁରାଣ

ନାରଦ ପୁରାଣ ମତରେ -
ଅଥାତଃ ସଂପ୍ରବକ୍ଷାମି ମାର୍କଣ୍ଡେୟାଭିଦଂ ମୁନେ ।
ପୁରାଣଂ ସୁମହତ୍ ପୁଣ୍ୟଂ ପଠତାଂ ଶୃଣ୍ୱତାଂ ସଦା ।।
ଯତ୍ରାଧିକୃତ୍ୟ ଶକୁନୀନ୍ ସର୍ବଧର୍ମ ନିରୂପଣଂ ।
ମାର୍କଣ୍ଡେୟେନ ମୁନିନା ଜୈମିନେଃ ପ୍ରାକ୍ ସମୀରିତଂ ।। ଇତ୍ୟାଦି ।

ମତ୍ସ୍ୟ ପୁରାଣ ମତରେ-"ପୁରାଣଂ ନବସାହସ୍ରଂ ମାର୍କଣ୍ଡେୟ ମିହୋଚ୍ୟତେ" । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଐତିହାସିକଗଣ ଏହାର ମୌଳିକତା ସ୍ୱୀକାର କରନ୍ତି । ପ୍ରଚଳିତ ମାର୍କଣ୍ଡେୟ ପୁରାଣରେ୭୯୦୦ ମାତ୍ର ଶ୍ଳୋକ ଦୃଷ୍ଟ ହୁଏ । ତେବେ ଅବଶିଷ୍ଟ ୨୧୦୦ ଶ୍ଳୋକ କ'ଣ ହେଲା? କେତେକଙ୍କ ମତରେ ଯାହା ଅଛି ତାହା ପୂର୍ବାର୍ଦ୍ଧ । ତେବେ ଶେଷ ଖଣ୍ଡ କାହିଁ ? ନାରଦ ପୁରାଣର ବିଷୟାନୁକ୍ରମଣିକାରେ ଥିବା ନରିଷ୍ୟନ୍ତ ଚରିତ ପରେ ଇକ୍ଷ୍ୱାକୁ ଚରିତ, ତୁଳସୀ ଚରିତ ଓ ରାମଚନ୍ଦ୍ରଙ୍କ କଥା, କୁଶବଂଶ ଓ ସୋମବଂଶ, ପୁରୁରବା, ନହୁଷ, ଯଯାତି ଚରିତ ପ୍ରଭୃତି ଏଥିରେ ଲେଖାନାହିଁ । ବୋଧହୁଏ ସେ ଖଣ୍ଡିକ କାଳଗର୍ଭରେ ଲୀନ ହୋଇଗଲା । ଏ ପୁରାଣରେ ସାଂପ୍ରଦାୟିକ ଦ୍ୱେଷ ଭାବ ନାହିଁ । ଅନ୍ୟ ପୁରାଣରେ ଦୁଷ୍ପ୍ରାପ୍ୟ ଅନେକ ନୂତନ କଥା ଏଥିରେ ବିଦ୍ୟମାନ । ଆଶ୍ଚର୍ଯ୍ୟର ବିଷୟ ଏହିକି ମାର୍କଣ୍ଡେୟ ପୁରାଣରେ ବେଦବ୍ୟାସଙ୍କ ନାମ ସୁଦ୍ଧା ନାହିଁ । ସମସ୍ତେ ଏକ ସ୍ୱରରେ ସ୍ୱୀକାର କରନ୍ତି ଯେ ଏହି ପୁରାଣ ହିଁ ଅବିମିଶ୍ରିତ ଭାବେ ଅଛି । ଏଥିରେ ଥିବା ସପ୍ତସତୀ ଆର୍ଯ୍ୟ ସମ୍ପ୍ରଦାୟର ଅମୂଲ୍ୟ ସମ୍ପତ୍ତି । ଶଙ୍କର, ବାଣ, ମୟୂର, ଭଟ୍ଟ ପ୍ରଭୃତି ମାର୍କଣ୍ଡେୟ ପୁରାଣର ପ୍ରମାଣ ଦେଇଥିବାରୁ ଏହା ବହୁ ପ୍ରାଚୀନ ପୁସ୍ତକ ବୋଲି ସର୍ବ ସାଧାରଣାନୁମୋଦିତ । ନେପାଳରେ ଜଣେ ବୌଦ୍ଧାଚାର୍ଯ୍ୟର ହସ୍ତ ଲିଖିତ ଆଠଶହ ବର୍ଷ ପୂର୍ବର ପୁସ୍ତକ ଖଣ୍ଡିଏ ଥିବାରୁ ସମସ୍ତେ ଅନୁମାନ କରନ୍ତି ଯେ ବୌଦ୍ଧ ପ୍ରଭାବବେଳେ ମଧ୍ୟ ଏହି ପୁରାଣ ଅବିମିଶ୍ରିତ ଥିଲା ।

## ମାର୍କଣ୍ଡେୟ ପୁରାଣଗତ ଚରିତ

ଏଥିରେ ମାର୍କଣ୍ଡେୟଙ୍କ ବପୁ ଶାପ କଥନ, ସ୍କନ୍ଦ ଓ ବିଦ୍ୟୁଦ୍ରୂପର ଯୁଦ୍ଧ, ଚଟକୋତ୍ପତ୍ତି କଥା, ବିନ୍ଧ୍ୟାଚଳସ୍ଥପକ୍ଷୀ ଚତୁଷ୍ଟୟ ସମୀପେ ଜୈମିନିଙ୍କର ପ୍ରଶ୍ନୋତ୍ତରରେ ଚତୁର୍ବ୍ୟୂହାବତାର ବର୍ଣ୍ଣନ, ଦ୍ରୌପଦୀଙ୍କର ପଞ୍ଚସ୍ୱାମୀ ବୃତ୍ତାନ୍ତ, ଇନ୍ଦ୍ରଙ୍କ କ୍ରିୟା କଥନ, ବଳଦେବ କୃତ ବ୍ରହ୍ମହତ୍ୟାର କାରଣ କଥନ, ଆଡ଼ିବକ ଯୁଦ୍ଧ ପ୍ରସ୍ତାବ, ପକ୍ଷୀ ନିକଟରେ ଜୈମିନିଙ୍କ ପ୍ରାଣୀ ଜନ୍ମାଦି ବିଷୟକ ପ୍ରଶ୍ନ, ପିତୃ ସମୀପେ ପୁତ୍ରର ନିଷେକାଦି ବର୍ଣ୍ଣନ, ବୈଶ୍ୟରାଜ ଏବଂ ଯମ ପୁରୁଷର ସମ୍ବାଦ, ଯମ ପୁରୁଷର କର୍ମଫଳ କଥା, ପତିବ୍ରତା ମାହାତ୍ମ୍ୟ, ଅନସୂୟାଙ୍କର ବର ଲାଭ, ଦତ୍ତାତ୍ରେୟୋତ୍ପତ୍ତି, ଦତ୍ତାତ୍ରେୟ ଓ କାର୍ତ୍ତବୀର୍ଯ୍ୟ ସମ୍ବାଦ, କୁବଳୟାଶ୍ୱ ଚରିତେ ମଦାଳସା ଲାଭ, ପୁତ୍ରାନୁଶାସନ, ଅଲର୍କଙ୍କ ପ୍ରତି ଚତୁରାଶ୍ରମ ଧର୍ମ କଥନ, ନିତ୍ୟନୈମିତ୍ତିକାଦି ଶ୍ରାଦ୍ଧ କଳ୍ପ, ସଦାଚାରାଦି ବ୍ୟବସ୍ଥା ନିରୂପଣ, ଅଲର୍କର ଆତ୍ମ ବିବେକ, ଦତ୍ତାତ୍ରେୟ ଓ ଅଲର୍କ ସମ୍ବାଦେ ଯୋଗୀଚର୍ଯ୍ୟା, ଅରିଷ୍ଟ କଥନ, ବ୍ରହ୍ମୋତ୍ପତ୍ତି କଥା, କାଳ ନିରୂପଣ, ବ୍ରହ୍ମାୟୁର ପରିମାଣ, ଯକ୍ଷାନୁଶାସନ, ଦୌସ୍ସହୋତ୍ପତ୍ତି, ରୁଦ୍ରସର୍ଗ, କୂର୍ମ ସଂସ୍ଥାପନ, ଭାରତାଦି ବର୍ଷ ବର୍ଣ୍ଣନ, ସ୍ୱାରୋଚିଷ ମନ୍ୱନ୍ତର କଥା, କଳି ବରୁଥିନୀ ସମାଗମ, ସ୍ୱାରୋଚିଷ ସହ ମନୋରମାର ବିବାହ, ନିଧି ନିର୍ଣ୍ଣୟ, ଔତ୍ତମ ମନ୍ୱନ୍ତର କଥା, ରୈବତ, ଚକ୍ଷୁଷ, ବୈବସ୍ୱତ ମନୁ ବୃତ୍ତାନ୍ତ, ଦେବର୍ଷି କୃତ ସୂର୍ଯ୍ୟୋତ୍ପତ୍ତି ଓ ଅଶ୍ୱିନୀକୁମାରରୋତ୍ପତ୍ତି, ସାର୍ବର୍ଣ୍ଣିକ ମନ୍ୱନ୍ତର କଥା, ୮୧ ଅଧ୍ୟାୟଠାରୁ୯୫ ଅଧ୍ୟାୟ ପର୍ଯ୍ୟନ୍ତ

ଭାରତ ବିଖ୍ୟାତ ଚଣ୍ଡୀ ଚରିତ, ରୁଚିର ଉପାଖ୍ୟାନ, ମାର୍ତ୍ତଣ୍ଡୋତ୍ପତ୍ତି, ବ୍ରହ୍ମାକୃତ ଦିବାକର ସ୍ତୁତି, ଅଦିତି ଓ ବିଶ୍ୱକର୍ମା କୃତ ସୂର୍ଯ୍ୟସ୍ତବ, ଭାନୁ ସନ୍ତତି ସମ୍ଭୂତି ବର୍ଣ୍ଣନେ ରାଜବର୍ଦ୍ଧନାଖ୍ୟାନ, ଭାନୁ ମାହାତ୍ମ୍ୟ, ପୃଷଧ୍ରର ଶୂଦ୍ରତ୍ୱ ପ୍ରାପ୍ତି, ନାଭାଗ ଚରିତ, ପ୍ରମତୀ ଶାପ, ଖନିତ୍ର ଚରିତ, ବିବିଂଶ ଚରିତ, ଖନୀ ନେତ୍ରା ଚରିତ, କରନ୍ଧମ ଚରିତ, ଅବିକ୍ଷିତ କର୍ତ୍ତୃକ ବୈଶାଳିନୀ ହରଣ, ମାତାର କିମିଚ୍ଛିକ ବ୍ରତେ ଅବିକ୍ଷିତର ବୈରାଗ୍ୟ ପ୍ରାପ୍ତିଓ ପୌତ୍ରମୁଖ ପ୍ରଦର୍ଶନାର୍ଥ ପିତୃ ସମୀପେ ସ୍ୱୀକୃତି, ମରୁତର ଜନ୍ମ, ନରିଷ୍ମନ୍ତ ଚରିତ, ସୁମନା ସ୍ୱୟମ୍ବର, ବପୁଷ୍ମତ୍ୱଦ୍ଧ ଓ ରାମ ଚରିତ, ପରାଣ ଫଳଶ୍ରୁତି ବର୍ଣ୍ଣିତ ଅଛି ।

ଏତଦ୍‌ବ୍ୟତୀତ, ମାର୍କଣ୍ଡେୟ ପୁରାଣରେ ସୃଷ୍ଟି, ସ୍ଥିତି, ପ୍ରଳୟ ବର୍ଣ୍ଣନ ଓ ରୌରବାଦି ନରକ ବୃତ୍ତାନ୍ତ, ହରିଶ୍ଚନ୍ଦ୍ରୋପାଖ୍ୟାନ ଏବଂ ପ୍ରାକୃତିକ ପ୍ରଳୟ କଥା ବର୍ଣ୍ଣିତ ଅଛି ।

## ଆଗ୍ନେୟ ପୁରାଣ

ନାରଦ ପୁରାଣରେ ଆଗ୍ନେୟ ପୁରାଣର ବିଷୟାନୁକ୍ରମଣିକା ପ୍ରଦତ୍ତ ହୋଇଅଛି ।

ଅଥାତଃ ସଂପ୍ରବକ୍ଷାମି ତବାଗ୍ନେୟ ପୁରାଣକଂ ।
ଈଶାନ କଳ୍ପ ବୃତ୍ତାନ୍ତଂ ବଶିଷ୍ଠାୟାନଳୋଽବ୍ରବୀତ୍ ।।
ତତ୍ ପଞ୍ଚଦଶ ସାହସ୍ରଂ ନାମ୍ନା ଚରିତମଦ୍ଭୁତଂ । ଇତି ।

ଅର୍ଥାତ୍‌ପଞ୍ଚଦଶ ସହସ୍ର ଶ୍ଳୋକାତ୍ମକ ଯେଉଁ ପୁରାଣ ଅଗ୍ନିଦେବ ବଶିଷ୍ଠଙ୍କୁ କହିଥିଲେ ସେହି ଈଶାନକଳ୍ପ ଚରିତ ବିଶିଷ୍ଟ ଅଗ୍ନିପୁରାଣ ଆପଣଙ୍କୁ କହୁଅଛି । ସମସ୍ତ ପୁରାଣ ଅପେକ୍ଷା ଏହି ପରାଣରେ ବ୍ରାହ୍ମଣର ଜ୍ଞାତବ୍ୟ ବିଷୟ ବିଶେଷ ଭାବେ ସନ୍ନିବେଶିତ ହୋଇଅଛି । ଯଥା- ଅଗ୍ନି ଓ ବ୍ରହ୍ମସ୍ତବ, ସ୍ନାନ ବିଧି, ଆହ୍ନିକ ଭୋଜନ ବିଧି, ଆଗ୍ନିକ ତପ, ଆଶ୍ୱମେଧିକ, ଗାୟତ୍ରୀକଳ୍ପ, ବ୍ରହ୍ମଣ୍ୟ ପ୍ରଶଂସା, ଗଣଭେଦ, ଯୋଗ ନିର୍ଣ୍ଣୟ, ସର୍ଗାନୁକୀର୍ତ୍ତନ, ବୈଷ୍ଣବ ଧର୍ମଗତ କ୍ରିୟାଯୋଗ ବିଧି, ଶୁଦ୍ଧିବ୍ରତ, ଧେନୁ ମାହାତ୍ମ୍ୟ, ୩୬ ଅଧ୍ୟାୟଠାରୁ ୪୭ ଅଧ୍ୟାୟ ପର୍ଯ୍ୟନ୍ତ କେତେକ ଦାନବିଧି, ପ୍ରୋତୋପାଖ୍ୟାନ, ଶର୍ମିଳୋପାଖ୍ୟାନ, କ୍ରିୟାଯୋଗ, ମୁଦ୍ଗଳ ଓ ଶିବୋପାଖ୍ୟାନ ବର୍ଣ୍ଣିତ ଅଛି ।

ସଂଗ୍ରାମ ପ୍ରଶଂସା, ରୋହିଣୀର ଅଷ୍ଟମୀ କଳ୍ପ, ସଗରୋପାଖ୍ୟାନ ଓ ଗଙ୍ଗା ମାହାତ୍ମ୍ୟ, ୭୪ ଅଧ୍ୟାୟଠାରୁ ୧୮୧ ଅଧ୍ୟାୟ ପର୍ଯ୍ୟନ୍ତ ସୂର୍ଯ୍ୟବଂଶାନୁଚରିତ ପ୍ରସଙ୍ଗେ ଶ୍ରୀରାମ ଚରିତ ବର୍ଣନ, ପୁସ୍ତକାନ୍ତରେ ମତ୍ସ୍ୟ, କୂର୍ମ, ବରାହାବତାର କଥା, ରାମାୟଣ ଓ ମହାଭାରତ ପରିଚୟ, ପୁନର୍ବାର ସୃଷ୍ଟି ପ୍ରକ୍ରିୟା ବର୍ଣ୍ଣନ, ବିଷ୍ଣୁ ପୂଜା, ସ୍ନାନ ବିଧି, ଅଗ୍ନିକାର୍ଯ୍ୟ, ମନ୍ତ୍ର ପ୍ରଦର୍ଶନ,ମୁଦ୍ରା, ଦୀକ୍ଷା ଓ ଅଭିଷେକ ବିଧି, ମଣ୍ଡଳ ଲକ୍ଷଣ, କୁଶାପମାର୍ଜନାତ୍ମକ ରକ୍ଷାବିଧି, ଅଷ୍ଟଚତ୍ୱାରିଂଶତ୍ ସଂସ୍କାର, ପବିତ୍ରାରୋହଣ ପ୍ରସଙ୍ଗ, ଦେବାଳୟାଦିର ମାହାତ୍ମ୍ୟ ଓ ପ୍ରତିଷ୍ଠା କାର୍ଯ୍ୟ, ଭୂପରିଗ୍ରହ ଓ ଅର୍ଘ୍ୟଦାନ, ଶିଳ୍ପବିନ୍ୟାସ ବିଧି ପ୍ରାସାଦାଦି ଲକ୍ଷଣ, ବାସୁଦେବାଦି ପ୍ରତିମାଲକ୍ଷଣ, ପିଣ୍ଡିକାଲକ୍ଷଣ ଶାଳଗ୍ରାମ

ଇତ୍ୟାଦି ମୂର୍ତ୍ତି ଲକ୍ଷଣ ଓ ପୂଜା, ଚତୁର୍ବିଂଶତି ମୂର୍ତ୍ତିସ୍ତବ, ଦଶାବତାର ପ୍ରତିମା ଲକ୍ଷଣ, ଦେବୀ, ସୂର୍ଯ୍ୟ, ଯୋଗିନୀ ଓ ଲିଙ୍ଗ ଲକ୍ଷଣ, ଦିକ୍‌ପାଳ ଯାଗ, ଅଧିବାସ ଲକ୍ଷଣ ଓ ଭେଦ ଭାଗ ନିର୍ଣ୍ଣୟ, ଧ୍ୱଜାରୋପଣ, ଲକ୍ଷ୍ମୀ ସ୍ଥାପନ, ତାର୍କ୍ଷ୍ୟାଦି ପ୍ରତିଷ୍ଠା, ସଭାଦି ସ୍ଥାପନ, ଜୀର୍ଣ୍ଣୋଦ୍ଧାର, ଅବଭୃତ ସ୍ନାନ ବିଧି, ବୃକ୍ଷାରାମ ପ୍ରତିଷ୍ଠା, ଗଣେଶ, ସୂର୍ଯ୍ୟ ଓ ଶିବପୂଜା ବିଧି, ଅଗ୍ନିସ୍ଥାପନ ବିଧି, କପିଳାଦି ପୂଜା ବିଧି, ଦୀକ୍ଷା ଓ ଦମନକାରୋହଣ ବିଧି, ସଂସ୍କାର ଓ ନିର୍ବାଣ, ଦୀକ୍ଷା ବିଧି, ନିବୃତ୍ତି କଳା ଶୋଧନ ପ୍ରତିଷ୍ଠା ଓ ବିଦ୍ୟାକଳା ଶୋଧନ, ଶାନ୍ତିକଳା ଶୋଧନ, ବାସ୍ତୁପୂଜା, ଅଧିବାସ ବିଧି, ଶିବାଦି ପ୍ରତିଷ୍ଠା, ଗୃହାଦି ବାସ୍ତୁ କଥନ, ଗଙ୍ଗା ଗୟାଦି ମାହାତ୍ମ୍ୟ କଥନ, ଶ୍ରାଦ୍ଧକଳ୍ପ, ଦ୍ୱୀପ, ବ୍ରହ୍ମାଣ୍ଡ ଓ ଜ୍ୟୋତିଃଶାସ୍ତ୍ର ବର୍ଣ୍ଣନ, ଯୁଦ୍ଧଜୟାର୍ଥ ନାନା ଚକ୍ରଭେଦ କଥନ, ଘାତଚକ୍ରାଦି ତ୍ରୈଲୋକ୍ୟ ବିଜୟ ବିଦ୍ୟା, ସଂଗ୍ରାମ ବିଜୟ ବିଦ୍ୟା, ନକ୍ଷତ୍ରଚକ୍ର, ମହାମାୟା ବିଦ୍ୟା, ଅଷ୍ଟକର୍ମ, ଷଷ୍ଟି ସମ୍ବତ୍ସର, ବଶାଦି ଯୋଗ, ଷଟ୍‌ତ୍ରିଂଶତ୍ ପଦକ ଜ୍ଞାନ, ମନ୍ତ୍ରୌଷଧାଦି କଥନ, କୁବ୍‌ଜିକାପୂଜା, ଷୋଡ଼ଶନ୍ୟାସାଦି କଥନ, ଅଷ୍ଟାଷ୍ଟକ, ଦେବୀ ଓ ତ୍ୱରିତାପୂଜା, ସଂଗ୍ରାମ ବିଜୟା ପୂଜା, କୋଟୀହୋମ, ବର୍ଣ୍ଣାଶ୍ରମେତର ଧର୍ମ କଥନ, ଗୃହସ୍ଥ ବୃତ୍ତି, ବିବାହ ଓ ଆଚରାଧ୍ୟାୟ, ଦ୍ରବ୍ୟଶୁଦ୍ଧି, ଶବାଦ୍ୟଶୌଚ, ଶୌଚ ବିଧି, ଆଶ୍ରମ ଧର୍ମ, ଶ୍ରାଦ୍ଧ ବିଧି, ଗ୍ରହ ଯଜ୍ଞ ବିଧି, ତ୍ରିବିଧ ଗ୍ରହଯଜ୍ଞ, ପ୍ରାୟଶ୍ଚିତ୍ତ ପ୍ରକରଣ, ପାପନାଶକ ସ୍ତୋତ୍ର, ହନନାଦି ନିରୂପଣ, ପ୍ରତିପଦବିଧି, ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତ୍ୟେକ ତିଥିବ୍ରତ, ବାର ବ୍ରତ, ନକ୍ଷତ୍ର ବ୍ରତ, ଦିବସ ବ୍ରତ, ମାସ ଓ ଋତୁ ବ୍ରତ, ନବ ବ୍ୟୂହ ପୂଜା, ପୁଷ୍ପାଧ୍ୟାୟ, ମାସୋପବାସ, ଅଗସ୍ତ୍ୟାର୍ଘ୍ୟ, ବିବିଧ ଦାନ କଥା, ସନ୍ଧ୍ୟା, ଗାୟତ୍ରୀ ନିର୍ବାଣ, ରାଜ୍ୟାଭିଷେକ ପ୍ରକରଣ, ରାଜଧର୍ମ, ନୀତି ପ୍ରକରଣ, ଯୁଦ୍ଧଯାତ୍ରା, ସ୍ୱପ୍ନାଧ୍ୟାୟ, ମଙ୍ଗଳାଧ୍ୟାୟ, ଶକୁନାଧ୍ୟାୟ, ଯାତ୍ରାମଣ୍ଡଳ ଚିନ୍ତା, ସଂଗ୍ରାମରେ ରାମ କଥିତ ନୀତି, ଲକ୍ଷ୍ମୀ ସ୍ତବ, ରାଜର ନିତ୍ୟକର୍ମ, ଷଡ୍‌ଗୁଣ ପ୍ରଭାବାଦି ଶକ୍ତି, ସ୍ତ୍ରୀ ପୁରୁଷ ଲକ୍ଷଣ, ସଙ୍ଗୀ ଦି ଲକ୍ଷଣ, ରତ୍ନ ଲକ୍ଷଣ, ପୁଷ୍ପାଦିମହିମା, ଧନୁର୍ବେଦ କଥା, ଅସ୍ତ୍ରଶିକ୍ଷା ପ୍ରକରଣ, ବାହନାରୋହଣ ଭେଦ ଓ ଗତିସ୍ଥିତ୍ୟାଦି କଥନ, ବ୍ୟବହାର ନିର୍ଣ୍ଣୟ, ଋଣାଦି ବିଚାର, ଦିବ୍ୟ ଦାୟଭାଗ, ସୀମାବିଭାଗ ପ୍ରକରଣ, ବାକ୍‌ପାରୁଷ୍ୟଦଣ୍ଡ ବିଧି, ଋଗାଦି ବିଧାନ, ଶ୍ରୀଯୁକ୍ତାଦି ବିଶେଷ ନିୟମ, ପୂଜା ଓ ବୈଶ୍ୱଦେବ, ଦିକ୍‌ପାଳ ଓ ବିନାୟକ ସ୍ନାନ, ନୀରାଜନ, ଛତ୍ରାଦି ମନ୍ତ୍ର କଥନ, ବିଷ୍ଣୁପଞ୍ଜର କଥନ, ବେଦଶାଖା କୀର୍ତ୍ତନ, ଦାନ ମାହାତ୍ମ୍ୟ କୀର୍ତ୍ତନ, ଚନ୍ଦ୍ର, ସୂର୍ଯ୍ୟ ଓ ଯଦୁବଂଶ, ଦ୍ୱାଦଶ ସଂଗ୍ରାମ କଥା, ଆୟୁର୍ବେଦର ସିଦ୍ଧୌଷଧି କୀର୍ତ୍ତନ, ସର୍ବରୋଗର ଔଷଧ, ରସାଦି ସାଧନ ଗୁଣ, ବୃକ୍ଷାୟୁର୍ବେଦ, ଔଷଧି ପ୍ରକରଣ, ବିଷ୍ଣୁ ସହସ୍ର ନାମ କୀର୍ତ୍ତନ, ସିଦ୍ଧଯୋଗ କୀର୍ତ୍ତନ, ମୃତ୍ୟୁଞ୍ଜୟ କଳ୍ପ, ହସ୍ତୀ ଓ ଅଶ୍ୱ ଚିକିତ୍ସା, ଅଶ୍ୱ ଲକ୍ଷଣ, ଅଶ୍ୱ, ଗଜ, ଗୋ ଶାନ୍ତି ମନ୍ତ୍ର ପରିଭାଷା, ନାଗଦଷ୍ଟ ଚିକିତ୍ସା, ପଞ୍ଚାଙ୍ଗ ରୁଦ୍ରବିଧି, ବିଷହରଣ ମନ୍ତ୍ର କଥନ, ଗୋନାସାଦି ଚିକିତ୍ସା, ବାଳ ଗ୍ରହ ମନ୍ତ୍ର ଓ ଚିକିତ୍ସା, ସୂର୍ଯ୍ୟ ଅର୍ଚ୍ଚନା, ଅଙ୍ଗାକ୍ଷର ଅର୍ଚ୍ଚନା, ପଞ୍ଚାକ୍ଷରାଦି ପୂଜା, ନୃସିଂହ ଓ ତ୍ରୈଲୋକ୍ୟ ମୋହନ ମନ୍ତ୍ର, ଲକ୍ଷ୍ମୀ ଏବଂ ତ୍ୱରିତା ପୂଜା, ତ୍ୱରିତା ବିଦ୍ୟା, ସ୍ତମ୍ଭନାଦି ମନ୍ତ୍ର କୀର୍ତ୍ତନ, ସର୍ବକର୍ମକର ମନ୍ତ୍ର, ମନ୍ତ୍ରୋଦ୍ଧାର, ଗଣ ଓ ବାଗୀଶ୍ୱରୀ ପୂଜା, ସର୍ବତୋ ଭଦ୍ର ମଣ୍ଡଳ, ଅଘୋରାସ୍ତ୍ରାଦି ଶାନ୍ତି କଳ୍ପ, ପାଶୁପତାସ୍ତ୍ର ଶାନ୍ତି, ଷଡ଼ଙ୍ଗାଘୋରାସ୍ତ୍ର, ଶିବ ଶାନ୍ତି, ଗୌରୀ ପୂଜା, ଦେବାଳୟ ମାହାତ୍ମ୍ୟ,

ଛନ୍ଦସାର ଆରମ୍ଭ, ଗାୟତ୍ରୀ ଭେଦ କଥନ, ଛନ୍ଦୋପଜାତି ନିରୂପଣ, ବିଷମ, ଅର୍ଦ୍ଧସମ ଓ ସମବୃତ୍ତ ନିରୂପଣ, ପ୍ରସ୍ତାବ ନିରୂପଣ, ଶିକ୍ଷା ନିର୍ଦ୍ଦେଶ, କାବ୍ୟ ଓ ନାଟକର ରସ ନିରୂପଣ, ନୃତ୍ୟ ଓ ଅଭିନୟ, ଶବ୍ଦ ଓ ଅର୍ଥାଳଙ୍କାର, କାବ୍ୟ ଦୋଷ, ଏକାକ୍ଷରୀ ଅଭିଧାନ, ବ୍ୟାକରଣ, ଅଭିଧାନ ବର୍ଗ ବିଭାଗ, ଶରୀରାବୟବ, ଅଷ୍ଟାଙ୍ଗଯୋଗ, ଗୀତା ସାର, ଯମ ଗୀତା, ବ୍ରହ୍ମଜ୍ଞାନ, ଅଦ୍ୱୈତ ବ୍ରହ୍ମଜ୍ଞାନ ବର୍ଣ୍ଣିତ ଅଛି ।

## ଭବିଷ୍ୟତ୍ ପୁରାଣ

ମତ୍ସ୍ୟ ପୁରାଣ କହେ -
ଚତୁର୍ଦ୍ଦଶ ସହସ୍ରାଣି ତଥା ପଞ୍ଚଶତାନି ଚ ।
ଭବିଷ୍ୟ ଚରିତଂ ପ୍ରାୟଂ ଭବିଷ୍ୟଂ ତଦିହୋଚ୍ୟତେ ।।
ଭବିଷ୍ୟଚରିତବିଶିଷ୍ଟ ଭବିଷ୍ୟତ୍ ପୁରାଣରେ ଚଉଦ ସହସ୍ର ପଞ୍ଚଶତ ଶ୍ଳୋକ ଅଛି ।
ନାରଦ ପୁରାଣମତେ -
ଚତୁର୍ଦ୍ଦଶ ସହସ୍ରଂ ତୁ ପୁରାଣଂ ପରିକୀର୍ତ୍ତିତଂ
ଭବିଷ୍ୟଂ ସର୍ବଦେବାନାଂ ସାମ୍ୟଂ ଯତ୍ର ପ୍ରକୀର୍ତ୍ତିତଂ ।।

ଅର୍ଥାତ୍ - ସମସ୍ତ ଦେବଗଣର ସମତ୍ୱ ପ୍ରକୀର୍ତ୍ତିତ ଭବିଷ୍ୟ ପୁରାଣ ଚତୁର୍ଦ୍ଦଶସହସ୍ର ସଂଖ୍ୟକ ଶ୍ଳୋକାତ୍ମକ ଏବଂ ଉକ୍ତ ପୁରାଣ ବ୍ରହ୍ମ, ବୈଷ୍ଣବ, ଶୈବ, ସୌର ଓ ପ୍ରତିସର୍ଗ ଭେଦରେ ପଞ୍ଚଧା ବିଭକ୍ତ । ବର୍ତ୍ତମାନ ବିଭିନ୍ନାକାରରେ ଚାରିଖଣ୍ଡ ଭବିଷ୍ୟ ପୁରାଣ ବିଦ୍ୟମାନ । ଦ୍ୱିତୀୟ ଭବିଷ୍ୟର ଶ୍ଳୋକସଂଖ୍ୟା ପଚାଶ ସହସ୍ର, ଏଥିରେ ଯେଉଁ କେତେକ ନୂତନ ବିଷୟ ସନ୍ନିବେଶିତ ତାହା ସହଜରେ ଅନୁମେୟ ତୃତୀୟ ଭବିଷ୍ୟ ତାନ୍ତ୍ରିକ ପ୍ରଭାବରେ ପରିପୂର୍ଣ୍ଣ । ସେଥିରେ ଆଗମ ତନ୍ତ୍ର, ଯାମଳ, ଡାମରାଦି କଥା ବିଶେଷ ଭାବେ ଆଲୋଚିତ । ଏଥିରେ ପୁରାଣ ଆଚାର୍ଯ୍ୟଙ୍କର ବ୍ୟାସ ଉପାଧି ବିଦ୍ୟମାନ ଏବଂ ମ୍ଳେଚ୍ଛୋକ୍ତ ଶାସ୍ତ୍ରତ୍ୟାଗ ଏବଂ ଜ୍ୟୋତିଷ ଓ ବେଦ ସଂଗ୍ରହରେ ଦୋଷ କଥା ଉଲ୍ଲିଖିତ ଅଥଚ ଉଦ୍ଭିଜ ବିଦ୍ୟା ଅର୍ଥାତ୍ ବୋଟାନି ସମାଲୋଚିତ । ଏଥିରେ ଅନେକ ଐତିହାସିକ ବୃତ୍ତାନ୍ତ ସଂଯୋଜିତ । ପୁରାଣଗତ ଚରିତ ଯଥା- ବ୍ରାହ୍ମପର୍ବେ ସୁମନ୍ତୁ ଶତାନୀକ ସମ୍ବାଦେ ବେଦପୁରାଣାଦି ଶାସ୍ତ୍ର ପ୍ରସଙ୍ଗ, ଯୁଗ ବ୍ୟବହାର, ଚାତୁର୍ବର୍ଣ୍ଣ୍ୟର କର୍ତ୍ତବ୍ୟ, ଉପନୟନ ସଂସ୍କାର, ସାବିତ୍ର୍ୟୁପଦେଶ, ଗୁରୁଶିଷ୍ୟ କର୍ତ୍ତବ୍ୟ, ନାରୀର ଶୁଭାଶୁଭ, ଭାର୍ଯ୍ୟାହୀନର କର୍ମରେ ଅନଧିକାର, ବିବାହଯୋଗ୍ୟା କନ୍ୟା ଅଷ୍ଟବିଧ ବିବାହ, ପୁଣ୍ୟଦେଶ ବିବରଣ, ନାରୀର ଚରିତ, ପତିର କର୍ତ୍ତବ୍ୟ ବିହିତ, ନିଷିଦ୍ଧ କର୍ମ, ତିଥି ବିଶେଷର ଦ୍ରବ୍ୟାହାରବ୍ରତ, ବ୍ରହ୍ମାର୍ଚ୍ଚନା ମାହାତ୍ମ୍ୟ, ଚ୍ୟବନୋପାଖ୍ୟାନ, ବିନାୟକ ପ୍ରଭୃତି ବ୍ରତବିଧି, ସାମୁଦ୍ରିକ ହୋମଦ୍ରବ୍ୟ ଓ ମନ୍ତ୍ରଭେଦ, ନାଗଗଣର ଜାତି ବିବାହ ବର୍ଣ୍ଣନ, ବିଷ ହରଣ ଔଷଧ, ନାଗ ପୂଜା, ସ୍କନ୍ଦପୂଜା, ବ୍ରାହ୍ମଣର ଦଶବିଧ ସଂସ୍କାର, ସୂର୍ଯ୍ୟାର୍ଚ୍ଚନ ବିଧି, ବ୍ରହ୍ମଯାଜ୍ଞବଲ୍କ୍ୟ ସମ୍ବାଦେ ସୂର୍ଯ୍ୟଙ୍କର ପରମାତ୍ମା ସ୍ୱରୂପ କଥା, ୪୭ ଅଧ୍ୟାୟଠାରୁ ୧୩୩ ଅଧ୍ୟାୟ ପର୍ଯ୍ୟନ୍ତ ସୂର୍ଯ୍ୟବେଦଙ୍କର ମଣ୍ଡଳ, ରଥ, ପୂଜା, ବ୍ରତ ଏବଂ

ଚନ୍ଦ୍ରଭାଗା ତୀର୍ଥେ, ଶାମ୍ବଙ୍କର କୁଷ୍ଠହରଣୋପାଖ୍ୟାନ, ଅଷ୍ଟବିଧ ବ୍ୟାକରଣ ପ୍ରସଙ୍ଗ, ଚତୁର୍ଦ୍ଦଶ ବିଦ୍ୟା ଲକ୍ଷଣ ଓ ଅଷ୍ଟାଦଶ ବିଦ୍ୟା, ସ୍ତ୍ରୀ ରକ୍ଷଣୋପାୟ ବର୍ଣ୍ଣନ, ଭୃତ୍ୟଗଣଙ୍କୁ ବେତନ ଦାନ ବ୍ୟବସ୍ଥା, ସ୍ତ୍ରୀର ବୃତ୍ତି ନିରୂପଣ ଓ ସାଧ୍ୱୀର କର୍ତ୍ତବ୍ୟ କର୍ମ ଓ ଗଣେଶ ପୂଜା ବର୍ଣ୍ଣିତ ଅଛି ।

ବିଷ୍ଣୁ ପର୍ବର ପୂର୍ବ ଭାଗରେ ଶିବମାହାତ୍ମ୍ୟ, ଦେବୀ ଯାତ୍ରା ବିଧି ମଧ୍ୟ ଅଛି । ତନ୍ତ୍ରରେ ଷୋଡ଼ଶୋପଚାର ପୂଜା, ପ୍ରତିମା ଓ ମଣ୍ଡଳ ଲକ୍ଷଣ, ଦ୍ୱିତୀୟ ଭାଗରେ ପ୍ରବର ଓ ବାସ୍ତୁ ନିର୍ଣ୍ଣୟ, ପ୍ରତିଷ୍ଠା ବିଧି, ତୃତୀୟ ଭାଗରେ ଧ୍ୱଜାରୋପଣାଦି ପ୍ରତିଷ୍ଠା ବିଧି, ଚତୁର୍ଥ ଭାଗରେ ଦାନ ବିଧି, (ତୃତୀୟ ଭବିଷ୍ୟରେ) ବ୍ରହ୍ମ, ରୁଦ୍ର ଲୋକାଦି ବର୍ଣ୍ଣନ, ଜ୍ୟୋତିଃଚକ୍ର, ଅନେକ ପ୍ରକାର ମନୁଷ୍ୟ ଲକ୍ଷଣ, ଅନ୍ତର୍ବେଦୀ ଓ ବହିର୍ବେଦୀ ଲକ୍ଷଣ, କୂପାଦି ବହୁବିଧ ପ୍ରତିଷ୍ଠା, ତିଥି ବ୍ୟବସ୍ଥା, କର୍ତ୍ତବ୍ୟ କର୍ମ, ଗୋତ୍ର ପ୍ରବର କୀର୍ତ୍ତନ, ତୃତୀୟରେ ନାନାବିଧ ପ୍ରତିଷ୍ଠା, ଚତୁର୍ଥ ଭବିଷ୍ୟୋତ୍ତରରେ ବୈଷ୍ଣବୀ ମାୟା କଥନ, ସଂସାର ଦୋଷ କଥନ, ଏଥିରେ ନାନାବିଧ ବ୍ରତ ଓ ଦାନ କଥା ବର୍ଣ୍ଣିତ ହୋଇଅଛି । ଭବିଷ୍ୟର ଶେଷ ତାତ୍ପର୍ଯ୍ୟ ଗୋଟିଏ ଶ୍ଳୋକରେ କୁହାଯାଇଛି-

ଭବିଷ୍ୟଂ ସର୍ବ ଦେବନାଂ ସାମ୍ୟଂ ଯତ୍ର ପକୀର୍ତ୍ତିତଂ
ଗୁଣାନାଂ ତାରତମ୍ୟେନ ସମଂ ବ୍ରହ୍ମେତି ହି ଶ୍ରୁତିଃ ।

## ବ୍ରହ୍ମବୈବର୍ତ୍ତ ପୁରାଣ

ବ୍ରହ୍ମବୈବର୍ତ୍ତ ପୁରାଣ ବ୍ରହ୍ମ ଖଣ୍ଡ, ପ୍ରକୃତି ଖଣ୍ଡ, ଗଣେଶ ଖଣ୍ଡ ଓ ଶ୍ରୀକୃଷ୍ଣ ଜନ୍ମଖଣ୍ଡ ଭେଦରେ ଚାରି ଭାଗରେ ବିଭକ୍ତ ।

ମତ୍ସ୍ୟ ପୁରାଣ ମତେ -
ରଥାନ୍ତରସ୍ୟ କଳ୍ପସ୍ୟ ବୃତ୍ତାନ୍ତମଧିକୃତ୍ୟ ଯତ୍ ।
ସାବର୍ଣ୍ଣିନା ନାରଦାୟ କୃଷ୍ଣମାହାତ୍ମ୍ୟ ସଂଯୁତଂ ।
ଯତ୍ର ବ୍ରହ୍ମ ବରାହସ୍ୟ ଚରିତଂ ବର୍ଣ୍ଣ୍ୟତେ ମୁହୁଃ ।।
ତଦଷ୍ଟାଦଶ ସାହସ୍ରଂ ବ୍ରହ୍ମବୈବର୍ତ୍ତ ମୁଚ୍ୟତେ ।

ଅର୍ଥାତ୍ ରଥାନ୍ତର କଳ୍ପର ବୃତ୍ତାନ୍ତ ପ୍ରସଙ୍ଗରେ ଯେଉଁ ଗ୍ରନ୍ଥରେ ସାବର୍ଣ୍ଣି ନାରଦଙ୍କ ନିକଟରେ କୃଷ୍ଣ ଓ ବ୍ରହ୍ମବରାହ ଚରିତ ବର୍ଣ୍ଣନ କରିଅଛନ୍ତି ତାହାହିଁ ଅଷ୍ଟାଦଶ ସହସ୍ର ସଂଖ୍ୟକ ଶ୍ଳୋକାତ୍ମକ ବ୍ରହ୍ମବୈବର୍ତ୍ତ ପୁରାଣ । ଶୈବମତେ- ''ବିବର୍ତ୍ତନାତ୍ ବ୍ରହ୍ମଣସ୍ତୁ ବ୍ରହ୍ମବୈବର୍ତ୍ତ ମୁଚ୍ୟତେ ।'' ଅର୍ଥାତ୍ ବ୍ରହ୍ମଙ୍କର ବିବର୍ତ୍ତନ ପ୍ରସଙ୍ଗ ଏଥିରେ ବର୍ଣ୍ଣିତ ହୋଇଥିବାରୁ ଏହାର ନାମ ବ୍ରହ୍ମବୈବର୍ତ୍ତ ଏବଂ ନାରଦ ପୁରାଣୋକ୍ତ ଲକ୍ଷଣ ଅନ୍ୟବିଧି । ପୂର୍ବୋକ୍ତ ମତ୍ସ୍ୟ ଓ ଶୈବପୁରାଣୋକ୍ତ ବ୍ରହ୍ମ ପୁରାଣର ବରାହ ବୃତ୍ତାନ୍ତ ବା ବ୍ରହ୍ମାର ବିବର୍ତ୍ତନ ପ୍ରସଙ୍ଗ ବ୍ରହ୍ମବୈବର୍ତ୍ତରେ ଆଦୌ ନାହିଁ । ସ୍କନ୍ଦପୁରାଣ କହେ- ସବିତୁ ବ୍ରହ୍ମବୈବର୍ତ୍ତଂ । ଅର୍ଥାତ୍ ବ୍ରହ୍ମବୈବର୍ତ୍ତ ସବିତା ମହିମା ପ୍ରକାଶକ । ସ୍ୱୟଂ ବ୍ରହ୍ମବୈବର୍ତ୍ତ କହେ -

ବିବୃତଂବ୍ରହ୍ମ କାର୍ତ୍ସ୍ନେନ ଶ୍ରୀକୃଷ୍ଣେନ ଯଦା ଶୌନକ
ବ୍ରହ୍ମବୈବର୍ତ୍ତଙ୍କ ତେନ ପ୍ରବଦନ୍ତି ପୁରାବିଦଃ ।

ଅର୍ଥାତ୍- ଶ୍ରୀକୃଷ୍ଣ ଉକ୍ତ ପୁରାଣରେ ବ୍ରହ୍ମତତ୍ତ୍ୱ ପ୍ରକାଶ କରିଅଛନ୍ତି ବୋଲି ଏହାର ନାମ ବ୍ରହ୍ମବୈବର୍ତ୍ତ । ପୂର୍ବୋକ୍ତ ବିଷୟଦ୍ୱାରା ଜଣାଯାଉଛି ଯେ ଏହି ପୁରାଣର ନାନାବିଧ ରୂପାନ୍ତର ଘଟିଅଛି । ପ୍ରକୃତିରୂପିଣୀ ଶକ୍ତିର ପ୍ରାଧାନ୍ୟ ଏଥିରେ ବର୍ଣ୍ଣିତ ହୋଇଥିବା ଯୋଗୁଁ ଦେବୀଯାମଳ ତନ୍ତ୍ରରେ ବ୍ରହ୍ମବୈବର୍ତ୍ତ ଶାକ୍ତପୁରାଣ ରୂପେ ଗୃହୀତ । ବୋଧହୁଏ ଆଦି ବ୍ରହ୍ମବୈବର୍ତ୍ତ ପୁରାଣରେ ବ୍ରହ୍ମାର ବିବର୍ତ୍ତନ ବିଷୟ ବର୍ଣ୍ଣିତ ଥିଲା । ପରେ କୃଷ୍ଣ ସମ୍ବାଦ ସଂଯୋଜିତ ହୋଇଅଛି । କ୍ରମେ ସାମ୍ପ୍ରଦାୟିକ ପ୍ରଭାବ ଯୋଗୁଁ ସୌର ଓ ବୈଷ୍ଣବ ଗ୍ରନ୍ଥ ରୂପେ ଗୃହୀତ ହୋଇଥିବା ମଧ୍ୟ ବିଚିତ୍ର ନୁହେଁ । ସମ୍ଭବତଃ ବ୍ରହ୍ମବୈବର୍ତ୍ତ ପରି ଅନ୍ୟ ପୁରାଣଗୁଡ଼ିକ ବହୁ କଳ୍ପନାବିଜଡ଼ିତ ନୁହନ୍ତି । ଭାରତରେ ହିନ୍ଦୁ ମୁସଲମାନର ଯୌନ ସମ୍ବନ୍ଧରୁ ନାନାଜାତି ଉଦ୍ଭୂତ ହେଲା ପରେଏହାର କଳେବର ଅଯଥା ବୃଦ୍ଧି ପାଇଅଛି । ଯେହେତୁ ଉକ୍ତ ପୁରାଣରେ ଅଛି, ''ମ୍ଳେଚ୍ଛାତ୍ କୁବିନ୍ଦକନ୍ୟାୟାଂ ଜୋଲ ଜାତିର୍ବଭୂବ ହ'' ଅର୍ଥାତ୍ ମ୍ଳେଚ୍ଛଙ୍କ ଔରସରେ କୁବିନ୍ଦକନ୍ୟା ଗର୍ଭରୁ ଜୋଲାଜାତି ଜନ୍ମ ହେଲେ । ଏହିପରି ଅନେକ ନୂତନ କଥାର ଅବତାରଣା ଏଥିରେ ଦେଖାଯାଏ । ଅତଏବ ବଙ୍ଗଦେଶରେ ମୁସଲମାନ ସଂଶ୍ରବ ବିଶେଷ ରୂପେ ପ୍ରଚଳିତ ଥିଲାବେଳେ ବଙ୍ଗୀୟ ପଣ୍ଡିତମାନଙ୍କ କର୍ତ୍ତୃକ ଏହା ରଚିତ ହୋଇଥିବା ଅସମ୍ଭବ ନୁହେଁ । ଶଙ୍ଖଚୂଡ଼ ଯୁଦ୍ଧରେ ରାଢ଼ୀୟ ଓ ବୀରେନ୍ଦ୍ର ବୀରଗଣର ନାମ ମଧ୍ୟ ଏଥିରେ ଲେଖା ଯାଇଅଛି ।

## ବ୍ରହ୍ମବୈବର୍ତ୍ତ ପୁରାଣ

ଏଥିରେ ରାଧାକୃଷ୍ଣୋତ୍ପତ୍ତି, ଗୋପଗୋପୀର ଆବିର୍ଭାବ, ଘୃତାଚି ଓ ବିଶ୍ୱକର୍ମାର ପରସ୍ପର ଶାପ, ୧୨ ଠାରୁ ୩୦ ଅଧ୍ୟାୟ ପର୍ଯ୍ୟନ୍ତ ଉପବର୍ହଣ ରୂପେ ନାରଦ ଜନ୍ମ, ଶୂଦ୍ରତ୍ୱ ପ୍ରାପ୍ତିଓ ଶାପବିମୋଚନ ପ୍ରଭୃତି ଗୋଟିଏ ବୃହତ୍ ଉପାଖ୍ୟାନ, ପ୍ରକୃତି ଖଣ୍ଡରେ ଶକ୍ତି ଶବ୍ଦର ନିରୁକ୍ତି, ବିଶ୍ୱନିର୍ମାଣ, ବାଣୀସ୍ତବ, ଲକ୍ଷ୍ମୀ ପ୍ରଭୃତିଙ୍କ ନଦୀତ୍ୱ ପ୍ରାପ୍ତି, ପୃଥିବୀର ଉପାଖ୍ୟାନ, ଭଗୀରଥୋପାଖ୍ୟାନ, ତୁଳସୀ ଉପାଖ୍ୟାନରେ ବିଷ୍ଣୁ କର୍ତ୍ତୃକ ଶଙ୍ଖଚୂଡ଼, ପତ୍ନୀ ତୁଳସୀର ସତୀତ୍ୱ ହରଣ, ଅବିକଳ ଜଳନ୍ଧର ଉପାଖ୍ୟାନର ଅନୁରୂପ, ବିବକର୍ତ୍ତୃକ ଶଙ୍ଖଚୂଡ଼ ବଧ, ସାବିତ୍ରୀ ସତ୍ୟବାନ ଚରିତ, ସମୁଦ୍ର ମନ୍ଥନ, ନରକ କୁଣ୍ଡ ଲକ୍ଷଣ, ସ୍ୱାହାସ୍ୱଧା ଉପାଖ୍ୟାନ, ଷଷ୍ଠୀ ଓ ମନସାପୂଜା, ଜରତ୍କାରୁ ଉପାଖ୍ୟାନରେ ଆସ୍ତିକ ଚରିତ, ମନସା ଓ ସୁରଭୀସ୍ତବ, ଶିବ କର୍ତ୍ତୃକ ରାଧାସ୍ତବ, ବିପ୍ରପାଦୋଦକ ପ୍ରଶଂସା, ରାଧାର ପୂଜା ଓ ସ୍ତବ, ଦେବୀମାହାତ୍ମ୍ୟ, ବୁଧ ଜନ୍ମ, ସୁରଥକୃତ, ପ୍ରକୃତିପୂଜା ଓ ଦୁର୍ଗାକବଚ, ଗଣେଶ ଖଣ୍ଡରେ ପାର୍ବତୀଙ୍କ ପ୍ରତି ଶଙ୍କରଙ୍କର ପୁଣ୍ୟ ବ୍ରତୋପଦେଶ, ପାର୍ବତୀ କୃତ ଶ୍ରୀକୃଷ୍ଣ ସ୍ତବ, କାର୍ତ୍ତିକେୟ ଓ ଗଣେଶଙ୍କର ବିବାହ, ସୂର୍ଯ୍ୟସ୍ତବ, ଲକ୍ଷ୍ମୀଚରିତ, ଗଣେଶଙ୍କ ଜନ୍ମ, ଶିରଚ୍ଛେଦ ଏବଂ ଏକଦନ୍ତତ୍ୱ ପ୍ରଭୃତି ଅନେକ ବୃତ୍ତାନ୍ତ, ଶ୍ରୀକୃଷ୍ଣ ଜନ୍ମଖଣ୍ଡରେ ରାଧାକୃଷ୍ଣ ବିବାହ, ରାସଲୀଳା, ରମ୍ଭାଭିଶାପେ ଦେବଳଙ୍କ ଅଷ୍ଟାଙ୍ଗ ବକ୍ରତା, ଉର୍ବଶୀଶାପେ

ଦୁର୍ବାସାପରାଭବ, ମୋହିନୀକୃତ କାମସ୍ତବ, ବ୍ରହ୍ମାର ଭାରତୀ ସମ୍ଭୋଗ, ରତି ଓ କାମ ଜନ୍ମ, ହରଦର୍ପ ଭଙ୍ଗ, ଶିବନିର୍ମାଲ୍ୟର ଅଗ୍ରାହ୍ୟତା, ମଦନଭସ୍ମ, ହରଗୌରୀ ବିବାହ, ଶ୍ରୀକୃଷ୍ଣ ଚରିତ ଓ ପ୍ରଭାବ, କୃଷ୍ଣ ବିରହିଣୀ ରାଧାଙ୍କ ବୈକୁଣ୍ଠ ଗମନ, ନହୁଷଙ୍କ ସର୍ପତ୍ୱ ପ୍ରାପ୍ତି, ଅହଲ୍ୟା ହରଣ, ଅହଲ୍ୟାଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଆଧ୍ୟାତ୍ମିକ ଯୋଗ କଥନ, ମଥୁରା ପ୍ରସଙ୍ଗ, ନନ୍ଦଙ୍କ ପ୍ରତି ଶ୍ରୀକୃଷ୍ଣଙ୍କ ଉପଦେଶ, ସ୍ୱପ୍ନାଧ୍ୟାୟ, ଚନ୍ଦ୍ର ଓ ତାରାଚରିତ, ସ୍ତ୍ରୀଧର୍ମ, ଚତୁର୍ବର୍ଣ୍ଣ୍ୟ, ଭକ୍ଷାଭକ୍ଷ, କେଦାର ରାଜକନ୍ୟା ବୃତ୍ତାନ୍ତ,ଉଦ୍ଧବ ଓ କଳାବତୀ ଉପାଖ୍ୟାନ, କୃଷ୍ଣଙ୍କଉପନୟନ, ରୁକ୍ମିଣୀ ବିବାହ, ରାଧା ଓ ଯଶୋଦା ସମ୍ବାଦ, ଶ୍ରୀକୃଷ୍ଣଙ୍କ ଷୋଡ଼ଶ ସହସ୍ର କନ୍ୟାସହ ପାଣିଗ୍ରହର, ଉଷାନିରୁଦ୍ଧ ଚରିତ, ରାଧାକୃଷ୍ଣ ମିଳନ ପ୍ରଭୃତି ଚରିତ ବର୍ଣ୍ଣିତ ଅଛି ।

ମତ୍ସ୍ୟ ପୁରାଣ ମତେ-
ଯତ୍ରାଗ୍ନି ଲିଁଙ୍ଗମଧ୍ୟସ୍ଥଃ ପ୍ରାହଦେବ ମହେଶ୍ୱରଃ ।
ଧର୍ମାର୍ଥକାମମୋକ୍ଷାଣାମାଗ୍ନେୟମଧିକୃତ୍ୟ ଯତ୍ ।।
କଳ୍ପାନ୍ତଂ ଲୈଙ୍ଗମିତ୍ୟୁକ୍ତଂ ପୁରାଣଂ ବ୍ରହ୍ମଣା ସ୍ୱୟଂ ।
ତଦେକାଦଶସାହସ୍ରଂ ଫାଲ୍‌ଗୁନ୍ୟାଂ ଯଃ ପ୍ରଯଚ୍ଛତି ।।

ଅର୍ଥାତ୍- ଯେଉଁ ପୁରାଣରେ ମହେଶ୍ୱର ଅଗ୍ନିଲିଙ୍ଗ ମଧ୍ୟସ୍ଥ ହୋଇ ଅଗ୍ନିକଳ୍ପାନ୍ତେ ଚତୁର୍ବର୍ଗର କଥା ପ୍ରକାଶ କରିଅଛନ୍ତି, ଅନ୍ୟାନ୍ୟ ପୁରାଣରେ ମଧ୍ୟ ତାହା ସମର୍ଥିତ । କିନ୍ତୁ ପରବର୍ତ୍ତୀ ଯୁଗରେ ଶୈବମାନଙ୍କଦ୍ୱାରା ବିଷ୍ଣୁନିନ୍ଦାତ୍ମକ କେତେକ ଶ୍ଳୋକ ପ୍ରକ୍ଷିପ୍ତ ହୋଇଅଛି ।ସେଗୁଡ଼ିକ ବ୍ୟତୀତ ପ୍ରକୃତ ଲିଙ୍ଗ ପୁରାଣ ସୁବିଶୁଦ୍ଧ ଓ ଅତି ପ୍ରାଚୀନ ।

## ପୁରାଣଗତ ଚରିତ

ପୂର୍ବ ଭାଗରେ ସୃଷ୍ଟି କଥନ, ନିବୃତ୍ତି ମାର୍ଗ ଓ ଶିବାରାଧନାଦ୍ୱାରା ଅଷ୍ଟାଙ୍ଗ ସାଧନ କ୍ରମ, କଳ୍ପ ଭେଦରେ ଶଙ୍କରାରାଧନା, ଶିବ କ୍ଷେତ୍ର, ଭସ୍ମ, ଦୀକ୍ଷା, ରୁଦ୍ରାକ୍ଷ ଧାରଣ ବର୍ଣ୍ଣନ, ସନତ୍ କୁମାରଙ୍କଦ୍ୱାରା ନନ୍ଦିର ଜନ୍ମ ବୃତ୍ତାନ୍ତ କଥନ, ଶିବରୂପୀ ସୂର୍ଯ୍ୟଙ୍କର ଚୈତ୍ରାଦି ମାସକ୍ରମେ ଦ୍ୱାଦଶ ଭେଦ କଥନ, ନିର୍ଗୁଣ ଶିବଙ୍କର ଯୋଗ ଗମ୍ୟତ୍ୱ, ଶିବାଭିଷେଚନ, ତଣ୍ଡିକୋକ୍ତ ଶିବ ସହସ୍ର ନାମ, କୃଷ୍ଣାବତାର ବୃତ୍ତାନ୍ତ, ବ୍ରହ୍ମା କର୍ତ୍ତୃକ ଲିଙ୍ଗାର୍ଚ୍ଚନ ବିଧି । ଅହିଂସା ଭକ୍ତି ଫଳ, ପାଶୁପତ ବ୍ରତ, ଅଷ୍ଟସିଦ୍ଧି, ଯତି ପ୍ରାୟଶ୍ଚିତ, ବାରାଣସୀ ମାହାତ୍ମ୍ୟ, ନୃସିଂହ ପରାଜୟ, ଶିବ ପ୍ରସାଦେ ବିଷ୍ଣୁଙ୍କର ଚକ୍ରପ୍ରାପ୍ତି, ଉପମନ୍ୟୁ ନିକଟରେ କୃଷ୍ଣଙ୍କ ଶୈବ ଦୀକ୍ଷା ଗ୍ରହଣ, ଉତ୍ତର ଭାଗରେ ବିଷ୍ଣୁ ଭକ୍ତ ଲକ୍ଷଣ, ଅଲକ୍ଷ୍ମୀ ନିରାକରଣ, ଲକ୍ଷ୍ମୀ ପ୍ରାପ୍ତି, ପଶୁପତି ନାମ ନିରୁକ୍ତି, ଶିବଙ୍କ ପରଂବ୍ରହ୍ମ ନିରୂପଣ, ସଗୁଣ ରୁଦ୍ର ବିଗ୍ରହରୁ ବିଶ୍ୱୋତ୍ପତ୍ତି, ବ୍ରହ୍ମ କର୍ତ୍ତୃକ ଶିବ ସ୍ତବ, ମଣ୍ଡଳରେ ଶିବ ପୂଜା, ଦୀକ୍ଷା, ସୌର ସ୍ନାନାଦି ନିରୂପଣ ମାନସ ଶିବ ପୂଜା, ଅଗ୍ନି କାର୍ଯ୍ୟ କଥନ, ଅଘୋର ପୂଜା, ଜୟାଭିଷେକ, ହିରଣ୍ୟଗର୍ଭ ବିଧି, ହୋମଧେନୁ ଦାନ ବିଧି । ଜୀବ

ଶ୍ରାଦ୍ଧ କଥନ, ଲିଙ୍ଗ ସ୍ଥାପନ, ଶତ୍ରୁ ନିଗ୍ରହଭେଦ, ବଜ୍ରବାହନିକା, ବିଦ୍ୟାଦାନ, ମୃତ୍ୟୁଞ୍ଜୟ ବିଧି, ତ୍ର୍ୟମ୍ବକ ମନ୍ତ୍ରଦ୍ୱାରା ଶିବପୂଜା ପ୍ରଭୃତି କଥିତ ହୋଇଅଛି ।

## ବରାହ ପୁରାଣ

ମତ୍ସ୍ୟ ପୁରାଣ ମତେ -
ମହାବରାହସ୍ୟ ପୁନଃ ମାହାତ୍ମ୍ୟ ମଧିକୃତ୍‌ବଚଃ ।
ବିଷ୍ଣୁନାଭିହିତଂ କ୍ଷୌଣ୍ୟୈ ତଦ୍‌ବରାହମିହୋଚ୍ୟତେ ।।
ମାନବସ୍ୟ ପ୍ରସଙ୍ଗେନ କଲ୍ପସ୍ୟ ମୁନିସତ୍ତମାଃ ।
ଚତୁର୍ବିଂଶତ୍ସହସ୍ରାଣି ତତ୍‌ପୁରାଣ ମିହୋଚ୍ୟତେ ।।

ଅର୍ଥାତ୍ ଯହିଁରେ ମାନବ କଳ୍ପ ପ୍ରସଙ୍ଗେ ବିଷ୍ଣୁ ପୃଥିବୀ ନିକଟରେ ମହାବରାହଙ୍କ ମାହାତ୍ମ୍ୟ କହିଥିଲେ ଉକ୍ତ ୨୪୦୦୦ ଶ୍ଳୋକାତ୍ମକ ପୁରାର ବରାହ ପୁରାଣ ନାମେ ଖ୍ୟାତ ।

ନାରଦ ପୁରାଣଗତ ଲକ୍ଷଣ ସଙ୍ଗେ ବରାହ ପୁରାଣର ଅନେକ ସୌସାଦୃଶ୍ୟ ଥିଲେ ସୁଦ୍ଧା ମାନବ କଳ୍ପ ପ୍ରସଙ୍ଗେ ମହାବରାହଙ୍କ ମାହାତ୍ମ୍ୟ ବର୍ଣ୍ଣିତ ହୋଇନାହିଁ ଏବଂ ପ୍ରଚଳିତ ପୁରାଣରେ ବହୁସଂଖ୍ୟକ ବ୍ରତାଦିର କଥା ନାରଦ ପୁରାଣୋକ୍ତ ଲକ୍ଷଣ ସଙ୍ଗେ ସାମଞ୍ଜସ୍ୟ ନାହିଁ । ଅନ୍ୟଚ୍ଚ ବୁଦ୍ଧଦ୍ୱାଦଶୀ ବ୍ରତ ପ୍ରସଙ୍ଗରୁ ଅନେକ ଐତିହାସିକ ଅନୁମାନ କରନ୍ତି ଯେ ବୁଦ୍ଧଦେବ ଭାରତ ବର୍ଷରେ ଅବତାର ରୂପେ ପରିଗଣିତ ହେଲାପରେ ଏହାର ଏବଂବିଧ ସଂକଳନ ହୋଇଅଛି ।

## ବରାହ ପୁରାଣଗତ ଚରିତ

ଏଥିରେ ସୃଷ୍ଟି ବ୍ୟାପାର, ଆଶ୍ୱଶିରା ଉପାଖ୍ୟାନ, ଗଦାଧର ସ୍ତବ, ପୁରୁଷୋତ୍ତମ ସ୍ତୋତ୍ର, ବିରାଟ ରୂପ ଦର୍ଶନ, ସୁପ୍ରତୀକ ଉପାଖ୍ୟାନ, ଗୌରମୁଖ ଉପାଖ୍ୟାନ, ଶ୍ରାଦ୍ଧରେ ପିତୃ କୃତ୍ୟ ଶ୍ରାଦ୍ଧାନୁଷ୍ଠାନ ପଦ୍ଧତି, ଅଗ୍ନିର ଉତ୍ପତ୍ତି, ତିଥି ମାହାତ୍ମ୍ୟ, ଗୌରୀ ଚରିତ, ଗଣେଶ ଜନ୍ମ ଓ ଚତୁର୍ଥୀ କୃତ୍ୟ, ନାଗ-କାତ୍ୟାୟନୀ ଓ ଧର୍ମୋତ୍ପତ୍ତି କଥା, ରୁଦ୍ର ସ୍ତୋତ୍ର, ମଣିବାନ୍ ନୃପ ଓ ଆରୁଣିକ ବୃତ୍ତାନ୍ତ, ସତ୍ୟତପୋ ନାମକ ବ୍ୟାଧ ବୃତ୍ତାନ୍ତ । ୪୦ ଅଧ୍ୟାୟଠାରୁ ୭୭ ଅଧ୍ୟାୟ ପର୍ଯ୍ୟନ୍ତ ନାନାବିଧ ବ୍ରତକଥା, ଚନ୍ଦ୍ରସୂର୍ଯ୍ୟ ରହସ୍ୟ, ଯୁଗ ଭେଦରେ ଧର୍ମ ଭେଦ, ଅଗମ୍ୟା ଗମନ ପ୍ରାୟଶ୍ଚିତ୍ତ, ଅଗସ୍ତ୍ୟର ଅବଦାନ, ରୁଦ୍ରକୃତ ନାରାୟଣ ସ୍ତୋତ୍ର, ଅମରାବତୀ ବର୍ଣ୍ଣନ, ଦ୍ୱୀପ ବର୍ଣ୍ଣନ, ମେରୁମୂଳ ବର୍ଣ୍ଣନ ଓ ପରାପରତ୍ୱ ବିବେକ, ବୈଷ୍ଣବ ଧର୍ମୋତ୍ପତ୍ତି କଥା, ଶକ୍ତିସ୍ତୋତ୍ର, ମହିଷାସୁର ବଧ ବୃତ୍ତାନ୍ତ, ବୈଷ୍ଣବୀ ସ୍ତୋତ୍ର ଓ କାଳରାତ୍ରି ସ୍ତୋତ୍ର, ରୌଦ୍ରୀର ଚରିତ, କାପାଳିକ ବ୍ରତାନୁଷ୍ଠାନ, ସତ୍ୟତପାର ସିଦ୍ଧି, ପଞ୍ଚପାତକ ନାଶନୋପାୟ, ବିଶେଷ ପ୍ରକାରେ ବିଷ୍ଣୁପୂଜା, ତିଳ ଗୁଡ଼ ଶର୍କରା ଓ ଉଭୟମୁଖୀ ପ୍ରଭୃତି ଧେନୁଦାନ ଫଳ, ଅପରାଧ ଭଞ୍ଜନ, ପ୍ରାୟଶ୍ଚିତ, ପ୍ରପାଣ ନିର୍ମାଣ ବିଧି, ପୁନର୍ଜନ୍ମ ବାରଣ

କର୍ମ, ସନାତନ ଧର୍ମସ୍ୱରୂପ କଥନ, ଗର୍ଭୋତ୍ପତ୍ତି ବାରଣ, ତିର୍ଯ୍ୟକ୍ ଯୋନିପତନ ବାରଣ କର୍ମ, ମାୟାସ୍ୱରୂପ କଥନ, ସଂସାର ମୋକ୍ଷକର୍ମ, ଦୀକ୍ଷିତଗଣର କର୍ତ୍ତବ୍ୟ ବିଧି, ଅପରାଧ ପ୍ରାୟଶ୍ଚିତ ବିଧି, ଅନ୍ୟାନ୍ୟ ପ୍ରାୟଶ୍ଚିତ ଭେଦ, ଗୃଧ୍ର ଏବଂ ଶୃଗାଳୀର ଇତିହାସ, ଖଞ୍ଜରୀଟ ଉପାଖ୍ୟାନ, କର୍ମଫଳ କଥନ, ଚଣ୍ଡାଳ ବ୍ରହ୍ମରାକ୍ଷସ ସମ୍ବାଦ, କୋକାମୁଖୀ ଓ ବଦରୁ ମାହାତ୍ମ୍ୟ, ରଜସ୍ୱଳା କର୍ତ୍ତବ୍ୟ, ଗୁହ୍ୟ କର୍ମର ଆଖ୍ୟାନ, ମଥୁରା ଓ ଶାଳଗ୍ରାମ ମାହାତ୍ମ୍ୟ, ଶାଳଙ୍କା ୟନକ ଉପାଖ୍ୟାନ, କୁରୁକ୍ଷେତ୍ର ମାହାତ୍ମ୍ୟ, ଦେବ ବନ ପ୍ରଭାବ ବର୍ଣ୍ଣନ, କପିଳ ଚରିତ, ବିଶ୍ରାନ୍ତି ଓ ଅର୍ଦ୍ଧଚନ୍ଦ୍ର କ୍ଷେତ୍ର, କୃଷ୍ଣଗଙ୍ଗା ମାହାତ୍ମ୍ୟ, ପାଞ୍ଚାଳ ବ୍ରାହ୍ମଣ ଇତିହାସ, କାଷ୍ଠ ଓ ଶୈଳ ପ୍ରତିମା ସ୍ଥାପନ ବିଧି, ଧାତୁ ପ୍ରତିମା ସ୍ଥାପନ, ଶ୍ରାଦ୍ଧୋତ୍ପତ୍ତି ବର୍ଣ୍ଣନ, ମେଧାତିଥି, ପିତୃ ସମ୍ବାଦେ ଶ୍ରାଦ୍ଧ ସଂକଳ୍ପ, ମଧୁପର୍କ ନିରୂପଣ ବିଧି, ଯମାଳୟାଦିର ସ୍ୱରୂପ, ଯମ ନଗର ଓ ସଭା ବର୍ଣ୍ଣନ, ପାପୀଗଣର ଗତି ଓ ନରକ ବର୍ଣ୍ଣନ, ଯମଦୂତ ସ୍ୱରୂପ ଓ ଚିତ୍ରଗୁପ୍ତ ପ୍ରଭାବ ବର୍ଣ୍ଣନ, ଚିତ୍ରଗୁପ୍ତ କର୍ତ୍ତୃକ ଶୁଭାଶୁଭ କର୍ମଫଳ ନିର୍ଦ୍ଦେଶ, ପତିବ୍ରତା ଉପାଖ୍ୟାନ, ଭାସ୍କର କର୍ତ୍ତୃକ ଧର୍ମୋପଦେଶ, ପ୍ରଭେଦିନୀ ମାହାତ୍ମ୍ୟ, ଗୋକର୍ଣ୍ଣେଶ୍ୱର ମାହାତ୍ମ୍ୟ, ଶୃଙ୍ଗେଶ୍ୱର ମାହାତ୍ମ୍ୟ ଓ ଫଳଶ୍ରୁତି ବର୍ଣ୍ଣିତ ଅଛି ।

## ସ୍କନ୍ଦ ପୁରାଣ

ସ୍କନ୍ଦ ପୁରାଣର ଶାଙ୍କରୀ ସଂହିତାର ହାଲାସ୍ୟ ମାହାତ୍ମ୍ୟରେ ଲେଖାଅଛି -

ସ୍କାନ୍ଦମଦ୍ୟାପି ବକ୍ଷାମି ପୁରାଣଂ ଶ୍ରୁତିସାରକଂ ।
ଷଡ୍‌ବିଧଂ ସଂହିତା ଭେଦୈଃ ପଞ୍ଚାଶତ୍‌ଖଣ୍ଡ ମଣ୍ଡିତଂ ।।
ଆଦ୍ୟା ସନତ୍କୁମାରୋକ୍ତା ଦ୍ୱିତୀୟା ସୂତ ସଂହିତା ।
ତୃତୀୟା ଶାଙ୍କରୀ ପ୍ରୋକ୍ତା ଚତୁର୍ଥୀ ବୈଷ୍ଣବୀ ତଥା ।।
ପଞ୍ଚମୀ ସଂହିତା ବ୍ରାହ୍ମୀ ଷଷ୍ଠୀ ସା ସୌର ସଂହିତା ।

ଅର୍ଥାତ୍ ବେଦର ସାରରୁ ସଂକଳିତ ସ୍କନ୍ଦ ପୁରାଣ ଛ ଗୋଟି ସଂହିତା ଓ ପଞ୍ଚାଶ ଖଣ୍ଡରେ ବିଭକ୍ତ । ୧-ସନତ୍‌କୁମାର ସଂହିତା, ୨-ସୂତ ସଂହିତା, ୩-ଶାଙ୍କରୀ ସଂହିତା, ୪-ବୈଷ୍ଣବୀ ସଂହିତା, ୫-ବ୍ରାହ୍ମୀ ଏବଂ ୬-ସୌର ସଂହିତା ଏବଂଚ

ଗ୍ରନ୍ଥତସ୍ତୈବ ଷଟ୍‌ତ୍ରିଂତ୍‌ସହସ୍ରେଣୋପଲକ୍ଷିତା ।
ଆଦ୍ୟାତୁ ସଂହିତା ବିପ୍ରା ଦ୍ୱିତୀୟା ଷଟ୍‌ସହସ୍ରିକା ।।
ତୃତୀୟା ଗ୍ରନ୍ଥତସ୍ତ୍ରିଂଶତ୍ ସହସ୍ରେଣୋପଲକ୍ଷିତା ।
ତୁରୀୟା ସଂହିତା ପଞ୍ଚସହସ୍ରେଣାଭିନିର୍ମିତ ।।
ତତୋଽନ୍ୟା ତ୍ରିସହସ୍ରେଣ ଗ୍ରନ୍ଥେନୈବ ବିନିର୍ମିତା ।
ଅନ୍ୟା ସହସ୍ରଶଃ ସୃଷ୍ଟା ଗ୍ରନ୍ଥତଃ ପଣ୍ଡିତୋତ୍ତମଃ ।।

| | |
|---|---|
| ସନତ୍ କୁମାର ସଂହିତା | ୩୬୦୦୦ |
| ସୂତ ସଂହିତା | ୬୦୦୦ |
| ଶାଙ୍କରୀ ସଂହିତା | ୩୦୦୦୦ |
| ବୈଷ୍ଣବୀ ସଂହିତା | ୫୦୦୦ |
| ବ୍ରାହ୍ମୀ ସଂହିତା | ୩୦୦୦ |
| ସୌର ସଂହିତା | ୧୦୦୦ |

ସମୁଦାୟ ୮୧୦୦୦ ମାତ୍ର

ଉକ୍ତ ପୁରାଣର ପ୍ରଭାସ ଖଣ୍ଡ ମତରେ -

ସ୍କାନ୍ଦଂ ତୁ ସପ୍ତଧା ଭିନ୍ନଂ ବେଦବ୍ୟାସେନ ଧୀମତା ।
ଏକାଶୀତି ସହସ୍ରାଣି ଶତଂ ଚୈକଂ ଚ ସଂଖ୍ୟାୟା ।।
ତସ୍ୟାଦିମୋ ବିଭାଗସ୍ତୁ ସ୍କନ୍ଦଃ ମାହାତ୍ମ୍ୟ ସଂଯୁତଃ ।
ମାହେଶ୍ୱର ସମାଖ୍ୟାତୋ ଦ୍ୱିତୀୟୋ ବୈଷ୍ଣବସ୍ୟ ଚ ।।
ତୃତୀୟୋ ବ୍ରାହ୍ମଣଃ ପ୍ରୋକ୍ତଃ ସୃଷ୍ଟି ସଂକ୍ଷେପସୂଚକଃ ।
କାଶୀ ମାହାତ୍ମ୍ୟ ସଂଯୁକ୍ତଶ୍ଚତୁର୍ଥଃ ପରିପଠ୍ୟତେ ।।
ରେବାୟାଂ ପଞ୍ଚମୋ ଭାଗଃ ଉଜ୍ଜୟିନ୍ୟାଂ ପ୍ରକୀର୍ତ୍ତିତଃ ।
ଷଷ୍ଠଃ କଳ୍ପାର୍ଚ୍ଚନଂ ବିଶ୍ୱତାପୀ ମାହାତ୍ମ୍ୟ ସୂଚକଃ ।।
ସପ୍ତମୋଽଥ ବିଭାଗୋଽୟଂ ଶ୍ରୁତଃ ପ୍ରାଭାସିକୋ ଦ୍ୱିଜାଃ ।
ସର୍ବେ ଦ୍ୱାଦଶ ସାହସ୍ର ବିଭାଗାଃ ସାଧିକାଃ ସ୍ମୃତାଃ ।।

ଅର୍ଥାତ୍- ପ୍ରଥମ ଭାଗ ମାହେଶ୍ୱର ଖଣ୍ଡ, ଦ୍ୱିତୀୟ ବୈଷ୍ଣବ, ତୃତୀୟ ସୃଷ୍ଟି ବର୍ଣ୍ଣନା, ସୂଚକ ବ୍ରହ୍ମଖଣ୍ଡ, ଚତୁର୍ଥ କାଶୀ ଖଣ୍ଡ, ପଞ୍ଚମ ଉଜ୍ଜୟିନୀ କଥାଯୁକ୍ତ ରେବା ଖଣ୍ଡ, ଷଷ୍ଠ କଳ୍ପପୂଜା ବିଶ୍ୱକଥା ଓ ତାପୀ ମାହାତ୍ମ୍ୟ ସୂଚକ ତାପୀ ଖଣ୍ଡ, ସପ୍ତମ ପ୍ରଭାସ ଖଣ୍ଡ । ଏହି ସମସ୍ତ ଖଣ୍ଡ ଦ୍ୱାଦଶ ସହସ୍ରାଧିକ ବିଭାଗ ନିର୍ଦ୍ଦିଷ୍ଟ କାଶୀ ଖଣ୍ଡରେ ମହମ୍ମଦ ଗଜନୀର ଭାରତାକ୍ରମଣ କଥା ଦେଖାଯାଏ ।

ଏହି ବିରାଟ ବପୁ ସ୍କନ୍ଦ ପୁରାଣର ସଂହିତା ଓ ଖଣ୍ଡ ସମୂହର ଏକତ୍ର ପର୍ଯ୍ୟାଲୋଚନାରୁ ଜଣାଯାଏ ଯେ, ଅଧିକାଂଶ ଏକ ଉପାଦାନରେ ରଚିତ । ଏକ କୁମାରୋତ୍ପତ୍ତି କଥା ହିଁ ଅମ୍ବିକା କେଦାର ଓ କୁମାରିକା ଖଣ୍ଡେ ବର୍ଣ୍ଣିତ । ଏହିପରି ଅଧିକାଂଶ ବିଷୟ ପୁନରୁକ୍ତି ଦୋଷରୁ ଅବ୍ୟାହତି ପାଇନାହିଁ । ଶିବ ପୁରାଣରେ ସ୍କନ୍ଦ ପୁରାଣର ଲକ୍ଷଣ ଲେଖାଅଛି । "ଯତ୍ର ସ୍କନ୍ଦଃ ସ୍ୱୟଂ ଶ୍ରୋତା ବକ୍ତା ସାକ୍ଷାତ୍ ମହେଶ୍ୱରଃ । ତତ୍ତୁସ୍କନ୍ଦଂ ସମାଖ୍ୟାତଂ" । ଇତି । ଅର୍ଥାତ୍- ଯାହାର ବକ୍ତା ସାକ୍ଷାତ୍ ମହେଶ୍ୱର ଏବଂ ଶ୍ରୋତା କାର୍ତ୍ତିକେୟ । ସେହି ପୁରାଣରେ କିନ୍ତୁ ପ୍ରୋକ୍ତ ବିଷୟ ଦେଖାଯାଉ ନାହିଁ । ଏପରି ସ୍ଥିତିରେ ସମସ୍ତ ଲେଖା ବ୍ୟାସଙ୍କ ଲେଖନୀ ପ୍ରସୂତ ବୋଲି କିପରି ବିଶ୍ୱାସ କରାଯାଇପାରେ । ପୁରାଣବର୍ଣ୍ଣିତ ଚରିତ, ଯଥା-ମାହେଶ୍ୱର

ଖଣ୍ଡେ କେଦାର ମାହାତ୍ମ୍ୟ, ଦକ୍ଷଯଜ୍ଞାନୁଷ୍ଠାନ, ଶିବଲିଙ୍ଗାର୍ଚ୍ଚନ ଫଳ, ସମୁଦ୍ରମଥନ, ପାର୍ବତୀ ବିବାହ, ଧର୍ମକର୍ମ ଉପାଖ୍ୟାନ, ଇନ୍ଦ୍ରଦ୍ୟୁମ୍ନ ଚରିତ, ତାରକବଧ, ମହାବିଦ୍ୟା ପ୍ରସାଧନ, ତୀର୍ଥଯାତ୍ରା, ବୈଷ୍ଣବ ଖଣ୍ଡରେ ପୁରୁଷୋତ୍ତମ ମାହାତ୍ମ୍ୟ, ଜୈମିନି ଉପାଖ୍ୟାନ, ଦକ୍ଷିଣାମୂର୍ତ୍ତି କଥା, ଦୋଳୋତ୍ସବ, ବଦରି ମାହାତ୍ମ୍ୟ ପ୍ରଭୃତି ବର୍ଣ୍ଣିତ । ବ୍ରହ୍ମଖଣ୍ଡରେ ଗାଲବ ଚରିତ, ବ୍ରହ୍ମକୁଣ୍ଡ କଥା, ଧର୍ମାରଣ୍ୟ ବୃତ୍ତାନ୍ତ, ଆଶ୍ରମ ଧର୍ମ, ଜାତି ଭେଦ ଓ ସ୍ମୃତି ଧର୍ମ, ବ୍ରହ୍ମଖଣ୍ଡୋତ୍ତର ଭାଗରେ ଗୋକର୍ଣ୍ଣ ମାହାତ୍ମ୍ୟ, ପ୍ରଦୋଷ ବ୍ରତବିଧି, ଉଦୟ ଚରିତ, ଉମାମହେଶ୍ୱର ବ୍ରତ (କାଶୀ ଖଣ୍ଡରେ) ପତିବ୍ରତା ଚରିତ, ଅଗ୍ନିର ଉତ୍ପତ୍ତି, ଧ୍ରୁବଲୋକାଦି ବର୍ଣ୍ଣନ, ପ୍ରଶଂସା, ସ୍ତ୍ରୀ ଲକ୍ଷଣ, ବାରାଣସୀ, ଦିବୋଦାସ ଚରିତ୍ର, କାଶୀର ପ୍ରତ୍ୟେକ ତୀର୍ଥ ବର୍ଣ୍ଣନ, ଅବନ୍ତି ଖଣ୍ଡେ ଶିବଦୀକ୍ଷା, ଶଙ୍କର ବାପୀ ପ୍ରଭୃତି ବହୁ ତୀର୍ଥ ବିଷୟ,

ରୁଦ୍ରକୁଣ୍ଡ ପ୍ରଭୃତି ନାନା କୁଣ୍ଡ କଥା- ନର୍ମଦେଶ୍ୱର ଆଖ୍ୟାନ, ଦୀର୍ଘତପା ଉପାଖ୍ୟାନ, ଋଷ୍ୟଶୃଙ୍ଗ କଥା, ସୋମେଶ ପ୍ରଭୃତି ବହୁତୀର୍ଥ ମାହାତ୍ମ୍ୟ ନାଗର, ଖଣ୍ଡେ- ହରିଶ୍ଚନ୍ଦ୍ର ଚରିତ, ବୃତ୍ରାସୁର ବଧ, ସିଦ୍ଧେଶ୍ୱର ପ୍ରଭୃତି ତୀର୍ଥ କଥା, ପର୍ଶୁରାମ ଚରିତ, ବାଲଖିଲ୍ୟା ଚରିତ, ବିଶ୍ୱାମିତ୍ର ବୃତ୍ତାନ୍ତ, ଶ୍ରାଦ୍ଧ କଳ୍ପ, ଏକାଦଶରୁଦ୍ର ପ୍ରଭାସ ଖଣ୍ଡେ ବହୁ ରୁଦ୍ର ନାମ କଥନ, ବହୁତୀର୍ଥ କାହାଣୀ, ସନତ୍ କୁମାର ସଂହିତା, ବିଶ୍ୱେଶ୍ୱର ଲିଙ୍ଗାବିର୍ଭାବ, ଅବିମୁକ୍ତକ୍ଷେତ୍ର ପ୍ରବେଶ ବର୍ଣ୍ଣନ, ପାଶୁପତ ବ୍ରତୋପଦେଶ, ବ୍ୟାସ କ୍ଷେତ୍ର ବୃତ୍ତାନ୍ତ, କାଶୀଧର୍ମ ନିରୂପଣ, ସୂତ ସଂହିତା, ଈଶ୍ୱର ଓ ଶକ୍ତି ପୂଜା ଭେଦ, ସୃଷ୍ଟି ବ୍ୟାପାର, ଜାତି ନିର୍ଣ୍ଣୟ, ତୀର୍ଥ ମାହାତ୍ମ୍ୟ, ଜ୍ଞାନଯୋଗ ଖଣ୍ଡେ- ଆଶ୍ରମ ଧର୍ମ, ପ୍ରାୟଶ୍ଚିତ୍ତ, ନାଡ଼ୀଚକ୍ର, ପିଣ୍ଡୋତ୍ପତ୍ତି, ଅଷ୍ଟାଙ୍ଗ ଯୋଗ ସମାଚାର, ମୁକ୍ତିଖଣ୍ଡେ-ମୁକ୍ତିପ୍ରଦ ଚତୁର୍ବେଦ ବୃତ୍ତାନ୍ତ, ଗୁରୁ ଶୁଶ୍ରୂଷା, ଈଶ୍ୱର ନୃତ୍ୟ ଦର୍ଶନଯଜ୍ଞବୈଭବ ଖଣ୍ଡେ- ପରାତ୍ପର ବେଦାର୍ଥ ବିଚାର, କର୍ମଯଜ୍ଞ, ପ୍ରଣବ, ଗାୟତ୍ରୀ, ଷଡ଼ାକ୍ଷର ଧ୍ୟାନଯୋଗ, ବୈରାଗ୍ୟ ବିଚାର, ନିତ୍ୟାନିତ୍ୟ ବସ୍ତୁ ବିଚାର, ବିଶିଷ୍ଟ ଧର୍ମ କଥା, ଶିବ ଭକ୍ତିଯୋଗ, ପରମପଦ ସ୍ୱରୂପ ବିଚାର, ବ୍ରହ୍ମୈକ ବିଜ୍ଞାନ, ପରମ ତତ୍ତ୍ୱ ବିଚାର, ସଦ୍ୟ ମୁକ୍ତିକର କ୍ଷେତ୍ର ମହିମା, ମୁକ୍ତି ଉପାୟ ବିଚାର, ବେଦାଦିର ଅବିରୋଧ ବିଚାର, ସର୍ବସିଦ୍ଧିକର କର୍ମ, ପ୍ରାୟଶ୍ଚିତ୍ତ, ଅଭକ୍ଷ ନିବୃତ୍ତି, ବ୍ରହ୍ମଗୀତା, ବସ୍ତୁସ୍ୱରୂପ ବିଚାର, ଆନନ୍ଦ ସ୍ୱରୂପ, ଆତ୍ମାର ବ୍ରହ୍ମତତ୍ତ୍ୱ ପ୍ରତିପାଦନ, ବ୍ରହ୍ମର ସର୍ବଶରୀର ସ୍ଥିତି, ଶିବଙ୍କର ଅହଂପ୍ରତ୍ୟାଶ୍ରୟତ୍ୱ, ସୂତ ଗୀତା, ଆତ୍ମ ସ୍ୱରୂପ ସର୍ବଶାସ୍ତ୍ରାର୍ଥ ସଂଗ୍ରହ ରହସ୍ୟ ବିଚାର, ସର୍ବବେଦାନ୍ତ ସଂଗ୍ରହ, ଶଙ୍କର ସଂହିତାରେ - ଶିବ ସମାଧି ଭଙ୍ଗ, ପାର୍ବତୀ ବିବାହ, ମଦନ ଭସ୍ମ, ଗଣେଶ ଓ କାର୍ତ୍ତିକେୟ ଜନ୍ମ, ବାରାଣସୀ ତୀର୍ଥ ବୃତ୍ତାନ୍ତ, ତାରକାସୁର ତପସ୍ୟା, ବାତାପି ବଧ, ଗଣ୍ଡୁକୀ ଉତ୍ପତ୍ତି କଥା, କାର୍ତ୍ତିକେୟଙ୍କ ଲଙ୍କା ଗମନ ବୃତ୍ତାନ୍ତ ଓ ଯୁଦ୍ଧ ବ୍ୟାପାର, କାର୍ତ୍ତିକେୟ ବିବାହ, ଦକ୍ଷ କାଣ୍ଡେ- ଶମ୍ଭୁଙ୍କର ଜଗତ୍‌କାରଣତ୍ୱ କଥନ, ସୃଷ୍ଟି ବ୍ୟାପାର, ଦକ୍ଷ ବିବାଦ, ଗଜାସୁର ବଧ, ଜଳନ୍ଧର ବଧୋପାଖ୍ୟାନ, ପାର୍ବତୀ ଶାପରେ ବିଷ୍ଣୁଙ୍କର ଅଜଗର ରୂପ ପ୍ରାପ୍ତି, କୈଳାସ ବର୍ଣ୍ଣନ, ଭସ୍ମ ଓ ପୂଜା ମାହାତ୍ମ୍ୟ ।

ସୌର ସଂହିତା, ବେଦ ବିଭାଗ, କୃଷ୍ଣ ଦ୍ୱୈପାୟନଙ୍କ ପରଂବ୍ରହ୍ମରୂପ ବର୍ଣ୍ଣନ, ରୋଦନ ଲକ୍ଷଣ, ସୂର୍ଯ୍ୟୋପାସନା, ଅଭେଦବାଦ କଥନ, ସୂର୍ଯ୍ୟଙ୍କର ତତ୍ତ୍ୱଜ୍ଞାନ ଉପଦେଶ, ସୃଷ୍ଟି ବ୍ୟାପାର, ସପ୍ତର୍ଷି ଓ ଧ୍ରୁବ ମଣ୍ଡଳ, ମାୟା ବାଦ, ବେଦାନ୍ତ ପ୍ରଶଂସା, ବ୍ରହ୍ମକାରଣ ବାଦ ଅର୍ଥାତ୍ ବୌଦ୍ଧ ଓ ପଞ୍ଚରାତ୍ର ମତ ଖଣ୍ଡନ, ବିଶେଶ୍ୱର ମହିମା, ଅଧ୍ୟାରୋପାଦି କଥା, ଅଜ୍ଞାନ ଲକ୍ଷଣ, ପରମାତ୍ମା ଓ ଜୀବାତ୍ମାର ଉପାଧି ଭେଦ ନିରୂପଣ, ବିଜ୍ଞାନ ମାହାତ୍ମ୍ୟ ପ୍ରକୃତି ନିରୂପଣ, ନିର୍ଗୁଣ ଆତ୍ମାର ବନ୍ଧହେତୁ ଦେହେନ୍ଦ୍ରିୟ, ମନ, ପ୍ରାଣ, ବିଜ୍ଞାନ ଓ ଶୂନ୍ୟାଦିର ଆତ୍ମତତ୍ତ୍ୱ ବାଦ, ମୋକ୍ଷ ସ୍ୱରୂପ କଥନ, ଯାଜ୍ଞବଲ୍କ୍ୟକୃତ ସୂର୍ଯ୍ୟ ସ୍ତୋତ୍ର ବର୍ଣ୍ଣିତ ଅଛି ।

**ଅମ୍ବିକା ଖଣ୍ଡେ:** ବ୍ରହ୍ମଶିରଚ୍ଛେଦ, ବଶିଷ୍ଠଙ୍କ ପୁତ୍ର ଲାଭ, ଶକ୍ତିଙ୍କର ଉତ୍ପତ୍ତି, ନନ୍ଦୀଶ୍ୱର ଅଭିଷେକ, ବାରାଣସୀ ମାହାତ୍ମ୍ୟ, ଉପମନ୍ୟୁର ବର ଲାଭ, ଯମ ଗୀତା, ସୁକେଶୀ ମାହାତ୍ମ୍ୟ, ସପ୍ତବ୍ୟାଧ ଚରିତ, କୌଶିକର ଅଭିଷେଚନ, ଦେବାସୁର ଯୁଦ୍ଧ, ବରାହ ପ୍ରମାଣ ବୃତ୍ତାନ୍ତ, କୃଚ୍ଛ୍ର ଚାନ୍ଦ୍ରାୟଣ ବ୍ରତ, ନୀଳକଣ୍ଠ ଉପାଖ୍ୟାନ, ବାମନ ପ୍ରାଦୁର୍ଭାବ, ଶିବଙ୍କଠାରୁ ପର୍ଶୁରାମଙ୍କ ବର ପ୍ରାପ୍ତି, ଅନ୍ଧକ ବଧ, ଧର୍ମ ପଦ୍ଧତି ବ୍ୟାଖ୍ୟା, ଭୈରବ ଉତ୍ସବ, ସ୍କନ୍ଦାଭିଷେକ, ତ୍ରିପୁର ବଧ, ପର୍ବତର ପକ୍ଷ ଛେଦନ ବୃତ୍ତାନ୍ତ,ମେଘୋତ୍ପତ୍ତି, ପ୍ରହ୍ଲାଦ ତପସ୍ୟା ମାହେଶ୍ୱର ଖଣ୍ଡେ ଦକ୍ଷଯଜ୍ଞ ବୃତ୍ତାନ୍ତ, ରାମାବତାର କଥା, କାକୁଟୋତ୍ପତ୍ତି, ବଳିଯଜ୍ଞ, ଯମ କର୍ତ୍ତୃକ ଜ୍ଞାନଯୋଗୋପଦେଶ, ସ୍ୱରୂପ ଜିଜ୍ଞାସା, ଅଧ୍ୟାତ୍ମ ନିରୂପଣ, ଶ୍ୱେତରାଜୋପାଖ୍ୟାନ, ଦ୍ୟୁତକ୍ରୀଡ଼ାପରାଜିତ ଶିବଙ୍କର ପାର୍ବତୀ କର୍ତ୍ତୃକ କୌପୀନା କର୍ଷଣ, ଗୌରୀଙ୍କର ଶବରୀ ରୂପ କୁମାରିକା ଖଣ୍ଡେ-ସିଦ୍ଧେଶ୍ୱର ପ୍ରଭୃତି ପଞ୍ଚବିଂଶତି ମାହାତ୍ମ୍ୟ, କାଳୀର ଆବିର୍ଭାବ, ଦ୍ୱାଦଶ ବାର୍ଷିକ ମହାଯାତ୍ରା, ସାରସ୍ୱତ ଧର୍ମ କଥା, ମହାନଦୀ ତଟବର୍ତ୍ତୀ ତୀର୍ଥ, ଦାନ ମାହାତ୍ମ୍ୟ, ଗର୍ଭାବସ୍ଥା ନିର୍ଦ୍ଦେଶ, ପିତୃମାତୃ ମାହାତ୍ମ୍ୟ, ଅଗ୍ନି ଓ ବେଶ୍ୟା କନ୍ୟାର ଆଖ୍ୟାନ, କୂର୍ମୋତ୍ପତ୍ତି, ଜମ୍ଭାସୁର ବଧ, ମହାକାଳ ପ୍ରାଦୁର୍ଭାବ, ଶତଶୃଙ୍ଗ ରାଜକୁମାରୀ ଚରିତ, ଆଦିତ୍ୟ ମାହାତ୍ମ୍ୟ, ଘଟୋତ୍କଚର ସହିତ ଭଗଦତ୍ତକନ୍ୟା ବିବାହ, ବର୍ଣ୍ଣଧର୍ମ ଓ ମହାବିଦ୍ୟା ସାଧନ, ଅପରାଜିତା ସ୍ତୋତ୍ର, ଗୁପ୍ତକ୍ଷେତ୍ର ମାହାତ୍ମ୍ୟ, ବୈଷ୍ଣବ ଖଣ୍ଡେ ଉତ୍କଳ ଖଣ୍ଡ ପୁରୀକ୍ଷେତ୍ର ବିଷୟ, ମନ୍ଦିର ନିର୍ମାଣ, ତ୍ରିମୂର୍ତ୍ତି ପ୍ରତିଷ୍ଠା,ଏକାମ୍ର ବନ, ବିନ୍ଦୁସାଗର, ଇନ୍ଦ୍ରଦ୍ୟୁମ୍ନ ଓ ଗାଲମାଧବ ଚରିତ, କ୍ଷେତ୍ର ମହାତ୍ମ୍ୟ ଓ ପୂଜା ପ୍ରଭେଦ ପ୍ରଭୃତି ଅନେକ ଜ୍ଞାତବ୍ୟ ବିଷୟ ୫୪ ଅଧ୍ୟାୟରେ ବର୍ଣ୍ଣିତ ଅଛି ବିଷୟ ।

**ବ୍ରହ୍ମ ଖଣ୍ଡେ :** ଧର୍ମାରଣ୍ୟ ମାହାତ୍ମ୍ୟ, ଧର୍ମରାଜାର ତପଶ୍ଚରିତ, ଇନ୍ଦ୍ର କର୍ତ୍ତୃକ ବର୍ଦ୍ଧନୀ ଅପ୍ସରା ପ୍ରେରଣ, ଧର୍ମ କୃତ ମହାଦେବ ସ୍ତବ, ଧର୍ମ ବାପୀରେ ଶ୍ରାଦ୍ଧ, ହୟଗ୍ରୀବୋପାଖ୍ୟାନ. ମାତ୍ୟଦେବୀ ମାହାତ୍ମ୍ୟ, ଶ୍ରୀରାମଙ୍କ ତୀର୍ଥଯାତ୍ରା ପ୍ରସଙ୍ଗେ ଧର୍ମାରଣ୍ୟେ ଯଜ୍ଞ ବିଷୟ ବର୍ଣ୍ଣିତ ଅଛି ।

**ବ୍ରହ୍ମୋତ୍ତର ଖଣ୍ଡେ :** ଶୈବ ମାହାତ୍ମ୍ୟ, କଳାଷପାଦ ଚରିତ, କୁଷ୍ଠରୋଗୀର କାଞ୍ଚନ ଚାଣ୍ଡାଳୀ ଦର୍ଶନ, ଉଜ୍ଜୟିନୀରେ ମହାକାଳ ଶିବ ମାହାତ୍ମ୍ୟ, ଶାଣ୍ଡିଲ୍ୟୋକ୍ତ ଶିବପୂଜା, ପିଙ୍ଗଳା ବୃତ୍ତାନ୍ତ,ଅନ୍ଧମୁନି ସମ୍ବାଦ, ସୁଧର୍ମ ଓ ତାରକୋପାଖ୍ୟାନ, କାଶ୍ମୀର ରାଜ ଚରିତ ବର୍ଣ୍ଣିତ ଅଛି ।

**କାଶୀ ଖଣ୍ଡେ :** କାଶୀ ମାହାତ୍ମ୍ୟ, ମଣିକର୍ଣ୍ଣିକାଦି ତୀର୍ଥ ବୃତ୍ତାନ୍ତ, କେଦାରେଶ୍ୱରାଦି ଶିବମାହାତ୍ମ୍ୟ ଏବଂ ବିଶ୍ୱେଶ୍ୱର ଲିଙ୍ଗ ମହିମା ପ୍ରଭୃତି କାଶୀର ଅନେକ ଜ୍ଞାତବ୍ୟ ବିଷୟ ବିଦ୍ୟମାନ ।

**ରେବା ଖଣ୍ଡେ :** ନର୍ମଦା ମାହାତ୍ମ୍ୟ ମାତଙ୍ଗ ଆଖ୍ୟାନ, ଜନକ ଯଜ୍ଞ, ସପ୍ତସାରସ୍ୱତ ତୀର୍ଥ ବୃତ୍ତାନ୍ତ, ରେବା, କୁବ୍‌ଜା ସଂଗମ ପାତାଳେଶ୍ୱର ଭୃଗୁ ପତନ, ମାତୃ ସ୍ତୁତି ପ୍ରଭୃତି ନାନାବିଧ ତୀର୍ଥ ବୃତ୍ତାନ୍ତ ଉପବର୍ଣ୍ଣିତ ।

## ଅବନ୍ତୀ ଖଣ୍ଡେ

ଅଗସ୍ତ୍ୟେଶ୍ୱର ଲିଙ୍ଗ ପ୍ରତିଷ୍ଠା ବିବରଣ, ମକର ମହର୍ଷି ବୃତ୍ତାନ୍ତ, ଆଦିକନ୍ଦେଶ୍ୱର ପ୍ରଭୃତି ସପ୍ତଲିଙ୍ଗ ମାହାତ୍ମ୍ୟ, ଅଭିଶପ୍ତା ରମ୍ଭାର ବୃତ୍ତାନ୍ତ, ନିମି ଓ ଯମକିଙ୍କର ସମ୍ବାଦ, ରଥାନ୍ତର କଳ୍ପେ ବୀରଧନ୍ୱା ଉପାଖ୍ୟାନ, ପର୍ଶୁରାମ କର୍ତ୍ତୃକ ଯଜ୍ଞାନୁଷ୍ଠାନ, ପତନେଶ୍ୱର ପ୍ରଭୃତି ବିବିଧ ଶିବଲିଙ୍ଗ ମାହାତ୍ମ୍ୟରେ ପରିପୂର୍ଣ୍ଣ । ତାପୀଖଣ୍ଡେ-ଗୋକର୍ଣ୍ଣ ମୁନିଗଣ ତାପୀ ନଦୀର ଉଭୟ ତୀରବର୍ତ୍ତୀ ବିବିଧ ଲିଙ୍ଗ ମାହାତ୍ମ୍ୟ ଉପବର୍ଣ୍ଣିତ ।

## ନାଗର ଖଣ୍ଡେ

ବିଶ୍ୱକର୍ମା ଉପାଖ୍ୟାନ, ଜଗଦୁତ୍ପତ୍ତି ପ୍ରକରଣ, ଗାୟତ୍ରୀ ନିର୍ଣ୍ଣୟ, ଉପନୟନ ସଂସ୍କାର, ଜ୍ୟୋତିଃଚକ୍ର, ମନୁମତ ପ୍ରଭାବ, ବିଶ୍ୱକର୍ମା କୁଳାଚାର ବିଧି, ଷଟ୍‌ମତ ସ୍ଥାପନ, ହଟେକେଶ୍ୱର ମାହାତ୍ମ୍ୟେ ଲିଙ୍ଗୋତ୍ପତ୍ତି କଥା, ତ୍ରିଶଙ୍କୁ ଚରିତ, ଶଙ୍ଖତୀର୍ଥ ଓ ଚମତ୍କାରପୁର ବର୍ଣ୍ଣନ, ଗୟାଶୀର୍ଷେ ପ୍ରେତ ମୋକ୍ଷ, ବିଷ୍ଣୁପଦୀ, ମୃଗତୀର୍ଥ ଷଡ଼କ୍ଷର ମନ୍ତ୍ର,ଅଗସ୍ତ୍ୟାଶ୍ରମ, ସଗର, ଧୁନ୍ଧୁମାର ଚରିତ, ବିଶ୍ୱାମିତ୍ର ମାହାତ୍ମ୍ୟ, ପୁରୀକ୍ଷେତ୍ର ମାହାତ୍ମ୍ୟ, ନଳକୃତ ଚର୍ମମୁଣ୍ଡା ସ୍ତବ, ଶିବଗଙ୍ଗା ମାହାତ୍ମ୍ୟ, ଶର୍ମିଷ୍ଠାତୀର୍ଥ, ସୋମନାଥୋତ୍ପତ୍ତି, ରାମହ୍ରଦ, ତିଳତର୍ପଣବିଧି, ବାଳଖିଲ୍ୟାଶ୍ରମ, ମହାଲକ୍ଷ୍ମୀ ମାହାତ୍ମ୍ୟ, ଶ୍ରୀପାଦୁକା, ଦଶରଥ କୃତ ଶନିସ୍ତବ, ସୀତାମୂର୍ତ୍ତି ପ୍ରତିଷ୍ଠା, ରାମେଶ୍ୱର ଲିଙ୍ଗ ପ୍ରସଙ୍ଗ, ଦମୟନ୍ତୀ ଉପାଖ୍ୟାନ, ନାଗର ବ୍ରାହ୍ମଣର ଗୋତ୍ର, ପ୍ରବର, ଅମ୍ବା, ରେବତୀ ମାହାତ୍ମ୍ୟ, ଭକ୍ତିକାତୀର୍ଥ, କର୍ଣ୍ଣୋତ୍ପତ୍ତି ତୀର୍ଥ, ନାଗର ବ୍ରାହ୍ମଣଙ୍କ ସମ୍ବନ୍ଧେ ଯାବତୀୟ ଜ୍ଞାତବ୍ୟ ବିଷୟ ଏବଂ ଶତ ଶତ ତୀର୍ଥ ମାହାତ୍ମ୍ୟ ବର୍ଣ୍ଣିତ ଅଛି ।

## ପ୍ରଭାସ ଖଣ୍ଡେ

ପ୍ରଭାସତୀର୍ଥାନ୍ତର୍ଗତ ବହୁତୀର୍ଥ ମାହାତ୍ମ୍ୟ, ସୋମେଶ୍ୱର ବୃତ୍ତାନ୍ତ, ଲଳିତା ମାହାତ୍ମ୍ୟ, ଗୌରୀଶ୍ୱର, ଭୀମେଶ୍ୱର ପ୍ରଭୃତି ଦ୍ୱିଶତାଧିକ ତୀର୍ଥ ମାହାତ୍ମ୍ୟ କଥିତ ଅଛି ।

**ବାମନ ପୁରାଣ**

ନାରଦ ପୁରାଣମତେ -

ଶୃଣୁ ବତ୍ସ ପ୍ରବକ୍ଷାମି ପୁରାଣଂ ବାମନାଭିଦଂ ।
ତ୍ରିବିକ୍ରମସ୍ୟ ଚରିତଂ ଦଶସାହସ୍ରସଂଜ୍ଞକଂ ।।

କୂର୍ମକଳ୍ପ ସମାଖ୍ୟାତଂ ବର୍ଗଦ୍ୱୟ କଥାନ୍ୱିତଂ ।
ଭାଗଦ୍ୱୟ ସମାଯୁକ୍ତଂ ବକ୍ତୁଃଶ୍ରୋତୁଃ ସୁଖାବହଂ ।।
କପାଳମୋଚନାଖ୍ୟାନଂ ଦକ୍ଷଯଜ୍ଞ ବିହିଂସନଂ ।
ଇତ୍ୟେଷଃ ପୂର୍ବ ଭାଗୋଽସ୍ୟ ପୁରାଣସ୍ୟ ତବୋଦିତଂ ।।
ଶୃଣୁ ତସ୍ୟୋତ୍ତରଂ ଭାଗଂ ବୃହଦ୍‌ବାମନ ସଂଜ୍ଞକଂ ।
ମାହେଶ୍ୱରୀ ଭଗବତୀ ଗୌରୀ ବାଣେଶ୍ୱରୀ ତଥା ।।
ଚତସ୍ରଃ ସଂହିତା ଚାତ୍ର ପୃଥକ୍ ସହସ୍ର ସଂଖ୍ୟୟା ।ଇତି।

ଅର୍ଥାତ୍ ତ୍ରିବିକ୍ରମ ଚରିତବିମଣ୍ଡିତ ଦଶ ସହସ୍ର ଶ୍ଳୋକବିଶିଷ୍ଟ ବାମନ ପୁରାଣ ଦୁଇ ଭାଗରେ ବିଭକ୍ତ । ପୂର୍ବ ଭାଗରେ କୂର୍ମକଳ୍ପ କଥା, କପାଳମୋଚନାଖ୍ୟାନ ଓ ଦକ୍ଷଯଜ୍ଞ ଇତ୍ୟାଦି ବର୍ଣ୍ଣିତ ଅଛି । ବୃହଦ୍‌ବାମନ ନାମକ ଦ୍ୱିତୀୟ ଭାଗ- ମାହେଶ୍ୱରୀ ପ୍ରଭୃତି ଚାରି ଭାଗରେ ବିଭକ୍ତ । ମତ୍ସ୍ୟ ପୁରାଣ ମତେ- ବ୍ରହ୍ମା ବାମନ ପୁରାଣ ପ୍ରସଙ୍ଗେ ତ୍ରିବର୍ଗର କଥା କୀର୍ତ୍ତନ କରିଅଛନ୍ତି, ପରେ ଶିବକଳ୍ପ ବର୍ଣ୍ଣିତ ହୋଇଅଛି । ପ୍ରଚଳିତ ପୁରାଣରେ ଉତ୍ତରାର୍ଦ୍ଧର ନାମ ନାହିଁ କିନ୍ତୁ ଦକ୍ଷଯଜ୍ଞ, ଚଣ୍ଡୀ ଯୁଦ୍ଧ ପ୍ରଭୃତି ପୁନଃପୁନଃ ବର୍ଣ୍ଣିତ ଅଛି ।

## ସ୍କନ୍ଦ ପୁରାଣଗତ ଚରିତ

ଏଥିରେ ସତୀ ବିରହରେ ଶିବଙ୍କ ଭ୍ରମଣ, ଦେବତାମାନଙ୍କର ସ୍ତବ, ନରନାରାୟଣ ସହିତ ପ୍ରହ୍ଲାଦର ଯୁଦ୍ଧ, ଅନ୍ଧକ ରାଜ୍ୟାଭିଷେକ, ଦ୍ୱୀପ ବର୍ଣ୍ଣନ, ସୁକେଶୀର ଧର୍ମୋପଦେଶ, ବାରାଣସୀ ଉତ୍ପତ୍ତି, ବିନ୍ଧ୍ୟବାସିନୀ ପ୍ରତିଷ୍ଠା, ମହିଷାସୁର ସଂଗ୍ରାମ, ତପତୀର ପରିଣୟ, କୁରୁରାଜାର ଉପାଖ୍ୟାନ, ମୁରଦୈତ୍ୟ ଚରିତ, ପୁନ୍ନାମ ନରକ ବର୍ଣ୍ଣନ, ଦଣ୍ଡକ ରାଜୋପାଖ୍ୟାନ, ନୀଳକଣ୍ଠ ସ୍ତବ, ବଳିରାଜ୍ୟ ଗ୍ରହଣ, ଅଦିତିର ତପସ୍ୟା, ପ୍ରହ୍ଲାଦର ତୀର୍ଥଯାତ୍ରା, ଧୁନ୍ଧୁମାରର ଅଶ୍ୱମେଧ, ବାମନରୂପ ବର୍ଣ୍ଣନ, କୋଷକାର ଉପାଖ୍ୟାନ, ବିରାଟମୂର୍ତ୍ତି ଦର୍ଶନ, ବଳିର ପାତାଳ ପ୍ରବେଶ, ପ୍ରହ୍ଲାଦର ଧର୍ମୋପଦେଶ, ବିଷ୍ଣୁଙ୍କର ଦ୍ୱାଦଶ ମାସିକ ପୂଜା ପ୍ରଭୃତି ବର୍ଣ୍ଣିତ ହୋଇଅଛି ।

## କୂର୍ମପୁରାଣ

ମତ୍ସ୍ୟ ପୁରାଣ ମତେ -
ଯତ୍ର ଧର୍ମାର୍ଥକାମାନାଂ ମୋକ୍ଷସ୍ୟ ଚ ରସାତଳେ ।
ମାହାତ୍ମ୍ୟଂ କଥୟାମାସ କୂର୍ମରୂପୀ ଜନାର୍ଦ୍ଦନଃ ।।
ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗେନ ଋଷିଭିଃ ଶକ୍ର ସନ୍ନିଧୌ ।
ତତ୍ସପ୍ତଦଶସାହସ୍ରଂ ଲକ୍ଷ୍ମୀକଳ୍ପାନୁସଙ୍ଗିକଂ ।।

ଅର୍ଥାତ୍ ଯେଉଁ ପୁରାଣରେ କୂର୍ମରୂପୀ ଭଗବାନ ରସାତଳରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଚତୁର୍ବର୍ଗର ମାହାତ୍ମ୍ୟ ବୁଝାଇଥିଲେ; ଯହିଁରେ ଲକ୍ଷ୍ମୀକଳ୍ପ ବର୍ଣ୍ଣିତ, ତାହାହିଁ ସପ୍ତଦଶ ସହସ୍ର ସଂଖ୍ୟକ ଶ୍ଳୋକାତ୍ମକ

କୂର୍ମ ପୁରାଣ । ସେହି କୂର୍ମ ପୁରାଣରେ ଲେଖାଅଛି-

ଇଦଂ ତୁ ପଞ୍ଚଦଶମଂ ପୁରାଣଂ କୌର୍ମମୁତ୍ତମଂ ।
ଚତୁର୍ଦ୍ଧା ସଂସ୍ଥିତଂ ପୁଣ୍ୟ ସଂହିତାନାଂ ପ୍ରଭେଦତଃ ।।
ବ୍ରାହ୍ମୀ ଭଗବତୀ ସୌରୀ ବୈଷ୍ଣବୀ ଚ ପ୍ରକୀର୍ତ୍ତିତା ।
ଭବନ୍ତି ଷଟ୍‌ସହସ୍ରାଣି ଶ୍ଳୋକାନାମତ୍ର ସଂଖ୍ୟୟା ।।

କୂର୍ମ ପୁରାଣ ବ୍ରାହ୍ମୀ ପ୍ରଭୃତି ସଂହିତା ଚତୁଷ୍ଟୟଯୁକ୍ତ ଏବଂ ଷଟ୍‌ସହସ୍ର ଶ୍ଳୋକାତ୍ମକ । କିନ୍ତୁ କୂର୍ମ ପୁରାଣ ପାଠରୁ ଜଣାଯାଏ ଯେ, ଏଥିରେ ପୂର୍ବୋକ୍ତ ମତର ଅନେକ ପରିବର୍ତ୍ତନ ସଂଘଟିତ ହୋଇଅଛି ।

## କର୍ମ ପୁରାଣଗତ ଚରିତ

ଏଥିରେ ବର୍ଣ୍ଣାଶ୍ରମ ଧର୍ମ, ସୃଷ୍ଟି ପ୍ରକରଣ, ଦେବୀଙ୍କ ଅବତାର, ସହସ୍ର ନାମ ସ୍ତବ, ଦକ୍ଷଯଜ୍ଞ ଭଙ୍ଗ, ବାମନାବତାର ପ୍ରସଙ୍ଗ, ସୂର୍ଯ୍ୟ ଓ ଚନ୍ଦ୍ର ବଂଶ ବର୍ଣ୍ଣନ, ରାମକୃଷ୍ଣାବତାର, ଲିଙ୍ଗ ମାହାତ୍ମ୍ୟ, ଯୁଗ ବ୍ୟବସ୍ଥା, ବାରାଣସୀ ମାହାତ୍ମ୍ୟ, ବ୍ୟାସଙ୍କର ତୀର୍ଥଯାତ୍ରା, ପ୍ରୟୋଗ ସ୍ନାନ ଫଳ, ସପ୍ତ ଦ୍ୱୀପ ବର୍ଣ୍ଣନ, ଗ୍ରହ ମଣ୍ଡଳ କଥା, ହେମକୂଟ, ମନ୍ୱନ୍ତର ଓ କେତୁମାଳ, ବର୍ଷ କଥା, ଅବ୍ୟକ୍ତାଦି ଜ୍ଞାନଯୋଗ, ଶିବ ଜ୍ଞାନଯୋଗ, ତାଣ୍ଡବକାଳୀନ ସ୍ୱରୂପ, ଗୁହ୍ୟତମ ଜ୍ଞାନ, ଲିଙ୍ଗବ୍ରହ୍ମଜ୍ଞାନ, ଅଷ୍ଟାଙ୍ଗ ଯୋଗ, ବ୍ରହ୍ମଚର୍ଯ୍ୟ, କର୍ମଯୋଗ, ଅଧ୍ୟୟନାଦି ପ୍ରଭେଦ, ସ୍ନାତକ ଧର୍ମ, ଆଚାର ଅଧ୍ୟାୟ, ନିତ୍ୟକ୍ରିୟା, ଭୋଜ୍ୟ ବିଧି, ଶ୍ରାଦ୍ଧ ପ୍ରକରଣ, ଅଶୌଚ ପ୍ରକରଣ, ଅଗ୍ନିହୋତ୍ର ବିଧି, ବୃତ୍ତି ବ୍ୟବସ୍ଥା, ଆଶ୍ରମ ଧର୍ମ, ପ୍ରାୟଶ୍ଚିତ୍ତ ବିଧି, କପାଳ ମୋଚନ ମାହାତ୍ମ୍ୟ, ନର୍ମଦା ମାହାତ୍ମ୍ୟ ଓ ପ୍ରଳୟ ପ୍ରସଙ୍ଗ ବର୍ଣ୍ଣିତ ଅଛି ।

## ମତ୍ସ୍ୟ ପୁରାଣ

ସ୍ୱୟଂ ମତ୍ସ୍ୟ ପୁରାଣ କହେ -
ଶ୍ରୁତୀନାଂ ଯତ୍ର କଳ୍ପାଦୌ ପ୍ରବୃତ୍ତ୍ୟର୍ଥଂ ଜନାର୍ଦ୍ଦନଃ ।
ମତ୍ସ୍ୟ ରୂପେଣ ମନବେ ନରସିଂହସ୍ୟ ବର୍ଣ୍ଣନଂ ।।
ଅଧିକୃତ୍ୟାବ୍ରବୀତ୍ ସପ୍ତକଳ୍ପବୃତ୍ତଂ ମୁନିବ୍ରତାଃ ।
ତନ୍ମାତ୍ସ୍ୟମିତି ଜାନଧ୍ୱଂ ସହସ୍ରାଣ୍ୟଥ ବିଂଶତି ।।

ଅର୍ଥାତ୍ - ଯେଉଁ ପୁରାଣରେ କଳ୍ପାଦୌ ମତ୍ସ୍ୟରୂପୀ ଭଗବାନ୍ ଶ୍ରୁତ୍ୟର୍ଥ ଓ ନୃସିଂହ ଚରିତ ବର୍ଣ୍ଣନ ପ୍ରସଙ୍ଗେ ସପ୍ତ କଳ୍ପର ବିଷୟ ବର୍ଣ୍ଣନା କରିଅଛନ୍ତି ତାହାହିଁ ବିଂଶତି ସହସ୍ର ଶ୍ଳୋକାତ୍ମକ ମତ୍ସ୍ୟପୁରାଣ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ପୂର୍ବୋକ୍ତ ମତରୁ ଅନେକ ଅଂଶ ପରିବର୍ତ୍ତିତ ହୋଇ ଭବିଷ୍ୟ ରାଜବଂଶର କଥା, ଏପରିକି ଖ୍ରୀଷ୍ଟୀୟ ଷଷ୍ଠ ଶତାବ୍ଦୀର ବିଷୟ ସୁଦ୍ଧା ଏହି ପୁରାଣରେ ସଂଜିତ ହୋଇଅଛି ।

## ମତ୍ସ୍ୟ ପୁରାଣଗତ ଚରିତ

ଏଥିରେ ମନ୍ୱନ୍ତର, ପିତୃବଂଶ ବର୍ଣ୍ଣନ, ଦେବଯାନୀ ଓ ଶର୍ମିଷ୍ଠା ଚରିତ, ଅଗ୍ନିବଂଶ ବର୍ଣ୍ଣନ, କାଳନେମି ବଧ, ନକ୍ଷତ୍ର ବଂଶ, ଐରାବତ ଓ ହିମାଳୟ ବର୍ଣ୍ଣନ, ଆଶ୍ରମ ବର୍ଣ୍ଣନ, ତ୍ରିପୁର ଓ ତାରକାବଧ, ଦ୍ୱାପର ଓ କଳିବର୍ଣ୍ଣନ, ପାର୍ବତୀ ତପଃ, ହିରଣ୍ୟକଶିପୁ ବଧ, ରାଜ୍ୟରକ୍ଷାର୍ଥ ସାମଦାନାଦି ଉପାୟ, ବୃଷ୍ଟି ବିକାର, ବୃକ୍ଷୋତ୍ପାତ, ପ୍ରସବ ବୈକୃତି, ଉତ୍ପାତ ପ୍ରଶମନ, ଗ୍ରହଯଜ୍ଞ, ସ୍ୱପ୍ନାଧ୍ୟାୟ, ଅଙ୍ଗ ସ୍ପନ୍ଦନ ଫଳ, ବସ୍ତୁ ବିଚାର, ଗୃହମାନ ନିର୍ଣ୍ଣୟ, ବୋଧ ପରିବର୍ଜନ, ଶଲ୍ୟ ଓ ଦିକ୍ ନିର୍ଣ୍ଣୟ, ପ୍ରତିମା ଲକ୍ଷଣ, କୁଣ୍ଡାଦି ଲକ୍ଷଣ, ପ୍ରତିମା, ବସ୍ତୁଦୋଷ, ପ୍ରାସାଦ ଓ ମଣ୍ଡପ ଲକ୍ଷଣ, ଭବିଷ୍ୟତ୍ ରାଜବଂଶ ବର୍ଣ୍ଣନ ପ୍ରସଙ୍ଗେ ଆନ୍ଧ୍ର, ଯବନ, ମ୍ଲେଚ୍ଛ ରାଜତ୍ୱ ବର୍ଣ୍ଣନ, ୨୭୪ ଅଧ୍ୟାୟଠାରୁ ୨୯୦ ଅଧ୍ୟାୟ ପର୍ଯ୍ୟନ୍ତ ଦାନ ପ୍ରକରଣ ମାତ୍ର ବର୍ଣ୍ଣିତ ଅଛି ।

## ଗରୁଡ଼ ପୁରାଣ

ମତ୍ସ୍ୟ ପୁରାଣ ମତେ- ବିଷ୍ଣୁକଳ୍ପରେ-ଗରୁଡ଼ୋଦ୍ଭବ ପ୍ରସଙ୍ଗ ଯେଉଁ ପୁରାଣରେ ବର୍ଣ୍ଣିତ ତାହା ହିଁ ଅଷ୍ଟାଦଶ ସହସ୍ର ସଂଖ୍ୟକ ଶ୍ଳୋକାତ୍ମକ ଗରୁଡ଼ ପୁରାଣ । ଐତିହାସିକ ଦୃଷ୍ଟିରେ ଦେଖିବାକୁ ଗଲେ ଭାରତରେ ଶୂଦ୍ରକଙ୍କ ରାଜତ୍ୱ ସମୟରେ ହିନ୍ଦୁ ଓ ବୌଦ୍ଧ ସମ୍ମିଳିତ ହୋଇ ବୁଦ୍ଧଦେବଙ୍କ ଉପାସନା କରୁଥିଲେ । ଯେହେତୁ ଗରୁଡ଼ ପୁରାଣ କହେ- ବୁଦ୍ଧଦେବ ବିଷ୍ଣୁଙ୍କର ଏକବିଂଶତି ଅବତାରରୂପେ ଗୃହୀତ । ଯଥା- ''ଶୁଦ୍ଧୋଦନୋ ରାହୁଳଶ୍ଚ ସେନଜିତ୍ ଶୂଦ୍ରକ ସ୍ତଥା'' ଇତ୍ୟାଦି । ଏଥିରେ ବୁଦ୍ଧଙ୍କର ପିତା ଓ ବଂଶର ପରିଚୟ ସୁଦ୍ଧା ବିଦ୍ୟମାନ, ସୁତରାଂ ଗୟା ମାହାତ୍ମ୍ୟ ବୌଦ୍ଧ ପ୍ରଭାବ ଖର୍ବ ହେଲାପରେ ରଚିତ ହୋଇଥିବ । ଏହି ପୁରାଣ ଦୁଇ ଭାଗରେ ବିଭକ୍ତ ହୋଇଅଛି ।

## ଗରୁଡ଼ ପୁରାଣଗତ ଚରିତ

ଏଥିରେ ସୂର୍ଯ୍ୟ, ବିଷ୍ଣୁ ଓ ଲକ୍ଷ୍ମୀ ପୂଜା ଏବଂ ନବବ୍ୟୂହାର୍ଚ୍ଚନ, ବିଷ୍ଣୁପଞ୍ଜର ଓ ଯୋଗ ଉପଦେଶ, ବିଷ୍ଣୁ ସହସ୍ର ନାମ, ପ୍ରକାରାନ୍ତରେ ସୂର୍ଯ୍ୟ ପୂଜା, ମୃତ୍ୟୁଞ୍ଜୟ ପୂଜା ଓ ଗରୁଡ଼ ବିଦ୍ୟା, ଶିବକଥିତ ସର୍ପ ମନ୍ତ୍ର, ପ୍ରକାରାନ୍ତରେ ପଞ୍ଚବକ୍ତ୍ର ପୂଜା, ଗଣପତ୍ୟାଦି ପୂଜା, କର ନ୍ୟାସ, ବିଷ ହରଣ, ଗୋପାଳ ପୂଜା ଓ ଗିରିଧରାଦି ପୂଜା ମନ୍ତ୍ର, ପଞ୍ଚତତ୍ତ୍ୱାର୍ଚ୍ଚନା, ସୁଦର୍ଶନ ପୂଜା, ଗାୟତ୍ର୍ୟାଦି ନ୍ୟାସ, ଦୁର୍ଗା ପୂଜା ଓ ମହେଶ୍ୱର ପୂଜା, ନାନା ବିଦ୍ୟା କଥନ, ଶିବ ପବିତ୍ରାରୋପଣ, ବିଷ୍ଣୁ ପବିତ୍ରାରୋପଣ, ପ୍ରାସାଦ ଲକ୍ଷଣ ଓ ଦେବ ପ୍ରତିଷ୍ଠା, ଯୋଗ ଧର୍ମ ଓ ଆହ୍ନିକ, ଦାନ ଓ ପ୍ରାୟଶ୍ଚିତ୍ତ ବିଧି, ଅଷ୍ଟ ବିଧି କଥନ, ପ୍ରିୟବ୍ରତ ବଂଶ ଓ ସପ୍ତଦ୍ୱୀପ ବର୍ଣ୍ଣନ, ଜ୍ୟୋତିଃସାର, ନକ୍ଷତ୍ରାଧିପ ଓ ଯୋଗିନ୍ୟାଦି କୀର୍ତ୍ତନ, ଦଶା, ଲଗ୍ନ, ଚରସ୍ଥିରାଦି ଭେଦରେ କର୍ତ୍ତବ୍ୟାଦି ନିରୂପଣ, ନାରୀ ଏବଂ ପୁରୁଷର ଶୁଭାଶୁଭ ଲକ୍ଷଣ, ସାମୁଦ୍ରିକ ଲକ୍ଷଣ, ପ୍ରଭବାଦି ଷଷ୍ଟିବର୍ଷ କୀର୍ତ୍ତନ, ପବନ ବିଜୟ ଓ ସମସ୍ତ ରତ୍ନ ପରୀକ୍ଷା, ଗୟା ମାହାତ୍ମ୍ୟ, ଚତୁର୍ଦ୍ଦଶ ମନୁ କଥା, ରୁଚି ଉପାଖ୍ୟାନ, ପଞ୍ଚ ମହାଯଜ୍ଞ, ବର୍ଣ୍ଣାଶ୍ରମ ଧର୍ମ, ଦ୍ରବ୍ୟ ଶୁଦ୍ଧି, ଦାନ ଧର୍ମ ଓ ଶ୍ରାଦ୍ଧବିଧି, ବିନାୟକ ଓ ଗ୍ରହ ଶାନ୍ତି, ବାନପ୍ରସ୍ଥ ଓ ଯତି ଧର୍ମ, ପାପର ଲକ୍ଷଣ

ଓ ପ୍ରାୟଶ୍ଚିତ୍ତ, ପରାଶରଙ୍କ ଧର୍ମ ଶାସ୍ତ୍ର, ଭାର୍ଯ୍ୟା ପରିତ୍ୟାଗ ଉପଦେଶ, ପତିବ୍ରତା ମାହାତ୍ମ୍ୟ, (୧୫୦ ଅଧ୍ୟାୟଠାରୁ ୧୮୧ ଅଧ୍ୟାୟ ପର୍ଯ୍ୟ ଆୟୁର୍ବେଦର ସମାଲୋଚନା, ରୋଗ ନିଦାନ ଓ ବଶୀକରଣ) ଦନ୍ତ ଶ୍ୱେତୀକରଣ, ମଶକ ବାରଣ ବିଧି, ନେତ୍ରଶୂଳ ଔଷଧ, ରତି ଶକ୍ତି ବୃଦ୍ଧିକରଣୋପାୟ କଥନ, ଗ୍ରହଣାଦିରେ କଟୀଶୂଳାଦିର ଔଷଧ, ପ୍ରମେଦ ଔଷଧ, ମେଧାବୃଦ୍ଧି ଔଷଧ, ଆଘାତ ନିଃସୃତ ରକ୍ତ ଓ ଦନ୍ତ ବ୍ୟଥା ପ୍ରଶମନ ଔଷଧ, ଗଣ୍ଡମାଳ ଓ ସପ୍ତ ଔଷଧ, ଯୋନି ବ୍ୟଥା ଔଷଧ, ପଶୁ ଚିକିତ୍ସା, ପାଣ୍ଡୁରୋଗ ଔଷଧ, ବୁଦ୍ଧି ନିର୍ମଳ ଔଷଧ, ତ୍ରିପୁରାକଳ୍ପ, ପ୍ରଶ୍ନ ଗଣନା, ବାୟୁ ଜୟ ଓ ଅସ୍ତ୍ର ଚିକିତ୍ସା, ଔଷଧର ନାମ, ଚିକିତ୍ସା, ବ୍ୟାକରଣ ନିୟମ, ଉଦାହରଣ ସମୂହ, ଛନ୍ଦୋଶାସ୍ତ୍ର, ମାତ୍ରା, ବୃତ୍ତ, ସମ ବୃତ୍ତ, ଅର୍ଦ୍ଧସମ ବୃତ୍ତ, ବିଷମବୃତ୍ତ, ପ୍ରସ୍ତରାଦି ନିର୍ଦ୍ଦେଶ, ଧର୍ମୋପଦେଶ, ସ୍ନାନ, ତର୍ପଣ, ବୈଶ୍ୱଦେବ, ଶ୍ରାଦ୍ଧ ବିଧି, ପ୍ରାୟଶ୍ଚିତ୍ତ, ପ୍ରଳୟ କଥା, ବିଷ୍ଣୁଭକ୍ତି, ନାରାୟଣ ମାହାତ୍ମ୍ୟ ଓ ଧ୍ୟାନ, ଜ୍ଞାନାମୃତ, ନୃସିଂହ ଓ ବିଷ୍ଣୁ ସ୍ତବ, ବ୍ରହ୍ମଜ୍ଞାନ ଓ ଆତ୍ମଜ୍ଞାନ କଥା, ଗୀତାସାର ଓ ଅଷ୍ଟାଙ୍ଗ ଯୋଗର ପ୍ରୟୋଜନ ପ୍ରଭୃତି ବର୍ଣ୍ଣିତ ହୋଇଅଛି ।

ଉତ୍ତର ଖଣ୍ଡେ ପ୍ରେତ କଳ୍ପ

ଏଥିରେ ଗରୁଡ଼ ପ୍ରତି ଭଗବାନଙ୍କର ଔର୍ଦ୍ଧ୍ୱ ଦୈହିକ ବିଧି କଥନ, ନରକରୂପ. ଗର୍ଭାବସ୍ଥା କଥନ, ବୃଷୋତ୍ସର୍ଗ, ପ୍ରେତୋପାଖ୍ୟାନ, ବବ୍ରୁବାହନ ଓ ପ୍ରେତ ସମ୍ବାଦ, ମନୁଷ୍ୟତ୍ୱ ଓ ପ୍ରେତତ୍ୱ, ଯମ ନଗରୀ ପଥ ନିର୍ଣ୍ଣୟ, ପ୍ରେତଙ୍କର ବାସସ୍ଥାନ, ମନୁଷ୍ୟର ଆୟୁ, ଜୀବୋତ୍ପତ୍ତି, ଉଦକୁମ୍ଭ ଦାନ, ବାର୍ଷିକ ଶ୍ରାଦ୍ଧ ଓ ମୃତର ମୁକ୍ତି ଉପାୟ ବର୍ଣ୍ଣିତ ହୋଇଅଛି ।

## ବ୍ରହ୍ମାଣ୍ଡ ପୁରାଣ

ବ୍ରହ୍ମାଣ୍ଡ ପୁରାଣ ପ୍ରକ୍ରିୟା ପାଦ ଓ ଉପୋଦ୍‌ଘାତ ପାଦ ଭେଦରେ ଦୁଇ ଭାଗରେ ବିଭକ୍ତ-

ବ୍ରହ୍ମା ବ୍ରହ୍ମାଣ୍ଡ ମାହାତ୍ମ୍ୟମଧିକୃତ୍ୟାବ୍ରବୀତ୍ ପୁନଃ ।
ତଚ୍ଚ ଦ୍ୱାଦଶ ସାହସ୍ରଂ ବ୍ରହ୍ମାଣ୍ଡଂ ଦ୍ୱିଶତାଧିକଂ ।।

ବ୍ରହ୍ମା ବ୍ରହ୍ମାଣ୍ଡ ମାହାତ୍ମ୍ୟ ଅବଲମ୍ବନ କରି ଏହି ପୁରାଣ କହିଅଛନ୍ତି । ଏହାର ଶ୍ଳୋକ ସଂଖ୍ୟା ୧୨୨୦୦ ମାତ୍ର । ଏହାର ପ୍ରକ୍ଷିପ୍ତ ଅଂଶକୁ ନେଇ ଐତିହାସିକଙ୍କ ମଧ୍ୟରେ ଘୋରତର ମତଭେଦ ପରିଲକ୍ଷିତ ହୁଏ । ସ୍କନ୍ଦ ପୁରାଣ ପରି ବହୁସଂଖ୍ୟକ ମାହାତ୍ମ୍ୟରେ ଏହାର କଳେବର ବୃଦ୍ଧି ହୋଇଅଛି । ପୁରାଣ ବର୍ଣ୍ଣିତ ବିଷୟ, ଯଥା-

ପ୍ରକ୍ରିୟା ପାଦେ-କାଳମାନ-

ଏଥିରେ ଦ୍ୱାଦଶ ବାର୍ଷିକ ଯଜ୍ଞ ନିରୂପଣ, ଦେବାସୁର ସୃଷ୍ଟି, ଯୋଗ ଧର୍ମ, ପାଶୁପତ ଯୋଗ, ଶୌଚାଚାର, ଯତି, ପ୍ରାୟଶ୍ଚିତ୍ତ, ଅଭୀଷ୍ଟ ଲକ୍ଷଣ, ଓଁକାର ପ୍ରାପ୍ତି ଲକ୍ଷଣ, କଳ୍ପ ନିରୂପଣ ଓ କୁମାରୋତ୍ପତ୍ତି, ସ୍ୱର ଉତ୍ପତ୍ତି, ଦକ୍ଷକୃତ ଶିବ ସ୍ତବ, ଜ୍ୱର କଥନ, ବର୍ଷ, ପର୍ବତ କଥନ, କେତୁମାଳ

ପ୍ରଭୃତି ବର୍ଷ କଥା, ଦ୍ୱୀପ ବର୍ଣ୍ଣନ, ଜ୍ୟୋତିଃ ନିର୍ଣ୍ଣୟ, ଜ୍ୟୋତିଷ୍କ ବିବରଣ, ପିତୃ ବର୍ଣ୍ଣନ, ଯକ୍ଷ ବର୍ଣ୍ଣନ, ସାକଲ୍ୟ ବୃତ୍ତାନ୍ତ, ପୃଥୁ ବଂଶାନୁକୀର୍ତ୍ତନ, ଉପୋଦ୍‌ଘାତ ପାଦରେ ପ୍ରଜାପତି ବଂଶାନୁକୀର୍ତ୍ତନ, ଶ୍ରାଦ୍ଧ ପ୍ରକରଣ, ବରୁଣ ବଂଶ, ମିଥିଳାବଂଶ, ବୃଷ୍ଣିବଂଶରେ କୃଷ୍ଣାବିର୍ଭାବ, ଇଳା ସ୍ତବ, ଭବିଷ୍ୟ କଥା, ଗନ୍ଧର୍ବ ମୂର୍ଚ୍ଛନା ଲକ୍ଷଣ, ଗୀତାଳଙ୍କାର, ଭବିଷ୍ୟତ୍ ରାଜବଂଶ, ବୈବସ୍ୱତ ମନୁ ବଂଶ, ଚତୁର୍ଦ୍ଦଶ ଲୋକ ବର୍ଣ୍ଣନ, ମନୋମୟ ପୁରାଖ୍ୟାନ, ଗୁଣାନୁସାରେ ଜନ୍ତୁଗଣର ଗତି, ଅନ୍ୱୟ ବ୍ୟତିରେକାନୁସାରେ ପ୍ରଳୟାଦି ପୁନଃ ସୃଷ୍ଟିର କଥା ଉଲ୍ଲେଖ ଅଛି ।

ଉପରୋକ୍ତ ବିଷୟ ବ୍ୟତୀତ ସନତ୍ କୁମାର, ନରସିଂହ, ବୃହନ୍ନାରଦୀୟ ଶିବଧର୍ମ, ଦୁର୍ବାସା, କପିଳ, ମାନବ, ଔଷନସ, ବାରୁଣ, କାଳିକା, ସାମ୍ବ, ନନ୍ଦା, ସୌର, ପାରାଶର, ଆଦିତ୍ୟ, ନୂତନ ବ୍ରହ୍ମାଣ୍ଡ, ମାହେଶ୍ୱର, ଭାଗବତ, ବଶିଷ୍ଠ, କୌର୍ମ, ଭାର୍ଗବ, ଆଦି ମୁଦ୍ଗଲ, କଲ୍କୀ, ଦେବୀ ପୁରାଣ, ମହାଭାଗବତ, ବୃହଦ୍‌ଧର୍ମ, ପରାନନ୍ଦ ଓ ପଶୁପତି ନାମରେ ୨୯ ଖଣ୍ଡ ଉପ ପୁରାଣ ସୁଦ୍ଧା ବିଦ୍ୟମାନ । ଏଥିରେ ଅନେକ ନୂତନ କଥା ସନ୍ନିବେଶିତ ହୋଇଅଛି ।

ଜୈନ ଓ ବୌଦ୍ଧଙ୍କର ମଧ୍ୟ ଅନେକଗୁଡ଼ିଏ ପୁରାଣ ଗ୍ରନ୍ଥ ଥିବା ଦେଖାଯାଏ । ଯଥା- ଦିଗମ୍ବର ଜୈନଙ୍କର ଚବିଶ ଖଣ୍ଡ ମହାପୁରାଣ ସଂସ୍କୃତ ଭାଷାରେ ଲିଖିତ ଅଛି - ଋଷଭ ଦେବଙ୍କ ପୁରାଣାଦି, ଅଜିତନାଥ, ସମ୍ଭବନାଥ, ଅଭିନନ୍ଦୀ, ସୁମତିନାଥ, ପଦ୍ମପ୍ରଭ, ସୁପାର୍ଶ୍ୱ, ଚନ୍ଦ୍ରପ୍ରଭ, ପୁଷ୍ପଦନ୍ତ, ଶୀତଳନାଥ, ଶ୍ରେୟାଂସ, ବସୁପୂଜା, ବିମଳନାଥ, ଅନନ୍ତଜିତ୍, ଧର୍ମନାଥ, ଶାନ୍ତିନାଥ, କୁନ୍ଥୁନାଥ, ଅମରନାଥ, ମଲ୍ଲିନାଥ, ମୁନିସୁବ୍ରତ, ନମିନାଥ, ନେମିନାଥ, ପାର୍ଶ୍ୱନାଥ, ସନ୍ମତିଜିନ, ଅର୍ହତ ପ୍ରଭୃତିଙ୍କ ଚରିତ ବର୍ଣ୍ଣିତ ହୋଇଅଛି ଏଥିରେ ତତ୍କାଳୀନ ଜୈନ ସମ୍ପ୍ରଦାୟର ଅନେକ ଜ୍ଞାତବ୍ୟ ବିଷୟ ସନ୍ନିବେଶିତ । ବୌଦ୍ଧଗଣ ପୁରାଣ ନାମ ପରିବର୍ତ୍ତେ ନବ ଧର୍ମ ନାମେ ନ ଖଣ୍ଡ ଗ୍ରନ୍ଥରେ ବୌଦ୍ଧାନୁଷ୍ଠେୟ ବ୍ରତାଦି ଓ ପ୍ରଧାନ ଘଟନାବଳୀ ଉଲ୍ଲେଖ କରିଅଛନ୍ତି । ଯଥା- ପ୍ରଜ୍ଞାପାରମିତ ଖଣ୍ଡ ବ୍ୟୂହ, ସମାଧିରାଜ, ଲୀଳାବତାର, ତଥାଗତ ଗୁହ୍ୟକ, ସଦ୍ଧର୍ମପୁଣ୍ଡରୀକ, ଲଳିତ ବିସ୍ତର, ସୁବର୍ଣ୍ଣ ପ୍ରଭା ଓ ଦଶଭୂମିଶ୍ୱର ପ୍ରଭୃତିରେ ଉପରୋକ୍ତ ବିଷୟର ଉଲ୍ଲେଖ ଅଛି ।

## ଇତିହାସ

ଇତି ଶବ୍ଦର ଅର୍ଥ ଗତି ଏବଂ ହାସ ଶବ୍ଦର ଅର୍ଥ ବିକାଶ ବା ବଧ । ସୁତରାଂ ଇତିହାସ କହିଲେ ଗତିର ବିକାଶ ବା ବଧ ବୁଝାଏ ।

"ଅବାତପ୍ରାଣା" (ନାସଦାସୀୟ ସୂକ୍ତ ଋଗ୍‌ବେଦ ୧୦।୧୧।୧) ପରା ପ୍ରକୃତିର ସବାତ ଗତିରୁ ବିଶ୍ୱ ସୃଷ୍ଟି ହୋଇଅଛି । ତଦନୁଯାୟୀ ଇତିହାସ ପ୍ରଧାନତଃ ଦୁଇ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ପ୍ରାକୃତିକ ଅର୍ଥାତ୍ ସ୍ଥାବର, ଉଦ୍ଭିଦ, କୀଟ, ପତଙ୍ଗ ପ୍ରଭୃତିଠାରୁ ବାନର ପର୍ଯ୍ୟନ୍ତ ଜୀବର କ୍ରମ ବିକାଶତ୍ମକ ପ୍ରସଙ୍ଗର ଇତିହାସ (The Mineral, The Vegetable and The Animal Kingdoms) ଏବଂ ଚତୁର୍ଲକ୍ଷ ବାନର ଯୋନି ଭ୍ରମଣ ପରେ ମାନବ ଇତିହାସ ।

ପ୍ରସୂତ ଓ ପ୍ରାକୃତିକ ପ୍ରତ୍ୟେକ ପଦାର୍ଥର କ୍ରମବିକାଶର ପୃଥକ୍ ପୃଥକ୍ ଇତିହାସ ଥିବା ଯୋଗୁଁ ଅନନ୍ତ ବେଦିତବ୍ୟ ଶାସ୍ତ୍ର ଉଦ୍ଭବ ହୋଇଅଛି । ସେଥିଯୋଗୁଁ ବୈଜ୍ଞାନିକ, ଦାର୍ଶନିକ, ରାସାୟନିକ ପ୍ରଭୃତି ତତ୍ତ୍ୱବିଦ୍‌ଗଣ କହନ୍ତି ଯେ, ସାମାନ୍ୟ ଏକ ଧୂଳିକଣାର କ୍ରମିକ ଇତିହାସ ଆବିଷ୍କାର କରିବାକୁ ହେଲେ ଯାବତୀୟ ଜ୍ଞାତବ୍ୟ ଶାସ୍ତ୍ରର ଅବତାରଣା ଓ ଅନୁଶୀଳନଦ୍ୱାରା ସେ ସମସ୍ତର ମୂଳତତ୍ତ୍ୱ ଅବଗତ ହେବାଯାଏ ଏହାର ରହସ୍ୟୋଦ୍‌ଘାଟନ ଅସମ୍ଭବ; ଏଥିଯୋଗୁଁ ମନୀଷୀମାନେ କହନ୍ତି ଯେ, ସମ୍ୟକ୍ ଇତିହାସ ଅଧ୍ୟୟନରେ ମାନବର ଜ୍ଞାନ ପ୍ରସାରିତ ହୁଏ । ତୁଳନାମୂଳକ ଇତିହାସାନୁଶୀଳନଦ୍ୱାରା ବୁଦ୍ଧି ଓ ବିଚାର ଶକ୍ତି ଯେପରି ତୀକ୍ଷ୍ଣତା ଏବଂ ବିଶ୍ୱତୋମୁଖିନୀ ବିସ୍ତୃତି ଲାଭକରେ ସେପରି ଅନ୍ୟ କୌଣସି ଶାସ୍ତ୍ରାଧ୍ୟୟନଦ୍ୱାରା ସମ୍ଭବପର ନୁହେଁ । ଇତିହାସ ମାନବର ସଂକୀର୍ଣ୍ଣତା ଓ କୁସଂସ୍କାର ଦୂର କରେ ।

ଏହି ଦୃଷ୍ଟି କେନ୍ଦ୍ରରୁ ଜର୍ମାନୀରୁ ଦାର୍ଶନିକ ପଣ୍ଡିତ ପ୍ରବର ହିଗେଲ କହନ୍ତି ଯେ, ଏକ ଅଦ୍ୱିତୀୟ ବ୍ରହ୍ମ ସ୍ୱୀୟ ପରିପୂର୍ଣ୍ଣତା ଅନୁଭବ କରିବା ଲାଗି ବିଭିନ୍ନ ସ୍ତରର ମାନବ ଇତିହାସ ମଧ୍ୟଦେଇ ଏକ ଐଶ୍ୱରିକ ଉଦ୍ଦେଶ୍ୟ ସାଧନ ଦିଗରେ କ୍ରମଶଃ ଅଗ୍ରସର ହେଉଅଛନ୍ତି । ଏହି ଗତିର କ୍ରମବିକାଶ ହିଁ ମାନବ ଇତିହାସ, ଏଥିଯୋଗୁଁ ଯେଉଁ ଆପାତତଃ ପ୍ରତୀୟମାନ ପରସ୍ପର ବିରୋଧୀ ଓ ବିଧ୍ୱଂସୀ ସଭ୍ୟତାର ଉତ୍ପତ୍ତି ହେଉଅଛି ସେଥିରେ ସୁଦ୍ଧା ପୂର୍ଣ୍ଣତା ସାଧନର ସାମଞ୍ଜସ୍ୟ ବିଦ୍ୟମାନ । ବର୍ତ୍ତମାନ ଅତୀତର ନବୀନ ସଂସ୍କରଣ ଏବଂ ଭବିଷ୍ୟତର ମୁକୁର ସ୍ୱରୂପ, ଏହାହିଁ ଜାଗତିକ ଇତିହାସର ପୁନରାବୃତ୍ତି । ବିଭିନ୍ନ ଜାତିର ଉତ୍ଥାନ ପତନରେଏକ ବିଶ୍ୱ ଶକ୍ତିର ଲୀଳା ବିଦ୍ୟମାନ । ପ୍ରାକୃତିକ ଜଡ଼ ପଦାର୍ଥ ଓ ପ୍ରାଣୀର ଇତିହାସରେ ଯେପରି କେତେକ ସାମୟିକ ପରିବର୍ତ୍ତନ ପ୍ରକୃତିର କରାଳ କବଳରୁ ଆତ୍ମରକ୍ଷା ଲାଗି ପ୍ରଥମତଃ ବିବର୍ତ୍ତିତ ହୋଇ ପରେ ଆତ୍ମ ଧ୍ୱଂସର କାରଣ ଅବଗତ ହେଲେ ସୁଦ୍ଧା ସେହି ସେହି ବସ୍ତୁ ଓ ପ୍ରାଣୀର ସେହି ସେହି ଅବସ୍ଥା ଚିରସ୍ଥାୟୀ ରୂପେ ପରିଣତ ହୁଏ । ସେପରି ମାନବ ଇତିହାସର କେଉଁ କେଉଁ ସଭ୍ୟତା କାଳ କବଳରେ ବିଲୀନ ହୁଏ ଏବଂ କେତେକ ଜାତିର ସଭ୍ୟତା ସମଗ୍ର ମାନବ ଜାତିର ଚିର ସମ୍ପଦ ରୂପେ ବିରାଜିତ ଥାଏ ।

ଏହାର କାରଣ ଅନୁସନ୍ଧାନ କଲେ ଜଣାଯାଏ ଯେ, ଯେଉଁ ଜାତି ଶକ୍ତିଶାଳୀ ହୋଇଉଠେ ସେହି ଜାତି କ୍ରମଶଃ ଯଥେଚ୍ଛାଚାରୀ, ଉଚ୍ଛୃଙ୍ଖଳ, ଇନ୍ଦ୍ରିୟ ପରତନ୍ତ୍ର ଓ ବିଳାସ ପରାୟଣ ହୋଇ ଅପର ଜାତିର ଉତ୍ପୀଡ଼କ ହୁଏ । ଐଶ୍ୱରିକ ଇଚ୍ଛାର ଏହି ପରିପନ୍ଥୀ ଭାବ କୌଣସି ସଭ୍ୟତାରେ ପ୍ରବିଷ୍ଟ ହେଲେ ତାହାର ଉତ୍କୃଷ୍ଟ ଅଂଶଗୁଡ଼ିକ କୌଣସି ନା କୌଣସି ଜାତିର ସଭ୍ୟତାରେ ରହିଯାଏ ଏବଂ ଉକ୍ତ ଜାତିର ସଭ୍ୟତା ଧ୍ୱଂସ ପ୍ରାପ୍ତ ହୁଏ । ଯାହା ଥରେ ମାତ୍ର ବିବର୍ତ୍ତିତ ହୋଇ ବ୍ୟକ୍ତିତ୍ୱ ପ୍ରାପ୍ତ ହୁଏ ତାହା ଯେକୌଣସି ପ୍ରକାରେ ଜଗତ ଇତିହାସରେ ରହିଯାଏ । ଏହାର ଦୃଷ୍ଟାନ୍ତ ସ୍ୱରୂପ ବର୍ତ୍ତମାନ ମରୁ ସାଗର (The Dead Sea) ଉତ୍ପତ୍ତି ବୃତ୍ତାନ୍ତ ଗ୍ରହଣ କରାଯାଇପାରେ । ବାଇବଲରେ ବର୍ଣ୍ଣିତ ଅଛି ଯେ ସୋଡ଼ମ ଓ ଗୋମରା (Sodam and Gomorah) ନାମକ

ଦୁଇଟି ସମୃଦ୍ଧିଶାଳୀ ନଗର ବର୍ତ୍ତମାନ ମରୁସାଗରର ସ୍ଥାନରେ ପୁରାକାଳରେ ବିଦ୍ୟମାନ ଥିଲା । ସେହି ନଗରବାସୀଗଣ ନିତାନ୍ତ ପାପଗ୍ରସ୍ତ ହେବା ଯୋଗୁଁ ହଠାତ୍ ଦିନେ ପ୍ରାକୃତିକ ବିପ୍ଳବ (Natural Cataclysm) ଯୋଗେ ଜଳପ୍ଲାବନରେ ବିଲୀନ ହେଲା । ସେହି ଦିନାବଧି ସେଠାରେ ବର୍ତ୍ତମାନ ମରୁସାଗରର ଉତ୍ପତ୍ତି ହୋଇଅଛି । ମରୁସାଗରର ଜଳର ପ୍ରାଣୀବିଧ୍ୱଂସିନୀ ଶକ୍ତି ଏତେ ପ୍ରବଳ ଯେ କୌଣସି ପ୍ରାଣୀ ଏପରିକି ଉଦ୍ଭିଦ ମଧ୍ୟ ତାହାର ଦଶ ବାର ମାଇଲ ମଧ୍ୟରେ ଜନ୍ମିପାରେ ନାହିଁ । ସେହି ମରୁସାଗରର ବିଷାକ୍ତ ବାଷ୍ପ ସତତ ଊର୍ଦ୍ଧ୍ୱକୁ ଉତ୍ଥିତ ହୁଏ । ଉଡ୍ଡୀୟମାନ ଖେଚରମାନେ ମଧ୍ୟ କଦାଚିତ ମରୁ ସାଗର ନିକଟବର୍ତ୍ତୀ ହେଲେ ସେହି ବିଷାକ୍ତ ବାୟୁର ପ୍ରଭାବରେ ମୃତ୍ୟୁମୁଖରେ ପତିତ ହୁଅନ୍ତି ।

ପ୍ରଶାନ୍ତ ମହାସାଗରର ଅତଳ ଗର୍ଭ ଲେମୁରିୟା ନାମକ ଏକ ମହାଦେଶର ମହାସମାଧି । ଏହି ଲେମୁରିୟା (Lemuria) ଦେଶର ସଭ୍ୟତା ଅତି ଉତ୍କୃଷ୍ଟ ଥିଲା । କାଳକ୍ରମେ ଏହି ଦେଶବାସୀ ଭଗବଦୁଦ୍ଦେଶ୍ୟର ବିରୋଧୀ ହୋଇ ପାପପରାୟଣ ହେଲେ; ହଠାତ୍ ଦିନେ ଏହି ଜାତି ଅତଳ ଜଳଧି ଗର୍ଭରେ ନିମଗ୍ନ ହେଲା ।

ଏହି ଲେମୁରିୟା ଅଧିବାସୀଗଣ ବର୍ତ୍ତମାନ ଆଟଲାଣ୍ଟିକ୍ ମହାସମୁଦ୍ରର ସ୍ଥାନରେ ଉପନିବେଶ ସଂସ୍ଥାପନ କରିଥିଲେ । ସେମାନେ ମଧ୍ୟ କ୍ରମଶଃ ଉଚ୍ଚତମ ସଭ୍ୟତାର ଉତ୍ତୁଙ୍ଗ ଶିଖରାରୂଢ଼ ହୋଇ କ୍ରମଶଃ ମହାପାପୀ ହେବାରୁ ଜଗଦ୍ରକ୍ଷଣ ବ୍ୟପଦେଶରେ ଭଗବାନଙ୍କ ଇଚ୍ଛାରେ ହଠାତ୍ ଭୂଗର୍ଭରୁ ଜଳପ୍ଲାବନ ବଶତଃ ଚିର ସମାଧିପ୍ରାପ୍ତ ହୋଇଅଛନ୍ତି । ସେହି ଉପନିବେଶର ନାମ ଆଟାଲାଣ୍ଟିସ୍ (Atlantis) ଥିଲା । ତଦନୁଯାୟୀ ବର୍ତ୍ତମାନ ଆଟଲାଣ୍ଟିକ୍ ମହାସାଗରର ନାମକରଣ ହୋଇଅଛି ।

ଏହି ଜାତି କାଳଗର୍ଭରେ ବିଲୀନ ହୋଇଅଛି ସତ୍ୟ, କିନ୍ତୁ ତାହାର ସଭ୍ୟତା ଇତିହାସରୁ ସମ୍ପୂର୍ଣ୍ଣ ବିଲୁପ୍ତ ହୋଇନାହିଁ । ବର୍ତ୍ତମାନ ମଧ୍ୟ ଆମେରିକା ଓ ମେକ୍ସିକୋ (Central America and Mexico) ପ୍ରଭୃତି ଦେଶର ସଭ୍ୟତା ଏହି ମେଲୁରିଆ ସଭ୍ୟତାର ଅନୁରୂପ ମାତ୍ର । ପ୍ରତ୍ନତତ୍ତ୍ୱବିଦ୍ ପଣ୍ଡିତଗଣ ବିବେଚନା କରି କହନ୍ତି ଯେ, ପ୍ରାଚୀନ ବ୍ୟାବଲନ୍, ମିଶର୍ ଓ ଆସେରିଆ (Babylon, Egypt and Assaria) ସଭ୍ୟତା ମଧ୍ୟ ଲେମୁରିଆ ସଭ୍ୟତାବଲମ୍ବନେ ଗଠିତ ହୋଇଅଛି । ପ୍ରାଚୀନ ଗ୍ରୀସ୍‌ର ପଣ୍ଡିତ ପ୍ରବର ପ୍ଲେଟୋଙ୍କ ଗଣତନ୍ତ୍ର (Plato's Republic) ନାମକ ଗ୍ରନ୍ଥ ମଧ୍ୟ ସେହି ପ୍ରାଚୀନ ଲେମୁରିୟା ସଭ୍ୟତାର ସ୍ମୃତି ମାତ୍ର । ପ୍ଲେଟୋ ସ୍ୱୀୟ ଟାଇମିଆସ୍ ଓ କ୍ରିଟୀୟାସ୍ (Timeous and Critias) ଗ୍ରନ୍ଥରେ ଆଟାଲାଣ୍ଟିସ୍ ଓ ଲେମୁରିୟା ଦେଶର ବିବରଣ ଲିପିବଦ୍ଧ କରିଅଛନ୍ତି । ବର୍ତ୍ତମାନ ଜଗତର ବିଶିଷ୍ଟ ପ୍ରତ୍ନତତ୍ତ୍ୱବିତ୍ ଡାକ୍ତର ଶ୍ଲୀଇମାନ୍ (Dr. Schlieman), ଅଧ୍ୟାପକ ନିକୋଲା ଓ ରୁଷୋ (Professor Nicola & Russo) ଏବଂ ବିଖ୍ୟାତ ବୈଜ୍ଞାନିକ ଲୁଇସ୍ ସ୍ପେନ୍‌ସ (Lewis Spence) ପ୍ରଭୃତି ଏହି ମହାଦେଶ ଦ୍ୱୟର ସଭ୍ୟତା ସମ୍ବନ୍ଧେ ଭୁରି ଭୁରି ପ୍ରମାଣ ସହ ଅନେକ ତଥ୍ୟ

ସଂଗ୍ରହ କରି କହନ୍ତି ଯେ, ଯେଉଁ ପ୍ରାକୃତିକ ଉତ୍ପାତରେ ଏହି ଦେଶଦ୍ୱୟ ଧ୍ୱଂସ ପ୍ରାପ୍ତ ହେଲା ତାହା ଖ୍ରୀଷ୍ଟ ପୂର୍ବ ୯୬୦୦ ଶତାବ୍ଦୀରେ ଘଟିଥିଲା । ଗ୍ରୀକ୍ ପଣ୍ଡିତ ପ୍ଲୁଟାର୍କର "ପାଞ୍ଚୋଟି ସମାନ୍ତରାଳ ଜୀବନୀ" (Plutarch's fifty parallel lives) ନାମକ ଗ୍ରନ୍ଥରେ ମଧ୍ୟ ଆଟଲାଣ୍ଟିକ୍ ଦେଶର ବିଷୟ ଉଲ୍ଲେଖ ଅଛି । ଚାର୍ଚ୍ଚୱାର୍ଡ଼ (Churchward) ନାମକ ଆଧୁନିକ ପ୍ରତ୍ନତତ୍ତ୍ୱବିତତତ୍ତ୍ୱବିତଦୀୟ ଗ୍ରନ୍ଥରେ ଆଟଲାଣ୍ଟିସ୍ ଜାତିର ମହାପ୍ଲାବନର ବିବରଣ ଉଲ୍ଲେଖ କରିଅଛନ୍ତି । ଇଗ୍ନେସିଆସ ଡୋନାଲିଙ୍କର (Ignatious Donali) ଗ୍ରନ୍ଥରେ ମଧ୍ୟ ଏ ବିଷୟ ପ୍ରତିପାଦିତ ହୋଇଅଛି । ଏତଦ୍‌ଭିନ୍ନ ଆଧୁନିକ ଯୁଗରଏକାଧିକ ଔପନ୍ୟାସିକ ଏହି ଆଟାଲାଣ୍ଟିସ୍‌ମାନଙ୍କ ବିଷୟସମ୍ବଳିତ ବହୁ ଗ୍ରନ୍ଥ ରଚନା କରିଅଛନ୍ତି । ଉଦାହରଣ ସ୍ୱରୂପ ବିଖ୍ୟାତ ଔପନ୍ୟାସିକ ଫିଲୋର "ଉଭୟ ଗ୍ରହବାସୀ", ବିନୟଇଲାଟ୍ ଆଟ୍‌ଲାଣ୍ଟାଇଡ୍‌ର "ଆଗାମୀ ଜାତି" (The Coming Race) ଏବଂ ଫ୍ରାନ୍‌ସିଜ୍ ବେକାନ୍‌ର "The new attlantice" ନବ ଆଟାଲାଣ୍ଟିସ୍ ଇତ୍ୟାଦି ଉପନ୍ୟାସ ଉଲ୍ଲେଖଯୋଗ୍ୟ ।

ଏହି ରୂପେ ସୃଷ୍ଟି ଆରମ୍ଭରୁ ମାନବର କ୍ରମବିକାଶାତ୍ମକ ଇତିହାସକୁ ବିଭିନ୍ନ ଜାତିର ଉତ୍ଥାନ ପତନର ଧାରାବାହିକ ଇତିହାସ ବୋଲି ପାଶ୍ଚାତ୍ୟ ମନୀଷୀମାନେ ଗ୍ରହଣ କରିଅଛନ୍ତି । କିନ୍ତୁ ବିଭିନ୍ନ ସଭ୍ୟତାର ଅଭ୍ୟୁତ୍ଥାନ ଓ ତିରୋଧାନ ଅନୁଧାବନ କଲେ ଜଣାଯାଏ ଯେ, ପ୍ରାକୃତିକ ଜଗତର (ସ୍ଥାବରାବଧି ବାନର ପର୍ଯ୍ୟନ୍ତ) ପ୍ରତ୍ୟେକ ଜୀବ ଯେପରି କଠୋର ଜୀବନ ସଂଗ୍ରାମରେ କେବଳ ବଞ୍ଚି ରହିବାର ଆନନ୍ଦରେ ବିଭିନ୍ନ ପରିପନ୍ଥୀ ଭାବର ଭିତର ଦେଇ କ୍ରମ ପରିଣତିରେ ଉଚ୍ଚତର ଜୀବ ହୋଇଅଛି, ସେପରି ବିଭିନ୍ନ ସଭ୍ୟତା କେବଳ ବଞ୍ଚି ରହିବା ଲାଗି ବିଭିନ୍ନ ଆକାରରେ ପରିଣତି ଲାଭ କରିଅଛି । ଏହି ବଞ୍ଚି ରହିବାର ଇତିହାସ ଅନୁସନ୍ଧାନ କଲେଏହାର ମୂଳ ତଥ୍ୟ ଜଣାଯାଏ । ସତ୍ତ୍ୱଗୁଣର ନିତ୍ୟ ସମ୍ବନ୍ଧ ଆତ୍ମ ପ୍ରକାଶ ଓ ତଜ୍ଜନିତ ଶାନ୍ତି । ଏହି ସତ୍ତ୍ୱଗୁଣ ରଜ ଓ ତମୋଗୁଣର ବାଧାରୁ ଅନବରତ ଆତ୍ମରକ୍ଷା କରିବା ଚେଷ୍ଟା କରେ । ତାହାର ଫଳରେ ଏକ ଦିଗରେ ଉଚ୍ଚତର ସଭ୍ୟତାର ଅଭ୍ୟୁତ୍ଥାନ ସମ୍ଭବପର ଏବଂ ତମୋଗୁଣର ପ୍ରାଧାନ୍ୟରୁ ଅନ୍ୟଦିଗରେ ଜାଡ୍ୟଭାବ ମଧ୍ୟ ଉପସ୍ଥିତ ହୋଇଅଛି । ଶିବ ତମୋଗୁଣର ଅଧୀଶ୍ୱର, ସର୍ବସଂହାରକ ଏବଂ ଜ୍ଞାନଦାତା । ସେଥିଯୋଗୁଁ ବିଭିନ୍ନ ସଭ୍ୟତା ନିଜର ଚରମ ବିକାଶରେ ଧ୍ୱଂସ ପ୍ରାପ୍ତ ହୁଏ । ଅତୀତ ସଭ୍ୟତାରେ ଦୋଷଗୁଣର ଅଭିଜ୍ଞତା ନେଇ ମାନବ ନୂତନ ସଭ୍ୟତା ଗଠନରେ ପ୍ରୟାସୀ ହୁଏ । ଅତଏବ ସର୍ବ ଉଚ୍ଛ୍ରୟର ପରିଣାମ ପତନ ଏବଂ ସର୍ବପତନ ହିଁ ସତ୍ୟ ନୂତନ ଉତ୍ଥାନର କାରଣ ସ୍ୱରୂପ । ଏହିରୂପେ ମାନବ ସଭ୍ୟତା ପାଶ୍ଚାତ୍ୟ ସମକ୍ଷରେ ଘୋରତର ଜୀବନ ସଂଗ୍ରାମରେ ପରିଣତ ହୋଇ ଆତ୍ମମ୍ଭରିତା ପ୍ରକାଶ କରିବା ଲାଗି ପରସ୍ପରର ଧ୍ୱଂସ ସାଧନ ପ୍ରୟାସୀ । କିନ୍ତୁ ଭାରତୀୟ ଋଷିମାନେ ଏହି ସଭ୍ୟତାର ମୂଳ ତ୍ରିଗୁଣବଦ୍ଧ ବୋଲି ଉପଲବ୍ଧି କରି ଜୀବର ଏହି ବନ୍ଧନ ତ୍ରୟରୁ ମୁକ୍ତି ଲାଭ କରି ଶିବ ହେବାର ଉପାୟ ନିର୍ଦ୍ଧାରଣ କରିଅଛନ୍ତି ।

ପାଶ୍ଚାତ୍ୟମାନେ ପୂର୍ବୋକ୍ତ ଗତିର ବିକାଶ ଏବଂବିଧ ବା ନିରୋଧ ଏହି ଉଭୟ ଅର୍ଥ ଇତିହାସରେ ଆରୋପ କରିଅଛନ୍ତି । କିନ୍ତୁ ଅନ୍ତର୍ମୁଖିନୀ ପ୍ରାଚ୍ୟପ୍ରତିଭା ଏହି ଜଗତ୍ ବ୍ରହ୍ମଠାରୁ ଉତ୍ପନ୍ନ ବୋଲି ସ୍ଥିରକରି ଏହି ଜାଗତିକ ସଭ୍ୟତାରୁ ନିରାଶ ବା ଗତିରୋଧ ପଦରେ ମହାପ୍ରସ୍ଥାନ, ପ୍ରୟାଣ, ଦେବଯାନ ଇତ୍ୟାଦି ଅର୍ଥର ଅବଲମ୍ବନରେ ପରାଗତି ବା ସେହି ଆଦି ପୁରୁଷ ସହିତ ପୁନଃ ସଂଗତି ଇତିହାସର ମୂଳତତ୍ତ୍ୱ ରୂପେ ଗ୍ରହଣ କରିଅଛନ୍ତି । ଜଗତ୍ ସଭ୍ୟତାର ଶେଷ ସମ୍ମିଳନ ପରାଗତି (ପୁରୁଷ ଓ ବ୍ରହ୍ମରେ ଗତି) ହିଁ ଏହାର ଚରମ ବିକାଶ ବା ନିରୋଧ ।

ରାମାୟଣ ମହାଭାରତାଦି ପୁରାଣରେ ଭୌତିକ ଇତିହାସ ସହିତ ପରମ ଆଧ୍ୟାତ୍ମିକ ତତ୍ତ୍ୱରୂପେ ଏହି ଗତି ବା ବଧର ଇତିହାସ ମଧ୍ୟ ଅଛି । ପ୍ରକୃତରେ ମହାଭାରତରେ ବ୍ରହ୍ମାଭିବ୍ୟକ୍ତ ଜଗତ୍ର ଉତ୍ପତ୍ତି, ସ୍ଥିତି ଓ ଲୟ ବା ମହାପ୍ରସ୍ଥାନ ବା ପୁନରାୟ ବ୍ରହ୍ମରେ ଅବସାନ ରୂପକ ଛଳରେ ବର୍ଣ୍ଣିତ ହୋଇଅଛି । ବେଦବ୍ୟାସ ମହାଭାରତ ପଦର ବ୍ୟାଖ୍ୟା ସ୍ୱର୍ଗାରୋହଣ ପର୍ବରେ ଦେଇଅଛନ୍ତି । ସେଥିରେ ଗତିନିରୋଧ ହିଁ ଇତିହାସ ବୋଲି ନିରୂପଣ କରାଯାଇଅଛି ।

ଭରତାନାଂ ମହଜ୍ଜନ୍ମ ତସ୍ମାଦ୍ ଭାରତମୁଚ୍ୟତେ ।
ଗୁରୁତ୍ୱାଦ୍ ଭାରବତ୍ତ୍ୱାଚ୍ଚ ମହାଭାରତମୁଚ୍ୟତେ ।।

ଭରତମାନଙ୍କ ମହଜ୍ଜନ୍ମ ହେତୁ ଏହାର ନାମ ଭାରତ, ଏବଂ ଭାର-ଗୁରୁତ୍ୱବଶତଃ ଏହାର ନାମ ମହାଭାରତ ହୋଇଅଛି । ବେଦରେ ମଧ୍ୟ ଭରତ, କୁରୁ ଇତ୍ୟାଦି ନାମର ଉଲ୍ଲେଖ ଅଛି । ଋଗବେଦ ୬।୨।୧ ସୂକ୍ତ ମହାଭାରତର ମୂଳାଧାର ବୋଲି ବୋଧହୁଏ । ଛାନ୍ଦୋଗ୍ୟ, ବୃହଦାରଣ୍ୟକ ପ୍ରଭୃତି ଉପନିଷଦରେ ପ୍ରାଣ ଜଗତର ଭର୍ତ୍ତା, ପୋଷ୍ଟା ଓ ପିତା ବୋଲି ଉକ୍ତ ହୋଇଅଛି । ସପ୍ତଶତୀ ଚଣ୍ଡୀ ମଧ୍ୟ ମାତାବତ୍ ପ୍ରସାଦକାରିଣୀ ବୋଲି ପ୍ରାଣକୁ ନିର୍ଦ୍ଧାରିତ କରିଅଛି । ବ୍ୟାସଦେବଙ୍କର ଉକ୍ତ ନାମକରଣ ଶ୍ଳୋକର ତାତ୍ପର୍ଯ୍ୟ ଭରତ, ଭାର ଏବଂ ଗୁରୁ ପ୍ରାଣ ଏହି ତିନି ପଦର ଅର୍ଥ ଯଥାକ୍ରମେ ପୋଷଣକାରୀ, ପୋଷ୍ଟା ଓ ପିତାକାରଣ ଗୁରୁ ଶବ୍ଦରେ ଭାର ବୁଝାଏ । ଭାରତ ଅର୍ଥରେ ଏହି ଶବ୍ଦ ପ୍ରଯୁଜ୍ୟ ହୋଇଅଛି । ବିଶେଷତଃ ମହାଭାରତ ଗ୍ରନ୍ଥର ଓଜନ ବୋଲି ଏହି ଭାରତ ପଦର ଅର୍ଥ ବୋଧହୁଏ ନିତାନ୍ତ ପ୍ରାକୃତ ଜନ ମଧ୍ୟ ଗ୍ରହଣ କରିବ ନାହିଁ । 'ଭୃ' ଧାତୁର ଅର୍ଥ ଧାରଣ ଓ ପୋଷଣ । ସୃଷ୍ଟି ପୂର୍ବେ ଅବାତପ୍ରାଣା ପରା ପ୍ରକୃତି ସବାତପ୍ରାଣଜୀବଭୂତା ଜଗତର ଧାରଣ ପୋଷଣ କରୁଥିଲା । ଏହି ରୂପେ ରାମାୟଣରେ ମଧ୍ୟ ପରମାତ୍ମାଶ୍ରିତ ଜଗତର ଉତ୍ପତ୍ତି ସ୍ଥିତି ଓ ଲୟ ହିଁ ରୂପକ ଛଳେ ବର୍ଣ୍ଣିତ ହୋଇଅଛି । ଋକ୍ ୧୦-୧-୩ ସୂ ।

ମହାଭାରତରେ ଅନ୍ତତଃ ଦୁଇଶତ ଥର ଏବଂ ଶ୍ରୀମଦ୍ଭାଗବତରେ ବହୁବାର ଗୋଟିଏ ପ୍ରସିଦ୍ଧ ଶ୍ଳୋକାର୍ଦ୍ଧର ପ୍ରୟୋଗ ଦୃଷ୍ଟ ହୁଏ- "ଅତ୍ରାପ୍ୟୁଦାହରନ୍ତୀମାମିତିହାସଂ ପୁରାତନଂ" ଏହି ବିଷୟର ବ୍ୟାଖ୍ୟାସ୍ୱରୂପ ଏକ ପ୍ରାଚୀନ ଇତିହାସ ମନୀଷୀମାନଙ୍କ କର୍ତ୍ତୃକ ଉଦାହୃତ । ଆଶ୍ଚର୍ଯ୍ୟର ବିଷୟ ଏହି ଯେ, ମହାଭାରତ ଓ ଶ୍ରୀମଦ୍ଭାଗବତର ଯେଉଁ ଯେଉଁ ସ୍ଥାନରେ ଏହି ଶ୍ଳୋକାର୍ଦ୍ଧ ଦେଖାଯାଏ ତାହା ସର୍ବତ୍ର ଅଧ୍ୟାତ୍ମ ତତ୍ତ୍ୱର ଭୂମିକା ମାତ୍ର । ଦୃଷ୍ଟାନ୍ତସ୍ୱରୂପ ଅନୁଗୀତା ପୂର୍ବାଧ୍ୟାୟରେ

ଅର୍ଜ୍ଜୁନଙ୍କୁ ଗୀତାର୍ଥ ବୁଝାଇବା ଲାଗି ଭଗବାନ୍ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ବିବୃତ ଗୁରୁଶିଷ୍ୟ ଏବଂ ବ୍ରାହ୍ମଣ ବ୍ରାହ୍ମଣୀ ସମ୍ବାଦର ଉଲ୍ଲେଖ କରାଯାଇପାରେ ।

ପ୍ରାଚୀନ ଇତିହାସ କହିଲେ ଆର୍ଯ୍ୟ ଋଷିଗଣ ପ୍ରଧାନତଃ ଆଧ୍ୟାତ୍ମିକ ତତ୍ତ୍ୱମୂଳକ ଜଗତ୍କ୍ରମର ବ୍ରାହ୍ମୀସ୍ଥିତି ବୁଝନ୍ତି । ତେବେ ଏହା ମଧ୍ୟ ସ୍ୱୀକାର୍ଯ୍ୟ ଯେ ତାହା ବ୍ରହ୍ମ ଗତିରୁ ଉତ୍ପନ୍ନ । ବିଭିନ୍ନ ସ୍ତରର ଆଦର୍ଶ ସଭ୍ୟତାର ବର୍ଣ୍ଣନ ମହାଭାରତ ରାମାୟଣାଦି ପୁରାଣରେ ଉରରୀକୃତ । ସେହି ସଭ୍ୟତାର ଉତ୍ଥାନପତନ ବର୍ଣ୍ଣନା ଏବଂ ସମାଲୋଚନାତ୍ମିକା ମନୀଷା (Critical Insisht) ସାହାଯ୍ୟରେ ବର୍ତ୍ତମାନ ଜଗତର ଧାରାବାହିକ ଇତିହାସର ସଂକଳନ ହୋଇଅଛି ।

ଏତଦ୍ଭିନ୍ନ ଭାରତୀୟ ଋଷିଗଣ, ବର୍ତ୍ତମାନ ଯୁଗ ଯାହାକୁ ଇତିହାସ କହେ ସେପରି ବିଭିନ୍ନ ରାଜ୍ୟର ଉତ୍ଥାନପତନମୂଳକ କୌଣସି ବିବରଣ ଲିପିବଦ୍ଧ କରି ନାହାନ୍ତି । ଯେଉଁମାନେ ଜ୍ଞାନରାଜ୍ୟର ଅଭ୍ରଭେଦୀ ଶିଖରାରୋହଣ କରିଅଛନ୍ତି, ସେମାନେ ଇଚ୍ଛାକଲେ ଏପରି ସମୟୋଚିତ ଧାରାବାହିକ ଇତିହାସ ଲେଖି ନ ପାରିଥାନ୍ତେଏପରି ବିଶ୍ୱାସ କରିବା ଅନୁଚିତ । ତେବେ ସେମାନେ କାହିଁକି ଯେ କୌଣସି ଧାରାବାହିକ ଇତିହାସ ଲିପିବଦ୍ଧ କରି ନଥିଲେ ଏ ସମ୍ବନ୍ଧେ ନାନାମୁନିଙ୍କର ନାନାମତ । କେହିକେହି କହନ୍ତି ଯେ ପ୍ରାଚୀନ ଭାରତବାସୀ ଆଧ୍ୟାତ୍ମିକ ତତ୍ତ୍ୱାଲୋଚନାରେ ରତ ଥାଇ କ୍ଷଣଭଙ୍ଗୁର ଜାଗତିକ ଜୟୋଲ୍ଲାସ ପ୍ରତି ଲାଳାୟିତ ହୋଇ ନଥିଲେ । ରାଜତରଙ୍ଗିଣୀ ପ୍ରଭୃତି କତିପୟ ଗ୍ରନ୍ଥରେ କୌଣସି ବିଶିଷ୍ଟ ରାଜବଂଶ ବା ଦେଶ ବିଦେଶର ବର୍ଣ୍ଣନା ବ୍ୟତୀତ ସମଗ୍ର ଭାରତର ଧାରାବାହିକ ଇତିହାସ ଲିପିବଦ୍ଧ ହୋଇନାହିଁ, କିନ୍ତୁ ଭାରତରଯେ ଇତିହାସ ନାହିଁ, ତାହା ନୁହେଁ । ଭାରତର ପୁରପଲ୍ଲୀରେ, ନିର୍ଜନ ଗିରିଗହ୍ୱରରେ ଏବଂ ଶିଳାଲିପି, ତାମ୍ରଶାସନ, କୀଟଦ୍ରଷ୍ଟ ପୁରାତନ ପୋଥିରେ ସୁଦ୍ଧା ତାହାର ଇତିହାସ ବିଦ୍ୟମାନ । କିମ୍ବଦନ୍ତୀମୂଳକ ଗଳ୍ପ ତଥା ସାମାଜିକ ବିଧି ବ୍ୟବସ୍ଥାରେ ଏପରିକି ଭିକ୍ଷୁକର ମୁଖରେ ସୁଦ୍ଧା ଭାରତର ଗୌରବମୟ ସ୍ୱର୍ଣ୍ଣଯୁଗର ଇତିବୃତ୍ତ ନିତ୍ୟ ଗୀତ ହୁଏ କିନ୍ତୁ ଅର୍ନ୍ତଦୃଷ୍ଟି ପରାୟଣ ଆର୍ଯ୍ୟ ମନୀଷୀଗଣ ସେ ସମସ୍ତ ଜାଗତିକ ଘଟଣାବଳୀ ପରିପୂର୍ଣ୍ଣ ଇତିବୃତ୍ତ ମଧ୍ୟରୁ, କୃଷକ ପଲାଳ ତ୍ୟାଗକରି ଧାନ୍ୟ ସଂଗ୍ରହ କଲାପରି, ହଂସ ନୀରମିଶ୍ରିତ କ୍ଷୀରରୁ କେବଳ କ୍ଷୀର ଗ୍ରହଣ କଲାପରି, ଜୀବାତ୍ମା ବ୍ରହ୍ମରୁ ଉତ୍ପନ୍ନ ହୋଇ ବ୍ରହ୍ମରେ ଲୀନ ହେବା ଶିକ୍ଷାପ୍ରଦ ତାତ୍ତ୍ୱିକ ତଥ୍ୟ ମାତ୍ର ସଂଗ୍ରହ କରିଥିଲେ ।

ବର୍ତ୍ତମାନ ଯୁଗରେ ପୃଥିବୀର ଇତିହାସ ଧାରାବାହିକ ରୂପେ ସଂକଳିତ ହୋଇଅଛି । ଏହାର ସମ୍ୟକ୍ ଅଧ୍ୟୟନ ଓ ଗବେଷଣାଦ୍ୱାରା ବ୍ରହ୍ମର ବିବର୍ତ୍ତନମୂଳକ ବିଭିନ୍ନ ସଭ୍ୟତାର ଭିତର ଦେଇ ସମଗ୍ର ମାନବମନ କ୍ରମଶଃ ପୂର୍ଣ୍ଣତା ଦିଗରେ ଅଗ୍ରସର ହୁଏ ।

ବ୍ୟକ୍ତିଗତ ଜୀବ ପ୍ରଥମତଃ ଅବ୍ୟକ୍ତ ବ୍ରହ୍ମରେ ବିଦ୍ୟମାନ ଥିଲା; ପରେ ପୃଥିବୀରେ ଜନ୍ମ, ବୃଦ୍ଧିପ୍ରାପ୍ତ, ବିପକ୍ୱାବସ୍ଥା, ଅପକ୍ଷୟ ଓ ମୃତ୍ୟୁଏହିରୂପ ଅବସ୍ଥାପନ୍ନ ହେଲା । ପ୍ରତ୍ୟେକ ସ୍ତରର ମାନବ ସଭ୍ୟତାରେ ମଧ୍ୟ ଜୀବର ଏହି ଷଡ୍ଭାବ ବର୍ତ୍ତମାନ । ବ୍ୟକ୍ତିଗତ ଜୀବନରେ ଯେପରି

ଶୈଶବାଦି ଅବସ୍ଥା ଅଛି ସମଗ୍ର ମାନବ ଜାତିରେ ମଧ୍ୟ ସେ ସମସ୍ତ ରହିଛି । ସମଗ୍ର ମାନବ ଜାତିର ଉତ୍କର୍ଷ ସାଧନ ହିଁ ଇତିହାସକ୍ରମରେ ଦେଖାଯାଏ ।

ଏହି ଇତିହାସପ୍ରସିଦ୍ଧ ଭାରତ ଭୂମିରେ ସର୍ବପ୍ରଥମେ ମାନବର ଆବିର୍ଭାବ । ଜଗଦ୍‌ବିଖ୍ୟାତ ପ୍ରତ୍ନତତ୍ତ୍ୱବାଦ୍‌ପଣ୍ଡିତ ଆର୍ଥାର କେଇଥ ସାହେବ (Sir Arthur Keeth, President of The Royal Society)ଙ୍କ ଉକ୍ତିରୁ ଏହିକଥା ନିଃସନ୍ଦିଗ୍ଧ ରୂପେ ପ୍ରତିପନ୍ନ ହୁଏ । ମାନବର ଆଦିମ ବର୍ବରାବସ୍ଥା ହିଁ ଭାବପ୍ରବଣ ଶୈଶବ ତଥା, ବେଦର ଯକ୍ଷ ରକ୍ଷ ଇତ୍ୟାଦି ନାମ । ମୂଳତଃ ପ୍ରାଣେନ୍ଦ୍ରିୟ ମନୋବୃତ୍ତିସୂଚକ ହେଲେ ମଧ୍ୟ ସେହି ସେହି ମାନବଠାରେ ତଦନୀନ୍ତନ ମାନବ ସଭ୍ୟତାର ଆଭାସ ଥିଲା । ଭରଣ ପୋଷଣାର୍ଥେ ଇତସ୍ତତ ଭ୍ରାମ୍ୟମାନ ପଶୁଗଣ ମଧ୍ୟରେ ଯାଯାବର ଦ୍ୱିପଦ ନରପଶୁ ଶୈଶବର ଭାବୁକତାରେ ଇଟ୍‌ପ୍ୟାଟିକଲ୍ ବୃକ୍ଷବିଶେଷରେ ଈଶ୍ୱରତ୍ୱ ଆରୋପ କରି ପବିତ୍ର ମନେ କରୁଥିଲେ । ଏହି ଯୁଗର ସଭ୍ୟତାର ନାମ ଅନ୍ଧସଂସ୍କାର ଆରାଧନାବାଦ (Fetichism) ।

ଏହାପରେ ପ୍ରବୃତ୍ତିର ସହିତ ଦ୍ୱନ୍ଦ୍ୱ ଯୁଦ୍ଧରେ ପ୍ରବୃତ୍ତ କିଞ୍ଚିଦୁନ୍ନତ ମାନବ ଜଳ, ବାୟୁ, ବିଦ୍ୟୁତ୍, ମେଘ ପ୍ରଭୃତି ପ୍ରାକୃତିକ ଶକ୍ତି ସମୂହର ଅବାଧଗତିରେ ଭୀତ ହୋଇ ସେମାନଙ୍କୁ ନିଜ ଅପେକ୍ଷା କୌଣସି ଶକ୍ତିଶାଳୀ ପୁରୁଷ ମନେକରି ଈଶ୍ୱର ଭାବେ ଆରାଧନା କରି ତତ୍‌ପ୍ରାସାଦେ କୃଷି, ପଶୁ ଇତ୍ୟାଦି ସଂଗ୍ରହ କରିବାକୁ ଲାଗିଲେ ତାହାହିଁ ବୈଦିକ ଦାନବ, ଦସ୍ୟୁଦୈତ୍ୟ ଇତ୍ୟାଦି ନାମର ଅବତାରଣା । ଏହି ସମୟ ଯାଯାବର ମାନବ ସଭ୍ୟତାର ରୂପାନ୍ତର, ମାତ୍ର ମାନବ ଇତିହାସର ଏହି ଯୁଗର ନାମ ପ୍ରାକୃତିକ ଈଶ୍ୱରବାଦ (Theocracy) ।

ମାନବ ଯେତେବେଳେ କ୍ରମେ ଉନ୍ନତ ହେଲା ସେତେବେଳେ ସେ ନିଜର ବୈଶିଷ୍ଟ୍ୟ ଅନୁଭବ କଲା । ତେଜସ୍ୱୀ, ଶକ୍ତିମାନ୍, ପ୍ରତିଭାଶଳୀ ପୁରୁଷ ପୁଙ୍ଗବ ପୂଜା ପାଇବାକୁ ଲାଗିଲେ । ଏହି ଯୁଗର ସଭ୍ୟତାର ନାମ ମହାପୁରୁଷ ପୂଜା ବା ଅବତାରବାଦ (Hero Worship) । ତତ୍ ପ୍ରଭାବରେ ରାଜତନ୍ତ୍ର ଓ ଗଣତନ୍ତ୍ରାଦିର ଆବିର୍ଭାବ ହେଲା ।

ଶୈଶବରେ ଯେପରି ଛାୟା ଦେଖି ବ୍ୟକ୍ତିତ୍ୱର କଳ୍ପନା କରାଯାଏ, କୈଶୋର୍ଯ୍ୟରେ ଯେପରି ନିର୍ଜନ ଅନ୍ଧକାରରେ ଭୂତ ପ୍ରେତାଦିର କଳ୍ପନା କରାଯାଏ, କିନ୍ତୁ ପରିଣତ ବୟସରେ ଆଉ ସେ ବିଶ୍ୱତୋମୁଖିନୀ କଳ୍ପାଯେପରି ରହେ ନାହିଁ, ସେପରି ଜଗତ ଇତିହାସରେ କଳ୍ପନାର ଚରମୋତ୍କର୍ଷ ଇଲିୟାଡ଼ାଦି ମହାକାବ୍ୟର ଅଭ୍ୟୁତ୍ଥାନ ଅପେକ୍ଷାକୃତ ଅସଭ୍ୟ ଅବସ୍ଥାରେ ହିଁ ସମ୍ଭବ ହୋଇପାରେ ଏବଂ କ୍ରମଶଃ ଜ୍ଞାନ ବିଜ୍ଞାନର ପ୍ରସାରରେ ପ୍ରାକୃତିକ ଘଟନାର କାରଣାନୁସନ୍ଧାନରେ ମାନବର ମନ ବ୍ୟାପୃତ ହୁଏ । ଅପେକ୍ଷାକୃତ ଉନ୍ନତତର ସଭ୍ୟତାରେ ଦର୍ଶନଶାସ୍ତ୍ରର ଆବିର୍ଭାବ ଏବଂ ସେତେବେଳେ ମାନବ ଏକ ମହାନ୍ ସାର୍ବଭୌମିକ ସତ୍ତା ବା ଶକ୍ତିର ବିକାଶ ସର୍ବତ୍ର ଦେଖେ । ଏହି ସର୍ବସମନ୍ୱୟୀ ଯୁଗ ହିଁ ବର୍ତ୍ତମାନ ପ୍ରଚଳିତ ।

ଯେଉଁ ଦେଶର ଜଳବାୟୁ ଇତ୍ୟାଦି ଶସ୍ୟାଦିର ଉତ୍ପତ୍ତିର ଅନୁକୂଳ, ଯେଉଁଠାରେ ଅଳ୍ପ ପରିଶ୍ରମରେ ପ୍ରଚୁର ଖାଦ୍ୟ ଉତ୍ପନ୍ନ ହୋଇପାରେ, ସେହି ଦେଶଠରେ ହିଁ ସଭ୍ୟତାର ପ୍ରଥମ ଆବିର୍ଭାବ ହୁଏ; କାରଣ ଏ କତିପୟ ବ୍ୟକ୍ତିଙ୍କର ବୁଦ୍ଧିମତ୍ତା ଶକ୍ତି ଇତ୍ୟାଦି ଲକ୍ଷ୍ୟ କରି ଜୀବନ ଧାରଣର ପ୍ରଧାନ ଉପକରଣ ଖାଦ୍ୟୋତ୍ପାଦନଜନିତ କାୟକ୍ଳେଶରୁ ସେମାନଙ୍କୁ ମୁକ୍ତି ଦେଇ ଜନସାଧାରଣ ସେମାନଙ୍କ ଭରଣ ପୋଷଣ ଭାର ଗ୍ରହଣ କରନ୍ତି ଏବଂ ତା'ର ବିନିମୟରେ ସକଳ ବିଷୟରେ ସେମାନଙ୍କଠାରୁ ବ୍ୟବସ୍ଥା ଗ୍ରହଣ କରନ୍ତି । ଏହିରୂପେ ଖାଦ୍ୟୋତ୍ପାଦନ କ୍ଳେଶ ବା ଦାରୁଣ ଅନ୍ନସମସ୍ୟାରୁ ଅବ୍ୟାହତି ଲାଭକରି ଉକ୍ତ ମନୀଷୀଗଣ ସମାଜର ସର୍ବବିଧ ଉନ୍ନତି ସାଧନରେ ମନୋନିବେଶ କଲେ ଏବଂ ଉଚ୍ଚତମ ବିଷୟ ଚିନ୍ତା କରିବାର ଅବସର ପାଇଲେ । ଏହିରୂପ ପ୍ରାକୃତିକ ଆବେଷ୍ଟନୀର ବିଭିନ୍ନତା ଯୋଗୁଁ ବିଭିନ୍ନ ପ୍ରକାର ସଭ୍ୟତା ଆରମ୍ଭ ହେବାକୁ ଲାଗିଲା । କାରଣ ବିଭିନ୍ନ ପ୍ରକୃତିର ସଂସ୍ପର୍ଶରେ ମାନବ ମଧ୍ୟ ବିଭିନ୍ନ ଆକୃତି ଓ ସ୍ୱଭାବବିଶିଷ୍ଟ ହେବାକୁ ଲାଗିଲା । ଗୋଷ୍ଠୀବୃଦ୍ଧି ହେବାର କାରଣ ଜମ୍ବୁ ଦ୍ୱୀପରେ ମନୁଷ୍ୟମାନେ ସୁଲଭ ସୁବିଧାଜନକ ଖାଦ୍ୟ ପ୍ରଚୁର ଜମିର ଅନ୍ୱେଷଣ କଲେ । ପୂର୍ବୋକ୍ତ ବିଦ୍ୟା ଓ ବୁଦ୍ଧିଜୀବୀଗଣ ଯଥେଷ୍ଟ ଅବସର ପାଇ ପ୍ରକୃତ ଈଶ୍ୱର ଓ ମନୁଷ୍ୟ ସମ୍ବନ୍ଧେ ନାନାବିଧ ସୂକ୍ଷ୍ମ ଦାର୍ଶନିକ ଚିନ୍ତାପରାୟଣ ହେବାକୁ ଲାଗିଲେ । ଏହି ସମନ୍ୱୟୀ ସ୍ତରର ସଭ୍ୟତାର ନାମାନ୍ତର ବେଦର ''ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ ଯମଂ ମାତରିଶ୍ୱାନମାହୁଃ''- ''ମହଦେବାନାମସୁରତ୍ୱ ମେକଂ''- ''ଏକଂ ସନ୍ତଂ ବହୁଧା କଳ୍ପୟନ୍ତି''- ''ଏକଂ ବା ଇଦଂ ବିବଭୂବ ସର୍ବଂ'' ଇତ୍ୟାଦି ମନ୍ତ୍ର । ଏହି ରୂପେ ମାନବ ଇତିହାସ କ୍ରମଶଃ ଏକତ୍ୱ ଦିଗରେ ଅଗ୍ରସର ହୋଇଅଛି ।

କେହି କେହି ପଣ୍ଡିତ କହନ୍ତି, ଇତିହାସ କହିଲେ ପ୍ରତ୍ୟେକ ଯୁଗର ମହାପୁରୁଷଙ୍କର ଜୀବନ ଚରିତକୁ ବୁଝାଏ । ପ୍ରଣିଧାନ ପୂର୍ବକ ଦେଖିଲେ ବୁଝାଯାଏ ଯେ ଇତିହାସ ସମଗ୍ର ମାନବ ମନର କ୍ରମିକ ଅଗ୍ରସର ଗତି । ଏହି ମତ ତାହାହିଁ ସମର୍ଥନ କରେ । କାରଣ ପ୍ରତ୍ୟେକ ମାନବ ସମାଜ କୌଣସି ତତ୍ତ୍ୱ ଉପଲବ୍ଧି କରିବା ବହୁ ପୂର୍ବରୁ ସେହି ସେହି ସମାଜର ପ୍ରତିଭାଶାଳୀ ମନୀଷୀବୃନ୍ଦ ସମାଜର ଅଗ୍ରଦୂତ ରୂପେ ଆବିର୍ଭୂତ ହୋଇ ସ୍ୱୀୟ ପ୍ରଜ୍ଞା ଓ ପୁରୋଦୃଷ୍ଟି ପ୍ରଭାବରେ ସେହି ତତ୍ତ୍ୱ ହୃଦୟଙ୍ଗମ କରି ଭବିଷ୍ୟତ ତିମିରାଚ୍ଛନ୍ନ ସମାଜର ହୃଦୟାକାଶରେ ପ୍ରଭାତୀ ତାରା ତୁଲ୍ୟ ଉଦ୍ଭାସିତ ହୁଅନ୍ତି । ଭାବୀ ସମାଜର ନିୟନ୍ତା ଏହି ବିମଳ ଜ୍ୟୋତିଦ୍ୱାରା ସମାଜକୁ ନିୟନ୍ତ୍ରିତ କରନ୍ତି ।

କେହି କେହି କହନ୍ତି ଦେଶ ଏବଂ କାଳବ୍ୟାପୀ ଘଟନା ସମୂହର ଯଥାଯଥ ବିବୃତ୍ତିର ନାମ ଇତିହାସ । ଏଥିରେ ସୁଦ୍ଧା ପୂର୍ବୋକ୍ତ ଐତିହାସିକ କ୍ରମବିକାଶ ବାଦର ବିଷୟ ଉରରୀକୃତ । ଦେଶକାଳର ଅସ୍ତିତ୍ୱ ଯୋଗୁଁ ମାନବର ସହଜାତ ଜ୍ଞାନବଳରେ ସ୍ୱୀୟ ମନର ଚିରନ୍ତନ ଚୈତନ୍ୟ ପ୍ରବାହରେ ସ୍ତରେ ସ୍ତରେ ସଞ୍ଚିତ ଓ ସଜ୍ଜିତ ଅଭିଜ୍ଞତାର ପାରମ୍ପରିକତା ଓ ବିସ୍ତୃତି ଅନୁଭୂତ ହୁଏ । ଘଟଣାରହିତ କାଳ ଏବଂ ପାରମ୍ପର୍ଯ୍ୟବିହୀନ ଦେଶ ପ୍ରକୃତି ରାଜ୍ୟରେ ବିରଳ । ଦେଶ ଓ କାଳ ମଧ୍ୟରେ ଏପରି ଅବିଚ୍ଛେଦ୍ୟ ସମ୍ବନ୍ଧ ବିଦ୍ୟମାନ ଯେ ଏକର ଅଭାବରେ ଅନ୍ୟର ଅସ୍ତିତ୍ୱ ଅସମ୍ଭବ ।

ଦ୍ୟୁଲୋକ, ଭୂଲୋକର ଯେଉଁଠାରେ ଯାହା ଘଟେ ତାହାହିଁ ଯୁଗପତ୍ ଦେଶ ଓ କାଳବ୍ୟାପୀ । ଦେଶ ସହିତ କାଳର ଏବଂ କାଳ ସହିତ ଦେଶର ନିତ୍ୟ ସମ୍ବନ୍ଧ ଥିବା ଯୋଗୁଁ କୌଣସି ଦେଶର ଇତିହାସ କହିଲେ ତଦାନୀନ୍ତନ କାଳର ଇତିହାସ ବୁଝାଏ । ସେଥିଯୋଗୁଁ ଖଗୋଳ ଓ ଭୂଗୋଳର ଘଟଣାବଳୀ ମଧ୍ୟ କାଳବ୍ୟାପୀ; ଅତଏବ ଭୂଗୋଳ ବୃତ୍ତାନ୍ତ ସମ୍ୟକ୍ ଅନୁଭବ ବ୍ୟତୀତ ଇତିହାସ ସଂଗ୍ରହଅସମ୍ଭବ । ସୁତରାଂ ଭୂଗୋଳ ଓ ଇତିହାସ ପରସ୍ପର ସାପେକ୍ଷ; ଭୂଗୋଳର ବିଭିନ୍ନ ଦେଶର ଜଳବାୟୁ ଓ ସ୍ଥିତି ଅନୁଯାୟୀ ତତ୍ତଦ୍ଦେଶର ଲୋକ ଚରିତ୍ର ଓ ଇତିହାସ ନୈସର୍ଗିକ ନିୟମରେ ବିଭିନ୍ନ ରୂପେ ଗତି କରେ, ଅତଏବ ଏହା ସର୍ବବାଦୀସମ୍ମତ ଯେ ମାନବଜାତିର ପାରମ୍ପରିକ ଗତି ଯୋଗେ ଐଶ୍ୱରିକ ଏକ ମହତୀ ନିୟତିର ସଂସାଧନରେ ଇତିହାସ ଯୁଗେ ଯୁଗେ ବ୍ୟାପୃତ । କିପରି ଏ ମହତୀ ନିୟତି ସର୍ବମଙ୍ଗଳାସ୍ପଦ, ତାହାର ସ୍ୱରୂପ ନିର୍ଣ୍ଣୟ ମାନବ ବୁଦ୍ଧିର ଅଗମ୍ୟ । ହୁଏତ ସେହି ଚିରନ୍ତନ ନିୟମ ବଳରେ ସଭ୍ୟତାର ଚରମୋତ୍କର୍ଷ ସାଧନ କରି ଏହି କଳ୍ପର(The present cycle of the universe) ଅବସାନ ଆନୟନ କରିପାରେ । ଅଥବା ଭିନ୍ନଦୃଷ୍ଟି କେନ୍ଦ୍ରରୁ ଦେଖିଲେଏହି କ୍ରମିକ ଅଗ୍ରସର ଗତିର ଚରମ ଅବସ୍ଥା ବା ଚିରନ୍ତନ ନିୟମ ବା ସର୍ବବିଧ ଯଥେଚ୍ଛାଚାରିଣୀ ଉଚ୍ଛୃଙ୍ଖଳତା ହିଁ ଏହି କଳିଯୁଗର ଧ୍ୱଂସ ସାଧନ କରିବ, ଏହାହିଁ ଭାରତୀୟ ଋଷିମାନଙ୍କର ମତ । କିନ୍ତୁ ଏହି ଯୁଗର ସଭ୍ୟତା ମାନବ ହୃଦୟରେ ସ୍ମୃତି ରୂପେ ରହିଯିବ ଏବଂ ଭାବୀ କଳ୍ପରେ ଏହାହିଁ ବୀଜାକାରେ ରହି ନୂତନ ଯୁଗର ଉତ୍କୃଷ୍ଟ ସଭ୍ୟତା ଗଠନରେ ସହାୟତା କରିବ । ଭଗବତୁଦ୍ଦେଶ୍ୟ କ'ଣ କିଏ କହିପାରେ ? ''ଯୋ ଅସ୍ୟାଧ୍ୟକ୍ଷଃ ପରମେ ବ୍ୟୋମନ୍ ସୋ ଅଙ୍ଗବେଦ ଯଦିବା ନ'' ।

ଆର୍ଯ୍ୟ ଋଷିଗଣର ବ୍ୟୁତ୍ପତ୍ତି, ଗତିର ବିକାଶ ଏବଂ ବଧ ଏହି ଦ୍ୱ୍ୟର୍ଥଯୁକ୍ତତା ହିଁ ଇତିହାସର ତାତ୍ପର୍ଯ୍ୟ । ଯେହେତୁ ମନୀଷୀଗଣ ସିଦ୍ଧାନ୍ତ କରିଅଛନ୍ତି ଯେ, ଇତିହାସ ମାନବ ସଭ୍ୟତାର କ୍ରମବିକାଶଦ୍ୱାରା ସୁଦୂରବର୍ତ୍ତୀ ସେହି ଚରମଲକ୍ଷ୍ୟ ଦିଗକୁ ସତତ ଅଗ୍ରସର ହେଉଅଛି, ଏହି ଜଗତରେ ତାହାର ଗତିରୋଧ ଅସମ୍ଭବ । ଅତଏବ ଋଷିମାନଙ୍କର ମତ ସମୀଚୀନ ବୋଧହୁଏ ।

## ମହାଭାରତର ଆଧ୍ୟାତ୍ମିକ ତତ୍ତ୍ୱ

ଜଗତର ସୁପ୍ରାଚୀନ ଅପୌରୁଷେୟ ବେଦ ଯେପରି ବିଭିନ୍ନ ରୂପକ ଛଳେ ଜୀବାତ୍ମା ଓ ପରମାତ୍ମାରଐକ୍ୟ ପ୍ରାପ୍ତି ହିଁ ନିର୍ଦ୍ଦେଶ କରେ, ସେହିପରି ଆର୍ଯ୍ୟଜାତିର ବିଭିନ୍ନ ପୁରାଣ ଗ୍ରନ୍ଥ ସୁଦ୍ଧା ନାନା ଆଖ୍ୟାନ ଛଳେ ସେହି ପରମଗୁହ୍ୟ ଆଧ୍ୟାତ୍ମିକ ତତ୍ତ୍ୱ ବୁଝାଇଅଛନ୍ତି । ପ୍ରତ୍ୟେକ ପୁରାଣର ଯେପରି ଗୋଟିଏ ବାହ୍ୟାର୍ଥ ଅଛି, ତଦ୍ରୂପ ଆଧ୍ୟାତ୍ମିକ ଅର୍ଥର ମଧ୍ୟ ଅଭାବ ନାହିଁ । ଏଠାରେ ପ୍ରଶ୍ନ ଉଠିପାରେ ଯେ ବିଶ୍ୱହିତୈଷିଣୀ ଆର୍ଷ ପ୍ରତିଭା ଲୋକହିତାର୍ଥେ ଆଧ୍ୟାତ୍ମିକ ତତ୍ତ୍ୱ ସରଳ ଭାବେ ବର୍ଣ୍ଣନ ନକରି ଅଯଥା ଜଟିଳାର୍ଥ ଜାଲରେ ବେଷ୍ଟନ କରିବା ଉଦ୍ଦେଶ୍ୟ କ'ଣ? ଏହାର ଉତ୍ତରରେ ଏତିକି କୁହାଯାଇ ପାରେ ଯେ ଉପଯୁକ୍ତ ଅଧିକାରୀ ବ୍ୟତୀତ ଆଧ୍ୟାତ୍ମିକ ତତ୍ତ୍ୱୋପଦେଶ ନିରସ ମରୁପ୍ରାନ୍ତରରେ ବୀଜ ବପନ ପରି ସିନା । ଯାର ଜିଜ୍ଞାସା ଅଦମ୍ୟ, ସେ

ଯେନକେନୋପାୟରେ ଜଟିଳ ଶାସ୍ତ୍ର ଜାଲ ଭେଦକରି ଆଧ୍ୟାତ୍ମିକ ତତ୍ତ୍ୱ ସଂଗ୍ରହ ଅବଶ୍ୟ କରିବ । ବର୍ତ୍ତମାନ ପ୍ରବନ୍ଧରେ ମହାଭାରତର ଲୌକିକ ଅର୍ଥର ବିଦ୍ୟମାନ ସତ୍ତ୍ୱେ କିପରି ଆଧ୍ୟାତ୍ମିକ ତତ୍ତ୍ୱ ନିହିତ ତାହା ଆଲୋଚିତ ହେବ ।

ଯେପରି ବହିସ୍‌ସୋମ ଯାଗରେ ଋତ୍ୱିକ ଓ ସପତ୍ନୀକ ଯଜମାନ ସକାଶେ ଅଷ୍ଟାଦଶବିଧ ଗୌଣ କର୍ମ ନିର୍ଦ୍ଦିଷ୍ଟ ହୋଇଅଛି, ଅନ୍ତସ୍‌ସୋମଯାଜୀ ବାଜପେୟୀ ପାଇଁ ମଧ୍ୟ ଷୋଡ଼ଶ କଳମୂର୍ତ୍ତି ଯଜ୍ଞରେ ଅପର ଅଷ୍ଟାଦଶ କର୍ମ ସେପରି ନିର୍ଦ୍ଦିଷ୍ଟ ହୋଇଅଛି ସେଥି ସକାଶେ ମୁଣ୍ଡକ ଶ୍ରୁତି ବହିର୍ଯଜ୍ଞର ଆନୁପାଦେୟତା ପ୍ରତିପାଦନ କରି ଅଷ୍ଟାଦଶବିଧ ଗୌଣକର୍ମ ବିଶିଷ୍ଟ ଅନ୍ତସ୍‌ସୋମ ଯଜ୍ଞ ହିଁ ମୋକ୍ଷଲାଭର ପ୍ରଧାନ ଉପାୟ ବୋଲି ନିର୍ଦ୍ଦେଶ କରିଅଛନ୍ତି ।

ଯଥା-

ପ୍ଲବାହ୍ୟେତେଃ ଦୃଢ଼ା ଯଜ୍ଞରୂପାଦ୍ରଷ୍ଟାଦଶୋକ୍ତମବରଂ ଯେଷୁ କର୍ମ ।<br>
ଏତଚ୍ଛ୍ରେୟୋ ଯେଃଭିନନ୍ଦନ୍ତି ମୂଢ଼ା ଜରାମୃତ୍ୟୁଂ ତେ ପୁନରେବାପିଯାନ୍ତି ।

ଅଷ୍ଟାଦଶ ଗୌଣ କର୍ମବିଶିଷ୍ଟ ବହିର୍ଯଜ୍ଞ ଏହି ସଂସାର ସାଗର ତରଣେ ନିତାନ୍ତ ଅଦୃଢ଼ ଭେଳା । ଏହାଦ୍ୱାରା ଉତ୍ତାଳ ଷଡ଼ୋର୍ମିସଙ୍କୁଳ ପ୍ରପଞ୍ଚପୟୋଧିରୁ ଉତ୍ତୀର୍ଣ୍ଣ ହୋଇ ଜନ୍ମଜରାମରଣଶୂନ୍ୟ ବ୍ରହ୍ମାନନ୍ଦ ଧାମରେ ପ୍ରବେଶ କରିବା ପ୍ରଚେଷ୍ଟା ବାମନର ଚନ୍ଦ୍ରଧାରଣୋଦ୍ୟମ ପରି ହାସ୍ୟୋଦ୍ଦୀପକ ସିନା । ଯେଉଁ ମୂଢ଼ଗଣ ଏହି ବହିର୍ଯଜ୍ଞକୁ ପରମ ଶ୍ରେୟଃପ୍ରଦ ପରମାର୍ଥ ସାଧନୋପାୟ ବୋଲି ମନେକରନ୍ତି ସେମାନେ କଦାପି ସଂସାର ସାଗରରୁ ଉତ୍ତୀର୍ଣ୍ଣ ହୋଇ ଅମୃତତ୍ୱ ଲାଭ କରିପାରନ୍ତି ନାହିଁ ।

ସୋମ ଶବ୍ଦର ବ୍ୟୁତ୍ପତ୍ତ୍ୟର୍ଥ ଆନନ୍ଦପ୍ରଦ । ତାହା ସହସ୍ରାର ଚ୍ୟୁତ ପ୍ରାଣଯଜ୍ଞର ଶିଷ୍ଟ ବ୍ରହ୍ମାମୃତ । ବେଦରେ ସୋମ ଶବ୍ଦ ଉପରୋକ୍ତ ଅର୍ଥରେ ବ୍ୟବହୃତ ହୋଇଅଛି । ଗୀତା ବର୍ଣ୍ଣିତ ଯଜ୍ଞ ଶବ୍ଦ ସୁଦ୍ଧା ବେଦୋକ୍ତ ଅନ୍ତସ୍‌ସୋମ ଯଜ୍ଞାର୍ଥରେ ନିର୍ଦ୍ଦିଷ୍ଟ ହୋଇଅଛି, କିନ୍ତୁ ବେଦବ୍ୟାସ ତାହା ବୁଝାଇବାପାଇଁ ଏକ ଉତ୍କୃଷ୍ଟ ସାହିତ୍ୟିକ କଳାକୌଶଳ ଅବଲମ୍ବନ କରିଥିଲେ । ବେଦବ୍ୟାସ ମହାଭାରତର ଯୁଦ୍ଧ କାଳ ଅଷ୍ଟାଦଶ ଦିନ, ଗ୍ରନ୍ଥର ପର୍ବ ସଂଖ୍ୟା ଅଷ୍ଟାଦଶ, ଗୀତାର ଅଧ୍ୟାୟ ସଂଖ୍ୟା ଅଷ୍ଟାଦଶ ଏବଂ ମହାଭାରତ ଯୁଦ୍ଧର ସମୁଦାୟ ସୈନ୍ୟ ସଂଖ୍ୟା ଅଷ୍ଟାଦଶ ଅକ୍ଷୌହିଣୀ ବୋଲି ଗ୍ରହଣ କରି ଅଛନ୍ତି । ଏତଦ୍‌ବ୍ୟତୀତ ପୁରାଣ ସଂଖ୍ୟା ସୁଦ୍ଧା ଅଷ୍ଟାଦଶ । ଏହି ପୁରାଣଗତ ସମସ୍ତ ମୁଖ୍ୟ ବିଷୟରେ ଅଷ୍ଟାଦଶ ସଂଖ୍ୟା ଗ୍ରହଣ କରିଥିବାଦ୍ୱାରା ସ୍ପଷ୍ଟ ପ୍ରତୀତ ହୁଏ ଯେ ଏହି ଅଷ୍ଟାଦଶ ସଂଖ୍ୟାରେ କୌଣସି ନା କୌଣସି ଏକ ଗୂଢ଼ ରହସ୍ୟ ଅବଶ୍ୟ ଥିବ ।

ମହା ଭା ରତ = ମହାଭାରତ । ମହାଭା ପଦରେ ସର୍ବବହିଃପ୍ରପଞ୍ଚଦ୍ୟୋତିନୀ ଅଷ୍ଟଅପରା ପ୍ରକୃତି ବୁଝାଏ ଏବଂ ରାତ ବା ରତି ପଦରେ ବିଷୟାନନ୍ଦ ଅର୍ଥାତ୍ ବିଷୟାସ୍ୱାଦନ ଜନିତ ଆନନ୍ଦ ବୁଝାଏ । ଉପରୋକ୍ତ ବିଷୟାନନ୍ଦ ବା ରତି ଦଶେନ୍ଦ୍ରିୟଦ୍ୱାରେ ଅନୁଭୂତ ଓ ଚରିତାର୍ଥ

ହୁଏ । ଅତଏବ ରତି ଦଶବିଧ । ଅପରା ପ୍ରକୃତି ଓ ରତି ଉଭୟ ମିଶି ଅଷ୍ଟାଦଶ । ମହାଭାରତ ପଦର ଅର୍ଥ ଅଷ୍ଟାଦଶ ସଂଖ୍ୟାର୍ଥ ପ୍ରତିପାଦକ; ସୁତରାଂ ଅଷ୍ଟାଦଶ ଗୌଣ କର୍ମବିଶିଷ୍ଟ ଶ୍ରୁତ୍ୟୁକ୍ତ ଷୋଡ଼ଶକଳ ପୁରୁଷ ବା ଜୀବର ଉତ୍ପତ୍ତି ଲୟ ହିଁ ମହାଭାରତର ପ୍ରତିପାଦ୍ୟ ବିଷୟ । ପରଧର୍ମାଶ୍ରିତ ସ୍ୱରାଜ୍ୟ ଭ୍ରଷ୍ଟ ଜୀବ ପୁନରାୟ କିପରି ହୃତରାଜ୍ୟ ଉଦ୍ଧାର କରି ପାରିବ ତାହା ଦର୍ଶାଇବା ପାଇଁ କୃଷ୍ଣ ଦ୍ୱୈପାୟନ ପରାଶରାତ୍ମଜ ସତ୍ୟବତୀ ସୁତ ବ୍ରହ୍ମର୍ଷି ବେଦବ୍ୟାସ ତଦାନୀନ୍ତନ ଭାରତ ପ୍ରଚଳିତ ସମୁଦାୟ ଆଖ୍ୟାନ ସଂଗ୍ରହ କରି ବ୍ରହ୍ମସୂତ୍ରାଦିବତ୍ ଏହି ମହାଭାରତରେ ମଧ୍ୟ ପୂର୍ବୋକ୍ତ ଆଧ୍ୟାତ୍ମିକ ତତ୍ତ୍ୱ ମୂଳ ରୂପେ ଗ୍ରହଣ କରି ଏହିପରି ନୈପୁଣ୍ୟ ସହକାରେ ମହାପୁରୁଷ ଚରିତ୍ରରେ ଆରୋପ କରି ବର୍ଣ୍ଣନ କରିଅଛନ୍ତି ଯେ, ସାଧାରଣ ଲୋକ ଏହି ସକଳ ଚରିତ୍ରଯୁକ୍ତ ବ୍ୟକ୍ତିଙ୍କୁ ରକ୍ତ ମାଂସମୟ ଶରୀରଧାରୀ ଜୀବ ବୋଲି ମନେକରନ୍ତି । ମହାଭାରତର ଆଦିପର୍ବରେ ସୁଦ୍ଧା ଗଣେଶ ବ୍ୟାସ ସମ୍ବାଦରେ "ମନସା କଳ୍ପିତସ୍ୟ ଚ" ଏହି ପଦଦ୍ୱାରା ମହାଭାରତ ବର୍ଣ୍ଣିତ ବ୍ୟକ୍ତିଓ ବିଷୟଗୁଡ଼ିକ ମାନସିକ କଳ୍ପନା ବୋଲି ସ୍ୱୟଂ ବେଦବ୍ୟାସ ସ୍ୱୀକାର କରିଅଛନ୍ତି ।

ବେଦବ୍ୟାସଙ୍କର ନିଜ ନାମ ଓ ଉପାଧି ଅନ୍ୟାନ୍ୟ ବେଦୋକ୍ତ ଋଷିଗଣର ନାମ ପରି ତାହାଙ୍କର ସାଧନସଙ୍କେତ ଓ ଗୋତ୍ରାଙ୍କିତ ହୋଇଅଛି । ବ୍ୟାସପଦ ପୁରାଣ ବାଚକଙ୍କର ପଦବୀ ବା ଉପାଧି ଅର୍ଥରେ ବ୍ୟବହୃତ ହୋଇଅଛି - ଅଷ୍ଟାବିଂଶତିରିତ୍ୟୋତାଃ ବେଦବ୍ୟାସଃ ପ୍ରକୀର୍ତ୍ତିତାଃ । ଅର୍ଥାତ୍ ଅଷ୍ଟାବିଂଶତି ସଂଖ୍ୟକ ବ୍ୟକ୍ତି ବେଦବ୍ୟାସ ଆଖ୍ୟା ଧାରଣ କରିଥିଲେ ।

କୃଷ୍ଣ ଶବ୍ଦରେ ସର୍ବ ପାର୍ଥିବ ଆକର୍ଷଣଶୂନ୍ୟ ପରଂବ୍ରହ୍ମ ବୁଝାଏ; ଦ୍ୱୀପଂ ଅୟନଂ ଯସ୍ୟ ସ ଦ୍ୱିପାୟନ; ଦ୍ୱୀପାୟନ ଏବ ଦ୍ୱୈପାୟନ ।

ସାଧନ ବିଜ୍ଞାନରେ ଆଜ୍ଞାଚକ୍ରକୁ ପୁଷ୍କର ଦ୍ୱୀପ କୁହାଯାଏ । ଅତଏବ ଉପରୋକ୍ତ ଚକ୍ରସ୍ଥିତ ହୋଇ ସାଧକ ଯେତେବେଳେ ବ୍ରହ୍ମ ଭାବାପନ୍ନ ହୁଏ ତେତେବେଳେ ତାହାକୁ ଦ୍ୱୈପାୟନ କୁହାଯାଏ ।

ପରାଶର, ପରାସର-ଆତ୍ମଜ = ପରାଶର; ପର-ଆ-ଶୃ-ଅ = ପରାଶର, ପର-ପରମାତ୍ମା ଆ-ସମନ୍ତାତ୍-କ୍ରମଶଃ । ଶୃଅ-ଶୀର୍ଣ୍ଣେ-ଯେ ଶୀର୍ଣ୍ଣ କରିଅଛି । ଅର୍ଥାତ୍ ଜୀବ ନିଜର ପୂର୍ବ ସ୍ୱରୂପକୁ ସମଗ୍ର ଭାବେ ଭୁଲିଅଛି । ପରାଶର ଶବ୍ଦର ବ୍ୟୁତ୍ପତ୍ୟର୍ଥ-ଆତ୍ମ ଭାବତ୍ୟକ୍ତ ଜୀବ ଯେଉଁ ପରମାତ୍ମାଙ୍କଠାରୁ ଜାତ ହୋଇଅଛି; ଆତ୍ମାଠାରୁ ଜାତ ଇତି ଆତ୍ମଜ ।

ପର-ଆ-ସୃ-ଅ = ପରାସର, ସୃ-ସରଣେ ଅର୍ଥାତ୍ ଯେ ପରମାତ୍ମାଙ୍କଠାରୁ ପ୍ରକାଶିତ ହୋଇଅଛି । ଏହି ଶବ୍ଦର ସୁଦ୍ଧା ବ୍ୟୁତ୍ପତ୍ତିଗତାର୍ଥ ପରମାତ୍ମାଠାରୁ ବିକାଶପ୍ରାପ୍ତ ହୋଇଥିବା ଜୀବ ।

ସତ୍ୟବତୀ ସୁତ- ସତ୍ୟବତ୍ ଶବ୍ଦର ସ୍ତ୍ରୀଲିଙ୍ଗରେ ସତ୍ୟବତୀ ହୁଏ । ସତ୍ୟ ପରି ପ୍ରତିଭାତ ସଂସାର ବୁଦ୍ଧି ହିଁ ସତ୍ୟବତୀ ପଦବାଚ୍ୟ, ଏହି ସତ୍ୟବତୀରୂପା ସଂସାର ବୁଦ୍ଧି ବା ଶ୍ରୁତ୍ୟୁକ୍ତ କାମନା ବ୍ୟତୀତ ସଂସାର ସୃଷ୍ଟି ଅସମ୍ଭବ, ଆତ୍ମରତି, ଆତ୍ମକ୍ରୀଡ଼ା, ଆତ୍ମ ମିଥୁନ ପରଂବ୍ରହ୍ମର

ସ୍ୱରାଟ ଜ୍ଞାନରେ ସୃଷ୍ଟି ନାହିଁ, ଅର୍ଥାତ୍ ସଂସାର କାର୍ଯ୍ୟରୂପିଣୀ ଅବିଦ୍ୟାର ସୂତ-ଉତ୍ପାଦକ ଅର୍ଥାତ୍ ପରଂବ୍ରହ୍ମ ।

ବେଦବ୍ୟାସ-ବେଦ ବ୍ୟାସ; ବିଦ୍-ଘଙ = ବେଦ; ବି-ଅସ୍ କ୍ଷେପଣେ-ଘଙ ବ୍ୟାସ; ବେଦ ଜ୍ଞାନ, ବ୍ୟାସ ଶବ୍ଦେ ବିସ୍ତାର, ତାହେଲେ ବେଦବ୍ୟାସ ପଦରେ ସଚ୍ଚିଦାନନ୍ଦ ବ୍ରହ୍ମଜ୍ଞାନ ବିସ୍ତାରକ । ଏହିପରି ସମସ୍ତ ବୈଦିକ ଋଷିଙ୍କ ନାମଗୁଡ଼ିକ ସେମାନଙ୍କର ସାଧନାରୂପ ଅଟେ । କିନ୍ତୁ ସମୟାନୁକ୍ରମେ ସେ ନାମ ସକଳ ରୂଢ଼ତର ହୋଇଅଛି ।

ପୁରୁଷରଷୋଳଟି କଳା ଅଛି । ଯଥା- ୧-ପ୍ରାଣ, ୨-ଶ୍ରଦ୍ଧା, ୩-ଆକାଶ, ୪-ବାୟୁ, ୫-ଜ୍ୟୋତିଃ, ୬-ଆପଃ, ୭-ପୃଥିବୀ, ୮-ଇନ୍ଦ୍ରିୟ, ୯-ମନ, ୧୦-ଅନ୍ନ, ୧୧-ବୀର୍ଯ୍ୟ, ୧୨-ତପଃ, ୧୩-ମନ୍ତ୍ରଃ, ୧୪-କର୍ମ, ୧୫-ଲୋକ, ୧୬-ନାମ । ଏ ବିଷୟ ପ୍ରଶ୍ନୋପନିଷତ୍ ଷଷ୍ଠ ପ୍ରଶ୍ନ ଚତୁର୍ଥ ମନ୍ତ୍ରରେ ଲେଖାଅଛି । ଏହି ପ୍ରାଣ ଅଗ୍ନିହୋତ୍ରୀ, ଜୀବ ସୋମଯାଜୀ, ଆତ୍ମା, ଯଜମାନ, ବୁଦ୍ଧି ପତ୍ନୀ, ବେଦ ମହାଋତ୍ୱିକ (ବ୍ରହ୍ମା), ଅହଂକାର-ଅଧ୍ୱର୍ଯ୍ୟୁ, ଚିତ୍ତ-ହୋତା, ପ୍ରାଣ-ବ୍ରହ୍ମଣାସ୍ଥ ଶଂଶୀ, ଅପାନ-ପ୍ରତିପ୍ରସ୍ଥାତା, ବ୍ୟାନ-ପ୍ରସ୍ତୋତା, ଉଦାନ-ଉଦ୍ଗାତା, ସମାନ ମୈତ୍ରାବରଣ, ଶରୀର ଯଜ୍ଞବେଦୀ, ନାଶିକା ଉତ୍ତରବେଦୀ, ମୂର୍ଦ୍ଧା ଦ୍ରୋଣକଳଶ ବା ସୋମାଧାର ପାତ୍ର, ପାଦ ରଥ, ଦକ୍ଷିଣହସ୍ତ ସ୍ରୁବ, ବାମହସ୍ତ ଆଜ୍ୟସ୍ଥାଳୀ, ଶ୍ରୋତ୍ରଦ୍ୱୟ ଆଘାରଦ୍ୱୟ, ଚକ୍ଷୁଦ୍ୱୟ ଆଜ୍ୟଭାଗ, ଗ୍ରୀବାଧାରା ପୋତା, ପଞ୍ଚତନ୍ମାତ୍ର ସଦସ୍ୟଗଣ, ପଞ୍ଚ ମହାଭୂତ ପ୍ରଯାଜମନ୍ତ୍ର (ମୁଖ୍ୟ ଯଜ୍ଞାଃ ପ୍ରଥମ କରଣୀୟ ଇଷ୍ଟି ବିଶେଷ), ଭୂତଗଣ ଓ ଗୁଣତ୍ରୟ ଅନୁଯାଜ; ମନ୍ତ୍ର କ୍ରିୟା (ମୁଖ୍ୟ ଯାଗ ନିଷ୍ପାଦନାନ୍ତର କରଣୀୟ ଇଷ୍ଟ ବିଶେଷ), ଜିହ୍ୱା, ଇଳା (ଯଜ୍ଞଶିଷ୍ଟ ଅମୃତ), ଦନ୍ତ ଓ ଓଷ୍ଠ ସୂକ୍ତବାକ୍, ତାଳୁ ଶମ୍ଯୁବାକ୍, ସ୍ମୃତି, ଦୟା, ଶାନ୍ତି, ଅହିଂସା, ପତ୍ନୀ ସଂଯାଜ ଯଜ୍ଞ, ଯଜମାନପତ୍ନୀର କରଣୀୟ ଯଜ୍ଞ କାର୍ଯ୍ୟ ଓ ମନ୍ତ୍ର ବିଶେଷ । ଓଁକାର ଯୂପଃ, ଆଶା, ରଚନା ବା ପଶୁବନ୍ଧନ ରଜ୍ଜୁ ଇତ୍ୟାଦି ପ୍ରାଣାଗ୍ନି ହୋତ୍ରୋପନିଷତ୍ତୃତୀୟ ଖଣ୍ଡରେ ବର୍ଣ୍ଣିତ ଅଛି ।

ପୂର୍ବୋକ୍ତ ତତ୍ତ୍ୱ ବୋଧଗମ୍ୟ ନହେଲେ ମହାଭାରତ, ଗୀତା, ସନାତନ ଧର୍ମ ତତ୍ତ୍ୱ ବା ଆଧ୍ୟାତ୍ମିକ ତତ୍ତ୍ୱ ହୃଦୟଙ୍ଗମ ହୋଇ ନପାରେ ।

## ତନ୍ତ୍ରର ପରିଚୟ

ଏହି ତନ୍ତ୍ର ଶାସ୍ତ୍ର ପ୍ରଧାନତଃ ଆଗମ, ଯାମଳ, ତନ୍ତ୍ର ଏହି ତିନି ଶ୍ରେଣୀରେ ବିଭକ୍ତ ।

ବାରାହୀତନ୍ତ୍ର ମତେ-

ସୃଷ୍ଟିଶ୍ଚ ପ୍ରଳୟଶ୍ଚୈବ ଦେବତାନାଂ ତଥାର୍ଚ୍ଚନଂ ।
ସାଧନଂ ଚୈବ ସର୍ବେଷାଂ ପୁରଶ୍ଚରଣମେବ ଚ ।।
ଷଟ୍କର୍ମ ସାଧନଂ ଚୈବ ଧ୍ୟାନଯୋଗଶ୍ଚତୁର୍ବିଧଃ ।

ସପ୍ତଭିର୍ଲକ୍ଷଣୈର୍ୟୁକ୍ତମାଗମଃ ତଦ୍ବିଦୁର୍ବୁଧାଃ

ଅର୍ଥାତ୍ ଯାହା ସୃଷ୍ଟି, ପ୍ରଳୟ, ଦେବ ପୂଜା, ସମସ୍ତ ପ୍ରକାର ସାଧନ, ପୁରଶ୍ଚରଣ, ଷଟ୍‌କର୍ମ ସାଧନ ଓ ଚତୁର୍ବିଧ ଧ୍ୟାନଯୋଗ ଏହି ସପ୍ତବିଧ ଲକ୍ଷଣବିଶିଷ୍ଟ ତାହାକୁ ଆଗମ କହି । ଯାମଳର ଲକ୍ଷଣ-

ସୃଷ୍ଟିଶ୍ଚ ଜ୍ୟୋତିଷାଖ୍ୟାନଂ ନିତ୍ୟକୃତ୍ୟ ପ୍ରଦୀପନଂ ।
କ୍ରମସୂତ୍ରଂ ବର୍ଣ୍ଣଭେଦୋ ଜାତିଭେଦସ୍ତଥୈବ ଚ ।।
ଯୁଗଧର୍ମଶ୍ଚ ସଂଖ୍ୟାତୋ ଯାମଳସ୍ୟାଷ୍ଟ ଲକ୍ଷଣଂ ।।

ଅର୍ଥାତ୍ ସୃଷ୍ଟିତତ୍ତ୍ୱ, ଜ୍ୟୋତିଷ କଥା, ନିତ୍ୟକୃତ୍ୟ, କ୍ରମସୂତ୍ର, ବର୍ଣ୍ଣଭେଦ, ଜାତିଭେଦ, ଯୁଗଧର୍ମ, ଯାମଳ ଏହି ଅଷ୍ଟ ଲକ୍ଷଣବିଶିଷ୍ଟ । ତନ୍ତ୍ର ଲକ୍ଷଣ ଯଥା -

ସର୍ଗଶ୍ଚ ପ୍ରତିସର୍ଗଶ୍ଚ ମନ୍ତ୍ର ନିର୍ଣ୍ଣୟ ଏବ ଚ ।
ଦେବତାନାଂ ଚ ସଂସ୍ଥାନଂ ତୀର୍ଥାନାଂ ଚୈବ ବର୍ଣ୍ଣନଂ ।।
ତଥୈବାଶ୍ରମ ଧର୍ମଶ୍ଚ ବିପ୍ରସଂସ୍ଥାନମେବ ଚ ।
ସଂସ୍ଥାନଂ ଚୈବ ଭୂତାନାଂ ଯନ୍ତ୍ରାଣାଂ ଚୈବ ନିର୍ଣ୍ଣୟଃ ।।
ଉତ୍ପତ୍ତି ର୍ବିବୁଧାନାଂ ଚ ତରୁଣାଂ କଲ୍ପ ସଂଜ୍ଞିତଂ ।
ସଂସ୍ଥାନଂ ଜ୍ୟୋତିଷାଂ ଚୈବ ପୁରାଣାଖ୍ୟାନମେବ ଚ ।।
କୋଷସ୍ୟ କଥନଂ ଚୈବ ବ୍ରତାନାଂ ପରିଭାଷଣଂ ।
ଶୌଚାଶୌଚସ୍ୟ ଚାଖ୍ୟାନଂ ନରକାଣାଂ ଚ ବର୍ଣ୍ଣନଂ ।।
ହର ଚକ୍ରସ୍ୟ ଚାଖ୍ୟାନଂ ସ୍ତ୍ରୀପୁଂସୋଶ୍ଚୈବ ଲକ୍ଷଣଂ ।
ରାଜଧର୍ମୋ ଦନାଧର୍ମୋ ଯୁଗଧର୍ମ ସ୍ତଥୈବ ଚ ।।
ବ୍ୟବହାରଃ କଥ୍ୟତେ ଚ ତଥା ଚାଧ୍ୟାତ୍ମ ବର୍ଣ୍ଣନଂ ।
ଇତ୍ୟାଦି ଲକ୍ଷଣୈର୍ଯୁକ୍ତଂ ତନ୍ତ୍ରମିତ୍ୟଭିଧୀୟତେ ।।

ଅର୍ଥାତ୍ ଯହିଁରେ ସର୍ଗ, ପ୍ରତିସର୍ଗ, ମନ୍ତ୍ର ନିର୍ଣ୍ଣୟ, ଦେବତାର ସଂସ୍ଥାପନ, ତୀର୍ଥ, ଆଶ୍ରମ, ବର୍ଣ୍ଣନ, ବିପ୍ର ସଂସ୍ଥାପନ, ଭୂତାଦି ସଂସ୍ଥାପନ, ଯନ୍ତ୍ର ନିର୍ଣ୍ଣୟ, ଦେବଗଣର ଉତ୍ପତ୍ତି, ତରୁର ଉତ୍ପତ୍ତି, କଳ୍ପବର୍ଣ୍ଣନ, ଜ୍ୟୋତିଷ ସଂସ୍ଥାପନ, ପୁରାଣାଖ୍ୟାନ, କୋଷ କଥନ, ବ୍ରତ କଥା, ଶୌଚାଶୌଚ ବିଧି, ସ୍ତ୍ରୀ ପୁରୁଷ ଲକ୍ଷଣ, ରାଜଧର୍ମ, ଦାନଧର୍ମ, ବ୍ୟବହାର ଧର୍ମ, ଯୁଗଧର୍ମ ଓ ଆଧ୍ୟାତ୍ମିକ ତତ୍ତ୍ୱ ଏ ସମସ୍ତ ବିଦ୍ୟମାନ ତାହାକୁ ତନ୍ତ୍ର କୁହାଯାଏ ।

ବାରାହୀ ତନ୍ତ୍ରମତେ - ସମସ୍ତ ତନ୍ତ୍ରର ଶ୍ଳୋକ ସଂଖ୍ୟା ନ' ଲକ୍ଷ, କିନ୍ତୁ ଭାରତରେ ଏକ ଲକ୍ଷ ମାତ୍ର ପ୍ରଚଳିତ ଅଛି । ଏ ସମସ୍ତଙ୍କର ପ୍ରକାରାନ୍ତର ଭେଦ ମଧ୍ୟରେ ତାମର ବୋଲି ଅନ୍ୟ ଗୋଟିଏ ତନ୍ତ୍ର ପ୍ରକ୍ରିୟା ଦେଖାଯାଏ ।

ମହାବିଶ୍ୱସାର ତନ୍ତ୍ରରେ ଉଲ୍ଲେଖ ଅଛି -

ଚତୁଃଷଷ୍ଟିଷ୍ଟ ତନ୍ତ୍ରାଣି ଯାମଳାଦୀନି ପାର୍ବତି ।
ସଫଳାନୀହ ବାରାହେ ବିଷ୍ଣୁକ୍ରାନ୍ତେଷୁ ଭୂମିଷୁ ।।
କଳ୍ପଭେଦେନ ତନ୍ତ୍ରାଣି କଥିତାନି ଚ ଯାନି ଚ ।
ପାଷଣ୍ଡ ମୋହନାୟୈବ ବିଫଳାନୀହ ସୁନ୍ଦରି ।।

ଅର୍ଥାତ୍ ଯାମଳାଦି ଚଉଷଠି ଖଣ୍ଡ ତନ୍ତ୍ର ମାତ୍ର ଭୂମଣ୍ଡଳରେ ଫଳଦାୟକ । କଳ୍ପ ଭେଦରେ ଅନ୍ୟ ଯେଉଁ ସକଳ ତନ୍ତ୍ର କଥିତ ଅଛି ତାହା ପାଷଣ୍ଡମାନଙ୍କୁ ବିମୋହିତ କରିବା ଲାଗି ମାତ୍ର, ସେଥିରେ କୌଣସି ଫଳ ନାହିଁ ।

ତନ୍ତ୍ରର ପ୍ରାଧାନ୍ୟ ପ୍ରତିପାଦନ କରିବା ପାଇଁ ମହାନିର୍ବାଣ ତନ୍ତ୍ରୋକ୍ତ ସ୍ୱୟଂ ମହାଦେବଙ୍କରଉକ୍ତି ଉଦ୍ଧୃତ କରାଗଲା । ଯଥା -

କଳିକଳ୍ମଷଦୀନାନାଂ ଦ୍ୱିଜାତୀନାଂ ସୁରେଶ୍ୱରି !
ମେଧ୍ୟାମେଧ୍ୟବିଚାରାଣାଂ ନ ଶୁଦ୍ଧିଃ ଶ୍ରୌତକର୍ମଣା ।।
ନ ସଂହିତାଦ୍ୟୈ ଶ୍ରୁତିଭିଃ ଇଷ୍ଟସିଦ୍ଧି ର୍ନୃଣାଂ ଭବେତ୍ ।
ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ସତ୍ୟଂ ସତ୍ୟଂ ମୟୋଚ୍ୟତେ ।।
ବିନା ହ୍ୟାଗମମାର୍ଗେଣ କଲୌ ନାସ୍ତି ଗତି ପ୍ରିୟେ!
ଶ୍ରୁତିସ୍ମୃତିପୁରାଣାଦୌ ମୟୈବୋକ୍ତଂ ପୁରା ଶିବେ!
ଆଗମୋକ୍ତ ବିଧାନେନ କଲୌ ଦେବାନ୍ ଯଜେତ୍ସୁଧୀଃ ।

କଳିଦୂଷଣହୀନ ଦ୍ୱିଜମାନଙ୍କର ପବିତ୍ର ଅପବିତ୍ର ବିଚାର ରହିବ ନାହିଁ । ସୁତରାଂ ଶ୍ରୌତକର୍ମଦ୍ୱାରା କଳିଯୁଗରେ ସିଦ୍ଧିଲାଭ ଅସମ୍ଭବ । ଆଗମ ବ୍ୟତୀତ ଶ୍ରୁତି ସ୍ମୃତି ପୁରାଣାଦିଦ୍ୱାରା ସିଦ୍ଧିଲାଭ ଅସମ୍ଭବ, ଏହା ମୁଁ ସତ୍ୟ, ସତ୍ୟ, ସତ୍ୟ କହିଛି । ଆଗମ ମାର୍ଗ ବ୍ୟତୀତ କଳିଯୁଗରେ ଅନ୍ୟଗତି ନାହିଁ । ଆଗମୋକ୍ତ ବିଧିଦ୍ୱାରା ହିଁ କଳିଯୁଗରେ ଦେବତାଙ୍କୁ ପୂଜା କରିବ ।

ପୁନଶ୍ଚ- କଳାବାଗମମୁଲ୍ଲଂଘ୍ୟ ଯୋଽନ୍ୟମାର୍ଗେ ପ୍ରବର୍ତ୍ତତେ ।
ନ ତସ୍ୟ ଗତିରସ୍ତୀତି ସତ୍ୟଂ ସତ୍ୟଂ ନ ସଂଶୟଃ ।

କଳିଯୁଗରେ ତନ୍ତ୍ର ଉଲ୍ଲଂଘନ କରି ଯେ ଅନ୍ୟ ମାର୍ଗରେ ଗମନ କରିବ ତାହାର ଗତି ନାହିଁ; ଏହା ମୁଁ ସତ୍ୟ କହୁଅଛି ।

ତନ୍ତ୍ରର ପ୍ରାଧାନ୍ୟ ପ୍ରତିପାଦନ କରିବାପାଇଁ ଶ୍ରୌତମାର୍ଗକୁ ବହୁତ ଆକ୍ଷେପ କରାଯାଇଛି । ଯଥା-

ନିର୍ବୀର୍ଯ୍ୟାଃ ଶ୍ରୌତଜାତୀୟାଃ ବିଷହୀନୋରଗା ଇବ ।
ସତ୍ୟାଦୌଃ ସଫଳା ଆସନ୍ କଲୌ ତେ ମୃତକା ଇବ ।।

ପାଞ୍ଚାଳିକା ଯଥା ଭିତ୍ତୌ ସର୍ବେନ୍ଦ୍ରିୟସମନ୍ୱିତାଃ।
ଅମୂରଶକ୍ତାଃ କାର୍ଯ୍ୟେଷୁ ତଥାଽନ୍ୟେ ମନ୍ତ୍ରରାଶୟଃ ।।

ଅର୍ଥାତ୍ କଳିରେ ବୈଦିକ ମନ୍ତ୍ର ସକଳ ବିଷହୀନ ସର୍ପପରି ବୀର୍ଯ୍ୟହୀନ । ଭିତ୍ତିଚିତ୍ରିତ ପୁତ୍ତଳିକା ଇନ୍ଦ୍ରିୟସମ୍ପନ୍ନ ହେଲେ ମଧ୍ୟ ଯେପରି କାର୍ଯ୍ୟ ସାଧନରେ ଅସମର୍ଥ ଅନ୍ୟାନ୍ୟ ମନ୍ତ୍ର ପ୍ରାୟ ସେପରି ଫଳପ୍ରଦ ନୁହେଁ ।

ରଘୁନନ୍ଦନ ପ୍ରଭୃତି ସ୍ମାର୍ତ୍ତଗଣ ମଧ୍ୟ ତନ୍ତ୍ରଗ୍ରନ୍ଥ ପ୍ରାମାଣିକ ବୋଲି ଗ୍ରହଣ କରିଅଛନ୍ତି । କି ହିନ୍ଦୁ, କି ବୌଦ୍ଧ ଉଭୟ ସମ୍ପ୍ରଦାୟ ମଧ୍ୟରେ ତନ୍ତ୍ରବିଧି ରହସ୍ୟାତ୍ମକ ବୋଲି ପରିଗଣିତ । ପ୍ରକୃତ ଦୀକ୍ଷିତ ଓ ଅଭିଷିକ୍ତ ବ୍ୟକ୍ତି ବ୍ୟତୀତ ଏହି ଶାସ୍ତ୍ର ଅନ୍ୟନିକଟରେ ପ୍ରକାଶ କରିବାକୁ ନିଷେଧ କରାଯାଇଛି । ଆଗମତତ୍ତ୍ୱ ବିଳାସରେ ୧୪୭ ଖଣ୍ଡ ତନ୍ତ୍ର ଶାସ୍ତ୍ର ଥିବା ଉଲ୍ଲେଖ ଅଛି; ଏତଦ୍ବ୍ୟତୀତ ବୌଦ୍ଧମାନଙ୍କର ୨୬୪୦ ଖଣ୍ଡ ସ୍ୱତନ୍ତ୍ର ତନ୍ତ୍ର ଗ୍ରନ୍ଥ ଅଛି ।

ତନ୍ତ୍ର ଶାସ୍ତ୍ରର ଉତ୍ପତ୍ତି ସମୟ ନିର୍ଣ୍ଣୟ କରିବା ଏକ ଗୁରୁତର ସମସ୍ୟା । ସୁପ୍ରାଚୀନ ଶ୍ରୁତି ସଂହିତାରେ ଚତୁର୍ଦ୍ଦଶ ବିଦ୍ୟାର କଥା ଉଲ୍ଲେଖ ଅଛି, କିନ୍ତୁ ତନ୍ମଧ୍ୟରେ ତନ୍ତ୍ରର ନାମ ନାହିଁ । ଏତଦ୍ଭିନ୍ନ ମହାପୁରାଣଗୁଡ଼ିକରେ ମଧ୍ୟ ତନ୍ତ୍ର ଶାସ୍ତ୍ରର ଅସ୍ତିତ୍ୱ ଅସ୍ୱୀକୃତ, ଅତଏବ ତନ୍ତ୍ର ଶାସ୍ତ୍ର ପ୍ରାଚୀନତମ ଆର୍ଯ୍ୟ ସମ୍ପତ୍ତି ବୋଲି ଗ୍ରହଣ କରାଯାଇ ନପାରେ ।

ତନ୍ତ୍ରୋକ୍ତ ମାରଣୋଚ୍ଚାଟନ ବଶୀକରଣାଦି ଆଭିଚାରିକୀ କ୍ରିୟାର ପ୍ରସଙ୍ଗ ଅଥର୍ବ ସଂହିତାରେ ମାତ୍ର ଦୃଷ୍ଟ ହୁଏ । କିନ୍ତୁ ତନ୍ତ୍ରଗତ ଅପରାପର ଲକ୍ଷଣ ଦୃଷ୍ଟ ହୁଏ ନାହିଁ । ଅଥର୍ବବେଦୀୟ ନୃସିଂହ ତାପନୀୟୋପନିଷଦରେ ପ୍ରଥମେ ତନ୍ତ୍ରର ଲକ୍ଷଣ ଦୃଷ୍ଟ ହୁଏ । ଏହି ଉପନିଷଦରେ ତାନ୍ତ୍ରିକମାଳା ମନ୍ତ୍ରର ସ୍ପଷ୍ଟ ଆଭାସ ସଂସୂଚିତ ହୋଇଅଛି । ଶ୍ରୀମଚ୍ଛଙ୍କରାଚାର୍ଯ୍ୟ ସୁଦ୍ଧା ଏହି ଉପନିଷଦ୍ଭାଷ୍ୟ ପ୍ରଣୟନ କରିଥିବାରୁ ଏହାର ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ପୂର୍ବବର୍ତ୍ତୀ ରଚନା ବୋଲି ନିଃସନ୍ଦେହରେ ପ୍ରମାଣିତ ହୋଇପାରେ । ଶ୍ରୀମଦ୍ଭାଗବତ ଚତୁର୍ଥ ସ୍କନ୍ଧରେ ଦକ୍ଷ ଯଜ୍ଞ ପ୍ରସଙ୍ଗେ ନନ୍ଦୀ ଶିବ ନିନ୍ଦା ଶ୍ରବଣେ ଦକ୍ଷ ଓ ବ୍ରାହ୍ମଣଙ୍କୁ ଶାପ ଦେବାରୁ ତାଙ୍କୁ ଭୃଗୁଙ୍କ ପ୍ରତି ଶାପଦେଲେ, ଯଥା-

ଭବବ୍ରତଧରା ଯେ ଚ ଯେ ଚ ତାନ୍ ସମନୁବ୍ରତାଃ ।
ପାଷଣ୍ଡି ନସ୍ତେ ଭବନ୍ତୁ ସଚ୍ଛାସ୍ତ୍ର ପରିପନ୍ଥିନଃ ।।
ନଷ୍ଟଶୌଚା ମୂଢ଼ଧିୟୋ ଜଟାଭସ୍ମାସ୍ଥିଧାରିଣଃ ।
ବିଶନ୍ତୁ ଶିବଦୀକ୍ଷାୟାଂ ଯତ୍ର ଦୈହି ସୁରାସବଂ ।।
ବ୍ରହ୍ମାଣ ବ୍ରାହ୍ମଣଶ୍ଚୈବ ଯଦ୍ୟୂୟଂ ପରିନିନ୍ଦଥ ।
ହେତୁଂ ବିତରତାଂ ପୁଂସାଂ ମତଂ ପାଷାଣ୍ଡ ମାଶ୍ରିତାଃ ।।

ଅର୍ଥାତ୍, ଯେଉଁ ସକଳ ବ୍ୟକ୍ତି ଶିବବ୍ରତଧାରୀଏବଂ ଯେଉଁମାନେ ତଦନୁବର୍ତ୍ତୀ ସେମାନେ

ସମସ୍ତେ ସଚ୍ଛାସ୍ତ୍ର-ପ୍ରତିକୂଳାଚାରୀ ପାଷାଣ୍ଡୀ ନାମେ ଖ୍ୟାତ । ଶୌଚାଚାରବିହୀନ ବ୍ୟକ୍ତିଗଣ ମୂଢ଼ବୁଦ୍ଧି, ଜଟାମଣ୍ଡିତ ଓ ଭସ୍ମଲିପ୍ତ ହୋଇ ଶିବଦୀକ୍ଷା ଗ୍ରହଣ କରି ସୁରାକୁ ଦେବତା ପରି ଆଦର କରିବେ । ବ୍ରହ୍ମା ଓ ବ୍ରାହ୍ମଣ ପ୍ରଭୃତିଙ୍କୁ ନିନ୍ଦା କରିବା ଯୋଗୁଁ ପାଷଣ୍ଡ ହେବେ । ପଦ୍ମପୁରାଣ କହେ- ପାଷଣ୍ଡଗଣ ଶିବଙ୍କ ନାମ ଉଲ୍ଲେଖକରି ଗୋଟିଏ ପାଷଣ୍ଡମତ ପ୍ରକାଶ କରିଅଛନ୍ତି । ପଦ୍ମ ପୁରାଣ ଓ ଭାଗବତ ପାଷଣ୍ଡମାନଙ୍କୁ ଯେଉଁ ଭାବରେ ଚିତ୍ରଣ କରିଅଛନ୍ତି, ତଦ୍ଦ୍ୱାରା ପୁରାଣ ରଚନା ସମୟରେ ତନ୍ତ୍ରର ଅସ୍ତିତ୍ୱ ଅବଶ୍ୟ ସ୍ୱୀକୃତ । କାରଣ ପରସ୍ପର ପ୍ରତି ଆକ୍ଷେପ-ବାଣବର୍ଷଣ ଶାସ୍ତ୍ରକର୍ତ୍ତାଙ୍କ ମଧ୍ୟରେ ପ୍ରାୟଶଃ ଦୃଷ୍ଟ ହୋଇଥାଏ ।

ସର୍ବତ୍ର ଆଲୋଚନା କଲେ ବୁଝାଯାଏ ଯେ, ଏହି ତନ୍ତ୍ରଶାସ୍ତ୍ରମତେ ଗୌଡ଼, କେରଳ, କାଶ୍ମୀର ଦେଶରେ ପ୍ରଚାର ଥିଲା ପରି ଭାରତର ଅନ୍ୟତ୍ର ବିରଳ । ଏହି ଦେଶ ତ୍ରୟର ଲୋକେ ହିଁ ଘୋର ଶାକ୍ତ ଏବଂ ବୋଧହୁଏ ସେହି ଦେଶର ପଣ୍ଡିତଗଣ ତନ୍ତ୍ର ଶାସ୍ତ୍ରୋକ୍ତ ଧର୍ମସମ୍ବଳିତ ପୁସ୍ତକ ପ୍ରଣୟନ କରିଥିବେ । ଏହିହେତୁ ସମସ୍ତ ତନ୍ତ୍ରକୁ ପ୍ରାଚୀନ ବୋଲାଯିବ ନାହିଁ । ଯହିଁରେ ଚୈତନ୍ୟଦେବ ଓ ଲଣ୍ଡନ ପ୍ରଭୃତି ବିଷୟ ଉଲ୍ଲେଖ ଅଛି ଭାରତକୁ ଇଂରେଜ ଆଗମନ କଲା ପରେ ରଚିତ ହୋଇଥିବା ପ୍ରତିପନ୍ନ ହୁଏ ।

## ତନ୍ତ୍ରର ପ୍ରତିପାଦ୍ୟ ବିଷୟ

ତନ୍ତ୍ର ଶାସ୍ତ୍ରରେ ପ୍ରାତଃ ସ୍ମରଣ, ସ୍ନାନବିଧି, ତ୍ରିପୁଣ୍ଡ୍ରଧାରଣ, ଭୂଶୁଦ୍ଧି, ଭୂତଶୁଦ୍ଧି, ପ୍ରାଣାୟାମ, ସନ୍ଧ୍ୟା, ଜପ, ପୁରଶ୍ଚରଣ, କରନ୍ୟାସ, ଅଙ୍ଗନ୍ୟାସ, ଅନ୍ତର୍ମାତୃକା, ବହିର୍ମାତୃକା, ଚିତ୍ରନ୍ୟାସ, ନିତ୍ୟାଦି ବିଦ୍ୟା, ନାମାଦି ବିଦ୍ୟା, ତତ୍ତ୍ୱନ୍ୟାସ, ମୂଳବିଦ୍ୟା, ଦ୍ୱାର ପୂଜା, ତର୍ପଣ, ଦଶବିଦ୍ୟା ନ୍ୟାସ, ନିତ୍ୟପୂଜା, ସୂର୍ଯ୍ୟାର୍ଘ୍ୟ, ତୀର୍ଥ ସଂସ୍କାର, ଗୁର୍ବାଦି ପୂଜନ, ଦୀକ୍ଷା, ପୂର୍ଣ୍ଣାଭିଷେକ, ପ୍ରାୟଶ୍ଚିତ୍ତ, ଦମନକ ପୂଜା, ବସନ୍ତ ପୂଜା, ଶ୍ରୀଚକ୍ର ପୂଜା, ଦୀକ୍ଷାକାଳ, ଦୀକ୍ଷାଭେଦ, ସର୍ବତୋ ଭଦ୍ରାଦି ଚକ୍ର ନିର୍ଣ୍ଣୟ, ଯନ୍ତ୍ର ନିରୂପଣ, ପୁଣ୍ୟାହ ବାଚନ, ନାନ୍ଦିଶ୍ରାଦ୍ଧ, ନବଯୋନି, କୌଳଶ୍ରାଦ୍ଧ, ମନ୍ତ୍ର ଶୋଧନ, ମନ୍ତ୍ରୋଦ୍ଧାର, ନାମପାରାୟଣ, ତତ୍ତ୍ୱପାରାୟଣ, ପଞ୍ଚାଙ୍ଗନ୍ୟାସ, ମହାଯୋଡ଼ାନ୍ୟାସ, ସୌଭାଗ୍ୟବର୍ଦ୍ଧନନ୍ୟାସ, ଅନ୍ତ୍ୟେଷ୍ଟିକ୍ରିୟା, ବିବିଧ ମୁଦ୍ରା, ଅବଧୂତ ନିର୍ଣ୍ଣୟ ଇତ୍ୟାଦି ନାନାବିଧ ବିଷୟ ବର୍ଣ୍ଣିତ ଅଛି -

କୁଲ୍ଲୁ ଷଭଟ୍ଟଙ୍କ ମତରେ- "ବୈଦିକୀ ତାନ୍ତ୍ରିକୀ ଚୈବ ଦ୍ୱିବିଧାଃ ଶ୍ରୁତି କୀର୍ତ୍ତିତାଃ ।"

ତନ୍ତ୍ର ମଧ୍ୟ ଶ୍ରୁତି ବୋଲି କଥିତ । ଆଦି ଯାମଳରେ ଆଗମ ଶବ୍ଦର ବ୍ୟୁତ୍ପତ୍ତି ଦେଖାଯାଏ ।

ଆଗତଃ ଶିବବକ୍ତ୍ରେଭ୍ୟୋ ଗତୋଽପି ଗିରିଜାଳୟେ ।
ମଗ୍ନସ୍ତସ୍ୟାହୃଦାମ୍ଭୋଜେ ତସ୍ମାଦାଗମ ଉଚ୍ୟତେ ॥ ଇତି ।

ଶିବ ବକ୍ତ୍ରରୁ ବିନିର୍ଗତ ହୋଇ ଗିରିଜାଳୟେ ଗମନ କରି ତାହାଙ୍କର ହୃଦ ପଦ୍ମରେ ମଗ୍ନ ହେଲା, ତେଣୁ ଏହାକୁ ଆଗମ କହି ।

କୁଳାର୍ଣ୍ଣବ ମତେ -

କୃତେ ଶ୍ରୁତ୍ୟୁକ୍ତ ଆଚାରସ୍ତ୍ରେତାୟାଂ ସ୍ମୃତି ସମ୍ଭବଃ ।
ଦ୍ୱାପରେ ତୁ ପୁରାଣୋକ୍ତଂ କଲୌ ଆଗମ କେବଳଂ ।।

ଅର୍ଥାତ୍‌ସତ୍ୟ ଯୁଗରେ ଶ୍ରୁତ୍ୟୁକ୍ତଆଚାର,ତ୍ରେତାରେ ସ୍ମୃତିସମ୍ମତ ବିଧି, ଦ୍ୱାପର ଯୁଗରେ ପୁରାଣୋପଦେଶ ଏବଂ କଳିରେ ତନ୍ତ୍ରୋକ୍ତି କେବଳ ପ୍ରଶସ୍ତ । ବିଷ୍ଣୁଯାମଳରେ ଲେଖାଅଛି-

ଆଗମୋକ୍ତ ବିଧାନେନ କଲୌ ଦେବାନ୍ ଯଜେତ୍ ସୁଧୀଃ ।
ନହି ଦେବାଃ ପ୍ରସୀଦନ୍ତି କଲୌ ଚାନ୍ୟବିଧାନତଃ ।।

ଅର୍ଥାତ୍ କଳି ଯୁଗରେ ବୁଦ୍ଧିମାନ୍ ବ୍ୟକ୍ତି ଦେବତାଗଣଙ୍କୁ ଆଗମୋକ୍ତ ବିଧାନରେ ପୂଜା କରିବେ; ଅନ୍ୟାନ୍ୟ ବିଧାନରେ ପୂଜା କଲେ ଦେବତାମାନେ ପ୍ରସନ୍ନ ହେବେ ନାହିଁ ।

ରୁଦ୍ର ଯାମଳ କହେ - ଆଗମୋକ୍ତ ପଞ୍ଚମନ୍ତ୍ରଦ୍ୱାରା ଦୀକ୍ଷା ଗ୍ରହଣ କରିବ । ତନ୍ତ୍ର ମତରେ ଦୀକ୍ଷା ଗ୍ରହଣ ନକରି ତାନ୍ତ୍ରିକ କାର୍ଯ୍ୟରେ ଅଧିକାରୀ ହୋଇପାରିବ ନାହିଁ । ଗୌତମୀୟ ତନ୍ତ୍ର କହେ, ଯେପରି ବ୍ରାହ୍ମଣ ଉପନୟନ ସଂସ୍କାର ବିନା ସନ୍ଧ୍ୟା ପୂଜାଦିରେ ଅନର୍ହ, ତଦ୍‌ବତ୍ ଅଦୀକ୍ଷିତ ବ୍ୟକ୍ତି ତାନ୍ତ୍ରିକ ପୂଜାଦି କର୍ମରେ ଅଧିକାରୀ ନୁହେଁ । ଅତଏବ ଶିବସଂସ୍କୃତ ହେବା ଆବଶ୍ୟକ । ଦୀକ୍ଷା ଶବ୍ଦର ବ୍ୟୁତ୍ପତ୍ତି, ଯଥା -

ଦଦାତି ଦିବ୍ୟତାବଞ୍ଚେତ୍ କ୍ଷିଣୁୟାତ୍ ପାପ ସନ୍ତତିଃ ।
ତେନ ଦୀକ୍ଷେତି ବିଖ୍ୟାତୋ ମୁନିଭିସ୍ତତ୍ତ୍ୱପାରଗୈଃ ।।

ଅର୍ଥାତ୍ ଯାହା ଦିବ୍ୟଭାବ ପ୍ରଦାନ କରେ ଏବଂ ପାପସମୂହ ନାଶ କରେ ତାହା ତନ୍ତ୍ର ପାରଗ ମୁନି କର୍ତ୍ତୃକ ଦୀକ୍ଷା ନାମେ ବିଖ୍ୟାତ । ଦୀକ୍ଷା ଗ୍ରହଣ କରିବା ହେଲେ ସଦ୍‌ଗୁରୁ ଆବଶ୍ୟକ । କାମାଖ୍ୟାତନ୍ତ୍ରୋକ୍ତ ଦୀକ୍ଷାଗୁରୁର ଲକ୍ଷଣ ।

ଶାନ୍ତୋଦାନ୍ତଃ କୁଳୀନଶ୍ଚ ଶୁଦ୍ଧାନ୍ତଃକରଣ ସ୍ତଥା ।
ପଞ୍ଚତତ୍ତ୍ୱାର୍ଚ୍ଚକୋ ଯସ୍ତୁ ସଦ୍‌ଗୁରୁଃ ସ ପ୍ରକୀର୍ତ୍ତିତଃ ।।

ଯେ ଶାନ୍ତ, ଦାନ୍ତ, କୁଳୀନ, ଶୁଦ୍ଧାନ୍ତଃକରଣ, ପଞ୍ଚତତ୍ତ୍ୱୋପାସକ ତାହାକୁ ସଦ୍‌ଗୁରୁ କହି । ଗୁରୁଙ୍କ ଶିଷ୍ୟ ମଧ୍ୟ ଉପଯୁକ୍ତ ହେବା ଆବଶ୍ୟକ । ଗୌତମୀୟ ତନ୍ତ୍ରରେ ଶିଷ୍ୟର ଲକ୍ଷଣ ଲେଖାଅଛି -

ଶିଷ୍ୟଃ କୁଳୀନଃ ଶୁଦ୍ଧାତ୍ମା ପୁରୁଷାର୍ଥ ପରାୟଣଃ ।
ଅଧୀତବେଦକୁଶଳଃ ପିତୃମାତୃହିତେ ରତଃ ।।
ଧର୍ମଜ୍ଞୋ ଧର୍ମକର୍ତ୍ତା ଚ ଗୁରୁ ଶୁଶ୍ରୂଷଣେ ରତଃ ।
ସଦା ଶାସ୍ତ୍ରାର୍ଥ ତତ୍ତ୍ୱଜ୍ଞୋ ଦୃଢ଼ଦେହୋ ଦୃଢ଼ାଶୟଃ ।।

ହିତୈଷୀ ପ୍ରାଣିନାଂ ନିତ୍ୟଂ ପରଲୋକାର୍ଥ କର୍ମକୃତ୍ ।

ଅର୍ଥାତ୍ ଯେ କୁଳୀନ, ଶୁଦ୍ଧାତ୍ମା, ପୁରୁଷାର୍ଥ ପରାୟଣ, ବେଦପାରଗ, ପିତୃମାତୃ ଭକ୍ତ, ଧର୍ମଜ୍ଞ, ଧାର୍ମିକ, ଗୁରୁସେବାନୁରକ୍ତ, ଶାସ୍ତ୍ରାର୍ଥ ମର୍ମଜ୍ଞ, ଦୃଢ଼ କାୟ, ଦୃଢ଼ ଚିତ୍ତ, ପ୍ରାଣୀ ହିତୈଷୀ, ପରଲୋକ ଲାଗି କେବଳ କର୍ମ କରେ ସେ ଉପଯୁକ୍ତ ତାନ୍ତ୍ରିକ ଶିଷ୍ୟ ।

ଗୁରୁଶିଷ୍ୟ ଶାସ୍ତ୍ରୋକ୍ତ ଲକ୍ଷଣରେ ଯୁକ୍ତ ହେଲେ ମଧ୍ୟ ପିତା, ମାତାମହ, ସହୋଦର ବୟଃକନିଷ୍ଠଏବଂ ଶତ୍ରୁପକ୍ଷୀୟଙ୍କଠାରୁ ଦୀକ୍ଷା ଗ୍ରହଣ କରିବ ନାହିଁ । ଗଣେଶ ବିମର୍ଷିଣୀ ତନ୍ତ୍ରଏହାର ଅନୁମୋଦନ କରି ଲେଖିଅଛି -

ଯତେର୍ଦୀକ୍ଷା ପିତୃର୍ଦୀକ୍ଷା ଦୀକ୍ଷା ଚ ବନବାସିନଃ ।
ବିବିକ୍ତଶ୍ରମିଣୋ ଦୀକ୍ଷା ନ ସା କଲ୍ୟାଣଦାୟିକା ।।

ଯତି, ପିତା, ବନବାସୀ ଏବଂ ଗୃହାଶ୍ରମ ତ୍ୟାଗୀର ନିକଟରୁ ଦୀକ୍ଷା ଗ୍ରହଣ କରିବା ଶ୍ରେୟସ୍କର ନୁହେଁ । ଏହିପରି ଦୀକ୍ଷାର ସମୟ, ଅବସ୍ଥା, ସ୍ଥାନ ପ୍ରଭୃତି ଅନେକ ବିଷୟ ଶାସ୍ତ୍ରରେ ଲେଖାଅଛି । ତାନ୍ତ୍ରିକଗଣ ପାଞ୍ଚ ପ୍ରକାର ଆଚାରରେ ବିଭକ୍ତ-

କୁଳାର୍ଣ୍ଣବ ତନ୍ତ୍ର ମତରେ-
ସର୍ବେଭ୍ୟଶ୍ଚୋତ୍ତମା ବେଦା ବେଦେଭ୍ୟୋବୈଷ୍ଣବଂ ମହତ୍ ।
ବୈଷ୍ଣବାଦୁତ୍ତମଂ ଶୈବଂ ଶୈବାଦକ୍ଷିଣମୁତ୍ତମଂ ।।
ଦକ୍ଷିଣାଦୁତ୍ତମଂ ବାମଂ ବାମାତ୍ ସିଦ୍ଧାନ୍ତମୁତ୍ତମଂ ।
ସିଦ୍ଧାନ୍ତାଦୁତ୍ତମଂ କୌଳଂ କୌଳାତ୍ ପରତରଂ ନହି ।।

ଅର୍ଥାତ୍ ସମସ୍ତ ଆଚାର ଅପେକ୍ଷା ବେଦାଚାର ଶ୍ରେଷ୍ଠ, ବେଦାଚାର ଅପେକ୍ଷା ବୈଷ୍ଣବାଚାର ମହତ୍, ତଦପେକ୍ଷା ଶୈବାଚାର ଉତ୍ତମ,ଶୈବାଚାରରୁ ଦକ୍ଷିଣାଚାର, ତଦ୍ପେକ୍ଷା ସିଦ୍ଧାନ୍ତରାଚାର, ସିଦ୍ଧାନ୍ତାଚାରାପେକ୍ଷା କୌଳାଚାର ଏବଂ କୌଳାଚାରରୁ ଅଧିକ ଆଉ କିଛି ନାହିଁ ।

## ବେଦାଚାର

ପ୍ରାଣତୋଷିଣୀଧୃତ ତନ୍ତ୍ରମତେ -
ବେଦାଚାରଂ ପ୍ରବକ୍ଷାମି ଶୃଣୁ ସର୍ବାଙ୍ଗ ସୁନ୍ଦରି !
ବ୍ରାହ୍ମେ ମୁହୂର୍ତ୍ତେ ଉତ୍ଥାୟ ଗୁରୁଂ ନତ୍ୱା ସ୍ୱନାମଭିଃ ।
ଆନନ୍ଦ ନାଥ ଶବ୍ଦାନ୍ତେ ପୂଜୟେଦଥ ସାଧକଃ ।
ସହସ୍ରାରାମ୍ବୁଜେ ଧ୍ୟାତ୍ୱା ଚୋପଚାରୈଷ୍ଚ ପଞ୍ଚଭିଃ ।।
ପ୍ରଜପ୍ୟ ବାଗ୍ଭବଂ ବୀଜଂ ଚିନ୍ତୟେତ୍ ପରମାଂ କଳାଂ ।

ଅର୍ଥାତ୍ ହେ ଶିବେ, ସାଧକ ବ୍ରାହ୍ମ ମୁହୂର୍ତ୍ତରୁ ଉଠି ଗୁରୁ ନମସ୍କାର ପରେ ଆନନ୍ଦ ନାଥ ଏହି ଶବ୍ଦ କହି ତାହାଙ୍କୁ ପ୍ରଣାମ କରିବ । ସହସ୍ର ଦଳ ମଧ୍ୟରେ ଧ୍ୟାନ କରି ପଞ୍ଚୋପଚାରଦ୍ୱାରା ପୂଜା କରି ବାଗ୍‌ଭବ ବୀଜ ଜପ ପୂର୍ବକ ପରମା କଳା ଶକ୍ତିଙ୍କ ପୂଜା କରିବ । ଏହାହିଁ ବେଦାଚାର ।

## ବୈଷ୍ଣବାଚାର

ବେଦାଚାର କ୍ରମେଣୈବ ସଦା ନିୟମ ତତ୍ପରଃ ।
ମୈଥୁନଂ ତତ୍କଥାଳାପଂ କଦାଚିନ୍ନୈବ କାରୟେତ୍ ।।
ହିଂସାଂ ନିନ୍ଦାଂ ଚ କୌଟୁଲ୍ୟଂ ବର୍ଜୟେତ୍ ମାଂସଭୋଜନଂ ।
ରାତ୍ରୌ ମାଳାଂ ଚ ଯନ୍ତ୍ରଂ ଚ ସ୍ପର୍ଶେନ୍ନୈବ କାଦାଚନ ।।

ଅର୍ଥାତ୍ ବେଦାଚାର ବିଧିବତ୍ ନିୟମତତ୍ପର ହେବ, ମୈଥୁନ ବା ତାହାର କଥା ପ୍ରସଙ୍ଗ କଦାପି ଚିନ୍ତା କରିବ ନାହିଁ । ହିଂସା, ନିନ୍ଦା, କୁଟିଳତା, ମାଂସଭୋଜନ ତ୍ୟାଗ କରିବ । ରାତ୍ରିରେ କେବେ ହେଲେ ମାଳା ବା ଯନ୍ତ୍ର ସ୍ପର୍ଶ କରିବ ନାହିଁ ।

## ଶୈବାଚାର

ବେଦାଚାର କ୍ରମେଣୈବ ଶୈବେ ଶାକ୍ତେ ବ୍ୟବସ୍ଥିତଂ ।
ତଦ୍‌ବିଶେଷଂ ମହାଦେବି ! କେବଳଂ ପଶୁଘାତନଂ ।।

ଅର୍ଥାତ୍ ଶୈବ ଓ ଶାକ୍ତରବେଦାଚାର ବ୍ୟବସ୍ଥା ଏକ, କେବଳ ଶୈବାଚାରର ବିଶେଷତ୍ୱ ଏହିକି ପଶୁ ହତ୍ୟାର ବ୍ୟବସ୍ଥା ମାତ୍ର ପୃଥକ୍ ।

## ଦକ୍ଷିଣାଚାର

ବେଦାଚାର କ୍ରମେଣୈବ ପୂଜୟେତ୍ ପରମେଶ୍ୱରୀଂ ।
ସ୍ୱୀକୃତ୍ୟ ବିଜୟାଂ ରାତ୍ରୌ ଜପେନ୍ମନ୍ତ୍ରମନନ୍ୟଧୀଃ ।।

ଅର୍ଥାତ୍ ବେଦାଚାର କ୍ରମାନୁରୂପ ଆଦ୍ୟାଶକ୍ତିର ପୂଜା କରିବ ଏବଂ ରାତ୍ରିକାଳେ ବିଜୟା ଗ୍ରହଣ କରି ଅନନ୍ୟଚିତ୍ତ ହୋଇ ମନ୍ତ୍ର ଜପ କରିବ ।

## ବାମାଚାର

ପଞ୍ଚତତ୍ତ୍ୱଂ ଖପୁଷ୍ପଂ ଚ ପୂଜୟେତ୍ କୁଳ ଯୋଷିତାଃ ।

ବାମାଚାର ଭବେତ୍ତତ୍ର ବାମା ଭୂତ୍ୱା ଯଜେତ୍ ପରାଂ ।।

ଅର୍ଥାତ୍ ପଞ୍ଚତତ୍ତ୍ୱ ଅଥବା ପଞ୍ଚମକାର, ଖପୁଷ୍ପ ଅର୍ଥାତ୍ ରଜସ୍ୱଳା ଓ କୁଳସ୍ତ୍ରୀର ପୂଜା କରିବ । ଏହା ବାମାଚାର । ଏଥିରେ ନିଜେ ବାମାଭାବାପନ୍ନ ହୋଇ ପରାଶକ୍ତିଙ୍କର ପୂଜା କରିବ ।

## ସିଦ୍ଧାନ୍ତାଚାର

ଶୁଦ୍ଧାଶୁଦ୍ଧଂ ଭବେତ୍ ଶୁଦ୍ଧଂ ଶୋଧନାଦେବ ପାର୍ବତି!
ଏତଦେବ ମହେଶାନି! ସିଦ୍ଧାନ୍ତାଚାର ଲକ୍ଷଣଂ ।।
ଅର୍ଥାତ୍ ହେ ପାର୍ବତି! ଶୁଦ୍ଧାଶୁଦ୍ଧ ସକଳ ବସ୍ତୁ ଶୋଧନ କଲେ ଶୁଦ୍ଧ ହୁଏ ।

## କୌଳାଚାର ବିଧି

ନିତ୍ୟତନ୍ତ୍ରମତେ -
ଦିକ୍‌କାଳ ନିୟମୋ ନାସ୍ତି ତିଥ୍ୟାଦି ନିୟମୋ ନ ଚ ।
ନିୟମୋ ନାସ୍ତିଦେବେଶି ! ମହାମନ୍ତ୍ରସ୍ୟ ସାଧନେ ।।
କ୍ୱଚିଚ୍ଛିଷ୍ଟଃ କ୍ୱଚିତ୍ ଭ୍ରଷ୍ଟଃ କ୍ୱଚିତ୍ ଭୂତପିଶାଚବତ୍ ।
ନାନାବେଶଧରାଃ କୌଳା ବିଚରନ୍ତି ମହୀତଳେ ।।
କର୍ଦମେ ଚନ୍ଦନେ ଭିନ୍ନଂ ମିତ୍ରେ ଶତ୍ରୌ ତଥା ପ୍ରିୟେ !
ଶ୍ମଶାନେ ଭବନେ ଦେବି ! ତଥୈବ କାଞ୍ଚନେ ତୃଣେ ।।
ନ ଭେଦୋ ହସ୍ୟ ଦେବେଶି ! ସ କୌଳଃ ପରିକୀର୍ତ୍ତିତଃ ।

ଅର୍ଥାତ୍ ଦିକ୍, କାଳ, ନିୟମ ଏବଂ ତିଥି ପ୍ରୟୋଜନ ନାହିଁ, କେବେ ଭ୍ରଷ୍ଟ କେବେ ଶିଷ୍ଟ, ଭୂତ, ପିଶାଚ ପରି ନାନା ବେଶଧାରି ଏବଂ କର୍ଦମ, ଚନ୍ଦନ, ଶତ୍ରୁ, ମିତ୍ର, ଶ୍ମଶାନ, ଗୃହ, ସ୍ୱର୍ଣ୍ଣ, ତୃଣ ଭେଦ ନରଖି ଯେଉଁମାନେ ବିଚରଣ କରନ୍ତି ସେମାନେ ହିଁ କୌଳ ।

ବାମକେଶ୍ୱରତନ୍ତ୍ରରେ ଲେଖାଅଛି-

ପୂର୍ବୋକ୍ତ ସାତଟି ଆଚାର ପ୍ରଚଳନ ଥିଲେ ମଧ୍ୟ ବାମାଚାର ଓ ଦକ୍ଷିଣାଚାର ଭେଦରେ ମୁଖ୍ୟତଃ ତାହା ଦ୍ୱିବିଧ ମାତ୍ର । ଯଥା-

ଆଚାରେ ଦ୍ୱିବିଧୋ ଦେବି ! ବାମଦକ୍ଷିଣଭେଦତଃ ।
ଜନ୍ମ ମାତ୍ରଂ ଦକ୍ଷିଣଂ ହି ଅଭିଷେକେନ ବାମନଂ ।।
ଅର୍ଥାତ୍ ଜନ୍ମ ମାତ୍ରେ ଦକ୍ଷିଣ ଏବଂ ଅଭିଷିକ୍ତ ହେଲେ ବାମାଚାରୀ ହୁଏ ।

ତନ୍ତ୍ର ମତରେ ଭାବ ତିନି ପ୍ରକାର, ଯଥା- ପଶୁଭାବ, ବୀରଭାବ ଓ ଦିବ୍ୟଭାବ । ବାମକେଶ୍ୱର ତନ୍ତ୍ର କହେ-

ଜନ୍ମମାତ୍ରଂ ପଶୁର୍ଭାବଂ ବର୍ଷ ଷୋଡ଼ଶକାବଧିଃ ।
ତତଶ୍ଚ ବୀରଭାବସ୍ତୁ ଯାବତ୍ ପଞ୍ଚାଶତୋ ଭବେତ୍ ।।
ଦ୍ୱିତୀୟାଂଶେ ବୀରଭାବ ସ୍ତୃତୀୟୋ ଦିବ୍ୟଭାବକଃ ।
ଏବଂ ଭାବତ୍ରୟେଣୈବ ଭାବମୈକ୍ୟଂ ଭବେତ୍ ପ୍ରିୟେ ! ।।

ଐକ୍ୟ ଜ୍ଞାନାତ୍ କୁଳାଚାରୋ ଯେନ ଦେବମୟୋ ଭବେତ୍ ।
ଭାବୋ ହିଁ ମାନସୋ ଧର୍ମଃ ମନସ୍ୱୈବ ସଦାଽଭ୍ୟସେତ୍ ।।

ଜନ୍ମରୁ ଆରମ୍ଭ କରି ଷୋଡ଼ଶ ବର୍ଷ ପର୍ଯ୍ୟନ୍ତ ପଶୁଭାବ, ତତ୍ପରେ ଦ୍ୱିତୀୟାଂଶେ ପଞ୍ଚାଶ ବର୍ଷ ପର୍ଯ୍ୟନ୍ତ ବୀର ଭାବ, ତୃତୀୟେ ଦିବ୍ୟ ଭାବ । ଏହି ଭାବତ୍ରୟଦ୍ୱାରା ଭାବ ଐକ୍ୟ ହୁଏ । ଐକ୍ୟ ଜ୍ଞାନରୁ କୁଳାଚାର ଏବଂ କୁଳାଚାରଦ୍ୱାରା ମାନବ ଦେବମୟ ହୁଏ । ଭାବ ହିଁ ମାନସ ଧର୍ମ ଅଟେ; ଏହି ଭାବ ସର୍ବଦା ମନେ ମନେ ଅଭ୍ୟାସ କରିବା ଉଚିତ ।

କୁବ୍ଜିକାତନ୍ତ୍ର ମତେ ଦେବମୟର ଅର୍ଥ କୁହାଯାଇଅଛି-
ସ୍ତ୍ରୀମୟଂ ଚ ଜଗତ୍ସର୍ବଂ ପୁରୁଷଂ ଶୃପିଣଂ ।
ଅଭେଦଂ ଚିନ୍ତୟେତ୍ ଯସ୍ତୁ ସ ଏବ ଦେବତାତ୍ମକଃ ।।

ଅର୍ଥାତ୍ ସମସ୍ତ ଜଗତ୍ ସ୍ତ୍ରୀମୟ ଓ ପୁରୁଷ ଶିବରୂପୀ ଏହି ରୂପେ ଅଭେଦ ଭାବେ ଯେ ଚିନ୍ତା କରେ ସେହି ବ୍ୟକ୍ତି ହିଁ ଦେବଭାବାତ୍ମକ ବା ଦିବ୍ୟଭାବଯୁକ୍ତ ଅଟେ ।

## ତାନ୍ତ୍ରିକ ସାଧନ ଓ ସାଧକର ଲକ୍ଷଣ

ଆତ୍ମନୋ ମାତ୍ରେଣ ତତ୍ତ୍ୱଜ୍ଞାନଂ ଭବେତ୍ପ୍ରିୟେ! ।
ତତ୍ତ୍ୱଜ୍ଞାନୀ ଭବେଦ୍ୟୋଗୀ ସ ଯୋଗୀ ତ୍ରିବିଧଃ ସ୍ମୃତି ।।
ନିରାଲମ୍ବଶ୍ଚ ସାଲମ୍ବୋ ଭକ୍ତଶ୍ଚ ପରମେଶ୍ୱରି ! ।
ଭକ୍ତୋଽପି ବୀରଭାବେନ ସାଧୟେତ୍ କୁଳସାଧନଂ ।।
ଶକ୍ତିମାତ୍ରଂ ଯଜେଦ୍ ଯୋଗୀ ଭକ୍ତୋ ଯୋଗପରାୟଣଃ ।
ଅଭିଷେକେଣ ଦେବେଶି ! ଭୈରବୋ ଜାୟତେ ଭୁବି ।।
ଅବଧୂତୋ ଭବେଦ୍‌ବୀରୋ ଦିବ୍ୟଶ୍ଚ କୁଳସୁନ୍ଦରି ! ।
ଶ୍ମଶାନାଗମନିଷ୍ଠଶ୍ଚ କୁଳଯୋଷିତ୍ ପରାୟଣଃ ।।
କୁଳଶାସ୍ତ୍ରାର୍ଥ ସଂବକ୍ତା ବଳିଦାନରତଃ ସଦା ।
ନିର୍ଦ୍ୱନ୍ଦୋ ନିରହଂକାରୋ ନିର୍ଲୋଭୋ ନିର୍ଭୟଃ ଶୁଚିଃ ।।
ଗୁରୁଦେବରତଃ ଶାନ୍ତୋ ଘୃଣାଲଜ୍ଜାବିବର୍ଜିତଃ ।
ରକ୍ତଚନ୍ଦନଲିପ୍ତାଙ୍ଗୋ ରକ୍ତକୌପୀନ ଭୂଷଣଃ ।।

ଅର୍ଥାତ୍ ହେ ପ୍ରିୟେ ! ଆତ୍ମାର ସ୍ୱରୂପଜ୍ଞାନ ହେଲେ ତତ୍ତ୍ୱଜ୍ଞାନ ଲାଭ ହୁଏ । ତତ୍ତ୍ୱଜ୍ଞାନୀ ଯୋଗୀ ହୋଇପାରେ । ଯୋଗୀ ନିରାଲମ୍ବ, ସାଲମ୍ବ ଓ ଭକ୍ତ ଭେଦରେ ତ୍ରିବିଧ । ଭକ୍ତ ମଧ୍ୟ ବୀର ଭାବରେ କୁଳ ସାଧନ କରିବ । ଯୋଗପରାୟଣ ଭକ୍ତ ଯୋଗୀ, ଶକ୍ତି ମାତ୍ର ପୂଜା କରିବ । ଅଭିଷେକଦ୍ୱାରା ହିଁ ଏ ସଂସାରରେ ଭୈରବ ଦିବ୍ୟ ବୀରାଚାର ଅବଧୂତ ହୁଅନ୍ତି । ଯେ ଶ୍ମଶାନଗମନ, ନିଷ୍ଠାବାନ୍ କୁଳସ୍ତ୍ରୀ ପରାୟଣ, କୁଳଶାସ୍ତ୍ରାର୍ଥବିତ୍, ନିତ୍ୟ ବଳିଦାନରତ, ଦ୍ୱନ୍ଦ୍ୱହୀନ, ଅହଂକାରଶୂନ୍ୟ,

ନିର୍ଲୋଭ, ନିର୍ଭୟ, ଶୁଦ୍ଧ ଗୁରୁଦେବାନୁରକ୍ତ, ଶାନ୍ତ, ଘୃଣାଲଜ୍ଜା ରହିତ, ରକ୍ତଚନ୍ଦନ ଲିପ୍ତ, ରକ୍ତ ବର୍ଣ୍ଣ କୌପୀନଧାରୀ ଓ ଉଦାର ଚରିତ ସେ ତାନ୍ତ୍ରିକ ସାଧକ ।

## ସାଧିକାର ଲକ୍ଷଣ

ନିର୍ଲୋଭା ବିମନାହୀନା ନିର୍ଲଜ୍ଜା ଦମ୍ଭ ବର୍ଜ୍ଜିତା ।
ଶିବା ସମାଗତା ସାଧ୍ୱୀ ସ୍ୱେଚ୍ଛୟା ବିପରୀତଗା ।।

ଅର୍ଥାତ୍ ଯେଉଁ ରମଣୀ ଲୋଭହୀନା, ଯାହାର କାମନା ନାହିଁ, ଲଜ୍ଜାଦମ୍ଭଶୂନ୍ୟା ସାଧ୍ୱୀ ସେ ଶିବ ସଙ୍ଗ କରେ ।

ଏହି ତନ୍ତ୍ର ଶାସ୍ତ୍ର ଅତିଶୟ ରହସ୍ୟାତ୍ମକ । ସଦ୍ ଗୁରୁପଦେଶ ବ୍ୟତୀତ ଏହାର କୌଣସି ପ୍ରକ୍ରିୟାନୁଷ୍ଠାନ ସମ୍ଭବ ନୁହେଁ । ପଞ୍ଚମକାର ତନ୍ତ୍ରର ପ୍ରାଣସ୍ୱରୂପ, ପଞ୍ଚମକାର ବ୍ୟତୀତ ତାନ୍ତ୍ରିକର କୌଣସି କାର୍ଯ୍ୟରେ ଅଧିକାର ନାହିଁ ।

ପଞ୍ଚମକାର, ଯଥା-
ପ୍ରଥମଂ ତୁ ଭବେନ୍ମଦ୍ୟଂ ମାଂସଂ ଚୈବ ଦ୍ୱିତୀୟକଂ ।
ମତ୍ସ୍ୟଂ ଚୈବ ତୃତୀୟଂ ସ୍ୟନ୍ମୁଦ୍ରାଂ ଚୈବ ଚତୁର୍ଥିକା ।।
ପଞ୍ଚମଂ ପଞ୍ଚମଂ ବିଦ୍ୟାତ୍ ପଞ୍ଚୈତେ ନାମତଃ ସ୍ମୃତାଃ ।
ମାୟାମଳାଦିଶମନାତ୍ ମୋକ୍ଷମାର୍ଗନିରୂପଣାତ୍ ।।
ଅଥାତ୍ ମଦ୍ୟ, ମାଂସ, ମତ୍ସ୍ୟ, ମୁଦ୍ରା, ମୈଥୁନକୁ ପଞ୍ଚମକାର କହି ।
ଅଷ୍ଟଦୁଃଖାଦିବିରହାତ୍ ମତ୍ସ୍ୟେତି ପରିକୀର୍ତ୍ତିତଃ ।
ମାଙ୍ଗଲ୍ୟଜନନାତ୍ ଦେବି ! ସଚ୍ଚିଦାନନ୍ଦଦାନତଃ ।।
ସର୍ବଦେବ ପ୍ରିୟତ୍ୱଂ ଚ ମାଂସ ଇତ୍ୟଭିଧୀୟତେ ।
ପଞ୍ଚମଂ ଦେବି ! ସର୍ବେଷୁ ମମ ପ୍ରାଣପ୍ରିୟଂ ଭବେତ୍ ।।
ପଞ୍ଚମେନ ବିନା ଦେବି ! ଚଣ୍ଡୀ ମନ୍ତ୍ରଂ କଥଂ ଜପେତ୍ ।
ଆନନ୍ଦଂ ପରମଂ ବ୍ରହ୍ମ ମକାରାନ୍ତସ୍ୟ ସୂଚକଃ ।।
ସୁମନଂ ସେବିତତ୍ୱାଚ୍ଚ ରାଜତ୍ୱାତ୍ ସର୍ବଦା ପ୍ରିୟେ ! ।
ଆନନ୍ଦଜନନାଦ୍ଦେବି ! ସୁରେତି ପ୍ରତିକୀର୍ତ୍ତିତଃ ।।
ମୁଦଂ କୁର୍ବନ୍ତି ଦେବାନାଂ ମନାଂସି ଦ୍ରାବୟନ୍ତି ଚ ।
ତସ୍ମାତ୍ ମୁଦ୍ରା ତି ଖ୍ୟାତା ଦର୍ଶିତବ୍ୟା କୁଳେଶ୍ୱରି ! ।।

ଅର୍ଥାତ୍ ଯଦ୍ଦ୍ୱାରା ମାୟାମଳାଦି ପ୍ରଶମନ, ମୋକ୍ଷମାର୍ଗ ନିରୂପଣ ଓ ଅଷ୍ଟପ୍ରକାର ଦୁଃଖ ନିବାରଣ ହୁଏ ତାହାର ନରମ ମତ୍ସ୍ୟ; ଯାହା ମଙ୍ଗଳଜନନ, ସଂବିନ୍ମହଣର ଆନନ୍ଦଦାୟକ ଏବଂ ସମସ୍ତ ଦେବତାଙ୍କର ପ୍ରିୟ ତାହାର ନାମ ମାଂସ ଅଟେ । ଉତ୍ତମଲୋକେ ଏହା ସେବନ କରନ୍ତି ।

ଯାହାରାଜତ୍ୱ ଓ ଆନନ୍ଦଜନନର ହେତୁ ତାହାର ନାମ ସୁରା । ଯାହା ଦେବତାମାନଙ୍କର ମନ ଦ୍ରବୀଭୂତ କରେ, ଯାହା ପ୍ରଦର୍ଶିତ ହେଲେ ଦେବଗଣ ବ୍ୟାକୁଳ ହୁଅନ୍ତି ତାହାର ନାମ ମୁଦ୍ରା ଅଟେ । ସକଳ କାର୍ଯ୍ୟରେ ପଞ୍ଚମକାର ମୋର ପ୍ରାଣସ୍ୱରୂପ । ଆନନ୍ଦ ହିଁ ପରମବ୍ରହ୍ମ । ପଞ୍ଚମକାର ତାହାର ସୂଚକ ଅଟେ ।

ପଞ୍ଚମକାରର ଫଳ ମହାନିର୍ବାଣ ତନ୍ତ୍ରରେ ଅତ୍ୟାଶ୍ଚର୍ଯ୍ୟ ରୂପେ ବର୍ଣ୍ଣିତ, ଯଥା-

ଅଷ୍ଟୈଶ୍ୱର୍ଯ୍ୟପରଂ ମୋକ୍ଷଂ ମଦ୍ୟପାନେନ ଶୈଳଜେ! ।
ମାଂସଭକ୍ଷଣ ମାତ୍ରେଣ ସାକ୍ଷାନ୍ନାରାୟଣୋ ଭବେତ୍ ।।
ମତ୍ସ୍ୟଭକ୍ଷଣ ମାତ୍ରେଣ କାଳୀ ପ୍ରତ୍ୟକ୍ଷତାମିୟାତ୍ ।
ମୁଦ୍ରା ସେବନ ମାତ୍ରେଣ ଭୂସୁରୋ ବିଷ୍ଣୁରୂପଧୃକ୍ ।।
ମୈଥୁନେନ ମହାଯୋଗୀ ମମ ତୁଲ୍ୟୋ ନ ସଂଶୟଃ ।।

ଅର୍ଥାତ୍- ହେ ଦେବି! ମଦ୍ୟପାନରେ ଅଷ୍ଟୈଶ୍ୱର୍ଯ୍ୟ ଓ ପରମୋକ୍ଷ ଏବଂ ମାଂସ ଭକ୍ଷଣମାତ୍ରେ ସାକ୍ଷାତ୍ ନାରାୟଣତ୍ୱ ଲାଭ ହୁଏ । ମତ୍ସ୍ୟ ଭକ୍ଷଣ କଲେ କାଳୀ ପ୍ରତ୍ୟକ୍ଷ ହୁଅନ୍ତି । ମୁଦ୍ରାସେବନଦ୍ୱାରା ବ୍ରାହ୍ମଣ ବିଷ୍ଣୁ ରୂପ ଧାରଣ କରେ । ମୈଥୁନଦ୍ୱାରା ଶିବତୁଲ୍ୟ ହୁଏ ।

ମାତ୍ର ଏହାର ଶୋଧନ ବିଧି ଅଛି । ଯେ ଶୁଦ୍ଧି ବିନା ମଦ୍ୟାଦି ବ୍ୟବହାର କରେ ତାହାର କ୍ରିୟାଦ୍ୱାରା ଭ୍ରଷ୍ଟ ହୁଏ ଏବଂ ମନ୍ତ୍ରସିଦ୍ଧି ହୁଏନାହିଁ । ଅଥଚ ପାର୍ବତୀ ଦେବୀ କ୍ରୁଦ୍ଧା ହୁଅନ୍ତି ।

ତନ୍ତ୍ରମତରେ ସିଦ୍ଧିଦାୟିନୀ ଅଷ୍ଟବିଧ କୁଳଯୋଗିନୀର କଥା ଲେଖା ଯାଇଅଛି, ଯଥା- ଚର୍ମକାରୀ, ଚଣ୍ଡାଳୀ, ମାତଙ୍ଗୀ, ମତ୍ସ୍ୟରୂପିଣୀ, ମଦ୍ୟକର୍ତ୍ତ୍ରୀ, ରଜକୀ, କ୍ଷୌରକୀ, ଧନବଲ୍ଲଭା ଏହି ଅଷ୍ଟ କୁଳଯୋଗିନୀ । ଏ ବିଷୟରେ ପଞ୍ଚତତ୍ତ୍ୱ ଥିବା ମଧ୍ୟ କଥିତ ଅଛି । ଯଥା-

ଗୁରୁତତ୍ତ୍ୱଂ ମନ୍ତ୍ରତତ୍ତ୍ୱଂ ମନସ୍ତତ୍ତ୍ୱଂ ସୁରେଶ୍ୱରି! ।
ଦେବତତ୍ତ୍ୱଂ ଧ୍ୟାନତତ୍ତ୍ୱଂ ପଞ୍ଚତତ୍ତ୍ୱଂ ବରାନନେ! ।।

ଏହା ବିନା ତାନ୍ତ୍ରିକମତ ପୂଜାରେ ପଞ୍ଚମକାର ଶୁଦ୍ଧି, ନାରୀଶୁଦ୍ଧି, ଚକ୍ରାନୁଷ୍ଠାନ ପ୍ରଭୃତି ଅନେକ ଅଦ୍ଭୁତ ପ୍ରକ୍ରିୟା ବର୍ଣ୍ଣିତ ଅଛି ।

## ତନ୍ତ୍ର ମତରେ ସୃଷ୍ଟି ତତ୍ତ୍ୱ

ଶଙ୍କର ଉବାଚ -
ଶୃଣୁ ଦେବି ! ପରଂ ତତ୍ତ୍ୱଂ ବର୍ଣ୍ଣାତୀତାଂ ଚ ବୈଖରୀଂ ।
ଗୁଣାଳୟାଂ ଗୁଣାତୀତାଂ ସ୍ତୁତିନିନ୍ଦା ବିବର୍ଜିତାଂ ।।
ଆକାର ରହିତାଂ ନିତ୍ୟାଂ ରୋଗଶୋକାଦିବର୍ଜିତାଂ ।
ପୂଜାଯୋଗ୍ୟଂ ଚ ଦେବେଶି ! ସ୍ୱୟମୁତ୍ପତ୍ତିକାରଣଂ ।।

ଯେନ ରୂପେଣ ବ୍ରହ୍ମାଣ୍ଡା ଜାୟନ୍ତେ ଶୃଣୁ ତତ୍ ଶିବେ ! ।
ଆକାଶଜ୍ଜାୟତେ ବାୟୁ ର୍ବାୟୋରୁତ୍ପଦ୍ୟତେ ରବିଃ ।।
ରବେରୁତ୍ପଦ୍ୟତେ ତୋୟଂ ତୋୟାଦୁତ୍ପଦ୍ୟତେ ମହୀ ।
ପଞ୍ଚଭୂତେଷୁ ବ୍ରହ୍ମାଣ୍ଡା ଭବେୟୁଃ ପର୍ବତାତ୍ମଜେ ! ।।
ବ୍ରହ୍ମାଣ୍ଡ ସ୍ଥାପନାର୍ଥାୟ କୂର୍ମପୃଷ୍ଠେ ହ୍ୟନନ୍ତକଃ ।
ତନ୍ମୂର୍ଦ୍ଧ୍ନି ବାଲୁକାକାରା ବ୍ରହ୍ମାଣ୍ଡା ବହବଃ ସ୍ଥିତାଃ ।।
କାରୁଣ୍ୟ ବାରି ମଧ୍ୟେ ତୁ କୂର୍ମଶ୍ଚରତି ନିତ୍ୟଶଃ ।
ଅହମେବ ତ୍ରିଶୂଳେନ ପାଳୟାମି ପୁନଃ ପୁନଃ ।।

ଅର୍ଥାତ୍ ହେ ପାର୍ବତି ! ଏ ବ୍ରହ୍ମାଣ୍ଡର ଉତ୍ପତ୍ତି କାରଣ ଗୁଣାଳୟା ଗୁଣାତୀତା ସ୍ତୁତିନିନ୍ଦା ବିବର୍ଜିତା ଆକାର ରହିତା, ନିତ୍ୟା ରୋଗ ଶୋକ ବିବର୍ଜିତା ସ୍ୱୟଂ ଆଦ୍ୟାଶକ୍ତି ।

ଆକାଶରୁ ବାୟୁ, ବାୟୁରୁ ରବି, ରବିରୁ ଜଳ, ଜଳରୁ ମହୀ ଉତ୍ପନ୍ନ ହେଲା । ଉପରୋକ୍ତ ପଞ୍ଚ ମହାଭୂତରୁ ବ୍ରହ୍ମାଣ୍ଡ ସମୁତ୍ପନ୍ନ । କୂର୍ମପୃଷ୍ଠେ ବାଲୁକାକାର ଅନେକ ବ୍ରହ୍ମାଣ୍ଡ ସଂସ୍ଥାପିତ; ବାରି ମଧ୍ୟେ କୂର୍ମ ବିଚରଣ କରେ, ମୁଁ ଶୂଳ ଧରି ତାହାକୁ ପାଳନ କରେ ।

**ଶ୍ରୀଚଣ୍ଡିକା ଉବାଚ -**

କଥଂ ବା ଲଭତେ ଜନ୍ମ କଥଂ ମୃତ୍ୟୁର୍ଭବେତ୍ ପ୍ରଭୋ !
ତତ୍ପ୍ରକାରଂ ମହାଦେବ! ଶ୍ରୋତୁମିଚ୍ଛାମି ତତ୍ତ୍ୱତଃ ।।

ଅର୍ଥାତ୍ ମନୁଷ୍ୟ କିପରି ଜନ୍ମଗ୍ରହଣ କରେ, କିପରି ତା'ର ମୃତ୍ୟୁହୁଏ ଏହା ମୋତେ ବିଶଦ ଭାବେ କହ । ଶିବ କହୁଅଛନ୍ତି, ହେ ଶିବେ! ମନୁଷ୍ୟ ଇହ ଜଗତରେ ଯେଉଁ କର୍ମ କରେ ଅର୍ଥାତ୍ ଯେଉଁ ସକଳ ପାପପୁଣ୍ୟ କର୍ମାନୁଷ୍ଠାନ କରେ, ତଦନୁରୂପେ ପରଲୋକରେ ସ୍ୱର୍ଗନରକାଦି ଭୋଗ କରେ । ଜଳୌକା ପରି ଜୀବ ନୂତନ ଦେହ ଆଶ୍ରୟ କରି ପୂର୍ବ ଦେହ ତ୍ୟାଗ କରେ ।

ପାର୍ବତୀ ପ୍ରଶ୍ନ କଲେ - ଯଦି ଜୀବ ଅନ୍ୟ ଏକ ଦେହ ଗ୍ରହଣ କରି ପୂର୍ବ ଦେହ ପରିତ୍ୟାଗ କରେ, ତାହାହେଲେ ମୃତ ଉଦ୍ଦେଶ୍ୟରେ ଦିଆଯିବା ପିଣ୍ଡାଦି କିଏ ଗ୍ରହଣ କରୁଅଛି ? ତା'ର ଉତ୍ତରରେ ଶିବ କହିଲେ, ମରଣ ସମୟରେ ଗୋଟିଏ ମାୟା ଦେହ ଜନ୍ମେ; ସେହି ଦେହ ବାୟୁସ୍ୱରୂପ । ଏହି ମାୟାଦେହ ପିଣ୍ଡ ନ ମିଳିବା ପର୍ଯ୍ୟନ୍ତ ଆକାଶ ପ୍ରଦେଶରେ ନିରାଶ୍ରୟ ହୋଇ ରହିଥାଏ; କ୍ରମେ ଉକ୍ତ ଶରୀରରେ ସୂକ୍ଷ୍ମ ଅବୟବ ଜନ୍ମେ, ତା'ପରେ ପାପପୁଣ୍ୟର ଫଳ ସ୍ୱରୂପ ସ୍ୱର୍ଗ ନରକ ଭୋଗ କରି କର୍ମାନୁସାରେ ଉତ୍ତମାକୃତି ଲାଭକରେ କିନ୍ତୁ ଜୀବ ଯଦି ସୌଭାଗ୍ୟ କ୍ରମେ ସଦ୍ଗୁରୁଦ୍ୱାରା ହାବିଦ୍ୟା ବା ତତ୍ତ୍ୱଜ୍ଞାନ ଲାଭ କରେ ତତ୍ ପ୍ରଭାବରେ ତା'ର ପୁନର୍ଗମନ ହୁଏ ନାହିଁ । ଏହି ବୃହତ୍ ବ୍ରହ୍ମାଣ୍ଡ ଲୟହେବା ପର୍ଯ୍ୟନ୍ତ ଜୀବନ୍ମୁକ୍ତି ଲାଭକରେ-

ପ୍ରକୃତ୍ୟା ଜାୟତେ ସର୍ବଂ ପ୍ରକୃତ୍ୟା ସୃଜ୍ୟତେ ଜଗତ୍ ।

ତୋୟାଗ୍ତୁ ବୁଦ୍‌ବୁଦଂ ଦେବି! ଯଥା ତୋୟେ ବିଲୀୟତେ ।।
ତସ୍ମାତ୍ ପ୍ରକୃତିଯୋଗେନ ଜାୟତେ ନାନ୍ୟଥା କ୍ୱଚିତ୍ ।
ବ୍ରହ୍ମା ବିଷ୍ଣୁ ଶିବୋ ଦେବି! ପ୍ରକୃତ୍ୟା ଜାୟତେ ଧ୍ରୁବଂ ।।
ତଥା ପ୍ରଳୟକାଳେ ତୁ ପ୍ରକୃତ୍ୟା ଲୁପ୍ୟତେ ପୁନଃ ।।
ନିର୍ବାଣତନ୍ତ୍ରେ ।

ପ୍ରକୃତିରୁ ସମସ୍ତେ ଉତ୍ପନ୍ନ ହୁଅନ୍ତି । ପ୍ରକୃତିରୁ ଜଗତ ସୃଷ୍ଟି ହୁଏ । ବୁଦ୍‌ବୁଦାଦି ଯେପରି ଜଳରୁ ଜନ୍ମି ଜଳରେ ବିଲୀନ ହୁଅନ୍ତି, ସେପରି ସମସ୍ତ ଜୀବ, ବ୍ରହ୍ମା, ବିଷ୍ଣୁ, ଶିବ ପ୍ରଭୃତି ପ୍ରକୃତିରୁ ହିଁ ଉତ୍ପନ୍ନ ହୁଅନ୍ତି ଏବଂ ପ୍ରଳୟ କାଳରେ ପ୍ରକୃତିରେ ହିଁ ସମସ୍ତେ ଲୀନ ହୁଅନ୍ତି ।

## ତାନ୍ତ୍ରିକ ତତ୍ତ୍ୱ

ସ୍ତ୍ରୀରୂପାଂ ବା ସ୍ମରେଦ୍‌ଦେବୀଂ ପୁଂରୂପାଂ ବା ସ୍ମରେଚ୍ଛିବେ !
ସ୍ମରେତ୍ ବା ନିଷ୍କଳଂ ବ୍ରହ୍ମ ସଚ୍ଚିଦାନନ୍ଦ ରୂପିଣୀଂ ।।
ନେୟଂ ଯୋଷିନ୍ନ ଚ ପୁମାନ୍ ନ ଷଣ୍ଢୋ ନ ଜଡ଼ଃ ସ୍ମୃତଃ ।
ତଥାପି କଳ୍ପବଲ୍ଲୀବତ୍ ସ୍ତ୍ରୀଶବ୍ଦେ ନ ଚ ଯୁଜ୍ୟତେ ।।
ସାଧକାନାଂ ହିତାର୍ଥାୟ ଅରୂପା ରୂପାଧାରିଣୀ ।।

ଅର୍ଥାତ୍ ସେହି ସଚ୍ଚିଦାନନ୍ଦ ରୂପିଣୀ ଦେବୀଙ୍କୁ ସ୍ତ୍ରୀ ରୂପେ ବା ପୁଂସ ରୂପେ ଅଥବା ନିଷ୍କଳ ବ୍ରହ୍ମ ଭାବେ ସ୍ମରଣ କର । ବାସ୍ତବରେ ସେ ସ୍ତ୍ରୀ ପୁଂସ ବା ନପୁଂସକ ନୁହନ୍ତି । ତଥାପି କଳ୍ପଲତା ସ୍ତ୍ରୀ ବାଚକ ଶବ୍ଦ ପରି ଦେବୀଙ୍କୁ ସ୍ତ୍ରୀ ଶବ୍ଦ ପ୍ରୟୋଗ କରିବ । ସେ ଅରୂପା ହେଲେ ସୁଦ୍ଧା ସାଧକର ମଙ୍ଗଳ ଲାଗି ରୂପ ଧାରଣ କରନ୍ତି ।

ତାମେତାଂ କୁଣ୍ଡଳୀତ୍ୟେକେ ସନ୍ତୋ ହୃଦୟାନାଂ ବିଦୁଃ ।
ସା ରୌତି ସତତଂ ଦେବି! ଭୃଙ୍ଗୀ ସଙ୍ଗୀତକ ଧ୍ୱନିଂ ।।

ସେହି କୁଣ୍ଡଳିନୀ ମହାଶକ୍ତି ଯୋଗୀନ୍ଦ୍ରଙ୍କର ହୃଦୟରେ ଆଶ୍ରୟ କରିଥାନ୍ତି ଏବଂ ମୂଳାଧାରରେ ଭ୍ରମରୀ ପରି ମୃଦୁ ଗୁଞ୍ଜନ କରନ୍ତି ।

ଶାରଦା ତିଳକରେ ବର୍ଣ୍ଣିତ ଅଛି-
ଯୋଗିନାଂ ହୃଦୟାମ୍ଭୋଜେ ନୃତ୍ୟନ୍ତି ନୃତ୍ୟମଞ୍ଜୁଳାଃ ।
ଆଧାରେ ସର୍ବଭୂତାନାଂ ସ୍ଫୁରନ୍ତି ବିଦ୍ୟୁଦାକୃତିଃ ।।
ଶଙ୍ଖାବର୍ତ୍ତକ୍ରମାଦ୍ଦେବୀ ସର୍ବମାବୃତ୍ୟ ତିଷ୍ଠତି ।
କୁଣ୍ଡଳୀଭୂତସର୍ପାଣା ମଙ୍ଗଶ୍ରିୟ ମୁପେୟୁଷୀ ।।
ସର୍ବବେଦମୟୀ ଦେବୀ ସର୍ବମନ୍ତ୍ରମୟୀ ଶିବା ।

ସର୍ବତତ୍ତ୍ୱମୟୀ ସାକ୍ଷାତ ସୂକ୍ଷ୍ମାତ୍ ସୂକ୍ଷ୍ମତରା ବିଭୁଃ ।।
ତ୍ରିଧାମଜନନୀ ଦେବୀ ଶବ୍ଦବ୍ରହ୍ମରୂପିଣୀ ।।

ଅର୍ଥାତ୍ ସେହି ନୃତ୍ୟମଞ୍ଜୁଳା ଯୋଗୀଗଣର ହୃତ୍‌ପିଣ୍ଡରେ ସ୍ୱରୂପ ପ୍ରକାଶ କରି ଆତ୍ମାନନ୍ଦରେ ନୃତ୍ୟ କରନ୍ତି ଏବଂ ସର୍ବଭୂତର ଆଧାରରେ ବିଦ୍ୟୁଦାକାରେ ସ୍ଫୁରିତ ହୁଅନ୍ତି । ସେହି ଦେବୀ ସାର୍ଦ୍ଧତ୍ରି ବଳୟାକାର କୁଣ୍ଡଳୀଭୂତ ସର୍ପଗଣର ଅଙ୍ଗଶ୍ରୀଧାରିଣୀ, ସର୍ବବେଦମୟୀ, ସର୍ବତନ୍ତ୍ରମୟୀ, ସର୍ବତତ୍ତ୍ୱମୟୀ, ସୂକ୍ଷ୍ମରୁ ସୂକ୍ଷ୍ମତରା ତ୍ରିଲୋକଜନନୀ ଶବ୍ଦବ୍ରହ୍ମରୂପିଣୀ ।

**ତନ୍ତ୍ରମତରେ ତତ୍ତ୍ୱଜ୍ଞାନ**

ଶରୀର ହିଁ ଆତ୍ମା-ଅନ୍ତରାତ୍ମା ମନଃ, ପରମାତ୍ମା ଶୂନ୍ୟମୟ; ଏହି ପରମାତ୍ମାରେ ହିଁ ମନ ଲୀନ ହୁଏ । ଅବ୍ୟକ୍ତରୁ ପ୍ରାଣ, ପ୍ରାଣରୁ ମନ, ମନରୁ ବାକ୍ୟ ଜନ୍ମେ, ମନ ବାକ୍ୟର ସହିତ ବିଲୀନ ହୁଏ ବେଦ ବେଦ ନୁହେଁ, ସନାତନ ବ୍ରହ୍ମ ହିଁ ବେଦ, ତପଃ ।

ତପସ୍ୟା ନୁହେଁ, ବ୍ରହ୍ମଚର୍ଯ୍ୟ ହିଁ ତପସ୍ୟା, ଏହାର ପ୍ରଭାବରେ ତପସ୍ୱୀ ଊର୍ଦ୍ଧ୍ୱରେତା ହୁଏ । ସଦ୍‌ଜ୍ଞାନୋଦୟ ପର୍ଯ୍ୟନ୍ତ ବର୍ଣ୍ଣ ବିଭାଗ ରକ୍ଷା କରିବ । ଏହି ତନ୍ତ୍ର ମତରେ ଅନେକ ଗୂଢ଼ତତ୍ତ୍ୱ ସନ୍ନିବେଶିତ, ଶାକ୍ତ ସମ୍ପ୍ରଦାୟରେ ବିଶେଷ ବିଷୟ ଉଲ୍ଲିଖିତ ଥିବା ଯୋଗୁଁ ଏ ବିଷୟରେ ଅଧିକ ଅଗ୍ରସର ହେଲୁ ନାହିଁ ।

ଇନ୍ଦ୍ରିୟ ସୁଖାଭିଳାଷୀଗଣ ପୂର୍ବୋକ୍ତ ପଞ୍ଚମକାରର ପ୍ରକୃତ ତାତ୍ପର୍ଯ୍ୟ ଅବଗତ ନହୋଇ ଘୋର ଉଚ୍ଛୃଙ୍ଖଳ ହୋଇ ତନ୍ତ୍ର ସାଧନା ପଥକୁ ପଙ୍କିଳ କରି ଦେଉଅଛନ୍ତି । ଆର୍ଯ୍ୟ ଜାତିର ପ୍ରତ୍ୟେକ ଅନୁଷ୍ଠାନର ମୂଳରେ ବିଶୁଦ୍ଧ ଆଧ୍ୟାତ୍ମିକତା ବିଦ୍ୟମାନ । କିନ୍ତୁ ତାହା ଅତ୍ୟନ୍ତ ପ୍ରଚ୍ଛନ୍ନ ଭାବେ ରହିଥିବା ଯୋଗୁଁ ଅନେକ ଅଦୂରଦର୍ଶୀ ଇନ୍ଦ୍ରିୟଲାଳସାଗ୍ରସ୍ତ ଦାମ୍ଭିକ ସାଧକଙ୍କର ଅବୋଧ୍ୟ ହୋଇ ଯାଇଅଛି ।

ଶାକ୍ତଙ୍କର ପ୍ରଧାନ ଉପସେବ୍ୟ ପଞ୍ଚମକାର ବିଷୟରେ ଜ୍ଞାନ ସଂକଳନୀରେ ଲେଖା ଅଛି-

ସୋମଧାରାକ୍ଷରେଦ୍‌ଯାତୁ ବ୍ରହ୍ମରନ୍ଧ୍ରାତ୍ ବରାନନେ ।
ପୀତ୍ୱାନନ୍ଦମୟୀଂ ତାଂ ଯଃ ସ ଏବ ମଦ୍ୟସାଧକଃ ।।

ଅର୍ଥାତ୍ ବ୍ରହ୍ମରନ୍ଧ୍ରସ୍ଥିତ ସହସ୍ର ଦଳବିଶିଷ୍ଟ ପଦ୍ମରୁ ଯେଉଁ ଅମୃତ ଧାରା କ୍ଷରିତ ହେଉଅଛି ସେହି ଅମୃତ ପାନରେ ଯେଉଁ ସାଧକର ଉନ୍ମାଦନା ଜନ୍ମେ ସେହି ପ୍ରଧାନ ମଦ୍ୟସାଧକ ।

ମାଶବ୍ଦାତ୍ ରସନା ଜ୍ଞେୟା ତଦଂଶାନ୍ ରସନା ପ୍ରିୟେ ।
ତଦା ଚ ଭକ୍ଷୟେତ୍ ଦେବି ! ସ ଏବମାଂସସାଧକଃ ।।

ମା ଶବ୍ଦରେ ରସନା ବୁଝାଏ, ତାହାର ଅଂଶ ହି ମାଂସ । ରସନାର ପ୍ରଧାନ ଅଂଶ ବାକ୍ୟ,

ତାହାର ଭୋଜନ ଅର୍ଥାତ୍ ବାକ୍ ସଂଯମ । ମାଂସ ଶବ୍ଦ ଏହି ଗୂଢ଼ ଅର୍ଥରେ ବ୍ୟବହୃତ ହୋଇଅଛି ।

ଗଙ୍ଗାଯମୁନୟୋର୍ମଧ୍ୟେ ମତ୍ସ୍ୟୌ ଦ୍ୱୌ ଚରତଃ ସଦା ।
ତୌ ମତ୍ସ୍ୟୌ ଭକ୍ଷୟେତ୍ ଯସ୍ତୁ ସ ଭବେନ୍ମତ୍ସ୍ୟସାଧକଃ ।।

ଅର୍ଥାତ୍ ନିଶ୍ୱାସ ଓ ପ୍ରଶ୍ୱାସ ପ୍ରଣାଳୀ ଦ୍ୱୟ ଗଙ୍ଗା ଯମୁନା ନଦୀତୁଲ୍ୟ । ଏ ଉଭୟ ମଧ୍ୟରେ ଇଡ଼ା ଓ ପିଙ୍ଗଳା ନାଡ଼ୀ ବିଦ୍ୟମାନ; ଏହାକୁ କୁମ୍ଭକ ଯୋଗରେ ରୋଧ କରିବାର ନାମ ମତ୍ସ୍ୟସାଧନ ।

ଆଶାତୃଷ୍ଣାଜୁଗୁପ୍ସା ଭୟବିଶଦଘୃଣା ମାନଲଜ୍ଜାଭିଷଙ୍ଗାଃ ।
ବ୍ରହ୍ମାଗ୍ନାବଷ୍ଟମୁଦ୍ରା ପରମ ସୁକୃତିନୋ ଜପ୍ୟମାନାଃ ସମନ୍ତାତ୍ ।।
ଅଶାତୃଷ୍ଣାଦି ଅଷ୍ଟ ମୁଦ୍ରାକୁ ବ୍ରହ୍ମଜ୍ଞାନଦ୍ୱାରା ସମୂଳ ବିନାଶ କରିବାର ନାମ ମୁଦ୍ରାଭକ୍ଷଣ ।

କୁଳ କୁଣ୍ଡଳିନୀଶକ୍ତି ର୍ଦେହୀନାଂ ଦେହଧାରିଣୀ ।
ତୟା ଯୋଗସ୍ୟ ସଂଯୋଗୋ ମୈଥୁନଂ ପରିକୀର୍ତ୍ତିତଂ ।।
ତନ୍ତ୍ରାନ୍ତରେ ଉକ୍ତ ଅଛି -
ସହସ୍ରାରୋପରି ବିନ୍ଦୌ କୁଣ୍ଡଳାନ୍ମିଳନାତ୍ ଶିବେ! ।
ମୈଥୁନଂ ପରମଂ ଦିବ୍ୟଂ ଯତୀନାଂ ପରିକୀର୍ତ୍ତିତଂ ।।

ମୂଳାଧାରରେ ଯେଉଁ କୁଣ୍ଡଳିନୀ ଶକ୍ତି ଅଛି ତାହାକୁ ଯୋଗସାଧନଦ୍ୱାରା ଷଟ୍‌ଚକ୍ର ଭେଦ କରାଇ ମସ୍ତକୋପରିସ୍ଥିତ ସହସ୍ରଦଳ ବିଶିଷ୍ଟ କର୍ଣ୍ଣିକା ମଧ୍ୟେ ବିନ୍ଦୁରୂପ ପରମ ଶିବଙ୍କ ସହିତ ଯେଉଁ ସଂଯୋଗ ସାଧନ କରାଯାଏ ତାହାହିଁ ମୈଥୁନ ଅର୍ଥାତ୍ ଯୋଗଶାସ୍ତ୍ରର ଲୟ ପ୍ରକରଣ । କିନ୍ତୁ ବିଷୟଟିକୁ ଏତେ ଗୂଢ଼ରେ ରଖିବାରେ ବ୍ୟବସ୍ଥାପକଙ୍କର ଉଦ୍ଦେଶ୍ୟ କ'ଣ ବୁଝିବା କଷ୍ଟକର । ପ୍ରକାଶ୍ୟ ରୂପେ ଏହାର ଅର୍ଥ ନକରି ଏହିପରି ଜଟିଳ ଭାବେ ସାଧନ ପ୍ରକ୍ରିୟା ପ୍ରକାଶ କରିବା ଯୋଗୁଁ ବୋଧହୁଏ ଆଜି ପ୍ରତ୍ୟେକ ଧର୍ମ ମାର୍ଗରେ ଏ ଉଚ୍ଛୃଙ୍ଖଳତା ଘଟିଅଛି ।

## ପୁରାଣଗତ ଆଲୋଚନା

ଉକ୍ତ ରତଙ୍ଗରେ ସ୍ତୁତ୍ୟାଦି ଗ୍ରନ୍ଥଗତ ବିଷୟ ସମସ୍ତ ଯଥାକ୍ରମେ ଆଲୋଚିତ ହୋଇଥିଲେ ସୁଦ୍ଧା ସମସ୍ତ ଧର୍ମ ଗ୍ରନ୍ଥାପେକ୍ଷା ପୁରାଣ ଓ ପୁରାଣ ରଚୟିତାଙ୍କ ପ୍ରତି ଜନସାଧାରଣର ସମଧିକ ଭକ୍ତି, ବିଶ୍ୱାସ ଓ ପ୍ରଗାଢ଼ ଆସ୍ଥା ଲକ୍ଷ୍ୟ କରି ଉକ୍ତ ବିଷୟରେ ଅଧିକ ଦୁଇ ଚାରି ପଙ୍‌କ୍ତି ଉଲ୍ଲେଖ କରିବା ସମୁଚିତ ବିବେଚନା କରୁ । ଭାବିବାକୁ ଗଲେ ଆମ୍ଭମାନଙ୍କର ପ୍ରାଚୀନତମ ପୂଜନୀୟ ମୁନି ମନୀଷୀଙ୍କ ମଧ୍ୟରେ ବ୍ୟାସ ଦେବଙ୍କର ପ୍ରତିଷ୍ଠା ପ୍ରତିପତ୍ତି ସର୍ବାପେକ୍ଷା ଅଧିକ । ଯେହେତୁ ଶାସ୍ତ୍ର କହେ- "ବ୍ୟାସସ୍ତୁ ଭଗବାନ୍ ସ୍ୱୟଂ" ଅର୍ଥାତ୍ ବ୍ୟାସ ସ୍ୱୟଂ ଭଗବାନ । ଦାର୍ଶନିକ ଜଗତରେ ବ୍ରହ୍ମସୂତ୍ର ପ୍ରଣୟନଦ୍ୱାରା ସେ ଅଶେଷ ଖ୍ୟାତି ଲାଭ କରିଅଛନ୍ତି ଏବଂ ବେଦର ସାରସଂଗ୍ରହ କରି ଆଧ୍ୟାତ୍ମିକ ପଥ ସୁଗମ କରି ଦେଇଅଛନ୍ତି ।

ନାସ୍ତିକତାପ୍ରଯୁକ୍ତ ଏହି ଉଚ୍ଛୃଙ୍ଖଳ ଯୁଗରେ ସୁଦ୍ଧା ଭାରତର କୋଟି କୋଟି ନର ନାରୀ ଭକ୍ତିଭାବେ ବ୍ୟାସଦେବଙ୍କ ପ୍ରତି ସମ୍ୟକ୍ ସମାକୃଷ୍ଟ ହେବା ଦୃଷ୍ଟାନ୍ତର ବିରଳ ନାହିଁ । ସେ ରୂପକ ଛଳେ, ମନୋମୁଗ୍ଧକର କଥା ନିବନ୍ଧେ ଯେଉଁ ସରସ ଶିକ୍ଷାପ୍ରଦ ଶ୍ରୁତିସୁଖାୟମାନ ବିଚିତ୍ର ପୌରାଣିକ ଗଳ୍ପ ପ୍ରଣୟନ କରିଅଛନ୍ତି ତାହାହିଁ ଅଧିକାଂଶ ପୁରପଲ୍ଲୀର ମିଳନ ମନ୍ଦିରରେ ଉଭୟ ସନ୍ଧ୍ୟାରେ ଦେବମୂର୍ତ୍ତି ସମ୍ମୁଖରେ ପ୍ରତ୍ୟହ ପ୍ରପଠିତ ଓ ପ୍ରପୂଜିତ । କେତେକ ସରଳ ବିଶ୍ୱାସୀ ଅଶିକ୍ଷିତ ସମାଜର ପୁରାଣ ପଠନକାଳ ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ । ଅଶ୍ରୁପ୍ଲାବିତମୁଖୀ ବିଧବାଙ୍କଠାରୁ ଭକ୍ତିପ୍ରବଣ, ଲୁଳିତଚର୍ମ, ପଳିତ କେଶ ବୃଦ୍ଧ ପର୍ଯ୍ୟନ୍ତ ପୁରାଣ ଶ୍ରବଣରେ କି ବିହ୍ୱଳ ଓ କି ଅପୂର୍ବ ତନ୍ମୟ ତାହା ବର୍ଣ୍ଣନାତୀତ । ପୁରାଣଗୁଡ଼ିକ ଭାରତୀୟ ପ୍ରାଦେଶିକ ଭାଷାମାନଙ୍କରେ ଅନୂଦିତ ହେଲାପରି ଅନ୍ୟ କୌଣସି ଗ୍ରନ୍ଥ ହୋଇନାହିଁ କହିଲେ ଚଳେ । ଏହା ପୁରାଣ ପାଠରେ ଜନସାଧାରଣଙ୍କ ଅପୂର୍ବ ଅନୁରାଗର ଗୋଟିଏ ଜ୍ୱଳନ୍ତ ନିଦର୍ଶନ । ଏହି ପରିସ୍ଥିତିରେ ପୁରାଣମାନଙ୍କ ମଧ୍ୟରେ ଏତେ ଅସାମଞ୍ଜସ୍ୟ, ଏତେ ପୁନରୁକ୍ତିଦୋଷ ରହିଅଛି କାହିଁକି ? ଯେଉଁ ବ୍ୟାସଦେବଙ୍କର ଅମୃତାୟମାନ ଲେଖନୀ ଯୋଗେ ପ୍ରସ୍ଥାନତ୍ରୟ ମଧ୍ୟରୁ ନ୍ୟାୟ ପ୍ରସ୍ଥାନ ରୂପ ବ୍ରହ୍ମସୂତ୍ର, ମହାଭାରତ, ଇତିହାସ, ସ୍ମୃତିପ୍ରସ୍ଥାନ ଓ ଶ୍ରୀମଦ୍‌ଭଗବତ ଗୀତା ଶାସ୍ତ୍ରୀୟ ଓ ଯୌକ୍ତିକ କ୍ରମେ ବିଦଶୀକୃତ ଏବଂ ଯେ ଦର୍ଶନ ମତ ପରିପୋଷକ ଗଭୀର ଚିନ୍ତାସମ୍ଭୂତ ଶ୍ରୀମଦ୍‌ଭଗବତ ରଚନା କରି ନିଗମ କଳ୍ପତରୁର ସୁମିଷ୍ଟ ଫଳକୁ ଆଧ୍ୟାତ୍ମିକ ବୁଭୁକ୍ଷୁ ଭକ୍ତଗଣଙ୍କ ମଧ୍ୟରେ ବିତରଣ କରିଅଛନ୍ତି, ସେହି କୃତୀ ଋଷିବର୍ଯ୍ୟ ପ୍ରତ୍ୟେକ ପୁରାଣରେ ସେହି ଏକ ସୃଷ୍ଟ ଘଟିତ ବ୍ୟାପାର ଓ ପୃଥୁ ଚରିତ, ଉର୍ବଶୀ ପୁରୁରବା ଉପାଖ୍ୟାନ, ସମୁଦ୍ର ମନ୍ଥନ, ବୃତ୍ରବଧ, ଦକ୍ଷଯଜ୍ଞ ଭଙ୍ଗେ ଉମା ତପ, ତାରକା ବଧ, ରାମକୃଷ୍ଣଙ୍କର ଚରିତ ପ୍ରଭୃତି ବାରମ୍ବାର ଆମ୍ରେଡିତ କଲେ କିପରି ଏବଂ ପ୍ରକୃତରେ ଏ ସମସ୍ତ କ'ଣ ଜଣକର ଲେଖନୀ ପ୍ରସୂତ ? ଅସମ୍ଭବ ! ରଚନାଗତ ପାର୍ଥକ୍ୟ, ବିଷୟଗତ ଅସାମଞ୍ଜସ୍ୟ ଇତ୍ୟାଦିରୁ ସ୍ପଷ୍ଟ ହେଉଅଛି ଯେ ମୂଳ ବିଶୁଦ୍ଧ ସଂସ୍କରଣ କାଳକ୍ରମେ ସାଂପ୍ରଦାୟିକ ବିଦ୍ୱେଷବଶତଃ ନାନା ରୂପାନ୍ତରିତ ହୋଇଯାଇଅଛି । ଏହା ପୁରାଣ ପ୍ରସଙ୍ଗରେ ସବିଶେଷ ଆଲୋଚିତ ହୋଇଅଛି । ନଚେତ ଯଥେଚ୍ଛାଚାର ବହୁଳତା ଦୋଷରେ ଏତେ ଦୂଷିତ ହୋଇନଥାନ୍ତା । ଉପସଂହାରରେ ବକ୍ତବ୍ୟ ଏହିକି ପୁରାଣର ସୁବିଶୁଦ୍ଧ କଳେବର ନାନା ଦୋଷ ଜର୍ଜରିତ । ପ୍ରକ୍ଷିପ୍ତ ଅଂଶଗୁଡ଼ିକୁ ତ୍ୟାଗ କରିଦେଲେ ଏଥିରେ ନାନାବିଧ ଜ୍ଞାତବ୍ୟ ବିଷୟ ଯେ ସନ୍ନିବେଶିତ ତାହା ପାଠକ ପାଠିକାଗଣ ଉଲ୍ଲିଖିତ ପୁରାଣଗତ ଚରିତ ପାଠଦ୍ୱାରା ବୁଝିପାରିବେ । ଅତଏବ ଆର୍ଯ୍ୟଜାତିର ପ୍ରାଚୀନତମ ଅମୂଲ୍ୟ ସମ୍ପଦ ଶ୍ରୁତି, ସ୍ମୃତି, ପୁରାଣ ଓ ଇତିହାସ ପ୍ରତି ସୁହୃଦ ପାଠକ, ପାଠିକାଙ୍କ ହୃଦୟରେ କିଞ୍ଚିତ ଶ୍ରଦ୍ଧା ଜନ୍ମିଲେ ନିଜକୁ ଚରିତାର୍ଥ କରିବୁ ।

